ଯିଏ ଆଜୀବନ ନିରଳସ ସାହିତ୍ୟସେବକ
ଯିଏ ପ୍ରାବନ୍ଧିକ, ସମାଲୋଚକ, ଐତିହାସିକ
ଯିଏ ଚଳଣିରେ ସରଳ ବିନମ୍ର ହେଲେ ବି
ନିଜର ମତରେ ନିର୍ଭୀକ ଓ ସୁଦୃଢ଼,
ଯିଏ ଶାରୀରିକ ଅସୁସ୍ଥତାକୁ ଭ୍ରୂକ୍ଷେପ ନ କରି
ସାହିତ୍ୟର ଅଭିବୃଦ୍ଧି ପାଇଁ ସତତ କର୍ମରତ,
ସେହି ମହାନ୍ ସାଧକ

ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ
ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କୁ

ନିଜର ଆଖିକୁ ସେ ବିଶ୍ୱାସ କରିପାରିଲେ ନାହିଁ ।

ମନ ଚହଁକି ଉଠିଲା । ଗ୍ରୁଣ୍ଡରେ ଛନକା ପଶିଲା । ସତେକି ମୁଣ୍ଡରେ ସହସା ବଜ୍ରପାତ ହେଲା । ସାରା ଶରୀରରେ ବିଜୁଳିର ତରଙ୍ଗ ଛୁଟିଲା । ଦେହ ଥରିବାକୁ ଲାଗିଲା ।

ସେ ଆଖି ବୁଜିଲେ ।

ମନରେ ଆଉଟି ହେଲା ଭାବନା—କପରି ଏହା ସମ୍ଭବ ହୋଇ-ପାରିଲା ? କପରି ସେମାନେ ସମ୍ବନ୍ଧ ଭୁଲିଲେ ? ମାତି ଅନ୍ତରର ଭେଦ ତୁଟିଲେ ? ଲାଜ ସରମର ବେକ ମୋଡ଼ିଲେ ?

ଦୁ'ଫାଳିଆ କବାଟ ଭିତରୁ ବନ୍ଦ କରାହୋଇଛି । ଦୋ'ତାଲାର ବାରଣ୍ଡା ପାଖକୁ ଯେଉଁ ଗ୍ରୀଲ୍‌ଲଗା ବଡ଼ ଝରକାଟି, ତାର ରଙ୍ଗିନ ପରଦା ଭିତରୁ ଟଣା ହୋଇଛି । ଗୋଟିଏ ପାଖରୁ ସେହି ପରଦା ଚାରି ଆଙ୍ଗୁଳ ଖୋଲା ରହିଛି । ସେହି ଫାଙ୍କରେ କୋଠରିର ଯେଉଁ ଅଂଶଟି ଆଖିରେ ପଡୁଛି, ସେଇଟି ଗୋଟିଏ ପଲଙ୍କର ମୁଣ୍ଡ ପାଖ ।

ବିଜୁଳି ଆଲୁଅ ଜଳୁଛି । ବିଜୁଳିପଙ୍ଖାର ଧୀର ଚଳନର ଏକାପରିକା ଶବଦ କାନରେ ବାଜୁଛି । ଧୂପକାଠି ଜଳନର ଆଭାସ ମିଳୁଛି ମଧୁର ମହକରୁ । ପରଦା ଫାଙ୍କରେ କୋଠରି ଭିତର ପାତଳ-ଧୂଆଁଳିଆ ଦିଶୁଛି ।

ଅସ୍ପଷ୍ଟ ପରିବେଶ ।

ପଲଙ୍କର ଯେଉଁ ଅଂଶଟି ଦିଶୁଛି, ସେଇଟି ପରିଷ୍କାର ଧୋବ ଫରଫର ତକିଆ ଉପରେ ସୁନ୍ଦର କୁଳୁକୁଳିଆ ମୁହଁଟି ଉପରକୁ ନଇଁ-ଆସୁଛି ଆଉ ଗୋଟିଏ ସ୍ୱାସ୍ଥ୍ୟ ଭରପୂର ବଳିଷ୍ଠ ମୁହଁ। ସେ ମୁହଁ ଗେଲ କରୁଛି, ବୋକ ଦେଉଛି, ଯେମିତିକା ବୋକଟିଏ ସେ ଦେଇଆସିଥିଲେ ତାଙ୍କର ରଙ୍କରତନ ତିନିବର୍ଷର ଅଜଟିଆ ଶୋଇଲା ଶିଶୁର କପାଳରେ। ଆତ୍ମା-ଉଲୁସା ଜୀବନ-ସରସା, ନିଜଭୁଲା ବୋକଟିଏ। ଗର୍ଭଧାରିଣୀ ଜନନୀର ସବୁ-ଅରପିଲା ରଙ୍ଗିଲା ବୋକ।

ଆଖିରେ ପଡ଼ିଲା ଯେଉଁ ଆହ୍ଲାଦ, ଯେଉଁ ସ୍ନେହ-ଜରଜର ଥରଥର ଓଠ ଦିଓଟିର ମିଳନ, ସେ କଅଣ ସେହିପରି ପବିତ୍ର ନିର୍ମଳ ପ୍ରେରଣାର ତେଜ? ତାଙ୍କର ମୋହଗ୍ରସ୍ତ ମନକୁ ନିଜର ଅନୁଭୂତି ଚହିଁକାଇ ଦେଇଛି? ସ୍ୱାଭାବିକ ପିଲାଳିଆ-ସ୍ନେହର ଆଦାନପ୍ରଦାନ କି ସ୍ୱଚ୍ଛ ଓ ଉନ୍ମୁକ୍ତ, ସ୍ୱତଃ ଓ ଅବାରିତ? ପିଲାଦିନରୁ ବିକ୍ରମ ସେମାନଙ୍କୁ ଭଲ ପାଆନ୍ତି—ଅନୁପା, ନିରୁପା ଓ ସୁରୂପାଙ୍କୁ, ପୁଣି ଜାଣି ତ ତାଙ୍କର ତିନିବର୍ଷର ପୁଅ ସାନନ୍ଦକୁ।

ବିକ୍ରମ ତାଙ୍କର ବଡ଼ ନଣନ୍ଦ ଚନ୍ଦନାଙ୍କର ପୁଅ, ଅନୁପା-ବାପାଙ୍କର ଗେହ୍ଲା ଭଣଜା। ଅବିକଳ ମାମୁଁଙ୍କ ବରଗ। ଗ୍ରାମରେ ଥାଇ କେଉଁ ପାଖଗ୍ରାମର ମାଇନର ସ୍କୁଲରୁ ସେ ମାଇନର ପାସ୍ କରିଥିଲା। ବୃତ୍ତି ପାଇଥିଲା। ସହରକୁ ନ ଆସିଥିଲେ ପାଠ ଇତିଶ୍ରୀ ହୋଇଥାନ୍ତା। ଗରିବ ବାପ ବାରକେଶଖ ଟଙ୍କା ଖରଚ କରି କେଉଁ ହଷ୍ଟେଲ କି ମେସ୍‌ରେ ପୁଅକୁ ରଖାଇ ସହରର ଉଚ୍ଚ ବିଦ୍ୟାଳୟରେ ପାଠ ପଢ଼ାଇବାକୁ କ୍ଷମ ନୁହନ୍ତି। ଅଧିକ ପାଠ ପଢ଼ିବାକୁ ପିଲାଟିର ଆଗ୍ରହ। ତାର ଆଖିର ଲୁହ ଦେଖି, ମନର ବ୍ୟାକୁଳତା ଅନୁଭବ କରି ମାମୁଁ ଆନନ୍ଦଚନ୍ଦ୍ର ତାକୁ ପାଖରେ ଆଶ୍ରା ଦେଇଥିଲେ।

ଅଭାବର ଟଣାଓଟରା ସଂସାରରେ ଆଜି ଜଣେ ବ୍ୟକ୍ତି ବଢ଼ାଇବାକୁ ଓ ଭଣଜା ହେଲେ ବି ବାପମାଆଙ୍କ ପାଖରେ ଗେହ୍ଲାରେ ବଢ଼ିଥିବା ଏକମାତ୍ର ପୁଅର ଦାୟିତ୍ୱ ମୁଣ୍ଡକୁ ନେବାକୁ ଇନ୍ଦିରା ମନେ ମନେ କୁନ୍ଥକୁନ୍ଥ ହୋଇଥିଲେ । ସେତେବେଳେ ସେ ମୁହଁ ଖୋଲି ପ୍ରତିବାଦ କରି ନ ଥିଲେ । ଡବଡବ କରି ଚାହିଁଥିଲେ ଧଡ଼ିଆ ଧେଡ଼ଙ୍ଗା ଛଅବର୍ଷର ପିଲା-ଭଣଜାର ମୁହଁକୁ, ତାର ଲୁହ-ଢଳଢଳ ପୋଟଳ-ଫାଳିଆ ଆଖି ଦିଓଟିକୁ । ଚଉଡ଼ା କପାଳ । ମୁଣ୍ଡରେ ଘଞ୍ଚ କେଶ । ସୁଠାମ ନାସିକା । କୁଲୁକୁଲିଆ ମୁହଁ । ଏକଦମ ତାର ମାମୁଁ ଓଳି ନେଇ ଜନମ ।

ଇନ୍ଦିରାଙ୍କର ପ୍ରତିବାଦର ଧାରଣା ଉଭେଇ ଯାଇଥିଲା । ମନରେ ଜାଗିଥିଲା ସ୍ନେହ । ଦିଓଟି କନ୍ୟା ସେ ସଂସାରକୁ ଆଣିସାରିଲେଣି । ଆଠ ବରଷର ଝିଅ ଅନୁପା, ବାରଦିନେ ତେର ରୋଗ । ଚାରି ବରଷର ଝିଅ ନିରୁପା । ତାର ସ୍ୱାସ୍ଥ୍ୟ ଟିକିଏ ଭଲ, କିନ୍ତୁ ଗୋଡ଼ପେଣ୍ଡାରେ ଖଉଜି । କୁଣ୍ଡାଇ କୁଣ୍ଡାଇ ଲହୁଲୁହାଣ କରେ । ଯାହା ଧରି ରାତିସାରା ବୋବାଳି ଛୁଟେ ।

ଚାକର ଚାକରାଣୀ ରଖିବାର ଶକ୍ତି ନାହିଁ । ଦୁଇବଖରିଆ ଚାଳ-ଘରର ଖଞ୍ଜା । ବଙ୍ଗାଳୀସାହିରେ । ଘରର ମାଲିକକୁ ମାସକୁ ବାରଟଙ୍କା ଭଡ଼ା ଠିକ୍ ସମୟରେ ଦେଇହେଉନାହିଁ । କଣ ମାରୁଆଡ଼ି ଘରେ ଗୁମାସ୍ତାଗିରି କରି କଅଣ ତାଙ୍କର ସ୍ୱାମୀ ଆନନ୍ଦଚନ୍ଦ୍ର ରୋଜଗାର କରିବେ ଯେ, ସୁଖରେ ଚଳିହେବ ?

ତଥାପି, ରହୁ, ଏ ପିଲାଟି ପାଖରେ ରହୁ । ତାଙ୍କର ସେ ପର, କିନ୍ତୁ ଅନୁପା, ନିରୁପା ଓ ସେମାନଙ୍କ ବାପାଙ୍କର ସେ ଆପଣାର । ଏକଦମ ପେଜପାଣି ପିଇ ପାଠ ପଢ଼ିବ । ଅନୁପା ପାଠ ପଢ଼ିବାକୁ ହାଇଁପାଇଁ ହେଉଛି, ତାକୁ ଚାରି ଅକ୍ଷର ପଢ଼ାଇବ । ସବୁ ବିଷୟରେ ସାହା ଭରସା ହେବ ଏ

ପିଲାଟି । ମଝିରେ ମଝିରେ ମାମୁଁ ଘରକୁ ସେ ତା ବାପାଙ୍କ ସଙ୍ଗରେ କେବେ କେବେ ଆସୁଥିଲା । ଦିନେ ଓଳିଏ ରହି ଗ୍ରାମକୁ ବାହୁଡ଼ୁଥିଲା । ଏଥର ସେ ରହିବାକୁ ଆସିଛି । କେଡ଼େ ଡେଙ୍ଗା ହୋଇଗଲାଣି !

ଇନ୍ଦିରା ବସନ୍ତର ହାତ ଧରି ପାଖକୁ ଓଟାରି ନେଇଥିଲେ । ଅଞ୍ଚଳରେ ଆଖିର ଲୁହ ପୋଛି ଦେଇଥିଲେ । ଗୁଣ୍ଡିକୁ ଆଉଜାଇ ବସନ୍ତର ମୁଣ୍ଡର କେଶ ଆଙ୍ଗୁଠିରେ ସାଉଁଳି ଦେଇଥିଲେ । କହିଥିଲେ, ରହୁ ସେ, ପାଠ ପଢ଼ିବ । ଝିଅ ଦୁଇଟା ଯେଉଁ ପେଜପାଣି ପିଇବେ, ଆଗ ସେଥିରୁ ଟିକେ ସେ ପିଇବ । ଖାଇବାକୁ ମନକଲା ଦରବ ଦେଇପାରିବ ନାହିଁ ଭାଇ, ଅପାଙ୍କୁ କହିବ, ସ୍ନେହ କେବେ ଊଣା କରିବ ନାହିଁ ।

ଖୀରକେଶରୀ ଆଖିରେ ଆଖିଏ କୃତଜ୍ଞତା ଭରି ଗଦ୍‌ଗଦ ହୋଇ କହିଥିଲେ, ମୋତେ ଏହା ଜଣାଥିଲା । ବସନ୍ତ ଭଲ ପିଲା । ମା ଓ ମାଇଁଙ୍କ ଭିତରେ ସେ ପ୍ରଭେଦ ଦେଖିବ ନାହିଁ । ମରେଁ ସରେଁ, ଯାହା ମୁଁ ହୁଏଁ, କର୍ତ୍ତବ୍ୟରେ କେବେ ତ୍ରୁଟି କରିବ ନାହିଁ ।

ବସନ୍ତ ଭଲ ପିଲା । ଭଦ୍ର ଓ କର୍ମିଷ୍ଠ । ବୁଦ୍ଧିମାନ୍ ଓ ଗମ୍ଭୀର । ଆଠଟି ବର୍ଷ କଟିଗଲାଣି ।

କେହି କେବେ କହିପାରିବ ନାହିଁ ଯେ, ସେ ଏ ଘରର ପୁଅ ନୁହେଁ, ଭଣଜା । ପାଠପଢ଼ା ସଙ୍ଗେ ସେ ଘରର ତତ୍ତ୍ୱ ନିଏ । ହାଟବଜାର କରେ । ଘରକାମରେ ଉପରେ ପଡ଼ି, ନାହିଁ ନାହିଁ ନ ମାନି, ଇନ୍ଦିରାଙ୍କୁ ସେ ସାହାଯ୍ୟ କରେ । ବାସନ ମଜା, ଘର ଖରକା, ଲୁଗା ଜାମା କଚା, ରୋଗଣା ପିଲାଙ୍କ ପାଇଁ ଔଷଧର ବ୍ୟବସ୍ଥା ।

ଅନୁପା, ନିରୁପା ଓ ପଛରେ ଜନ୍ମିଲା ଯେଉଁ ସୁରୂପା, ସମସ୍ତଙ୍କର ଯତ୍ନ ସେ ନେଉଛି । ସେମାନଙ୍କର ଅଳି ଅର୍ଦ୍ଦୋଳି ସେ କରୁଛି । ଗେହ୍ଲାଳିଆ

ଉତ୍ପାତ ସହୁଛନ୍ତି । ରାତି ଅଧଯାଏ ଆପେ ପାଠ ପଢ଼ି ଅନୁପା ଓ ନରୁପାଙ୍କୁ ପାଠ ପଢ଼ାଉଛନ୍ତି । ସେମାନଙ୍କୁ ଶାସନ କରିବାକୁ ଗାଳି ଦେଉଛନ୍ତି । କାନ ଓଟାରି ଚାପୁଡ଼ା ମାରୁଛନ୍ତି । ସେମାନଙ୍କୁ କାଖେଇ କୁଣ୍ଢାଇ, ମୁହଁରେ ଚୋକ ଦେଇ ଆହ୍ଲାଦ କରୁଛନ୍ତି ।

ଚଳନରେ ସଂକୋଚ ନାହିଁ ।

**ସେ** ଏ ଘରେ ପାଦ ନ ଦେଉଣୁ ତାର ମାମୁଁ ଆନନ୍ଦ ବିପଦରେ ପଡ଼ିଲେ । ଦଇବୀ ଦୁର୍ଯୋଗ ଘଟଣା । ପାଞ୍ଚ ସାତ ଟଙ୍କା ନୁହେଁ, ଏକାଥରେ ଛଅ ହଜାର ! ଦିନ ଦି'ପହରେ ଗହଳ ବଜାର ମାରୁଆଡ଼ିପଟିରେ ସେ ଟଙ୍କା ହରଣଚାଳ ହୋଇଗଲା । ସାଇକେଲ୍‌ରେ ଟଙ୍କାଥଳି ଝୁଲାଇ ଆନନ୍ଦ କେଉଁ ବ୍ୟାଙ୍କ୍‌ରେ ଜମା ଦେବାକୁ ଯାଉଥିଲେ । ସହର ବଜାର ଜାଗା । ମଟର, ଟ୍ରକ୍, ରିକ୍‌ସା, ସାଇକଲ୍ ଭିଡ଼ । ପଛରୁ ସାଇକଲ୍ ଧକ୍‌କା । ଆଗରେ ବିଜୁଳିଖମ୍ବର ମାଡ଼ । ରାସ୍ତା ଉପରେ କଚଡ଼ା ।

ପ୍ରାଣ ବଞ୍ଚିଗଲା ।

ଦେହରେ ଆଞ୍ଚୁଡ଼ା । ଦଶ ପନ୍ଦର ମିନିଟ୍ ହତଜ୍ଞାନ । ଲୋକେ ଟେକାଟେକି କରି ଉଠାଇଲେ । ସାଇକଲ୍‌ଟାର କିଛି ହୋଇନାହିଁ । ବ୍ୟାଗ୍ ସହିତେ ଟଙ୍କା ଅନ୍ତର୍ଦ୍ଧାନ । କାନ୍ଦିଲେ ବୋବାଇଲେ କିଏ ଆଉ ଦେଉଛି ?

ପୋଲିସ୍‌ରେ ଏତାଲା । ମହାଜନର ପରାମର୍ଶରେ ପୋଲିସ ଆନନ୍ଦଙ୍କୁ ସନ୍ଦେହ କରିଥିଲେ । ସେମାନେ ଯାହା ଭାବନ୍ତୁ, ମହାଜନ ଘର ପ୍ରଚାର କଲେ ଯେ କୋଡ଼ିଏ ବର୍ଷର ବିଶ୍ୱାସୀ ଚାକର, ଆଗୁରୁ ଆଗୁରୁ ବିଶ୍ୱାସ ଦେଖାଇ ଶେଷକୁ ଫିକର କରି ସାଇକଲ ଦୁର୍ଘଟଣାର ପେଖନାରେ ନିଜେ ଟଙ୍କାତକ ଚିତାକାଟି ନେଲା ।

ତିରିଶ ଟଙ୍କା ଦରମାକୁ ଚାଳିଶ ଟଙ୍କାକୁ ବଢ଼ାଇବାକୁ ଆନନ୍ଦ ପାଞ୍ଚ ବର୍ଷ କାଳ ଅଳି କରିଥିଲେ । ମହାଜନ ଶୁଣି ନ ଥିଲା । ଓଲଟି ସେ ଚୋକ୍‌ଠୋକ ଜବାବ ଦେଇଥିଲା, ବେପାର ଉପରୁ ଗୈରିଚମାରି କରି ଯାହା ଭେଉଛ, ସେଥିରେ କୋଠା ତୋଳିପାରିବ । ଛାର ଦଶଟା ଟଙ୍କା ବଢ଼ାଇବାକୁ କଠାଳ କରୁଛ କାହିଁକି ?

ଇଦ୍ଧବଙ୍କୁ ସେ କହିଥିଲେ, ଖାଲି ଗୋଟାଏ ପଟଆଗ ପାଇଁ, ସେହି ବଡ଼ ମହାଜନର ମନ ବଢ଼ିବାକୁ, ଦରମା କେଇଟି ଟଙ୍କା ବଢ଼ାଇବାକୁ ହାତ ଯୋଡ଼ି ମୁଁ ଜଣାଣ କରିଥିଲି । ସେ ମୋ ଅନୁରୋଧକୁ ଆଡ଼େଇଦେଲା । ତା ପାଇଁ ମୁଁ କଅଣ ନ କରିଛି କହ ଇଦ୍ଧବ ! ଦିନରାତି ଖଟିଛି । ତାର କଳାବଜାର ବେପାରରେ ନ କରିଲା କାମ ମୁଁ କରିଛି । ବେଆଇନ୍ କାମ ।

ଆ କୁରଡ଼ି ମତେ ହାଣେର ବିପଦ ନିଜ ମୁଣ୍ଡକୁ ମୁଁ ଟାଣି ଆଣିଛି । ମିଛ, ଧପ୍‌ପା, ମୋହବତ୍‌-ମିଛୁଆ ପଣ । ଜାଲଜାଲିଆତି, ଦୋହରା-ହିସାବ ସବୁ ମୁଁ କରିଛି । ତଳୁ ଉପରଯାଏ, ଯେଉଁମାନଙ୍କ ହାତରେ କ୍ଷମତାର ଡୋର ଅଛି, ତାଙ୍କ ଭିତରୁ ଯେଉଁମାନେ ଠକଲା, ତାଙ୍କ ଓଠରେ ମହୁ ବୋଳିଛି । ମହାଜନର କାମ ହାସଲ କରିଛି । ମିଠା ଆଙ୍ଗୁଠିକୁ ତମମାନଙ୍କୁ ଚଟାଇ ଖାଲି ବଞ୍ଚାଇ ରଖିଛି । ପେଟକୁ ମୁଠାଏ ଭଲ କରି କେବେ ଖାଇବାକୁ ଦେଇପାରିନାହିଁ । ଦେହ ଘୋଡ଼ାଇବାକୁ ସୁନ୍ଦର ଦାମିକା ଶାଢ଼ି ଖଣ୍ଡେ ତମକୁ ଦେଇପାରିନାହିଁ । ଗହଣାଗାଣ୍ଠି କଥା ପଚାରେ କିଏ ? ମହାଜନକୁ ଏବେ ପାନେ ଦେଇଛି ।

ମରମ କଥା ଇଦ୍ଧବ ବୁଝିଥିଲେ । ମୁହଁ ଖୋଲି ଓଲଟ ପ୍ରଶ୍ନ ସ୍ୱାମୀଙ୍କୁ ସେ ପଚାରି ନ ଥିଲେ । ଦେହହାତ ଦରଜ ପାଇଁ ଖଟିଆରେ

ଶୋଇଥିବା ଆନନ୍ଦ ମହାପାତ୍ରଙ୍କ ଆଖି ଗଣ୍ଡିରେ ପୁରୁଣା ଜଡ଼ା ତେଲ ମାଲିସ୍ କରୁଥିଲେ । ମନେ ମନେ ନିଜକୁ ସେ ପ୍ରଶ୍ନ କରିଥିଲେ, କୁଆଡ଼େ ଗଲା ସଚ୍ଚୋଟପଣିଆ ?

ସେ ଅଧାପାଠୁଆ ଥିଲେ । ଗୃହାଳ ଓ ସ୍କୁଲରେ ଶିଖି ମୁଖସ୍ଥ କରିଥିବା ହିତୋପଦେଶ, ନୂଆ ନୂଆ ବେଳେ ଇନ୍ଦିରାଙ୍କ ଆଗରେ ସେ ପ୍ରଚାର କରୁଥିଲେ—ସର୍ବଦା ସତ୍ୟ କହିବ । ପରର ଦ୍ରବ୍ୟକୁ ଲୋଭ କରିବ ନାହିଁ । ଅନ୍ୟର ବଡ଼ତ୍ତ ଦେଖି ଈର୍ଷା-ପରାୟଣ ହେବ ନାହିଁ । ସରଳ ଜୀବନ ଅତିବାହିତ କରିବ । କର୍ମିଷ୍ଠ ହେବ ।

ନିପଟ ମଫସଲଗ୍ରାମରେ ସେ ବୋହୂପଣିଆ କରିଥିଲେ । ମୁଣ୍ଡରେ ଗୃହଖଣ୍ଡେ ଓଢ଼ଣା । ନଇଁ ନଇଁ ଝୁମୁଝୁମୁ ଚାଲି । ଶାଶୁଙ୍କର ଠିଆ ଗୋଇଠା ମାଡ଼ । ସୁକୁ ସୁକୁ କାନ୍ଦଣା । ରାତି ଦି' ପହରେ ଶୋଇବା-ଘରେ ପାଦ ଦେଉଁଣୁ ଆଲୁଅ ଲିଭାଇ ସେ ପାଖକୁ ଟାଣିନିଅନ୍ତି । ବସନ ଦୂର କରନ୍ତି । ବଳି ବର୍ଣ୍ଣ ଅନ୍ଧାର । ଆଖିରେ ନ ଦେଖି ସେ ତାଙ୍କୁ ହାତରେ ଦେଖନ୍ତି । କାନରେ କହନ୍ତି ଶରଧା କରି, ଶାଶୁ ଶ୍ୱଶୁର ଯାହା ହେଲେ ବି ଗୁରୁଜନ ! ତାଙ୍କୁ ଭକ୍ତି କରିବ । ତାଙ୍କର ଆକଟ ମନରେ ଘେନିବ ନାହିଁ । ଶୁଣ ଇନ୍ଦିରା ! ଦିଅର, ସେ ଭାଇ ସମାନ । ତାକୁ ସ୍ନେହ କରିବ ।

ଲୋକେ ନିନ୍ଦା ରଟାଇଲେ ଯେ ଇନ୍ଦିରା କୁଆଡ଼େ ଶାଶୁଙ୍କୁ ରାହାବାଳୀ ଆଖ୍ୟା ଦେଲେ । ଶଶୁରଙ୍କୁ ମାଇପିବୋଲା ଓ ଦିଅରଙ୍କୁ ଛତର ଲଫଙ୍ଗା କହିଲେ । ଗେରସ୍ତଙ୍କୁ ଶିଖାଇ ତାଙ୍କ ସଙ୍ଗରେ ସହରକୁ ପଳାଇଆସିବାକୁ ଆଡ଼ରୁଷା ଦେଲେ । ସେଇଥିପାଇଁ ଆନନ୍ଦ ତାଙ୍କୁ କଟକ ନେଇଆସିଲେ । ଇନ୍ଦିରାଙ୍କର କଟକ ନ ଆସିବାକୁ ପ୍ରତିବାଦ କୁଆଡ଼େ ଲୋକଦେଖାଣିଆ ଭଲେଇପଣ ।

ମନେ ଅଛି, ବାପ ଓ ମାଆଙ୍କର କଟୁ ଭର୍ତ୍ସନା । ସାନଭାଇର ଛୁଗୁଲି କଥା । ଗ୍ରାମଲୋକଙ୍କର ଟାହିଟାପରା—ଲକ୍ଷ୍ମଣଙ୍କର ଉନଗାର ସାମାନ୍ୟ ମାତର । କଟକ ସହରରେ ନିଜେ ରାମଙ୍କର ଚିରଣ ଗାରକୁ ସେଠିକା ରାବଣେ ଫୁ କରିଦେବେ ।

ସାନ ଜାଆ ସେ ବଡ଼ଘର ଝିଅ । ଦାମିକା ଗହଣା ବୋଝେଇ ହୋଇ ଯାନଯୌତୁକ ଧରି ଆସିଥିଲା । ସେ ଫୁଲେଇ । ଶାଶୁଙ୍କର ଗେହ୍ଲା ବୋହୂ । ସେହି ସୁଖଦା କରି କରି ହସିଥିଲା । କହିଥିଲା ତୁନିତୁନିକା, ତମ ଦିଅର-ଲକ୍ଷ୍ମଣ ପୁଣି ସହରରେ ସରକାରୀ ଚାକିରି ଛାଡ଼ି ତମକୁ ଜଗିବାକୁ କଟକ ଯାଇପାରିବେ ନାହିଁ । ତମେ କଟକ ଯାଅ ନାହିଁ । ଏଇଠି ରହ । ଯେଉଁ ଅପ୍‌ସରା ରୂପ ପାଇଛ···

ଚୁପ୍ ରହ ! ମତେ ତୁ କେଉଁଣ ପରି ଦେଖିଲୁ କି ? ତୋ କୋଚରା ଦେହରେ ଯେତେ ପୁଟ ବୋଳିଲେ, ତୋର ଧଡ଼ିଆ ଧେଡ଼ଙ୍ଗା ଅଙ୍ଗରେ ଯେତେ ସୁନା ରୂପା ଗହଣା ଝୁଲିଲେ କି ହେବ ? ତୋ ନିଜ ଆଖି ତତେ କହୁଥିବ, ମତେ ଯେତେ ମାଟିକୁ ମାଠ, ମୁଁ ସେତିକି ଦରପୋଡ଼ା କାଠ । ତୋ ମୁହଁକୁ ଲାଜ ନାହିଁ ଲୋ ଟୋକି ! କାଲି ଆସି ଏ ଘରେ ପାଦ ଦେଇଛୁ । ମାନ ମହତ ଭୁଲି, ବଡ଼ ଭଉଣୀ ପରି ମୁଁ ତୋର ବଡ ଜାଆ, ତୁ ମତେ ଦେଖେଇ ଦେଖେଇ ଅସନା ପରିହାସ କରୁଛୁ ?

ଇନ୍ଦିରାଙ୍କ ଆଖିରେ ନିଆଁ ଜଳୁଥିଲା । ସେ ଆଖିରୁ ତତଲା ଲୁହ ଝରୁଥିଲା ।

ସୁଖଦା ଡରିଲେ । ଥରୁଥିଲା । ବସୁରୁଥିଲା ପରା ବଡପାଟି କରି ବାହୁନି କାନ୍ଦିବ । ବହାବାଳୀ ଶାଶୂ କାଠଫାଳିଆ ଧରି ଧାଇଁଆସିବେ । ଇନ୍ଦିରାଙ୍କ ପିଠିରୁ ଛାଲି ଉତାରିବେ ।

ସୁଖଦା କାନ୍ଦିଲା ନାହିଁ । ସୁଖଦା ବୋବାଳି ଛାଡ଼ିଲା ନାହିଁ । ସେ ମୁହଁ ମୋଡ଼ିଲା । ସେ ହସିଲା । ଶାଣୁଆଁ ହସ !

ଏବଯାଏ ଝଣିଯାଉଛି ସେ ହସ । କାନରେ ବାଜିଯାଉଛି ସୁଖଦାର ଚୁଗୁଲି କଥା—ଭଲେଇ ହେଉଛ ଅପା ? ବୁଢ଼ା ବରଅରକୁ ବାହା ନ କରାଇ-ଦେବାକୁ ଶାଶୁଙ୍କୁ ଉପଦେଶ ଦେଇଥିଲ କି ? କାହିଁକି ଦେଢ଼ଶୁରେ ତମୁକୁ କଟକ ନେଇଯାଉଛନ୍ତି, ମନକୁ ପଚାର । ସେହି ସାଆନ୍ତଙ୍କୁ ପଚାର ।

ଇନ୍ଦିରା ଉତ୍ତର ଦେବା ଆଗରୁ ସୁଖଦା ଖଞ୍ଜା ଭିତରକୁ ଚାଲି-ଯାଇଥିଲା ।

ନନନ୍ଦଙ୍କ ମନର ଦୁଃଖ ତାଙ୍କଠାରୁ ଶୁଣି ଦିନେ ଇନ୍ଦିରା ଶାଶୁଙ୍କୁ ଜଣାଇଥିଲେ ଯେ, ଯୌତୁକ ଲୋଭରେ କାଳୀ ବୋହୂ କଲେ ନନନ୍ଦ ସେ ବୋହୂର ମୁହଁ ଚାହିଁବେ ନାହିଁ ।

ଯାହାର ଯିଏ ତାର ସେ ହେଲା । କାଳୀ ଠାକୁରାଣୀ ତାଙ୍କ ମୁହଁକୁ ଚନ୍ଦ୍ରଉଦିଆ ଲକ୍ଷ୍ମୀ ସରସ୍ୱତୀ ପରି ଦିଶିଲା । ଭଲ ହେଲା । କନିଆ-ଶାଶୁଙ୍କ ସଙ୍ଗେ ଯେଉଁ ଗୋପନ-କଥା, ତାହା ଛ'ମାସର ବୋହୂ ସୁଖଦାର କାନକୁ କିଏ ନେଲା ? ହିତସ୍ୱ-ପକ୍ଷ କନିଆ-ଶାଶୁଙ୍କର ହିରୁ ଅତ୍ୟାଚାର ସହି ଇନ୍ଦିରା ଲୋକହସା ହେବା ଭୟରେ କାହାରି ଆଗରେ କେବେ ମୁହଁ ଖୋଲି ନ ଥିଲେ ।

ଏହା କଣ ସାବତ ଶାଶୁଙ୍କର ଗୁଣ ? ଅବା, ସେହି ଅଭଦ୍ର-ପାଠୁଆ ଲୋଭିଲା-ଆଖିଆ ସାବତ ଦିଅର ନନନ୍ଦଙ୍କ ଆକ୍ରୋଶ ? ଅଶ୍ଳୀଳ ପରିହାସ ତ କରୁଥିଲେ । କିଛି ନ କହି ହସି ହସି ଇନ୍ଦିରା ଆଡ଼େଇ ରହୁଥିଲେ ।

ମଧୁସୂଦନ ସାହସ ବଢ଼ିଲା । ହାତ ଧରି ଦିନେ ସେ ପାଖକୁ ଟାଣି-ନେଉଥିଲେ । ମାତ୍ର ଅନ୍ଧାର ବେଳ । ବୃନ୍ଦାବତୀଙ୍କ ଚଉରା ପାଖ । ସଞ୍ଜବତୀ

ଦେଇ ଓଳଗି ହୋଇ ଇନ୍ଦିରା ଉଠି ଠିଆ ହୋଇଥିଲେ । ଗୋଟିଏ ଚାପୁଡ଼ାରେ ବିନନ୍ଦଙ୍କର ମୁଣ୍ଡରୁ ଭୂତ ଛାଡ଼ି ପଳାଇଥିଲା । ସେଥିପରେ ସେ ଖସି ପଳାଇଥିଲେ ।

ଇନ୍ଦିରା ମଣିଥିଲେ, ବିନନ୍ଦଙ୍କ ଉଚ୍ଛୃଙ୍ଖଳତା ପାଇଁ ଆପଣାଛାଏଁ ଉଠିଥିବା ହାତର ଚାପୁଡ଼ା ଭଲ ବଳଦକୁ ଛୁଟେର କାମ କରିବ । ଭଲରେ ଭଲରେ, ନିରୋଳାରେ ବୁଝାମଣା ହୋଇଗଲା । ବିନନ୍ଦ ବୁଝିଥିବେ, ଦିଅର ଓ ଭାଉଜଙ୍କ ମଧ୍ୟରେ ନିଶ୍ଚିତ ଥଟ୍ଟା ତାମସାର ସୀମା ଅଛି ।

ବିନନ୍ଦ ଭଦ୍ର ହୋଇଥିଲେ । କେବଳ ବ୍ୟବହାରରେ ନୁହେଁ, ଭାଷାରେ ମଧ୍ୟ ସଂଯତ ହୋଇଥିଲେ ।

ଅପୂରଣ କାମନା ପାଇଁ କ'ଣ ତାଙ୍କ ମନରେ କ୍ରୋଧ କୁହୁଳୁଥିଲା ? ଝିଅଟି କାଳକୋତରୀ ବୋଲି ମୁହଁ ଶୁଖାଇ ତାକୁ ବିବାହ କରିବେ ନାହିଁ ବୋଲି ବିନନ୍ଦ ଇନ୍ଦିରାଙ୍କ ଆଗରେ ଗୁହାରି କରିଥିଲେ । ଶେଷକୁ ସେଇଆ ହେଲା । ସେଥି ବିନନ୍ଦ ପୁଣି କାଳୀ ଘରଣୀର ମନ ନେବାକୁ ତିଳକୁ ତାଳ କରି ତା' ଆଗରେ ଡାହାମିଛ କେଉଁ ଅସନା ଅଧର୍ମ କଥା ଗପିଲେ ? କ'ଣ ସେ ଗପିଲେ ଯେ ସାନଜାଆଟା ଦେହରେ କଳଙ୍କଲଗା ଭାଷା ଉଚ୍ଚାରିଲା ?

ଆନନ୍ଦ କାହାରି ପ୍ରତିବାଦ ଘେନା କଲେ ନାହିଁ । ନିଜ ସଙ୍ଗରେ ଇନ୍ଦିରାଙ୍କୁ କଟକ ନେଇଆସିଥିଲେ ।

ଶ୍ୱଶୁରେ ବଞ୍ଚିଥିବା ଯାଏ ଅକାଳେ ସକାଳେ ଆସିଲେ ସଙ୍ଗରେ ଚାଉଳ, ମୁଗ, ପନିପରିବା ନେଇ ଆସୁଥିଲେ । ଦୁଇ ତିନି ଦିନ ରହି, ବଡ଼ ନାତୁଣୀ ସୋଗଣା ଅନୁପାକୁ ହସାଇ ଖେଳାଇ ଘରକୁ ବାହୁଡ଼ୁଥିଲେ ।

ଶାଶୁ ଥରେ ଅଧେ ଆସିଥିଲେ । ଇନ୍ଦରଙ୍କ ସଂସାରର ହୀନାବସ୍ଥା ଦେଖି ନାକ ଟେକିଥିଲେ । ଉପଦେଶ ଛଳରେ ଗାଳିଗୁଲଜ କରି ଫେରି-ଯାଇଥିଲେ ।

ଜନ୍ମକଲା ପୁଅ ବନନ୍ଦଙ୍କ ପାଖକୁ ବୁଲି ଗଲେ ଶାଶୁ ସେଇଠି ମାସ ମାସ କଟାନ୍ତି । ସାନ ବୋହୂ ପୁଣ୍ୟରେ । ସେ କୁଆଡ଼େ ଲକ୍ଷ୍ମୀ ବୋହୂ ! ତା'ର ତିନ ପୁଅ ଜନ୍ମିଲେଣି । ସେହି ଲକ୍ଷ୍ମୀ ବୋହୂ ସୁଖଦା ପାଇଁ ବନନ୍ଦଙ୍କ ଚାକିରିରେ ଉନ୍ନତି ହେଉଛି । ଦରମାକୁ ପଚାରେ କିଏ ? ଉପରି ପଇସାରେ ଟ୍ରଙ୍କ ବାକସ ଭରିଯାଉଛି । ଭାଗ୍ୟ ନେଇ ଧନ ଆସେ ପରା ! ଶାଶୁ ଉପଦେଶ ଦେଇଯାଆନ୍ତି—ସହର ବଜାର ଜାଗା । କେତେ ଲୋକ ଆସୁଛନ୍ତି ଯାଉଛନ୍ତି । ସାବଧାନ ହୋଇ ଚଳିବ, ବୋହୂ ! ମହତ ସରିଲେ ସବୁ ସରିଲା ।

ସମସ୍ତ କାହାକୁ ଅନାଇଁ ବସେ ନାହିଁ । ତାର ଅଦେଖା ଝାଞ୍ଜୁଣୀରେ ଭଲମନ୍ଦ ସବୁ ଝାଟେଇ ସଫା କରୁଥାଏ—ଅହରହ ।

ମନ ଫଟାଫଟି ଆରେଇଗଲା । ସ୍ୱାଭାବିକ ହେଲା । ଶଶୁରେ ବାଞ୍ଚି-ଥାଉଣୁ ଦୁଇ ଭାଇ ନିଜ ନିଜର ସଂସାର ଚଳାଇବାରେ ବ୍ୟସ୍ତ ରହିଲେ । ସମସ୍ତଙ୍କର ଅଭାବ । କିଏ କାହାର ହାନିଲାଭ ବୁଝାଇବାକୁ ହାତ ବଢ଼ାଇଲେ ନାହିଁ । ଶାଶୁ ରଟାଇଲେ ବଡ଼ବୋହୂ ଇନ୍ଦରଙ୍କର ଅବଗୁଣ । ଗ୍ରାମଲୋକେ ଦୋଷ ଟାଳିଦେଲେ ସାନବୋହୂ ସୁଖଦାଙ୍କ ଉପରକୁ । ବୁଢ଼ା ଶଶୁରେ ନିଦାବସ୍ଥୁ ହୋଇ ରହିଲେ ।

ଶଶୁରେ ଆଖି ବୁଜିଲା ପରେ ପ୍ରକୃତ ପାଲା ଆରମ୍ଭ ହେଲା । ସୁଦକ୍ଷ ଶାଶୁ ଘରବାରି ଓ ଚାଷଜମିର ଖବର ବୁଝିଲେ । ଜମି ପାଞ୍ଚ ମାଣ, ଯାହା ଇନ୍ଦରଙ୍କର ଶାଶୁଙ୍କ ନାମରେ କିଣା ହୋଇଥିଲା, ତାକୁ ସେ ସାନ ପୁଅଙ୍କ ନାମରେ ଦତ୍ତପତ୍ର ରେଜିଷ୍ଟ୍ରୀ କଲେ ।

ଖବର ଲୁଚି ରହିଲା ନାହିଁ । ଆନନ୍ଦ ଓ ବନନ୍ଦଙ୍କର କୋର୍ଟରେ ଲଢ଼ାଲଢ଼ି । ଇନ୍ଦିରାଙ୍କ ଦେହର ଗହଣାଗାଣ୍ଠି ବାହି ହେଲା ପରେ, ବଡ଼ ଭଉଣୀଙ୍କ ସାରକେଶ୍ୱରଙ୍କ ମଧ୍ୟସ୍ଥତାରେ ମକଦ୍ଦମା ଉଠା ହେଲା । ଶାଶୁ ପାଇଲେ ମାସେ । ବାକି ଗୃହମାଣ ଦୁଇ ଭାଇଙ୍କ ମଧ୍ୟରେ ସମାନ ଭାଗରେ ବଣ୍ଟା ହେଲା । ପୈତୃକ ସମ୍ପତ୍ତି ତିନି ମାଣ ମଧ୍ୟ ସେହି ଖଣ୍ଡରେ ବଣ୍ଟନ କରାଗଲା । ଘରଡିହ ଓ ଘର ଇଜମାଲି ରହିଲା ।

ଝଗଡ଼ା ତୁଟିଲା । ଆନନ୍ଦ ତାଙ୍କ ଭାଗରେ ପଡ଼ିଥିବା ଜମିକୁ ଭାଗ ବର୍ଷା ଲଗାଇଦେଲେ । ଇଜମାଲି ଘର ସେମିତି ରହିଲା । ଇନ୍ଦିରା ସେଥିରେ ସନ୍ତୁଷ୍ଟ ହେଲେ ନାହିଁ । କଳମଞ୍ଜି ସେହି ଗୃହ ଗୁଣ୍ଠ ଜମିରେ ପୋତା ହୋଇ ରହିଲା । ଆନନ୍ଦ ବୁଝାଇଦେଲେ ଯେ, ତାଙ୍କ ବୋଉ ବଞ୍ଚିଥିବାଯାଏ ସେତକ ସେମିତି ଥିବ । ସେ ଆଖି ବୁଜିଲେ ତାର ଖବର ବୁଝାହେବ । ବନନ୍ଦର ପାଞ୍ଚ ପୁଅ ହେଲେଣି । ସପ୍ଲାଇ ଅଫିସରେ ସେ ବଡ଼ କିରାଣି । ଭଲ ଗୃହ ପଇସା ହେଉଛି । ପୁରୀ ସହରରେ ବଡ଼ ଜାଗା ଖଣ୍ଡେ କିଣିଛି । ଘର ତୋଳାଇବାକୁ ଆୟୋଜନ କରୁଛି ।

ତମର କି ଥାଏ ମ ?

ଗାଁର ଘର ଓ ଡିହ ତାର ଲୋଡ଼ା ହେବ ନାହିଁ ।

ନ ହେଲେ ସେ ଆଉ କାହାକୁ ବିକିଦେବ ।

ହଉ, ଦେଖିବ ରହ, କିଏ କାହାକୁ ବିକୁଛି ।

ବୁଢ଼ୀଶାଶୁ ହାଉଳେ ହାଉଳେ ଘରର ଆସବାବପତ୍ର ବିକିଲେ । ଶେଷକୁ ପୁରୁଣା ଘରକୁ ତଳେ ଲୋଟିବାକୁ ଛାଡ଼ିଦେଇ ସାନ ପୁଅଙ୍କ ପାଖକୁ ତାଙ୍କ ନୂଆ କୋଠାକୁ ପୁରୀ ଚାଲିଗଲେ ।

ଜାଣି ଜାଣି ଆନନ୍ଦ ସେହି ଘରର ତତ୍ତ୍ୱ ନେଲେ ନାହିଁ । ଗୋଟାଏ ତୋଫାନରେ ସେ ଘର ତଳେ ଲୋଟିଲା । କାଠ ବାଉଁଶ ଲକ୍ଷ୍ମୀପୁରର

ଉପକାରିଆ ଆତ୍ମୀୟମାନଙ୍କର ଚକ୍ରଜାଳ ହେଲା । ଆନନ୍ଦ-ଗୃମାସ୍ତା ସବୁ ଜାଣିଲେ । ନଚେତ୍ ଯାଇ ଦେଖିଆସିଲେ । କିଛି କହିଲେ ନାହିଁ । ବନନ୍ଦ-କବରୀ ଚିଠି ପାଇଲେ, ଗ୍ରାମକୁ ଆସିଲେ ନାହିଁ ।

ଘରଡିହ ଓ ଭଙ୍ଗା କାନ୍ଥମାନ ସେମିତି ଦାନ୍ତ ଦେଖାଇ ପଡ଼ିଛି । ଅନ୍ଧାର ରାତିରେ ଅଜଣା ବାଟୋଇଙ୍କର ଭୟର କାରଣ ହୋଇଛି ।

ଇନ୍ଦିରାଙ୍କର ସଂସାର ଭଡ଼ାଘରେ କଟୁଥିଲା । ଆନନ୍ଦ-ଗୃମାସ୍ତାଙ୍କର ପାଚେଲାପଣ ପାଇଁ ପେଟକୁ ଦାନା ଓ ପିଠିକୁ କନାର ସିନା ଅଭାବ ହୋଇ-ନାହିଁ, ଅଏସ୍ କ'ଣ ସେ କେବେ ଜାଣିଲେ ନାହିଁ । ଭଲ ଶାଢ଼ି ଖଣ୍ଡେ ପିନ୍ଧିବାକୁ, ହାତକଟା ବ୍ଲାଉଜଟିଏ ଦେହରେ ଗଳାଇ ଛାତିରୁ ଅଧେ ଓ ନାଭି ଉପରୁ, ପେଟ ଆଉ ପିଠିରୁ ବାରଣା ଦେଖାଇ, ଓଠରେ ରଙ୍ଗ ଓ ଆଖିରେ ଲମ୍ବଲମ୍ବିଆ କଜଳ ପିନ୍ଧି ଅଘରଦୁଆରି ଆଉମାନଙ୍କ ପରି ସିନେମା ଥେଟରେ ଦେଖିବାକୁ କ'ଣ ମନ ହୁଏ ନାହିଁ ?

ହୁଏ । ସମ୍ବଳ ନାହିଁ । ବେଳ ନାହିଁ । କାହାକୁ ଦର ଜଗାଇ ସ୍ୱାମୀଙ୍କ ସଙ୍ଗରେ କେବେ କେବେ ସେ ଅବଶ୍ୟ ଯାଉଛନ୍ତି । ଗଲାଆସିଲା ବେଳେ ମୁଣ୍ଡରୁ ଓଢ଼ଣା ଖସିଲେ, ବାଟର ବାଟୋଇ ମୁହଁକୁ ଚାହିଁଲେ ଓଢ଼ଣା ଟେକି-ଦେବାକୁ ସ୍ୱାମୀ ନିର୍ଦ୍ଦେଶ ଦିଅନ୍ତି ।

ମୁହଁ ଜଳିଯାଏ । ମନଭିତରେ ଅଭିମାନ କୁହୁଳିଉଠେ । ମନ ପଚାରେ କିଅଣ ଦେଇଛ ଯେ, ସେମାନେ ଗ୍ରେଫକରି ନେବେ ? ଯେଉଁ ଦେଣା ବିକି ମକଦମା ଲଢ଼ିଥିଲ, ସେତକ ଫେରାଇଦେଇନ । ନେଇଛ, ସବୁ ମୋର ଲୁଟି-ନେଇଛ—ଦେହ, ମନ, ଜୀବନ ଓ ମୋର ପରିଶ୍ରମ ।

ଏକୁଟିଆ ଚଳନରେ, ଘରର ସବୁ ପ୍ରକାର କାମର ଫାଙ୍କରେ, ନିଜକୁ ନିଜେ ଦେଖି ମୁଁ ଖୁସି ହୁଏ । ନିଜେ ମୁଁ ମୋର ଅମୂଲ୍ୟ ସମ୍ପତ୍ତି । ମୋର ରଙ୍ଗ ଅଛି, ମୋର ରୂପ ଅଛି । ଦିନ, ମାସ, ବର୍ଷ ଗଣନାରେ

ବୟସ ଆଗେଇ ଚାଲିଲେ ବି ମୋର ସ୍ୱାସ୍ଥ୍ୟ ଅଛି, ଯୌବନ ଅଛି । ନିଜକୁ ନିଜେ ମୁଁ ଭୋଗ କରୁଛି । ତମେ ମୋର ସ୍ୱାମୀ, ମୋ ଭୋଗର, ମୋ ଆନନ୍ଦର ।

ମୋ ଭାଗ୍ୟର ମଧ୍ୟ ।

ଭାବନ୍ତି ଇନ୍ଦିରା, ସେଇଥିପାଇଁ ମୋର ଆନୁଗତ୍ୟ, ମୋର ଅକୁଣ୍ଠ ସେବା । ତମର ଭରପୂର ସ୍ୱାସ୍ଥ୍ୟ ଭିତରେ ମୋର ଆନନ୍ଦ ଖେଳିବୁଲେ । ତମର ଶୁଖିଲା ମୁହଁ ଓ ଝାଉଁଳା ସବୁ ଦେଖିଲେ କେଉଁ ଅଜଣା ଉଦ୍‌ବେଗରେ ମନ ଆକୁଳ ହୁଏ । ତମକୁ ରୋଗବଇରାଗ ଧରିଲେ ମୋର ଅନ୍ତରାତ୍ମା ଥରିଉଠେ ।

ମୁଁ ଭୁମର, ଏହା ଜାଣି ମଧ୍ୟ ମୁଣ୍ଡର ଓଢ଼ଣା ଆପେ ଆପେ ଖସିଗଲେ ତମେ ବିବ୍ରତ ହୁଅ କାହିଁକି ? ଯେଉଁମାନେ ହାଟ ବଜାରରେ, ଯାତ୍ରା ଓ ମେଳାରେ ନିଜ ନିଜର ରୂପଯୌବନର ଗୌରବକୁ ପରିଚିତ ଅପରିଚିତ, ଶ୍ରେଷ୍ଠ ବଡ଼ ଗଣ୍ୟମାନ୍ୟ ସମସ୍ତଙ୍କୁ ଦେଖାଇ ଦେଖାଇ ଗର୍ବ ଓ ଆନନ୍ଦ ଅନୁଭବ କରି ବାହୁଡ଼ନ୍ତି, ସେମାନଙ୍କର କ'ଣ କ୍ଷତି ହୁଏ ?

କାମ କରି କରି ଥକିଲା ଦେହ ଓ ଶୁଖିଲା ମୁହଁ ଘେନି କାଖରେ ମାଲିକର ବସ୍ତାନି ବୋହି, ପଇସା ସରିଯିବ ବୋଲି ଗଦାଏ ବାଟ ଖଣ୍ଡିଆ ଚପଲ ଘୋଷାରି ଘୋଷାରି, ଘାତ ଅଧରେ ଦରମଇଳା ଝାଳୁଆ କମିଜର ଦୁର୍ଗନ୍ଧ ଛୁଟାଇ ତମେ ଫେରିଆସ । ତମକୁ ଦେଖିଲେ ମୋର ଏକୁଟିଆ ଜୀବନର ବାଇଆଣୀପଣର ଦୁଃଖ, ଶ୍ରେଷ୍ଠ ସଂସାରର ଟିକନିଖି ପାଇଟିର ଜଞ୍ଜାଳ ସବୁ ମୁଁ ଭୁଲିଯାଏ ।

ତମକୁ ପାଇଲେ ସବୁ ମୁଁ ପାଏଁ । ତମ ପାଖରେ ମୋର ଧନ-ଦରବ, ଲୁଗା ବନ୍ଧାଜନ୍ଧ, ଗହଣାଗାଣ୍ଠିର ମାଗୁଣି ନ ଥାଏ । ମୋର ତ ଗୋଟିଏ ବୋଲି ମାଗୁଣି । ସେ ମାଗୁଣି ଏକା ତମେ ।

ତମେ ମତେ ଭଲ ପାଅ । ମୁଁ ଏହା ଜାଣେ । ତମର ଦୁଇଟି ଝିଅଙ୍କର ଜନମ ହେଲା, ତଥାପି ତମେ ଟଙ୍କା କଉଡ଼ି କାରବାରରେ କେବେ ମୋ ପାଖରେ ମନ ଖୋଲି କଥା କହୁନାହଁ । ମହାଜନର ଟଙ୍କା ସତରେ ଗୁଣ୍ଡାମାନେ ହରଣଚାଳ କଲେ, ଅବା ଲୋକେ ଯେଉଁ ଅପବାଦର ନାଗରା ପିଟୁଛନ୍ତି ଯେ ସେତକ ତମେ ଆତ୍ମସାତ୍ କଲ, କେଉଁଟା ସତ ? ପ୍ରକୃତରେ ତମେ ଯଦି ଆତ୍ମସାତ୍ କଲ, ସେ ଟଙ୍କା ରଖିଲ କେଉଁଠି ?

ପୀଡ଼ିତ ସ୍ୱାମୀଙ୍କର ସେବା କରୁଣୁ ଇନ୍ଦିରା ଏହିପରି କେତେ କଅଣ ଅବାନ୍ତର ଚିନ୍ତା କରୁଥିଲେ । ମୁହଁ ଖୋଲି ପଚାରିବାକୁ ସାହସ କରିପାରୁ ନ ଥିଲେ । ଚଉଦ ବର୍ଷ ବୟସର ପିଲା ବଙ୍କିମ ତା ମାମୁଁ ଆନନ୍ଦଙ୍କର ସେବା କରୁଥାଏ । ଅକୁଣ୍ଠିତ ଚିତ୍ତ । ନଜର ପଡ଼ାପଡ଼ିକୁ ପଛକୁ ପକାଇ ଘରର ଯାବତୀୟ କାମ କରେ । ଆଠ ବର୍ଷର ରୋଗଣା ମିମିକା ଝିଅ ଅନୁପା ଜର ଓ ଝାଡ଼ା ରୋଗରେ ଘାଣ୍ଟି ହେଉଥାଏ । ବନ୍ଧଣା ମଇଳା କରେ । ଗୃହ ବରଷର ଝିଅ ବିରୁପାର ନଳୀଗୋଡ଼ରେ ବଇଁଚ ମାଡ଼ିଥାଏ । ସେ ନଖରେ କୁଣ୍ଡାଇ ରକ୍ତାକ୍ତ ହେଉଥାଏ ।

ବଙ୍କିମ ସେ ଦୁହିଁଙ୍କର ଯତ୍ନ ନିଏ ।

ସେତେବେଳେ ଇନ୍ଦିରା ଭାବୁଥିଲେ, ବଙ୍କିମ କାମିକା ପିଲା । ସବୁବେଳେ ହସ ହସ । ତା ମନରେ ମାନାଭିମାନର ଧାରଣା ନାହିଁ । ନାକ-ଟେକା ଘୃଣା କଅଣ ସେ ଜାଣେ ନାହିଁ । ବାରଣ ନ ମାନି ସେ ରୋଗଣା ଝିଅକୁ ପରିଷ୍କାର କରେ । ହେଁସ ଓ ଲୁଗାପଟା ଧୁଏ । ସାବୁନ୍ ସୋଡ଼ା ଲଗାଏ । ସାନର ଗୋଡ଼ ସଫା କରି ଔଷଧ ବୋଳେ । କାନ୍ଧରେ ପକାଇ ପିଠି ଥାପଡ଼ାଇ ଶୁଆଏ । ନିଜେ ପାଖଘରେ ତାଙ୍କ ପାଖରେ ଜଗିକରି ଶୁଏ । ରାତିରେ ଉଜାଗର ରହି ପାଠ ପଢ଼େ । ବଡ଼ସକାଳେ ସମସ୍ତଙ୍କ ଆଗରୁ ଉଠେ ।

ଭଲ ପିଲା ଯେ ବଙ୍କମ, କିନ୍ତୁ ହତଲକ୍ଷ୍ମୀ ଅମଙ୍ଗଳଟିଏ । ଏ ଘରେ ଗୋଡ଼ ଦେଇଦେଇଣ୍ଣ ବିପଦ ମାଡ଼ିଆସିଲା । ସ୍ୱାମୀଙ୍କର ଦେହ ଭଲ ହୋଇଆସିଲା-ବେଳକୁ ପୋଲିସ୍ ଆସି ଘରେ ପଶିଲା । ଘର ଖାନ୍‌ତଲାସ କଲା ।

କରୁଥାଅ ତମେ କ'ଣ କରୁଛ ରେ ଅଲକ୍ଷଣାମାନେ । ଦୁଇ ଗୋଟା ଟ୍ରଙ୍କ, ପୁଞ୍ଜାଏ କାଠ ଡାବଲା ଛଡ଼ା ଘରେ ଆଉ କିଛି ନାହିଁ । ଗୋଟିଏ ଟ୍ରଙ୍କ୍‌ରେ ତାଲା ପଡ଼ିଛି । ଆଉ ସବୁ ମୁକୁଳା । କାହିଁରେ ଟିଏ ଲୁଗା ଓ ଶାଢ଼ୀ । କାହିଁରେ ଆମର ପିଲାଙ୍କର ଜାମା ଓ ଆମର ଧୋବ ଶାଢ଼ୀ, ଲୁଗା, କାମିଜ୍ । ଆଉ ଟ୍ରଙ୍କ୍‌ରେ ପିଲାଙ୍କର ଓ ବଙ୍କମର ପାଠପଢ଼ା ବହି । ବାଙ୍କଟାରେ ଭଙ୍ଗା ଖେଳଣା, ପୁରୁଣା ବାସନ, ଡେକ୍‌ଚି ।

ଦେଖିଲ ? ମନ ଶାନ୍ତ ହେଲା ?

ତାଲାପକା ଟ୍ରଙ୍କ୍ ବି ଖୋଲା ହେଲା । ପୁରୁଣାକାଳିଆ ରୁପାର ଗହଣା । ପାଉଁଜ, ଅଣ୍ଟା-ସୂତା, ରୂପା କାଚ । ସୁନା ଗହଣା ଭିତରେ ନୋଥ, ବସଣୀ, କାନ ଫୁଲ ହଳେ, ଗୋଟାଏ ଚନ୍ଦ୍ରମୁଖି, ଟିକିଏ ରେଜା ସୁନା । ଆଉ ଦେଖ । ଦି' ଗୋଟିଖଣ୍ଡ ଶଢି, ଲଫାପାରେ ଟଙ୍କା ତେଇଶଟି । ତିଣ ଡବାରେ ରେଜ୍‌କ ସାତ ଆଠଣାର ।

ମାହାଜନର ଛ' ହଜାର ଟଙ୍କା ଗଲା କୁଆଡ଼େ ?

ମାହାଜନ ସଙ୍ଗରେ ଆସିଛି । ସାହି ଲୋକେ ଘର ବାହାରେ ଭିଡ଼ କରିଛନ୍ତି । ମାଳି ମାଇପେ, ଦୋଳା ଜଣା, ସାହି ପିଲାଏ ସମସ୍ତେ ପାଟିତୁଣ୍ଡ କରୁଛନ୍ତି । ଅଭଦ୍ର ଭାଷାରେ ମାହାଜନ, ପୋଲିସି, ଆନନ୍ଦ ଏବଂ ଇନ୍ଦିରାଙ୍କ ନାମ ଧରି କେତେ କ'ଣ କହୁଛନ୍ତି । ଉଚପାଟିରେ ହସ ! ନିଜ ନିଜ ମଧ୍ୟରେ ବୋଲାବୋଲି । ପେଲାପେଲି । ହାତାହାତି । ପୋଲିସ୍‌କୁ ଶାନ୍ତିରକ୍ଷା କରିବାକୁ ପଡ଼ୁଛି । ଏଣେ ଖାନ୍‌ତଲାସ ବି ଚାଲିଛି ।

ସ୍ନାନ, ଔଷଧ, ବାରି, ମଳ, ପାଇଖାନା, ରୋଷଘରର ହାଣ୍ଡିକୁଣ୍ଡେଇ, କୁଲ୍ଲି ଝୋଟକେଇ, କାଠଗଦା—ସବୁ ସରିଲା । ରୋଗଣା ପିଲା ଦୁଇଟା ଛାଟଙ୍ଗା ହୋଇ ବୋବାଳି ଛାଡ଼ୁଥାଆନ୍ତି । ବିଜମ ସେମାନଙ୍କୁ ବୁଝାଉଥାଏ । ନିଜେ ଭିତରେ ଅଧାପ୍ରାଣ । ଘଟଣା କଅଣ ବୁଝି ନ ପାରି, ପିଲା ଦୁହିଁଙ୍କୁ ସମ୍ଭାଳୁଥାଏ । ଆନନ୍ଦ ନିର୍ଭୟରେ ଠିଆ ହୋଇଥାନ୍ତି । ଇନ୍ଦିରା ବରଣ୍ଡାପଟେ ପଡ଼ି ଥରୁଥାଆନ୍ତି । କେଶବାସ ଅସମ୍ଭାଳ ।

ମୋତେ କି ଆଗରୁ ଦେଖି ନେଇଥା'ରେ ଅବିବେକ ଅଲକ୍ଷଣା ଅଭଦ୍ର ଦଳ ! କୁତ୍ସିତ ଛଳେ ଦ୍ରୌପଦୀର ଲାଜ ଦେବା ମୋତେ ଲୋଡ଼ା ହେବ ନାହିଁ । ତମର ଟଙ୍କା ମୋ ଦେହରେ ଲୁଚି ରହିନାହିଁ । ମୋ ଦେହରେ ରୂପ ପଇସାର ସୁନାର ଗହଣା ନାହିଁ । ସବୁ ଯାଇଛି ପିଲାଙ୍କ ମୁହଁରେ । ତାଙ୍କ ସେବାରେ ।

କଣ ତମେ ଦେଖୁଛ ? ଘରଦ୍ୱାର ସବୁ ଦେଖିଲ । ମନ ଏବେ ବୁଝିଲ ? ଆମେ ଚୋର ଟପ୍ପର ନୁହୁଁ । ଆମେ ଲୋକେ ପିଇ ଦଣ୍ଡେ ଖାଉଁ । ଆମେ ତମର ଅତ୍ୟାଚାର ସହୁଁ । ଆମର ମାନ-ଅପମାନର ଭେଦବିଚାର ନାହିଁ ।

**ସେ**ମାନଙ୍କର ମନ ବୁଝିଲା ନାହିଁ ।

ଘରେ କାନ୍ଦବୋବାଳି ପକାଇ ସେମାନେ ଆନନ୍ଦଙ୍କୁ ଧରି ନେଇଗଲେ । ସେଦିନ ଛାଡ଼ିଲେ ନାହିଁ । ପରଦିନ ସଞ୍ଜରେ ସେ ଯେତେବେଳେ ରିକ୍ସାରୁ ଓହ୍ଲାଇ ଟଳମଳ ହୋଇ, ଦାଣ୍ଡଲୋକଙ୍କୁ ଲୁଚି ଲୁଚି, ମୁହଁଛପା ଦେଇ ଘରେ ପଶିଲେ, ନଳଟଣ ଆଲୁଅରେ ତାଙ୍କ ମୁହଁକୁ ଚାହିଁ ଇନ୍ଦିରା କାନ୍ଦିଉଠିଲେ । ଆନନ୍ଦଙ୍କୁ କୁଣ୍ଢାଇ ଧରିଲେ । ତାଙ୍କର ସବୁ ଧୈର୍ଯ୍ୟ ଫସରଫାଟିଗଲା । ରୋଗଣା ପିଲା ଦୁଇଟା ପାଖକୁ ଆସି ବୋବାଳି ଛାଡ଼ିଲେ । ଏକା ବିଜମ ଦୂରେଇ ଠିଆ ହୋଇଥାଏ । ସତେକି ସେ ପାଷାଣ-ପ୍ରତିମା ।

ସମସ୍ତଙ୍କୁ ଭୁକ ହେବାକୁ କହି, ଠାଏ ଠାଏ ମଇଳା ହୋଇଥିବା, ଚିରିଯାଇଥିବା ପୁରୁଣା କାମିଜ ଖଣ୍ଡି ଅତି କଷ୍ଟରେ ଦେହରୁ ଉତାରି ଆନନ୍ଦ ଛଳକୁ ଫୋପାଡ଼ିଦେଲେ । ଚଉଡ଼ା ତକ୍ତପୋଷ ଉପରେ ଗଡ଼-ପଡ଼ିଲେ ।

ବଚ୍ଛମ ନାଲଫିଣ ଫେଜିଲ । ଇନ୍ଦିରା ଆନନ୍ଦଙ୍କର ଦେହକୁ ଦେଖିଲେ, ମୁହଁକୁ ଦେଖିଲେ । କପାଳ ଉପରେ ମଣ୍ଡାପିଠା ପରି ଫୁଲ ଦାଗ । ଗୋରା ଦେହକୁ ନାଲ୍ ଦିଶୁଛି । ମଝିରେ ଆଞ୍ଜୁଡ଼ା । ବାମ ଆଖି ତଳେ ଲମ୍ବ ହୋଇ କଇଁଥା ଦାଗ । ଫୁଲୁକା ଗାଲ ଦୁଇଟି ଆହୁରି ଫୁଲାଛି । ନାଲ୍ ଦିଶୁଛି । ପିଠିରେ ପିଣ୍ଡରେ ଲମ୍ବା ଲମ୍ବା ପଟିପଟିକା ସରୁ ଦାଗ । ଗଣି-ହେଉନାହିଁ ।

ମୋ ଦେହ ଉପରେ ସେମାନେ ତାଙ୍କର କରାମତି ଦେଖାଇଛନ୍ତି ଇନ୍ଦିରା ! ମହାଜନର ପୁଅମୁଣ୍ଡରାମାନେ, ଯେଉଁମାନଙ୍କୁ କାଖେଇ କୁଣ୍ଢାଇ ମୁଁ ମଣିଷ କରିଥିଲି, ସେମାନେ ପାଖରେ ଥାଇ ମୋର ଏତେକାଳର ସ୍ନେହ ପୋଲିସ ଜରିଆରେ ମୋ ଉପରେ ଶୁଝାଇଦେଇଛନ୍ତି ।

ସେ ବଡ଼ ବୁଢ଼ା କଣ୍ଟା ମାହାଜନଟା ? ଟିକିଏ ତାର ଦୟାମାୟା ନାହିଁ ?

ଆନନ୍ଦ ଉତ୍ତର ଦେଲେ ନାହିଁ ।

ପରଦିନ ରାତି ଦଶଟାବେଳେ ନଜେ ବୁଢ଼ା ମାହାଜନ ଏକା ଆନନ୍ଦଙ୍କ ଘରକୁ ଆସିଥିଲେ । ସଙ୍ଗରେ ସେ ଆଣିଥିଲେ ପିଲାଙ୍କ ପାଇଁ ଲଡ଼ୁ, ପାମ୍ପଡ଼, ବଡ଼ି, ବୋତଲେ ଗୁଆ ଘିଅ । ନଜ ଆଖିରେ ଆନନ୍ଦଙ୍କର ଦରମରା ଅବସ୍ଥା ସେ ଦେଖିଲେ ।

ଦୁଃଖ କରି ସେ କହିଲେ, ଥାନାରେ ଏତଲା ଦେବାର କଥା । ସେଇଆ ମୁଁ କଲି । ଗୁଣ୍ଡାମାନଙ୍କୁ ପକଡ଼ିବାକୁ ମୋଟା ଇନାମ ଦେଲି । ହେରି ଟଙ୍କା ତମରି ଘରୁ ମିଳିବ, ଏହା ସେମାନେ କହିଲେ ।

ଇନ୍ଦ୍ର ଲଜସରମ ଛାଡ଼ି ଆଗକୁ ଆସିଲେ । ରାଗ ତମତମ ହୋଇ ପଚାରିଲେ, ଟଙ୍କା ତ ପାଇଲ ନାହିଁ ମହାଜନ ବାବୁ, ଆମର ନଅଣ୍ଟିଆ, ଅଭେକା ଅବସ୍ଥା ଦେଖିଲ । ତାଙ୍କୁ ପୁଣି ଥାନାକୁ ଧରାଇନେଇ ଏ ଅବସ୍ଥା ଦେଇ କି ଆନନ୍ଦ ପାଇଲ ? ତାଙ୍କର ଦୁଃଖକଷ୍ଟ ଦେଖି, ଆମର ହଟହଟା ଜାଣି, ଆହୁରି ଖୁସି ହେବାକୁ ଧାଇଁଆସିଛ ? ଦିନେକାଳେ କେବେ ଆପଣଙ୍କର ପାଦଧୂଳି ଆମ ଘରେ ପଡ଼ି ନ ଥିଲା !

ଏପରି କହନା ଝିଅ ! ସତ କଥା ତୁଣ୍ଡରୁ କାଢ଼ିବାକୁ ସେମାନେ ଏମିତି କରନ୍ତି । ପିଲାମାନେ ମତେ ଏଇଆ ବୁଝାଇଲେ । ସେମାନଙ୍କର ପାଉଣା ଦେବାକୁ ମୋ ପାଖରୁ ଆହୁରି ଟଙ୍କା ନେଲେ । ମୁଁ କିଛି ଲୁଚାଉ-ନାହିଁ । ଆନନ୍ଦବାବୁଙ୍କର ଯତ୍ନ ନେଇ ତାଙ୍କୁ ଭଲ କରିବାକୁ ନିଅ ଏତକ, ରଖିଥା ।

ଦୁଇଶ ଟଙ୍କା ଦେଇ ସେ ବାହୁଡ଼ିଗଲେ । ଏତେ କଷ୍ଟ ପାଉଥିବା ସତ୍ତ୍ୱେ ଆନନ୍ଦ ହସିଉଠିଥିଲେ । ସେ କାହିଁକି ହସିଲେ, ଇନ୍ଦ୍ର ବୁଝି-ପାରିଲେ ନାହିଁ । ତାଙ୍କୁ ପଚାରିବାକୁ ସାହସ ହେଲା ନାହିଁ ।

ସେ ନିଜ ମନକୁ କହିଲେ, କୋଟିପତି ମହାଜନ ଥରେ ନୁହେଁ, କେତେଥର ଏମିତି ଏକା ଆସିବେ । ସାହାଯ୍ୟ ଦେଇଯିବେ । ତମେ ଦେଖିବ ରହ ।

କାହିଁକି ?

ଆନନ୍ଦ ଉତ୍ତର ଦେଲେ ନାହିଁ । ସେ ଯନ୍ତ୍ରଣାରେ ଏକଡ଼ ସେକଡ଼ ହେଲେ । ଓଃ ଓଃ ହୋଇ ଚିତ୍କାର କଲେ । ବଙ୍କମକୁ ଡାକ ଛାଡ଼ିଲେ ।

ବଙ୍କମ ପାଖକୁ ଆସିଲା । ବଙ୍କମକୁ ସେ କହିଲେ, ଶୁଣ୍, ଆମର ଏ ଘରେ ଯାହା ଘଟିଗଲା ସେ ସମ୍ବନ୍ଧରେ ବାଉଷାଇ ଅବା ଚନ୍ଦନା-ଅପାଙ୍କୁ କିଛି ଲେଖିବୁ ନାହିଁ । ତୋ ବାପା ଘରେ ବେକାର ବସିଛନ୍ତି । ବ୍ୟସ୍ତ ହେବା ଛଡ଼ା ସେ ଆଉ କିଛି କରିପାରିବେ ନାହିଁ । ଆଉ ଶୁଣ୍,

ଅନେକ ଲୋକ ଅନେକ କଥା ତତେ ପଚାରିବେ । ମୁହଁ ବନ୍ଦ କରିବା ସମ୍ଭବ ନ ହେଲେ କହିବୁ, ରିକ୍ସା ଆକ୍ସିଡେଣ୍ଟ ହେଲା ।

ବସନ୍ତ ମୁଣ୍ଡ ହଲାଇ ସ୍ୱୀକୃତି ଜଣାଇଲା ।

ଆନନ୍ଦ ଆତୁର କହିଲେ, ଘରର ଗୁମର ପଦାରେ ଖୋଲିବାର ଖବର ମୋ କାନରେ ପଡ଼ିଲେ, ମୋ ବସାରେ ତୋ ରହଣି ସମ୍ଭବ ହେବ ନାହିଁ ।

ଇନ୍ଦିରା କହିବାକୁ ବସିଥିଲେ, ଆମ ଘରେ ସେହି ଅମଙ୍ଗଳିଆ ପିଲାଟା ଗୋଡ଼ ଦେଲା ଦିନରୁ କେତେ ବିପଦ ମାଡ଼ିଆସିଲାଣି । ସେ ଯାଉ, ଆଉ କେଉଁଠି ରହି ପାଠ ପଢ଼ିବାର ବ୍ୟବସ୍ଥା କରୁ, କିନ୍ତୁ ବସନ୍ତର ଗୋରା ତକତକ ଗୋଲଗାଲିଆ ସୁନ୍ଦରିଆ ମୁହଁକୁ ଉଜ୍ଜ୍ୱଳ ଦିନ ଆଲୁଅରେ ଚାହିଁ ସେ ହେପ ଢୋକିଲେ । ଭାବିଲେ, ତା ମାମୁଁ ଭୁଣ୍ଡ ଖୋଲି ସେକଥା କହୁନାହାନ୍ତି । ନହେଲେ କହ ସେ କାହିଁକି ଚିନ୍ତା ପଡ଼ିବେ ?

ମନ ଡାକିଲା, ଏମିତିଆ ପିଲାଟିଏ ଯଦି ତାଙ୍କ ପେଟରୁ ଜନମନ୍ତା ! ମନେ ମନେ କେତେ ଠାକୁର ଠାକୁରାଣୀଙ୍କ ପାଖରେ ସେ ମାନସିକ କରିଥିଲେ । ଅନୁପା ପରେ ପୁଅ ନ ଜନମି ଜନମିଲା ଝିଅ ନିରୁପା ।

ଅମଙ୍ଗଳିଆ ହେଉ ପଛେ, ରହିଛି ତ ଘରେ, ରହିଥାଉ ପିଲାଟା । ତାର ସେ ପାଠ ପଢ଼ୁଛି । ଆପଦ ବେଳେ ସାହା ହୋଇଛି । ପିଲା ଦୁଇଟା ତାକୁ ଆଦରିଗଲେଣି । ରାଗଣୀ ଅନୁପା ସବୁବେଳେ ଖିନ୍‌ଖିନ୍ ହୁଏ । ତା କଥା ନ ରଖିଲେ ବସନ୍ତକୁ ବଣି ବିଦାରି ପକାଏ । ପିଠିରେ ଦୁମ୍‌ଦାମ୍ ବସାଏ । ତାର ହାଡ଼ୁଆ ହାତକୁ କାଟେ । ହାତ ଛଟଛଟ କରେ । ଧାଇଁ-ଯାଇ ସେ ଗୁଞ୍ଜୁଣୀ ମୁଠାକ ଧରେ ।

ବସନ୍ତ ଟହ ଟହ ହସୁଥାଏ । ଗୁଞ୍ଜୁଣୀ ଟେକି ଅନୁପା ପାଖକୁ ଧାଇଁ-ଆସିଲେ ବସନ୍ତ ତାର ହାଡ଼ୁଆ ଦେହକୁ ଜାବୁଡ଼ି ଧରେ । ଗେହ୍ଲେଇ କହେ,

ଝଳଝଳିଆ ଦେହରେ ଆଜି ଟିକିଏ ବଳ ହେଉ ଲେ ଚଣ୍ଡୀ, ସେଇଠୁ ମାରିବୁ । ଔଷଧ ପାନକ ଆଗ ଖାଇଦେ । ତୋ ଛେଗ-ରୋଗ ଭଲ ହେଉ ।

ବିଙ୍କମର ମନରେ ଛଳ ନ ଥାଏ । ବାପ ବୀରକେଶରୀଙ୍କ ପରି ସେ ନିଜର ବଡ଼ପଣ, ବୁଦ୍ଧି ଓ ଜ୍ଞାନ ଦେଖାଇଦେବାକୁ ଆକାଶରୁ ତୋଳି ଗଙ୍ଗାରୁ ଗଉଡ଼ମ ଗପି ଅନ୍ୟମାନଙ୍କର କାମ ମାଟି କରେ ନାହିଁ ।

ତସୁକୁଟା ଗପ । କେଉଁକାଳେ ସେ ସ୍କୁଲରେ ଦଶମ ଶ୍ରେଣୀରେ ପାଠ ପଢ଼ୁଥିଲେ । ଇଂରେଜି ଶିଖିଥିଲେ । ସେସବୁ ଭୁଲିଯାଇଥିବା ପାଠକୁ ସ୍ମରଣ କରିବାକୁ ବୀରକେଶରୀ ପଦେ ପଦେ ସେଥିରୁ ହାଙ୍କନ୍ତି । ବିଙ୍କମର ବୋଉ, ଯିଏ ଦାର୍ଢ଼୍ୟତାଭକ୍ତି ପଢ଼ିପାରନ୍ତି, ବେଶ୍ ଲମ୍ବା ଲମ୍ବା ଚିଠି ବି ଲେଖିପାରନ୍ତି, ସେ ମଧ୍ୟ ସ୍ୱାମୀ ବୀରକେଶରୀଙ୍କ ଇଂରେଜିରୁ କେଇପଦ ଶୁଣି ଶୁଣି ମନେରଖିନେଇଛନ୍ତି । ଡର ଡର ସେ କହନ୍ତି, ସାବଧାନ ହୋଇ, କାଳେ ଭୁଲ ହେବ, ସେଥିକି ତାଙ୍କର ଡର ।

ବିଙ୍କମ ଏ ଘରେ ଆସି ନେବା ଆଗରୁ ତାକୁ ସଙ୍ଗରେ ନେଇ କେତେଥର ଚନ୍ଦନା କଟକ ଆସିଛନ୍ତି । ବିଶେଷତଃ ଦଶହରାବେଳେ, ଦେଖା ଦେଖିବାକୁ । ପୁଣି, ଇନ୍ଦିରାଙ୍କର ପୋଇଲି ହେବାବେଳେ । ଅନୁପାର ଜନ୍ମକାଳରେ ଚନ୍ଦନା ପାଞ୍ଚ ଛଅ ବର୍ଷର ପୁଅ ବିଙ୍କମକୁ ନେଇ ଆସିଥିଲେ । କାଠିପରିକା ଏଡ଼ିକ ଟିକିଏ ମଶାଛୁଆ । ଆଜି ମରିବ କି କାଲି ମରିବ ଏପରି ଅବସ୍ଥା । ତାକୁ ବଞ୍ଚାଇ ରଖିବାକୁ ଗ୍ରାମରେ ନିଜ ଘରକାମ ପଛରେ ପକାଇ ସେ କଟକରେ ଗୋଟିଏ ମାସ ଅଟକିଗଲେ । ନିଲ୍ଲଜ ପା ବେଳକୁ ମଧ୍ୟ ସେ ଆସିଥିଲେ । ଭକୁଡ଼ି ମାଛ ପରି ଏଡ଼େ ବଡ଼ ଛୁଆ । ସାତ ଆଠ ଦିନ ରହି ସେ ଫେରିଯାଇଥିଲେ । ସେସବୁ କେତେଦିନ ତଳ ବର୍ଷର ଧଡ଼ିଆ ଛୁଆ ଅନୁପାକୁ ସେ ଛାତିରୁ ଖସାଇ ନ ଥିଲେ ।

କହନ୍ତି, ଦେଖିବୁ ରହ ଲୋ ଇନ୍ଦିରା, ଏଇ ଝିଅ ତୋର ଭାରି ସୁନ୍ଦର ହେବ । ତା ମୁହଁ, ଆଖି, ଭ୍ରୂଲତା, ନାକ କେଡ଼େ ସୁନ୍ଦର ! ବୟସ ହେଲେ ଦେହରେ ବଳେ ମାଉଁସ ଲାଗିବ । ସେତେବେଳେ ମୋ କଥା ମନେ ପକାଇବୁ ।

ତମର ବରଗ ହେବ ମ ଅପା ! ବଙ୍କିମ ଯେ ତା' ମାମୁଁଙ୍କ ଓଳ ଆଣିଛୁ । ଦୁଇଟା ପେଟରୁ ଏ ଦୁହେଁ ଜନମ ସିନା ! ତମ ଭାଇଭଉଣୀ ଦୁହିଁଙ୍କ ପରି ସେ ଦୁହେଁ ଦିଶୁଛନ୍ତି ।

ଦୁଇ ବର୍ଷର ଝିଅକୁ ଚନ୍ଦନା ସଜାଇଦିଅନ୍ତି । ମୁଣ୍ଡ କୁଣ୍ଡାଇ ଆଖିରେ ଦି ଧାର କଜଳ ପିନ୍ଧାନ୍ତି । କପାଳରେ କୁଙ୍କୁମ ବିନ୍ଦୁ । ଛିଟ କନାର ଛୁଟିଛୁଟିକା ଫ୍ରକ ପିନ୍ଧାଇ ହାତ ଓ ଗୋଡ଼ର ନଖରେ ନେଲ୍-ପଲିସ୍ ବୋଳନ୍ତି । ପାଦରେ ମଣ୍ଡନ୍ତି ଦି ଧାର ଅଳତା । ହାତରେ ପିନ୍ଧାଇଦିଅନ୍ତି ଦି' ଦି ପଟି ରଙ୍ଗିନ୍ ଗାଟାପାର୍ଚ୍ଚାର କାଚ । ବେକରେ ଝୁଲନ୍ତି ଅଧଭରି ଓଜନର ଟିକି ଟିକି ହରଡ଼ଫାଳିଆ ସୁନାହାର ।

ଖାସା ମାନେ ।

ଅନୁପାର ପୁଚୁକା ଗାଲରେ ବୋକ ପରେ ବୋକ ଲଦିଦିଅନ୍ତି । ପିଲାଟା କରି କରି ହସେ । ଚନ୍ଦନା କହନ୍ତି, ଏଇ ସୁନା କଣ୍ଢେଇକୁ ଦିନେ ମୁଁ ବୋହୂ କରିବି ଲୋ ଭାଉଜ ! ଆଜିକାଲି ଏଣେ ଦକ୍ଷିଣିଆ ମାଡ଼ ଚଳିଲାଣି ।

ଇନ୍ଦିରା ନାକ ଟେକି କହନ୍ତି, ଛି ଛି ! ତମେ ଦୁହେଁ ଯେମିତି ଭାଇ-ଭଉଣୀ ହୋଇଥିଲ, ତମର ପିଲାଦିନର ରୂପକୁ ମୁଁ ଅନୁମାନ କରିପାରୁଛି । ବଡ଼ ହେଲେ ବଙ୍କିମ ଓ ଅନୁପା, ଠାକୁରେ ତାଙ୍କୁ ଆଇଷ ନଅତ ଦେଉନ୍ତୁ, ଅବିକଳ ସେମିତି ଦିଶିବେ । ନେ ରେ ବିକ ! ତୋ ଭଉଣୀକୁ କାଖ କରି ନେ, ଟିକିଏ ବୁଲାଇ ଆଣିବୁ ।

ବଙ୍କିମର କାଖରେ ଅନୁପା ଭଲ ମାନେ ।

ଚନ୍ଦନା ଅଳ୍ପ କଥା କହନ୍ତି । ସ୍ନେହୀ । ତାଙ୍କର କେଉଁକାଳର ଖାନ୍ଦାନ୍ ଶଶୁରଘରର କପୂର ଧୀରେ ଧୀରେ ତାଙ୍କର ଶଶୁରଙ୍କ ଅମଳରେ ଉଡ଼ିଯାଇଥିଲା । ବାସନା କନାଟା ମହକୁଥିଲା । ସେ ମହକ ବଙ୍କିମର ବାପା ଗିରକେଣଶଙ୍କର ଅପାରଗତା ପାଇଁ ଏବେ ଆଉ ନାହିଁ । ସତେ ବଙ୍କିମ ମଣିଷ ହେବ ! କୁଳର ପୂର୍ବଗୌରବ ଫେରିଆସିବ !

ସେମାନେ କୁଆଡ଼େ କେଶରୀ ରଜାଙ୍କ ବଂଶ, ଯେଉଁମାନେ ଲିଙ୍ଗରାଜଙ୍କ ମନ୍ଦିର ତୋଳାଇଥିଲେ !

ଖାଲି ହାତରେ ଚନ୍ଦନା କେବେ କଟକ ଆସନ୍ତି ନାହିଁ । କଦଳୀ କାନ୍ଦିଏ, ସଜନା ଛୁଇଁ ହଡ଼ାଏ, ପୁଞ୍ଜିଏ ପଣସ କଠା, ନଡ଼ିଆ କ ପଇଡ଼ ହ'ଗଣ୍ଡା, ପୁଡ଼ାଏ ମୁଡ଼ିମୁଆଁ, ନୋହିଲେ ଖସାଲଡ଼ୁ ସଙ୍ଗରେ ଆଣନ୍ତି । ଆମ୍ବ-ହନେ ପାଚିଲା ଆମ୍ବ ଝୋଟେକେଇଏ କଟକ ପଠାଇବା ତାଙ୍କର ଧରାବନ୍ଧା ଗତ ।

ଝିଅ ଯେତେ ବୟସର ହେଉ, ଯେତେ ପିଲାଙ୍କର ମା ହୋଇଥାଉ, ରଜା-ଜମିଦାର ଘରର ରତ୍ନଚୂଡ଼ ପିନ୍ଧା ଗେଲବସର ବୋହୂ ହୋଇଥାଉ, ଗରିବ ବାପମାଆଙ୍କର ଗୁଡ଼ଜଳଭଜାକୁ ଆଶା କରିଥାଏ । ସାବତ ମା'ର ବୋଲଣା ସହି, ବଡ଼ି, ପରଘରେ ଗୋଡ଼ ଦେଲାରୁ, ଚନ୍ଦନା ନିସ୍କୃତି ଲଭିଥିଲେ ।

ତାଙ୍କର ମାମଲତକାରିଆ ବାପ ପଦାରେ ବାଘ, ଘରେ ଛେଳଠାରୁ ହୀନ, ଏହା ଚନ୍ଦନାଙ୍କୁ ଅଜଣା ନ ଥିଲା । ବାପଘରର ସୁନା-ପାହାଡ଼, ଅବା ଖଡ଼ାପତରକୁ ସେ ଆଶା କରନ୍ତେ କାହିଁକି ? ଅଲୁପାଠୁଆ ଭାଇ ଆନନ୍ଦଙ୍କର ୧-୦ ରୋଜଗାର । ତାଙ୍କ ପିଲାକୁଟୁମ୍ବଙ୍କ ପାଟିକୁ ନଅଣ୍ଟ ।

ସେହି ସ୍ନେହମୟୀ ବଡ଼ ନଣନ୍ଦଙ୍କ ଆଖିର ପିତୁଳା ଏହି ବନ୍ଧମକେଶରୀ । ତଉଦ ଗୃହଲକ୍ଷ୍ମୀ । ଅମଙ୍ଗଳିଆ ହେଲେ ସେ ହେଉ । ବିପଦ ପଡ଼ୁଛି, ସେ ପାଖରେ ଥାଉ । ଘର ଗୋଟାକର କାମ କରୁଛି । ପିଲା ଦୁଇଟାଙ୍କର ଯତ୍ନ ନେଉଛି । ଦାଣ୍ଡକୁ ସେହି, ହାଟକୁ ସେହି । ନିଜେ ଯାହା ପଢ଼ିବାର ପଢ଼ୁଥାଉ, ଅନୁପାକୁ ଗେହ୍ଲେଇ ଗେହ୍ଲେଇ ପଢ଼ାଉଛି । ନଟୁପାକୁ ଅକ୍ଷର ଶିଖାଉଛି । କଅଣ ବା ତା ପାଇଁ ଖରଚ ?

ମୁଠିଏ ଭାତ । ଡାଲି ତରକାରି ଦେଲେ ହଉ, ନ ଦେଲେ ନାହିଁ । ଟିକିଏ ବଡ଼ି ଚୁରା, ଗୋଟାଏ ପିଆଜ, ଫୁଟେ ତେନ୍ତୁଳି, ଖଣ୍ଡେ ଲଙ୍କାମରିଚରେ ତା'ର ଚଳିଯାଏ । ପାଞ୍ଚ ଟଙ୍କା ବୃତ୍ତି ପାଉଛି । କେତେ ଲେଖାଲେଖି କରି

ସ୍କୁଲର ଦରମା ଛାଡ଼ କରାଯାଇଛି । ଲୁଗା କାମିଜ ପାଇଁ ବେଳେବେଳେ ବାରକେଶରୀ ମନିଅର୍ଡ଼ର୍ କରି ପାଞ୍ଚ ଦଶ ଟଙ୍କା ପଠାଇଦିଅନ୍ତି । ସେ ଟଙ୍କାରେ ସେ ବହି କିଣେ । ଯାହା ବଳେ, ସେଥିରୁ ଅନୁପା ନନ୍ଦିପାଙ୍କ ପାଇଁ ଯାହା ହେଲେ ସେ ଆଗ କିଣିଲେ, ସେଇଠୁ ନିଜ କଥା ବୁଝେ ।

ରାତି ଅନିଦ୍ରା ହୋଇ ମାମୁଁଙ୍କର ସେବା ସେ କରିଥିଲା । ଇନ୍ଦିରା ଠେଙ୍ଗା-ଜରରେ ଦୁଇ ଗୃହ ଦିନ ଘାଣ୍ଟି ହୋଇଥିଲେ । ଗୋଡ଼ହାତର ବନ୍ଧା ଛୁଟିକା । ସେ ଯେଉଁ ଯନ୍ତ୍ରଣା । ଅନୁପାକୁ ଅଣ୍ଟାରେ ପିଠିରେ ଠିଆ କରି ନାଚାଇଲେ ଦେହରେ ଫୁଲ ପଡ଼ିଲା ପରି ଲାଗେ । ବାଟମକୁ ପିଠିରେ ଚଢ଼ି କୁଦିବାକୁ କହିଲେ ସେ ଆଣ୍ଠେଇପଡ଼ି ନେଡ଼ରେ ଚପେ । ଗୋଡ଼ ଘଷେ । ବେଦନା ଊଣା ହୁଏ ।

ଇନ୍ଦିରା ମନା କରିପାରନ୍ତି ନାହିଁ । କେଉଁ ପୁଅ ଏପରି ସେବା କରିବ !

ଆନନ୍ଦ ଭଲ ହୋଇ ଉଠିଲେ । ଇନ୍ଦିରା ସୁସ୍ଥ ହେଲେ ।

ମହାଜନର ଟଙ୍କାରେ ଦିନାକେତେ ଭଲରେ ଚଳିଲା । ଆନନ୍ଦ ତାଙ୍କର ଦପ୍ତରକୁ କାମ କରିବାକୁ ଗଲେ ନାହିଁ । ସେ କିନ୍ତୁ ତାଙ୍କୁ ବରଖାସ୍ତ କଲେ ନାହିଁ ।

ପୁଣି କେତେ ଥର ସେ ଆସିଥିଲେ । ଦାଣ୍ଡଘରେ ଆନନ୍ଦଙ୍କ ସଙ୍ଗେ ଉଚ୍ଚ ସ୍ୱରରେ କଥାଭାଷା କରି ଫେରିଥିଲେ । କିଛି କିଛି ଟଙ୍କା ଦେଇ-ଯାଇଥିଲେ । ଥରେ ବୋଲାବୋଲି ବଚସା ହୋଇଥିଲା । କାନପାରି ଇନ୍ଦିରା ଶୁଣିଥିଲେ ।

ମହାଜନ ଚିଡ଼ିଥିଲେ, ମୋର ସେ କାଗଜପତ୍ର ଓ ଦୋହରି-ହିସାବ ଫେରାଇ ନ ଦେଲେ ମୁଁ ତମକୁ ସାଧ୍ୟ କରିଦେବି । ଏହି ମୋର ଶେଷ କଥା ।

ହସି ହସି ଆନନ୍ଦ କହିଲେ, ପେଟରେ ଓଦାକନା ଦେଇ କୋଡ଼ିଏ ବାଇଶି ବର୍ଷ ତମର ଗୁମାସ୍ତାଗିରି କଲି । ନିଜ ମୁଣ୍ଡକୁ ହାଣମୁହଁରେ ଥୋଇ ତମକୁ ତମର କଳାବଜାର କାରବାରରେ ଲକ୍ଷ ଲକ୍ଷ ଟଙ୍କା ରୋଜଗାର କରାଇଦେଲି । ଦିନ ଦୁ'ପହରେ ଗୁଣ୍ଡାଦଳ ଆକ୍‌ସିଡ଼େଣ୍ଟ କରାଇ ତମ ଟଙ୍କା ଲୁଟିନେଲେ । ମୋତେ ବିଶ୍ୱାସ ନ କରି ମୋର ଇଜ୍ଜତ୍‌କୁ ଧକ୍‌କା ଦେଲ, ମୋ ଘର ଖାନ୍‌ତଲାସ୍ କରାଇଲ । ତେବେ ବି ତମର ମନ ଶାନ୍ତ ହେଲା ନାହିଁ । ପୋଲିସ୍ ହାତରେ ମୋତେ ପିଟାଇଲ । ଆଉ କଣ ମତେ ଅଧିକ ସାଧୁ କରିବ ?

ଗତକଥା ଭୁଲିଯାଅ, ଆନନ୍ଦବାବୁ ! ସବୁ ମୋର କସୁର୍ ହୋଇଗଲା । ଯେତେ ବୁଝାଇଲି, ପିଲାମାନେ ତମର ସଚ୍ଚୋଟପଣ ବୁଝିଲେ ନାହିଁ । ସେମାନଙ୍କର ସବୁ ଦୋଷ ମୁଁ ମାଗିନେଉଛି । ତମେ ପୁଣି କାମ କରିବାକୁ ଚାଲ ।

ମୋ ବିଷୟରେ ଖବରକାଗଜରେ ମିଛ-ପ୍ରଚାର କରାଇଲ । କାହାକୁ ମୁଁ ମୁହଁ ଦେଖାଇବି ? କେତେ ଲୋକଙ୍କୁ ମୁଁ ମୋ ସଚ୍ଚୋଟପଣରେ କଇଫତ୍ ଦେବି ? ବିଶ୍ୱାସ କର ମହାଜନ, ଲାଜରେ ମୁଁ ଘରୁ ପଦାକୁ ବାହାରୁନାହିଁ । ପଇସା ଥିଲେ ଗୋଟାଏ ମାନହାନି ମକଦମା ତମ ନାମରେ ଦାଏର୍ କରିଥାନ୍ତି ।

କାହିଁକି ସେପରି ହେଉଛ ? ମୁଁ ମାଫ୍ ଚାହୁଁଛି । ମୋ ଖାତାପତ୍ର ଫେରାଇଦେଲେ ସବୁ କଥା ଭଲରେ ଭଲରେ ତୁଟିଯିବ । ସେଥିପାଇଁ ତମକୁ ହଜାରେ ଟଙ୍କା ମୁଁ ଇନାମ୍ ଦେବି । ଆଣିଛି, ନେବ ତ ନିଅ ।

ମୋର ମାନମହତର ମୂଲ୍ୟ ମୋଟେ ହଜାରେ ଟଙ୍କା ନୁହେଁ । ମୁଁ ଗରିବ ହଁ, କିନ୍ତୁ ମୋର ମହତର ଦାମ୍ ମୁଁ ସ୍ଥିର କରିଛି ଦଶ ହଜାର ।

ଦଶ ହଜାର !

ହଁ, ମହାଜନ । ଦୁଇ ଏକର ଜମି ଗ୍ରାମରେ ମୁଁ ବିକି କରି ଅବଶ୍ୟ ମାନହାନି ମକଦମା ଦାଏର୍ କରିବି । ଜିତିଲେ ଦଶ ହଜାର ଆଦାୟ କରିବି,

ହାରିଲେ  ପିଲାଛୁଆ ଧରି ଆଉ କୁଆଡ଼େ ଚାଲିଯିବ । ତମର ନଥିପତ୍ର, ଜାଲ୍ ହିସାବ, ଅସଲ ହିସାବ ମୋ ପାଖରେ ନାହିଁ । ମୋ ଘରେ ନାହିଁ । ଯେତକ ଥିଲା ପୋଲିସ୍ ସେତକ ନେଇଛନ୍ତି । ତମେ ଏହା ଜାଣ । ତେବେ, ସେସବୁ ତମର ଆଉ କେଉଁ ଗୁମାସ୍ତା ହରଣଚାଳ କରିଛି ।

ତମେ ଜାଣ ?

ଠିକ୍ ଜାଣେ ନାହିଁ । ମୁଁ ଅନୁମାନ କରୁଛି । କାହାକୁ କେତେ ଟଙ୍କା ଲାଞ୍ଚ ଦେଇଛ, କାହାକୁ ମଟର କାର୍, କାହାକୁ ରିଫ୍ରିଜେଟର, ରେଡିଓ, ସୁନାହାର ଦେଇ ତମେ ତମର କାମ ହାସଲ କରିଛ, ଏସବୁ ବିଷୟ ତମେ ଓ ମୋ ବ୍ୟତୀତ ଆଉ କେହି ଜାଣି ନ ଥିଲେ । ତମର ଘରୋଇ ଗୁପ୍ତ ହିସାବରେ ସେସବୁ ଲେଖା ହୋଇଥିଲା । ସେହି ଲୋକଟା ଏସବୁ ଘଟଣା ଜାଣିଲା କିପରି ? ସତମିଛ ପରଖିବାକୁ ମତେ ପଚାରୁଥିଲା ।

କିଏ ସେ ?

ସେଥିରୁ ତମକୁ କଣ ମିଳିବ ? ତମର ସେହି କର୍ମଚାରୀ ଜଣକ ସବୁ ହିସାବ ଓ ବଡ଼ବଡ଼ିଆ ଲାଞ୍ଚଖୋରଆମାନେ ତମକୁ ଲେଖିଥିବା ଚିଠି-ଗୁଡ଼ିକର ଠିକଣଖି ବିବରଣ ଦେଉଥିଲା । ଯେଉଁ ଓଲୁ ହାକିମଗୁଡ଼ାଙ୍କର ଘର ଖାନତଲାସ ହେଲା, ସେମାନଙ୍କ ବିରୁଦ୍ଧରେ ପ୍ରମାଣ ମହଜୁଦ୍ ଅଛି ।

ଜାଣେ ଆନନ୍ଦବାବୁ !

ତମେ ବି ବଞ୍ଚିବ ନାହିଁ । ହାକିମହୁକୁମା ଓ ବଡ଼ବଡ଼ିଆଙ୍କୁ ପଚିଶ ହଜାର ଦେଇଛ । ପାଞ୍ଚ ସାତ ଲକ୍ଷ ଆମେରିକା ଧନ ଭୋଗିଛ । ହକ ପରିଶ୍ରମ କରି, ନିମକ୍‌ସଚ୍ଚା ରହି, ଆମେ ଖୁଦଜାଉ ଖାଇ ବଞ୍ଚିଥିଲୁଁ । ଦୁର୍ଘଟଣା ହେଲା । ସେଥିପାଇଁ ଘରର ଘରଣୀକୁ ତମେ ନିର୍ଲଜ୍ଜୀ କରାଇଲ । ତମର ସବୁ କର୍ମଚାରୀ ଡରିଲେଣି, ମହାଜନ ! କେତେବେଳେ କାହା କପାଳରେ ତମେ ପାହାର ପିଟିବ । ତମର ନଥିପତ୍ର ଯିଏ ରଖିଛନ୍ତି, ସେ ଫେରାଇଦେବେ ଯେ, ସେ ନେବେ ମୋଟେ ପାଞ୍ଚହଜାର । ମୋ ପାଉଣା ତ

ଜାଣ । ସେତକ ଆଗ ଆଣି ଥୋଇଦେଇଯାଅ, ଧର୍ମଶାଳା ତୋଳିବାର ଧର୍ମ ପାଇବ, ମହାଜନ, ତମର ସବୁ ରେକର୍ଡ଼ ତମେ ଫେରିପାଇବ ।

ଗାରୁଗାରୁ ହୋଇ ମହାଜନ ଫେରିଗଲେ ।

ଇନ୍ଦିରା ତାଙ୍କ ସ୍ୱାମୀଙ୍କୁ କେତେ କଅଣ ପଚାରିଥିଲେ । ସବୁ ପ୍ରଶ୍ନର ଉତ୍ତର ସେ ଦେଲେ ନାହିଁ । କହିଲେ, ବିପଦ କଟିନାହିଁ । ମହାଜନକୁ ବିଶ୍ୱାସ ନାହିଁ । ତାର ଧନ ଅଛି । ସେ ଗୁଣ୍ଡାଦଳ ଲଗାଇ ଆଜି କଅଣ କରାଇବ । ଆମେ ବସା ବଦଳାଇବା ।

ମାନସିଂହପାଟଣାକୁ ବସା ବଦଳାଇଲେ ବୋଲି ଲୋକେ ଜାଣିଲେ । ବସା ବଦଳା ହେଲା ଝାଞ୍ଜିରିମଙ୍ଗଳାକୁ । ଗଳିକନ୍ଧ ଭିତର । ମଙ୍ଗଳା ଠାକୁରାଣୀଙ୍କ ପାଖରୁ ବେଶୀ ଦୂର ନୁହେଁ । ପୁରୁଣା ବସା ବି ରହିଲା ।

ନୂଆ ବସାଟି ଶ୍ରେଷ୍ଠ ହେଲେ ବି ସୁନ୍ଦର । ରୋଷଘର, ଭଣ୍ଡାରଘରକୁ ଛାଡ଼ି ରହଣିଘର ଦି' ବଖରା । ଶ୍ରେଷ୍ଠ ଅଗଣା ଭିତରେ ପାଇଖାନା, ପାଣିକଳ । ସବୁ ଘରେ ବିଜୁଳି ଆଲୁଅ । ଭଡ଼ା ପଚିଶ ଟଙ୍କା ।

ଇନ୍ଦିରାଙ୍କୁ ନାବା ନାବା ଲାଗିଲା ।

ହିରଣ ଓ ପିଲା ବହେଁ ଖୁସି ହେଲେ ।

ଇନ୍ଦିରାଙ୍କୁ ପ୍ରହେଳିକା ପରି ଲାଗିଲା । ଆନନ୍ଦଙ୍କୁ ସେ ଏ ସମ୍ବନ୍ଧରେ ପଚାରିବାକୁ ସାହସ କଲେ ନାହିଁ । ସତେ କଣ ମହାଜନ ସଙ୍ଗେ ତାଙ୍କର ବୁଝାମଣା ହେଲା ? ସେ ତାଙ୍କର ମାନହାନି ବାବଦ୍ ଟଙ୍କା ଆଦାୟ କଲେ ? ମହାଜନର ଟଙ୍କା ଚୋରି ଯାଇ ନ ଥିଲା ? ଆନନ୍ଦ ତାଙ୍କର କେଉଁ ବନ୍ଧୁମାନଙ୍କ ସଙ୍ଗେ ସାଲି ହୋଇ ଟଙ୍କା ଛଅ ହଜାର ହରଣଚାଳ କରିଥିଲେ ?

ନର ମାୟା ନାରାୟଣଙ୍କୁ ଅଗୋଚର । ଆନନ୍ଦଙ୍କ କପଟର ଗମ୍ଭୀରତା କଳନା କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।

ହେଲେ ଆନନ୍ଦ ତାଙ୍କ ମନକୁ କହୁଥିଲେ, ଲକ୍ଷ୍ମୀପୁର ଗ୍ରାମରେ ସାତହନ ରହି ଫେରିଆସିଲି । ଯେଉଁମାନେ ମୋର ଜମି ଭାଗରେ ଚାଷ

କରୁଥିଲେ, ସେହିମାନଙ୍କୁ ଦଶହଜାର ଟଙ୍କାକୁ ଚାରିମାଣ ଜମି ବିକିଦେଲି । ସେମାନଙ୍କର ପିଲାମାନେ କଲିକତାରେ ବେପାର କରି ଭଲ ରୋଜଗାର କରୁଛନ୍ତି । ହଜାର ହଜାର ଟଙ୍କା ଘରକୁ ପଠାଉଛନ୍ତି । ସେମାନେ ଭଲ ଦର ଦେଲେ ।

ପାଞ୍ଚ ସାତ ଗୁଣ୍ଠ ଆମେ କରିପାରିବା ନାହିଁ । ବାପଅଜା ରଖିଯାଇ-ଥିବା ସମ୍ପତ୍ତିକୁ ବିକିଲ, ଆଉ କଣ କରିହେବ ?

ହେବ ଇନ୍ଦିରା, ତମେ ବ୍ୟସ୍ତ ହୁଅ ନାହିଁ । କପାଳ ହୀନ ଥିବାଯାଏ ଗୋଟିଏ ଟଙ୍କା ଆଖିକୁ ପର୍ବତ ପରି ଦିଶେ । କପାଳ ସଜଗ ହେଲେ ସହସ୍ର ଟଙ୍କା ଆଖିକୁ ଗୋଡ଼ମାଟି ପରି ଲାଗେ । ଯେଉଁ ମହାଜନ ତାର କର୍ମଚାରୀ-ମାନଙ୍କର ଦରମା ପାଞ୍ଚ ଦଶ ଟଙ୍କା ବଢ଼ାଇବାକୁ କୁନ୍ଥକୁନ୍ଥ, ସେ ଓ ତାର ପିଲାମାନେ ଆଖି ବୁଜି ଅଏସ କରିବାକୁ ଓ ହାକିମହୁକୁମାଙ୍କୁ ସଲାମି, ଲାଞ୍ଚ, ଭେଟି ଦେଇ ହଜାର ହଜାର ଟଙ୍କା ଫୋପାଡ଼ିଦେଉଛନ୍ତି । ସବୁ ଚେଷ୍ଟା ବୋଲ କରୁନାହିଁ । ଯେତିକି ବୋଲ କରୁଛି, ସେଇ ପୁଣି ଲକ୍ଷ ଲକ୍ଷ ଟଙ୍କା ଘରେ ଅଜାଡ଼ିଦେଉଛି । ମୁଁ ମୋର କପାଳ ସଙ୍ଗେ ଯୁଝିବି ।

ବୁଝିପାରୁନାହିଁ ମ, ଏତେଗୁଡ଼ାଏ ଟଙ୍କା ଆଣି କଅଣ କରିବ ? ଶାଗରେ ମାଛରେ ଉଡ଼ାଇଦେଲେ, ସେତକ ସରିଲେ, ଆମେ ଯାଇଁ ଗଛମୂଳରେ ବସିବା ।

ଆଜିଯାଏ ଆମେ ଆଉ କେଉଁଠି ବସିଥିଲୁଁ କି ଇନ୍ଦିରା ? ତମ-ପରିକା ଲକ୍ଷ୍ମୀ ଗୃହିଣୀର ହାତ ଧରି ପେଟକୁ ପିଠିକୁ ଘୋଡ଼ାଇବାର ଅଭାବ ହେଲା କାହିଁକି ? ଦେହ, ପେଟ, ଲୋକଲଜ୍ଜା ଓ ସମ୍ମାନର ଡର । ସେମାନଙ୍କର ମହତ ଆମେ ରଖିବାକୁ ପ୍ରାଣପଣେ ଚେଷ୍ଟା କରିନାହୁଁ କି ? ତମେ ବିଚାର କର । ଦେହର ପୀଡ଼ା, ପ୍ରାଣର କଷ୍ଟ ସହିବାକୁ ପଡ଼ିଲା । ଦାଣ୍ଡର ଲୋକେ, ପୋଲିସ, ମହାଜନ, ତାର ପୁଅପୁତୁରାମାନେ ତମର ଦରିଲଙ୍ଗଳା କାଳୁଣ୍ଡ ରୂପ ଦେଖିଲେ ।

ତମ୍ଭକୁ ସେମାନେ ଧରିନେଇଥିଲେ । ମୋର ହଂସ ଉଡ଼ିଯାଇଥିଲା । ମୋର ଗୃହ ରହିଲା ନାହିଁ । ଦେହମୁଣ୍ଡ ସମ୍ଭାଳି ଆଗକୁ ଯିବାକୁ ମୋର ହେତୁ ନ ଥିଲା ।

ମୁଁ ତମର ଦୋଷ, ସେମାନଙ୍କର ଦୋଷ ଦେଉନାହିଁ । ଦୋଷ ଆମର ଦରିଦ୍ର ଅବସ୍ଥାର, ମୋର ଅପାରଗପଣର । ପାଖରେ ଧନ ଥିଲେ ମାନମହତ ସବୁ ଆମେ ଫେରିପାଇବା ଇନ୍ଦ୍ରା ! ଆମେ ବି ଧର୍ମକର୍ମ ପାଇଁ ଦାନ କରିପାରିବା । ଆମେ ସାଧୁସନ୍ଥଙ୍କର ସେବା କରି ବହୁତ ବହୁତ ପୁଣ୍ୟ ସଞ୍ଚୟ କରିବା । ଆମେ ବି ମିଠାବାକ୍ୟଗୁଡ଼ିଏ ସଂଗ୍ରହ କରି ଲୋକଙ୍କ ଉପରକୁ ଫିଙ୍ଗିପାରିବା । ଆମେ ମନକଲେ, ଆମେ ଯୋଗାଡ଼ କଲେ, ଲୋକେ ଆମ କଥାରେ କରତାଳି ଦେବେ । ଆମ ବେକରେ ଫୁଲମାଳ ପିନ୍ଧାଇବେ । ସ୍ୱର୍ଗରେ ସମ୍ମାନ ଲୋଡ଼ା ହୁଏ ନାହିଁ ଇନ୍ଦ୍ରା ! ନରକରେ ବି ଲୋଡ଼ା ହୁଏ ନାହିଁ । ସେଇଟା ଲୋଡ଼ା ମଞ୍ଚପୁରରେ । ଏହି ମଣିଷର ବଞ୍ଚିଲା ଦେହରେ ।

ଶୃଙ୍କର ଗଳାରୁ ଅଶ୍ରାନ୍ତ ଅସ୍ପଷ୍ଟଧାରେ ବାଣୀ ଚକଟି ହୋଇ ତମର ବୁଦ୍ଧି ବିବେକ ନାଶ ହୋଇଛି ଗୋ ! ତମର ଭାବନା ଓ କାମ ଆମ ସମସ୍ତଙ୍କୁ ସର୍ବନାଶ ଆଡ଼କୁ ଟାଣିନେବ । ଜମି ବିକଲ । କାହାର କୁଶିକ୍ଷାରେ ପଡ଼ିଲ । ଟଙ୍କାତକ ଫୁର୍କରି ଉଡ଼ାଇଦେଲେ ଆମର ପ୍ରାଣ ଉଡ଼ିଯିବ । ଯାହା ତ କଲ, କରିସାରିଛ । ତମେ ଯଦି କେଉଁଠି ଶୃଙ୍କରି କରିବାକୁ ଡରୁଛ, ଏଇ ଧନରେ କ'ଣ ଗୋଟାଏ ଲାଭଜନକ ବେପାର କର ।

ସେଦିନ ଇନ୍ଦ୍ରାଙ୍କର ଆଖିରୁ ନିଃସହାୟତାର ଲୋତକ ଦି'ଧାର ଝରି ଆସିଥିଲା । ତାଙ୍କର ଅଭେକା ବେଶ, ଫୁର୍ଫୁର୍ କେଶ, ଦାଉ ଦାଉ ଝଟକୁଥିବା ଯତ୍ନହୀନ ଭରପୂର ରୂପକୁ ସେଇ ଦି'ଧାର ଲୁହ ବେଶ୍ ମାନୁଥିଲା ।

ଆନନ୍ଦ ସେହି ଅତି ପରିଚିତ ଅଭିନବ ଅପରିଚିତ ମୂର୍ତ୍ତିକୁ ଭାବବିହ୍ୱଳ ହୋଇ ଅନାଇଲେ । ତାଙ୍କର ଦୃଷ୍ଟିରେ ଇନ୍ଦ୍ରା ଯେଉଁ ଅତିଜଣା ମନଜଣା ଆଗ୍ରହ ଜାଳିଲେ, ମନତଳର ଅବୋଧ କାମନା ଥରି ଉଠିଥିଲା ।

ସେ ଆଗ୍ରହ, ସେ କାମନା ମଣିଷର ଆର୍ଥିକ ଅବସ୍ଥା, କେତେ କୁଆଡ଼ର ମନସ୍ତାପ ଓ ଭବିଷ୍ୟତ ଭାବନାକୁ ତୁଚ୍ଛ କରିଦିଏ । ସ୍ଥାନ, ସମୟ ଓ ପରିବେଶକୁ ଭୁଲାଇଦିଏ ।

ରାତି ନଅଟା । ନୂଆ ବସାର ଗୋଟିଏ କୋଠରିରେ କାଠର ପଟାଲଗା ତକ୍ତପୋଷ ଉପରେ ପୁରୁଣା ସପ ଖଣ୍ଡିଏ ପଡ଼ି ହୋଇଥାଏ । ତେଲ ହଳଦୀ ଓ ପିଲାଙ୍କର ମୂତରେ ସପଟି ମଇଳା ଦିଶୁଥାଏ । ନାକସହା ଦୁର୍ଗନ୍ଧ । ଲମ୍ବ ତେପଟା ତକିଆରେ ଗୁଡ଼ା ହୋଇଥାଏ ତେଲଚିକଟା ଗନ୍ଧ ଭଣଭଣ ପୁରୁଣା ଶାଢ଼ିରୁ ଚିରିଟେ । ସେ ତକିଆ ମୁଣ୍ଡଆଡ଼େ ପଡ଼ିଥାଏ ।

ସେହି ତକିଆ ପାଖରେ ତଳକୁ ଗୋଡ଼ ଝୁଲାଇ ବସିଥାଆନ୍ତି ଆନନ୍ଦଚନ୍ଦ୍ର । ତମ୍ବାତାର ରଙ୍ଗର ବଳିଷ୍ଠ ଦେହ । ଅଳ୍ପ ଲମ୍ବାଳିଆ ସ୍ୱାସ୍ଥ୍ୟ-ଭରପୂର ନିଖୁଣ ମୁହଁ । ଖଣ୍ଡାଧାର ପରି ନାକତଳେ ଅଳପ ନିଶ । କଳା ମିଚ ମିଚ । ମଝିରୁ ଦି'ଫାଙ୍କ କେଶ ମଧ୍ୟଭଳିଆ କପାଳ ଉପରକୁ ଓହ୍ଲାଇଆସିଛି ।

ଅଠତିରିଶ ବର୍ଷର ନୂତନ-ଯୁବକ ନୂତନ-ପ୍ରୌଢ଼ ସେ । ନାଲିଆ ବଗଡ଼ା ଭାତ, ଡାଲିପାଣି, ଶାଗଖରଡ଼ା, ବଡ଼ ଚୂରିରେ ଗଢ଼ା ତାଙ୍କର ରୂପ । ସେହି ମୂର୍ତ୍ତିଟି ଚୂହିଁରହିଛି ଅଠେଇଶବର୍ଷିଆ ଦଶବର୍ଷର ଘରଣୀ ଇନ୍ଦିରାଙ୍କୁ ।

ଦରମଇଳା ମିଲ୍ ଶାଢ଼ି ଖଣ୍ଡେ ପିନ୍ଧି ସେ ଆଗରେ ଉଭା । ଦେହକୁ ଆକଟିବାକୁ ବ୍ଲାଉଜ ଖଣ୍ଡେ ନାହିଁ । ଥିଲେ ଥିବ ସାଇତା ହୋଇ, ପୁରୁଣା ଟ୍ରଙ୍କ ଭିତରେ । ମାଂସଳ ବାହୁରେ ଗୁଡ଼ାହୋଇଛି ସୁଦଶାବ୍ରତର ସୂତା । ବେକକୁ ବାନ୍ଧି ରଖିଛି ଗ୍ରେଣ୍ଟ ଗ୍ରେଣ୍ଟ ହରଡ଼ଫାଳିଆ ମାଳି ।

ଗୋରା ଚକଚକ ଦେହରେ ସେତିକ ଗହଣା । ବାକି ଯାହା ଥିଲା ବଗଡ଼ା ଭାତ, ଓଷଦ ମହୁଷଧିରେ ଖପିଯାଇଛି । ହାତରେ ଝୁରି ଝୁରି ଚାରିଟି ରବର-କାଚ । ପାନପତରିଆ ଗୋଲଗାଲିଆ ଗଉର ମୁହଁର ସରୁ ସରୁ ଭ୍ରୂଲତା ମଝିରେ ସିନ୍ଦୂର ଟୋପା । ଅଳିଅଳିକେଶକୁ ଭାଗଭାଗ କରିଥିବା ସୀମନ୍ତରେ ସିନ୍ଦୂର ଗାର । ଆଖିରେ ଦି'ଧାର କଜଳ । ସେହି ପଦ୍ମପାଖୁଡ଼ିଆ ଆଖିରୁ ଝରିପଡ଼ୁଛି ଦି'ଧାର ଲୁହ ।

ଆନନ୍ଦ ତାଙ୍କର ପାପୁଲି ଧରି ଖଟ ଉପରେ ବସାଇଲେ । ହସ ହସ ହୋଇ କହିଲେ, ବେପାର ନିଶ୍ଚୟ କରିବ ଇନ୍ଦିରା ! କରିବ କଅଣ, ମୁଁ ବେପାର ଆରମ୍ଭ କରିସାରିଲଣି । ହାଡ଼ବନ୍ଧୁ ଚଉଧୁରୀଙ୍କୁ ମୁଁ ଭାଗୀଦାର କରିଛି । ବେପାର ପାଇଁ ଯଥେଷ୍ଟ ଧନ ଲୋଡ଼ା । ଟଙ୍କା ବୁଣିଲେ ଟଙ୍କା ଫଳିବ । ସେଇଥିପାଇଁ ଜମି ବିକଲି । ହାଡ଼ବନ୍ଧୁ ବି ମହାଜନର ଗୁମାସ୍ତା ଛାଡ଼ିଛି । ସେ ମଧ୍ୟ ଜମି ବିକିଛି । ବେପାରର କାଇଦା ତାଙ୍କୁ ଭଲ ଜଣା । ମହାଜନର ଗୁମାସ୍ତା କରି କୋଡ଼ିଏ ବର୍ଷକାଳ ମୁଁ ପେଟରେ ଓଦାକନା ପକାଇ ରହିଥିଲି । ଗୁମାସ୍ତା ଗଲାରୁ ବୁଝିଲି ନଡ଼ିଆର କେଉଁ ଶିରରେ ପାଣି ପଶେ । ତା ପାଇଁ ସବୁ ମୁଁ କରୁଥିଲି । ମୋ ନିଜ ପାଇଁ ମୁଁ କରିପାରିବ ନାହିଁ ?

କାହିଁକି ନ ପାରିବ ?

ପାରିବ । ଆମେ ବର୍ତ୍ତେ ପଚିଶ ହଜାର ଟଙ୍କାର ଗୋଟାଏ କୋଠା-କାମ ପାଇଛୁ । ହାକିମମାନଙ୍କୁ ସନ୍ତୁଷ୍ଟ କରିପାରିଲେ ଏମିତି କେତେ କାମ ମିଳିବ । ଲାଭ ନିଶ୍ଚୟ ହେବ । ତମେ ଧୈର୍ଯ୍ୟ ଧର ।

ଖାଲି କାଣ୍ଟ୍ରାକ୍ଟି କାମ ?

ତମର ବୁଦ୍ଧି ଓ ବିବେକ ମୋଠାରୁ ବେଶୀ ଇନ୍ଦିରା ! ତମେ ମୋ ଠାରୁ ଅଧିକ ପାଠ ପଢ଼ିଛ । ତମର ବୁଝିବା ଦରକାର ଯେ, କୋକଣିଆଳି ତା ଗାତର ବହୁତ ମୁହଁ ରଖିଥାଏ । ଗୋଟାଏ ପାଖରୁ ବିପଦର ଆଭାସ ପାଇଲେ ସୁବିଧା ବାଟରେ ସେ ଖସି ପଳାଏ । ମୂଷା ବି ସେଇଆ କରେ ।

ଆମର ବେପାରୀ ଦଳ, ପୁଣି ହାତରେ ପାଓ୍ୱାର ଥିବା ଓ ବିନା ପରିଶ୍ରମରେ ଧନୀ ହେବାକୁ ମନାସୁଥିବା ଦଳେ ଲୋକ, ଧରାପଡ଼ିଲେ ବିପରି ଖସିଯାଇ ନିଜକୁ ବଞ୍ଚାଇପାରିବେ, ତାର ବହୁତ ବାଟ ଆଗରୁ ରଖି ତାଙ୍କ ବେପାରରେ ହାତ ଦିଅନ୍ତି । ସମସ୍ତ କିସମର ବେପାରୀଙ୍କ ସମ୍ପର୍କରେ ବାରମ୍ବାର ଆସି ମୁଁ ସବୁ ଜାଣିଛି । ଶିଖିଛି । ପେଟ ହାକୁହାକୁ କରୁଥିଲି । ଢୋକେ ପିଇ ଦଣ୍ଡେ ଶୋଉଁଥିଲି । ଦେଖିଲି ଶିଖିଲି କାମକୁ

କାର୍ଯ୍ୟରେ ଲଗାଇ ଫାଇଦା ଉଠାଇବାର କ ଉପାୟ ଥିଲା ? ସାହସ କେଉଁଠୁ ଆସନ୍ତା ?

ସତ ଯେ, କେବେ ଆମର ଭାଗ୍ୟ ଫେରିବ ? ଘରେ ଚାଉଳ, ଡାଲି, ପନପରିବା କିଛି ନାହିଁ । ତେଲ, ଲୁଣ, ଲଙ୍କା, ଫୁଟଣ ସରିଆସିଲାଣି । ଜମିବାକୁ ଟଙ୍କା ତମେ ବେପାରରେ ଲଗାଇବ । ଘର ଚଳିବ କପରି ? ନା, ମୁଁ ଆଉ ପାରିବ ନାହିଁ । ମୋ ପାଖରେ ଖାଲି ଏଇ ହରଡଫାଳିଆ ମାନଟି ଅଛି, ଆଉ କିଛି ନାହିଁ ।

ଇନ୍ଦିରା କାନ୍ଦିଉଠିଲେ । ଦୁଇ ହାତ ଟେକି ସେଲ୍ଫ ହାରର ସ୍ଲେଟ ପାନପତରିଆ ପଦକଟି ଧରିଲେ । କହିଲେ, ଏଇଟିକୁ ନେଇଯାଅ । ତମର ସେ ଗେଲବସର ଭଣଜା ଟୋକାକୁ ଏ ଘରୁ ବିଦାକର । ଆମ ଅବସ୍ଥାର ଲୋକଙ୍କ ପକ୍ଷରେ ମଣିଷଟିଏ ପୋଷିବା ହାତୀ ପୋଷିବା ସଙ୍ଗେ ସମାନ । ମାସେ ଦୁ' ମାସରେ ତମ ଭଉଣୀଙ୍କ ତା ପାଖକୁ ଯେଉଁ ଦଶ ପନ୍ଦର ଟଙ୍କା ପଠାନ୍ତି, ସେତକ ତାର ପାଠ ଖରଚରେ ସରେ । ପଡଆସ୍ନ ଦେଖାଇବାକୁ ସେ ଝିଅ ଦୁଇଟାଙ୍କ ପାଇଁ କେଉଁଥର ଜାମା, କେଉଁଥର ବହି, ଖାତା ପେନସିଲ୍ କଣିଦିଏ ।

ଆନନ୍ଦଚନ୍ଦ୍ର ଇନ୍ଦିରାଙ୍କର ହାତ ଦିଓଟି ଧରି ହସ ହସ ହୋଇ ତାଙ୍କର ବେକରୁ ଖସାଇଦେଲେ । କହିଲେ, ସେଇଟା ଏବେ ଥାଉ । ସବୁ ଆମର ନୂଆ କଣ୍ଟ୍ରୋଲ୍ ଦୋକାନରୁ କଣା ହୋଇ ଆସିବ । ହାଡ଼ବନ୍ଧୁଙ୍କ ନାମରେ ସୂତାହାଟରେ ଏବେ ଖୋଲାଯାଇଛି । ଚାଉଳ, ଗହମ, ମିଶ୍ରି, ଚିନି ଓ ଅନ୍ୟାନ୍ୟ କେତେ ଦ୍ରବ୍ୟ ବେପାର କରିବାପାଇଁ ବନ୍ଧୁ ହାଡ଼ବନ୍ଧୁଙ୍କ ନାମରେ ମୁଁ ଲାଇସେନ୍‌ସ୍ କରିଆଣିଛି । ସବୁ ସେହି ଦୋକାନରୁ ଆସିବ ।

ଭଣଜା ବିଷୟ ସମ୍ବନ୍ଧରେ ଇନ୍ଦିରାଙ୍କର ଅଭିଯୋଗକୁ ଚତୁରତାର ସହିତ ଆନନ୍ଦଚନ୍ଦ୍ର ଟାଳିଦେଇଥିଲେ । ଇନ୍ଦିରା ଏହା ଅନୁଭବ କଲେ । ନିଶ୍ଚିନ୍ତ ହେଲେ । ସେ ତାଙ୍କ ସ୍ୱାମୀଙ୍କ ଉପରେ ଅଭିମାନ କରି, ତାଙ୍କର ଭଣଜା

ଘରେ ଗୋଟାଏ ଅନାବଶ୍ୟକ ଜୀବ—ଏ ଧାରଣା ପ୍ରକାଶ କଲେ ସିନା, ତାଙ୍କର ଆଗ୍ରହ ଆନନ୍ଦଙ୍କ ତରଫରୁ ମନଢ଼ଳେ ଉତ୍ତର ଦେଲ୍, କହୁ କହୁ କହିଦେଲ୍ ଇନ୍ଦିରା, ଯାହା କହିଲ୍, ସେତକ ତମର ମନକଥା ନୁହେଁ ।

ବସନ୍ତ ହାତ-ବାରସି । ସେହି ଛୋଟ ପିଲାଟା ପାଇଁ ସଂସାର ଚଳନ୍ତି । ପୁଅ ହୋଇଥିଲେ ତାର ରାଗରୋଷ ସହିଥାଆନ୍ତେ । ତାର ଉତ୍ପାତ, ତାର ଆଡ଼ରୁଷା ସମ୍ଭାଳନ୍ତେ । ବସନ୍ତ ଏ ଘରର ପୁଅ ନୁହେଁ । ତାର କିଛି ଜଞ୍ଜାଳ ନାହିଁ ।

ଚାକର ଗୋଟାକର କାମ ସେ କରୁଛି । ଚାକର ହୋଇଥିଲେ ଦରମା ନେଉଥାନ୍ତା । ଚୋରିଚମାରି କରୁଥାନ୍ତା । ଭୁଲ ଭଟକାରେ, କାମ ବିଳମ୍ବରେ ପଡ଼େ କହିଲେ ସେ ଚାକର ମୁହେଁ ମୁହେଁ ଜବାବ ଦେଉଥାନ୍ତା । ଘରର ଗୁମର ପଦାରେ ଖୋଲୁଥାନ୍ତା । ଛୋଟ ଛୋଟ ପିଲା ଦୁଇଟାଙ୍କୁ ଏତେ ସ୍ନେହ କରୁ ନ ଥାନ୍ତା । ସେ ଏ ଘରର ଚାକର ନୁହେଁ ।

ମାଷ୍ଟର ହୋଇଥିଲେ ଦରମା ନେଉଥାନ୍ତା । ଘୋଡ଼ାରେ ଚଢ଼ି ଆସିଲ୍-ପରି ଆସନ୍ତା । ଘଣ୍ଟାଏ ପାଟିକରି, ଏଣୁ ତେଣୁ ପଢ଼ାଇ, କ'ଣ ସବୁ ପଚାରି, ନ ଆସିଲେ, ଟିକିଏ ଡେରିରେ ଆସୁଥିବା ନଅବର୍ଷ-ସ୍କୁଲର ଝିଅକୁ ଖୁନ୍ଦାଏ, ବିଧାଏ ଥୋଇ, କନ୍ଦାଇ ଝିଅର କାନ୍ଦଣା ସ୍ୱରକୁ ବୁଡ଼ାଇଦେବାକୁ ଆହୁରି ରଡ଼ି ଛାଡ଼ି ସାଇକଲ ଚଢ଼ି ଛୁ କରନ୍ତା । ଯେମିତି କରୁଛି ପଡ଼ୋଶ ଘରର ମାଷ୍ଟର । ଅନୁପାର ସମବୟସୀ ସାଙ୍ଗ ଝିଅଟିକୁ ସେ ପଢ଼ାଏ । ମାସକୁ ମାସ ପନ୍ଦର ଟଙ୍କା ଗଣିନିଏ ।

ବସନ୍ତ ମାଷ୍ଟର ନୁହେଁ । କେଡ଼େ ସୁନ୍ଦର ହସାଇ ଖେଳାଇ, ଅନୁପା ଅଡ଼ିବସିଲେ ତାକୁ ଗେହ୍ଲେଇ ଗେହ୍ଲେଇ ହାତି ଦେବ ଘୋଡ଼ା ଦେବ କହି ପାଠ ପଢ଼ାଏ । ସେ ଅବାଧ୍ୟ ହେଲେ ବସନ୍ତ ଓଲଟି ରୁଷେ । କେବେ କେବେ ଦେଖିଛନ୍ତି ଇନ୍ଦିରା, ଅନୁପା ବସନ୍ତର ପିଠିରେ ଲଦିହୁଏ । ବାଳ ଓଟାରେ । ବସନ୍ତର ରୁଷା ଭାଙ୍ଗିବାକୁ ତା କୋଡ଼ରେ ବସି କହେ, ହଉ ତେବେ ପଢ଼ା । ମୁଁ ଚଗଲ୍ ହେବ ନାହିଁ ।

ବନ୍ଦନା ତାକୁ ଗେଲ କରେ । କୋଳରୁ ଉଠାଇ ତଳେ ଥୁଏ । ପାଠ ପଢ଼ାଏ । କେଡ଼େ ବେଗି କେତେ ପାଠ ପଢ଼ିଲାଣି ଅନୁପା ! ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଲାଣି ।

ଆର କୋଠରିରେ ବନ୍ଦନା ପଢ଼ାଉଛି । ସବୁ କାମ ସରିଲେ ରାତିରେ ସେ ନିଜର ପାଠ ପଢ଼େ । କେତେବେଳେ ଛୁଟି କରି ଶୁଏ । ସକାଳେ ସମସ୍ତଙ୍କ ଉଠିବା ଆଗରୁ ସେ ଉଠେ । ନିଜର ନିତ୍ୟକର୍ମ ଶେଷ କରେ । ଅନୁପାକୁ ଉଠାଇ ଦାନ୍ତ ଘଷାଏ । ଦିହେଁ ପ୍ରାର୍ଥନା ଆରମ୍ଭ କରନ୍ତି—"ଯାହା ମୁଁ କରଇ ଯାହା ମୁଁ କହଇ ଯାହା ମୁଁ ଚିନ୍ତଇ ମନେ, ଜଗତର ପିତା ପରମେଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ ; ମୋ ପାଶେ ଅଛନ୍ତି ଦିବସ ରଜନୀ ମହାପ୍ରଭୁ ପରାତ୍ପର, ଏ କଥା ସୁମରି ହୃଦୟେ ତାହାଙ୍କୁ ପୂଜିବି ମୁଁ ନିରନ୍ତର ।" ପୁଣି କେବେ କେବେ ସେମାନେ ପ୍ରାର୍ଥନା କରନ୍ତି —"ସତ୍ୟପଥେ ଧର୍ମପଥେ ନେଇଯାଅ ମୋତେ, ଭସାଅ ପରାଣ ମୋର ତବ ପ୍ରେମସ୍ରୋତେ ; ପ୍ରଭୋ ପରମ ଶରଣ, ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।"

କୋମଳ ମଧୁର ପିଲାଳିଆ ସ୍ୱର ଦୁଇଟି ମିଶି ଏକ ହୋଇଥାଏ । କାନକୁ ମିଠା ଲାଗେ । ଧୀରେ ଧୀରେ ସକାଳୁଆ ନିଦ ଭାଙ୍ଗିଯାଏ । ଆଖିର ପାଖୁଡ଼ା ଉନ୍ମୋଚିତ ହୁଏ । ପବିତ୍ରତାର ଧୀର ଶୁଭ୍ର ତରଙ୍ଗ ଉଠେ ଅନ୍ତର ତଳେ । କ୍ଷଣକ ପାଇଁ ଭୁଲିହୋଇଯାଏ ଅଭାବ, ଅନଟନ, ତେଲଲୁଣ ସଂସାରର ଚିନ୍ତା, ସବୁ ନିର୍ଯ୍ୟାତନାର ବ୍ୟଥା ।

ସ୍ନେହର ପିତୁଳା ।

ପୁଅ ନୁହେଁ, ସେ ଭଣଜା । ପାଠ ପଢ଼ୁ ବା ନ ପଢ଼ୁ, ସେ ମଣିଷ ପରି ମଣିଷ ହେବ । ଦୁଃଖ ଯିବ ଚନ୍ଦନାଙ୍କର । ଈଶ୍ୱରଙ୍କର କ'ଣ ଥାଏ ? ସେ ଆଶା କରିଥିଲେ ଏ ଗର୍ଭରୁ ଜନମିବ ପୁଅଟିଏ । ଦୁଇଟିଝିଅ ପରେ ସୁବର୍ଣ୍ଣ-ପ୍ରତିମା ପୁଅ । କେତେ ମାନସିକ ସେ କରିଥିଲେ । ହେଲା ଝିଅଟିଏ । ସେଦିନ ଷଷ୍ଠୀମଙ୍ଗଳା ବସାରେ । ଚନ୍ଦନା ଅପା ଖବର ପାଇ ଗ୍ରାମରୁ ଆସିଥିଲେ ।

ସାଙ୍ଗରେ ସେ ଆଣିଥିଲେ କେତେ ବର୍ଷର ପୁରୁଣା ପଥି-ଗୃହଜନ । ଠେକାଏ ଖଇରମଗ ଗୁଆଘିଅ । ଘରର ମାଣ ଭଜାମୁଗ-ଡାଲି । ସଜନା ଛୁଇଁ, ବନ୍ଦୁଲ କଦଳୀ, ବାଇ-ବାଇଗଣ । ତାଙ୍କ ନିଜ ହାତର ଜୁଆଣିଛୁଆ ବଡ଼ି ପୁଞ୍ଜାଏ, ଅରୁଚିଛଡ଼ା ଆଚୁର ।

**ସ**ଂସାରର ଅଭାବ ଦୂର ହୋଇଥିଲା । ଗୃହଜନ, ଡାଲି, ପନିପରିବା, ମାଛମାଂସର ଅଭାବ ହେଉ ନ ଥିଲା । ଲୁଗାପଞ୍ଜାବୀ, ଶାଢ଼ିବ୍ଲାଉଜ, ପିଲାଙ୍କ ପାଇଁ ଚଡ଼ି ଓ ଫ୍ରକ୍‌ର ସଂଖ୍ୟା ଦିନୁଦିନ ବଢ଼ିବାକୁ ଲାଗିଲା । ସୋଡ଼ା ଓ ସାବୁନରେ ସେ ସବୁକୁ ଘରେ ସଫା କରିବା ଲୋଡ଼ା ହେଲା ନାହିଁ । ଧୋବାଘରେ ପକାଇଲେ ଅସୁବିଧା ହେଲା ନାହିଁ । ମୁଣ୍ଡ ପାଇଁ ବାସନା ତେଲ, ପାଦ ରଙ୍ଗାଇବାକୁ ଅଳତା ମିଳିଲା । ଦେହ ଧୋଇବାକୁ ଚନ୍ଦନ-ସାବୁନ୍, ମହମହ ବାସ । ଦୁଆର ଓଳାଇବାକୁ, ବାସନ ମାଜିବାକୁ ଠିକା ଚାକରାଣୀ ରହିଲା । ବୁଢ଼ା ପାଇଁ, ପିଲାଙ୍କ ପାଇଁ ଦିନକୁ ଦୁଇ କାଳେ କ୍ଷୀର ଲାଗୁଆ ହେଲା । ପାଞ୍ଚରେ ପଞ୍ଚେଇହେବାକୁ ମନ ଟିକିଏ ଡାକିଲା ।

ସ୍ୱାମୀଙ୍କର ଦରମା ଉପରେ ଚାଲିଛି, ଅବା ଜମିବାକା ଧନରୁ ଖରଚ ଚାଲିଛି, ଇନ୍ଦିରା ବୁଝିପାରିଲେ ନାହିଁ । କେବେ ଆନନ୍ଦଙ୍କୁ ପଚାରି-ବାକୁ ସାହସ କଲେ ନାହିଁ । ସେ ଦେଖୁଛନ୍ତି, ସାଇତି ରଖୁଛନ୍ତି । ଗହମ-ଗୋଟି-ଗଣିତା । ବଡ଼ା ବଡ଼ା ନୋଟ୍ । ଥଳୀ ଥଳୀ ରେଜକି । ଆସୁଛି, କୁଆଡ଼େ ଚାଲିଯାଉଛି । ନୂଆ ଟ୍ରଙ୍କ ପୂର୍ଣ୍ଣ ହେଉଛି । ଆଖି ଝଲସାଇ ଘଣ୍ଟାଏ ଦି'ଘଣ୍ଟା ତାଙ୍କର ମାଲିକାନାରେ ରହୁଛି । ପୁଣି ପାଞ୍ଚସାତ ଦିନରେ ସବୁ ଶୂନ୍‌ଶାନ୍ । ସେଥିରୁ କାଟି ହାତପଇଠ କରି ନିଜ ପାଇଁ ଓ ପିଲାଙ୍କ ପାଇଁ ଗହଣାଗଣ୍ଠି ଦି ଖଣ୍ଡ ଗଢ଼ାଇ ଅଭାବ ବେଶ ଦୂର କରିବାକୁ ମନ ସକସକ ହେଉଛି । ସାହସ କୁଳାଉ ନାହିଁ ।

ମନ ପୁଣି ବୁଝାଉଛି, ସେ ଯେତିକ ଦେଲେ ସେତିକରେ ଖୁସି ହେବା ଉଚିତ । ହାତକୁ ଦି' ଦି ପଟ କାଚ, ବେକକୁ ଖଣ୍ଡିଏ ଲେଖାଏଁ ଅଳ୍ପ

ଓଜନିଆ ହାର, କାନକୁ ହଳେ ହଳେ ଫୁଲ । ସେତିକରେ ସନ୍ତୁଷ୍ଟ ହେବା ଭଲ ।

କଣ୍ଟ୍ରୋଲ ଦୋକାନ ସଙ୍ଗକୁ ସିମେଣ୍ଟ ଗୋଦାମ ହୋଇଛି । ଆହୁରି କୋଠା କାମରେ, ସହର ଓ ମୋଫସଲରେ, କାନ୍ତରାଟି ସେ ଓ ତାଙ୍କର ପ୍ରିୟ ବନ୍ଧୁ ହାଡ଼ବନ୍ଧୁବାବୁ । କେତେ ଗୁମାସ୍ତା, ମିସ୍ତ୍ରୀ, ମଜୁରିଆ କାମ କରୁଛନ୍ତି । ଘର ଆଗରେ ଭିଡ଼ ଜମାଉଛନ୍ତି । ଗାଡ଼ିଭୁଣ୍ଡ କରି ଯିଏ ଯୁଆଡ଼େ ଯାଉଛନ୍ତି ।

ହାଡ଼ବନ୍ଧୁବାବୁ ଆସନ୍ତି, ପଶନ୍ତି ଆନନ୍ଦଙ୍କର ଶୋଇବାଘରେ । ଦୁଇବନ୍ଧୁ ଘଣ୍ଟା ଘଣ୍ଟା ଆଲୋଚନା କରନ୍ତି । ଗୁନ ଗୁନ କଥାଭାଷା, କାଗଜ-ପତ୍ର ଘଣ୍ଟାଘାଣ୍ଟି । ହିସାବପତ୍ର ଦେଖା । ବଇମ ବଜାରକୁ ଯାଏ, ଜଳଖିଆ ଆଣେ । ଡେରି ହେବାର ସମ୍ଭାବନା ଥିଲେ ବଇମ ପୁଣି ବଡ଼ ମାଛ ଆଣିବାକୁ ଧାଏଁ ।

ଇନ୍ଦିରା ଆଗେ ଆଡ଼ ହେଉଥିଲେ । ବାରମ୍ବାର ଦେଖାସାକ୍ଷାତ୍ ଓ ଚରିତ୍ର ପରେ ସଙ୍କୋଚ ଭାଙ୍ଗିଲା । ସ୍ୱାମୀ ଓ ସ୍ୱାମୀଙ୍କର ସମବୟସ୍କ ଉପକାରୀ ବନ୍ଧୁଙ୍କୁ ଗୃହ ଜଳଖିଆ ଦେବା, ପାଖାପାଖି ଆସନରେ ବସାଇ ଗଳ୍ପଭୋଜନ କରାଇବାରେ, ଲାଜସରମ ରହିଲା ନାହିଁ ।

କଳା ମିଚମିଚ ରଙ୍ଗର ମଣିଷଟିଏ ସେ ହାଡ଼ବନ୍ଧୁ । ବଳିଲା ବଳିଲା ବଳିଷ୍ଠ ଦେହ । ଗୋଲ ମୁହଁଟି ନିଖୁଣ । ଚ୍ଯାପ୍ଟିଆ ନାକ । ଛୋଟ ଛୋଟ ଆଖିର ଧଳା ଡୋଳା ଟିକିଏ ମାଟିଆ । ଛୋଟ କପାଳ ଉପରେ ଘଞ୍ଚ ଝାଆଁ ସିଆ କେଶ । ଛୋଟ ଛୋଟ ହୋଇ କଟାହୋଇଛି । ତାଙ୍କର ଅସଲ ଗଉରବ ଗୋଟ୍ଟାଳିଆ ନିଶହଳକ । ପାଟି ଉପରୁ ଓ ପାଟି କଡ଼ରୁ ସମତୁଲ ହୋଇ କଟା । ଗୃହିଁ-ଦେଲେ ସେତେ ରଙ୍ଗର ବୋଲି ଜଣାଯାଆନ୍ତି, ପ୍ରକୃତରେ ସେ ତାହା ନୁହନ୍ତି । ପାଖାପାଖି ହୋଇ ଦୁଇ ବନ୍ଧୁ ଠିଆ ହୋଇଥିଲେ, ସେ ଆନନ୍ଦଙ୍କର ଭ୍ରୂଲତା ସରିକି ହଅନ୍ତି । ଢେଙ୍ଗାଳିଆ ଇନ୍ଦିରାଙ୍କର ଉଚ୍ଚତା ସେତିକି ।

ଏବଯାଏ ସେ ଦଣ୍ଡବୈଠକ କରନ୍ତି । ମୁଦ୍‌ଗର ବୁଲାନ୍ତି । ବାଡ଼-ଖେଳରେ ଧୁରନ୍ଧର । ପାଏ ଗଞ୍ଜାବୁଟ ଘେରାଇ ପୁଞ୍ଜାଏ ହୁକ୍‌କାରେ ତାକୁ ଭସ୍ମ କରିପାରନ୍ତି । ପିଲାଦିନେ କାଳେ ସେ ଉତ୍କଳ-ଖ୍ୟାତ ପଦ୍ମଚରଣଙ୍କର ଆଖଡ଼ାରେ କୁସ୍ତି-କସରତ ଶିଖିଥିଲେ, ଯେଉଁଠି ବହ୍ନମଙ୍କ ବାପେ ବୀର-କେଶରୀ ବି ସେଇଆ କରୁଥିଲେ ।

ବୀରକେଶରୀ ହାଡ଼ିବନ୍ଧୁଙ୍କଠାରୁ ଚାରି ପାଞ୍ଚ ବର୍ଷ ବଡ଼ । ଏକା ଗୁରୁଙ୍କର ଚେଲା । ସେମାନେ ଗୁରୁଭାଇ । କଥା ପଡ଼ନ୍ତେ ଏ ଘଟଣା ଜଣା-ପଡ଼ିଲା । ଭଲ ହେଲା । ସମ୍ବନ୍ଧ ଲାଗିଲା । କିନ୍ତୁ, ସମ୍ବନ୍ଧଟି ହେବ କଅଣ ? ବହ୍ନମ ହାଡ଼ିବନ୍ଧୁଙ୍କୁ କଅଣ ଡାକିବ ?

ସାଧାରଣ ସାମାଜିକ ବିଧିପ୍ରକାରେ ମଉସା ଡାକିବାର କଥା ; ହାଡ଼ିବନ୍ଧୁ ଆନନ୍ଦଚନ୍ଦ୍ରଙ୍କଠାରୁ ବୟସରେ ବଡ଼ । ଇନ୍ଦ୍ରଶ ତାଙ୍କର ଶାଳୀ ଲେଖା ହେବେ । ସେଥିରେ ଇନ୍ଦ୍ରଶଙ୍କର ଆପତ୍ତି ନ ଥିଲା । ବାପଘର ହିସାବରେ ସେ ଅନେକଙ୍କର ସେହି ମଧୁର ସମ୍ପର୍କ କେବଠାରୁ ହୋଇ-ସାରିଥାନ୍ତି । ଅନ୍ୟ ଘନିଷ୍ଠ ସମ୍ବନ୍ଧ ହିସାବକୁ ନ ଆସିଲେ ମଉସା ନ ହେଲେ ବି ସେହି ସମ୍ବନ୍ଧ ଯୋଡ଼ିବାର କଥା । ବହ୍ନମ ଯଦି ତାଙ୍କୁ ମାମୁଁଙ୍କର ସାଙ୍ଗ ରୂପେ ମାମୁଁ ବୋଲି ଡାକେ ଇନ୍ଦ୍ରଶ ଓହ୍ଲାଇଆସିବେ ଭାଇବୋହୂ ସ୍ତରକୁ । ସେତକ ହୋଇପାରିବ ନାହିଁ । ଇନ୍ଦ୍ରଶ ତାଙ୍କ ଆଗକୁ ଯାଉଛନ୍ତି । ମୁଣ୍ଡରେ ଓଢ଼ଣା ନ ଥାଇ ହସି ହସି ସେ କଥାଭାଷା କରିସାରିଛନ୍ତି ।

ବହ୍ନମର ବାପାଙ୍କର ସେ ଆପଣାର ଗୁରୁଭାଇ ଥିଲେ । ଏକା ମା-ପେଟର ଭାଇ ପଛ, ଗୁରୁଭାଇ ଆଗ । ବହ୍ନମ ତାଙ୍କୁ ଦାଦା ଡାକିବା ଫାବୁଛି । ଏହା ହିଁ ନ୍ୟାଯ୍ୟ । ହାଡ଼ିବନ୍ଧୁଙ୍କର ସେ ହେବେ ଶଳାଭାଉଜ । ସେଥିପାଇଁ ବୟସର ଭେଦ ବାଧା ହୁଏ ନାହିଁ । ସମସ୍ତେ ଜାଣନ୍ତି ଶଳାପଦ ପେଟରେ ରଖି ଖାଲି ଭାଉଜ ବୋଲି ଡକାଯାଏ । ଏଇ ସମ୍ବନ୍ଧ ସିଦ୍ଧାନ୍ତ ହୋଇଥିଲା ।

ବହ୍ନମ ତାଙ୍କୁ ଦାଦା ଡାକିଲା । ଇନ୍ଦ୍ରଶଙ୍କ ନ୍ୟାଯ୍ୟ । ତାଙ୍କର ବଡ଼ ପୁଅ ବାଞ୍ଛିବନ୍ଧୁ ବହ୍ନମର ସହପାଠୀ । ତାର ମାଆଙ୍କ ପରି ସେ ଧଡ଼ିଆ ।

ଆଗବାଢ଼ା ତା' ମାଆର । ବର୍ଷେ ପୂରୁଣୁ ନ ପୂରୁଣୁ ପୁଅ । ଧନ୍ୟ କହିବ ତାର ଶ୍ରେଗଣୀ ମାଆଙ୍କୁ ! ହାଡ଼ବନ୍ଧୁଙ୍କୁ ସେ ତିନି ପୁଅ ଦେଇସାରିଲେଣି । ସେଇଠି ଅଟକ । କପାଳ ନ କହି କଅଣ କହିବ ?

ତିନି ଝିଅର ଜନମ ଚନ୍ଦନା ଉଦରର କପାଳର ଦୋଷ ଦିଅନ୍ତି । ଆନନ୍ଦଚନ୍ଦ୍ରଙ୍କର ଦୋଷ ଦେବାକୁ ମନ ବଳେ ନାହିଁ । ଚନ୍ଦନାଙ୍କୁ ଭଲ ପାଇବାରେ ସେ କେବେ ହେଳାତ୍ରୁଟି କରିନାହାନ୍ତି । ବୟସ ଆଗେଇଯାଉଛି ହିଁ, କିନ୍ତୁ ତାଙ୍କ ସ୍ନେହ-ଶରଧାର ଢଙ୍ଗ ତାଙ୍କୁ ଦିନୁଦିନ ପିଲାଳିଆ କରୁଛି । ଅଭାବ କେବେ ଦୁହିଁଙ୍କ ମଝିରେ ଠିଆହୋଇ ଦୁହିଁଙ୍କୁ ଦୂରେଇ ଦେଇ ନାହିଁ । ହେଉନ୍ତୁ ତିନିଟା ଝିଅ । ଝିଅ କାହାର, ପୁଅ କାହାର !

ଅନୁପା ଚେରେଇ ଆସୁଛି । ବୟସ ଲାଗିଲେ ସୁନ୍ଦରିଆଟିଏ ହେବ । ସେ ଭଲ ପଢ଼ୁଛି । ଏବେକାଳକୁ ଝିଅମାନେ ପାଠପଢ଼ାରେ ପୁଅମାନଙ୍କୁ ଟପିଲେଣି । ତେବେ, ପାଠଟା ବାହାନିମିତ୍ତ ବେଳକୁ ବେଶୀ କାମ ଦିଏ ନାହିଁ । ଦିଏ ରୂପ । ଜୋଇଁ ହେବାକୁ ଟାଳଟୁଳ କରୁଥିବା ପାଠୁଆ ପୁଅ ଦୂରର କଥା, ତାର ବାପ ମା ଆଗ ରୂପ ଦେଖିବାକୁ ଚାହିଁବେ । ପସନ୍ଦ ହେଲେ ତେଣିକି ଆଉ ଯାହା ।

ଅନୁପା ସୁନ୍ଦର ହୋଇଆସୁଛି । ତା'ର ପାଠ ହେଉ ନ ହେଉ, ଚିନ୍ତା ନାହିଁ । ପଡ଼ୋଶୀ ଘରର ପିଲାଙ୍କ ସଙ୍ଗରେ ସ୍କୁଲକୁ ଯାଇ ପାଠ ପଢ଼ୁଛି ତ ପଢ଼ୁଥାଉ । ସେ କୁଆଡ଼େ ଭଲ ପଢ଼ୁଛି । ତା କ୍ଲାସରେ କେବେ ପ୍ରଥମ, କେବେ ଦ୍ୱିତୀୟ ହେଉଛି । ଏଥିପାଇଁ ନିରୁପମ ଦାୟୀ । ଆଗ ସେ ଅନୁପାକୁ ପଢ଼ାଇ ସାରିଲେ ପରେ ନିଜର ପାଠ ଆରମ୍ଭ କରେ ।

ଚନ୍ଦନା ଯେବେ ଆସିଥିଲେ, କଅଣ ତାଙ୍କର ମନ କେଜାଣି, ଟିକି ଝିଅ ସୁରୂପାକୁ ଜଙ୍ଘରେ ପକାଇ ତେଲ ହଳଦୀ ଲଗାଇଦେଉଥିଲେ । କହୁଥିଲେ, ସାନଟା ଅନୁପାଠାରୁ ବି ସୁନ୍ଦର ହେବ । ନିରୁପା ଓ ଅନୁପାଙ୍କୁ ହଳଦୀ ଗୁରୁଗୁରୁ ହଳଦୀବସନ୍ତ ଚଢ଼େଇ କରୁଥିଲେ । ପ୍ରତିବାଦ କଲେ ହସି ହସି କହୁଥିଲେ, ତେଲ ହଳଦୀ ଝିଅପିଲାଙ୍କ ଦେହରେ ବାଜିଲେ ରଙ୍ଗ ଚହଟେ । ଦେହରେ ଲାଗେ ।

କେତେ ଜାଣିଆ ଚମଗେଗ ଭଲ ହୋଇଯାଏ । ଏବେ ଦେଖ୍ ତୋ ଅନୁପାକୁ । ତାକୁ ମୁଁ ମୋ ବୋହୂ କରିବ ମ, ଏବକାଳକୁ ଚଳନ୍ତିଣି । ବସନ୍ତ ମୋର ଲେଖାପଢ଼ା କରି ବଡ଼ ମଣିଷ ହେଉ, ଅନୁପାର ଆଗ ଉପଯୁକ୍ତ ହେଉ ।

କେଉଁ ଦକ୍ଷିଣ-ଦେଶରେ କ'ଣ ହେଉଛି । ଗିରକେଶବ ଭାଇ ସେଇ ଦୂର ଦେଶରେ କାମ କରନ୍ତି । ତାଙ୍କର ମୁହଁରୁ କେବେ କଅଣ ସେ ଶୁଣି-ଥିବେ । ନଅ ବର୍ଷର ଫୁଙ୍ଗୁଳା-ଦେହୀ ଝିଅ ଅନୁପାର ଗାଲରେ ବୋକ ଦେଇ ଗେଲରେ ତାକୁ କରିକରି ହସାଉଣୁ, କଥା ନହସରେ କହିଦେଲେ । ଟିକଏ ଦୂରରେ ଠିଆ ହୋଇ ବସନ୍ତ କଣ ଖଣ୍ଡେ ବହି ମହଳନ ହୋଇ-ଆସୁଥିବା ଗୋଧୂଳି-ଆଲୁଅରେ ମନଦେଇ ପଢ଼ୁଥିଲା, ଟିକଏ ଲଜେଇଗଲା । ମୁହଁ ଫଣଫଣ କରି କହିଲା, କଣ ଏଣୁ ତେଣୁ ବକୁଛୁ ବୋଉ ?

ସେ ଘରଭିତରକୁ ପଶିଗଲା । ଅନୁପା ସେମିତି ପାଟିକରି ହସୁଥାଏ ।

ଇନ୍ଦୁମତୀ ଆକଟି କହିଥିଲେ, ଏଡ଼େ ଝିଅ ହେଲୁଣି, ହେରସାଁଙ୍କ ପରି ହସିବା ଭଲ ନୁହେ । ବେମହତ ଢଙ୍ଗ ।

ଅନୁପା ମୁହେଁ ମୁହେଁ ଜବାବ ଦେଇଥିଲା, ହସିବ ନାଇଁ କଣ କାନ୍ଦିବ ?

ସେ କାନ୍ଦିଲା । ଚନ୍ଦନା ତାର ହାତ ଧରି କୋଳକୁ ଟାଣିନେଲେ । ତାର ମୁହଁକୁ ଟେକି ଧରି କହିଲେ, ଛି ! ମାଆ ମାଉସୀ, ଗୁରୁଜନଙ୍କ କଥାରେ ସୁନାଝିଅ ସୁନାବୋହୂଅମାନେ ଜବାବ ଦଅନ୍ତି ନାହିଁ । ଦେଖିନୁ ତୋ ବଜଭାଇକୁ, କାନ କାଟିଦେଲେ ବଡ଼ବଡ଼ଙ୍କ ଆଗରେ ସେ ହୁଁ ଚୁଁ ହେବନି ।

ବସନ୍ତ ସେହି ଢଙ୍ଗର ପୁଅ । କଥା ଅକଥାରେ, ରାଗରୋଷରେ, ମୁହଁ ଛୁଆଁଡ଼ ହାଡ଼ରୁ ମାଉଁସଛଡ଼ା ଟାଣଟାଣ ଦଶପଦ ହାଣିଦେଲେ ସେ ଓଲଟି ପଦେ ଉତ୍ତର ଦିଏ ନାହିଁ । ମୁହଁ ବିରସ କରେ ନାହିଁ । ଯାହା ପଚାରିବ ତାଆରି ସେ ଉତ୍ତର ଦେବ । ଗାଳିଦେବା ଲୋକ ମଣିବେ, ସେ କିଛି କହି-ନାହାନ୍ତି, ଗାଳି ଦେଇନାହାନ୍ତି ।

ମାମୁଁ ଆନନ୍ଦଚନ୍ଦ୍ର ବନ୍ଧନମକୁ କେବେ ଟାଣ କଥା କହିନାହାନ୍ତି । ଘରର ଘରଣୀ ଇନ୍ଦିରା ଅକାଳେ ସକାଳେ କହିଦିଅନ୍ତି । ସେରେ ବାଇଗଣରେ ଦୁଇଟା ପୋକଡ଼ା; ଅଧସେରେ ଗୋଲଆଳୁରୁ ଚାରିଟା ସଢ଼ା ବାହାରିଲାଣି । ଦେଖ ତ, ଛଅଟାଙ୍କିଏ ଲଙ୍କାରେ ମୁଠାଏ ଖଚରା । ସୋରିଷରେ ଅଧେ ବାଲି । ତୋର ଆଖି ନ ଥିଲା କି ବିକ ? ପଇସା ଦେଇ ଆଣିଛୁ, ନା ମାଗଣାଆ ? ପୋଲଖିଆଙ୍କ ଢଙ୍ଗ ସବୁ ! ବନ୍ଧନମ ତା'ର ଜବାବ ଦିଏ ନାହିଁ । ତା ମୁହଁକୁ ଚାହିଁଲେ କେହି ଅନୁମାନ କରିପାରିବ ନାହିଁ ଯେ, ଏପରି ଘୃଣା-ମିଶା ଅନୁଦାର ପଳା-ପଳା-ଯା ନିଆଁ ବାଣ-ଭଷା କିଏ ତା ଉପରକୁ ଫୋପାଡ଼ୁଛି । ତାର ଢଙ୍ଗ କହିଲାଲୋକକୁ ସେହି ବଷୁଆ-ଭଷାକୁ ଫେରାଇ-ଦିଏ ।

ଅନୁପା ତାଙ୍କ କୋଳରୁ ଉଠି ଆଖି ମଳି ମଳି ବନ୍ଧନମ ପାଖକୁ ଚାଲିଯାଏ ।

ହାଡ଼ବନ୍ଧୁଙ୍କ ଦିନେ ସଞ୍ଜରେ ଇନ୍ଦିରା ଚାହିଁ ଦେଉଥିଲେ । ସେ ଅନୁପାକୁ ଅନାଇଲେ । ଅନୁପା ସୁନ୍ଦରିଆ ଦିଶୁଥାଏ । ଚପା ପ୍ୟାଣ୍ଟ ଉପରେ ଚପା ଫ୍ରକ୍ ଖଣ୍ଡେ ପିନ୍ଧିଥାଏ । ବଢ଼ିଆସୁଥିବା ଚାଖଣ୍ଡେ ଲମ୍ବିର କେଶକୁ କୁଣ୍ଡାଇ ଇନ୍ଦିରା ନାଲି ରିବନ୍ ଖଣ୍ଡେ ତା' ମୁଣ୍ଡରେ ବାନ୍ଧି ଦେଇଥାନ୍ତି । ଆଖିରେ ଦି'ଧାରି ସରୁ କଜଳ ଲଗାଇ ଲମ୍ବ ଲଞ୍ଜି କାଟିଦେଇଥାନ୍ତି । କପାଳ ମଝିରେ କୁଙ୍କୁମବିନ୍ଦୁ । ଭଲ ମାନୁଥାଏ ।

ନିରୁପାକୁ ସେ ସଜାଇ ଦେଇଥାନ୍ତି । ଠିକ ସୁରୂପା, ଦେଢ଼ ବର୍ଷର ଥାକୁକିଆ ଝିଅ କୋଳରେ ଥାଏ । ନିଜକୁ ସେ ହେଳା କରି ନ ଥାନ୍ତି । ଯେତିକି ରୂପ ଦେହରେ ବାକି ଥିଲା, ତାକୁ ଘଷି ମାଜି ସେ ଝଟକାଇଥାଆନ୍ତି । ବେଶ ପାଇଁ ଆନନ୍ଦଚନ୍ଦ୍ର ଯେତିକି ସମ୍ଭାର ଯୋଗାଇପାରିଥିଲେ, ସେତିକରେ ସେ ନିଜର ରୂପଯୌବନକୁ ସତେଜ ଓ ପରିସ୍ଫୁଟ କରିଥାଆନ୍ତି ।

ହାଡ଼ବନ୍ଧୁ ତାଙ୍କୁ ଆଗରୁ ଭାଉଜ ବୋଲି ଡାକୁଥିଲେ । ଝିଅଗଡ଼ିଲା ହାତ ଦୁଇଟିକୁ ଉଠାଇ ପାପୁଲି ଯୋଡ଼ି ନମସ୍କାର କରୁଥିଲେ । ଅଳପ କଥା ସେ କହନ୍ତି । କହିଲାବେଳେ ତବ ତବ କରି ମୁଣ୍ଡରୁ ଗୋଡ଼ଯାଏ, କଅଣ ହଜିଲା ଦରବ ଉଣ୍ଡିଲା ପରି, ଗ୍ଲେଟ ଗ୍ଲେଟ ଆଖିଡୋଳାରେ ଚାହିଁଦିଅନ୍ତି । ଥରକୁ ଥର ଜଣ ହଲାଇ ଅଳପ ହସନ୍ତି ।

ଇନ୍ଦିରାଙ୍କୁ ଖୁସି ଲାଗେ । କିଏ କଅଣ ନେଇଯାଉଛି ନା ଦେଇଯାଉଛି ? ମନରେ ଆତ୍ମପ୍ରତ୍ୟୟ ଛପିଛପି ପଶେ । ତିନୋଟି ସନ୍ତାନଙ୍କର ଜନନୀ ହେଲେ ବି, ଦୈବ-ଦେଲା ଅମୂଲ୍ୟ ଦାନ ରୂପ ଓ ଯୌବନ ଏବଯାଏ ସେ ହଜାଇନାହାନ୍ତି । ନାରୀ ଜନମର ସେତିକି ସୌରଭ, ସେତିକି ଗୌରବ । ସ୍ନେହ ସୋହାଗର ସେତିକି ମହକ, ସେତିକି ତ କୁହୁକ ।

ହାଡ଼ବନ୍ଧୁ କାମର ଲୋକ, ଠିକ୍ ଆନନ୍ଦଙ୍କ ପରି । ବିନାକାରଣରେ ସମୟ ନଷ୍ଟ କରିବାକୁ ସେମାନେ ପସନ୍ଦ କରନ୍ତି ନାହିଁ । ପାଞ୍ଚ ଦଶ ମିନିଟ ଏଣୁ ତେଣୁ କଥା ପଡ଼େ । ସେଇଠୁ ଚାଲେ ବେପାର ବଣିଜ, ଲାଭକ୍ଷତିର ଆଲୋଚନା । ବିତର୍କ, ହିସାବ ତନଖି, ଲେଖାପଢ଼ି । ସେମାନେ ଭିତରୁ କବାଟ କିଳନ୍ତି । ଝରକା ବନ୍ଦ କରିଦିଅନ୍ତି । କାଳେ କିଏ ସେମାନଙ୍କର କାଗଜପତ୍ର ଅବା କେଉଁ ଗୋପନୀୟ ମସୁଧା ଚୋରି କରିନେବ !

ଘରେ ବହମ ଓ ଇନ୍ଦିରାଙ୍କ ବ୍ୟସ୍ତତା ଆଜି କେହି ନ ଥାନ୍ତି । ବହମ ପିଲା ଦୁଇଟାଙ୍କୁ ନେଇ ଆରଘରେ । ଆତଯାତ ହେବାର ଲୋକ ଏକା ସିଏ, ଇନ୍ଦିରା । କୋକପରି ଛାତିରେ ଲାଖିଥାଏ ଝିଅ ବିକିଟିକି ସୁରୁପା । ଥିନ ରେକଟେ । ଷୁରୁ ପରି ଦାନ୍ତୁଆ ନୂଆ ଉଠିଥିବା ଦାନ୍ତରେ କାମୁଡ଼ିଦିଏ । ସେଇଟା ତାର ଖେଳ । ଅବେଇଜ ଖୋଇ । ସେ ଅଭ୍ୟାସ ସବୁ ପିଲାଙ୍କର ଥାଏ ଯେ, ଥାକୁଲିଆ ପିଲାଟାର ବୋଝ ବୋହି ସେଷଘରେ ଏକୁଟିଆ କାରବାର ହେବା ଅସୁବିଧା । ଆନନ୍ଦ କଅଣ ବୁଝିପାରୁନାହାନ୍ତି ? ପିଲାଟାକୁ କୋଡ଼ରେ ଧରି କଥାହସା ହେଲେ କଥା କଅଣ ତୁଣ୍ଡରୁ ବାହାରିବ ନାହିଁ ? କାନକୁ ଶୁଭିବ ନାହିଁ ? ବହମକୁ ଡାକିଲେ ସେ ଆଜ୍ଞାକୁ ଅବଧାନ

ହୋଇ ଧାଇଁଆସିବ । କିନ୍ତୁ ପିଲାଙ୍କର ପାଠ ମାଟି ହେବ । ସେମାନେ ଝୁମ୍ପାଝୁମ୍ପି ହୋଇ ଖଳବଳ କରିବେ ।

ଦାଣ୍ଡଘରର ବାହାର-କବାଟ ବନ୍ଦ । ଆନନ୍ଦ ଛାଟିଦା କରି-ଦେଇଛନ୍ତି, ବାହାରୁ ଜଞ୍ଜିର ଖଡ଼ଖଡ଼ କରି ଯିଏ ଯେତେ ଡାକିଲେ ଦରଜା ଖୋଲା ହେବ ନାହିଁ । ଯାହାର ସେପରି ଅଧିକ ଜରୁରୀ କେଉଁ କାମ ଥିବ, ସେ ବଳେ ବି ଘଣ୍ଟା ଅପେକ୍ଷା କରିବ । ନୋହିଲେ, ଫେରିଯାଇ ପରଦିନ ଆସି ଦେଖାକରିବ । କେହି ଅତି ବେଶୀ କଟାଳ କଲେ ଝିଅଟା ଅଳପ ଖୋଲି ନିଜେ ଯାଇ କହିବ ଇନ୍ଦିରା, ସେ ଘରେ ନାହାନ୍ତି । କେଉଁଠିକୁ ଯାଇଛନ୍ତି ପଚାରିଲେ ଜବାବ ଦେବ, ସେ କହିଯାଇନାହାନ୍ତି । କେତେ-ବେଳେ ଫେରିବେ, ଏ ପ୍ରଶ୍ନର ଉତ୍ତର ଦେବ ଯେ ତମକୁ ଜଣା ନାହିଁ । ତାଙ୍କର ନାମ, ଧାମ ଓ ଆସିବାର ଉଦ୍ଦେଶ୍ୟ ପଚାରିବ । ସେ କହିଲେ କହିବ, ନୋହିଲେ ଆପେ ଆପେ ଖସିଯିବ ।

ଜଣାଶୁଣା ଆପଣାର ଲୋକ ହୋଇଥିଲେ ?

କିଛି ନ କହି ନ ଦେଖିଲା ପରି ପଳେଇ ଆସିବ ଇନ୍ଦିରା ! କବାଟରେ ହାତ ମାରିଲେ ମୁଁ ଖବର ପାଇବି । ନିଜେ ପଦାକୁ ଯିବି । ଯାହା କହିବାର କହିବି ।

ଏତେ ଗୁପ୍‌ଚୁପ୍ ?

ବେପାର ବଣିଜର କାରବାର ତମେ ସ୍ତ୍ରୀଲୋକମାନେ ବୁଝିପାରିବ ନାହିଁ । ଭରି ଗହନ । ଖଣ୍ଡାଧାର ଉପରେ ସାବଧାନ ହୋଇ ନ ଚାଲିଲେ ଗୋଡ଼ର ଗୋଛି କଟିଯିବ । ଯେଉଁମାନେ ଆସନ୍ତି, ସେମାନେ କେହି ଆପଣାର ନୁହନ୍ତି । କେହି ପର ନୁହନ୍ତି । ସମସ୍ତେ ଠାଉରିଆ । ମୁହଁରେ ମହୁ, ପେଟରେ ବିଷ । ବାଗ ପାଇଲେ ଚୁଟି ଧରି ପଛରୁ ଝୁଙ୍କାଏ ଦେବାକୁ କୁଣ୍ଠିତ ହେବେ ନାହିଁ ।

ମୋ ଉପରେ ତମର ବିଶ୍ବାସ ନାହିଁ ?

ସେପରି ଧାରଣା ମନକୁ ଆଣ ନା ଇନ୍ଦିରା ! ତମ ବ୍ୟକ୍ତିତ୍ୱ ଆଜି କଏ ମୋର ଏତେ ଆପଣାର ଅଛି ଯେ ମୁଁ ଅବିଶ୍ୱାସ କରିବ ? ତେବେ, ପାଖାପାଖି ଦୁଇଟି ଯୁଗ ଅର୍ଥାତ୍ ଚବିଶି ବର୍ଷର ଛେଚାପିଟା ଲହୁଲୁହାଣିଆ ଟ୍ରେନିଂ ପାଇ ଯାହା ଆମେ କରୁଛୁଁ, ସେଥିରୁ ପଦେଅଧେ ଶୁଣିଲେ କଅଣ ବା ତମେ ସମଝିବ ? ତମର ମନ କୋମଳ । ପ୍ରକୃତି ସରଳ । ଛନ୍ଦ କପଟ ଜାଣ ନାହିଁ । ତୁଣ୍ଡରେ କଥା ଅଟକିବ ନାହିଁ । କେଉଁଠି ଟିକିଏ ଛିଦ୍ର ପାଇଲେ ମୁଣ୍ଡ ଗଳାଇବାକୁ ଚେଷ୍ଟା କରିବ । ଖିଅ ପାଇଲେ ତାକୁ ଧରି ଉପରକୁ ଚଢ଼ିବ । କାମ ଭଣ୍ଡୁର ହେବ । ଆମ ବେପାର ପାଇଁ ତମେ ଯେତିକି କରି ପାରିଛ, ସେତିକି ଯେ ଅମୂଲ୍ୟ, ଆମେ ତାହା ବୁଝିଛୁଁ ।

ତମେ ଯେପରି ଉପଦେଶ ଦେଲ ମୁଁ କଲି । ମୋର ସେଥିରେ କରାମତି ନାହିଁ । ଘରୁ ପଦାକୁ ମୁହଁ କାଢ଼ିବାକୁ ଡର ମାଡ଼ୁଥିଲା । ତମ ପାଇଁ ଗୋଡ଼ କାଢ଼ିଲି । ଲାଜ ସଂକୋଚ ପଦାକୁ ପକାଇ ପରଲୋକଙ୍କ ଆଗକୁ ଗଲି ।

ଫଳ ଫଳିଲା । ଆଜିମାନେ ବି ଲାଞ୍ଚ, ଭେଟି, ଉପହାର, ସଲାମି, ସନ୍ମାନୀ ଦେଉଛନ୍ତି । ହାକିମମାନେ ସବୁ ପେଟରେ ପକାଇ ମୁହଁ ପୋଛି-ଦେଉଛନ୍ତି । ମୋହବତି ଲଗାଇ ନ ଥିଲେ ସେସବୁ କାମ ମିଳି ନ ଥାନ୍ତା । ସେମାନେ ଆମର ଠାକୁର । ଖାଲି ଭୋଗ ଖାଇଲେ ସେମାନେ ସନ୍ତୁଷ୍ଟ ହୁଅନ୍ତି ନାହିଁ । ପୂଜା ଆରାଧନା, ଭକ୍ତି ଲୋଡ଼ା । ସେତିକି ତମେ କରି-ପାରିଲ ।

ଯାଆ ମ ! କଅଣ ଗୁଡ଼ାଏ ତମେ କହୁଛ ? ମୁଁ ଆଜି ଏମିତି ଅଭେକା ବେଶରେ କାହା ଘରକୁ ଯିବି ନାହିଁ କହିଦେଉଛି । ନେଲିବେଳକୁ ନେଇକରି ଯିବ ଦ' ହଜାର ଟଙ୍କିଆ ପଥରବସା ଚକ ଚକ ହାର । ଡାଇମଣ୍ଡ କଟା ଓଜନିଆ କମକୁଟ ଚୁଡ଼ି ଯେ, ତା ମୂଲ୍ୟ ମତେ କହିଲ ନାହିଁ । ଭଲଭଲକା ବନାରସୀ ଶାଢ଼ି—

ସେ ସବୁ ଆମ ବେପାରର ଅଂଶ । ବେପାର ଭଲକରି ଜମିଗଲେ ତମ ପାଇଁ ବି ହେବ । ତରତର କାହିଁକି ? ହାଡ଼ବନ୍ଧୁ କହନ୍ତି, ଗହଣାଗଣ୍ଠି, ଲୁଗା ଶାଢ଼ି, ଆଜି ପାଟିସୁଆଦରେ ଭେଇଲ୍-ଧନ ଗମେଇଁଦେଲେ କାମବେଳକୁ ହାତ ଅଚଳ । ନିଜର ଘରବାଡ଼ି ପାଇଁ ଯେଉଁ ଜମି ଗୁଣ୍ଠେଗୁଣ୍ଠ ମକରବାଗରେ କଣା ହୋଇଛି, ଗଦାଏ ଟଙ୍କା ଦାମ, ସେତକ ଆଗ ଘେରଣ୍ଡ କର—

ଜମି କଣାହୋଇଛି, କଉଠିକରେ ?

ହଁ, ତମ ନାମରେ । ଦଶହଜାର ଟଙ୍କା । ହାଡ଼ବନ୍ଧୁଙ୍କ ସ୍ତ୍ରୀଙ୍କ ନାମରେ ବି ଥୋଇଆସାହିରେ କଣାହୋଇଛି । ପାଞ୍ଚଗୁଣ୍ଠ । ତାର ମୂଲ୍ୟ ବି ସେତିକି ।

ମତେ ଆଗରୁ କହି ନ ଥିଲ ?

ଏବେ କହିଲି, ଭୁଲ କଲି । ଘରତୋଳା ସରିଥାନ୍ତା । ବସା ବଦଳାଇବା ବାହାନାରେ ତମ ସମସ୍ତଙ୍କୁ ନୂଆ ଘରେ ନେଇ ଛାଡ଼ିଥାନ୍ତି । ସେଇଠୁ କହିଥାନ୍ତି ।

ଆମର ଘର ତୋଳା ହେବ ?

ହେବ ଯେ, ତମେ ସାହାଯ୍ୟ ନ କଲେ ହେବ ନାହିଁ ।

ଆମର ଘରତୋଳା ପାଇଁ ଦରକାର ହେଲେ, ମୁଁ ମୋର ଏଇ ସାମାନ୍ୟ ନୂଆଗହଣା ତମକୁ ବିକିବାକୁ ନିଶ୍ଚୟ ଦେଇଦେବି । ଭଡ଼ା ଗଣି ଗଣି ଦୁହିଁହୋଇଗଲିଣି । ଏ ଘରେ ଥାନ ହେଉନାହିଁ । ଛୋଟିଆ ରୋଷ-ଘରେ ଧୂଆଁ ଖୁନ୍ଦ ହୋଇଯାଉଛି । ନଳାପାଣି ଭଲ ସଫା ହେଉନାହିଁ । ମେହେନ୍ତରାଣୀମାନେ ଧର୍ମଘଟ କରି ଦୁଇ ତିନ ଦିନ ମଇଳା ସଫା ନ କଲେ, ଯେଉଁ ଗନ୍ଧ ! ମଶାମାଛିଙ୍କର ଦାଉ କହିଲେ ନ ସରେ । ସବୁ ତ ଜାଣିଛ ।

ଜାଣିଛି । ଅଙ୍ଗେ ନିଭାଉଛି । ତମର ମନମାଫିକା ଘର କରାହେବ ଇନ୍ଦିରା ! ହାଉଲେ ହାଉଲେ ହେବ । ଧୈର୍ଯ୍ୟ ଧର । ମାଛତେଲରେ ମାଛ

ଭଜାହେବ । ବଡ଼ କାମ ଖଣ୍ଡେ ହ'ଖଣ୍ଡରେ କାନ୍ତରେ ମିଳିଗଲେ ଇଟା ସିମେଣ୍ଟ, ଲୁହା ଲକଡ଼ା କିଣିବାକୁ ପଡ଼ିବ ନାହିଁ । ତମର ଏଇ ସାମାନ୍ୟ ଗହଣା ମୋର ଲୋଡ଼ା ହେବ ନାହିଁ । ମୂଲ୍ୟବାନ ଶାଢ଼ି ଓ ଗହଣା ସଙ୍ଗରେ ନେଇ ତମକୁ କେତେ ଘରକୁ ଯିବାକୁ ପଡ଼ିବ । କହିବ ଯେ, ବଳେ କହିବ । ଥସ୍ଥ ଧର । ମୁହଁ ଖୋଲ ନାହିଁ । କେହି ଆମର ବିଶ୍ୱାସୀ ନୁହେଁ । ଉଦ୍ଦେଶ୍ୟ ପ୍ରକଟ ହେଲେ କାମ ଭଣ୍ଡୁର ହେବ ।

ହାଡ଼ବନ୍ଧୁଙ୍କ ଉପରେ ତମର ଏତେ ବିଶ୍ୱାସ କାହିଁକି ?

ତାଙ୍କର ବି ମୋ ଉପରେ ସେତିକି ବିଶ୍ୱାସ । ଆମେ ହଜେ ପରସ୍ପରର ତଣ୍ଟିରେ ଫାଶ ଗଳାଇ ହାତରେ ଧରି ବୁଲୁଛୁ ଇନ୍ଦିରା ! ଜଣେ ଜଣକ ପାଖରେ ବିଶ୍ୱାସଘାତକତା କଲେ ଦୁହିଁଙ୍କର ତଣ୍ଟି ଚିପିହୋଇଯିବ । ସେ ମାୟାବୀ, ସେ ବୁଦ୍ଧିମାନ୍ । ତାଙ୍କୁ ଆପଣାର କରି ଖୁସି ରଖିବାକୁ ହେବ । ବୁଝିଲ ଇନ୍ଦିରା ?

ଅଧରାତିର ତୁନି ତୁନି ଆଲୋଚନା । ଗୃହର କାନରୁ ଛଅଟା କାନ ଶୁଣିବାର ଉପାୟ ନାହିଁ । ସେହି ପୁରୁଣା ତକ୍ତପୋଷ ଉପରେ ନୂଆ ଶେଯ ବିଛା ହୋଇଛି । ତା' ଉପରେ ନେଳିଆ ଚଦର । ଧୋବ ଫରଫର ଯାଉଁଳ ତକିଆ ଉପରେ ପଡ଼ିଛି ତଉଲିଆ । ଗୋଟିଏ କଡ଼ରେ ପଡ଼ିଏ ଅଏଲ୍-କ୍ଲଥ । ତାଆରି ଉପରେ ଶୁଏ ସୁରୂପା । କାଳେ ସେ ନଦବାଉଳାରେ ଗଡ଼ିପଡ଼ିବ, ସେଥିପାଇଁ କଡ଼ରେ ରଖାହୋଇଛି ସରୁ ଲମ୍ବ ତକିଆ । ମଶାରି ଟଙ୍ଗା ହୋଇଛି । ପିଲା ଘର ଅନ୍ଧାର ହେବ ନାହିଁ ବୋଲି ଜଳୁଛି ଶୂନ୍‌ଶକ୍ତିର ନେଳି ଆଲୁଅ ।

ମଝିଭିତରିଆ କୋଠରିରେ ବଡ଼ ତକ୍ତପୋଷ ପଡ଼ିପାରିବ ନାହିଁ । ଯାଉଁଳ ପଲଙ୍କ, ଅନ୍ୟମାନଙ୍କ ଘରେ ଇନ୍ଦିରା ଯେପରି ଦେଖିଆସିଛନ୍ତି, ଏବଯାଏ କିଣା ହୋଇନାହିଁ । ସ୍ଥାନ ନାହିଁ । ମନ ସକସକ । ବିଜୁଳି ପଙ୍ଖା ଘୂରତରୁ ଝୁଲାଇବାକୁ ଘରର ମାଲିକ ମନା କରିଦେଲେ । ନଜର କରି ନାଡ଼ୁଥିବା ଠିଆ ଟେବୁଲ୍-ଫ୍ୟାନ୍ କିଣିବାକୁ ଟଙ୍କା ନାହିଁ । ସେ ପୁଣି ପିଲାଘରକୁ ବିପଦ ।

ଟେବିଲର ଗୁଜୁଗୁଳରେ ଠେଲାଠେଲି ମୁହାଁମୁହିଁ ଦୁଇଟି ଝାଙ୍କୁଆ ଦେହର ଆଣ୍ଡା ଇନ୍ଦରଙ୍କ ହାତର ବାଉଁଶପାତିଆବୁଣା ରଙ୍ଗ ବାକ୍ସ । ବୁଲାଇଲେ ମୁଷାହୁଆ ପରି ଚାଁ ଚାଁ ଶବଦ କରେ, ପବନ ଦିଏ ।

ଗୁପତ କଥା ।

ଆରଘରୁ ବନମର ପାଟି ଗୁଣୁ ଗୁଣୁ ଶୁଭୁଛି । ନଶୁନ ଗାଡ଼ିରେ ପୁରୁଣା ମଶାରି ଟାଙ୍ଗି ତାଆରି ଭିତରେ ସପ ଉପରେ ଟେକା ପକାଇ ବସି ସେ ନିଷ୍ଠାରେ ପାଠ ପଢ଼ୁଛି । ସେ ଝୁଙ୍କ ଧରିଛି, ତା କ୍ଲାସରେ ସେ ପ୍ରଥମ ହେବ । ଧନ୍ୟ କହିବ ପିଲାକୁ । ସେଇ ଘରେ, ଏପାଖ କାନ୍ଥକୁ ଲାଗି ପଗ ହୋଇଛି ଚଉଡ଼ା ସପମସିଣା । ମଶାରି ତଳେ ଅନୁପା ଓ ନିରୁପା ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି । ଘୁଙ୍ଗୁଡ଼ି ଶବ୍ଦ ଖୋଲା ଝରକାବାଟେ ଶୁଭୁଛି । ଦିନେ ଦିନେ ବନମ ପାଠ ପଢ଼ୁ ପଢ଼ୁ ଶୋଇପଡ଼େ । ରାତିସାରା ବିଜୁଳି ଆଲୁଅ ଜଳୁଥାଏ । ଖରଚ ବଢ଼େ । ସେଥିପାଇଁ ଇନ୍ଦର ବିରକ୍ତ ହୁଅନ୍ତି ନାହିଁ । ଯେମିତି ହେଲେ ପିଲାଟା ପଢ଼ିବ ତ ।

ହାଡ଼ିବନ୍ଧୁଙ୍କ ବଡ଼ ପୁଅ ବାଉରିବନ୍ଧୁ ପାଠ ବୁଝିବାକୁ ବନମ ପାଖକୁ ଆସେ । ଲାଜକୁଳା ପିଲା । କଅଣ ପଚରାପଚରି କର ଦଶ କୋଡ଼ିଏ ମିନଟ୍ ରହି କେଉଁ ଛଟକରେ ଖସି ପଳାଏ ।

ବାଉରିଆ ଗଲାଣି କି ବନମ ?

ହଁ, ମାଇଁ !

ଅଟକାଇଲ ନାହିଁ ? ଜଳଖିଆ ଟିକେ ମଗାଇ ତାକୁ ଖାଇବାକୁ ଦେଇଥାନ୍ତି । ତା' ବୋଉ ଶୁଣିଲେ କଅଣ ଭାବିବେ ?

ଚାଲିଯିବ ବୋଲି ଜାଣି ନ ଥିଲି । ଅଙ୍କ ଦି ଚାରିଖଣ୍ଡ ବୁଝିଲା । ଧୀରେ ଧୀରେ ଉଠି ଚାଲିଗଲା ।

ଅନୁପା କହେ, ବାଉରିଭାଇ ଗଧଟାଏ ।

ହଇରେ ବହମ ?

ନାଇଁ ମାଇଁ, ସେ ବୁଦ୍ଧିଆ ପିଲା । ଅଙ୍କରେ ଟିକିଏ ଖଇରୁ । ଭଲ ମନେରଖିପାରେ ।

ବାଉରିଆ ଯଦି ଭଲ ବୁଦ୍ଧି କରେ, ମଣିଷ ପରି ମଣିଷ ହୁଏ, ମୁଁ ନିଶ୍ଚେ ଅନୁପାକୁ ବୋହୂ କରିବି । ତମେ କଅଣ ରାଜି ହେବନାହିଁ ଭାଉଜ ?

ସେହି ସଞ୍ଜରେ, ହାଡ଼ିବନ୍ଧୁ ଅନୁପାର ହାତଟିଏ ଧରି କୋଳକୁ ଆଉଜାଇ ମନର ଆଶା ଅଥବା ଆଖିର ବିସ୍ମୟ ପ୍ରକାଶ କରିଥିଲେ । ଥରକୁ ଥର ହସିଲା ମୁହଁରେ ଇନ୍ଦିରାଙ୍କୁ ସ୍ନହିଁ ଆଖି ଫେରାଉଥିଲେ । ଅନୁପାର ଟିକି ମୁହଁକୁ ଦେଖୁଥିଲେ । ସେ ମୁହଁରେ ବିସ୍ମୟ ଲଗାଇ ଇନ୍ଦିରାଙ୍କ ସଙ୍ଗେ ତୁଳନା କରୁଥିଲେ ପରା, ମନେ ପକାଉଥିଲେ ନିଜର ବେଗଣୀ ଘରଣୀ ଯୂଥିକାଙ୍କୁ ।

ହାଡ଼ିବନ୍ଧୁଙ୍କ ସଙ୍ଗେ ଆନନ୍ଦଚନ୍ଦ୍ରଙ୍କର ସମ୍ବନ୍ଧ ମହାଜନଙ୍କର କର୍ମସ୍ଥଳୀ ଥିବାବେଳେ ଅବଶ୍ୟ ଥିଲା, କିନ୍ତୁ ତହିଁରେ ବନ୍ଧୁତ୍ୱର ଲେଶ ନ ଥିଲା । ମହାଜନଙ୍କର ପ୍ରିୟପାତ୍ର ହୋଇ ବିଶ୍ୱାସ ଜନ୍ମାଇ ତାଙ୍କର ଚତାକଟା ଧନରୁ କିଏ କେତେ କି ଉପାୟରେ ହରଣ କରିପାରିବ, ସେହି ପ୍ରତିଦ୍ୱନ୍ଦ୍ୱିତା ପରସ୍ପର ପ୍ରତି ବିଦ୍ୱେଷ ଆଣିଥିଲା । ଅଭାବ ଓ ଅନଟନର ସଂସାରରେ ଛଟ-ପଟ ହେଉଥିବା କାଳରେ ଆନନ୍ଦଙ୍କର ଅସତର୍କ ମୁହଁରୁ ହାଡ଼ିଆର ଚତାକଟା କାଣ୍ଡର ବୃତ୍ତାନ୍ତ ଇନ୍ଦିରା ଶୁଣିଥିଲେ । ତାଙ୍କୁ ନ ଦେଖି ନ ଜାଣି ମଧ୍ୟ ସ୍ୱାମୀଙ୍କୁ ସାନ୍ତ୍ୱନା ଦେବାକୁ ସେ କହୁଥିଲେ, ନେଲେ ସେ ନଅନ୍ତୁ । ଚୋରିଚମାରି ଚଜ ଅଧର୍ମ ଧନ । ଗଲାବେଳେ ମୂଳ ସହିତ ଯିବ ।

ଇନ୍ଦିରା ଜାଣିଥିଲେ, ଆନନ୍ଦ ଦିନକୁ ଷୋଳଘଣ୍ଟା ପରିଶ୍ରମ କରି ଦେହରୁ ଲହୁଲୁହ ନିଗାଡ଼ି ଯାହା ଅର୍ଜନ କରି ଆଣୁଥିଲେ, ତହିଁରେ ଦୁଃଖେ-ସୁଖେ ଯଥେକଥେ ସେ ସଂସାର ଚଳାଉଥିଲେ । ସେହି ଧନ ସତ୍ୟ-ନିହିତ । ସେଥିରେ ମଳଧୂଳି କଳଙ୍କ ନାହିଁ । ତାଙ୍କର ସ୍ୱାମୀଙ୍କର ଯୋଗ୍ୟତାର ସେତିକି ମୂଲ୍ୟ । ଛଅ ହଜାର ଟଙ୍କା ବାଟମାରଣା ହେଲା, କେତେ ଖୋଳତାଡ଼ ମାର-ମୂଷା ହେଲା । ମାଡ଼ ଖାଇ ଘରକୁ ଫେରି ଆନନ୍ଦ ଦିନାକେତେ ବିଛଣା-

ଲାଗି ହେଲେ । ଆହା-ଉହୁ ଉଚ୍ଚାରି ସାନ୍ତ୍ୱନା ଦେବାକୁ କେତେ କେତେ ଦେଖିବାକୁ ଆସି ଇନ୍ଦିରାଙ୍କ ଆଗରେ ମହାଜନ ଓ ପୋଲିସଙ୍କର ସପ୍ତ-ପୁରୁଷ ଉଖାଳି ଫେରିଥିଲେ । ଏହି ଉପକାରିଆ ଆତ୍ମୀୟ ବନ୍ଧୁ ହାଡ଼ିବନ୍ଧୁଙ୍କର ପାଦଧୂଳି ଇନ୍ଦିରାଙ୍କ ଅଗଣାରେ କେବେ ପଡ଼ି ନ ଥିଲା ।

ସ୍ୱାମୀଙ୍କର ସେବା କରୁଣୁ ଟଙ୍କାଚୋରିର ରହସ୍ୟ ସମ୍ବନ୍ଧରେ ସ୍ୱାମୀଙ୍କୁ ସାନ୍ତ୍ୱନା ଦେବା ଛଳରେ ସେ କହିଥିଲେ, ତମେ ଏତେ ଟଙ୍କା ନେଇ ବ୍ୟାଙ୍କକୁ ଯାଉଛ, ଏ ଖବର ଯେଉଁମାନଙ୍କୁ ଜଣାଥିଲା ସେହିମାନେ ଗୁଣ୍ଡାଦଳ ଲଗାଇ ଦୁର୍ଘଟଣା ଘଟାଇଥିଲେ । ତମରି ଅଫସର ବୋର୍ଡ଼ ଉପରେ ଆହୁରି ଅଫସର ନାଳତାବଡ଼ା ଲଦିଦେଲେ । ଖବରି ଜଣାଥିଲା ତମଛଡ଼ା ତମରି ଶତ୍ରୁ ଚୁଲିପଶା ହାଡ଼ିଆକୁ ।

ମହାଜନ ଓ ତା ପୁଅପନ୍ତୁରିଙ୍କୁ ବି ଜଣାଥିଲା ।

ହଁ ଯେ, ନିଜର ଧନକୁ ନିଜେ ସେମାନେ ଚୋରି କରିବାକୁ କାହିଁକି ମନ କରନ୍ତେ ?

ନିରମାୟା ନାରାୟଣଙ୍କୁ ଜଣା ଇନ୍ଦିରା !

ସତେ, ନିରମାୟା ନାରାୟଣଙ୍କୁ ଅଗୋଚର । ମହାଜନର ଗୁପ୍ତ ନଥିପତ୍ର ଯେଉଁ ଲୋକଟି ପାଖରେ ଥିଲା ସେ କ'ଣ ଏହି ହାଡ଼ିବନ୍ଧୁ ?

ଏହି ପ୍ରଶ୍ନ ଇନ୍ଦିରାଙ୍କ ଅନଭିଜ୍ଞ ସରଳ ମନରେ ମୁଣ୍ଡଟେକେ । ଜାଣିଲେ କି ଲାଭ ? ଜାଣିବେ କିପରି ? ପଚାରିବା ଆବଶ୍ୟକ କ'ଣ ? ସବୁ ସ୍ନେହ ଆଦର ସତ୍ତ୍ୱେ ଇନ୍ଦିରା ତାଙ୍କ ସ୍ୱାମୀଙ୍କ ପାଖରୁ ପ୍ରକୃତ ଉତ୍ତର ପାଇବେ ନାହିଁ, ଏହା ତାଙ୍କୁ ଜଣା । ସେହି ସ୍ୱାମୀଙ୍କର ଆଉ ଗୋଟିଏ ବ୍ୟକ୍ତିତ୍ୱ ଅଛି । ସେଇଟି ତାଙ୍କର ଅର୍ଥ ଉପାର୍ଜନର ବ୍ୟକ୍ତିତ୍ୱ । ତା ଭିତରକୁ ମୁଣ୍ଡ ଗଳାଇ, ଯେତେ ଆଦର କରି ଯେତେ ଗେହ୍ଲା କରି ତାଙ୍କର ମୁଗ୍ଧ-ମୁହୂର୍ତ୍ତରେ ପଚାରିଲେ ମଧ୍ୟ ସିଧାସଳଖ ଉତ୍ତର ମିଳିବ ନାହିଁ । ଆଡ଼ରୁଷା ଭାଷା ପ୍ରୟୋଗ କଲେ ତାଙ୍କର ପ୍ରେମାକୁଳ ନେହୁରାଳ ପ୍ରକୃତିକୁ ସେହି ଅବୁଝ ବ୍ୟକ୍ତିତ୍ୱ ଚହଟିଆସିବ । ସେ ଜାଣିଜାଣି ନିଦରେ ଘାରି ହେବେ । ହାଇମାରି କଡ଼

ଲେଭଃ୍ଠାଇବେ । କୋମଳ ଦେହର ନରମ ପରଶ ତାଙ୍କୁ ବିମୋହିତ କରି ପାରିବ ନାହିଁ ।

ଯେତିକ ସେ ନିଜକୁ ପ୍ରକାଶ କରନ୍ତି, ସେତିକରେ ସନ୍ତୁଷ୍ଟ ରହିବା ଭଲ । ମନସ୍ତାପରୁ ରକ୍ଷା ମିଳିବ । ଯାହା କରିବାକୁ ସ୍ୱାମୀ ନେହୁରି କରିବେ, ସେତିକ କରିପାରିଲେ ସେ ହେବେ ଜଣା-ଜନ ।

ଇନ୍ଦିରା ତାଙ୍କର ବୋଲ ମାନିଛନ୍ତି ।

କାହିଁକି ଓ କପରି ପୁରୁଣା ଶତ୍ରୁ ହାଡ଼ବନ୍ଧୁ ତାଙ୍କର ବିଶ୍ୱାସୀ ଅନ୍ତରଙ୍ଗ ବନ୍ଧୁ ହେଲେ, ଏ ପ୍ରଶ୍ନ ସେ କେବେ ତାଙ୍କର ସ୍ୱାମୀଙ୍କୁ ପଚାରି ନାହାନ୍ତି । ଘଟଣାଚକ୍ରର ଘୂର୍ଣ୍ଣନରେ କେବେ ଆପଣାର ଲୋକ ବାଇର ପାଲଟେ, ବାଇର ହୁଏ ଅତି ଆପଣାର । ଇନ୍ଦିରା ଏହା ଜାଣନ୍ତି ।

ସ୍ୱାମୀଙ୍କର ଅନୁରୋଧରେ ଇନ୍ଦିରା ପ୍ରଥମେ ହାଡ଼ବନ୍ଧୁଙ୍କ ଘରେ ଉପସ୍ଥିତ ହେଲେ । ଦୁଇଟି ସମଅବସ୍ଥାପନ୍ନ କୁଟୁମ୍ବ ମଧ୍ୟରେ ଚିହ୍ନା ପରିଚୟ ଓ ଘନିଷ୍ଠତା ବଢ଼ାଇବା ତାଙ୍କର ଉଦ୍ଦେଶ୍ୟ ହେଲା । ସେତିକ ହୋଇପାରିଛି । ନିଜର ହୀନିମାନ ବେଶ ଯୂଥିକାଙ୍କର ଗହଣା-ଖଞ୍ଜା ଦେହ ପାଖରେ ପ୍ରଥମ ସାକ୍ଷାତରେ ମଳିନ ଦିଶିଥିଲା । ହାଡ଼ ଗୁଡ଼ିଖଣ୍ଡ ଉପରେ ଯୂଥିକା ସୁନାରୂପାର ଗହଣା ଲଦି ହୋଇଥିଲେ । ଧଳା କାଗଜ ପରି ସଫେଦ ରଙ୍ଗ । ଧାରୁଆ ମୁହଁ । ଲମ୍ବିଲମ୍ବ କାନ, ଠାକୁଆ ଗାଲ, ମୁଣ୍ଡରେ ମୁଠାଏ ପାତଳ କେଶ ।

ବିଧବା ବୁଢ଼ୀ ଶାଶୁ ଦେଖିବାକୁ ତାଙ୍କର ଏକୋଇର ବଳା ହାଡ଼-ବନ୍ଧୁଙ୍କର ସ୍ୱରୂପା । ସେହି କୁଆଡ଼େ ଆଖି ଦେଖାଇ, କଳକଳା ରଡ଼ ଛାଡ଼ି ବୋହୂଙ୍କୁ ବୋଝେ ରୂପା-ଗହଣା ନାଇଦିଅନ୍ତି । କହନ୍ତି, ତମ ଦେହରେ କିଛି ନାହିଁ ଗୋ ବୋହୂ, ଗହଣା ବି ଖଣ୍ଡେ ଦେହରେ ନ ଥିଲେ ତମେ ମୋ ଆଖିକୁ ଦିଶ ନାହିଁ ।

ବୁଢ଼ୀ କାମିକା ଲୋକ । କାଉ କା ନ ଡାକୁଣୁ ଉଠନ୍ତି, ରାତି ଅଧରେ ଢିଙ୍କଣା ଧରନ୍ତି । ଘରର ସବୁ କାମ ସେ କରନ୍ତି । ବୋହୂ ତାଙ୍କୁ ଶେଷେଇରେ ସାହାଯ୍ୟ କରନ୍ତି । ପିଲା-ଜଞ୍ଜାଳୀ । ପିଲାଙ୍କର ତତ୍ତ୍ୱ ନେବା ତାଙ୍କର କାଠିକର ପାଠ । ଅଧିକ କି କାମ ସେ କରିପାରିବେ ? ଶାଶୁ କହନ୍ତି, ହାତ ହଲାଇଲେ ଘରର ପାଇଟି ମତେ ନଅଣ୍ଟ । ପିଲାଙ୍କୁ ଗୁଡ଼ି ଝଳଝଳ ହୋଇ ମୋର ଗୋଡ଼-ହାତ ଛନ୍ଦିବ ବାନ୍ଧିବ କାହିଁକି ?

ସ୍ନେହୀ ମଣିଷ ସେ ବୁଢ଼ୀ ମାଉସୀ । ପରକୁ ଦେଖିଲେ ଋଙ୍କ ସରସର ହୁଅନ୍ତି । ଦଣ୍ଡକେ ଆପଣାର କରନ୍ତି । ଅନ୍ୟ ଘରର ଝିଅବୋହୂଙ୍କୁ ପାଇଲେ ଦେହମୁଣ୍ଡ ଆଉଁସି ଦିଅନ୍ତି । ଚିବୁକ ଧରି ହସହସ ହୋଇ କ୍ଷଣେ ଗୃହାନ୍ତି । ଖୁସି ହୋଇ କହନ୍ତି, କି ଶୋଭା ରୂପ ମ, ଠାକୁରେ ଭଲ ଘର ଭଲ ବର ଦେଉନ୍ତୁ ଏ ସୁନା ଝିଅକୁ । ଠାକୁରେ କାଢ଼ ବଜର କରନ୍ତୁ ଏନ୍ତି ଲକ୍ଷ୍ମୀ-ବୋହୂର ।

ତାଙ୍କ ଆଖିରେ ସବୁ ଝିଅବୋହୂ ସୁନ୍ଦର । ସବୁ ଝିଅବୋହୂ ଗୁଣର ।

ପ୍ରଥମ ସାକ୍ଷାତରେ, ପରଚେ ପାଇ ସେ ଇନ୍ଦିରାଙ୍କୁ ଦେଖି ଖୁସି ହୋଇଥିଲେ । ତଳେ ମୁଣ୍ଡ ଲଗାଇ ଓଳଗି ହେବାରୁ ତାଙ୍କର ଦୁଇଟି ବଳିଷ୍ଠ ମାଂସଳ ହାତରେ ନଇଁଲା ଇନ୍ଦିରାଙ୍କୁ ଟେକିନେଇ ପବଂଶିଆ ମାଂସଳ ଛାତିରେ କୁଣ୍ଢାଇ ଧରିଲେ । ପିଠି ଆଉଁସି ମୁଣ୍ଡ ଆଉଁସି କଲ୍ୟାଣ ବୃଷ୍ଟି କରି-ଥିଲେ । କହିଥିଲେ, ତୋତେ ମୁଁ ବୋହୂ ଡାକିବି, କି ଝିଅ ଡାକିବି ଆଗ କହିଲୁ ? ଯାହା ଡାକିଲେ ଏଇ ଦୁଇଟି ସୁନା କଣ୍ଢେଇ ମୋର ନାତୁଣୀ ହେବେ । ମୋର ସେତିକିର ଅଭାବ ।

ଝିଅ ବୋଲି ଡାକିଥିଲେ । ତାଙ୍କର ନପୁନ-ପିତୁଳା ହାଡ଼ିବନ୍ଧିଙ୍କର ସାନ ଭଉଣୀ ଆସନରେ ବସାଇଲେ । ଯୂଥିକା ହେଲେ ତାଙ୍କର ଭଉଜ-ଲେଖା ।

ସୂଥିକା ଶାନ୍ତଶିଷ୍ଟ ନିରୀହଟିଏ । ନିର୍ବୋଧ କହିଲେ ଚଳିବ । ନିଜର କୁଟୁମ୍ବ ହେଲା ତାଙ୍କର ସଂସାର । ବାହାର ଦୁନିଆର କଥା ସେ ବୁଝନ୍ତି ନାହିଁ । ଗପ କରନ୍ତି ତାଙ୍କର ପିଲାଙ୍କର କୌତୁକପଣ ବିଷୟରେ । ସ୍ୱାମୀଙ୍କ କଥା ପଡ଼ିଲେ ସେ ଦରବୁଢ଼ୀ ବୟସରେ ବି ଲାଜେଇ ଯାଆନ୍ତି । ସତେ କି ସ୍ୱାମୀ ବୋଲି ଯେଉଁ ବାପୁଆ ଜୀବଟି, ସେଇଟି ଘୋର ଅଶ୍ଳୀଳ । ସେ ଶବ୍ଦଟା ଅସନା । ମୁହଁରେ ଉଚ୍ଚାରିବା ଅନୁଚିତ । ପୁଅ ବାଉରି ନାମରେ ତାଙ୍କୁ ବାଉରିବାପ ସୂଗୁଇଲେ ଅଶ୍ଳୀଳତାର ଆବରଣ ରହିବ । ହାଡ଼ ନାମ ସେ ତୁଣ୍ଡରେ ଧରନ୍ତି ନାହିଁ । ଠାରରେ ଉଚ୍ଚାରନ୍ତି ନାଡ଼ୁ ।

ନିଜ ଦେହରେ ସେ କିନ୍ତୁ ଅଶ୍ଳୀଳତା ଦେଖନ୍ତି ନାହିଁ । ଅନୁଭବ କରନ୍ତି ନାହିଁ । ସେ ମାତୃମୂର୍ତ୍ତି, ଲଙ୍ଗୁଳି । ଗୁରୁଜନ କେହି ପାଖେଇ ଆସିଲେ ଦରମଇଳା ଲୁଗାର କାନି ଟେକି ମୁଣ୍ଡରେ ଗୁଡ଼ିଏ ଓଢ଼ଣା ଟାଣନ୍ତି । ମୁହଁ ଘୋଡ଼ାନ୍ତି । ସତେ କି, ଅଶ୍ଳୀଳତାଟା ମୁହଁକୁ ଆବୋରି ଥାଏ ।

ଆନନ୍ଦଚନ୍ଦ୍ରଙ୍କ ଅନୁରୋଧରେ କେତେ ଥର ଇନ୍ଦିରା ସୂଥିକାଙ୍କ ଘରକୁ ଯାଇଛନ୍ତି । ପିଲାମାନଙ୍କର ଭକ୍ତି ଓ ଶାଶୁବୋହୂଙ୍କର ସ୍ନେହ ସମ୍ମାନ ପାଇଛନ୍ତି । ସେହି ବୁଢ଼ୀ ମାଉସୀଙ୍କ ପାଖରୁ ଘରକରଣା ସମ୍ବନ୍ଧରେ ଓ ଝିଅ-ବୋହୂଙ୍କର ଚଳଣି ସମ୍ବନ୍ଧରେ ଉପଦେଶ ଶୁଣି ଆସିଛନ୍ତି । ଭୁଆସୁଣୀ ସୂଥିକା କେବେ ଓଲଟି ଆଗମନ କରିନାହାନ୍ତି । ବୁଢ଼ୀ ଦୁଇ ତିନି ଥର ଆସିଛନ୍ତି । ସଙ୍ଗରେ ପିଠାପଣା ଅବା ତାଙ୍କ ଶ୍ରେଷ୍ଠ ବାରିରେ ନିଜ ଉଦ୍ୟମରେ ଫଳାଇ-ଥିବା ପନିପରିବା ସଂଖୋଳା ଆଣିଛନ୍ତି ।

ହାଡ଼ବନ୍ଧୁ ଯାହାକୁ ନିଜର ଘର ବୋଲି ପରିଚୟ ଦିଅନ୍ତି, ତାହାର ଗୋଟାଏ ଇତିହାସ ଅଛି । ମୋଫସଲର ତାଙ୍କର କେଉଁ ମଉସାଙ୍କର ସେହି ଜମି ଗୃହ ଗୁଣ୍ଠ । ମଉସା ମ୍ୟୁନିସିପାଲିଟିରେ ବହୁବର୍ଷ କାଳ ଟିକସ ଆଦାୟ କାମରେ ନିଯୁକ୍ତ ଥିଲେ । ଉପୁରି ଲୁଚି ପଇସା ଉପାର୍ଜନ କରି ସେ ତାଙ୍କ

ଗ୍ରାମରେ ଭଲ ସମ୍ପତ୍ତି କରିଥିଲେ । ତାଙ୍କର କାମଧାମ କରିବାକୁ ଆସୁଥିଲା ଯେଉଁ ପଣ୍ଡିତା ସ୍ତ୍ରୀଟି, ତାଆରି ସେ ଜମି ଘରଗୁଣ୍ଡ । ବାପଅଜାଙ୍କର ଭିଟା-ମାଟି । ତା ଉପରେ ଥିଲା ଖଣ୍ଡେ ଘ୍ରୋଟ କୁଡ଼ିଆ । ପିଠାପୁରରେ ।

ସେହି ଦରବୁଢ଼ୀ ପଣ୍ଡିତାକୁ ମଉସା ଉଦ୍ଧାର କଲେ । ତାର କୁଡ଼ିଆକୁ ଯଥାସମ୍ଭବ ରହିବାର ଉପଯୁକ୍ତ କରି, ବ୍ୟସ୍ତକଲା ଧନ ଧୀରେ ଧୀରେ ଭଡ଼ାରୁ କଟିବା ସର୍ତ୍ତରେ ସେଠାରେ ରହିଲେ । ସେହି ଦରବୁଢ଼ୀ ମୋତିର ଝିଅଟିଏ ଥିଲା । ତା' ନାଁ ସାବି । ସେ ବଡ଼ ହୋଇ ଆସୁଥିଲା । ହାଡ଼ବନ୍ଧୁଙ୍କ ମଉସା ଟିକସ-ଦାରୋଗା ଦୁର୍ଗାଚରଣ ସାବିଙ୍କୁ ପିଚୁଲ୍ଲ ଦାନ କଲେ । ସେହି ଉଦାରତା ପାଇଁ ତାର ବରଘର କେଉଁ ମୋଫସଲ ଗ୍ରାମରେ ଭଲ ଜାତିର ଟୋକାଟି ସଙ୍ଗରେ ହୋଇପାରିଲା । ବାହାଘର ପାଇଁ ଦୁର୍ଗାଚରଣ ଯେଉଁ ଧନ ଖର୍ଚ୍ଚ କରିଥିଲେ, ତାର ପରିଶୋଧ ପାଇଁ ସାଧା କାଗଜରେ ମୋତି ଘରବାରି ତାଙ୍କ ନାମରେ ଲେଖିଦେଇଥିଲା ।

ବାପଛେଉଣ୍ଡ ପୁତୁରା ହାଡ଼ବନ୍ଧୁଙ୍କୁ ଦୁର୍ଗାଚରଣ ପାଖରେ ରଖିଥିଲେ । ପାଠ ପଢ଼ି ତାଲିମ ହେବାକୁ ସେ ଆସିଥିଲେ । କିନ୍ତୁ ମଉସାଙ୍କର ଗୋଷ୍ଠବାସ ଓ ସେବାରେ ଏବଂ ମଉସାଙ୍କର ବହୁ ଶତ୍ରୁଙ୍କ କବଳରୁ ତାଙ୍କୁ ଉଦ୍ଧାର କରିବାକୁ ପହିଲମାନି ଶିକ୍ଷାରେ ସମୟ କଟାଉଥିଲେ ।

ଦୁର୍ଗାଚରଣ ସ୍ୱାସ୍ଥ୍ୟବାନ୍, ଲମ୍ବ-ନଣ୍ଡିଆ ଓ ଚମ୍ପାଳିଆ ଚଉଡ଼ା କପାଳରେ ସିନ୍ଦୂର-ଗାରିଆ, ଚୌହାତିଆ ଶତ୍ରୁ-ଶଙ୍କା ମରଦ ଥିଲେ । ସେ ଆଖିରେ ସୁରୁମା ଲଗାଉଥିଲେ । ହାଡ଼ବନ୍ଧୁଙ୍କର ସ୍ୱାସ୍ଥ୍ୟ ଓ କୁସ୍ତି-କସରତ ପ୍ରତି ଆଗ୍ରହ ଦେଖି ତାଙ୍କୁ ସେ ପସନ୍ଦ କରିଥିଲେ ।

ମୋତି ମଲା ଗଳପକ୍ଷାରେ ।

ଦିନାକେତେ ପରେ ତହବିଲ୍ ତୋଷରଫ ଅପରାଧରେ ଦୁର୍ଗା-ଚରଣଙ୍କର ଚାକିରି ଗଲା । ଗୁଟିଏ କନ୍ୟାରତ୍ନଙ୍କର ବାହାଘର ସେ କରି-ସାରିଥିଲେ । ଶେଷଟିର ବ୍ୟବସ୍ଥା କରିବାକୁ ସେ ଗଲେ ଗ୍ରାମକୁ, କିନ୍ତୁ ତା

ଆଗରୁ ହାଡ଼ବନ୍ଧୁଙ୍କୁ ସେ ମହାଜନର ସିରସ୍ତାରେ ମୋହରର କାମରେ ରଖାଇ ଦେଇଥିଲେ ।

ଦୁର୍ଗାଚରଣ ପକ୍ଷାଘାତ ରୋଗରେ ବନାକେତେ ଘାଣ୍ଟି ହୋଇ ଗ୍ରାମରେ ହିଁ ଆଖି ବୁଜିଲେ ।

ସେହି ଘରଖଣ୍ଡି ହାଡ଼ବନ୍ଧୁ ମାଡ଼ିବସିଛନ୍ତି । ମୋତି ଲେଖିଦେଇ-ଥିବା କାଗଜକୁ ସେ ଅକ୍ତିଆର କରି ପାଖରେ ରଖିଛନ୍ତି ।

ଅଦ୍ୟାବଧି ମୋତିର ଝିଅ ସାବି ସେହି ଘରର ମାଲିକାଣୀ ବୋଲି ନିଜକୁ ମଣୁଛି । ବେଳେବେଳେ ତାର ଅକର୍ମଣ୍ୟ ଜାତିଆ ବର ସଙ୍ଗରେ କଟକ ଆସି ପୁରୁଣା ପୁରାଣ ଗାଇ ହାଡ଼ବନ୍ଧୁଙ୍କ ପାଖରୁ କିଛି ଆଦାୟ କରି ବାହୁଡ଼ୁଛି ।

ଦୁର୍ଗାଚରଣଙ୍କର ଏକମାତ୍ର ପୁତ୍ର, ନାଟଚାମସା-ସଉକିଆ, ବାବୁରି-ବାଳିଆ, ପୁରୁଷ ହୋଇ ନାଗ୍ର-ଢଙ୍ଗିଆ ଶିବଚରଣ । ଡାକନାମ ଶିବା । ଅକାଳେ ସକାଳେ କଟକ ଆସି ସାନ-ମାଉସୀଙ୍କ ସଙ୍ଗେ ଝଟାପଟା କଜିଆ କରେ । କହେ ଯେ ଘରଟା ତା ବାପର, ନୋହିଲେ ତା ସାବତମା, ଯାହାକୁ ସେ କେବେ ଦେଖିନାହିଁ, ସେହି ମୋତି-ଛତଖିର ।

ଦିନେ ସଞ୍ଜରେ ଇନ୍ଦିରାଙ୍କ ହାବୁଡ଼ରେ ପଡ଼ିଥିଲା ସେହି ଶିବା । ସେ ଯୂଥିକାଙ୍କର ରଙ୍ଗଶାଢ଼ି ପିନ୍ଧି, ମୁଣ୍ଡରେ ଓଢ଼ଣା ଦେଇ ତାଙ୍କର ପାଦ ଧରି, ବାହାହୋଇ ବିଦା ହେଉଥିବା ଝିଅର କାନ୍ଦଣା କାନ୍ଦୁଥିଲା । ଇନ୍ଦିରାଙ୍କୁ ଦେଖି ସେ ମୁହଁ ଟେକି ଚାହିଁଲା । ଓଢ଼ଣାକୁ ଆହୁରି ଚୁଖଣ୍ଡେ ଟାଣି, ମୁହଁ ଘୋଡ଼ାଇ, ଇଲୋ ମାଆଲୋ କହି, ପାଖ ଘରକୁ ପଶିଗଲା । ଇନ୍ଦିରା ତ କାବା ! ମାଇପିଟାର ନିଶଦାଢ଼ି ଅଛି ! ବିଧବା ହୋଇ କଳାସିନ୍ଦୂର ନାଇଛି !

ଯୂଥିକା ହସି ହସି ଲୋଟିଯାଉଥିଲେ । କହିଲେ, ସେ ମୋର ଝିଅର ଲେଖା ହେବେ ମ, ଯୂଆଙ୍କରେ ରାଣୀ ହୁଅନ୍ତି । କେତେ ଜାତିର କାନ୍ଦଣା ଶିଖିଛନ୍ତି । ମରଦଙ୍କୁ ତାଙ୍କର ଭାରି ଡର । ମାଇପିଙ୍କୁ ସେ ଡରନ୍ତି ଯେ, ଚିହ୍ନା ପରିଚ ହେଲେ ପାଖକୁ ଆସନ୍ତି । ଭାରି ଲାଜକୁଳା । ମାଇପୁ

ବୋଲି ତାଙ୍କୁ କହିଲେ, ସେ ଅଭିମାନ କରନ୍ତି । ତମେ ତ ତାଙ୍କର ଭଉଣୀ ଲେଖା ହେବ ।

ଆସୁନ ଶିବ, ଆସ । ସେ ଘରେ ଲୁଚିଲ କାହିଁକି ? ତମର ସେ ଅପା ହେବେ ଗୋ, ନ ଆସିଲେ ମାଇଗ୍ନି ବୋଲି କହିବେ ନାହିଁ ?

ଶିବ ଆଗକୁ ଆସିଥିଲା । ମୁଣ୍ଡରୁ ସିନ୍ଦୂର ଓ ଆଖିରୁ କଜଳ ପୋଛି-ଦେଇଥିଲା । ଶାଢ଼ି ପାଲଟି ଲୁଗା ଖଣ୍ଡେ ପିନ୍ଧିସାରିଥିଲା । ଗ୍ରୀବରେ ତଉଲିଆଟିଏ ପକାଇଥିଲା ।

ଲାଜେଇ ଲାଜେଇ ତଳେ ମୁଣ୍ଡ ନୁଆଇଁ ସେ ପ୍ରଣାମ କରିଥିଲା । ତଉଲିଆ ଖଣ୍ଡି ଗ୍ରୀବରୁ ଖସିପଡ଼ିବାରୁ ଜିଭ କାମୁଡ଼ି ତାକୁ ତଳୁ ଉଠାଇ ପୁଣି ସେ ଗ୍ରୀବ ଘୋଡ଼ାଇଲା । କେତେ ପୁଅଙ୍କର ଗ୍ରୀବ ଝିଅାଳିଆ ହୁଏ । ପ୍ରକୃତିର ବୈଚିତ୍ର୍ୟ । କୋଡ଼ିଏ ବାଇଶି ବର୍ଷର ଟୋକାଟି ଶିବ । ଶାବନ ସୁନ୍ଦର ଝିଅାଣିଆ ମୁହଁ, କିନ୍ତୁ ତା ଦେହଟି ନିଖୁଣ, ସ୍ୱାସ୍ଥ୍ୟବାନ୍ ପୁରୁଷ-ଦେହ । କେଜାଣି କାହିଁକି ତାର ପ୍ରକୃତି ହୋଇଛି ନାରୀ-ସୁଲଭ ।

ଦଣ୍ଡକରେ ସେ ଇନ୍ଦିରଙ୍କୁ ଆପଣାର କଲା । ଅପା ଅପା ହୋଇ ଭସିଯାଉଥିଲା । ନିରୁପା ଓ ଅନୁପାଙ୍କୁ କାଖେଇ କୁଣ୍ଢେଇ, ଗେହ୍ଲା କରି କଲବଲ କଲା । ଆଉ ସେ ବାହୁନିଲା ନାହିଁ । କହିଲା, ଅପାମାନଙ୍କୁ ସେ ଲାଜ କରେ ।

ତା ମନକୁ ସେ ମାଇପି ଢଙ୍ଗରେ କେତେ ଗପିଲା । ମୁହଁ ଛୁଆଡ଼ ସମାଲୋଚନା କଲା । ଆକଟ କରି କହିଲା, ଏଇ ଧଡ଼ିଆ ଭାଇଜଟା ବେ-ମହଲି । ଲଙ୍ଗୁଳୀଟାଏ । ଛୁଆ ଲୋ ! ତୁ ମୋ ଅପା ହ ପଛେ, ତୋ ଢଙ୍ଗଟା ସାହାବାଣିଆ । ଜାମା ପିନ୍ଧିଛୁ ଯେ ପିଠିଟା ଲଙ୍ଗଳା । ପେଟଟା ଲଙ୍ଗଳା । ଗ୍ରୀବରୁ ଅଧେ ଦିଶୁଛି । ମଲାମରି, ଏସବୁ କଟକୀ ଫେସନ । ଏଠି ଚଳି-ଯାଉଛି । ଗାଁରେ ଚଳିବ ନାହିଁ ମ ।

ଇନ୍ଦିର ଲାଜେଇ ଯାଉଁଣୁ ବସୁରଲେ ରଗିବେ କି ନାହିଁ । ମାଇଗ୍ନି ଟୋକାକୁ ଝୁରି ପଦ ଟାଣ ଟାଣ ଶୁଣାଇଦେବେ । ତାର ଫାଜିଲାମିକୁ

ଚଟକଣି ମାରି ତାକୁ ବାଟକୁ ଆଣିବେ । ପରଘରର ଝିଅବୋହୂଙ୍କ ଦେହରେ ଛତଗ ଟୋକା ଆଖି ପକାଇବାକୁ କିଏ ? ତାଙ୍କୁ ସମାଲୋଚନା କରିବାକୁ କିଏ ? ପ୍ରଥମ ଦେଖା । ହସଖୁସିରେ ଘଣ୍ଟାଏ କଟିନାହିଁ । ମୁହେଁ ମୁହେଁ ଅଭଦ୍ର କଥା କହିବାକୁ ସେ ଅଲକ୍ଷଣା ସାହସ କରିପାରିଲା !

ତାଙ୍କର ରୁକ୍ଷ-ମୁଖ ଦେଖି ଯୂଥିକା ମନର ଭାବ ଅନୁମାନ କଲେ, କହିଲେ, ତମର ମାଇପି ବୁଦ୍ଧି ଗଲା ନାହିଁ କି ଶିବ ! କାହାକୁ କଅଣ କହନ୍ତି, ଏବଯାଏ ଶିଖିଲ ନାହିଁ ? ସେ ତମର ଅପା, ଏମିତି ବେଢଙ୍ଗ କଥା କହିଲ ?

ଶିବ ଜିଭ କାମୁଡ଼ିଲା । ନିଜ ହାତରେ ନିଜେ କାନ ମୋଡ଼ିହେଲା । ଇନ୍ଦିରାଙ୍କ ଗୋଡ଼ ଧରି କହିଲା, ମୁଁ ଅକଲ ହୁଡ଼ିଲି ଅପା ! ପାଟିରୁ ବେଢଙ୍ଗ କଥା ଖସିଗଲା ତ । ହେଇଟି, ମୁଁ ଗୃପୁଡ଼ା ମାରିହେଉଛି ।

ସେ ଗୃପୁଡ଼ା ମାରିହେଲା । ଇନ୍ଦିରା ହସିଲେ । ଯୂଥିକା ହସିଲେ । ଅଭିମାନ କରି ସେ ଉଠି ଦମଦମ ହୋଇ ଚାଲିଗଲା ରୋଷଘରକୁ, ତା' ମାଉସୀଙ୍କ ପାଖକୁ । ସେଇଠି ସେ କହିଲା, ରହିଛ ତ ରହିଥା । କିଏ ମନା କରୁଛି ? ହେଲେ ତମେ ମାନିଯାଅ ଯେ ଏଇଟା ମୋ ବାପର ଘର ।

କିଏ ମନା କରୁଛି କି ପୁଅ ?

ମୋ ବୋଉ କହୁଛି, ବାପାଙ୍କ ଅନ୍ତେ ଏ ଘରର ମାଲିକ ଯେ ମୁଁ । ମୁଁ କୁଆଡ଼େ ତମକୁ ଏଠୁ ତଡ଼ିବ ।

ହଁ ରେ ପୁଅ, ତଡ଼ିବୁ ଯେ, ଆଗ ସେ ମୋଟା ଛଟଣିର ଝିଅ ସାବୀ ସଙ୍ଗେ ବୁଝାମଣା ହୋଇ ଆ । ସାବୀ ଏ ଘରବାରି ହାଡ଼ଆକୁ ଲେଖିଦେଇଛି । ତୁ ଯାଇଁ ହାଡ଼ଆ ସଙ୍ଗେ ଲଢ଼ିବୁ ତ ଲଢ଼ ।

ଶିବଚରଣର ହାଡ଼ିବନ୍ଧୁଙ୍କୁ ପ୍ରାଣେ ଡର । ସେ ତାଙ୍କ ଆଗକୁ ଯିବାକୁ ସାହସ କରେ ନାହିଁ । ହାବୁଡ଼େ ପଡ଼ିଲେ ଗୋଧର ପରି ଖସିଆସେ ଯୂଥିକାଙ୍କ ପାଖକୁ । କହେ, ମୋର ହୋଇ ତମେ ତାଙ୍କୁ କହ ଭାଉଜ ! ମୁଁ କହିପାରିବି ନାହିଁ । ବାଘ ପରି ତାଙ୍କର ନିଶହଳକ ଦେଖିଲେ ମୋର ହାଲୁକ ଶୁଖେ ।

ମୋର କଣ ହାଲୁକ ଶୁଖେ ନାହିଁ କି ଶିବ ? ତାଙ୍କୁ ମୋର ପ୍ରାଣେ ଡର । ଘର ଯଦି ତମର, ତମେ ଗୋଟାଏ ମକଦ୍ଦମା କରିଦେଉନ ? ହାକମ ପାଖରେ ସେ ବଳେ ଜବାବ ଦେବେ ।

ମକଦ୍ଦମା କରିବ, ହାକମ ଆଗକୁ ଯିବ ? ଛୁଆ ଲୋ ! ମୋର ଭାରି ଡର । ଭାଇ ସଙ୍ଗେ ମୁଁ ଲଢ଼ିପାରିବି ନାହିଁ । ଘରବାରି ସବୁ ମୋର । ଭାଇ ତ ଅଛି, ଆଉ କେହି ପର ନାହିଁ । ଛାଡ଼ିଦେଲେ ତମେ କ'ଣ ଯାଇ ଡାଣ୍ଡରେ ବସିବ ? ବୋଉର ଏ କି ବୁଦ୍ଧି, ତୁ କହ ତ ଅପା !

ଇନ୍ଦିରା କହିଲେ, ମାଉସୀ ଯେଉଁ ବୁଦ୍ଧି ବତାଇଲେ ସେଇଆ କର । ସାବି ସଙ୍ଗେ ବୁଝାସୁଝା ହୁଅ ।

ଭାରି କଜଳପାତିଆ ଭଲଲୋକ ତୁ ଅପା ! ଛୁଆଲୋ, ଖାଲି ସାବି ସାବି ସାବି, ସେ ତ ମୋ ନାଲପାନ ଦବ ! ମୁଁ ତାକୁ ଚିହ୍ନେ ନାହିଁ କି ଜାଣେ ନାହିଁ । ଯିବ ତ ବୋଉ ଯାଉ ତା ପାଖକୁ । ମତେ ସେ କାହିଁକି ଧକ୍‌ଦାର କରୁଛି ?

ଥରେ ଦୁଇଥର କଟକ ଆସି ଶିବଚରଣ ଇନ୍ଦିରାଙ୍କ ଘରକୁ ଯାଇଛି । ଖାଲିହାତରେ ସେ ଆସେ ନାହିଁ । ବିସ୍କୁଟ ପ୍ୟାକେଟେ, ପୁଞ୍ଜିଏ କମଳା-ଲେମ୍ବୁ, ଦି ପୁଞ୍ଜା ପାଚିଲା କଦଳୀ, ଅବା ପିଜୁଳି ସେ ଝିଅ ଦୁହିଁଙ୍କ ପାଇଁ ଆଣିଥାଏ । ଯେଉଁ ଘଣ୍ଟାଏ ଦି ଘଣ୍ଟା ସେ ରହେ, ଅପା ଅପା ଡାକି ବାଛୁରି ପରି ପଛରେ ଲାଗିଥାଏ । ଉପରେ ପଡ଼ି, ଇନ୍ଦିରାଙ୍କ ସଙ୍ଗେ ମିଶି ସେ ଘର ପାଇଟି କରେ । ମନା ମାନେ ନାହିଁ । ଅନୁପା ଓ ନିରୁପାଙ୍କର ମୁଣ୍ଡ କୁଣ୍ଡାଇଦିଏ । ତାଙ୍କୁ କଳାସିନ୍ଦୂର ପିନ୍ଧାଏ । ପାଦରେ କମକୁଟ କରି ଅଳତା ରଙ୍ଗାଏ । ପିଲା ଦୁଇଟାଙ୍କୁ ସେ ଆପଣାର କରିନିଏ ।

ବିକ୍ରମ ତାକୁ ଦେଖିଲେ ରଗରଗ ହୁଏ ।

ଥରେ ସେ ଆନନ୍ଦଚନ୍ଦ୍ରଙ୍କ ହାବୁଡ଼େ ପଡ଼ି, ଜିଭ କାମୁଡ଼ି ଗୋଷଘରେ ପଶିଥିଲା । ଆନନ୍ଦ ତା ବିଷୟରେ ଆଗରୁ ଶୁଣିଥିଲେ । କିନ୍ତୁ ତାକୁ ସେ କେବେ ଦେଖି ନ ଥିଲେ । ପଚାରିଲେ, ସେ ଜନ୍ତୁଟି କିଏ କି ଇନ୍ଦିରା ?

ଆଖିରେ ଆଙ୍କଟି ଉଦ୍ଧବ କହିଲେ, ସେ ଜନ୍ତୁ ନୁହେ ମ, ସେ ତମ ହାଡ଼ବନ୍ଧୁଙ୍କ ମାଉସୀ-ପୁଅ ଭାଇ ଶିବ । ମତେ ସେ ଧରମ-ଭଉଣୀ କଲାଣି ।

ଆନନ୍ଦ ହସିଲେ । ବଡ଼ ପାଟି କରି କହିଲେ, ସେ ବେଷଘରେ ଓଳେଇ ବଳେଇ ପରି ଲୁଚିଲେ କାହିଁକି ? ଆଗକୁ ଆସୁନାହାନ୍ତି ? ସେ ତ ହେବେ ମୋର ଧରମ-ଶଳା !

ଶିବଚରଣର ଆସନ ଟଳିଲା । ସେ ଦ' ଖେପାରେ ଅଣ୍ଟା ଦୋହଲାଇ ନଚମ୍ଭ ହଲାଇ ଆଗକୁ ଆସି ମୁଣ୍ଡ ନୋଇଁ ଜୁହାର କଲା । ମୁହଁ ଛୁଆଁଉଡ଼, ନାକ ଫଣ ଫଣ କରି କଥା ଝାଡ଼ିଲା, ଦେଖ ମ ଏ ମିଣିପରି ବହପ ! ଶଳା ନ କହି ଆଜ କଅଣ କହିଥିଲେ ଚଳନ୍ତା ନାହିଁ ?

ଝିଅଙ୍କ ମାମୁଁ ?

ସେଇଆ ଯେ, ଯେତେ ଶିଖାଇଲେ ଅବେଇଜ ପିଲା ଦୁଇଟା ମାମୁଁ ବୋଲି ଡାକୁନାହାନ୍ତି । ଖାଲି ଡାକୁଛନ୍ତି ହେ-ହେ । ତାଙ୍କୁ ଢଙ୍ଗ ଶିଖେଇ ନା ।

ତେବେ କଣ ଡାକିବି ଘରଣୀଙ୍କ ଭାଇ ?

ସେଇଆ ଯେ, ସେମିତି କେହି କାହାକୁ ଡାକନ୍ତି ନାହିଁ । ମତେ ମୋ ନାମ ଧରି ଡାକୁ ନ,—ଶିବଚରଣ ।

ଆନନ୍ଦ କହିଲେ, ସେଇଆ ଡାକିବି । କଟକ କୁଆଡ଼େ ଆସିଥିଲ ?

ଶିବଚରଣ ମୁଣ୍ଡ କୁଣ୍ଡାଇଲା ।

ଉଦ୍ଧବ କହିଲେ, ମୋତେ ସେ ସବୁ କହିସାରିଲାଣି । ହାସ୍ୟବଣ୍ଟା-ହରଣ ସୁଆଙ୍ଗ ତାଙ୍କ ଗ୍ରାମରେ କରିବେ । ସେଥିପାଇଁ ନୂଆ ପୋଷାକ କିଣିବାକୁ ତାଙ୍କର ଗୁରୁଙ୍କ ସଙ୍ଗେ ଆସିଥିଲେ । ମୋ ଭାଇ ଏ ଶିବ ହେବ ହାସ୍ୟବଣ୍ଟା । ନିଜର ପସନ୍ଦ ମୁତାବକ ଶାଢ଼ି, ବ୍ଲାଉଜ, ଜରିର ଗହଣାଗାଣ୍ଠି କିଣିବାକୁ ସେ ଆସିଥିଲା । ସବୁ କିଣା ସରିଛି ।

ବାଃ ! କେତେ ଟଙ୍କା ଖରଚ କଲ ?

ଶିବ ଲଜେଇ ଲଜେଇ କହିଲା, ଦେଢ଼ଶ । ନଅଣ୍ଟ ହେଲା । ଓକିଲକୁ ଦେଇ ମକଦ୍ଦମା କରି ଘର ଦଖଲ ନେବାକୁ ବୋଉ ଟଙ୍କା ଦେଇଥିଲା । କହ ତ ଭାଇ, ଏତିକ ଟଙ୍କାରେ କେମିତି ଚଳନ୍ତା ? କେଉଁ ଓକିଲକୁ ମୁଁ ଚିହ୍ନେ ? ହାଡ଼ଆଭାଇକ ପଚାରିଲି । ସେ କହିଲା, କଟକରେ ଯେତେ ଓକିଲ ଅଛନ୍ତି, ଜଣ ଜଣଙ୍କୁ ଟଙ୍କା ପାଞ୍ଚଟା ଦେଇ ମସୁଧା ମାଗିଲେ ଦଶ ହଜାର ଖରଚ ହେବ । ସେତିକ ଟଙ୍କା ହାଡ଼ଆଭାଇକୁ ଦେଲେ, ସେ ମୋ ଘର ଛାଡ଼-ଦେଇ ଚାଲିଯିବ ।

କଅଣ ଠିକ୍ କଲ ଶିବ ?

ବୋଉକୁ ସେଇଆ କହିବ ।

ଶିବଚରଣଙ୍କର ବହୁଦିନ ହେଲା ଦେଖା ନାହିଁ ।

ଇନ୍ଦ୍ରବଙ୍କୁ ଦୂଆଁକା ଦିନେ କହୁଥିଲେ ରହସ୍ୟ କରି, ଶୁଣିଲଣି ଅପା, ମୋ ଦିଅର ଶିବଚରଣଙ୍କର ନେ୍ଲ ଛଥିରେ ବାହାଘର ହେଲା । ବଡ଼-ମାଉସୀ ଆମଘର ବନ୍ଧୁପଣ କାଟିଦେଲେ । ଝଣ୍ଡେ ନିମନ୍ତ୍ରଣ ଚିଠାଉ ବ ପଠାଇଲେ ନାହିଁ ।

କଏ ସେ ମାଇକିକୁ ଝିଅ ଦେଲା ମ, କାହାର ଏମିତି ଅଶରଣ ପଡ଼ିଥିଲା ? ଝିଅଟାର ତଣ୍ଟି ଚିପି ମାରିଦେଲା ନାହିଁ ? ତା ମାଆକୁ କଅଣ ଜହର ଟିକିଏ ମିଳିଲା ନାହିଁ ?

ବଣ୍ଡୀ-ଝଣ୍ଡୀଙ୍କର ଝିଅ ହୋଇଥିବ । କେଜାଣି କେଉଁ ଗରିବ ବାପର ପାଞ୍ଚ କି ସାତ ଝିଅରୁ ସେ ହୋଇଥିବ ବଡ଼ । ପଇସା ନେଇ ସେ ଝିଅ ବିକିଥିବ । ସେହି ଧନରେ ସୁଆ ତଳ ଝିଅକୁ ଆଉ କାହା ଘରେ ମାଡ଼ିଦେବ ।

ଯୌତୁକ ନ ଦେଲେ, ଯେତେ ସୁନ୍ଦର ଝିଅଟିମାନେ ହୋଇଥାଉନ୍ତୁ, ବୋହୂ କରି ନେବାକୁ ଲୋକେ ମନା କରିଦେବେ । ଲକ୍ଷ୍ମୀ ସରସ୍ୱତୀ ପାର୍ବତୀଙ୍କ-ଠେଇଁ ରୂପଗୁଣରେ ଝୁଣ ବାଛୁବେ ଗୋ ଇନ୍ଦିରା, କୋହ୍ନିଲେ କହିବେ ଟିପଣୀ ଶୁଝିଲା ନାହିଁ ।

ତିନି ଝିଅରେ ସବା ସାନ ମୁଁ । ମୋର କୁଆଡ଼େ ଯୁଆଙ୍କ ସଙ୍ଗେ ଟିପଣୀ ଠିକଏ କେଉଁଠି ଅମେଳ ହୋଇଥିଲା । ଜମି ବିକି ପାଞ୍ଚଶ ଟଙ୍କା ଗସ୍ତା ଖରଚ ଦେଲାରୁ ସେହି ଟିପଣୀ ପୁଣି ରାଜଯୋଟକ ହେଲା ।

ଇନ୍ଦିରା ମୁରୁକେଇ ହସିଲେ । ନୂଆ-ଆଖିରେ ସେ ଆଉ ଥରେ ଯୂଥିକା-ଙ୍କର ଏ ବୟସର ଅଲଗରବାଲୁଗ ଧଡ଼ଆ-ଧେଡଙ୍ଗ ଖୋଳପା ତନୁକୁ ଚାହିଁଲେ । ବିଗୁରିଲେ, ବାହାବେଳେ ଏହି ଚଳ-ପାତଳୀ, ଟାକୁଆ-ଗାଲ, ଗୋଜଆ-ନାକୀ, ଶଙ୍ଖୀ-ବଲେଇ ମାଇପିଟି ଅଳପ କହୁଣିଆ ମୁଣ୍ଡର ବାଳରେ ଚଉଁରୀ ଯୋଖି ଦେଇଥିଲା ଜୁଡ଼ାରେ ଝୁମ୍ପା-ଲଗା ଚଉଁରିଭୂଣ୍ଡି ଖୋଷି, ସେଥିରେ ଗୋଜ-କାଠି ଗେଞ୍ଜି କେମିତି ଦିଶୁଥିବେ ଯେ, ଲକ୍ଷ୍ମୀ-ସରସ୍ୱତୀ-ପାର୍ବତୀ ମନେ ପଡ଼ିଗଲେ ?

ପେଟ ଦୋହଲାଇ ଜଟିଆସୁଥିବା ହସର କୋହକୁ ଆୟତ୍ତ କରି ଇନ୍ଦିରା କହିଲେ, ତମର ବାପା ଅତି ଶସ୍ତାରେ ଖାମବଳୁଆ ଚଉଅଖିଆ ବୁଦ୍ଧିଆ ଜୋଇଁ ପାଇଲେ, ଏକଥା କିଏ ମନା କରିପାରିବ ? କେଡ଼େ ସୁନ୍ଦର ଗୋଲଗାଲିଆ ମୁହଁଟି ହାଡ଼ଆଭାଇଙ୍କର ! ରଙ୍ଗରୁ କି ମିଳିବ ? ରଙ୍ଗ ତ ଦେହରେ ବୋଳହୋଇଯିବ ନାହିଁ ? ଭଗବାନ ଯିଏ ସର୍ଜନା କରିଛନ୍ତି, ସେହି ବଡ଼-ଠାକୁରଙ୍କ ଦେହକୁ ମୁହଁକୁ ସୁମରଣା କରୁନା !

ଯୂଥିକା ହସିଲେ । କହିଲେ, ଭାଇଙ୍କ ପକ୍ଷ ନ ନେଇ ତମେ କ'ଣ ମୋ ପକ୍ଷ ନେଅନ୍ତ କି ? ସେଦିନ ଶିବ ମୋ ଗୋଡ଼ ଧରି ବାହୁନିଲେ । ମୋ ବାହାବେଳେ ବଡ଼ ଭାଉଜଙ୍କ ବାହୁନାରୁ ପଦେ ମନେ ପକାଇଲେ—ସୁବର୍ଣ୍ଣଥାଳରେ ଲୁ ତ ଜାମୁକୋଳି ହୋଇବୁ ରେ ହାଡ଼, ଯୂଥିକା ଦେଈଙ୍କ ଦଶଦୋଷ ଖେମିବୁ ରେ ମୋ ହାଡ଼—

ଇନ୍ଦିରା କୁରୁଳ ଉଠିଲେ । ଅନୁପାକୁ କହିଲେ, ତୁ ଯାଉନୁ ମା, ବାଉରି-ଭାଇ, ଗୋପଭାଇଙ୍କ ସଙ୍ଗେ ଖେଳିବୁ । ନିରୁର ହାତ ଧରି ନେଇ ଯା । ଆଣ୍ଟିଙ୍କ ପାଖରୁ ଗପ ଶୁଣିବୁ । ହେଇଟି ତୋ ବାଉରିଭାଇ ଡାକୁଛି ।

ବାଉରିଆ ପିଣ୍ଡାରେ ଆଡ଼େଇ ଠିଆ ହୋଇଥିଲା । ତା' ବୋଉର ଭୁମ୍ମ କାନ୍ଦଣା ଶୁଣୁଥିଲା । ସେ ପାଖକୁ ଆସି ଅନୁପାର ହାତ ଧରି ପଦାକୁ ନେଲା । ନିରୁପାକୁ ଡାକି କହିଲା, ଆ ଲୋ ନିରୁ, ମତେ ବି ଗପ କହି-ଆସେ ।

ସେମାନେ ଘର ଭିତରୁ ବାହାରିଗଲେ । ପଛରୁ ଯୂଥିକା ଅନାଇଁ ରହିଥିଲେ ମୁଗ୍ଧ-ନେତ୍ରରେ । ଇନ୍ଦିରା ବି । ସେମାନେ ଅଦୃଶ୍ୟ ହେଲାରୁ ଇନ୍ଦିରା କହିଲେ, ବାଉରିଆଟି ଲାଜକୁଳୀ ହୋଇଛି । ବେଳେ ବେଳେ ଆମ ଘରକୁ ଯାଏ । ବିନ୍ଦମ ସଙ୍ଗେ କ'ଣ ପଢ଼େ । ମୁଁ ଡାକ ପକାଇଲେ କେଉଁ ଛଟକରେ ଚଲ ପରି ଖସି ପଳାଏ ।

ଯୂଥିକା କହିଲେ, ହଁ, ସେ ସରଳ ପିଲାଟି । ଘରି କୁହାର ବୋଲର । ବେଶ୍ କାମିକା ଯେ ! ଏଇ ଦିନୁ ସେ ଆମର ହାଟ ବଜାର କଲାଣି । କେହି ତାକୁ ଠକିପାରିବେ ନାହିଁ ମ ଇନ୍ଦୁ ! ଓଜନରେ, ଦରଦାମରେ, ଜିନିଷରେ, ହିସାବରେ ପଇସାଟାଏ ଭୁଲ୍ ହେବ ନାହିଁ । ଦିନେ ଦିଅଣା ବଳକା ହେଲା । ପଇସା କାହାକୁ ଦେଇନାହିଁ, ସେଇଆ ମନେ ପକାଇବାକୁ ମୁଣ୍ଡର ବାଳ ଓଟାରିହେଲା । ପାଠ ପଢୁଥିଲା, ତାର ମନେ ପଡ଼ିଲା ଯେ, କେଉଁ ପରିବା-ଦୋକାନୀ ବୁଢ଼ୀକୁ ସେ ଅଧସେରେ ବାଇଗଣର ଦାମ୍ ଦେଇ-ନାହିଁ । ରାତି ନଅଟାରେ ଧାଇଁଲା ପଇସା ଦେବାକୁ ।

ରାତିଟାରେ ?

ମୁଁ ବାଧା ଦେଲି ନାହିଁ ! ତା ବାପା ରାତିଅଧରେ ଫେରିଲେ । ତାଙ୍କ ମୁହଁବଡ଼ା ଗେହ୍ଲାପୁଅ ବାଇଡଙ୍କ ଗୋପିଆ ତାଙ୍କ ଆଗରେ ଫୋଡ଼-ଦିବ । କହିବ, ଭାଇ ଆଜି କାହାକୁ ପଇସା ଦିଅଣା ଠକିଆଣିଛି । ସେ ଯେମିତିଆ କଡ଼ା ମଣିଷ ! ନିହାତିକୁ ଜଗି, ଧର୍ମକୁ ସାକ୍ଷୀ ରଖି, ଦୁଃଖୀ

ଦରିଦ୍ରଙ୍କୁ ଦୟା କରି ବେପାର କରୁଛନ୍ତି । ବାଉରିଆ କାହାକୁ ହିଅଣା ଠକି- ଦେଇଛି ଜାଣିଲେ ସେ ଠିଆ ଚିରିଦେବେ ।

ହଁ ଗୋ ଭଉଜ ! ସେ ବି ସେଇଆ କହନ୍ତି । କୁଆଡ଼େ ବେପାର ବଣିଜ ସତ୍ୟ-ଡଙ୍ଗା ପରି । ସତ୍ୟକୁ ଛାଡ଼ିଲେ ମଝି-ନଈରେ ସେ ଡଙ୍ଗା ବୁଡ଼େ । ଦୁହିଁଙ୍କର କଥା ଏକା । ରାଶିନକ୍ଷତ୍ର ବି ଏକା ହୋଇଥିବ । ଆରେ ଯା, କେଉଁ କଥାରୁ ଆରମ୍ଭ, ସେ କଥା ଆସି କେଉଁଠି ଉଠିଲାଣି । ଶିବ କେମିତି ବାହୁନେ, କହୁଥିଲ ପରା । ଆଉ ଦି’ ପଦ କହ, ତମକୁ ମୋ ରାଣ !

ଆଗୋ, ରାଣ କାହିଁକି ପକାଉଛ ? ତାକୁ ଟିକିଏ ଚିରଧା କରି କହିଥିଲେ, ସେ ଜାତିଜାତିକା କାହାଣୀ ଶୁଣାଇଆନ୍ତା । ଗୀତ ବୋଲିଲେ ସେ ରାତି ଭୋର କରିବ । ନାଚିବାକୁ ଅନୁରୋଧ କଲେ କେତେ ପ୍ରକାରେ ନାଚିବ । ଜାଣିଛ, ସେ ତା ନିଜ ପାଇଁ ନୋଥ, ଫୁଲଗୁଣା, କାନ ପାଇଁ ମାଙ୍କଡ଼ି, ହାତକୁ ଚୁଡ଼ି, ବେକକୁ ହାର, ଏମିତି କେତେ ଗହଣା ଗଢ଼େଇଛି ନକଲି ସୁନାରେ ! ଚଉଁରୀ, ଚଉଁରୀଭୁଣ୍ଡି ବି ରଖିଛି । ସେ ସବୁ ନାଇବ, ବେଶ ହେବ, ଓଠ ରଙ୍ଗେଇବ ଓ ନାଚିବ ।

ସତେ ! ଷଠୀ ଭୁଲରେ ତାକୁ ମରଦ ପୁଅ କରି ଜନ୍ମ ଦେଇଥିଲା । ରୂପଟି ଯେମିତି ସୁନ୍ଦର, କଣ୍ଠର ସ୍ୱର ବି ସେମିତି ଗୋ ଭଉଜ ! ଆଖିର ଚାହାଣି ବି । ବୋହୂଟିଏ ପରି ବେଶ ହୋଇ ଆଗରେ ଠିଆ ହେଲେ, ଯେ କେହି ଭ୍ରମରେ ପଡ଼ିବ । ମୁଁ ତ ଏଇଠି ଦିନେ ଭ୍ରମରେ ପଡ଼ିଲି । ଆଖିକୁ ବିଶ୍ୱାସ କରିପାରିଲି ନାହିଁ । ମୋ ଶାଶୁଙ୍କୁ ମୁଣ୍ଡିଆ ମାରି, ଆସି ମୋରି ପାଖରେ ବସିଲା । ମୋରି ଧୋବ ଶାଢ଼ି ଖଣ୍ଡେ ଆରଘର ଆଲଣାରୁ ନେଇ, କବାଟ କିଳି ପିନ୍ଧିଥିଲା । ଗୁଡ଼ିରେ ଖଞ୍ଜିଥିଲା କଅଣ ଯୋଡ଼ାଏ । ସେ କୁଆଡ଼େ କଟକ ବଜାରରେ ମିଳେ ।

ଛି, ଛି— !

ଇନ୍ଦିରା ମନ ଭିତରେ କହିଲେ, ସେଥିରୁ ଯୋଡ଼ାଏ ଚମର ବି ଲୋଡ଼ା ମ ଭାଉଜ ! ସିନାମା ଥିଏଟର୍‌ରେ କୁଆଡ଼ ତାର ବହୁତ ପ୍ରଚାର । ଯେଉଁ-ମାନେ ପଇସା ଦେଇ ହମ ହମ ହୋଇ ସେଠାକୁ ଧାଆଁନ୍ତି, ସେମାନେ କଅଣ ଦେଖି ଖୁସିହୁଅନ୍ତି କି ?

ଚୂଲପଶା ଶିବ ମୋ ଗୋଡ଼ ଧରି ପୁଣି ବାହୁନିଲେ । ସତ କହୁଛି, ପଦଗୁଡ଼ାକ ମୋର ମୋଟେ ମନେ ନାହିଁ । ଶୁଣିବ ଆଚମ୍ବିତ କଥା ? ତାଙ୍କ ଆଖିରୁ ଦି ଧାର ଲୁହ ଗଡ଼ିପଡ଼ୁଥାଏ । ମୁଁ ଜାଣିପାରି ନ ଥିଲି ଯେ, ମୋ ଆଖିରୁ କେତେବେଳେ ଲୁହ ଗଡ଼ୁଥିଲା । ଯାହାହେଉ, ବରବେଶ ସାଜି ବେଦିରେ ବସି ସେ ବାହାହେଲା । ବଡ଼ ମାଉସୀ ବୋହୂଟିଏ ଘରକୁ ଆଣିଲେ ତ !

ଇନ୍ଦିରା ଜାଣନ୍ତି, ସେହି ଶିବଚରଣ ତାଙ୍କୁ ଅପା ଅପା ଡାକି, ସୂଥିକାଙ୍କର ନଣନ୍ଦ କରିଛି, ହାଡ଼ବନ୍ଧୁଙ୍କୁ ଡାକ-ଭାଇର ଆସନରେ ନେଇ ଥୋଇଛି । ରକ୍ତର ସମ୍ପର୍କ ସେ ନୁହନ୍ତି । ବନ୍ଧୁରେ ବନ୍ଧୁ, ଆଲଆ ଲେଖାରେ ବାଲଆ ଭାଇ ବି ନୁହନ୍ତି । ଗ୍ରାମ ସମ୍ପର୍କରେ ଜାତିଆଣି-ଭୁଲା ମାହାର୍ଦ୍ଧ ବନ୍ଧୁ ତ ନୁହନ୍ତି । ଏ ସବୁ ସମ୍ପର୍କରେ କେବଳ ଚଳନ-ବେଭାରରେ ନୁହେଁ, ମନର ଭାବନାରେ ମଧ୍ୟ ଲଗାମ ଲଗିବାର କଥା । ଲୋକ-ଲାଜ ତ ରହିଛି ! ଡାକ-ହାକରେ ଭାଇ ପଦ ଅବା ଭଉଣୀ ପଦର ପବିତ୍ର ମର୍ଯ୍ୟାଦା ରକ୍ଷିପାରେ ଏକା ସୁ-ଶିକ୍ଷା, ମହତ୍‌ସଙ୍ଗ ଓ ଚରିତ୍ରର ବଳ ।

ଏ ସବୁର ଅଧିକାଂଶ କେତେରେ କେତେ ?

ରୂପର ଚହଟ, ଦେହର ସାଜ, ପୁଣି ସେହି ଦେହର କେତେ ଭାଗର ଫୁଟିଲା ଅଧା-ଫୁଟିଲା ପ୍ରକାଶ ସେମାନଙ୍କର ଟକଳା-ଦୃଷ୍ଟିକୁ ଓଟାରେ । ଟାଣୁଆ ମନକୁ ନରମା କରେ । ବଗଡ଼ା-ପ୍ରକୃତିକୁ ସଜାଡ଼େ । ସେମାନଙ୍କର ମୁହଁଭଉଁଙ୍କୁ ଶାନ୍ତ କରେ । ଝଗଡ଼ାଲି-ମନରେ 'ଆ-ଜହ୍ନମାମୁଁ-ଶରଦ-ଶଶୀ'ର ପ୍ରଭାବ ପକାଏ । ଅଡ଼ାଲି-କଲମକୁ ବୋଲକରା କରେ । ସେମାନେ ଯିଏ ହେଉନ୍ତୁ ପଛେ—ହାକିମହୁକୁମା, ମନ୍ତ୍ରୀଉପମନ୍ତ୍ରୀ, ଏମେଲେ, ଆଉ

ଆଜ୍ ବଡ଼ବଡ଼ିଆ, ଡାକହାକ ସମ୍ବନ୍ଧ । ଭେଟି ପଡ଼ିଲେ ଯେତେ ଦାମିକା ହେଉ, ଯେଉଁ ପଦାର୍ଥ ହେଉ, ତାର ନାମ ଶାଗ-ମାଛ, ସେତକ ହାତରେ ଥିଲେ ନାକଟେକା ଚଢ଼ଚଢ଼ା ବ ଏକଡ଼ ସେକଡ଼ ଆଖି ବୁଲାଇ ଥୋପ ତୋଳେ ।

ଅଛନ୍ତି ଥୋକାଏ ଟାଣୁଆ । ସେମାନେ କୁଆଡ଼େ ଧର୍ମ-ଖିରୁ ଅବାଗିଆ ଲୋକ । ଆନନ୍ଦଚନ୍ଦ୍ର ସେମାନଙ୍କୁ ଜରୁଆ ବୋଲି କହନ୍ତି । ତାଙ୍କର ତରଛ ତାଙ୍କର ସେରକ ମାଣେକ ଦାନ କରେ । ପାଖଲୋର ଲୋକେ ତାଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ ହସନ୍ତି । କୁହାକୁହି ହୁଅନ୍ତି, ସେଇଟା ଭଲ ଲୋକ ଯେ ଓଲୁଙ୍କ ବୋକସ୍ତ-ବୁଦ୍ଧା । ବେଳ ଆସିବ, ଯେତେବେଳେ ସେ ପସ୍ତାଉଥିବ । ନିଜର ଭୁଲ ନିଜେ ବୁଝି ଓଠ ଚୁଟୁଥିବ । ପରର ଶିରୀ ଦେଖି ସେ ହାଇଁପାଇଁ ହେଉଥିବ ।

ଆନନ୍ଦଙ୍କ ଅନୁରୋଧରେ ଇନ୍ଦିରା ଖଣ୍ଡିଜଡ଼ା ଦେଇ କେତେ ଅସାଧ୍ୟ କାମ ନିଜେ କରାଇପାରିଛନ୍ତି । କେତେ ଜାଗାରେ ସବୁ ସମର୍ପି ହତାଶ ବି ହୋଇଛନ୍ତି । ସେମାନେ ଅତି ତରକା, ପାଖରା ଓ ଓଠରୁଟି ମୁହଁ ବୁଲାଇ ନେଇଥିଲା ତଙ୍ଗିଆ । ଏହି ଅଲୋଡ଼ା-ଲୋଡ଼ା ବନ୍ଧୁଟି ହାଡ଼ବନ୍ଧୁ, ଶିବଚରଣ ଯାହାଙ୍କୁ ଇନ୍ଦିରାଙ୍କର ଡାକ-ଭାଇର ଆସନରେ ଥୋଇଥିଲେ, ତାଙ୍କର ଆଖିରେ ବି ଇନ୍ଦିରା ଟିକିଏ ଲୋଭିଲା-ବିମ୍ବୁ ଜଳାଇପାରିଛନ୍ତି । ତାଙ୍କ ପରି କୁଟନୀ ପୁରୁଣା ଶତ୍ରୁକୁ ଆନନ୍ଦଙ୍କର ଅନୁଗତ ଓ ବିଶ୍ୱାସୀ ବନ୍ଧୁ କରି ଅଟକାଇ ରଖିବା କମ୍ ବଡ଼ କଥା ନୁହେଁ ।

ହାଡ଼ବନ୍ଧୁ ଟିକି ଅନୁପାକୁ ଗେଲବସର ବୋଝୁ କରିବେ ବୋଲି ତୁଣ୍ଡରୁ ଭାଷା ଖସାଇଲେ । ଇନ୍ଦିରା ହସହସ ହୋଇ, ଗାଲ ଫୁଲାଇ, ଭ୍ରୂ ଲମ୍ବା ଟେକି ଗେହ୍ଲେଇ ଗେହ୍ଲେଇ ତାର ଉତ୍ତର ଦେଲେ, ତା'ର ଭାଗ୍ୟରେ ଥିଲେ ହେବ । କିଏ ମନା କରିପାରିବ ? ବାଉରିଆ ପରି ପିଲା ! ରୂପରେ ଯେମିତି,

ଗୁଣରେ ତହୁଁ ବଳ । ତା ପରକା ପିଲାକୁ ଝିଅ ଦେଇ ପୁଅ ପାଇବାକୁ କେଉଁ ମା ମନ ନ କରିବ ?

ଡାକ-ଭାଇ ହାଡ଼ବନ୍ଧୁ ଗାଉଣ୍ଡ-ଆଗରେ, ଦରବୁଢ଼ୀ ହୋଇଆସୁଥିବା, ଦେଖି ଶିଖି ନିଜ ଉଦ୍ୟମରେ ଆଧୁନିକ ଖତରେ ଭଙ୍ଗୀ ଛୁଞ୍ଚାଡ଼ୁଥିବା ଇନ୍ଦିରାଙ୍କୁ ଚାହିଁ ଘୋଡ଼ା ପରି ଅଳପ ହସିଲେ । ଅନୁପାର ହାତ ଧରି ପାଖକୁ ଟାଣିଲେ । ସେ ଭଡ଼ଭୋଡ଼ ହୋଇ ହାତ ଖସାଇନେଲା । ଇନ୍ଦିରାଙ୍କ ପଛରେ ଲୁଚିଲା । ସେଇଠୁ ବାଆଁରେଇ ହୋଇ ପଦାକୁ ପଳାଇଲା । ଆଉ ଘରେ ଝଙ୍ଗମର ପାଟି ଶୁଭୁଥାଏ । ସେ ସୁରୁପାକୁ ଖେଳାଉଥାଏ । ନିରୁପାକୁ କାନ୍ଧିକି ଆକଟୁଥାଏ ।

ଆନନ୍ଦ କହିଲେ, ଠାକୁରେ ସେମାନଙ୍କୁ ମଣିଷ କରନ୍ତୁ, ଭଲ ବୁଦ୍ଧି ଦିଅନ୍ତୁ । ଭବିଷ୍ୟତରେ ସେ ବିଷୟର ବିଚାର ପଡ଼ିବ । ଯୁଗର ଢଙ୍ଗ ବଦଳି ବଦଳି ଚାଲିଛି । ପୁଅମାନଙ୍କ ପରି ଝିଅମାନେ ସବୁ ଦିଗରେ ଆଗେଇ ଚାଲିଛନ୍ତି । ସେମାନଙ୍କୁ ଆମ ଅମଳର ବୋଲେ-ହୁଁ-ଟି ବିଚାରି, ହେବ କି ନ ହେବ ଏବେଠୁଁ କିଏ କହିପାରିବ ?

ହାଡ଼ବନ୍ଧୁ କହିଲେ, ସତ କହିଲ ସମୁଦି ! କେଉଁଠି କେଉଁଠି ଘରେ, କେଉଁଠି କେଉଁଠି ପାଠୁଆ ପୁଅ-ଝିଅଙ୍କ ଭିତରେ କଅଣ ସବୁ ଘଟିଯାଉଛି, ଶୁଣିଲେ କାବାକାବା ଲାଗୁଛି । ଜାତି, ଧର୍ମ ଓ ସ୍ଥିତିର ବିଚାର ରହୁନାହିଁ ।

ଯେଉଁ ବାପ-ମା ପାଳି ବଢ଼ାଇ ପଢ଼ାଇ ମଣିଷ କଲେ, ସେମାନଙ୍କ ମୁହଁରେ ଚୂନକାଳି ବୋଳି ସେମାନେ ଅଲଗା ହୋଇଯାଉଛନ୍ତି । ଆଗରୁଁ ଆମକୁ ସତର୍କ ହେବାକୁ ପଡ଼ିବ । କଅଣ କହୁଛ ସମଦୁଣୀ ?

ଡାକ-ଭାଇ ପଦ ଡାକ-ସମୁଦି ପଦରେ ପରିଣତ ହୋଇଥିଲା । ଡାକିବାକୁ ସୁବିଧା ।

ଦୁଇ କୁଟୁମ୍ବ ମଧ୍ୟରେ ଘନିଷ୍ଠତା ବଢ଼ିଲା । ଦୁଇ ବନ୍ଧୁଙ୍କ ମଧ୍ୟରେ ବିଶ୍ୱାସ ବି ଗଢ଼ିଉଠିଲା ।

ସଙ୍କୋଚ ଅପସରିଲା । ହାଡ଼ବନ୍ଧୁଙ୍କର ପୁଣି ସାହସ ବଢ଼ିଲା । ଯେଉଁ ଅନୁରୋଧ ନିଜେ ଆନନ୍ଦଚନ୍ଦ୍ର କରିବାକୁ କୁଣ୍ଠିତ ହୋଇଥାନ୍ତେ, ସେତକ କରିବାକୁ ସେ ପଛାଇଲେ ନାହିଁ ।

ସମ୍ବନ୍ଧୁଣୀ ମ, ତମେ ସାହାଯ୍ୟ ନ କଲେ ଦେଢ଼ଲକ୍ଷ ଟଙ୍କାର କୋଠା-କାମଟି ଆଉ କିଏ ନେଇଯିବ । ତମେ ତ ଲକ୍ଷ୍ମୀ ଠାକୁରାଣୀ, ରୂପରେ ଓ ଗୁଣରେ—

ଏତେ ଠେକାଠେକ କରୁଛ କାହିଁକି ? କେଉଁ ମାଲିକଙ୍କର ପୁଅଝିଅର ବାହାଘର ହେଉଛି କି କାହାର ପୁଅ ବା ନାତିର ଜନ୍ମଦିନ ? ମତେ ତମର ଉପହାର ନେଇ ହାକିମଙ୍କ ଘରଣୀଙ୍କ ପାଖକୁ ଯିବାକୁ ପଡ଼ିବ ? ଆଗରୁ ଯାଇଆସି ଚିହ୍ନାପରିଚ ହୋଇ ନ ଥିଲେ ଭାରି ଅଡୁଆ ଲାଗେ । ମୁହଁ ଲାଜପାଣି ପୋଛିବା କେଡ଼େ କଷ୍ଟ କାମ, ତମେ ମରଦ ଦୁଇଟା ବୁଝିପା[illegible] ନାହିଁ ।

ଆନନ୍ଦ କହିଲେ, ବଡ଼ ହାକିମଙ୍କ ଘରଣୀ ତମରି ବୟସର । ତମ[illegible] ଠାରୁ କିଛି ବଡ଼ ହୋଇ ବି ପାରନ୍ତି । ପୁଅଝିଅ ହୁଓଟି । ଧନୀଘରର ପାଠୁଆ ଝିଅ ନ ହୋଇଥିଲେ ମୁଖହାନୁରୀ, ଜଚକପାଳୀ, ଶ୍ୟାମଳୀ ଝିଅକୁ ବିଲାତ-ଫେରନ୍ତା ହରବୁଡ଼ା ହାକିମ କାହିଁକି ବାହା ହୋଇଥାନ୍ତେ ?

ହାଡ଼ବନ୍ଧୁ ତାର ଉତ୍ତର ଦେଲେ, ତମେ କହୁଛ ସମ୍ବନ୍ଧ, ସେ ହରବୁଡ଼ା ହୋଇ ବିଦେଶରୁ ବିଲାତି ଢଙ୍ଗ ନେଇ ଫେରିଥିଲେ । ରୂପରେ ଖୁଣ ନ ଥିଲେ ତାଙ୍କର ଆସନକୁ ଦେଖି କେଉଁ ଧନୀବାପ ଝିଅଟାକୁ ତାଙ୍କୁ ଦେଇଥାନ୍ତା ? ବଡ଼ ହାକିମଙ୍କର ଚେକା-ଗୋଧୁଲି ଡେଙ୍ଗାଳିଆ ରୂପ ମନ୍ଦ ନୁହେଁ । ଭାରି କଡ଼ା ମେଜାଜ ।

ଆନନ୍ଦ କହିଲେ, ମୁଁ ଖବର ଯୋଗାଡ଼ କଲିଣି ଯେ ଘରଣୀଙ୍କ ପାଖରେ ସେ ଜାଣ ମୂଷା । ତାଙ୍କ ଘରଣୀ ସୁପାରିସ କଲେ ସେ ହାକିମ

ଗୁଣରେ ଚନ୍ଦ୍ରଁ ବଳି । ତା ପରିକା ପିଲାକୁ ଝିଅ ଦେଇ ପୁଅ ପାଇବାକୁ କେଉଁ ମା ମନ ନ କରିବ ?

ଡାକ-ଭାଇ ହାଡ଼ବନ୍ଧୁ ଗାରଡ଼-ଆଖିରେ, ଦରବୁଢ଼ୀ ହୋଇଆସୁଥିବା, ଦେଖି ଶିଖି ନିଜ ଉଦ୍ୟମରେ ଆଧୁନିକ ଗୀତରେ ଭଙ୍ଗୀ ଛୁଆଡ଼ୁଥିବା ଇନ୍ଦିରାଙ୍କୁ ଚୁହିଁ ଘୋଡ଼ା ପରି ଅଳପ ହସିଲେ । ଅନୁପାର ହାତ ଧରି ପାଖକୁ ଟାଣିଲେ । ସେ ଭଡ଼ଭୋଡ଼ ହୋଇ ହାତ ଖସାଇନେଲା । ଇନ୍ଦିରାଙ୍କ ପଛରେ ଲୁଚିଲା । ସେଇଠୁ ବାଆଁରେଇ ହୋଇ ପଦାକୁ ପଳାଇଲା । ଆଉ ଘରେ ବରଷମର ପାଟି ଶୁଭୁଥାଏ । ସେ ସୁରୁପାକୁ ଖେଳାଉଥାଏ । ନରୁପାକୁ କାନ୍ଧିକ ଆକଟୁଥାଏ ।

ଆନନ୍ଦ କହିଲେ, ଠାକୁରେ ସେମାନଙ୍କୁ ମଣିଷ କରନ୍ତୁ, ଭଲ ବୁଦ୍ଧି ଦିଅନ୍ତୁ । ଭବିଷ୍ୟତରେ ସେ ବିଷୟର ବିଚାର ପଡ଼ିବ । ଯୁଗର ଢଙ୍ଗ ବଦଳି ବଦଳି ଚାଲିଛି । ପୁଅମାନଙ୍କ ପରି ଝିଅମାନେ ସବୁ ଦିଗରେ ଆଗେଇ ଚାଲିଛନ୍ତି । ସେମାନଙ୍କୁ ଆମ ଅମଳର ବୋଲେ-ହୁଁ-ଟି ବିଚାରି, ହେବ କି ନ ହେବ ଏବେଠୁଁ କିଏ କହିପାରିବ ?

ହାଡ଼ବନ୍ଧୁ କହିଲେ, ସତ କହିଲ ସମୁଦି ! କେଉଠେ କେଉଠେ ଘରେ, କେଉଠେ କେଉଠେ ପାଠୁଆ ପୁଅ-ଝିଅଙ୍କ ଭିତରେ କଅଣ ସବୁ ଘଟିଯାଉଛି, ଶୁଣିଲେ କାବାକାବା ଲାଗୁଛି । ଜାତି, ଧର୍ମ ଓ ସ୍ଥିତିର ବିଚାର ରହୁନାହିଁ ।

ଯେଉଁ ବାପ-ମା ପାଳି ବଢ଼ାଇ ପଢ଼ାଇ ମଣିଷ କଲେ, ସେମାନଙ୍କ ମୁହଁରେ ଚୂନକାଳି ବୋଳି ସେମାନେ ଅଲଗା ହୋଇଯାଉଛନ୍ତି । ଆଗରୁଁ ଆମକୁ ସତର୍କ ହେବାକୁ ପଡ଼ିବ । କଅଣ କହୁଛ ସମଦୁଣୀ ?

ଡାକ-ଭାଇ ପଦ ଡାକ-ସମୁଦି ପଦରେ ପରିଣତ ହୋଇଥିଲା । ଡାକିବାକୁ ସୁବିଧା ।

ଦୁଇ କୁଟୁମ୍ବ ମଧ୍ୟରେ ଘନିଷ୍ଠତା ବଢ଼ିଲା । ଦୁଇ ବନ୍ଧୁଙ୍କ ମଧ୍ୟରେ ବିଶ୍ୱାସ ବି ଗଢ଼ିଉଠିଲା ।

ସଙ୍କୋଚ ଅପସରିଲା । ହାଡ଼ବନ୍ଧୁଙ୍କର ପୁଣି ସାହସ ବଢ଼ିଲା । ଯେଉଁ ଅନୁରୋଧ କରନ୍ତେ ଆନନ୍ଦଚନ୍ଦ୍ର କରିବାକୁ କୁଣ୍ଠିତ ହୋଇଥାନ୍ତେ, ସେତକ କରିବାକୁ ସେ ପଛାଇଲେ ନାହିଁ ।

ସମ୍ବନ୍ଧୁଣୀ ମ, ତମେ ସାହାଯ୍ୟ ନ କଲେ ଦେଢ଼ଲକ୍ଷ ଟଙ୍କାର କୋଠା-କାମଟି ଆଜ କଏ ନେଇଯିବ । ତମେ ତ ଲକ୍ଷ୍ମୀ ଠାକୁରାଣୀ, ରୂପରେ ଓ ଗୁଣରେ—

ଏତେ ଟେକାଟେକ କରୁଛ କାହିଁକି ? କେଉଁ ମାଳିକଙ୍କର ପୁଅଝିଅର ବାହାଘର ହେଉଛି କି କାହାର ପୁଅ ବା ନାତିର ଜନ୍ମଦିନ ? ମତେ ତମର ଉପହାର ନେଇ ହାକିମଙ୍କ ଘରଣୀଙ୍କ ପାଖକୁ ଯିବାକୁ ପଡ଼ିବ ? ଆଗରୁ ଯାଇଆସି ଚିହ୍ନାପରିଚ ହୋଇ ନ ଥିଲେ ଖାଲି ଅଡ଼ୁଆ ଲାଗେ । ମୁହଁରୁ ଲାଜପାଣି ପୋଛିବା କେଡ଼େ କଷ୍ଟ କାମ, ତମେ ମରଦ ଦୁଇଟା ବୁଝିପାରିବ ନାହିଁ ।

ଆନନ୍ଦ କହିଲେ, ବଡ଼ ହାକିମଙ୍କ ଘରଣୀ ତମରି ବୟସର । ତମ-ଠାରୁ କିଛି ବଡ଼ ହୋଇ ବି ପାରନ୍ତି । ପୁଅଝିଅ ହୋଇଛି । ଧନୀଘରର ପାଠୁଆ ଝିଅ ନ ହୋଇଥିଲେ ମୁଖଦାନ୍ତୁରା, ଉଚ୍ଛକପାଳୀ, ଶ୍ୟାମଳୀ ଝିଅକୁ ବିଲାତ-ଫେରନ୍ତା ଦରବୁଢ଼ା ହାକିମ କାହିଁକି ବାହା ହୋଇଥାନ୍ତେ ?

ହାଡ଼ବନ୍ଧୁ ତାର ଉତ୍ତର ଦେଲେ, ତମେ କହୁଛ ସମୁଦି, ସେ ଦରବୁଢ଼ା ହୋଇ ବିଦେଶରୁ ବିଲାତି ଢଙ୍ଗ ନେଇ ଫେରିଥିଲେ । ରୂପରେ ଖୁଣ ନ ଥିଲେ ତାଙ୍କର ଆସନକୁ ଦେଖି କେଉଁ ଧନୀବାପ ଝିଅଟାକୁ ତାଙ୍କୁ ଦେଇଥାନ୍ତା ? ବଡ଼ ହାକିମଙ୍କର ଡେକା-ଗ୍ଲେଧୁଆ ଡେଙ୍ଗାଳିଆ ରୂପ ମନ୍ଦ ନୁହେଁ । ଖାଲି କଡ଼ା ମେଜାଜ ।

ଆନନ୍ଦ କହିଲେ, ମୁଁ ଖବର ଯୋଗାଡ଼ କଲିଣି ଯେ ଘରଣୀଙ୍କ ପାଖରେ ସେ ଜାଣେ ମୂଷା । ତାଙ୍କ ଘରଣୀ ସୁପାରିସ କଲେ ସେ ହାକିମ

ଘରେ ଦେଖା କରିବାକୁ, କଥାଭାଷା ହେବାକୁ ଅନୁମତି ଦେବେ । ସେତିକି ଆମର ଲୋଡ଼ା । ନା କଣ କହୁଛ ସମୁଦ? ଏ କାମ ନ ମିଳିଲେ ଆଉ କେଉଁ କାମ ତ ମିଳିପାରିବ ?

ହାଡ଼ିବନ୍ଧୁ କହିଲେ, ଠାକୁରାଣୀଙ୍କୁ ପୂଜା କରିପାରିଲେ ସେ ଅବଶ୍ୟ ସୁପାରିସ କରିବେ । ତାଙ୍କର ସୁପାରିସ ବୋଲି କରିବ । ଏ ବିଶ୍ୱାସ ମୋର ଅଛି । ସମୁଦୁଣୀ ସେତିକି ସାହାଯ୍ୟ ଆମକୁ କରିବେ । ସେତିକି କାମଟି ହୋଇ-ପାରିଲେ ନିର୍ବିଘ୍ନରେ ତମର ଘରଖଣ୍ଡିରେ ଛାତ ପଡ଼ିପାରିବ । ମୋର ନୂଆଘର ଆଉ କିଛି ଉପରକୁ ଉଠିଯିବ ।

ଆନନ୍ଦ କହିଲେ, ମୋର ଘର ବୋଲି କାହିଁକି କହୁଛ ସମୁଦ ? ସେ ଘର ଇନ୍ଦ୍ରଙ୍କର । ତାକୁ ଦେଖି ସେ ନିଜେ ଦୁଃଖ କରି କହୁଥିଲେ, ଘରଟା ଅଧା ହୋଇ ରହିଲା । କେମିତି କେମିତି ଶେଷ ହୋଇଗଲେ ଅନର୍ଥକ ଭଡ଼ାଗଣାରୁ ନିସ୍କୃତି ମିଳନ୍ତା । ତମ ଘର ବୋଲି କହୁଛ ବା କାହିଁକି ? ଥୋରିଆସାହିର ଜମିଟା ଯୂଥିକା ଦେବୀଙ୍କ ନାମରେ କଣିଛ । ସେ ଯାହାହେଉ, ତମକୁ ଆଉ ଭଡ଼ା ଗଣିବାକୁ ପଡ଼ୁନାହିଁ ! କଟାଳ କରିବାକୁ ଶିବଚରଣ କଟକ ଆସୁନାହିଁ ।

ଆସୁନାହିଁ ଯେ, ଗ୍ରାମରେ ଥାଇ କଟକ ଆଡ଼କୁ ଗୃହିଁ ସେ ନିର୍ଲଜ୍ଜ ବେଳେ ବେଳେ ଭୃକୁଞ୍ଚଉଛନ୍ତି । ମାଉସୀ ସେପୁରକୁ ଗଲେ । ସେ ଖବର ଜଣାଇ ଯୂଥିକାକୁ ଯେଉଁ ଚିଠି ଲେଖିଥିଲା, ଜାଣ ସମୁଦ, ସେ ଗୋଟାଏ ମାଇପି ବାହୁନାର ଫରଦ । ସେଥିରେ ବି ନିର୍ଲଜ୍ଜ ତା ଘର ଛାଡ଼ି ଆଉ କୁଆଡ଼େ ଚ୍ଛଳିଯିବାକୁ ଅନୁରୋଧ କରିଥିଲା । ଶୁଦ୍ଧିଘରକୁ ଟଙ୍କା କୋଡ଼ିଏଟି ମନିଅର୍ଡ଼ର କରି ତା ନାମରେ ପଠାଇଥିଲା । ବୋଧହୁଏ ତା ମନକୁ ଆସିଲା ନାହିଁ, ଅବା ତାର ଭଉଣୀମାନଙ୍କ ଶିକ୍ଷାରେ ପଡ଼ି ସେ ଫେରାଇଦେଲା ।

ଇନ୍ଦ୍ର କହିଲେ, ଭଲ ହେଲା । ଘରଟଙ୍କା ଘରକୁ ଫେରିଲା । ତା ଆଡ଼ରୁ ଶିବଚରଣ ସମ୍ପର୍କ ଛୁଟାଇଦେଲା । ଘରପାଇଁ ସେ ଆଉ ବୋବାଳି ଛାଡ଼ିବ ନାହିଁ ।

ମାଇଚ୍ଛୁଗୁଡ଼ାକ ଘର ଜବଆ ହୁଅନ୍ତ ସମୃଦ୍ଧୁଣୀ ! ନ୍ୟାୟ୍ୟ ଅନ୍ୟାୟ୍ୟ ଯାହା ହେଉ, ଯାହା ଥରେ ବୁଝିଥିବେ ସେଇଆ । ଶିବଚରଣଙ୍କୁ ଚିହାଇବାକୁ ତା ଗାଁ ଲୋକେ ଓ ଭଉଣୀଇଁମାନେ ଅଛନ୍ତି । ତାର ସମ୍ପତ୍ତିକୁ ସମସ୍ତେ ବାଣ୍ଟି କୁଣ୍ଟି ଶେଷ କରିବାକୁ ଚକ୍ରାନ୍ତ କରୁଥିବେ । ନବୁଝିଆଟା କଅଣ ସେକଥା ବୁଝିବ ? ଜାଣ କ ସମୃଦ୍ଧୁଣୀ, ମାସକତଳେ ତାର ଗୋଟାଏ ପୁଅ ହୋଇଛି ।

ସଚେତ ଇନ୍ଦିରା ଆକାଶରୁ ଖସିପଡ଼ିଲେ । ବିସ୍ମିତ ହୋଇ ଚିତ୍କାର କରିଉଠିଲେ, ଏଁ —, ମାଇଚ୍ଛୁ ଶିବାର ପୁଅ !

ରହସ୍ୟ କରି ଆନନ୍ଦ କହିଲେ, ମାଇଚ୍ଛୁ ହେଲେ ବି ସେ ମରଦ ପିଲା । ଗୋଟାଏ କାହିଁକି, ତାର ଦଶଟା ପିଲା ହେବେ ।

ଇନ୍ଦିରା ହସିଲେ । କହିଲେ, ମରଦଙ୍କର ପିଲା ହୁଏ ନାହିଁ ଗୋ ! ଯାହାହେଉ, ତା ଘରକୁ ଲକ୍ଷ୍ମୀ ବୋହୁଟିଏ ଆସିଛି । ତା ନାଁ ପୁଣି ଜେମାମଣି ।

ଖୁସି ହୋଇ ସୂଚିକାଙ୍କୁ ସେ ସେଇଆ ଲେଖିଥିଲା । ଘରର ନାମ ସେ ଧରି ନ ଥିଲା । ନିଶ୍ଚୟ ସେ ବୋହୁଟି ଲକ୍ଷ୍ମୀ । କାହିଁକି ଜାଣ ? ଶିବ ଲେଖିଥିଲା, ସେ ଗୋଟାଏ ସରପଞ୍ଚ ହେଲାଣି । ଅବଶ୍ୟ ଲୋକଙ୍କୁ ଆପଣାର କରିବାକୁ ସେ ଜମି ବନ୍ଧକ ଦୁଇ ହଜାର ଟଙ୍କା ଖରଚ କରିଥିଲା । ସେ ଭାବିଛି, ବର୍ଷ ଗୋଟାକରେ ସେ ଡବଲ ଡବଲ ଆଦାୟ କରିପାରିବ । ମାଇଚ୍ଛୁ ନାଟୁଆ ବୋଲି ଯାହାକୁ କହୁଛ, ତାର ଏ ବୁଦ୍ଧି, ଏ ସାହସ ଆସିଲା କେଉଁଠୁ ? ଅତି କଷ୍ଟରେ ସେ ଆଠକ୍ଲାସ ଯାଏ ପଢ଼ିଥିଲା ।

ଆନନ୍ଦ କହିଲେ, ପାଠ ଯେ ଯୋଜନ, ଧନ ଓ ସାଧାରଣଙ୍କର ମନ କିଣିପାରିବ, କେତେ ବଡ଼ବଡ଼ଆଙ୍କୁ ଦେଖି ତମର ଏ ଧାରଣା ବଦଳିବା ଉଚିତ ସମୃଦ୍ଧ ! ଅସଲ ହେଲା ଭାଗ୍ୟ । ସେଇ ଭାଗ୍ୟଟା ଯଦି ଖୋଲିବ, କାହୁଁ କାହୁଁ ଆସି ବୁଦ୍ଧିଗୁଡ଼ାକ ମୁଣ୍ଡରେ ପଶିବ । ଶିବଚରଣ-ବାବୁଙ୍କର ଭାଗ୍ୟ ଖୋଲିଛି । ଦେଖ ସେ ଆହୁରି କ'ଣ ହେଉଛନ୍ତି ।

ହାଡ଼ବନ୍ଧୁ କହିଲେ, ମୁଁ ଭାବୁଛି, ଆମରି ଶିବବାବୁଙ୍କର ଭାଗ୍ୟର ଗୁଡ଼ଟା ଖୋଲିଦେଇଛି ତାଙ୍କର ଘରଣୀ । ଆମର ଭାଗ୍ୟର ଗୁଡ଼ଟାଡି

ଅଛି ସମୁଦୁଣୀଙ୍କ ହାତରେ । ସେ ମନକଲେ ଫଣାଟେକା ହାକମଙ୍କୁ ବଶ କରିପାରିବେ, ଆମର କପାଳ ଖୋଲିବ ।

ଚମକିଉଠିଲେ ଇନ୍ଦିରା ।

କ୍ଷଣେ ଚିନ୍ତା କଲେ । ସମୁଦୁଣୀ ସମ୍ବନ୍ଧ ପାଣ୍ଡ କେଡ଼େ ଅଭଦ୍ର ଓ ସମାଜଛଡ଼ା ପ୍ରସ୍ତାବ କରୁଛନ୍ତି ଧୂର୍ତ୍ତ ହାଡ଼ବନ୍ଧୁ, ପୁଣି ତାଙ୍କର ସ୍ୱାମୀଙ୍କ ଆଗରେ, ନିର୍ଲଜ୍ଜ ଭାବରେ, ନିର୍ଭୟରେ ଓ ଅତି ଦୁଃସାହସରେ ! ଆନନ୍ଦଚନ୍ଦ୍ର କ୍ଷୁବ୍ଧ ହେବା ପରିବର୍ତ୍ତେ ହସିଲା-ଦୃଷ୍ଟିରେ ଇନ୍ଦିରାଙ୍କ ମୁହଁକୁ ଚାହିଁରହିଛନ୍ତି । ଦୁଇ ବନ୍ଧୁ ଶିଖାଶିଖି ହୋଇ ତାଙ୍କୁ ରହସ୍ୟ କରି ଚଳାଇବାକୁ ମନ କରିଛନ୍ତି ପରା ! ତାଙ୍କର ରହସ୍ୟର ଉତ୍ତର ରହସ୍ୟରେ ଦେଇ ତାଙ୍କୁ ଥଣ୍ଡା କଲେ ଭଲ ହେବ ।

ସେ ଫାଁଜିକରି ହସିଉଠିଲେ । ଆଗ ଦୁହିଁଙ୍କ ଉପରେ ଆଖି ବୁଲାଇଲେ । ସେମାନେ ପଲଙ୍କ ଉପରେ ବସିଛନ୍ତି । ନିଜ ଖରଚରେ କିଣି ଝୁଲାଇଥିବା ବିଜୁଳିପଙ୍ଖା ଧୀରେ ଧୀରେ ବୁଲୁଛି । ଉଜ୍ଜ୍ୱଳ ବିଜୁଳି ଆଲୁଅରେ ଘର ପ୍ଳାବିତ ହୋଇଛି । ତା'ରି ପ୍ଳାବନରେ ମଶାରିବାଡ଼କୁ ଧରି ବଙ୍କେଇ ଠିଆ ହୋଇଥିବା ସେ ନିଜେ ଇନ୍ଦିରା, ସତେ କି ଭାସୁଛନ୍ତି, ଉବୁଟୁବୁ ହେଉଛନ୍ତି ।

ଗାଉଁଲି ଝିଅ, କଟକଣାରେ ବଢ଼ିଲା ବୋହୂ, ନିମ୍ନ-ମଧ୍ୟବିତ୍ତ ନ କହି ଗରିବ ଘରର ଘରଣୀ । ଛଅଗୋଟି କନ୍ୟାରତ୍ନଙ୍କର ଚନ୍ଦନ ପରି ଦେହରେ ବୋଳି ହୋଇଥିବା ମଳମ୍ବତ-ନେସା ଜନନୀ ସେ ଇନ୍ଦିରା । ନବ୍ୟସଭ୍ୟ ହେବାର ବାଟରେ ଝୁଣ୍ଟିପଡ଼ି ଶୀଘ୍ର ଶୀଘ୍ର ଆଗେଇ ଆସିଛନ୍ତି । ନିଜର ପରିଚୟ ଢେରିରେ ହେଉ ପଛେ, ପାଇଛନ୍ତି । ଅନ୍ୟାନ୍ୟ ନୀରବ-ଦ୍ରଷ୍ଟାଙ୍କୁ ତାଙ୍କର ସ୍ଥିତି ଓ ପରିଚୟର ଆଭାସ ଦେଇ ମନରେ ଛପିଲା ଆନନ୍ଦର ସନ୍ତୁଷ୍ଟି ଲଭୁଛନ୍ତି ।

କାହିଁକି ସେ କାହାକୁ ବଶ କରି ନ ପାରିବେ ? ସଯତ୍ନରେ ବନ୍ଧା ହୋଇଛି କେଶ । ମୁଣ୍ଡରେ ଆଧୁନିକ ବାଙ୍କୁଲା-ଦେଉଳ । ବସନହୀନ । ଦେହର

ଯେତିକ ଆବରଣ କଲେ ଅଶ୍ଳୀଳତା ଦୋଷ କଟିଯିବ, ସେତିକ ଅଛି । ସାୟା ଓ ବ୍ଲାଉଜ ଉପରେ ଆବୃତ ଘୁପିଘୁପିକା ପାତଳ ଲୁଗା ବଜୁଳି-ପଙ୍ଖାର ବତାସରେ ଅବିରତ ହଲଚଲ ହେଉଛି । ଟାଲ୍‌କମ୍ ଗୁଣ୍ଡାର ପରଶ ଲାଗିଛି ମୁହଁରେ, ଦିଶୁଥିବା ଦେହାଂଶରେ । ଆଖିର କଜଳ ଓ କପାଳର ଗୋଲା କୁଙ୍କୁମକୁ ସେ ଅସମ୍ମାନ କରିନାହାନ୍ତି ।

ଯେଉଁ ବେଶରେ ପୁରୁଣା ପରିଚିତ ଦେହଟାର ନବତ୍ୱ ଆଶ୍ଳେଷ ପାଇଁ ସ୍ୱାମୀଙ୍କ ମନରେ ନୂତନ ପ୍ରେରଣା ସେ ଆଣିବାକୁ ସମର୍ଥ ହୋଇ-ପାରିଛନ୍ତି, ସେ ବେଶ ଅପରିଚିତକୁ ବଶ କରିବାରେ ଅସମର୍ଥ ହେବ ନାହିଁ । କେମିତ ମୁଣ୍ଡ ବଙ୍କା କରି ନାଟୁଆଣୀର ଚାହାଣି ଆଖିକୁ ଆଣିବାକୁ ହେବ, ପାତଳ ରଙ୍ଗିଲ ଓଠକୁ ଅଳପ ଗୋଜ କରି, ଆକୁଞ୍ଚନ ଓ ପ୍ରସାରଣ କରି, ଲମ୍ବାଇ ଲମ୍ବାଇ ଗେହ୍ଲେଆ କଥା ଉଚ୍ଚମାତ ସ୍ୱରରେ କହିବାକୁ ହେବ, ଦେଖା-ଶିଖା-ଓଡ଼ିଆ-ଝିଅ ଇନ୍ଦିରା ସେତକ ଆୟତ୍ତ କରିଆସୁଛନ୍ତି । ସେ କଣ କେଉଁ ଚୁଲିପଶା, ଘୁଅମୁହାଁ, କାଚ-ଆଖିଆ, ଫାଉଁଫାଉଁଆଁ, ଦରବୁଢ଼ା ହାକମଟାକୁ ବଶ କରିପାରିବେ ନାହିଁ ?

ଛାର କଥାଟା !

ଇନ୍ଦିରା ଖଟବାଡ଼ାରୁ ହାତ ଉଠାଇଲେ । ତ୍ରିଭଙ୍ଗିମ ଠାଣିରେ ଟିକିଏ ଭଙ୍ଗମୋଡ଼ ହୋଇ, ନୂଆ ଆଲମାରି କଡ଼ରେ ପଡ଼ିଥିବା ଗୋଟିଏ ନେଲନ ବୁଣା ହାତ ନଥିବା ନୂଆ ଚଉକି ଉପରେ ବସିଲେ । କହିଲେ, କିଏ ବା ସେ ଅଲକ୍ଷଣା ହାକମ ? କେଉଁ ସାହସରେ ଅଭେକାଙ୍କ ପରି ମୁଁ ତା ଆଗକୁ ଯିବ ? ଚିହ୍ନା ନାହିଁ, ଜଣା ନାହିଁ ।

ଆନନ୍ଦ କହିଲେ, ଚିହ୍ନାଜଣା କରିବା ସେତେ କଷ୍ଟ କାମ ନୁହେଁ । ତମେ ଯଦି ତାଙ୍କର ଶାଳୀ ହୋଇପାରିବ, କ'ଣ କହୁଛି କି ଧର୍ମର ଶାଳୀ—

ଇନ୍ଦିରା ରାଗ ଫଣଫଣ ହୋଇ କହିଲେ, ମୋର କି ଗରଜ ବଳେଇ-ପଡ଼ିଛି ଯେ, ମୁଁ ଦୁନିଆର ସବୁ ଧର୍ମାବତାରଙ୍କର ଧର୍ମର ଶାଳୀ ହେବାକୁ ହମହମ ହୋଇ ଧାଇଁବ ? ମତେ ଆଉ ଅଜଣା ନାହିଁ ଯେ, ସବୁ ଧର୍ମାତ୍ମାଙ୍କ

ଭିତରେ ବାଘସାପ ଲୁଚି ରହିଥାନ୍ତି । ସେମାନେ ଅଜଗର ସାପଙ୍କ ସଙ୍ଗେ ସମାନ । ତମମାନଙ୍କର ବେପାର ବଣିଜ ଖବର ତମେମାନେ ବୁଝ ମ ସମୁଦ୍ର ! ଲୋଡ଼ା ହେଲେ ସେଇ ବଡ଼ବଡ଼ଆଙ୍କର ଘରଣୀମାନଙ୍କୁ ଧର୍ମର ଭଉଣୀ କର ।

ଇନ୍ଦ୍ର ଘରର କବାଟ ଖୋଲି ପଦାକୁ ଆସିଲେ । ପାଖଘର ଭିତରୁ ବସନ୍ତମର ପାଟି ଶୁଭୁଛି । ସେ ଅନୁପା ଉପରେ କାହିଁକି ବିରକ୍ତ ହେଉଛି । ବୋଧହୁଏ ଅନୁପା ଢୁଳାଉଛି । ପଚାରିଲେ ପ୍ରଶ୍ନର ଉତ୍ତର ଦେଇପାରୁନାହିଁ ।

ଇନ୍ଦ୍ରଙ୍କୁ ଦେଖି ବସନ୍ତମ ଅନୁପାର କାନ ଛାଡ଼ି ଦେଲା । ଅନୁପା ମୁହଁ ଟେକି ଚାହିଁଲା । ତାର ଦୁଇ ଆଖିରେ ଲୁହ ଢଳଢଳ ହେଉଛି । ନିରୁପା ଶୋଇପଡ଼ିଲାଣି । ଠିକ ଝିଅ ସୁରୂପା ବସନ୍ତମର କୋଳରେ । ସେ ବି ଶୋଇଛି । ବସନ୍ତମ ଜଙ୍ଘ ହଲଉଛି । ତା ଆଗରେ ବହି ଖଣ୍ଡିଏ ଖୋଲା ହୋଇ ରହିଛି । ଟିକିଏ ଛାଡ଼ି ଚେକା ପକାଇ ଫୁକପିନ୍ଧା ଅନୁପା ବସିଛି ।

ସାନଝିଅକୁ ବସନ୍ତମର କୋଳରୁ ଟେକି ଇନ୍ଦ୍ର ଛାତିରେ ଧରିଲେ । କହିଲେ, ମୋ ଅନୁପା ତ ଗଧ ନୁହେ, ତାକୁ ପାଠ ଆସୁନାହିଁ କାହିଁକି ?

ସେଇଟା ବେଶ୍ ବୁଦ୍ଧିଆ ପିଲା ଯେ, ପାଠ ନ ପଢ଼ିଲେ ମୁଖସ୍ଥ ନ କଲେ ସେ ଜାଣିବ କପରି ? ମନେ ରଖିବ କପରି ? ମୋଟେ ପଢ଼ୁନାହିଁ । ପଢ଼ିବାକୁ କହିଲେ, ବହିକୁ ଅନାଇଁ ଖାଲି ପାଟି ପାକୁପାକୁ କରୁଛି । ମୋଟେ ଭୁଣ୍ଡି ଖୋଲୁନାହିଁ । ଆଖିରେ ଆଖିଏ ନଦ ପୂରାଇ ବସିଛି ।

ସତେ ସେ ମାଡ଼ ମୂଲଉଛି ବିକ ! କିନ୍ତୁ ସେ ଗୋଟାଏ ଝିଅ । ତାର କାନ ଓଟାରିଲେ କାନଟା ଯଦି ବିଲାତି-କୁକୁରର କାନ ପରି ଲମ୍ବ ହୋଇଯାଏ, ଲୋକେ ବାଛୁବେ । ମୋ ଅନୁପା ସୁନାଝିଅ । ତାକୁ ଗେହ୍ଲେଇ କହିଲେ, ଟିକିଏ ଆହ୍ଲାଦ କଲେ, ସେ ଟାଉଟାଉ କରି ସବୁ ପଢ଼ିଦେବ ।

ଅନୁପାର ଆଖିରୁ ଲୁହ ଝରିଆସିଲା । ସେ ମୁହଁ ପୋତି କାନ୍ଦିବାକୁ ଲାଗିଲା ।

ବସନ୍ତ ତାର ହାତ ଧରି ପାଖକୁ ଟାଣିନେଲା । ତାର ମୁହଁକୁ ଦୁଇ ହାତରେ ଉଠାଇ ଟେକ ଧରିଲା । କହିଲା, ତୋ କାନରେ ଆଙ୍ଗୁଠି ଭୂଷିଣୁ ତୋତେ ଏତେ ବାଧିଲା, ଅନୁପା ? ତୁ ସୁନାପିଲା, ତତେ ମୁଁ ଗେଲ କରିବି, ତୁ ମନଦେଇ ପାଟିକରି ପଢ଼ିବୁ ତ ?

ବସନ୍ତ ତା କପାଳ ଉପରେ ଚୋକଟିଏ ଦେଲା । ଲୁଗାକାନିରେ ତାର ଆଖି ଓ ମୁହଁ ପୋଛିଲା । କହିଲା, ହେଉ ହେଲା । ମାଈଁ ଯାହା କହିଲେ ସେଇଆ କରିବ । ପାଠ ନ ପଢ଼ି ଘୁମାଇଲେ, ଗେଲଟିଏ କରିବି । ତଥାପି ଯଦି ତୁ ପାଟିରେ ବେଙ୍ଗ ପୂରାଇ ବସୁ, ତତେ ଚଉକି ବସାଇବି । ନୋହିଲେ ଏକଗୋଡ଼ିଆ ଠିଆ କରାଇବି ।

ଅନୁପା ବସନ୍ତକୁ ଦୁଇ ହାତରେ ଠେଲିଦେଇ ପଛକୁ ଘୁଞ୍ଚିଗଲା । ମୌନ ହୋଇ ଖୋଲା ବହିକୁ ହାତରେ ଟେକ ଖାଲି ଗୁହିଁରହିଲା ।

ଇନ୍ଦିରା କହିଲେ, ସେ ରୁଷିଲାଣି, ବକ ! ରାଗରେ ଫିଁ ଫିଁ ହେଉଛି । ପଢ଼ିଲେ ପଢ଼ୁ, ନ ପଢ଼ିଲେ କାଲି ସ୍କୁଲରେ ଗାଳି ଖାଇବ ।

ଅନୁପା ଗୁଣୁଗୁଣୁ ହୋଇ ପଢ଼ିବାକୁ ଲାଗିଲା ।

ଇନ୍ଦିରା ସୁରୂପାକୁ ନିରୂପା ପାଖରେ ମସିଣା ଉପରେ ଶୁଆଇଦେଲେ । ବସନ୍ତକୁ କହିଲେ, ହାଡ଼ବନ୍ଧୁ ବାବୁ ବୋଧହୁଏ ଆଜ ରାତିରେ ଏଇଠି ଭୋଜନ କରିବେ । ତମର ନୂଆ ସାଇକେଲ ଚଢ଼ି ଟିକିଏ ବଜାରକୁ ଯାଅ । କିଛି ମାଛ କଣିଆଣିବ । ଦି'ପଖା ଚୁଲି, ଭାତ ଡାଲି ଉତାରିଦେଇଛି । ମାଛ ଝୋଳ, ଗୋଟାଏ ସନ୍ତୁଳା ଓ ବଳନ୍ତି ବାଇଗଣ ଖଟା କରିବାକୁ ବେଶୀ ବେଳ ଲାଗିବ ନାହିଁ । ହାଡ଼ବନ୍ଧୁବାବୁ ବନ୍ଧୁଲୋକ ।

ଯାଉଛି, ମାଈଁ, ତମେ ଯଦି ଟିକିଏ ବତାଇଦେବ, ମୁଁ ସବୁ କରି-ଦେଇପାରିବି । ରୋଷକାମକୁ ଯେତେ ସହଜ ବୋଲି ଲୋକେ ମଣନ୍ତି, ମୁଁ ଜାଣେ, ସେଇଟା ସେତେ ସହଜ ନୁହେଁ । ହଳଦୀପାଣିରେ ବାଇଗଣ ଦି' ଖଣ୍ଡି ତମେ ସିଝାଇଦେଲେ ବି ସେ ସ୍ୱଆଦ ଲାଗେ ।

ଇନ୍ଦର ମନେ ମନେ ଖୁସି ହେଲେ । କେଡ଼େ ସରଳ ଓ ହୃଷ୍ଟ ଏହି ଭଣଜା ପିଲାଟି ! ଓଜର ଆପତ୍ତି ଟିକିଏ ନାହିଁ । ମାନାଭିମାନ ଜାଣେ ନାହିଁ । ସବୁବେଳେ ଖୁସି । ସବୁଥିରେ ଆନନ୍ଦ । ପରିଶ୍ରମକୁ ପଛାଏ ନାହିଁ । ସ୍ନେହର ଅବତାର ।

ତଥାପି, ଆତ୍ମବଡ଼ିମା ମନରେ ଅଛି । ନିଜ ପାଇଁ, ନିଜର ଅଭାବ ପାଇଁ, ନିତାନ୍ତ ବାଧ୍ୟ ନ ହେଲେ ସେ କେବେ ମୁହଁ ଖୋଲି ମାଗିବ ନାହିଁ । ଯାଚିକରି ଦେଲେ ସେ ହସି ହସି ଆନନ୍ଦରେ ଗ୍ରହଣ କରିବ । ଧୋତି, ଗେଞ୍ଜି ଓ କାମିଜ ଛଡ଼ା ସେ ଆଉ କିଛି ପିନ୍ଧେ ନାହିଁ । ଜୋତା ହଳେ ତ ନାହିଁ । କିଣିବାକୁ ସେ ମୋଟେ ଆଗ୍ରହୀ ନୁହେଁ । ହଳେ ଶସ୍ତା ଚପଲରେ ସେ ତାର କାମ ଚଳାଏ ।

ସମୟ ବଞ୍ଚାଇବାକୁ ତାର ସାଇକଲ ଖଣ୍ଡେ ଲୋଡ଼ା ହେଲା । ଗରିବ ବାପ, ପେଟ ପାଇଁ ଯିଏ ବିଦେଶରେ ଖଟୁଛନ୍ତି, ଯାହା ଯେବେ ସୁବିଧା ହେଉଛି ପଠାଉଛନ୍ତି । ତାଙ୍କୁ ଚିନ୍ତିତ ଓ ଦୁଃଖିତ ହେବାକୁ ସେ ଲେଖିଲା ନାହିଁ ।

ମାମୁଁ ଆନନ୍ଦଚନ୍ଦ୍ର ଦେଢ଼ଶ ଟଙ୍କାର ସାଇକଲ ଖଣ୍ଡି ତାକୁ କିଣାଇ-ଦେଇଛନ୍ତି । ସେଥିପାଇଁ ବିକ୍ରମ କୃତଜ୍ଞ । କଲେଜକୁ ଚାଲିଚାଲି ଯିବା-ଆସିବାରେ ବହୁତ ସମୟ ନଷ୍ଟ ହେଉଥିଲା । ସମୟ ବଞ୍ଚିଲା ।

ନୂଆ ଘରର କାମ ଧୀରେ ଧୀରେ ଆଗଉଛି । ତିନଦିନ ମୂଲିଆ ମିସ୍ତ୍ରୀ ଲାଗିଲେ ପାଞ୍ଚଦିନ କାମ ବନ୍ଦ ରହୁଛି । ଧନର ଅଭାବ । ଯେତିକି ଚୂନାକୁ ସେତିକି ପିଠା । କାମ ଚାଲିଥିଲାବେଳେ କଲେଜ ଛୁଟି ଦିନେ ତ ସହଜେ, ଅନ୍ୟଦିନମାନଙ୍କରେ ଖିଆପିଆ ଭୁଲି, ପାଠକୁ ପଛରେ ପକାଇ ବିକ୍ରମ ଯାଇ ସେଇଠି ।

ଅଳସ ହୋଇ ସେ ବସେ ନାହିଁ । ମୂଲିଆଙ୍କ ପାଖରେ ମୂଲିଆ । ରାଜମିସ୍ତ୍ରୀଙ୍କର ସହାୟକ । ତା ଆଖି ଆଗରୁ ବାଲି ଆଞ୍ଜୁଳେ, ସିମେଣ୍ଟ

ମୁଠାଏ, ଭଙ୍ଗା ଇଟାରୁ ଖଣ୍ଡିଏ କେହି ନେଇପାରିବ ନାହିଁ । ମୂଳ ମଜୁରିର ଠିକ୍ ହିସାବ ସେ ରଖେ । ପଇସାପଇ ଦିଅନ୍ତି ସିନା ଆନନ୍ଦ, ହିକମର କଥାରେ ତାଙ୍କର ବିଶ୍ୱାସ ।

କେତେ ଥର ଇନ୍ଦିରା ଘର ଦେଖିବାକୁ ଯାଇଛନ୍ତି । ହିକମର କାମ ଓ ନିଷ୍ଠା ଦେଖିଛନ୍ତି ।

ଦିନେ ଦିନେ ସାଇକେଲ୍ ଆଗରେ ବସାଇ ସେ ଅନୁପାକୁ ନୂଆଘରର କାମ ଦେଖାଇବାକୁ ସଙ୍ଗରେ ନେଇଯାଏ । କାନ୍ଧ ବୋବାଇ ଅଜଟ ହେଲେ ନିରୁପାକୁ ବି ପଛରେ ବସାଇ ସେ ନିଏ ।

ଷୋଳ ପୂରି ସତର ଚାଲିଛି ସେ ଟୋକାକୁ । ବର୍ଷ ଚାରିଟି ଏ ଘରେ ତାର ରହଣି । ସ୍ୱାସ୍ଥ୍ୟ ବଦଳିଛି । ରୂପ ବଦଳିଛି । ଢଙ୍ଗ ବଦଳିଛି । ଧଡ଼ିଆ ଦେହରେ ମାଂସ ଲାଗିଛି । ସ୍ୱାସ୍ଥ୍ୟ ହୋଇଛି ଭରପୂର । ଚଉଡ଼ା କପାଳ ଆହୁରି ଚଉଡ଼ା ଚକଚକ ଦିଶୁଛି । ମୁଣ୍ଡର ରୁଖଣ୍ଡି କେଶ କେବେ ହୁଏ ଫୁରଫୁର, ସେ ତେଲ ଲଗାଇବାକୁ ଭୁଲିଯାଇଥାଏ; ପୁଣି କେବେ ଦିଶେ ଚକ୍ଚକ୍ । ଇନ୍ଦିରାଙ୍କ ଦୃଷ୍ଟିରେ ପଡ଼ିଲେ, ସେ ନିଜେ ତାର ହାତ ଧରି ବସାଇ-ଦିଅନ୍ତି । ମୁଣ୍ଡରେ ବାସନା ଗିଣିତେଲ କିଛି ଢାଳିଦିଅନ୍ତି । ଘଞ୍ଚ କେଶ ଭିତରେ ଆଙ୍ଗୁଠି ଚଳାନ୍ତି ।

କହନ୍ତି, ତୁ, ବାଳଗୁଡ଼ା ଜଟାଳିଆ ହେଲାଣି । କଲେଜରେ ପଢ଼ିଲ, ତମର ବୁଦ୍ଧିସୁଦ୍ଧି ହେଲ, ମୁଣ୍ଡକୁ ଚାହିଁଲେ ଯିଏ ଦେଖିବ ସେ ମୋତେ ନିନ୍ଦା କରିବ । କହିବ, ମାଈଁଟା ମୁଣ୍ଡକୁ ଟୋପାଏ ମାଲିସ ଦେଉନାହିଁ !

କାହାର ଏଡ଼େ ସାହସ ହେବ, ମାଈଁ ? ମୋ ହାତରୁ ଦିଓଟି ମୁଥ ରୁଖିଲେ ସେ ବଳେ ବୁଝିବ, ମୋ ମାଈଁ ଗଛର ଅଗରେ ପାଣି ନ ଢାଳି ତା ମୂଳରେ ଢାଳନ୍ତି ।

ହିକମର ପୋଟଳ-ଫାଳିଆ ଆଖି ଦିଓଟିରେ ଯେଉଁ କଅଁଳ ଆଲୁଅ ଝଟକେଉଠେ, ଲମ୍ବ ନାକର ପାତଳ ପୁଡ଼ା ଦିଓଟି ଯେମିତି ଅଳପ ଫୁଲିଫୁଲି ଉଠେ, ଓଠରେ ଯେମିତି ସ୍ମିତର ପରଖ ଲାଗେ, ଚାହିଁଦେଲେ ଇନ୍ଦିରାଙ୍କର

ଅନ୍ତରତଳେ ପୁଲକର ଚନ୍‌ଚନ୍‌ ଶିହରଣ ଜାଗେ । ଚରୁଣୀରେ ସେ ବଙ୍କମର ତେଲଆ କେଶକୁ ସାଉଁଳିଦିଅନ୍ତି । ମଝିରୁ ଦି'ଫାଳ କରି ଦୀର୍ଘ-ଶ୍ୱାସଟିଏ ଛାଡ଼ନ୍ତି ।

ପୁଅ ତ ନୁହେଁ, ଭଣଜାଟିଏ । ଡେଣାରେ ପକ୍ଷୀ ଉଠିଲେ, ନିଜ ମୁଣ୍ଡକୁ ହାତ ପାଇଲେ କିଏ କାହାର ? ଘୁମୁଘୁମ୍ ଘୁମ୍‌ରେ ପାଣି, ଘୁମିଗଲେ ଆଉ ନ ହୁଏ ଧରି । ମାସ କେଇଟା ତଳେ ତାଙ୍କ ପରୀକ୍ଷାର ଫଳ ବାହାରିଥିଲା । ପ୍ରବେଶିକା ପରୀକ୍ଷା । ବଙ୍କମ ପ୍ରଥମ ଶ୍ରେଣୀରେ ପାସ୍ କଲା । ବାଉରିଆ ପାସ୍ କଲା ଦ୍ୱିତୀୟ ଶ୍ରେଣୀରେ । ବାଉରିଆର ଆନନ୍ଦ କହିଲେ ନ ସରେ । ହାଡ଼ିବନ୍ଧୁ ସେତେବେଳେ ଇନ୍ଦିରାଙ୍କର ଧର୍ମଭାଇ ଥିଲେ । ତାଙ୍କ ଘରେ ଭୋଜି କରାଇଥିଲେ । ବଙ୍କମ ବି ଯାଇଥିଲା ।

ବଙ୍କମର ମନରେ ସୁଖ ନ ଥିଲା । ଖବରକାଗଜକୁ ଏକ ଆଖିରେ ଚାହିଁ ସେ ଆଖିରୁ ଲୁହ ଗଡ଼ାଇଥିଲା । ଅନୁପା ଇନ୍ଦିରାଙ୍କୁ ଜଣାଇଲା । ଇନ୍ଦିରା ତାକୁ ପଚାରିଲେ । ସେ ହସିଲା । ଉତ୍ତର ଦେଲା, ମାଇଁ ମ, ଲୋକେ କଣ କେବଳ ଦୁଃଖରେ କାନ୍ଦନ୍ତି, ଆନନ୍ଦରେ କାନ୍ଦନ୍ତି ନାହିଁ ? ଯାହା ଅସମ୍ଭବ, ଯାହା ଆକାଶ କୁସୁମ, ସେ ଯଦି ହାତକୁ ଆସେ, ଆନନ୍ଦର ସୀମା ଟପି-ଯାଏ । ଆଖିରୁ ଲୁହ ଝରେ । ତମେ ଯଦି ଏ ଘରେ ତମ ପାଖରେ ଆଶ୍ରା ଦେଇ ନ ଥାନ୍ତ, ଯାହା ଘଟିଲା ତାହା ସମ୍ଭବ ହୋଇପାରିଥାନ୍ତା କି ମାଇଁ ?

ବଙ୍କମର କୃତଜ୍ଞତା ଯେ ଇନ୍ଦିରାଙ୍କର ପ୍ରାପ୍ୟ, ଏଥିରେ ସନ୍ଦେହ କରିବାର କିଛି ନାହିଁ । ଇନ୍ଦିରା ବନର୍ଜୀ ବଙ୍କମର କୃତଜ୍ଞତା ଗ୍ରହଣ କରି କହିଥିଲେ, ତୁ ଭଲ ପିଲା ବୋଲି ସିନା ସ୍ୱୀକାର କଲୁ ରେ ବଙ୍କମ ! ତୋର ବାପ-ମା କ'ଣ ସ୍ୱୀକାର କରିବେ ? ଆରେ ପୁଅ, ଏ ସଂସାରର ଲୋକେ ଅକୃତଜ୍ଞ । କାମ ସରିଗଲେ ମୁହଁମୋଡ଼ି ପିଠି ଦେଖାଇ ଯିଏ ଯେଣେ ଛୁ । ପଛରୁ ଡାକିଲେ, କାନରେ ନ ବାଜିବା ଢଙ୍ଗ ଦେଖାଇ ଅଦୃଶ୍ୟ ହୁଅନ୍ତି ।

ଦିନ କେଇଟି ପରେ ବୀରକେଶରୀ କୃତକୃତ୍ୟ ହୋଇ ଜୟପୁର ମୁକାମରୁ ଇନ୍ଦିରାଙ୍କୁ ଯେଉଁ ଚିଠିଟି ଲେଖିଥିଲେ, ତାକୁ ପଢ଼ି ଆନନ୍ଦଚନ୍ଦ୍ର ହସିହସି ନୟାନ୍ତ ହେଲେ। ନିଜେ ଇନ୍ଦିରା ଲାଜରେ ସଢ଼ିଗଲେ। ଯେତେ ଠାକୁରାଣୀଙ୍କର ରୂପ, ଗୁଣ, ବିଦ୍ୟା ଓ ବୁଦ୍ଧି ଶାସ୍ତ୍ର-ପୁରାଣରେ ଲେଖା ହୋଇଛି, ସବୁ ଆଣି ବୀରକେଶରୀ ଇନ୍ଦିରାଙ୍କଠାରେ ଠୁଳ କରିଥିଲେ। ତହୁଁ ସେ ଇନ୍ଦିରା ଅଧିକ ବୋଲି ପ୍ରକାଶ କରିଥିଲେ। ଘରଣୀଙ୍କ ଉପ୍ରୋଧରେ କିଏ ସାନ ଶଳାକୁ ପ୍ରଣାମ କରେ; ବୀରକେଶରୀ ଆହୁରି ଅଧିକ ଭକ୍ତି ନିବେଦନ କରିବାକୁ ସାନ ଶଳାଙ୍କର ପତ୍ନୀଙ୍କୁ ଶତଜୁହାର ଜଣାଇଥିଲେ। ବିକ୍ରମକୁ ତାଙ୍କର ପଦତଳେ ସମର୍ପି ଦେଇଥିଲେ। ବୁଢ଼ାବୟସରେ ଜନ୍ମି-ଥିବା ତାଙ୍କର ଏକମାତ୍ର ସନ୍ତାନର ଭବିଷ୍ୟତ ପାଇଁ ସେ ସେହି ପତ୍ର-ଖଣ୍ଡିକରେ ବ୍ୟାକୁଳତା ପ୍ରକାଶ କରିଥିଲେ।

ନୁଖୁରା ଫୁରଫୁର କେଶକୁ ତେଲିଆ ଚିକ୍‌ଚିକ୍ କରି ଇନ୍ଦିରା ବିକ୍ରମର ଲାଜୁଆ ମୁହଁକୁ କ୍ଷଣେ ଚାହିଁଲେ। ଏ ଭିତରେ କେଉଁଦିନୁ ପିଲାଟାର ନିଶ-ଦାଢ଼ି ଗଜୁରି, ବେଶ୍ ଲମ୍ବା ହୋଇସାରିଲାଣି। ଏପାଖ କାନ ଉପରୁ ଗାଲକଡ଼ ଓ ଥୋଡ଼ ଆଚ୍ଛାଦି ଖାଉରିଆ-କଳା କେଶ ଆର କାନର ଉପରଯାଏ ଲମ୍ବିଛି। ସେ କେଶ ପୁରିକା ଗାଲର ମଝିଯାଏ ସରୁ ହୋଇ ମାଡ଼ିଯାଇଛି। ନାକ-ତଳର କହରିଆ ନିଶ ସଙ୍ଗେ ମିଶିଛି।

ସବୁଦିନେ ସେ ତାକୁ ଦେଖୁଛନ୍ତି, କିନ୍ତୁ ସ୍ୱାସ୍ଥ୍ୟ ଭରପୂର ଉଜ୍ଜ୍ୱଳ ଶ୍ୟାମଳ ମୁହଁରେ ବାରି ପାରି ନ ଥିଲେ। ବିକ୍ରମ ସେଗୁଡ଼ାକ କାଟୁନାହିଁ କାହିଁକି ? କେଉଁ ମାନସିକ କରିଛି ଯେ ତେଣିକି ତାର ନିଘା ନାହିଁ ? ସେ ତାର ମାମୁଙ୍କ ଛିଟିକା ଆଣିଛି। ସେ ତାଙ୍କରି ସମାନ ହେଲାଣି !

ଅନୁପା ପାଖରେ ଠିଆ ହୋଇ ଚାହିଁରହିଛି। ଆଠ ଚାଲିଥିବା ଝିଅ ନିରୁପା ବିକ୍ରମର ପିଠିରେ କେବେ ଲଦି ହେଉଛି, କେବେ ସେଠାରୁ ଆସି ଇନ୍ଦିରାଙ୍କ କୋଳରେ ଖୁଜୁବୁଜୁ ହେଉଥିବା ତିନିବର୍ଷ ପୂରିବାକୁ ଯାଉଥିବା

ଗେଧଙ୍କ ସୁରୂପାର ହାତ ଧରି ଟାଣୁଛି । କାଳିକା ବାହୁତ ବଙ୍କମ । ସେଠରୁ ଜନମି ଦୁଷ୍ଟ, ଅବାଧ, ଅମାନିଆପଣରେ ବିରକ୍ତ କରି ଗାଳିମାଡ଼ ସହିଲା ପୁଅ ସେ ନୁହେଁ । ଡରିଲା ଗୃହାଣିରେ ଗୃହିଁ ବୋଲହାକ କରିବାକୁ ସଦା ତତ୍ପର । ଜଗିରଖି କଥା କହିବାକୁ ସବୁବେଳେ ସତର୍କ ଭଣଜାଟିଏ ସେ । ଲାଜେଇ ଯାଇଛି । କଥା କହୁନାହିଁ । ଖୁଜୁବୁଜୁ ହେଉନାହିଁ । ସୁଧାର ପିଲାଟି ପରି ସେ ନୁଖୁରା ମୁଣ୍ଡ ଦେଖାଇ ଦେଇଛି ।

ଇନ୍ଦ୍ରଙ୍କ ମୁହଁରେ କେଉଁ ଅଜଣା ଅବୋଧ ସଂକୋଚର ଛାଇ ଘୋଟିଯାଇଥିଲା । ସେ ଉଠି ଠିଆ ହୋଇଥିଲେ । ସୁରୂପାକୁ ଛାତି ଉପରକୁ ଟେକି, ନିଜର ସଂକୋଚକୁ ନିଜେ ଦୂରେଇ ଦେବାକୁ କହିଲେ, ଦେଖ୍ ଲେ ଅନୁ, ତୋ ବଡ଼ଭାଇର ମୁହଁ କେଡ଼େ ଶୋଭିକାର ଦିଶିଲା ! ସେ ଯଦି ପୁଣି ମୁଣ୍ଡ ଫୁରୁଫୁରୁ କରେ ତା ମୁଣ୍ଡରେ ତେଲ ଅଜାଡ଼ିବା କାମ ତୋର ।

ବାରବର୍ଷର ଝିଅ ଅନୁପା, ତାଳି ମାରି ଖୁସି ହେଲା । ଦେହ ଦୋହଲାଇ ନାଟୁଆ ଭଙ୍ଗୀରେ କହିଲା, ବଡ଼ଭାଇର ମୁଣ୍ଡ ସିନା କୁଣ୍ଡାଇ-ଦେବି, ସେ ଯଦି ମତେ ଗେହ୍ଲା କରିବାକୁ ମୁହଁ ବଢ଼ାଇବେ, ନିଶ୍ଚେ ନିଶ୍ଚେ ତାଙ୍କର ଲମ୍ବ ନାକକୁ ନଖରେ ବିଦାରିବି ।

କାହିଁକି ଲୋ ଅନୁ ?

ତାଙ୍କର ନିଶଦାଢ଼ି ମୋ ମୁହଁକୁ ସୁଲ୍ ସୁଲ୍ ଲାଗିବ ।

ନିରୁପା କହିଲା, ହଁ ବୋଉ, ସେ ନିଶ ଦାଢ଼ି ମୋ ମୁହଁରେ ଘଷିଲେ କୁତୁକୁତୁ ଲାଗେ ।

ଇନ୍ଦ୍ର କହିଲେ, ଶୁଣୁଛ ବଙ୍କମ ! ତମେ ସେଗୁଡ଼ା କାଟିପକାଅ । ତମ ମୁହଁ ବାଉଁଶିଆ ମୁହଁ ପରି ସୁନ୍ଦର ଦିଶିବ । ପିଲାଳିଆ ଦିଶିବ ।

ବଙ୍କମ କେଉଁ ମାନସିକ କରିଛନ୍ତି ପରା ! ମାନସିକ-ବ୍ରତ କେହି କାହା ଆଗରେ ପ୍ରକାଶ କରେ ନାହିଁ । ପ୍ରକାଶ କଲେ ଫଳ ଫଳେ ନାହିଁ । ସେ ନିଶଦାଢ଼ି କାଟିଲେ ନାହିଁ । ମୁଣ୍ଡର କେଶକୁ ନୁଖୁରା ରଖିଲେ ନାହିଁ ।

ନୂଆ ସାଇକେଲ୍ ଚଢ଼ି ବଙ୍କିମ ସେହି ରାତିରେ ମାଛ ପାଇଁ ବଜାରକୁ ଚାଲିଗଲେ ।

ବେପାର ସମ୍ବନ୍ଧରେ ମସୁଧା କରି ରାତିଅଧରେ ହାଡ଼ବନ୍ଧୁ ରିକ୍ସା ଚଢ଼ି ଘରକୁ ଫେରିଲେ ।

**ସେହି ରାତିରେ ।**

ଅଭିମାନିନୀ ଇନ୍ଦିରାଙ୍କୁ ଆନନ୍ଦଚନ୍ଦ୍ର ତାଙ୍କ ବନ୍ଧୁଙ୍କର ଅନୁରୋଧର ଉଦ୍ଦେଶ୍ୟ ଖୋଲିକରି ବୁଝାଇଦେଲେ । କହିଲେ, ସେମାନେ ତ ଜୁଆ ଖେଳନ୍ତି । ହାର୍‌ଜିତ୍ ଲାଗିରହିଛି । ମଣିଷର ଜୀବନ ଜୁଆଖେଳ ପରି । ଭାଗ୍ୟରେ ଥିଲେ ବନସୀ-କଣ୍ଟାରେ ବଡ଼ ରୋହି, ଭାକୁଡ଼ ଲାଗିଯିବ । ନୋହିଲେ ନାହିଁ । ତମେ ଅଭେକାଙ୍କ ପରି ଯିବ ନାହିଁ । ମୁଁ ଜବାବ ଦେଉଛି, ଯାହା ତମେ ଚାହୁଁଛ, ଆମ ଦୁହିଁଙ୍କର କାରବାର ଧନରୁ ଆମେ ସେ ଖର୍ଚ୍ଚ ତୁଲାଇବୁଁ । ହାଡ଼ବନ୍ଧୁବାବୁ ରାଜି ହୋଇଛନ୍ତି । କିନ୍ତୁ ହଜାରେ ଟଙ୍କା ଡେଇଁବ ନାହିଁ ।

ଇନ୍ଦିରା କହିଲେ, ତାଙ୍କର ସ୍ତ୍ରୀ ଯୂଥିକାଙ୍କୁ ଏ କାମରେ ଲଗା[...] ଦେଉନ ? ମୁଁ ଆଉ ପାରିବ ନାହିଁ । କେତେ ଘରର ଘରଣୀମାନଙ୍କୁ [...] ମାଉସୀ, ଭଉଣୀ, ପିଉସୀ କରି ତମମାନଙ୍କ କାମ ପାଇଁ ଭେଟି ଦେଉଥି[...] ଗୋଟିଏ ସମ୍ବନ୍ଧ ପାତିଲେ, ଥଟ୍ଟାନକଲରେ ଚାରିପଦ ରସୁଆଳ କଥା[...] କହିବାକୁ ସମ୍ବନ୍ଧୀମାନେ ପାଖେଇ ଆସନ୍ତି । ବାଗ ପାଇଲେ ହାତଟାକୁ କାନଟାକୁ ଧରିବାକୁ ହାତ ବଢ଼ାନ୍ତି ।

ମୁଁ ଜାଣେ ଇନ୍ଦିରା ! ଲୋକଙ୍କର ମାନମହତକୁ ସମ୍ମାନ ନାହିଁ । ସବୁଗୁଡ଼ାକ ଅଭଦ୍ର । ସବୁଗୁଡ଼ାକ ଲୋଭୀ ।

ଜାଣିଛ ଟି ?

ଆମେ ସବୁ ଜାଣିଛୁଁ । କେତେ କେଉଁଠି କଅଣ ସବୁ ଘଟିଯାଉଛି ସେ ଖବର ମଧ୍ୟ ରଖିଛୁଁ । ଖଣ୍ଡାଧାର ଉପରେ ତମେ ଚାଲିପାରି, ମୁଁ

ଜାଣେ । ଜଳନ୍ତା ନିଆଁ ଦୂରରୁ ବେଶ୍ ସୁନ୍ଦର ଦିଶେ । ସେ ସୁନ୍ଦରପଣରେ ତୃପ୍ତିର ଅବସାଦ ନାହିଁ । ଯେତେ ଦେଖୁଥିଲେ ସେ ନୂଆ ଦିଶୁଥାଇ । ତମେ ସେଇଆ । ସେଇ ନିଆଁ ଯେ !

କେତେ ଠେକାଠେକ କରୁଛ ମ, କେବଠାରୁ କବି ପାଲଟିଲ ? ବଙ୍କିମ ଘୋଷୁଥିଲେ ଯେଉଁ କବିତା, ସିଏ ତମର କାନରେ ପଡ଼ୁଛି । ନିଆଁରେ ଆହୁତି ହୋଇ ପୋଡ଼ି ମରିବାକୁ ବି ଅଲକ୍ଷଣୀଙ୍କର ଅଭାବ ନାହିଁ ।

ଘର ଅନ୍ଧାର । ଅନ୍ଧାର ଭିତରେ ଇନ୍ଦିରାଙ୍କର ରୂପ ଆନନ୍ଦଙ୍କ ଆଖିରେ ନିଆଁଶିଖା ପରି ଉଜ୍ଜ୍ୱଳ ଦିଶିଲା । ସେହି ହୋମଶିଖାର ପୂଜାରୀ ଆନନ୍ଦଚନ୍ଦ୍ର । ଆଖି ପିଞ୍ଛୁଡ଼ା ପରି ରୋଗ-ବଇରାଗ, ଅଭାବ-ଅନଟନ, ଦୁଃଖ-ସୁଖ, ବିଷାଦ ଓ ହର୍ଷରେ ଜୁଡ଼ୁବୁଡ଼ୁ ପନ୍ଦରଟି ବର୍ଷର ବିବାହିତ ଜୀବନକୁ ପନ୍ଦରଟି ମୁହୂର୍ତ୍ତ ପରି ସେ ମଣିଲେ ।

ସାନ ଝିଅ ସୁରୂପା, ତିନି ବର୍ଷ ତଳେ ଜନ୍ମ ଲଭିଥିଲା, କଡ଼ ଲେଉଟାଇ ଦୀର୍ଘଶ୍ୱାସ ଛାଡ଼ୁଛି । ଆଠ ବର୍ଷର ଝିଅ ନିରୁପା, ଯାହାର ଆଖି ପ୍ରକଟି ଆସିଲାଣି, ଆଉ ବାର ବର୍ଷର ଝିଅ ଅନୁପା, ଯାହାର ଦୀପ୍ତି ଉନ୍ମେଷି-ଆସୁଛି, ପାଖ କୋଠରିରେ ବଙ୍କିମଙ୍କ ପାଖରେ ନିଶ୍ଚିନ୍ତରେ ଶୋଇ-ପଡ଼ିଥିବେ ।

ତିନୋଟି ମାସର ବହୁରୂପ ଅଭିନୟ । ଅଭିନୟ ନୁହେଁ, ତପସ୍ୟା ! ସେବା-କାର୍ପଣ୍ୟ-ଦେବାର ଫଳରୁ ଯାହା ଅସାଧ୍ୟ ମନେହେଉଥିଲା, ତାହା ସାଧ୍ୟ ହୋଇପାରିଲା । ଦେଢ଼ଲକ୍ଷ ଟଙ୍କାର କାମଟି ଆନନ୍ଦଙ୍କୁ ମିଳିଗଲା ।

ଇନ୍ଦିରା ନିଜକୁ ଧନ୍ୟବାଦ ଦିଅନ୍ତି । ସେ ବୁଝିସାରିଲେଣି, ଘରର ଘରଣୀ ପେଚକ ପରି ଘରକୋଣରେ ଲୁଚିଲେ ଏବକା ଦୁନିଆରେ କିଛି କରିହେବ ନାହିଁ । ପରଙ୍କୁ ଆପଣାର କଲେ, ମୁଖ ଫିଟିଲେ, ଦୁଃଖ ଦୂର ହୁଏ । ସ୍ୱାମୀଙ୍କର ସମ୍ମାନ ବଢ଼େ ।

ବଡ଼ ହାକିମଙ୍କର ଘରଣୀ ରଞ୍ଜିତା ଶନିବାର ଓ ମଙ୍ଗଳବାର ସଞ୍ଜରେ ମଙ୍ଗଳା ଠାକୁରାଣୀଙ୍କ ଦର୍ଶନ ପାଇଁ ନିଜର କାର୍‌ରେ ଆସନ୍ତି । ସଙ୍ଗରେ ପୁଅ ଓ ଝିଅ ବି ଥାଆନ୍ତି । ତାଙ୍କର ବଡ଼ ପୁଅ ସଞ୍ଜୟ । ସତର ଅଠର ବର୍ଷର ସ୍ୱାସ୍ଥ୍ୟବାନ୍ ତରୁଣ । ତା ତଳର ଝିଅ ଅଞ୍ଜନା ହେବ ଅନୁପା ବୟସର । ସାମାନ୍ୟ ବଡ଼ ହୋଇପାରେ । ପାତଳ ମୁହଁଟି ଗୋଲଗାଲିଆ ସୁନ୍ଦର ।

ରଞ୍ଜିତା କେଉଁ ବଡ଼ଘରର ଘରଣୀ ବୋଲି ଆପେ ଆପେ ଜଣାପଡ଼ନ୍ତି । ଦେହରେ ମୂଲ୍ୟବାନ୍ ଆଧୁନିକ ଶାଢ଼ି ଓ ଯେଉଁ ସାମାନ୍ୟ ଗହଣାଗାଣ୍ଠି ତାଙ୍କର ଦେହ ମଣ୍ଡନ କରିଥାଏ, ସେସବୁର ଝଟକ ଜଣାଇ-ଦିଏ ଯେ, ସେ ଜଣେ ଭଦ୍ର-ମଣିଷଙ୍କର ଘରଣୀ ।

ତାଙ୍କର ସ୍ୱାମୀ କମଳକୃଷ୍ଣ ଖାଣ୍ଟି ଲୋକ ବୋଲି ପ୍ରଚାର । ହାକିମ-ଗଣରେ ସେ ହିଁ ଖଣ୍ଡେ । ଖଣ୍ଡାଧାରରେ ଚାଲିବାର ଲୋକ । ଫାଇଦା ଉଠାଇବାକୁ ଚେଷ୍ଟା କରି ବିଫଳ ହୋଇଥିବା ଲୋକେ ତାଙ୍କର ନିନ୍ଦା ବି ଗାନ କରନ୍ତି ।

ବିଷମ ଲୋକ ସେ କମଳକୃଷ୍ଣ !

ତାଙ୍କର ଘରଣୀ ସେ ରଞ୍ଜିତା । କିପରି ଆଗ ତାଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ହେବ, ସେତିକି ହୋଇଥିଲା ଇନ୍ଦିରାଙ୍କ ମନର ବଡ଼ ପ୍ରଶ୍ନ । ନବ୍ୟ-ସଭ୍ୟ ଫେସନ ଗୁଡ଼, ରଞ୍ଜିତାଙ୍କ ପରି ଓଡ଼ଆଘରର ବୋହୂ ସାଜିବାକୁ ଯାହା ତାଙ୍କର ଲୋଡ଼ା, ଆନନ୍ଦ ଅକୁଣ୍ଠ-ଚିତ୍ତରେ ସେତିକି ଇନ୍ଦିରାଙ୍କୁ ଯୋଗାଇଦେଇଥିଲେ । ଭକ୍ତିଗଦ୍‌ଗଦ କରୁଣ ଚାହାଁଣି, ମୁରୁକି ହସ, ନମସ୍କାର, ଚପା ନର୍ଲୀ-ପ୍ୟାଣ୍ଟ ଓ ସେଣ୍ଟପରି ଫ୍ରକ୍ ପିନ୍ଧା ସାନ ଝିଅ ଅଞ୍ଜନାର ସରୁ ହାତଟିଏ ଧରି ଆହ୍ଲାଦ କରି ପଦେଅଧେ ଏଣୁତେଣୁ ପଚରା । ଇନ୍ଦିରାଙ୍କର ଏସବୁ ବ୍ୟର୍ଥ ହୋଇ ନ ଥିଲା । ମୁଖ-ଦାନ୍ତୁରୀ, ସହଜେ ସବୁବେଳେ ହସହସ ଦିଶୁଥିବା ରଞ୍ଜିତାଙ୍କର ଦୃଷ୍ଟି ସେ ଆକର୍ଷଣ କରିପାରିଥିଲେ । ତାଙ୍କ ସମ୍ପର୍କରେ ରଞ୍ଜିତାଙ୍କୁ ଆଗ୍ରହୀ ସେ କରିପାରିଥିଲେ ।

ତମର ଘର କେଉଁଠି ? ତମର ସ୍ୱାମୀ କ'ଣ କରନ୍ତ ? ତମର ନାମ କଅଣ ? କ ଘର ବୋହୂ ମ ? ଡୋଲରୁ ଓହ୍ଲାଇଲ ପର ଦଶୁଛ ଭଉଣୀ ! ତମର କେଇଟି ପିଲାଝିଲ ?

ମନ୍ଦର ବାହାରେ ରଞ୍ଜିତାଙ୍କ ଗାଡ଼ି ପାଖରେ, ବଦାବଦ ବେଳେ, ଗୋଟିଏ ଦଓଟି ପ୍ରଶ୍ନ । ଆଜ ଗୋଟିଏ ପ୍ରଶ୍ନ ସେ ମୁହଁ ଖୋଲ ପଚ୍ଚାରନ୍ତ ନାହିଁ । ଇନ୍ଦବ ଜାଣନ୍ତ, ସେହି ପ୍ରଶ୍ନଟି ରଞ୍ଜିତାଙ୍କ ଭତରେ ଈର୍ଷାର ଅନଳ ଦକଦକ ଜଳାଉଥିବ । ନାରୀ-ସୁଲଭ ସେ ପ୍ରଶ୍ନର ଉତ୍ତର ଇନ୍ଦବ ଦେଇପାରବେ ନାହିଁ । ତାଙ୍କର ରୂପ, ରଙ୍ଗ ଓ ଗଢ଼ଣକୁ ସେ ନଜେ ସର୍ଜନା କରନାହାନ୍ତ । ତାଙ୍କର କୃତତ୍ୱ କେବଳ ସବୁର ତାକିଲ-ପ୍ରକାଶରେ ।

ତମ ସଙ୍ଗରେ ଯେଉଁ ଟୋକାଟି ଆସିଛ, ସେ କ'ଣ ତମର ପୁଅ ? ଏମିତ ବାଇଆଙ୍କ ପର ଦଶୁଛ ?

ନାଇଁ ମ ଅପା, ସେ ମୋ ନଣନ୍ଦଙ୍କ ପୁଅ । ପାଖରେ ଥାଏ । କଲେଜରେ ପଢ଼େ । ସେ ଭାର ଉଦାସିଆ ପିଲା ।

ରଞ୍ଜିତା ଗାଡ଼ିରେ ବସନ୍ତ । ମୁଣ୍ଡନୁଆଁ ପ୍ରଣାମ ସଙ୍ଗରେ ନେଇ, ଧୂଳ ଉଡ଼ାଇ, ବାସନା ଛଡ଼ାଇ ସେ ଅଦୃଶ୍ୟ ହୁଅନ୍ତ ।

ଇନ୍ଦବ ବକ୍ରମ ଉପରେ ବରକ୍ତ ହୁଅନ୍ତ । ବାଟରେ କହନ୍ତ, ତମେ ଭାର ଅମାନଆ, ବକ ! ସେହି କହଣକଳା ନଶଦାଢ଼ି କାଟିପକାଉନା କାହିଁକ ? ମୁଣ୍ଡରେ ତ ପୁଣି କେଶ ବଢ଼ାଇଲଣି । ସେଥିରେ କାହିଁକ ତେଲ ଲଗାଇବାକୁ ଭୁଲୁଛ ? ଫୁର୍‌ଫୁର୍ ଉଡୁଛ । ବାଇଆ ପର ଦଶୁଛ ।

ବକ୍ରମ ଓଠ ନେଫଡ଼େ । ତଳକୁ ଚାହିଁ ଆଗେଇଯାଏ । ମୁହଁ ଖୋଲେ ନାହିଁ ।

ଇନ୍ଦବ କହନ୍ତ, କଅଣ ତମର ମାନସିକ ମତେ କହବ ନାହିଁ ? ଅନୁପା କହୁଥିଲ, ତମେ କୁଆଡ଼େ ପାଠ ଶେଷ କର କେଉଁ ଧର୍ମ-ଦଳଆଙ୍କ ସଙ୍ଗେ ମିଶିବ, ବାବାଜୀ ହେବ । ଛି, ଛି — । ବାରକେଶରୀ ଭାଇ ଓ ଚନ୍ଦନା

ଅପା ତମକୁ କେତେ ଆଶା କରି ରହିଛନ୍ତି । ତମେ ମଣିଷ ହେଲେ, ଗୁଣି ପଇସା ରୋଜଗାର କଲେ, ସେମାନଙ୍କର ଦୁଃଖ ଯିବ ।

ମୋର କିଛି ମାନସିକ ନାହିଁ, ମାଇଁ ! ଅନୁପା ଚଗଲା ହେଲାଣି । ତା ଦେଖାଦେଖି ନିରୁପା । ମତେ ସେ ଦୁଇଟା ମାନୁନାହାନ୍ତି । କିଏ ପିଠିରେ ଚଢ଼ୁଛି ତ କିଏ ବେକରେ ଝୁଲୁଛି । ଅନୁପାକୁ ଡରାଇବାକୁ ମୁଁ ସେମିତି କହିଦେଇଥିଲି । ବୋତଲେ ବାସନାତେଲ ଆଣି ମୋ ମୁଣ୍ଡରେ ସେ ଅଜାଡ଼ିବାକୁ ଆସିଥିଲା । ବାବାଜି ହୋଇ ପଳାଇବି କହିଲାରୁ ସେ ଡରିଗଲା ।

ଇନ୍ଦିରା ହସିଲେ । କହିଲେ, ତମେ ସେଗୁଡ଼ା ଚାଞ୍ଛିପକାଅ, ନୋହିଲେ ସମସ୍ତେ କହିବେ ତମେ ବାଇଆ ।

ଚାଞ୍ଛିଲେ ପୁଣି ଉଠିବ । ତା ପ୍ରତି ଦୃଷ୍ଟି ଦେବାକୁ ମୋର ଆଗ୍ରହ ନାହିଁ । କିଏ ଯାହା ମତେ ବାଇଆ ମଣୁଛନ୍ତି ମଣନ୍ତୁ । ତେବେ ମୁଣ୍ଡର ବାଳ-ଗୁଡ଼ାକ ବଢ଼ିଲାଣି । ବେଳ ମିଳିଲେ ତାକୁ ନିର୍ମୂଳ କରି ଚଞ୍ଛାଇଦେବି ।

ବିକ୍ରମ ଦିନେ ସେଇଆ କଲେ । ନିଶଦାଢ଼ି ବି ନିର୍ମୂଳ ହେଲା । ଅନୁପା ଓ ନିରୁପା ତାଳିମାରି ନାଚିଲେ । ଆନନ୍ଦଚନ୍ଦ୍ର କାବାକାବା ହୋଇ ଚାହିଁଲେ । କିଛି ପଚାରିଲେ ନାହିଁ । ଭାବିଲେ ପରା, ବିକ୍ରମର ମୁଣ୍ଡରେ ରୁପି ହୋଇଥିଲା । ବିକ୍ରମଙ୍କର ଆଡ଼ିବାଇଆ ବେଶ ଦୂର ହେଲେ ବି ଇନ୍ଦିରା ଆଜି ତାଙ୍କୁ ସଙ୍ଗରେ ମନ୍ଦିରକୁ ନେଲେ ନାହିଁ ।

ଅନୁପା ହେଲା ସହଗାମିନୀ ।

ଅଞ୍ଜନା ପରି ଅନୁପାକୁ ଛପା ନାଲି-ପ୍ୟାଣ୍ଟ୍ ଓ ସେମିତି ଦେହକୁ ଛପା ଜାମା ପିନ୍ଧାଇଲେ । ଆଖିରେ କଜଳ, ମୁଣ୍ଡରେ କୁଙ୍କୁମ, ପାଦରେ ଅଳତା, ମୁହଁରେ ଗୋଲାପି-ଚୂନା । କାନରେ ନେଳିଆ ପଥରବସା ସୁନାଫୁଲ । ହାତରେ ଦି’ ଦି’ ପଟି ସୁନାର କାଚ ।

ଏକେ ତ ସୁନାଖଡ଼ିକା ପରି ସୁନ୍ଦର ଝିଅ, ଏବକା ଫେସନରେ ସଜାଇଦେଲାରୁ ଅନୁପାଟି ଆଖି ଓଟାରିଲା ।

ରଞ୍ଜିତା ସେଇ ଟିକି ପିଲାଟିକୁ ସ୍ନେହ କରିବାକୁ ହାତ ବଢ଼ାଇଲେ । ଅଞ୍ଜନାର ସେ ସମବୟସୀ । ରୂପରେ ନ ହେଉ ପଛକେ ଉଚ୍ଚରେ, ସ୍ୱାସ୍ଥ୍ୟରେ, ବେଶରେ ଅନୁପା ଓ ରଞ୍ଜିତା ଯାଆଁଳା ପରି ଦିଶିଲେ । ପିଲାରେ ପିଲାରେ ମିଶିଲେ ।

ଏଇଟି ତମର ବଡ଼ଝିଅ ?

ହଁ, ଦିଦି !

ମୋତେ ଦିଦି କାହିଁକି ଡାକୁଛ ? ମୁଁ ବଙ୍ଗାଳୀଘରର ଝିଅବୋହୂ ନୁହେଁ । ଝିଅଙ୍କ ଇସ୍କୁଲ ଅବା ଆମ ମହିଳା-କଲେଜର ମାଷ୍ଟ୍ରାଣୀ ବି ନୁହେଁ । ମୁଁ ନିପଟ ଓଡ଼ିଆଘରର ଝିଅ, ଓଡ଼ିଆଘରର ବୋହୂ । ସଞ୍ଜୁର ବାପା ବିଲାତରୁ ଫେରିଲାବେଳେ ପୂରା ସାହେବ ହୋଇଥିଲେ । ଏବେ ସେ କଞ୍ଚା ଓଡ଼ିଆ ହେଲେଣି । ଠାକୁରଠାକୁରାଣୀଙ୍କୁ ପୂଜା ନ କଲେ ନାହିଁ, ଅସମ୍ମାନ କରୁନାହାନ୍ତି । ମୁଁ ତାଙ୍କୁ ବଦଳାଇପାରିଛି । ମତେ ତମେ ଅପା ଡାକପାର ।

ଇନ୍ଦିରା ଲଜ୍ଜିତ ହେଲେ । କହିଲେ, ସେଇଆ ଡାକିବି ଯେ, ତମ ପିଲାଙ୍କର ମାଉସୀ ହେବାକୁ ମୋର ଡର ।

ଅଚ୍ଛା ନକଲି ଦୂରର କଥା, ସଞ୍ଜୁର ବାପା ଆଖି ଟେକି ପର-ଘରର ଝିଅବୋହୂଙ୍କୁ ଚାହାନ୍ତି ନାହିଁ । ବିଲାତରେ ଥିଲାବେଳେ କେଉଁ ଧନୀ-ଘରର ସାହାବାଣୀ ଝିଅ ତାଙ୍କୁ ପାଲରେ ପକାଇ ଗିଳିଦେବାକୁ ବହୁତ ଚେଷ୍ଟା କରିଥିଲା । ତାଙ୍କର ବାହାର ଧରଣ ଓ ଚଳଣ ଯିନା ସାହାବାଣିଆ ଥିଲା, ସେ ଥିଲେ ଖାଣ୍ଟିଆ ଓଡ଼ିଆପୁଅ । ସେହି ସୂର୍ପଣଖାର ମୋହିନୀ ମାୟାକୁ କାଟି ସେ ସୁରୁଖୁରୁରେ ଦେଶକୁ ଫେରିଆସିଲେ । ଦେଖିବ ଇନ୍ଦି, ଦିନେ ତାଙ୍କ ହାତରେ ମୁଁ ମାଳାକୋଥଳି ଧରାଇବି । ଡର କାହିଁକି ?

ଇନ୍ଦିରା କହିଲେ, ଏପରି ଖାଣ୍ଟି ଲୋକଙ୍କୁ ଦୂରରୁ ଜୁହାର । ଧନ୍ୟ କହିବି ତାଙ୍କୁ, ସେ ବିଦେଶରୁ ଜ୍ଞାନ ଦେଇ ମାଲୁଣୀମାନଙ୍କ ହାବୁଡ଼ରୁ ଖସି

ପଳାଇଆସିପାରିଲେ । ମୁଁ ଶୁଣିଛି, ସେଇମାନେ ବିଭାପାର ହୋଇ ବିଦେଶକୁ ପାଠ ପଢ଼ିବାକୁ ଯାଉଛନ୍ତି, ବାପଦାଦି ଘରବାର ବନ୍ଧି କରି କେତେ ଆଶା କରି ଯାହାଙ୍କୁ ଧନ ପଠାଉଛନ୍ତି, ସେମାନେ ସେଇଠି ବାହା-ଥୋଇ ହୋଇ ରହିଯାଉଛନ୍ତି । ସାହାବ-ରାଜୁତିବେଳେ ଯାହା ଘଟୁ ନ ଥିଲା, ଦେଶୀଆ-ରାଜୁତିରେ ସେଇଆ ଘଟୁଛି ।

ରଞ୍ଜିତା ଦୀର୍ଘଶ୍ୱାସ ଛାଡ଼ିଲେ । କହିଲେ, ମୋ ବଡ଼ଭାଇ ସେଇଆ କରିଛନ୍ତି, ଭଉଣୀ ! କେତେ ଭଲ, କେତେ ଚରିତ୍ରବାନ୍ ସେ ଥିଲେ । ଦଶ-ବର୍ଷ କଟିଲାଣି । ମୋ ବାପାବୋଉଙ୍କ ଆଖିରୁ ଝରଣା ଶୁଖିନାହିଁ । ସେମାନେ ଏବଯାଏ ସଞ୍ଜୟର ବାପାଙ୍କର ଦୋଷ ଦିଅନ୍ତି ।

କାହିଁକି ?

ସେସବୁ ଅନେକ କଥା । ଆରେ ଦେଖ ତ, ଝିଅ ଦୁଇଟା ମନ୍ଦିର ଆଗରେ ଧରାଧରି ହୋଇ ତାଙ୍କର ଗପ ଲମ୍ବାଇଦେଲେଣି । କେତେ ଶୀଘ୍ର ସେମାନଙ୍କର ସରଳ ନିଷ୍ପାପ ମନ ପରସ୍ପରକୁ ଆପଣାର କରିନିଏ ! ସଞ୍ଜୟ, ଅଞ୍ଜନାକୁ ଡାକିଆଣ । କେତେ ଡେରି ହେଲାଣି । ଗପରେ ମଜିଗଲ । ତମେ ତ କୁହୁକ ଜାଣ ଇନ୍ଦିରା ! ମତେ ବାଟରେ ଅଟକାଇ ଗପାଇଲ ।

ମୋର ଦୋଷ ହୋଇଛି । ମୋ ମନରେ ଗର୍ବ ବି ହୋଇଛି । କେତେ ବଡ଼ ପ୍ରତାପୀ ହାକିମଙ୍କର ଘରଣୀ-ଠାକୁରାଣୀ, କେତେ ବଡ଼ ଗଣ୍ୟମାନ୍ୟ ଘରର ଝିଅ, ଖାନ୍‌ଦାନ୍ ଘରର ବୋହୂଙ୍କୁ ରାସ୍ତାକଡ଼ରେ ତାଙ୍କ ଗାଡ଼ି ପାଖରେ ଅଟକାଇ ରଖିଲି !

ତମେ ଅଟକାଇ ପାରନ୍ତ ନାହିଁ । ତମର ଢଙ୍ଗ, କଥା, ସହଜେ ତ ରୂପ ଓ ଭଦ୍ରତା ମୋ ଗୋଡ଼ ଅଟକାଇଦେଲା । ନିଜ କଥା କିଛି କହିଲ ନାହିଁ ? ହଁ, ବେଳ ଡେରି ହେଲାଣି । ପିଲା ଦୁଇଟାଙ୍କ ପାଠ ମାଟି ହେଉଛି । ତିନି ଦିନ ହେଲା ସେ ଗସ୍ତରେ ଯାଇଛନ୍ତି । ଆଜି ସଞ୍ଜରେ ଫେରିବାର କଥା । ଯାଉଛି ଭଉଣୀ !

ରଞ୍ଜିତା ଗାଡ଼ି ଭିତରେ ପଶିଲେ । ସଞ୍ଜୟ ଆଗରେ ବସିଲା, ଡ୍ରାଇଭର ପାଖରେ । ଅଞ୍ଜନା ଅନୁପାର ହାତ ଛାଡ଼ିଲା ନାହିଁ । ଗାଡ଼ି ଭିତରକୁ ଟାଣିଲା । ଗେଟ୍ ଖୋଲିଲା, ସେ ବି ଆସିବ, ବୋଉ !

ତାକୁ ତୁ ଚିହ୍ନୁ କି ଅଞ୍ଜନା ?

ଚିହ୍ନେ ନାହିଁ ? ସେ ଆମ ସଙ୍ଗରେ ପଢ଼େ । ଭାରି ଚୁପ୍‌ଚାପ୍ ପିଲା ସେ ବୋଉ ! କାହା ସଙ୍ଗେ ମିଶେ ନାହିଁ, କାହାକୁ କଥା କହେ ନାହିଁ । ଆମ ଦିଦିମାନେ ପାଠ ପଚାରିଲେ, ତଳକୁ ମୁହଁ ପୋତି ସେ ଧୀରେ ଧୀରେ ସବୁ କହିଦେଇ ବସିପଡ଼େ ।

ସତେ ?

ହଁ, ବୋଉ ! ଆମ ଶ୍ରେଣୀରେ ପ୍ରଥମ ହୋଇଛି । ତା' ନାମ ମୁଁ ଜାଣିଥିଲି । କେବେ ତା ସଙ୍ଗେ କଥାଭାଷା ହୋଇ ନ ଥିଲି । ସେ ଆମ ଘରକୁ ଯିବାକୁ ରାଜି । ଆମର ଗୋଲାପ ବଗିଚା ଦେଖିବ । ଭାଇ ଆଉ ଡ୍ରାଇଭର ତାକୁ ପୁଣି ଛାଡ଼ିଦେଇଯିବେ । କାଲି ତ ରବିବାର, ସ୍କୁଲ ବନ୍ଦ ।

ଇଚ୍ଛାରେ ଭାବିଥିଲେ, ଝିଅର ଆଗ୍ରହ ରଖିବାକୁ ରଞ୍ଜିତା ଅନୁପାକୁ ସଙ୍ଗରେ ନେବାପାଇଁ ପ୍ରସ୍ତାବ ବାଢ଼ିବେ । ସେ ସମ୍ମତ ହୋଇ କହିବେ, ଗଲେ ସେ ଯାଉ, ତା ବାପାଙ୍କୁ କହିବ ସେ ଯାଇ ତାଙ୍କୁ ନେଇଆସିବେ । ଏହି ସୁଯୋଗରେ ରଞ୍ଜିତାଙ୍କ ସଙ୍ଗେ ତାଙ୍କର ପରିଚୟ ହେବ । ତା'ପରେ ସବୁ ଠିକ୍ ହୋଇଯିବ ।

ରଞ୍ଜିତା ମୌନ ରହିବାର ଦେଖି, ଅନୁପାକୁ ସଙ୍ଗରେ ନେବାକୁ ସେ ଯେ ଅନିଚ୍ଛୁକ, ଏହା ଅନୁମାନ କରି ଇଚ୍ଛା ପ୍ରକାଶ କଲେ, ମା ଅଞ୍ଜନା, ସେ ତମ ସଙ୍ଗରେ ଗଲେ ତମର ପାଠ ବିଗିଡ଼ିବ । ଅନୁପାର ଶିକ୍ଷକ ବି ବିରକ୍ତ ହେବେ । ସେ ଆଉ ଦିନେ ଯିବ ।

କାଲି ରବିବାର, ମାଉସୀ ! ଜାଣ, କାଲି ମୋର ଜନ୍ମଦିନ ? ମୁଁ ମୋର କେତେ ସାଙ୍ଗଙ୍କୁ ଡାକିଛି । ଅନୁପାକୁ ମୁଁ ଚାହିଁଥିଲି ଯେ, ସେ ମୋର ସାଙ୍ଗ ହୋଇ ନ ଥିଲା ।

ରଞ୍ଜିତା କହିଲେ, ଏବେ ସେ ଚୋର ସାଙ୍ଗ ହେଲାଣି ?

ଅନୁପା କହିଲା, ସେ ମୋତେ ଗୋଲାପ କଲେଣି ।

ଅଞ୍ଜନା କହିଲା, ମୋର ବଉଳ, ଅଶୋକା, ମଲ୍ଲୀ, ଯୂଇ, ଜନଆଁ ସବୁ ଅଛନ୍ତି । ସମସ୍ତଙ୍କୁ ମୁଁ ଭଲପାଏଁ । ମୋ ଜନ୍ମଦିନର ପିଠା ଖାଇବାକୁ ସମସ୍ତଙ୍କୁ ମୁଁ କାଲି ସଞ୍ଜରେ ଡାକଛି । ଆଜି ତ ସୂଆଙ୍କ ସଙ୍ଗେ ଗୋଲାପ ବସିଲା । ଗୋଲାପକୁ ମୁଁ ଭାରି ଭଲପାଏ ।

ରଞ୍ଜିତା କହିଲେ, ସେ ମୋ ସଙ୍ଗରେ ଚାଲ୍ ଇନ୍ଦ୍ର ! ମୋ ଅଞ୍ଜନା ଠିକ୍ କହିଛି । ଅନୁପାର ମୁହଁଟି ଗୋଲାପଫୁଲ ପରି ସୁନ୍ଦର । ମୁଁ ତାକୁ ନିଜେ ଛୁଡ଼ିଦେଇଯିବି । ଅଞ୍ଜନାର ମନ ଊଣା କରିବ ନାହିଁ ।

ଅଞ୍ଜନା କହିଲା, ହଁ, ଗୋଲାପ ଆମ ସଙ୍ଗରେ ଯିବ । ସେ ଆଜି କାହିଁକି ଫେରିବ ? ମୋ ପାଖରେ ଥିବ, କାଲି ସଞ୍ଜରେ ଫେରିବ ।

ଅନୁପା କହିଲା, ନାଇଁ, ନାଇଁଲୋ ଗୋଲାପ ! ବଡ଼ଭାଇ ମତେ କେତେ ପାଠ ଦେଇଛନ୍ତି । ମୁଖସ୍ଥ କରିବ, ଲେଖିବ, ଅଙ୍କ କଷିବ । ତାଙ୍କ ପାଠ ମୁଁ ତାଙ୍କୁ ନ ଦେଲେ, ସେ କହିଛନ୍ତି ପୁଣି ସେ ନଶଦାଢ଼ି ରଖିବେ । ମତେ କଥା କହିବେ ନାହିଁ ।

ଅଞ୍ଜନା ପଚାରିଲେ, କିଏ ତୋର ବଡ଼ଭାଇ ?

ତା'ର ପ୍ରଶ୍ନର ଉତ୍ତର ଦେଲେ ଇନ୍ଦ୍ର, ସେ ଅନୁପାର ମାଷ୍ଟର ।

ଅନୁପା ସଂଶୋଧନ କଲା, ସେ ମୋର ଭାଇ । ମତେ ପାଠ ପଢ଼ାନ୍ତି । କେବେ ଗାଳି ଦିଅନ୍ତି ନାହିଁ ।

ରଞ୍ଜିତା ପଚାରିଲେ, ଚୋର ହଇ ? ସେ ନଶଦାଢ଼ି ରଖିଲେ ଚୋର କ'ଣ ଥାଏ, ମା ?

ସଙ୍ଗେ ସଙ୍ଗେ ଇନ୍ଦ୍ର ଟିକିଏ ଅପ୍ରସ୍ତୁତ ହେଲା ପରି ଉତ୍ତର ଦେଲେ, ବଙ୍କିମ ମୋର ନଣନ୍ଦଙ୍କର ପୁଅ । କଲେଜରେ ପଢ଼େ । ସେ ଅନୁପାକୁ ପଢ଼ାଏ । ନଶଦାଢ଼ି ରଖିଲେ ସେ ଆଡ଼ୁବାଇଆ ପରି ଦିଶେ ଯେ—

ସେଇ ଯେଉଁ ପିଲାଟି ତମ ସଙ୍ଗରେ ଆସେ ?

ହଁ, ସେଇ । ଇନ୍ଦ୍ର କହିଲେ, ମା ଅଞ୍ଜନା, ତମର ଗୋଲାପ ଅନୁପାକୁ ସଙ୍ଗରେ ନେଇ ମୁଁ ନିଜେ ଯାଇ କାଲି ସଞ୍ଜରେ ତମ ଘରେ ପହଞ୍ଚିବି । ବାଟରେ ଠିଆକରାଇ ତମ ବୋଉଙ୍କର ଆଜ ଆଜ ଡେରି କରିବ ନାହିଁ, ମା ! ଦେଖିଲ, ଗଲାଆଇଲା ଲୋକେ—

ଇନ୍ଦ୍ର ତାଙ୍କର କଥା ଅଧା ରଖି ରଞ୍ଜିତାଙ୍କୁ ପ୍ରଣାମ କଲେ ।

ଗାଡ଼ି ଚାଲିଗଲା ପରେ ସେ ଆଉ ଥରେ ମା-ମଙ୍ଗଳାଙ୍କୁ ପ୍ରଣାମ କରି ବସାକୁ ବାହୁଡ଼ିଲେ ।

**ର**ବିବାର ସଞ୍ଜରେ ଅନୁପାର ଅଞ୍ଜନା ସଙ୍ଗେ ଭେଟ । ଅନ୍ୟ ସାଙ୍ଗମାନଙ୍କ ମଝିରେ ସେ ହଜିଯାଇଥିଲା । ନିରୁପା ମଧ୍ୟ ଇନ୍ଦ୍ରଙ୍କ ସଙ୍ଗରେ ଯାଇଥିଲା । ମୂଲ୍ୟବାନ୍ କନାର ସାଲୁଆର, ପୋଷାକ ଓ ଓଢ଼ଣୀ-ଚଦର ସହ ଯେଉଁ ପଥରବସା ସୁନାହାରଟି ଇନ୍ଦ୍ର ଅଞ୍ଜନାର ଜନ୍ମଦିନ ଉପଲକ୍ଷରେ ଉପହାର-ରୂପେ ରଞ୍ଜିତାଙ୍କ ହାତକୁ ବଢ଼ାଇଦେଇଥିଲେ, ତହିଁରେ ଆଖି ବୁଲାଇ ପ୍ରଚ୍ଛନ୍ନ ଆନନ୍ଦ ଓ ପ୍ରକାଶିଲା-ବ୍ୟସ୍ତତାରେ ରଞ୍ଜିତା କହିଲେ, କାହିଁକି ଏଗୁଡ଼ା ଆଣିଲ ଇନ୍ଦ୍ର, ତାର କେତେ ଅଛି, ସେ କ'ଣ ପିନ୍ଧୁଛି ?

ରଞ୍ଜିତା ଅସଂପୃକ୍ତ ଭାବରେ ସେତକ ଲୁହା-ଆଲମାରୀରେ ରଖି ଚାବି ପକାଇଲେ ।

ଇନ୍ଦ୍ର କହିଲେ, ଅନୁପାର ବାପା କହିଲେ, ଖାଲି ହାତରେ ଶୁଭ-କାମରେ ଯୋଗ ଦେବାକୁ କେହି ଯାଏ ନାହିଁ । ଆମେ ଗରିବ ଗୋ ଅପା ! ତମର ଆଖିକୁ ଦିଶିଲା ପରି ଚିଜ କାହୁଁ ଦେଇପାରିବୁଁ ? ମତେ ଲାଜ ମାଡୁଥିଲା । ସେ କହିଲେ, ଚାଲ ମୁଁ ସଙ୍ଗରେ ଯିବି ।

ଆନନ୍ଦବାବୁ ଆସିଛନ୍ତି ? ସେ କାହାନ୍ତି ?

ହଦାବଦ ହୋଇ ଘରଅଧରେ ଫେରିବା ଆଗରୁ ଆନନ୍ଦ ରଞ୍ଜିତାଙ୍କର ଦର୍ଶନ ଲାଭ କରିପାରିଥିଲେ । ମୁଣ୍ଡ ନୁଆଇଁ ପ୍ରଣାମ କରିଥିଲେ ।

ଭକ୍ତିଗଦ୍‌ଗଦ ହୋଇ କେତେ ଖୁସାମତିଆ କଥା ସେ କହୁଥିଲେ । ମହାଜନଙ୍କ ଘରେ ବହୁବର୍ଷର ଗୁମାସ୍ତାଗିରି ତାଙ୍କୁ ଯେତେ ଭାଷା, ଯେତେ ଅଭିନୟ ଶିଖାଇଥିଲା, ସେଥିରୁ କିଛି ସେ ରଞ୍ଜିତାଙ୍କ ଆଗରେ ପ୍ରକାଶ କରିଥିଲେ ।

ଇନ୍ଦିରା ଅନୁଭବ କଲେ ତାଙ୍କର ସ୍ୱାମୀଙ୍କ ଉପରେ ଯେ ବିଶ୍ୱାସ ସ୍ଥାପନ କରାଯାଇପାରିବ, ତାର ପ୍ରତ୍ୟୟ ରଞ୍ଜିତାଙ୍କ ମନରେ ପ୍ରଥମ ସାକ୍ଷାତରେ ଜନ୍ମିଥିଲା ।

ବଡ଼ହାକିମ କମଳକୃଷ୍ଣଙ୍କ ସଙ୍ଗେ ସେଦିନ ରାତିରେ ତାଙ୍କର ସାକ୍ଷାତ୍ ହୋଇ ପାରି ନ ଥିଲା । ବଡ଼ ହତା ଭିତରେ ବିବିଧପ୍ରକାର ଫୁଲକିଆରି ମଝିରେ, ଉଜ୍ଜ୍ୱଳ ବିଜୁଳି-ଆଲୋକରେ, ସେ ତାଙ୍କର ବଡ଼ବଡ଼ିଆ ବନ୍ଧୁମାନଙ୍କ ସଙ୍ଗେ ଗଳ୍ପ କରୁଥିଲେ । ସେମାନଙ୍କ ଭିତରେ ଆନନ୍ଦଚନ୍ଦ୍ରଙ୍କର ଶନିଗ୍ରହ ତାଙ୍କର ପୂର୍ବତନ ମାଲିକର ପୁଅ ରାମକୁମାର ବି ଥିଲା । ସେ ହୋ ହୋ ହୋଇ ହସୁଥିଲା ।

ରଞ୍ଜିତାଙ୍କ ଦୟାରୁ ଶନିର କୋପ ଶୂନ୍ୟରେ ଉଡ଼ିଯାଇଥିଲା । ଆନନ୍ଦଚନ୍ଦ୍ର ତାଙ୍କର ହାତ-ବାରିସି ହୋଇପାରିଥିଲେ । ଦେଢ଼ଲକ୍ଷ ଟଙ୍କାର କୋଠାକାମ ତାଙ୍କୁ ମିଳିଲା । ତା ପଛକୁ ତା ପଛକୁ ଆହୁରି କେତେ ହାଡ଼ିବନ୍ଧୁଙ୍କର ବୁଦ୍ଧି ଓ ଦକ୍ଷତା, ଆନନ୍ଦଚନ୍ଦ୍ରଙ୍କର ଭକ୍ତି ଓ କୌଶଳ, ଇନ୍ଦିରାଙ୍କର ରଞ୍ଜିତାଙ୍କ ସଙ୍ଗେ ଘନିଷ୍ଠତା, ଦୁଇ ଝିଅଙ୍କର ବନ୍ଧୁତା, ସବୁ ମିଶି ସମସ୍ତଙ୍କ ପାଇଁ ଲକ୍ଷ୍ମୀଠାକୁରାଣୀଙ୍କୁ ଶ୍ରୀମନ୍ଦିରରୁ ଅଡ଼େଇ ଆଣିଥିଲା ।

ମୋଟେ ଚାରୋଟି ବର୍ଷ ଭିତରେ ଅସମ୍ଭବ ସମ୍ଭବ ହୋଇପାରିଥିଲା ।

ମକରବାଗରେ ଇନ୍ଦିରାଙ୍କ ନାମରେ ଯେଉଁ ଚାରିଗୁଣ୍ଠ ଜମି କିଣା ହୋଇଥିଲା ତା ଉପରେ ଠିଆହୋଇଛି ଦୋତାଲା କୋଠାଟିଏ । ଏ ଘର ମୋର, ଏହା କହିବାର ଆନନ୍ଦ ଓ ଗର୍ବ ଇନ୍ଦିରାଙ୍କ ମନରେ ଆସିଲା । ଆନନ୍ଦ ଚନ୍ଦ୍ର ଇନ୍ଦିରାଙ୍କ ନାମରେ ବ୍ୟାଙ୍କରେ ଟଙ୍କା ଦଶହଜାର ରଖିଦେଇଛନ୍ତି । ଲକ୍ଷାଧିକ ଟଙ୍କା ତାଙ୍କର ବେପାର ଉପରେ ପଡ଼ିଛି । ନିଜର କରି ସେ ଟ୍ରକ୍ ଖଣ୍ଡିଏ କିଣିପାରିଛନ୍ତି । ସେ ଧନୀ ହୋଇଛନ୍ତି ।

ବନ୍ଧୁ ଓ ଡାକ-ସମୁଦି ହାଡ଼ବନ୍ଧୁ ପଛୁଇ ରହୁନାହାନ୍ତି । ସେ ତାଙ୍କର ଥୋରିଆସାହିର ନୂଆଘରକୁ ଚାଲିଗଲେଣି । ତାଙ୍କର ଟ୍ରକ୍ ଅଛି । ଜିପ୍ ଅଛି । ଘଡ଼ିଅଧରେ ବେଗ-କାରବାର କରିବାରେ ତାଙ୍କୁ ସାହାଯ୍ୟ କରୁଛି । ସେ କଣ୍ଟ୍ରୋଲ ଚିନିର ଡିଲର୍ । ଦୁଇ ବନ୍ଧୁଙ୍କ ମଧ୍ୟରେ ଅଭେଦ୍ୟ ପୀରତି; କିନ୍ତୁ ଉଭୟଙ୍କର ବେପାର ସ୍ୱତନ୍ତ୍ର ହୋଇଛି ।

ସେମାନେ ଭିନେ ହେଲେ । ଦୁହେଁ ବସି ବେପାର ଓ ଧନ ବଣ୍ଟନ କଲେ । ଏ କାନରୁ ସେ କାନ ଜାଣିଲା ନାହିଁ । କଣ୍ଟ୍ରୋଲ ଦୋକାନ ହାଡ଼ବନ୍ଧୁଙ୍କ ଭାଗରେ ପଡ଼ିଲା । କାନ୍ତବଟି ପଡ଼ିଲା ଆନନ୍ଦଚନ୍ଦ୍ରଙ୍କ ଭାଗରେ । ଇଟା ସିମେଣ୍ଟ ବେପାର ଏକାଠି ।

ମଇଁଷି ଶିଙ୍ଗ ପଟା, ଯୁଝିଲାବେଳକୁ ଗୋଟା । ସେହିପରି ସାଥ ସେ ବନ୍ଧୁ ଦୁହିଁଙ୍କର । ଏବଯାଏ ମନ୍ତ୍ରଣା ଚାଲିଛି । ଏବଯାଏ ଏ ଘରେ ନ ହେଲେ ସେ ଘରେ ଘଡ଼ିଅଧ ହେଉଛି । ପୁଅର ମା ଇନ୍ଦର ସମୁଦି ହାଡ଼ବନ୍ଧୁଙ୍କ ଆଗରେ ପରିବେଶରେ ଉଭା ହେଉଛନ୍ତି । ଦୁଇ ବନ୍ଧୁଙ୍କର ଚର୍ଚ୍ଚା କରୁଛନ୍ତି ।

ସର୍ବାଙ୍ଗରେ ସୁନାର ଗହଣା ଝଟକି ଉଠୁଛି । ଡାକ-ସମୁଦିଙ୍କର ଉକ୍ରାଭ ଆଖିଡୋଳାରେ ବାଃ-ସାବାସର ଆଲୁଅ ଝଟକାଉଛି । ସାନପୁଅ ସାନନ୍ଦର ଜନମ ପରେ ରୂପ ରଙ୍ଗ ଓ ସ୍ୱାସ୍ଥ୍ୟର ଯେଉଁ ହାନି ଘଟିଥିଲା, ଦାମିକା ଶାଢ଼ି ଓ ମୂଲ୍ୟବାନ୍ ଗହଣାର ସଂଯୋଗ ସେତକ ଭରଣା କରି-ପାରିଛି ।

ଇନ୍ଦରଙ୍କର ମନରେ ଆସିଛି ଆତ୍ମାଭିମାନ—ଏ ସବୁ ମୋର । ତମମାନଙ୍କର ଭାଗ୍ୟ ସଳଖିବାକୁ ଯାହା ମୁଁ କରିଛି, ଯେତେ ଅଭିନୟ, ଯେତେ ନ୍ୟୁନତା, ଯେତେ ହୀନତା ମୁଁ ଜାଣି ଜାଣି ବରଣ କରିଛି, ତାର ମୂଲ୍ୟ କ'ଣ ଏତକ ? ତାର ମୂଲ୍ୟ ତମେ ଦେଇପାରିବ ନାହିଁ । କାହାର ଭଉଣୀ, କାହାର ଶାଳୀ, କାହାର ପତ୍ନୀଙ୍କର ବାନ୍ଧବୀ ହୋଇଛି । ସେମାନେ ସମସ୍ତେ କିଏ କୁଆଡ଼େ ଗଲେଣି । ପରସ୍ପରର ସ୍ୱାର୍ଥ ଯେଉଁ ଦ'ଦିନିଆ ସମ୍ବନ୍ଧ ଓ ଘନିଷ୍ଠତା ଗଢ଼ିଥିଲା, ତାର ଆୟୁ କେତେ ଦିନ ?

ସୁସଜ୍ଜିତ ବୈଠକଖାଘର । ମଝିରେ ସାଗୁଆନ କାଠର ଟେବୁଲ । କାନ୍ଥକୁ ଅଳପ ଛୁଡ଼ ସୋଫା । ଟେବୁଲ ପାଖରେ ପୂଞ୍ଜିଏ ସୋଫା ଚଉକି । ଘରର ଚାରିକୋଣରେ ଚାରୋଟି ଷ୍ଟୁଟ ଅନୁଚ୍ଚ ଗୋଲଆ ଟୁଲ ଉପରେ ଫୁଲଦାନୀ । ସେଥିରେ ରଙ୍ଗରଙ୍ଗିଆ ନକଲି ଡାଳିଆଫୁଲର ତୋଡ଼ା । ଚଟାଣ ମୋଜାଇକ ହେଲେ ବି ତା ଉପରେ ମୋଟା ସତରଞ୍ଜି ।

କାନ୍ଥରେ କେତେଗୁଡ଼ିଏ ଏକାସାଇଜର ବଡ଼ ବଡ଼ ଫଟୋ ଟଙ୍ଗା ହୋଇଛି—ମହାତ୍ମାଗାନ୍ଧି, ନେହେରୁ, ଗୋପବନ୍ଧୁ, ମଧୁସୂଦନ, ଶ୍ରୀମା, ଶ୍ରୀଗଣେଶ, ଶିବପାର୍ବତୀ, ଅହଲ୍ୟା ଉଦ୍ଧାରଣ, ବସ୍ତ୍ରହରଣ, ଶ୍ରୀ ମହତାବ, ଭଜ ନତାଇ, ସ୍ୱୟଂ ଆନନ୍ଦଚନ୍ଦ୍ର ଏମିତି ଆଉ କେଇଟି । ବାଲ୍‌ବଇଟ୍‌ର ଆଲୁଅରେ ବେଶ୍ ଚକ୍‌ଚକ୍ ଦିଶୁଛି । ବୁଲନ୍ତା-ବିଜୁଳିପଙ୍ଖାର ଘୂରିଲା—ହୁଇରେ ସେପଟେ କାନ୍ଥରେ ଟଙ୍ଗା ଫଟୋଗୁଡ଼ିକ ସତେ ଲୁଚକାଳି ଖେଳୁଛନ୍ତି ।

ଇଏସ ଟେବୁଲକୁ ଆଉଜି ଠିଆ ହୋଇଛନ୍ତି । ବନ୍ଧୁ ଦିହେଁ କଫି ପାନ କରୁଛନ୍ତି । କେଉଁ ଚୋଖଡ଼ ମନ୍ତ୍ରୀଙ୍କର ଅବାଗିଆ ଆଦେଶ ବିଷୟରେ ଚର୍ଚ୍ଚା କରୁଛନ୍ତି । ଇଏସଙ୍କ କାନରେ ପଡ଼ୁଛି । ଗହନ କଥା, ଜଟିଳ କଥା, ବଡ଼ ବଡ଼ ରାଜନୀତି, ଅର୍ଥନୀତି । ସେ ବୁଝିବେ କପରି ?

ହାକିମମାନଙ୍କ ପରି ମନ୍ତ୍ରୀ, ଉପମନ୍ତ୍ରୀ ଓ ଏମେଲେମାନେ ଆସୁଛନ୍ତି, ଯାଉଛନ୍ତି । ସରକାରୀ ଚାକିରିଆ ଦଳଙ୍କର ଗ୍ରାଚୁଇଟି ଅଛି, ପେନ୍‌ସନ୍ ଅଛି । ପାରିଲରମାନଙ୍କର ଚାରି ପଇସା ଉପୁରି ଅଛି । ଅନ୍ତ ପାରିଲର କେହି କେହି ଠାକୁର ଖାଇ ଖଟୁଲି ଗିଳିଦେଉଛନ୍ତି । ମୁହଁପୋଛି ନିର୍ମଳ ହେଉଛନ୍ତି । ଦଣ୍ଡଖିରି-ଚୋକାଙ୍କ ପଛରେ ଗୋଡ଼ାଉଛନ୍ତି ପାଟି କରିକରି—ଖାଇଗଲେ, ଖାଇଗଲେ । ଧର, ବାନ୍ଧ, ଠୁକିଦିଅ ।

ସେମାନେ ନିର୍ମଳିଆ, ସମୁଦ ! ବୁଝିଲ ସମୁଦୁଣୀ, ଯେଉଁ ହାଉଁ ହାଉଁ-ପାଟିଆମାନେ ଆଖପାଖିଆଙ୍କ ପେଟକୁ ନ ଅନାଇଁ ପାଞ୍ଚ ଆଙ୍ଗୁଠି ପାଟିରେ ଦୂସନ୍ତି, ସେମାନେ ହରବର ନ ହେବେ ତ ହେବ କିଏ କହ ? ଠାକୁର, ଖଟୁଲି, ନିଜର ଅନ୍ତବୁଜୁଳା ସବୁ ବାନ୍ତି କଲେ ବି ପରିତ୍ରାଣ ନାହିଁ ।

ଆନନ୍ଦ କହିଲେ, ସେଥିକ ତାଙ୍କର ପରବା ନ ଥାଏ । ଆଗରୁ ସେମାନେ ଚଉଆଖିଆ, ସମୃଦ୍ଧ ! ତାଙ୍କର ପାଣି କେଉଁ ଶିଗରେ ଯାଇ କେଉଁଠି ଜମିଥାଏ ହରବ୍ରହ୍ମା କଳନା କରିପାରିବେ ନାହିଁ । ବରଷେ ହେଲା କମଳ ହାକମ ଗୃକରିରୁ ସସ୍‌ପେଣ୍ଡ ହୋଇଯାଇ ସମ୍ବଲପୁରରେ ରହୁଛନ୍ତି । ଲୋକେ ନିନ୍ଦାକଲେ ପଛରେ କରିବେ । ସେ ବେଶ୍ ଭଲ ଅଛନ୍ତି ।

ଦେଖା ହୋଇଥିଲା ?

ହଁ, ଏଇ କଟକରେ । ତାଙ୍କ ନିଜ କାର୍‌ରେ ଆସିଥିଲେ । ତାଙ୍କ ସଙ୍ଗରେ ତାଙ୍କ ସ୍ତ୍ରୀ ମଧ୍ୟ ଆସିଥିଲେ । ଭାରି ଖୁସି ଅଛନ୍ତି । କହୁଥିଲେ, ସେ ଗୃକରି ଛାଡ଼ିଦେଇ ବ୍ୟବସାୟ କରିବେ । ରାମକୁମାରବାବୁ ଓ ସେ ଏକାଠି କରିବେ । ତାଙ୍କ ବିରୁଦ୍ଧରେ ଯେଉଁ ମିଛ ମକଦ୍ଦମା ପୋଲିସ କରିଛି ସେଇଠାରୁ ମୀମାଂସା ହୋଇଗଲେ—

କି ବ୍ୟବସାୟ ?

କହିଲେ ନାହିଁ । ଖାଲି ଏତିକି କହିଲେ ଯେ, ରାମକୁମାରବାବୁଙ୍କର ସାଙ୍ଗ ସେହି ଅବାଗିଆ ଫାଉଁଫାଉଆଁ ଦୁର୍ବାସା ମନ୍ତ୍ରୀ ଖଣ୍ଡିକ, ସେ ଯଦି ଗାରେ ମାରିଦିଅନ୍ତେ ଫାଇଲ ଉପରେ, କାମଟା ସହଜରେ ହୋଇ-ଯାଆନ୍ତା ।

ଇନ୍ଦିରା ପଗ୍ଭରିଲେ, ରଞ୍ଜିତା ଅପା ଆସିଥିଲେ ? ଆମ ଘରେ ଥରେ ପାଦ ପକାଇ ଗଲେ ନାହିଁ ? ଅନୁପାକୁ ସେ ଭାରି ଭଲ ପାଉଥିଲେ । ଦିନେ ସେ ଅନୁପାର ହାତଟିଏ ଧରି ତାକୁ କୋଲକରି କହିଲେ, ତୁ ରାଜି ହେଲେ ସ୍ୱାକୁ ମୁଁ ବୋହୂ କରିବି, ଇନ୍ଦିରା !

ହାଡ଼ବନ୍ଧୁ କହିଲେ, ମୋ ବୋହୂକୁ ସେ ବୋହୂ କରିବେ ? ତାଙ୍କୁ ମୁହେଁ ମୁହେଁ ଶୁଣାଇଦେଲ ନାହିଁ ?

କଅଣ ଶୁଣାଇବି ? ଏବକାଳକା ପୁଅଝିଅଙ୍କର ଭିନେ ବେଭାର । ଜନମ ଦେଇଛୁ, କରମ ଦେଇନାହିଁ । ସେମାନେ ବାହାହେବାକୁ ରାଜି ନ ହେଲେ କିଏ ବାଧ୍ୟ କରିପାରିବ ? ଆମ କାଳ ଗଲାଣି, ସମୃଦ୍ଧ ! ଶାଶୁ

ନନ୍ଦେଙ୍କ ଗଞ୍ଜଣା ଶୁଣି, ବାହାଦେଲ୍ଲ ସ୍ୱାମୀଙ୍କର ବେଢଙ୍ଗ ଦେଖି, ଅତ୍ୟଗ୍ରର ସହ୍ୱି ନ ପାର ସେକାଳର ବୋହୂଘରଣୀ କେହ୍ୱ କେହ୍ୱ ଜୀବନ ହାରଦେଉଥିଲେ । ଏବକା ପିଲ୍ଲଏ, ଯିଏ ପାଠ ଦ୍ୱର ଅକ୍ଷର ପଢ଼ିଛନ୍ତି, ତାଙ୍କର ନାକ-ଅଗରେ ଅଭିମାନ । ତାଙ୍କମାନଙ୍କ ଢଙ୍ଗ ଯେ ଗଙ୍ଗା କହ୍ୱଲେ ଥିବ, ଗାଙ୍ଗୀ କହ୍ୱଲେ ଯିବ । ସେଇ ଢିଅପୁଅମାନଙ୍କର ମନ ନେଇ ଚଳବାକୁ ପଡ଼ୁଛୁ ।

ହାଡ଼ବନ୍ଧୁ ମୁଣ୍ଡ ଢୁଙ୍ଗାରଲେ । କହ୍ୱଲେ, ଏବକା ପାଠୁଆ ପିଲ୍ଲଙ୍କର ମତ ବଗିଡ଼ିଗଲ୍ଲଣି । ଆଗକା ପିଲ୍ଲଏ ବାପମା, ଗୁରୁଜନ, ଶିକ୍ଷକମାନଙ୍କୁ ଭକ୍ତି କରୁଥିଲେ, ଭୟ କରୁଥିଲେ । ଏବକା ଢଙ୍ଗ ଓଲଟା । ଯାହା କହ ସମ୍ଭୁଦୁଣୀ, ବାଉଟିଆର ସ୍ୱଭାବ ଭିନ୍ନ ପ୍ରକାର । ବେପାରରେ ମୋତେ ସାହାଯ୍ୟ କର୍‌ବାକୁ ସେ ସବୁବେଳେ ବ୍ୟାକୁଳ । ଗତଗାତ ବେଶ୍ ଜାଣିଲ୍ଲଣି । ବି.ଏ. ପରୀକ୍ଷାରେ ଫେଲ୍ ହୋଇଛୁ । ମୁଁ ଖୁସି ।

ଆନନ୍ଦ ପଚ୍ଛରଲେ, ଖୁସି କାହ୍ୱିକ ? ଆମ ବସନ୍ତ ସେକେଣ୍ଡ-କ୍ଳାସ ପାଇଲ୍ଲ । ସେଥିପାଇଁ ତା'ର ଦୁଃଖ ।

ଇନ୍ଦର କହ୍ୱଲେ, ଖାଲି ସେତିକ ? ପୁଣି ସେ ଅବେଇଜ ନଦୋଡ଼ି ଛୁଡ଼ିଲ୍ଲ । ମୁଣ୍ଡର ବାଳ କାଟିଲ୍ଲ ନାହିଁ । ଭତଥାଳି ପାଖରେ ବସିଲ୍ଲ ଓ ଉଠିଲ୍ଲ । ତାଙ୍କୁ ନିର୍ଲଜ୍ଜ କହ୍ୱବ ନାହିଁ ଆଉ କଅଣ କହ୍ୱବ ? ବାପଙ୍କ ପର କେଉଁଠି ଯାଇଁ ମୋହରିର କାମ କରୁଥାଆନ୍ତେ । ମୋ ପାଖରେ ଆଶ୍ରା ପାଇ ବି.ଏ. ପାସ କଲେ । କେଉଁଠି ଯାଇ ଚାକର କଲେ ଭଲ ଦରମା ପାଇବେ । ବୁଢ଼ାବନେ ଖାରକେଶରୀ ଭାଇ ବିଦେଶରେ ପଢ଼ି ବେଗ ବଇ-ରାଗରେ କାହ୍ୱିକ ଘାଣ୍ଟି ହେବେ ? ସେ ଓ ଚନ୍ଦନା ଅପା ବୋହୂ କର୍‌ବାକୁ ମନ କଲେଣି । ସତେ, ବେଗଣା ବୁଟୀଟା ଗ୍ରାମରେ ଘାଣ୍ଟି ହେଉଛନ୍ତି । ମୁଁ କହ୍ୱଲି, ସେତିକ ପଢ଼ିଥା ।

ହାଡ଼ବନ୍ଧୁ କହ୍ୱଲେ, ତମର ବଗ୍ଭରରେ ତ୍ରୁଟି ରହ୍ୱ ନ ପାରେ, ସମ୍ଭୁଦୁଣୀ ! ବାଉଟିଆର ପାଠ ମୁଁ ବନ୍ଦ କଲି । ସେ ସେଥିରେ ରାଜି ।

ବେଶୀ ପଢ଼ିଲେ ଚାକିରି ଖୋଜିବ। ଚାକିରି କଲେ ବାବୁ ହେବାକୁ ମନ କରିବ। ବାବୁ ହେଲେ କଥା ସରିଲା। ନିଜ ରୋଜଗାର ନିଜକୁ ନିଅଣ୍ଟ। ଏବକା ଭିକାରି ଆଜି ବାବାଜିଦଳ ହାକିମ ହୁକୁମାଙ୍କଠାରୁ ଅଧିକ ରୋଜଗାର କରନ୍ତି। ଛୋଟିଆ ଚାକରଙ୍କୁ ପଚାରେ କିଏ ? ନା, କଅଣ ସମୁଦୁଣୀ ?

ଇନ୍ଦିରା ହସ ହସ ହେଲେ। ମୁଣ୍ଡ ଟୁଙ୍ଗାରି ସମ୍ମତି ଜଣାଇଲେ। ଆଖି ପକାଇଲେ କାନ୍ଥରେ ଟଙ୍ଗା ଫଟୋଗୁଡ଼ିକ ଉପରେ। ଗୋଟିଏ ପାଖରେ ବସ୍ତ୍ରହରଣ ଛବି, ଆରକଡ଼ରେ କାତର-ଜନକ ଲଙ୍ଗଳା ନ ହେଲେ ବି ଆଣ୍ଠୁ ଲୁଚୁନାହିଁ ଖଦଡ଼ପିନ୍ଧା, ଠେଙ୍ଗାଧରା ଗାନ୍ଧି ମହାତ୍ମା। ମଝିରେ ଆନନ୍ଦ ଚନ୍ଦ୍ର, ତାଙ୍କର ଜୀବନ-ସର୍ବସ୍ୱ। ଆଗରେ ବସି ସିଗାରେଟ ଖଣ୍ଡେ ମୁହଁରେ ଜଳାଉଥିବା ତାଙ୍କର ସ୍ୱାମୀଙ୍କ ଅପେକ୍ଷା ଫଟୋଟି ଅଧିକ ସୁନ୍ଦର, ହସ ହସ, ଲୋଭମାପୁ ଦିଶୁଛି।

ସେ ମୁହଁ ଫଣଫଣ କଲେ। ଭାବିଲେ, ମକରବାର ଏ ଭୂଇଁ, ଭୂଇଁ ଉପରେ ଏଡ଼େ ସୁନ୍ଦର ନୂଆଘରର ସେ ହେଉଛନ୍ତି ମାଲିକାଣୀ। ତାଙ୍କର ଖଣ୍ଡେ ବଡ଼ ଫଟୋ ଏ ଘରେ ଝୁଲିଲା ନାହିଁ ?

ତାଙ୍କର ଭାବନାକୁ ଦୋହଲାଇ ହାଡ଼ିବନ୍ଧୁ କହିଲେ, ଯେଉଁମାନେ ବେପାର ବଣିଜ କରି ଧନ ଉପାର୍ଜନ କରନ୍ତି ସେମାନଙ୍କର ପାଠ ଅଳପ। ବାଉରିଆ ବେପାର କରିବ। ଆଉ ଦୁଇ ପୁଅ ପାଠ ପଢୁଛନ୍ତି ତ ପଢ଼ନ୍ତୁ। ଯେଉଁଠି ଅଟକିବେ ସେଇଠି ବନ୍ଦ। କଣ କହୁଥିଲି କି, ମୋ ବୋଉଙ୍କର କାଳ ହେଲା ଦିନରୁ ତମ ସମୁଦୁଣୀ ଏକା ଘର ଚଳାଉଛନ୍ତି। ବାଉରିଆକୁ ଏକୋଇଶ ପୂରିଲା। ତା'ର ହାତକୁ ଦି'ହାତ କରିବାକୁ ସେ ଉଛନ୍ନ। ଅନୁପା ପାସ କଲା ପରା ?

ଆନନ୍ଦ କହିଲେ, ବୁଦ୍ଧିଆ ପିଲାଟା ଯେ, ଆଉ ସାତଟା ନମ୍ବର ଅଧିକା ରଖିଥିଲେ ତା'ର ପ୍ରଥମ ଶ୍ରେଣୀ ହୋଇଥାନ୍ତା। ମୋ ଭଣଜା ବିକ୍ରମ ପାଇଁ ଏହା ସମ୍ଭବ ହେଲା। ସେ ଅନୁପା ପଛରେ ଲାଗିଥାଏ। ଅନୁପା କହୁଛି, ସେ କଲେଜରେ ପଢ଼ିବ, ଝିଅମାନଙ୍କ କଲେଜରେ।

ସମୃଦ୍ଧ ! ଝିଅ ପିଲା, ଯେତେ ପଢ଼ିଲେ ବି ପରଘରକୁ ଯାଇ ଚୂଲି ଫୁଙ୍କିବ । ଆଉ ଅଧିକ ପଢ଼ାଇବା ଦରକାର ନାହିଁ ।

ଇନ୍ଦିରା କହିଲେ, ତାକୁ ଷୋହଳ ପୂରିଲା । ତାର ପିଲାବୁଦ୍ଧି ଛାଡ଼ି-ନାହିଁ । କଲେଜରେ ନାମ ଲେଖାଇବ ବୋଲି ଏବଠାରୁ କଅଣ ସବୁ ସ୍ୱପ୍ନ ନିଜେ କଣିଆଣିଲାଣି । ପଢ଼ିବାକୁ ମନ କରୁଛି ତ ପଢ଼ୁ । ତା'ର ପିଲାମନ ଭାଙ୍ଗିଯାଉ । ବାହାଘର ନାମ ଶୁଣିଲେ ସେ ଫାଉଁକରି ଉଠୁଛି ।

ପଢ଼ିଲେ ପଢ଼ୁ ସମୁଦୁଣୀ ! ତାକୁ ଘରକାମ ବି ଶିଖାଉଥାଅ, ଯେମିତି ସେ ପକ୍କା ଘରଣୀ ହୋଇପାରିବ, ଠିକ୍ ତମରି ପରି ।

ଘରକାମ ଶିଖାଇବା ଲୋଡ଼ା ହେବ ନାହିଁ । ପରଘରକୁ ଗଲେ, ବେକରେ ପଡ଼ିଲେ ବଳେ ସେ ବଜାଇ ଶିଖିବ ।

**ଘ**ରର କାମ କରିବାକୁ ଘରେ ଗୋଟାଏ ଚାକର ଟୋକା ଅଛି । ତା ନାମ ରଥିଆ । ଜାତିରେ ସେ ଗୁଡ଼ିଆ । ଚଉଦ ପନ୍ଦର ବର୍ଷର ପିଲା । ଭାରି ଫୁର୍ତ୍ତି । କେତେ ଘରେ କାମ କରି, ବର୍ଷେ ଛମାସ ରହି ରହି ତଡ଼ା ଖାଇ ଆସିଛି । କଅଣ ତା'ର ଦୁର୍ଗୁଣ ଏଯାଏ ଜଣା ପଡ଼ିନାହିଁ । ତେବେ ଏତିକି ଜଣା ପଡ଼ିଲାଣି ଯେ, ସେ ଗୋଟାଏ ଟିମା-ଅସୁର । ଡାଲି ତରକାରି ହେଲେ ହେଲା, ନ ହେଲେ ନାହିଁ, ଗୋଟାଏ ଲଙ୍କା ଓ ଫାଳେ ପିଆଜ ଲଗାଇ ସେ ଦୁଇକଂସା ଭାତ ଠୁଙ୍କିଦିଏ । ଆଉ ଗଣ୍ଡିଏ ଦିଅଁ, ଯେତେଥର ପଚାରି, ସେ ନାହିଁ କରିବ ନାହିଁ ।

ଭୋଜନ ସରିଲେ ସେ ହୁଏ ଅଜଗର ସାପ । କାହୁଁ କାହୁଁ ତାକୁ ନିଦ ଘୋଟିଆସେ । ମୁଣ୍ଡତଳେ ହାତକୁ ତକିଆ କରି ସେ ଯେଉଁଠି ପାରି ସେଠି ଶୋଇପଡ଼େ । ନିଶ୍ଚିନ୍ତ ନିଦ । ଘୁଙ୍ଗୁଡ଼ି ଶବ୍ଦରେ କାନ କମ୍ପାଏ । ତାକୁ ଗଡ଼ାଅ, ତଡ଼ାଅ, ବିଧାଗୋଇଠା ମାରି, ସେ ଖାଲି ହୁଁ ହୁଁ ଜବାବ ଦିଏ । ଉଠେ ନାହିଁ । ଘଣ୍ଟା ଦୁଇଟି ପରେ ମନକୁ ଉଠେ । ଅଳସ ଭାଙ୍ଗେ, ଝାଡ଼ିଝୁଡ଼ି ହୋଇ ଉଠେ । ବଳିଷ୍ଠ ପିଲା, ଯେଉଁ କାମ ଦିଅ ସେ କରେ ।

ସେଷକାମ ସେ ଆଦର ନେଇଛି । ଜାଣେ । ନୂଆ କଛି କରିବାର ଥିଲେ ଥରେ ବତାଇଦେଲେ ସେ ଶିଖେ । ପରିଷ୍କାର ପରିଛନ୍ନ । ମୁଣ୍ଡରେ ଗୁଡ଼ାଏ ଲମ୍ବ କେଶ ରଖିଛି । ତେଲ ଜୁଡ଼ୁବୁଡ଼ୁ କରି ସେ କେଶ ଓଲଟାଇ କୁଣ୍ଡାଏ । ଗ୍ଲେଟ ପାନିଆ ଖଣ୍ଡେ ସେ ପାଖରେ ରଖିଥାଏ । କାମ କରୁଣୁ ଟିକଏ ହାତକୁ ଫୁର୍‌ସତ୍ ମିଳଲେ ସେ ପାନିଆର ସଦ୍‌ବ୍ୟବହାର କରେ । ଗୋରା ଦେହ । ମୂର୍ତ୍ତିଟି ସୁନ୍ଦର । ଖଞ୍ଜିଲା ପରି ଦାନ୍ତ ବ ଧାଡ଼ି । ବାପ-ଛେଉଣ୍ଡ । ତା ଘର ବଡ଼ାମ୍ବା । ତାର ମା ଅଛି । ନରୁପା ବୟସର ସୁନ୍ଦର ଭଉଣୀଟିଏ ବ ଅଛି । ଜମିବାଡ଼ କଛି ଅଛି । ଚରି ଅକ୍ଷର ପଢ଼ିଛି ।

ସମସ୍ତେ ତାକୁ ସ୍ନେହ କରନ୍ତି, ଏକା ଅନୁପା ତା ଉପରେ କଟକଟ ହୁଏ । ତାକୁ ଦେଖିଲେ ନାକ ଟେକେ । କହେ, ବୋଉ ମ, ଏଇ ଟିମା ଅସୁରକୁ ଆଗ ଘରୁ ନକାଲ୍, ସେଇଟା ଭାରି ଅଭଦ୍ର ।

କଅଣ ସେ କଲା ?

ଆମେ ପଢ଼ିଲାବେଳେ ଝାଡ଼ୁଣୀ ମୁଠାଏ ଧରି ଘରେ ପଶୁଛି । ଧୂଳି ଉଡ଼ାଇ ପହଁରୁଛି । ମନାକଲେ ମାନୁନାହିଁ । ଠିଆହୋଇ ଖାଲି ଭବଭବ କରି ଚାହୁଁଛି । ମନକୁ ମନ ଦାନ୍ତ ଦେଖାଉଛି । ପକେଟରୁ ଚିରୁଣୀ କାଢ଼ି ମାଇଚଟା ମୁଣ୍ଡ କୁଣ୍ଡାଉଛି । ବକଭାଇ ଚିଡ଼ୁଛନ୍ତି ।

ହଇରେ ଅଲକ୍ଷଣା !

କାମ ସାରିବ ନା ବାକ ରଖିବ, କହିଲ ମା !

ହେରେସାଙ୍କ ପରି ଦାନ୍ତ ଦେଖାଉଥିଲୁ କାହିଁକ ?

ହସିହୋଇଗଲା ମା, ଦୁଇ ଜଣ ହସିଲେ ପାଖରେ ଥିବା ଆଉ-ମାନଙ୍କୁ ହସ ମାଡ଼ିବ କ ନାହିଁ କହ ? ମୋର ଦୋଷ ହେଲା । ହେଇଟି ମୁଁ କାନ ମୋଡ଼ିହେଉଛି ।

ରଥିଆ କାନ ମୋଡ଼ିହେଲା । ତଥାପି ଅନୁପାର କ୍ରୋଧ କମିଲା ନାହିଁ । ସେ କହିଲା, ଏ ଘରେ ପଶି ତୁ ଛତର ଘର ଓଳାଇବୁ ନାହିଁ, କ ବହି ଏପାଖ ସେପାଖ କରିବୁ ନାହିଁ । ଏ ଘର ମୁଁ ଓଳାଇବି ।

ବହମ ଭୁକ ହୋଇ ବସିଥିଲେ, ବହି ଓଲଟାଉଥିଲେ । ଦ୍ୱିତୀୟ ଶ୍ରେଣୀରେ ବି.ଏ. ପାସ୍ କରିବାର ଦୁଃଖ ତଥାପି ତା’ ମନରୁ ଦୂର ହୋଇ ନ ଥାଏ । ଅନୁପା ଦ୍ୱିତୀୟ ଶ୍ରେଣୀରେ ପାସ୍ କରି ଖୁସି ଥିଲା ପରି ଜଣା-ପଡୁଥାଏ । ଭବିଷ୍ୟତରେ କିଏ କଅଣ ପଢ଼ିବ ସେହି ବିଷୟର ସେ ଚିନ୍ତା କରୁଥିଲେ ।

ଅନୁପା ସେହି କଥା କହିଲା ।

ଦୁଇବର୍ଷର ପୁଅ ସାନନ୍ଦ ଉପର ମହଲାର କଣିକିଆ କୋଠରିରେ ପଲଙ୍କ ଉପରେ ଶୋଇପଡ଼ିଥାଏ । ବିଜୁଳିପଙ୍ଖା ଧୀରେ ଧୀରେ ଚାଲୁଥାଏ । ପଙ୍ଖାର ଗତି ବଢ଼ାଇ ଇନ୍ଦିରା ତାଙ୍କର ପୁଅ ପାଖରେ ପଲଙ୍କ ଉପରେ ବସିଲେ । ସମସ୍ତ ଅପରାହ୍ନ ପାଞ୍ଚଟା । ବାହାରେ ଖରାର ତେଜ ମଳିନ ଦିଶୁଛି । ଗ୍ରୀଷ୍ମର ତାପ ଉଷ୍ମା ହେଲା ପରି ଲାଗୁନାହିଁ । ଗରମ ପବନ ବହୁଛି ।

ସେହି କଣିକିଆ ଘରକୁ ଲାଗି ସିଢ଼ିଘର, ତଳୁ ଆସି ଦୋତାଲାର ଛାତ ଉପରକୁ ଉଠିଛି । ସିଢ଼ିଘରକୁ ଲାଗି ଆଉ ଦୁଇଟି ବଡ଼ କୋଠରି । ମଝିରେ କବାଟ, ପୁଣି ଭିତର ପାଖ ବାରଣ୍ଡା ଉପରକୁ ଯାଉଁଳି କବାଟ । ପ୍ରଥମ କୋଠରିରେ ଝିଅ ତିନିହେଁ ରହନ୍ତି । ସେପାଖ କୋଠରିରେ ସ୍ୱତରେ ରହନ୍ତି ଇନ୍ଦିରା । କେବଳ ଶୋଇବା ଉଦ୍ଦେଶ୍ୟରେ ବ୍ୟବହାର ହୁଏ । ତଳ ମହଲାରେ ତଦନୁରୂପ ଗୁଡ଼ିଏ ଘର । କଡ଼କୁ ଏକତାଲା ଘର ତିନି ବଖରା—ରୋଷଘର, ଭଣ୍ଡାରଘର, ଆଉଟିରେ ଚାକର ବାକର ରହନ୍ତି ।

ବଡ଼ ଖଞ୍ଜା । ସାମନା ଧାଡ଼ିରେ ବୈଠକଘର । ତାକୁ ଲାଗି ସେଉଁ ଦୁଇଟି ସଜ୍ଜିତ କୋଠରି, ମଝିରେ ବାଟ, ସେଥିରୁ ଗୋଟିଏ କୋଠରିରେ ଆନନ୍ଦଚନ୍ଦ୍ର ରହନ୍ତି । ସେହି ଘରେ ଲୁହା ଆଲମାରିମାନଙ୍କରେ ତାଙ୍କର କାଗଜପତ୍ର ଓ ଲୁହାର ସେଫ୍ ଥାଏ । ସେ ଘରର ଚାବି ସେ ନିଜେ ପାଖରେ ରଖନ୍ତି ।

ଆରଘରେ ଦୁଇଟି ପଲଙ୍କ ପାଖାପାଖି ପଡ଼ିଥାଏ । ତା ଉପରେ ଫୋମ୍-ବେଡ଼୍ ଓ ପବନପୂର୍ଣ୍ଣ ତକିଆ । ମଶାରି ବାଡ଼ରେ ନେଟ୍ ମଶାରି ଝୁଲୁଥାଏ । ତାଙ୍କୁ ଲାଗି ତିନୋଟି ଆଲମାରି—ଇନ୍ଦିରା, ଆନନ୍ଦ ଓ ପିଲାମାନଙ୍କର ଲୁଗାପଟା ରହେ । ସେ ଘରେ ରାତିଅଧଯାଏ ଇନ୍ଦିରା କାରବାର ହୁଅନ୍ତି । ନିରୁପା, ସୁରୂପା ଓ ଟିକି ପୁଅ ସାନନ୍ଦ ଦିନସାରା ସେଇଠି ରହନ୍ତି । ରାତିରେ ଅନୁପା ଓ ନିରୁପା ଯାଆନ୍ତି ଉପର-ମହଲାକୁ, ସେଇଠି ରହନ୍ତି ।

ଆନନ୍ଦଚନ୍ଦ୍ର ସବୁବେଳେ କାର୍ଯ୍ୟବ୍ୟସ୍ତ । ସକାଳ ଆଠଟାରେ ଯାଇ ଫେରନ୍ତି ଦିନ ଦୁଇଟାରେ । ପୁଣି, ସଞ୍ଜ ସାତଟାରେ ଘରୁ ବାହାରନ୍ତି । କେଉଁ ଦିନ କେତେବେଳେ ଫେରନ୍ତି, ତାର ଠିକଣା ନ ଥାଏ । ରିକ୍ସା ଚଢ଼ି ବାହାରନ୍ତି । ଫେରନ୍ତି କାହାର କାର୍‌ରେ, ନୋହିଲେ ହାଡ଼ବନ୍ଧୁଙ୍କ ଜିପ୍‌ରେ ଅବା ନିଜ ଟ୍ରକ୍‌ରେ ।

ତାଙ୍କର କାମ ସହର ଓ ମୋଫସଲରେ ବିଞ୍ଚିହୋଇ ପଡ଼ିଛି । ଅବଶ୍ୟ କାର୍‌ପରଦାର ଓ ଗୁମାସ୍ତାମାନେ ଅଛନ୍ତି; କିନ୍ତୁ ସେମାନଙ୍କ ଉପରେ କଡ଼ା ନଜର ନ ଦେଲେ ଓ ହିସାବପତ୍ର ତନଖି ନ କଲେ, ସେମାନେ ନେଡ଼-ଗୁଡ଼ିକୁ କହୁଣୀକୁ ବୁହାଇଦେବେ ।

ଆନନ୍ଦଚନ୍ଦ୍ର ଏବେ ଦିନେ ବ୍ୟସ୍ତ ହୋଇ କହୁଥିଲେ, ତମେ ଆମର ଦୁଃଖ ବୁଝିବ ନାହିଁ, ଇନ୍ଦିରା ! ଗୁମାସ୍ତା ଓ ରାଜମିସ୍ତ୍ରୀମାନଙ୍କୁ ଯେତେ ନିଅମ-ହଲପ ଦିଅ, ସେମାନଙ୍କର ସୁବିଧା ଅସୁବିଧା ବେଳେ ତାଙ୍କୁ ଯେତେ ସାହାଯ୍ୟ କର, ସମସ୍ତ ଉଣ୍ଡି ସେମାନେ ସିମେଣ୍ଟ, ଲୁହାଛଡ଼, ଏପରିକି ମୋହର-ମରା ଇଟା ବି ଚୋରି କରି ରାତିଅଧରେ ବିକିଦେଉଛନ୍ତି । ସମସ୍ତେ ସଲ୍‌ହା ହୋଇଛନ୍ତି । କେହି କାହାକୁ ପଦାରେ ପକାଇବେ ନାହିଁ ।

ଧର୍ମ ସହିବଟି ?

ପ୍ରଶ୍ନଟି ପଚ୍ଚରି ଇନ୍ଦିରା ଦୀର୍ଘଶ୍ୱାସ ଛାଡ଼ୁଥିଲେ । ତାଙ୍କର ବଡ଼-କୋଠାର ଖଞ୍ଜାକୁ ଲଗି ଯେଉଁ ଲମ୍ବାଳିଆ ଗୋଦାମଘରଟି ତୋଳା ହୋଇଛି, ସେଥିରେ ଲୁହାଛଡ଼ ଓ ଦୁଇଶ କି ଅଢ଼େଇଶ ସିମେଣ୍ଟଭର୍ତ୍ତି ବସ୍ତା ଗଦା ହୋଇଛି । ଘର ଅଧରେ ସେସବୁ କେଉଁ କୋଠାକାମ, ଅବା ପୋଲକାମ ଉପରୁ ହରଣଚୂଳ ହୋଇ ଆସିଛି । ମଜଦ୍ ଡ୍ରାଇଭର ଏସବୁ କାମରେ ପକ୍କା । ଆନନ୍ଦଙ୍କର ସେ ପ୍ରିୟପାତ୍ର । ବିଶ୍ୱାସୀ ସୁଦକ୍ଷ ଡ୍ରାଇଭର । ଟ୍ରକ୍ ଚଳାଏ ପବନ ବେଗରେ ।

ପରମିଟ୍‌କଣା କଣ୍ଟ୍ରୋଲ-ସିମେଣ୍ଟର ଦର ପ୍ରାୟ ଆଠ ଟଙ୍କା; କିନ୍ତୁ ବେଳେବେଳେ ବିଶ୍ୱାସୀ ନାଥମିସ୍ତ୍ରୀ ଆସି, ବାବୁ ନ ଥିଲାବେଳେ ଇନ୍ଦିରାଙ୍କ ସଙ୍ଗେ ଗୁପ୍ତରେ ଫୁସଫୁସ ହୁଏ । ଦୁଇ ବ୍ୟାଗରୁ ଆଠଦଶ ବ୍ୟାଗ୍ ସିମେଣ୍ଟ ସେ ଘର ପଛଆଡ଼ବାଟେ ଉଠାଇନିଏ । ଗଣିଦେଇଯାଏ ବସ୍ତା ବାରଟଙ୍କା ରେଟ୍‌ରେ । ନାଥମିସ୍ତ୍ରୀ ତେରରେ ବିକୁ ବା ଚଉଦରେ ବିକୁ ସେଥକ ତାର ପାରିଲର ପଣ । ନଗଦାନଗଦ ବଳକା ଟଙ୍କା ଇନ୍ଦିରାଙ୍କର ହାତ-ପାଣି ।

ସ୍ୱାମୀ ତାଙ୍କର ବସ୍ତା ପ୍ରତି ଆଠ ଟଙ୍କା ପାଇ ସନ୍ତୁଷ୍ଟ । ଅଧିକ ସନ୍ତୁଷ୍ଟ ସତୀ ପତ୍ନୀ ଇନ୍ଦିରାଙ୍କୁ ସଭ କର । ଇନ୍ଦିରା ଆନନ୍ଦଙ୍କର ମୁଗ୍ଧ-ମଧୁର ନୂଆ ନୂଆ ଗେହ୍ଲାଳିଆ ବିକଳିଆ ଢଙ୍ଗରୁ ବୁଝିପାରନ୍ତି ଓ ଗୋପନ ଗୌରବ ଅନୁଭବ କରନ୍ତି ଯେ, ସେ ଏବଯାଏ ନିଜକୁ ମଧୁର-ଷୋଡ଼ଶୀ ସ୍ତରରେ ରଖିପାରିଛନ୍ତି । ଜାଣି ତ ପୁରୁଷ ପିଲାର ବୟସ ଗଣାଯାଏ ନାହିଁ ।

ଯେଉଁ ଅକ୍ଳାନ୍ତ ପରିଶ୍ରମ ଆନନ୍ଦଚନ୍ଦ୍ର କରୁଛନ୍ତି, ଦେହର ମଜଗ ହେବାର କଥା । ମଜଗ ଦୋଷ କଟାଇବାକୁ ବିଲାଷ୍ଟି ନାଲି ଅରକ ଢୋକେ ତଣ୍ଟିରେ ଗଳାଇଦେବାରେ ଦୋଷ ନାହିଁ ।

ଆଗଧାଡ଼ି ଘରର ଗୋଟିଏ ଲୁହା-ଆଲମାରିରେ କେତେ ବୋତଲ ଦାମିକା ଦରବ ଥାଏ । ଆଲମାରିର ଚାବି ଥାଏ ଆନନ୍ଦଙ୍କ ହାତରେ । ସେ ମାଲ କୁଆଡ଼େ କାମରେ ଲାଗେ । କେତେ ବଡ଼ବଡ଼ିଆଙ୍କର ସେବା

ପାଣିରେ ସ୍ନେହ । ପେଟରେ ଦୁଇ ଢୋକ ପଡ଼ିଲେ ସେମାନେ ଖୁସି ହୁଅନ୍ତି, ନ-କଲୁ କାମ ଆନନ୍ଦଙ୍କ ପାଇଁ କରିଦିଅନ୍ତି ।

କେତେଥର ଆନନ୍ଦ ଅଳି କଲେଣି, ତମେ ବି ଗୋଟାଏ ଶୋଷା ନିଅ ମ ଇନ୍ଦିରା ! ଭଲ ଜିନିଷ । ଯେଉଁ ଅଙ୍ଗୁର କୋଳି ଖାଉଛ, ତାଆରି ରସର ଅରକ । ଦେହ ସୁସ୍ଥ ଓ ସବଳ ରଖିବ, ମନରେ ଫୁର୍ତ୍ତି ଆସିବ, ନିଅ ଢୋକେ । ଭଲ ନିଦ ହେବ ଯେ—

ଥାଉ ।

ମୋ କଥା ମାନ, ନିଅ ଢୋକେ ।

ଛି, ମଦଗୁଣ୍ଡାକ !

ସେ କଣ ହାଣ୍ଡିଆ ହୋଇଛି, ନା ତାଡ଼ି ହୋଇଛି, ନା ଧୂଆଁଳ କି ମହୁଲ-ସଢ଼ା ମଦ ହୋଇଛି ? ଦୁନିଆସାରା ସମସ୍ତେ ଖାଉଛନ୍ତି । ଟିକିଏ ଅକାଳେ-ସକାଳେ ଚାଖିଲେ ନିଶା ଧରିବ ନାହିଁ ।

ନିଦ ହୋଇଯିବ ଲୋ ମା ! ସାନନ୍ଦ ଘରେ ଉଠି ରଡ଼ି ଛାଡ଼ିଲେ ନିଦ ଭାଙ୍ଗିବ ନାହିଁ । ଖଟରୁ ଗଡ଼ିପଡ଼ିଲେ ଜାଣିପାରିବ ନାହିଁ । ଉପର ମହଲକୁ ପିଲାକୁ ନେଇ ନ ଗଲେ, ସୁରୂପା ଯେମିତି ମା-ସୁହାଗୀ ହୋଇଛି, ହାତ ଅଣ୍ଟାଳି ମତେ ଠାବ କରି ନ ପାରିଲେ ବୋବାଳି ଛାଡ଼ିବ ।

ମାଈଁ ପରା ଜଗି ବସିଛନ୍ତି ?

ଯାଅ ଦେଖିଆସିବ, କେମିତି ସେ ଜଗି ବସିଥିବେ । ଏ ଘରର ଭାତ ଯାହା ପେଟରେ ପଡ଼ିବ, ଘୁମାଘୋର ତାକୁ ଘୋଟିଆସିବ । ଆଳିଆ ଲେଖାରେ ବାଳିଆ ବନ୍ଧା । ଭୋଜନ ବେଳକୁ ଚଉକସ୍, କୌଣସି କାମକୁ ସକ୍ଷମ ନୁହନ୍ତି । କହୁଦେଉନ ତମର ସେ ମାଈଁଙ୍କୁ, ସେ ତାଙ୍କର ଝିଅ-ଘରକୁ ଚାଲିଯିବେ ! ଦି' ମାସ ହେଲା ଆସି ରହିଲେଣି । ଯିବାର ନାମ ଧରୁନାହାନ୍ତି । ମାସେ, ଦି'ମାସ ଛାଡ଼ ତାଙ୍କ ମନକୁ ଠୁଁ ଠୁଁ ସେ ବରାବର ଏମିତି ଚାଲିଆସୁଛନ୍ତି ।

ଆହା ବିଚାରି ! ଯେତେ ହେଲେ ମାଈଁ !

ଏବଯାଏ କୁଆଡ଼େ ଥିଲେ ? ତମ ଘରକୁ ବୋହୂ ହୋଇ ଆସିବା ଦିନରୁ ଯେତେ ଦୁଃଖକଷ୍ଟ ଆମେ ସହିଛୁଁ, ଯାହା କହନ୍ତି ପେଟକୁ ଦାନା ନାହିଁ, ଦେହକୁ କନା ନାହିଁ, ସେତେବେଳେ ସେ ଜେଉଁଠି ଥିଲେ ମ ? ରୂପ ଦେଖିନାହିଁ, ନାମ ଶୁଣିନାହିଁ । ଠାକୁରେ ତମର ବଢ଼ନ୍ତି କଲେ । ନିଜର ସନ୍ତର୍ପଣ ପାଇଁ ତମେ ଭଲରେ ରହିଲ । ଯେଉଁମାନେ ଆମର ଦୁର୍ଦ୍ଦିନରେ ଥରେ ତୁଣ୍ଡରେ ପଚାରି ନ ଥିଲେ, ଏବେ ପଲପଲ ହୋଇ ଧାଇଁ ଆସୁଛନ୍ତି ।

ସେମିତି ହୁଏ, ଇନ୍ଦିର ! ଗଛ ବଢ଼ି ହେଲେ, ଡାଳପତ୍ର ମେଲି ଆକାଶକୁ ଉଠିଲେ, କେତେ କୁଆଡ଼ୁର ବିଭିନ୍ନ ଜାତିର ଚଢ଼େଇ ଆସି ବସନ୍ତି । ବସା ବାନ୍ଧନ୍ତି ।

ଇନ୍ଦିର ଆଉ ତର୍କ କରି ନ ଥିଲେ । ତାଙ୍କ ଦେହରେ ସ୍ୱାମୀ-ଦେବତାଙ୍କର ହାତର ପରଶ, ରଙ୍ଗ ଝଳ ଝଳ ଆଖିଡୋଳାର ସବୁ-ଅବସ୍ଥା, ବାଦ-ପ୍ରତିବାଦ, ଦୁଃଖ-ଶୋକ, କାଳିକା-ଭାବନା ଭୁଲାଇବା କୁହୁକ-ଆଲୁଅ ଦପି ଦପି ଜଳିଉଠିଥିଲା । ସେହି ଆଲୁଅ ଇନ୍ଦିରଙ୍କୁ ଝାଉଁଳାଇ ଦେଇଥିଲା ।

ତାଙ୍କ ଦାଣ୍ଡରୁ ଭିକାରୀଙ୍କୁ ନିରାଶ କରି ସେ ତଡ଼ିଦିଅନ୍ତି ନାହିଁ । ସମସ୍ତଙ୍କୁ ମୁଠିଏ ମୁଠିଏ ଦିଅନ୍ତି । ସେମାନଙ୍କ ଭିତରୁ କେହି କେହି କଲ୍ୟାଣ କଲେ ସେ ମନରେ ସାଉଁଟି ରଖନ୍ତି । ଟିକିଏ ଅବ୍ୟକ୍ତ ଗର୍ବ ଓ ଆନନ୍ଦ ଅନୁଭବ କରନ୍ତି । ବିଶ୍ୱାସ ଜନ୍ମେ ଯେ, ଇହକାଳରେ ତାଙ୍କର ଧନ-ଧାନ୍ୟ-ଗୋପ-ଲକ୍ଷ୍ମୀ ବଢ଼ିବ, ପରକାଳରେ ଗତି-ମୁକ୍ତି ମିଳିବ ।

ଦେବାଠାରୁ ବଳି ପୁଣ୍ୟ କିଛି ନାହିଁ, ଜାଇଁଲୁ ଅନ୍ଧ, ଦୁଃଖୀ-ଦରିଦ୍ରଙ୍କ ପାଇଁ ମନ ତଟିଲେ, ତୁଣ୍ଡରେ ଆହା-ପଦ ଥିଲେ, ଠାକୁରେ ସାହା ହେବେ ।

ହଉ ହେଲା, ବୋଉ ! ନାଥ-ମିସ୍ତ୍ରୀ କାହିଁକି ଆସିଛନ୍ତି । ବାରଆଡ଼େ କୂଅମୂଳରେ ବସିଛନ୍ତି । କହିଲେ, ତୋ ସଙ୍ଗରେ କଥାଭାଷା ହେବେ ।

କାହିଁକି ଆସିଛନ୍ତି ? ସଞ୍ଜ ହେବାକୁ ଡେରି ଅଛି ।

ସେକଥା ତୁ ବୁଝ । ବଳଭାଇ, ନରୁପା ଓ ମୁଁ ସିନେମା ଯାଉଛୁଁ । ଆମର ଡେରି ହୋଇଯିବ ।

ନାଥ-ମିସ୍ତ୍ରୀ କାହିଁକି ଆସିଛନ୍ତି ଇନ୍ଦରଙ୍କୁ ଅଜଣା ନ ଥିଲା । ମିସ୍ତ୍ରୀଙ୍କୁ ଜଣା ଯେ, ଗୋଟିଏ ବ୍ୟାଗ୍ ସିମେଣ୍ଟ ପାଇଁ ଠିକଣା ମୂଲ୍ୟରେ ଟଙ୍କାଏ ହିସାବରେ ଇନାମ୍ ଗୁଞ୍ଜି, ଗୋବିନ୍ଦ, ଗୋପାଳ, ହରି ଓ ମାଧବମାନଙ୍କ ନାମରେ ପର୍ମିଟ କଠାଇ, ଆନନ୍ଦ ସେହି ମାସରେ ଦୁଇଶହ ବସ୍ତା ସିମେଣ୍ଟ ହାଡ଼ିବନ୍ଧୁଙ୍କ କଣ୍ଟ୍ରୋଲ-ଦୋକାନରୁ ଆଣି ନିଜ ଘରର ଅନ୍ଧାରି କଣରେ ଲୁଚାଇ ରଖିଛନ୍ତି । ଇନ୍ଦରଙ୍କୁ ସେ କହିଯାଇଛନ୍ତି, ପାଞ୍ଚ ଜାଗାରେ ଭେଗ ଦେଇ, ଭେଗ ଉପରେ ବଦାକ ଥୋଇ, ମାଲ ଆଣି ଘରେ ରଖିଲା-ବେଳକୁ ଗୋଟିଏ ବ୍ୟାଗ ସିମେଣ୍ଟର ଦାମ୍ ପଡ଼ୁଛି ନଅ ଟଙ୍କା । ମୁଁ ସେତକ ଦେହେଁ । ଅଧିକାଟା ତମର ହାତ-ଖରଚ ।

ଇନ୍ଦର ଆହ୍ଲାଦିତ ହେଲେ । ବିଚାରିଲେ, ବ୍ୟାଗ୍ ପ୍ରତି ବାଆର ଟଙ୍କାରୁ କମିଲେ ଲାଭ ହେଲା ବୋଲି କହିହେବ ନାହିଁ । ସେହି ଦରରେ ଭିତରି ବଜାର ଚାଲିଛି । ଧନଖିଆ, ଧନହନ୍ତୁଆ, ଗ୍ଲେଟବେଡ଼ ମାଲିକଙ୍କ ପାଇଁ ଲାଭରୁ କାଟି ଭେଗ-ଲଗା ଆଗରୁ ସାଇତି ନ ରଖିଲେ ନ ଚଳେ । ସେମାନେ ଗୁଡ଼ଘର ପିମ୍ପୁଡ଼ି ଖୋଇଦେବେ । ଜୁଆରିଆ ନଈରେ, ତୋଫାନ ଭିତରେ ବୋଇତ ଭସାଇଛନ୍ତି । ବଣିଜବେପାରରେ ଘରକୁ ଲକ୍ଷ୍ମୀଠାକୁରାଣୀ ଆସନ୍ତି ସତ ଯେ, କପାଳ ଫାଟିଲେ ମଝିନଈରେ ବୋଇତ ବୁଡ଼େ ।

ଇନ୍ଦର ଦୀର୍ଘଶ୍ୱାସ ଛାଡ଼ି ଅନୁପାକୁ ଚାହିଁଥିଲେ । ତା' ପଛରେ ନରୁପା । ଝିଅ ଦିହେଁ ଏକା ପରି ସଜ ହୋଇଥିଲେ, ଏବକା ସମ୍ଭ୍ରାନ୍ତ ବଂଶର ଦୁଲାଳୀମାନଙ୍କ ପରି—ଦେହରେ ଲୁଗା ଓ କାଞ୍ଚୁଲା ନାହିଁ, ମୁଣ୍ଡରେ ଜୁଡ଼ା

ଅବା ଖୋଷା ନାହିଁ । ଚଞ୍ଚାଗ୍ରା ଝିଅଙ୍କ ଫେଶନ । ଟପା ନଳୀ ପ୍ୟାଣ୍ଟ୍ । ଦାମିକା ପାତଳ କନାରେ ତିଆରି । ଦେହର ଚମକୁ ଚିପି ଧରିଛି । ଦେହରେ ପିନ୍ଧିଲା ଚକଚକ କନା ସେହି ଜାତିର, ସେହି ଢଙ୍ଗର । ଅନୁପାର ଜାମାର ରଙ୍ଗ ଖାଇରିଆ । ନିରୁପା ଜାମାର ରଙ୍ଗ ପାଣିଚିଆ-ନାଳିଆ ।

ମୁଣ୍ଡର କେଶ ବନ୍ଧା ନ ହୋଇ ପିଠିଆଡ଼େ ଦୋହଲୁଛି । ଖାଲି ଟିକିଏ ତେଲ ପରଶ ଲାଗି ଚକଚକ ଦିଶୁଛି । ସେହି କେଶ ଫୁଲିଉଠିଛି । ଦେଶୀ-ସାହାବାଣୀ ଝିଅ ଓ ମାଇପିଙ୍କ ସ୍ୱତ । ମୁହଁରେ, ବେକରେ, ଖୋଲା ଥିବା ଛାତି ଅଧର ଅଂଶରେ ବୋଳା ହୋଇଛି ପାଉଡର । ଆଖିରେ ସରୁ ଧାର କଜଳ, ଆଖିକୋଣରୁ ଟିପେ ଲମ୍ବିଯାଏ ଟେରଛ ହୋଇ ପେନ୍ସିଲ ଗାର ପରି କାନ ଆଡ଼କୁ ଲମ୍ବିଛି । କପାଳ ଉପରେ ଷ୍ଟେଟ ନେଳିଆ ବିନ୍ଦୁ ।

ଝିଅ ଦିଓଟି ଏକାପଟିକା ଦିଶିଲେଣି । ଅନୁପାର ସ୍ୱାସ୍ଥ୍ୟ ଭଲ ଯେ, ସେ ପାତଳଆଣ୍ଟା । ଯେତେ ଯାହା ଖାଇଲେ ମୋଟାସୋଟା ହେଉ ନାହିଁ । ନିରୁପା ତାର ବେକ ଛୁଇଁଲାଣି । ସ୍ୱାସ୍ଥ୍ୟ ଭଲ । ଅନୁପା ପରି ସେ ଫୁର୍ତ୍ତି ନୁହେ, ବେଶି କଥା କହେ ନାହିଁ । ତା ବୁଦ୍ଧି ଓ ସ୍ମରଣଶକ୍ତି ଅନୁପାର ବୁଦ୍ଧି ଓ ସ୍ମରଣଶକ୍ତି ପରି ତୀକ୍ଷ୍ଣ ନୁହେ ।

ଦିହେଁ ସୁନ୍ଦର ଦିଶୁଛନ୍ତି ।

ଇନ୍ଦ୍ରଙ୍କର ଆଖିରେ ସନ୍ତୋଷ, ଓଠରେ ସ୍ମିତ । ଝିଅ ଦିଓଟିଙ୍କ ପାଇଁ ଜୋଇଁର ଅଭାବ ହେବେ ନାହିଁ । ବୟସ ହେଉ, ଏବେହୁଁ କାହିଁକି ସେ ଭାବନା ମନକୁ ଆଣିବେ ? ଅନୁପାକୁ ବୋହୂ କରି ନେବାକୁ ଗେଲରେ ଗେଲରେ କେତେ ବଡ଼ବଡ଼ିଆ ପ୍ରସ୍ତାବ ପଠାଇଛନ୍ତି । ବଡ଼ଟି ଥାଉଣୁ ନିରୁପା ଉପରେ କାହାରି ଦୃଷ୍ଟି ପଡ଼ୁନାହିଁ । ସେଇଟା ଗେହ୍ଲେଇ ହୋଇ ଜାଣେ ନାହିଁ । ଗେଲ କଲେ ମୁହଁ ବୁଲେଇଦିଏ । କୋଳ କଲେ ଛାଟିପିଟି ହୁଏ ।

ଇନ୍ଦ୍ର ମୁଗ୍ଧ-ନେତ୍ରରେ ପିଲା ଦୁଇଟିଙ୍କର ମୁଣ୍ଡରୁ ଗୋଡ଼ଯାଏ ଚାହିଁଲେ । ସେ ଅନୁଭବ କଲେ ଯେ, ଅନୁପାର ଶାଢ଼ି ପିନ୍ଧିବା ଲୋଡ଼ା

ହେଲଣି । ପାଚିଲା ଅଟେଓସାରିଆ ଗୋଲାପୀ ନେଲନ୍‌ର ଉତ୍ତରୀୟଟି ତାକୁ ଖାସା ମାନୁଛି; ତଥାପି ଦାମିକା ଶାଢ଼ି ଖଣ୍ଡିଏ ପିନ୍ଧିଲେ ଆହୁରି ସୁନ୍ଦର ଦିଶନ୍ତା ।

ଅନୁପା ଗେହ୍ଲେଇ କହିଲା, ଆମେ ସିନେମା ଦେଖିବାକୁ ଯିବୁଁ । ଭଲ ସିନେମା । ବାଟ ବି ଖୋଜ । ବଡ଼ଭାଇ ଆମ ସଙ୍ଗରେ ଯିବାକୁ ରାଜି ହେଉନାହାଁନ୍ତି । ତୁ ଯିବୁ ତ ଚାଲ । ସୁରୂପା ଓ ସାନନ୍ଦକୁ ଆଈ ସମ୍ଭାଳିବେ । ରଥିଆ ଖେଳାଇବ ।

ନାଥମିସ୍ତ୍ରୀ ଆସିଛନ୍ତି ମା ! ମୋର କେତେ କାମ ଅଛି । ମୁଁ ଯାଇ-ପାରିବି ନାହିଁ । ସାନ ପିଲା ଦୁଇଟା ରଡ଼ି ଛାଡ଼ିବେ । ମାଈଁ ତାଙ୍କର ମାଳା ଧରି ଭୁଟ୍‌ଭାଟ୍ ହେବେ ନା ପିଲାଙ୍କ ଉପରେ ନଜର ଦେବେ ? ଯା, ବଡ଼ମଲୁ କହିବୁ, ମୁଁ କହୁଛି, ସେ ତମ ସଙ୍ଗରେ ଯିବ ।

ପିଲାଙ୍କ ଅଈ, ଆନନ୍ଦଙ୍କର ସାନମାଈଁ ଜଞ୍ଜାଳ ଛଡ଼ା ଆଉ କିଛି ନୁହନ୍ତି । ମାନ୍ୟଗଣ୍ୟ ଲୋକ । ଆଶ୍ରା ଥାଇ ମଧ୍ୟ ସେ ନିଆଶ୍ରୀ । ନିଜ ଗୁଣରୁ ତାଙ୍କର ଏ ଅବସ୍ଥା । ପାଚିଲା ଆମ୍ବପରି ତାଙ୍କର ମୋଟାଳିଆ ଦେହର ରଙ୍ଗ । ମୁହଁଟି ନିଖୁଣ । ନାକ ସାମାନ୍ୟ ଚଟକା । ବୟସ ପଚାଶ ପାଖେଇ ଆସିଲା । ମୁଣ୍ଡର କେଶ ସେମିତି କଳା ଅଛି । ଯତ୍ନ ଅଭାବରୁ ଛୁଣ୍ଡି ଛୁଣ୍ଡି ମୁଠାଏଁ ।

ତାଙ୍କର ପ୍ରକୃତି ହେଲା, ସେ ସମସ୍ତଙ୍କର ସବୁକଥା ଗମ୍ଭୀର ହୋଇ ଶୁଣନ୍ତି, କିନ୍ତୁ ତାଙ୍କୁ କିଛି ନ ପଚାରିଲେ ସେ ମୁହଁ ଖୋଲନ୍ତି ନାହିଁ । ଯେଉଁ ଉତ୍ତର ସେ ଦିଅନ୍ତି, ଏତେ ସାବଧାନ ଭାଷା ଯେ, ସେଥିରେ ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ ।

ତାଙ୍କର ନାମ ମୋତିମାଳା ।

ଆନନ୍ଦଙ୍କର ଜନ୍ମକଲା ମାଆଙ୍କ ତଳେ ଦୁଇ ଭାଇ ଜନ୍ମିଥିଲେ । ମାଗୁଣି ଓ ନିଶାମଣି । ସେମାନଙ୍କର ନିଅଣ୍ଟିଆ ସଂସାର । ମାଗୁଣି କେଉଁ ଜମିଦାରଙ୍କର ପିଆଦା କାମ କରୁଥିଲେ । ନିଶାମଣି ପାଠ ପଢ଼ି କେଉଁଠି ସ୍କୁଲ ମାଷ୍ଟର ଥିଲେ ।

ବଡ଼ଭାଇଙ୍କର ଗୃହଏ ପିଲା । ନଣାମଣିଙ୍କର ଗୋଟିଏ ବୋଲି ଝିଅ ରତ୍ନମାଳା । ଦୁଇଭାଇ ଏକାଠି ଥିଲେ । ଦୁଃଖେ କଷ୍ଟେ ସଂସାର ଚଳାଉ-ଥିଲେ । ଇଏ ମୋ ପିଲା, ସିଏ ତୋ ପିଲା ଏ ଧାରଣା କାହାର ମନରେ ସ୍ଥାନ ପାଇ ନ ଥିଲା । ଝିଅମାନେ ଖୁସିବାସିଆ ଘରେ ବାହା ହୋଇଗଲେ । ପୁଅଟି-ମାନେ ପାଠ ପଢ଼ି ଉପରକୁ ଉପରକୁ ଉଠୁଥିଲେ । ପାଖ ଗ୍ରାମରେ ଗୋଟିଏ ଯୋଗ୍ୟ ପିଲା ଦେଖି ରତ୍ନମାଳାକୁ ବାହା କରାଇଦେଲେ । ପିଲାଟି ସରକାରୀ ଚାକରିଆ, ରେଭିନ୍ୟୁ ଇନସ୍ପେକ୍ଟର ।

ଦୁର୍ଘଟଣାରେ ନଣାମଣି ସେପୁରକୁ ଗଲେ । ରାତି ଅଧ । ଅନ୍ଧାର ଚକମକ । ଆଷାଢ଼ ମାସର ବର୍ଷା । କବାଟ ଖୋଲି ଘର ଭିତରୁ ପଦାର ବାରଣ୍ଡାରେ ଯେଉଁ ପାଦଟି ସେ ପ୍ରଥମେ ପକାଇଲେ, ସେହି ପାଦରେ ଲାଗିଲା ସାପର ଚୋଟ । ଆହା, କେଡେ ଦୁର୍ଯୋଗ !

ଦୁଃଖର କୋପ କାଳକ୍ରମେ ଲାଘବ ହୁଏ । ଲୋପ ହୁଏ । ଚଳନ୍ତା ଜୀବନ ତା'ର ନିଜ ବାଟ ଖୋଜିନିଏ । ସେ ବାଟ ଆଗେଇଯାଏ ।

ମୋତିମାଳାଙ୍କର ଝିଅ ରତ୍ନମାଳାର ଗୋଟିକ ପରେ ଗୋଟିଏ ସନ୍ତାନ ହେବାକୁ ଲାଗିଲେ । ମୋତିମାଳା ଥରକୁ ଥର ଜୋଇଁଙ୍କ ଘରକୁ ଯାଇ ଝିଅ ପାଖରେ ମାସ ମାସ ରହିଲେ । ଝିଅର ଯତ୍ନ ନେଲେ । ନାତି-ନାତୁଣୀଙ୍କର ସେବା କଲେ । ଖବର ପାଇ ତାଙ୍କର ବିଧବା ସମୁଦୁଣୀ ଗ୍ରାମ ଛାଡ଼ି ରେ-ରେ-କାର କରି ପୁଅଙ୍କର ଚାକିରି-ଗାଁ ଖୋରଧାରେ ପହଞ୍ଚିଲେ ।

ଦୁଇ ସମୁଦୁଣୀଙ୍କର ଭଲରେ ଭଲରେ ଭେଟ । କୁଶଳମଙ୍ଗଳ । କୋଳାକୋଳି । ମୋତିମାଳା ଜାଣିଲେ ଯେ, ତାଙ୍କର ଜୀବନଟି ଝିଅ ପାଖରେ, ନାତିନାତୁଣୀମାନଙ୍କ ସେବାରେ କଟିବ । ସେ ତାଙ୍କ ସମୁଦୁଣୀଙ୍କ ପରି କେଉଁ ଗୁରୁଦେବଙ୍କ ପାଖରୁ ଦୀକ୍ଷା ନେଲେ । ମୁଣ୍ଡରେ ତିଳକ-ଚନ୍ଦନ ଲଗାଇ ମାଳା ଧରି ହରିନାମ ଜପିଲେ ଇହକାଳରେ ଶାନ୍ତି ଓ ପରକାଳରେ ମୁକ୍ତି ଲଭିପାରିବେ ।

ମୋହନମାଳା ତାଙ୍କର ସମ୍ଭୁଦୁଣୀଙ୍କର ପରାମର୍ଶ ପ୍ରକାରେ ତାଙ୍କର ଗ୍ରାମରେ ଥିବା ଭୂ-ସମ୍ପତ୍ତି ଜୋଇଁଙ୍କ ନାମରେ କବଲା କଲେ । ଜାଣି, ନିଜର ଚୂଟିକୁ ସମ୍ଭୁଦୁଣୀଙ୍କ ହାତରେ ଧରାଇଦେଲେ ।

ଧୀରେ ଧୀରେ ଆରମ୍ଭ ହେଲା ଦୁଇ ସମ୍ଭୁଦୁଣୀଙ୍କ ମଧ୍ୟରେ ଖୁମ୍ପା-ଖୁମ୍ପି । କଥା କଟାକଟି । ଝଟାପଟା କଜିଆ । ଜୋଇଁ କରୁଣାକର ଓ ଝିଅ ରତ୍ନମାଳା ଅଡୁଆରେ ପଡ଼ିଲେ । ଅତି ଛୋଟଛୋଟ କଥାରୁ କଳି ଆରମ୍ଭ ହୁଏ । ଅସଂଯତ, ଅଭଦ୍ର, ଅଶ୍ଳୀଳ ଭାଷା ।

ଝିଅ-ଜୋଇଁ କାକୁସ୍ଥ ହୁଅନ୍ତି । କୌଣସି ପକ୍ଷ ନେବାକୁ ସେମାନେ ସାହସୀ ହୁଅନ୍ତି ନାହିଁ । ଗୋଡ଼ହାତ ଧରି ପାଟିତୁଣ୍ଡ ନ କରିବାକୁ ଅନୁରୋଧ କରିବା ଛଡ଼ା ଅନ୍ୟ ଉପାୟ ତାଙ୍କର ନ ଥାଏ ।

ରାଗ ଶାନ୍ତ ହେଲେ, ଖେମଟା-ନାଚରେ ତାଙ୍କର ହାତଗୋଡ଼ ଅବଶ ହେଲେ, ସେ କ୍ଷାନ୍ତ ହୁଅନ୍ତି ।

ବୋହୂ ଗୋ ଇନ୍ଦିରା ! କିଏ ତାଙ୍କୁ ପାରିବ ? କଥାରେ, ବଚନକାରେ କାଳିଗି ନାଚ । ଯେଉଁ ପଦଗୁଡ଼ାକ ତାଙ୍କ ତୁଣ୍ଡରୁ ଖସେ, ଛି ଛି ଗୋ ବୋହୂ, କାନରେ ହାତ ନ ଦେଲେ ଶୁଣିବାକୁ ଲାଜ ମାଡ଼ିବ ।

ବଡ଼ମାମୁଁଙ୍କ ପାଖକୁ ଚାଲିଯାଅ ନାହିଁ ?

ଗଲେ ବଡ଼ଜାଆ ଘର ମନା କରନ୍ତେ ନାହିଁ । କେତେଥର ଯେ ନ ଯାଇଛି, ତା ନୁହେ । ଯାଇଛି । ଜାଆ, ପୁତୁରା ଝିଆରୀ ଓ ପୁତୁରାବୋହୂଙ୍କର ସ୍ନେହଭକ୍ତି ପାଇଛି । ସେମାନଙ୍କୁ ମୁଁ ନିନ୍ଦିବି ନାହିଁ । ସେମାନଙ୍କର ସ୍ନେହ-ଭକ୍ତି ଓ ଭଦ୍ର ବ୍ୟବହାର ମୋ ମନରେ ସହସ୍ର କଣ୍ଟା ଫୋଡ଼ିଲା ପରି ଲାଗେ । ଯେଉଁ ଘରେ ମୁଁ ସୁଖଶାନ୍ତିରେ ବୋହୂପଣିଆ କରିଥିଲି, ବଡ଼ ଜାଆଙ୍କୁ ବଡ଼ଅପା ପରି ମଣି ତାଙ୍କର ଲୁହାର ବୋଲର ହୋଇଥିଲି, ପୁତୁରା-ଝିଆରୀ-ମାନଙ୍କୁ ପୁଅଝିଅଙ୍କଠାରୁ ଅଧିକ ମଣି ପାଳିଥିଲି, ବଢ଼ାଇଥିଲି, ସେହି ଘରେ ମୁଁ ଦିନ ପାଞ୍ଚଟା ରହିପାରେ ନାହିଁ । ଛଟିପିଟି ହୋଇ ମୋ ମନକୁ ମୁଁ ଝିଅଘରକୁ ବଳେ ଫେରିଯାଏ ।

କାହିଁକି ମାଇଁ ? ତମର ଗାଁ ଘରେ ତମର ଭାଗ ଅଛି । ରହିବାକୁ କିଏ ବାରଣ କରିବ ?

ଭାଗ ଅଛି ଲୋ ମା ! ସେଇ ଭାଗକଥା ମୁଁ କେବେ ମନକୁ ଆଣେ ନାହିଁ । ମୋର ଭାଗ ନ ଥିଲେ ବି, ମୁଁ ଜାଣେ, ବଡ଼ଜାଆଙ୍କ ପାଖରେ ରହିବାକୁ ମନକଲେ ସେମାନେ କେହି ବାରଣ କରିବେ ନାହିଁ । ମୋ ଲାଜ ମତେ ଖାଇଗୋଡ଼ାଏ । ସେମାନଙ୍କୁ ନ ଜଣାଇ ସମୁଦୁଣୀଙ୍କର ବୋଲ ମାନି ଜମିର ଆଠଅଣା ଅଂଶ ମୁଁ ଜୋଇଁଙ୍କ ନାମରେ କବଲା କଲି । ନିଜେ ସମୁଦୁଣୀ ପାଇଁ ଦେଢ଼ଶୁରଙ୍କ ସଙ୍ଗେ କଚାଳି କଲେ । ଗାଁ-ପଞ୍ଚାଇତ ବସାଇଲେ । ଜମି ବଣ୍ଟାଇ କରାଇ ଦଖଲ ନେଲେ । କହ ତ ମା, ମୋର ଆଉ କେଉଁ ମୁହଁ ରହିଲା ?

ସତକଥା ମାଇଁ !

ଅବିବେକପଣ କଲି ଲୋ ମା, ନିଜର ଜିଭ ମୁଁ ନିଜ ହାତରେ କାଟିଲି । ଜୀବନଟା ଖାଲି ଛଟପଟ ହେଉଛି । ରହିବାକୁ ଗୃହ ନାହିଁ, ଆପେ ଆପେ ବି ଯାଉନାହିଁ । ଝିଅ ଘରେ ଝିଅ ସିନା ଆପଣାର, ଝିଅ ନେଇ ଜୋଇଁ ସିନା ଆପଣାର, ଆଉମାନେ ଯେ ପର । ପରଘରର ବୋହୂ ହେଲା ପରେ ଝିଅର କି କଥାମତ ଅଛି ?

ମାଇଁଙ୍କର କହିଁ ଓ ଅଶ୍ରୁଳ ନିଶ୍ୱାସରେ ଇନ୍ଦିରାଙ୍କର ମନ ତରଳି-ଥିଲା । ମୋତିମାଳା ଆଖିରେ ଲୁହଭରି କହିଥିଲେ, ମାଇଁ ହୋଇ ଭଣଜାଙ୍କର କେବେ ମୁଁ କିଛି କରିନାହିଁ । ମୋ କପାଳ ତ ଫାଟିଲା । କି ସ୍ନେହ ମୁଁ ଦେଖାଇ ପାରିଥାଆନ୍ତି ଲୋ ମା ? ତଥାପି, ଉକ୍ତ ତ ! ଠାକୁରେ ଆନନ୍ଦକୁ ସୁଖରେ ରଖିଲେ । ସେ ଆହୁରି ବଡ଼ ହେବେ । ସେତକ ତାଙ୍କର କଥାମତ ନୁହେଁ, ତୋର । ରୂପରେ, ଗୁଣରେ, ବୁଦ୍ଧି ଓ ଚଳନରେ, ପୁଣି ନିର୍ମଳ ମନର ଚଟିଲାପଣରେ କିଏ ତୋର ସମକକ୍ଷ ହେବ ? ମନ ଯେମିତି ଫଳ ଲୋ ମା ! ଠାକୁରେ ତୋର ଅଧିକରୁ ଅଧିକ କରିବେ ।

ବିଧବା-ଆଖିରେ ଲୁହ ଦି'ଧାର, ତାଙ୍କର ନିର୍ଗୁଣପଣିଆର କଥା କେଇପଦ ଇନ୍ଦିରଙ୍କୁ ମୁଗ୍ଧ କରିଥିଲା । ସେହି ନିଜଭୁଲ ମୁହୂର୍ତ୍ତରେ ତାଙ୍କର ତୁଣ୍ଡରୁ ବଚନ ଖସିଲା, କାହିଁକି ଆଖିକୁ ଲୁହ ଆଣୁଛ ମାଇଁ, ସେ କ'ଣ ତମର ଘର ନୁହେଁ କି ? ତମର ସ୍ନେହ ଓ ଯତ୍ନରେ ନାତୁଣୀ ତିନୋଟିଙ୍କୁ ତମେ କିଣିନେଇଛ । ଯେତେଦିନ ମନ ଏଇଠି ରହ । ନାତିନାତୁଣୀମାନଙ୍କ ସଙ୍ଗେ ଖେଳୁଥାଅ ।

ମୋତିମାଳା କହିଲେ, ରହିବାକୁ କଅଣ ମନ ହେଉନାହିଁ କି ? ତୋର ଏଇ ଝିଅ ଅନୁ, ଘର ସ୍ନେହଲକ୍ଷ୍ମୀ । ଏତେଟିଏ ହେଲାଣି, ତାର ପିଲାଳିଆ ଢଙ୍ଗ ଯାଇନାହିଁ । ଆଈ ଆଈ ହୋଇ ମତେ ଉଛନ୍ନ କରୁଛି । ନରୁଟି କୋଳରେ ପଶୁଛି । ମୋ ଚୂଟି କେବଳ ସେ ଦୁହିଁଙ୍କର ଖେଳର ସାମଗ୍ରୀ ହୋଇଛି । ମାଳକୋଥଳ ତ ସାନନ୍ଦର । ସମସ୍ତେ ମତେ ସ୍ନେହର ଡୋରିରେ ବାନ୍ଧିଛନ୍ତି ।

ଇନ୍ଦିରା ହସିଥିଲେ ।

ମୋତିମାଳା ମାଈଁ ପୁଣି କହିଲେ, ରତନ ମୋତେ କ'ଣ ଏଠି ବେଶୀ ଦିନ ରଖେଇଦେବ ? ପୁଣି ସେ ଚିଠି ଲେଖେଇ ବ୍ରଣନସ୍ଥମ ପ୍ରକାଇ ପାଖକୁ ଯିବାକୁ କହିବ । କଅଣ କରିବ ? ରତନ ଓ ତାର ପିଲାଟିମାନେ ବାର ହଇରାଣ ହେଉଥିବେ । ଯିବାକୁ ତ ହେବ ।

ତମ ସମୁଦୁଣୀ କେବେ ଥିବେ ?

ଆଜ୍ଞାନ୍ତୁ । ସେ ଯେତିକି ଗହଳିଆ ସେତିକି ସ୍ନେହୀ ଗୋ ବୋହୂ ! ତାଙ୍କ ତୁଣ୍ଡଟା ଯେମିତି ସାହାଣ, ମନଟା ସେମିତି କଅଁଳ । ମୋ ଝିଅ କହେ, ରାଗ ଓ ଅଭିମାନରେ ମୁଁ ଚାଲିଆସିଲେ ଦିନେ ଦୁଇଦିନ ନିଜ ଉପରେ ସେ ଗରଗର ହୁଅନ୍ତି । ସେଇଠୁ କଅଣ ଗୋଟାଏ ଆଳ କରି ଗ୍ରାମକୁ ଫେରି-ଯାଆନ୍ତି । ଗ୍ରାମରୁ ଚିଠି ଲେଖନ୍ତି ରତ୍ନମାଳାକୁ, ତମ ପିଲାଏ ବାର ହଇରାଣ ହେଉଥିବେ ଗୋ ବୋହୂ, ତମ ବୋଉଙ୍କୁ ଲେଖ ସେ ପାଖକୁ ଆସନ୍ତୁ ।

ଅଧିକ ଗପ ମାଙ୍କ ମୁହଁରୁ ଶୁଣିବାକୁ ଇନ୍ଦ୍ରଙ୍କର ଧୈର୍ଯ୍ୟ ନ ଥାଏ । ଜଣକୁ ଆଉ ଜଣେ ସାହା । ଯେତେବେଳେ ମନ ସେ ରହନ୍ତୁ, ଝିଅଙ୍କ ପାଖରୁ ଚିଠି ପାଇ ତାଙ୍କ ମନକୁ ପୁଣି ସେ ଗୁଳାଯାଉନ୍ତୁ । ବଳେ ସେ ଫେରିବେ । ନୋହିଲେ, ଲୁଚେଇ ଲୁଚେଇ ଅନୁପା ଏଣୁ ଚିଠି ଲେଖିବ । ଝିଅଘରେ ତାଙ୍କର ଆସନ ଟଳାଇବ ।

ଅନୁପା ତାଙ୍କୁ ଭଲପାଏ । ଆଈ କୋଳ ଏକା ତାଙ୍କୁ ସେ ଜାଣେ । ଗେଲ ହୁଏ, ଗେଲ କରେ । ତାଙ୍କ ତୁଣ୍ଡରୁ ପୁରୁଣାକାଳିଆ ପୁରାଣ କଥା ଶୁଣେ । ସବୁ-ପ୍ରକାର ସୁଆଙ୍ଗ, ପାଲା, ଢଗଢମାଳି, ଝିଅଙ୍କୁ ରଜାପୁଅର ସ୍ନେହର କଥା ।

ବେଳେବେଳେ କାର୍ଯ୍ୟବ୍ୟସ୍ତ ଇନ୍ଦ୍ରଙ୍କ କାନରେ ବାଜଯାଏ ଅନୁପାର ଖିଲଖିଲ ହସ । ନିରୁପାର ଆକଟିଲା କଥା—ରହ ମ ଅପା, ଏତେ କାହିଁକି ହସୁଛୁ ? ଆଈ କ'ଣ କହୁଛନ୍ତି ଶୁଣ । ଆଈ ମ, ମାଳୁଣୀ ଗଲେ ପରା ନବଖଣ୍ଡ ହୁଏ, ସେ ରଜାପୁଅଟା କେମିତି ଜୁଆସ ଭିତରକୁ ଗଲା କହୁନୁ ?

ତୁ ଭାରି ଓଲମୀ ଲୋ ନିରୁ ! ମାଳୁଣୀ ବୁଢ଼ୀକୁ ସେ ରଜାପୁଅ ମାଉସୀ କଲେ । ତାକୁ ଧନରତ୍ନ ଦେଲେ । ତା ପାଖରୁ ଧଳାଫୁଲଟିଏ ଆଉ କଳାଫୁଲଟିଏ ନେଇଥିଲେ । କଳାଫୁଲ ଶୁଙ୍ଘିଲେ ମଣିଷ ଅଦୃଶ୍ୟ ହୁଏ । ସେ ସମସ୍ତଙ୍କୁ ଦେଖିପାରେ, ସମସ୍ତଙ୍କର କଥା ଶୁଣିପାରେ, ତାକୁ କେହି ଦେଖି ପାରନ୍ତି ନାହିଁ । ତା ହସ, ତା କଥା ସମସ୍ତେ ଶୁଣିପାରନ୍ତି ।

ଅପା ଯାହା କହିଲା ସତ କି ଆଈ ? ସେ ଫୁଲର ନାଁ କଅଣ ? କେଉଁଠି ମିଳେ ସେ ଫୁଲ ?

ତୋର ଗୋଟିଏ ଲୋଡ଼ା କି ନିରୁ ?

ମୋତିମାଳା ନିରୁପାକୁ କୋଳକୁ ଟାଣିଲେ । ସେ ତ ହସନ୍ତି ନାହିଁ । ଗମ୍ଭୀର ହୋଇ କହିଲେ—କହିବି, କହିବି ସେ ଫୁଲର ନାମ । ସେ ଫୁଲ କେଉଁଠି ମିଳେ ତା ବି କହିଦେବି । ତୁ ଆଉ ଟିକେ ବଡ଼ ହ । ଅନୁପା ପରି ତୁ ପାଠ ପଢ଼ି ପ୍ରଶଂସା ପା'ଆ । ସେଇଠୁ ତତେ କହିବି ।

ଅନୁପମା କହୁନା, ଯେଉଁ ଧଳାଫୁଲ ଶୁଙ୍ଘିଲେ ଅଦୃଶ୍ୟ ମଣିଷ ନିଜରୂପ ଧରେ, ତା ନାଁ ମୁଁ ଜାଣିଛୁ ଆଉ ! ତୁ ନ କହିଲେ ନାହିଁ । ସେ ଫୁଲ ମହମହ ବାସେ । ଜାଇ, ଯୁଇ, ମଲ୍ଲୀ, ମାଳତୀ ନୁହେଁ, ଶିଶୁଷ କ ହେନା ବି ନୁହେଁ ।

ତେବେ ସେ କଅଣ ଲୋ ଛଇ-ଛଟକୀ ନାତୁଣୀ ଟୋକୀ ?

ତୁ ଆଗ କଳାଫୁଲର ନାମଟି କହ, ସେଇଠୁ ମୁଁ କହିବି ।

ଆଲୋ ନାତୁଣୀ ! କହିବଅନ୍ତି ଟେ, କହିବାକୁ ଡର ଲାଗୁଛି । ହେଇ ଦେଖ୍, ହାତରେ ଖଣ୍ଡେ ବଜ୍ର ଧରି ମୋ ଭଣଜାଙ୍କର ଭଣଜା ଖଣ୍ଡିକ, ଚଉହାତିଆ ମରଦଟାଏ ହେଲାଣି ସେ, ଆଡ଼ବାଇଆ ଟୋକା-ବାବାଜି, କେମିତି ଠିଆ ହୋଇ ତବତବ କରି ଅନେଇଛି ! କଳାଫୁଲର ନାମ ଯଦି ସେ ଜାଣିବ ନା, ଶୁଙ୍ଘିଦେଇ ଅଦୃଶ୍ୟ ହୋଇ, ଗୋଟାଏ ନୁହ, ଶହେ କ ହଜାରେ ଉଆସ ଭିତରେ ଦିନ ଦି'ପହରେ ମନକଲେ ସେ ପଶିପାରିବ !

ଭିଳଘର ପଲଙ୍କ ଉପରେ ବସି ଇନ୍ଦ୍ର ପ୍ରସାଧନରେ ବ୍ୟସ୍ତ । ନୂଆ ଫେସନରେ ନିଜକୁ ସଜାଇବେ । ମୂଲ୍ୟବାନ୍ ଗହଣାରେ ମଣ୍ଡିତ ହେବେ । ଜଣେ ମନ୍ତ୍ରୀଙ୍କ ଝିଅର ବାହାଘର । ନିମନ୍ତ୍ରଣ ପତ୍ର ତଳେ ଗ୍ରେଟ ଗ୍ରେଟ ସୁନେଲି ଅକ୍ଷରରେ ଲେଖା ହୋଇଛି—ଲୌକିକତା ବର୍ଜନ କରିବେ ।

ଏହାର ମର୍ମ ବୁଝୁଛ ଇନ୍ଦ୍ର ?

ମୁଁ କଣ ପିଲାଛୁଆ ହୋଇଛି ଯେ, ମତେ ବୁଝାଇବ ?

ହଜାରଟି ଟଙ୍କାର ବେପାର !

ଦେବ ତ ?

ସାମାନ୍ୟ କଥା । ସେଇମାନେ ଆମର ଠାକୁର । ବର ଦେଇ-ପାରନ୍ତି, ଅକାଳରେ ପଡ଼ିଲେ ଘଣ୍ଟ ଘୋଡ଼ାଇପାରନ୍ତି । ଫଳେ ପୁଷ୍ପେ ସେମାନଙ୍କର ପୂଜା କରିବାକୁ ହେବ । ଠାକୁରେ କ'ଣ ପୂଜା ଗ୍ରହାନ୍ତି, ନା ତମର ହୋଗଗ୍ରତ ଫଳଫୁଲକୁ ଅନେଇବସନ୍ତି ? ନା, ନା, ଇନ୍ଦ୍ର ! ସେମାନେ

ସୁହାନ୍ତ ଭକ୍ତ, ଅଚଳା ଭକ୍ତ । ଖାଲି ହାତରେ କପଟ ଭକ୍ତ ଦେଖାଇହେବ ! ହଜାରେ ଟଙ୍କା ଗୁଣା ହେଲେ ମତେ କହିବ । ସମୁଦ୍ର ହାଡ଼ବନ୍ଧୁଙ୍କ ସଙ୍ଗରେ ମୁଁ ଦିନ ଏଗାରଟାରେ ଆମ ଟ୍ରକ୍‌ରେ କେତେ ଜିନିଷ ବୋଝେଇ କରି ଯାଉଛି । ହାକିମଙ୍କ ହୁକୁମ ।

ମୁଁ ଯିବି କପରି ? କେତେବେଳେ ଯିବି ?

ରାତି ନଅଟା ସରିକି ପହଞ୍ଚିଲେ ହେବ । ସମୁଦ୍ରଙ୍କର ଜହ୍ନଗାଡ଼ି ମାଛ ଆଣିବାକୁ ବାଲୁଗାଁ ଯାଇଛି । ସେ ଫେରିବଣି । ସେଇଥିରେ ତମେ ଆଉ ତମ ସମୁଦୁଣୀ ଚାଲିଯିବ । ବାଉରିଆ ଗାଡ଼ି ଚଳାଇନେବ । ଅନୁପାକୁ ସଙ୍ଗରେ ନେଇଯିବ ।

ଶୁଣ, ମୁଁ କେବେ ଆଇଁଷିଣିଆ ଗନ୍ଧ ଭଣଭଣ ଖୋଲା ଜହ୍ନରେ ଯିବିନାହିଁ । ତମର କାର୍ କଣା କେବେ ଆଉ ହେବ ? ଭେକ ଥିଲେ ସିନା ଭିକ ମିଳିବ ! ସମୁଦୁଣୀଙ୍କ କଥା ନଆସୁ । ସେ ତ ନୂଆ ଡାହାଣୀ ।

କାର୍-ବ୍ୟବସାୟୀଙ୍କ ତାଲିକାରେ ମୋର ନାମ ବହୁତ ତଳେ ଇନ୍ଦିରା ! ମୋ ପାଳି ପଡ଼ିବାକୁ ବର୍ଷଟିଏ ଲାଗିପାରେ । ବ୍ୟବସାୟୀ ମହାପାତ୍ରଙ୍କୁ କିଛି ହାତ-ଗୁଞ୍ଜା ଦେଲେ, ଗାଡ଼ିଟା ଜଲଦି ମିଳିପାରନ୍ତା ଯେ, ସିଆଡ଼କୁ ମୁଁ ଦୃଷ୍ଟି ଦେଇନାହିଁ । ବାହାବେଳେ ବାଇଗଣ ରୋଇଲେ କି ଲାଭ ?

ଲାଭକ୍ଷତି କଥା ତମେ ବୁଝୁଥାଅ । ମାଛବୁହା ଗନ୍ଧ ଭଣଭଣ ଖୋଲା ଜହ୍ନରେ ମୁଁ କେବେ ଯିବି ନାହିଁ ।

ଆନନ୍ଦଚନ୍ଦ୍ର ଭୁବନେଶ୍ୱର ଯିବା ଆଗରୁ ତାଙ୍କର ଆଉ କେଉଁ ବନ୍ଧୁଙ୍କର କାର୍ ଖଣ୍ଡେ ଯୋଗାଡ଼ କରି ଯାଇଛନ୍ତି । ଯୋଗାଡ଼ୀ ବାଉରିବନ୍ଧୁ ଯୂଥିକାଙ୍କୁ ସେହି ଗାଡ଼ିରେ ନେଇ ଠିକ ରାତି ନଅଟାରେ ଆସି ପହଞ୍ଚିବ । ଇନ୍ଦିରା ସେଥିରେ ଯିବେ ।

ବଜାରକୁ ଯାଇ ତିନଶ ପଚସ୍ତରି ଟଙ୍କା ମୂଲ୍ୟର ମେଘୁଆ ରଙ୍ଗର ବନାରସୀ ଶାଢ଼ି ସେ କିଣି ଆଣିଛନ୍ତି । ସେଥି ଶାଢ଼ିକୁ ମନାଇ ଓଢ଼ଣୀ । ଧଳା ପଥର ବସା ଗୁଡ଼ିଭଡ଼ିଆ ହାରଟି ତ ଏକା ପଡ଼ିଲା ହଜାରରୁ ଅଧିକ । ଆନନ୍ଦ ଯେଉଁ ଦୁଇ ହଜାର ଟଙ୍କା ଦେଇଯାଇଥିଲେ ସେଥିରୁ ଟଙ୍କା ଗୁଡ଼ିଏ ବଳିପଡ଼ିଛି । ସେତକ ଇନ୍ଦିରାଙ୍କର । ସାପ ଟେକଲେ ହାତ ଚକଣ ।

ଯୂଥିକାଙ୍କୁ ସେ ସଙ୍ଗରେ ନେଇ ବଜାରକୁ ଯାଇଥିଲେ । ତାଙ୍କ ପାଇଁ ଏକା କଚ୍ଛର ଦରବ, ଖାଲି ରଙ୍ଗ ଓ ଡିଜାଇନ୍ ଭେଦ । ଭାରି ମଜାର କଥା । ଶାଢ଼ି ଓ ଓଢ଼ଣୀ କିଣାହେଲା ମହାଜନ ରାମକୁମାରଙ୍କର ନୂଆ ଦୋକାନରୁ । ସେ ନିଜେ ଗଦାଗଦା ଶାଢ଼ି ଖୋଲି ଦେଖାଇଲେ । ରଙ୍ଗ ବାଛିଲେ । ଯେଉଁ ଭଦ୍ରତା ଦେଖାଇଲେ, ଯେପରି କୃତକୃତ୍ୟ ହେଲେ, ଇନ୍ଦିରା ନିଜେ ବିସ୍ମିତ ହେଲେ । ବାଡ଼ିରବନ୍ଧୁ ସଙ୍ଗରେ ଥିଲା । ସେ ଚିହ୍ନାଇ ଦେଲା ପରା ।

ରାମକୁମାର ଯେଉଁ ସମ୍ମାନ ଦେଖାଇଲେ, ଇନ୍ଦିରା ମନେ ମନେ ଗର୍ବିତ ହେଲେ । ମନେ ପଡ଼ିଯାଉଛି । ତାଙ୍କର ମହୁବୋଳା, ଖୁସାମଦିଆ ନେହୁରା ବଚନ—କେଉଁଠି ଭାଗ୍ୟ ମୋର, ମା ଲକ୍ଷ୍ମୀମାନଙ୍କର ପାଦ ପଡ଼ିଲା । ଆନନ୍ଦ-ବାବୁ ଆଉ ହାଡ଼ବନ୍ଧୁବାବୁ ଆମର ପୁରୁଣା ବନ୍ଧୁ । କିଏ ତାଙ୍କୁ ନ ଜାଣେ ଏ ସହରରେ ? ଏ ଦୋକାନ ଆପଣମାନଙ୍କର ମା ! କାହା ହାତରେ ଖବର ପଠାଇଥିଲେ, ପସନ୍ଦ ପାଇଁ ମୁଁ କେତେ ଜାତିର ଶାଢ଼ି ଘରକୁ ନେଇ ଦେଖାଇଥାଆନ୍ତି ।

ରିକ୍ସାରେ ବସିଲା ପରେ, ନିଜେ ସେ ପୁଡ଼ା ହଓଟି ଆଣି ହାତକୁ ବଢ଼ାଇଦେଇଥିଲେ । ନମସ୍କାର କରିଥିଲେ ।

ଅତୀତର ଘଟଣା ସପନ ପରି ମନେ ହେଉଥିଲା । ବୋଧହୁଏ କେବେ ଘଟି ନ ଥିଲା ।

ମୁହଁରେ ପାଉଡରର ପରଖ ଦେଉଣ୍ଣ ବଡ଼ ଆଇନାରେ ପ୍ରତିଫଳିତ ନିଜର ଅଧା-ଫୁଙ୍ଗୁଳା ଦେହକୁ ଗୁହିଁ, ନିଜକୁ ନିଜେ ସେ ପସନ୍ଦ କରୁଥିଲେ। ବଗୃରୁଥିଲେ, ବୟସର ଧାରଣା ପେଟରୁ ଜନମିଲା ଛୁଆଗୁଡ଼ିକ ମନରେ ପୁଟନ୍ତି। ଅନୁପାକୁ ସତର ଗ୍ଳଲା। ସେ ଆଖି-ଦୁରୁଶିଆ ହେଲାଣି।

ବଡ଼ଘର ଝିଅଙ୍କର ବାହାଘର ଦେଖିବାକୁ ସେ ମନ କରିଥିଲା। ଇନ୍ଦିରା ତାକୁ ଉତ୍ସାହିତ କଲେ ନାହିଁ। ଅନୁପା ବୁଝିଗଲା ଯେ, ପରର ଗାଡ଼ିରେ ଭୁବନେଶ୍ୱରରୁ ଫେରୁଣୁ ରାତି ଅଧ ହୋଇପାରେ। କେଜାଣି ରାତି ପାହାନ୍ତା ହୋଇପାରେ। କାହିଁକି ସେ ଅନିଦ୍ରା ରହିବ ?

ମାଇଁ-ଆଣ୍ଡିଙ୍କୁ ବେଢ଼ିଯାଇଛନ୍ତି ତିନୋଟି ଝିଅ। ସେଇ ତ ଜାଣ ତାଙ୍କର ଆଖି !

ନିଜର କହିଲେ ଅଛନ୍ତି ବୁଢ଼ୀ ଜେଜମା, ହୁଅନ୍ତୁ ପଛେ ସେ ସାବତ। ସାନପୁଅ ବିନୋଦଚନ୍ଦ୍ରଙ୍କ ପାଖରେ ସେ ବରାବର ରହନ୍ତି। ବୁଢ଼ୀ ବେଶି ଚଳପ୍ରଚଳ ହୋଇପାରୁନାହାନ୍ତି। ଦୁର୍ବଳ ଦେହ ଓ ଥରୁଥିବା ମୁଣ୍ଡ ଉପରେ ଏବଯାଏ ଈର୍ଷା ପୂରିରହିଛି। ଦୁଇ ଗୁରି ଥର ଆସି, ବଡ଼ପୁଅଙ୍କର ବଡ଼ତି ଦେଖି ହାଇଁପାଇଁ ହୋଇ ଫେରିଛନ୍ତି। କଏ ଯେପରି ତାଙ୍କୁ ମାଡ଼ ମାରି ଘଉଡ଼ି-ଦେଇଛି।

ହନେ ପଗୃରିଲେ, ସ୍ବେଚ୍ଛ ନ କଲେ ଏତେ ସମ୍ପତ୍ତି କେମିତି ଶୂନ୍ୟରେ ଶୂନ୍ୟରେ ହେବ ଗୋ ବୋହୂ ?

ଇନ୍ଦିରା ମାନ୍ୟତା ରଖି କହିଲେ, ସ୍ବେଚ୍ଛବିଦ୍ୟାରେ ବିନନ୍ଦ ଭାରି ପାରଙ୍ଗମ। ତାଙ୍କର ଢଙ୍ଗ ଦେଖି ତମର ମନକୁ ଏ ଧାରଣା ଆସିଛି ପରା ବୋଉ ?

ନୋହିଲେ କେମିତି ହେଲା ?

ତମ ବଡ଼ପୁଅଙ୍କୁ ପଗୃରି ବୁଝିବ। ମୋ ଜାଣିବାରେ ଶଶୁରେ ସେ-ପୁରକୁ ଯିବା ଆଗରୁ ତାଙ୍କ ବଡ଼ପୁଅଙ୍କୁ ପୋତା-ମାଲ୍‌ର ସନ୍ଧାନ ଦେଇ-ଯାଇଥିଲେ।

କ ମାଲ ?

ହୋଇଥିବ ସୁନା, ରୁପା, ନଗଦ ଟଙ୍କା । ମୋତେ ଜଣା ନାହିଁ । ମୁଁ ଦେଖିନାହିଁ । ତମ ବଡ଼ପୁଅ କାହାକୁ ବିଶ୍ୱାସ କରନ୍ତି ନାହିଁ । ମୋ ଆଗେ କ'ଣ ସେ କହିବେ ? ବାପାଙ୍କର ଅର୍ଜିତ ଧନ ଅବା ପୂର୍ବପୁରୁଷଙ୍କର ଅର୍ଜିତ ଧନ ହୋଇଥିବ । ତାଙ୍କୁ ଜଣା ।

କେଉଁ ଥାନରୁ ସେ ଖୋଳ ବାହାର କଲ ? ନଷ୍ଟେ ଘରଅଧରେ ହୋଇଥିବ ବୋଧେ, ଅନ୍ଧାର ଘର ।

ସେ କଥା ବି ମତେ ଜଣାନାହିଁ । ହନେ ସେ କହୁଥିଲେ ଯେ, ଅସଲ ମାଲତକ ଆଗରୁ ଖୋଳିନେଇ ତମେ କୁଆଡ଼େ ପୁଣି ପଳାଇଥିଲ । ସେହି ମାଲକୁ ତମର ଲକ୍ଷ୍ମୀ-ବୋହୂ ସୁନନ୍ଦାକୁ ଅରପି ଦେଇଥିଲ ।

ଏତେ ବଡ଼ ମିଛକଥା ପୁଅ କହିଲେ ?

ତାଙ୍କର ଯାହା ବିଶ୍ୱାସ ସେ ସେଇଆ କହିଲେ । ଶୁଣିଲା ଲୋକେ ସତ ନ ମଣିବେ କାହିଁକି ? ତମର ପୁଅ ବିନନ୍ଦ ଯୋଗାଣ ଅଫିସରେ କିରାଣୀ କାମ କରନ୍ତି । ଟଙ୍କା କେଇଟି ଦରମା । ପାଞ୍ଚ ପୁଅ, ଦୁଇ ଝିଅଙ୍କୁ ମିଶାଇ ଯେଉଁ ନଅପ୍ରାଣୀ କୁଟୁମ୍ବ, ତାଙ୍କ ଖରଚ ପାଇଁ ଗୁଣ୍ଡଳ, ଡାଲି, ଚଉଳ, ଲୁଣ କିଣିବାକୁ ଅଘଟ । ତମେ ପୋତା ମାଲ ଦେଇ ନ ଥିଲେ, ଗ୍ରାମରେ ସୁନନ୍ଦା ନାମରେ ପାଞ୍ଚମାଣ ଅଭଲ କିସମ ଜମି କିଣିଲେ କିପରି ? ପୁଣି ସହରରେ ଏଡ଼େ ବଡ଼ ଘର ତୋଳିଲେ କିପରି ?

ଦେଖିଛ ସେ ଘର ?

ଦେଖିଛି । ରାସ୍ତା ଉପରେ ଠିଆହୋଇ ମୁଣ୍ଡ ଟେକି "ସୁନନ୍ଦା-ଭବନ"କୁ ଚାହିଁଛି । ପାହାଚରେ ପାଦ ଦେଉଣୁ ମୋର ମନେ ହୋଇଛି, କିଏ ଯେପରି ମୋ ତଣ୍ଟିରେ ହାବୁକା ଦେଇ ମୋତେ ପୁଣି ବଡ଼-ରାସ୍ତା କଡ଼ରେ ଠିଆ କରାଇଛି ।

କିଏ ବା ସେ ହାବୁକା ଦେଲାବାଲା ?

କେଜାଣି ? ତମେ ହୋଇଥିବ । ତମେ, ଯିଏ କଥା ଅଳ୍ପଥାରେ ମୋ ଉପରକୁ ଗୁଞ୍ଜୁଣି ଫୋପାଡୁଥିଲ, ସେଇଁ ଗୋଡ଼କୁ ମୋର କୋଳ ଉପରେ ରଖି ରାତ ଅଧପାଏ ମୁଠାମୁଠା କରି ଘଷୁଥିଲି, ସେହି ଗୋଡ଼ରେ ମୋ ପିଠିରେ ଠିଆଗୋଇଠା ଲଦୁଥିଲ ।

ଏତେ ଡଳ୍ପଗୁଣା ହଅ ନା ଗୋ ବୋହୂ ! ତମର ଏ ଗରବ ରହିବ ନାହିଁ । ଗ୍ଭେରମାଲରେ ଯେଉଁ କୁବେର ସମ୍ପତ୍ତି ଭେଇଛ, ଢମଢମ ହୋଇ ଦେଖାଇହେଉଛ ତମର ଲଙ୍କଳୀ ଦେହରେ, ଦଇବର ଗୋଟାଏ ଫୁଙ୍କାରେ ମୁଠାଏ ଧୂଳି ପରି ସବୁ ଉଡ଼ିଯିବ । ଏପୁରରେ ଦେଖିବ ନାହିଁ ତ, ସେ-ପୁରରେ ଥାଇ ଦେଖୁଥିବ; ତମୁକୁ ହେଜାଇ ଦେଉଥିବ ।

ଏଇ କଲ୍ୟାଣ କରିବାକୁ ବରଡ଼ାପତର ପେଡ଼ୀରେ ବଡ଼ଠାକୁରଙ୍କ ମାହାର୍ଦ ନେଇ କେତେକ ଧାଇଁଆସିଥିଲ ? ଯେତେ ନର୍ଯ୍ୟାତନା ମତେ ଦେଇଛ, ବଡ଼ଠାକୁରେ ଜାଣିଛନ୍ତି । ଉପରେ ଥାଇ ଧର୍ମଦେବତା ଦେଖି-ଛନ୍ତି । ତମର ଅଭିଶାପ ଆମର କଲ୍ୟାଣ ହେବ ।

ଶାଶୁବୁଢ଼ୀ ଦୁଇ ତିନ ଦିନ ରହି ପୁଣି ଫେରିଗଲେ । ହରହର ତାଙ୍କୁ ଛାଡ଼ିବାକୁ ଯାଇ ଫେରନ୍ତା-ବସ୍‌ରେ ବାହୁଡ଼ିଆସିଲା । ଗଲାବେଳେ ଇନ୍ଦିରା ତାଙ୍କ ପାଇଁ, ସୁନନ୍ଦା ଓ ତାଙ୍କର ପାଞ୍ଚ ପୁଅ, ଦୁଇ ଝିଅଙ୍କ ପାଇଁ ଦାମିକା ଶାଢ଼ି ଓ ଜାମା କିଣିଦେଇଥିଲେ । ବୁଢ଼ୀଙ୍କର ତୀର୍ଥଖରଚ ପାଇଁ ତାଙ୍କ ହାତରେ କିଛି ଟଙ୍କା ଦେଇଥିଲେ ।

ତାଙ୍କର ପାଦ ପାଖରେ ମୁଣ୍ଡିଆ ମାରି, ପାଦଧୂଳି ନେଇ ମୁଣ୍ଡରେ ଲଗାଇଲେ । ଶାଶୁଙ୍କ ମୁହଁରୁ କଲ୍ୟାଣ ଗଳିପଡ଼ିଲା ।

ଇନ୍ଦିରା ଜାଣନ୍ତି, ସେହି କଲ୍ୟାଣରେ ବୁଢ଼ୀଙ୍କର ଈର୍ଷାର ବିଷ ଗୋଳା ହୋଇଥାଏ ।

ଇନ୍ଦିରା ବୁଢ଼ୀଙ୍କର ନିନ୍ଦା ଓ ପ୍ରଶଂସା, ପୁଣି କଲ୍ୟାଣ ଓ ଅଭିଶାପ ସମ୍ବନ୍ଧରେ ନିରସ୍ପୃହ । କଅଣ ସେ ବକିବକିଲେଇ ଯାଉଛନ୍ତି, ଯାଉନ୍ତୁ । ନିଜ

ମନରେ ଖଣି ପଡ଼ିଥିବା ଆବର୍ଜନାକୁ ସେ ଶାଶୁଙ୍କ ଆଗରେ ଥରେ ଖୋଲି-
ଦେଇଛନ୍ତି । ସେଥିରୁ ଉଠୁଥିବା ବିଷାକ୍ତ ବାଷ୍ପ ଅକର୍ମଣ୍ୟ ବୁଢ଼ୀଙ୍କୁ ଥରେ ଶୁଙ୍ଘାଇ-
ଦେଇଛନ୍ତି । ମରଣ ଆଗରୁ ଥରେ ତାଙ୍କୁ ଜଣାଇଦେଇଛନ୍ତି, ଚେତାଇ-
ଦେଇଛନ୍ତି ଯେ, ମଣିଷର ମରମରେ ଯେଉଁ ବିଷାକ୍ତ ଗଣ୍ଠି ଆଜି ଜଣେ
ମାରିଥାଏ, ସେହି ଗଣ୍ଠିଗୁଡ଼ିକର ସ୍ମୃତି ମରିବାଯାଏ ମରମ ତଳେ ମୁହଁଛପା
ଦେଇ ରହିଥାଏ । ସୁଯୋଗ ପାଇଲେ ସେ ସବୁ ଫଣା ଟେକି ଉଠେ ।

ଅଭଦ୍ରତା ହେଲା ? ତାଙ୍କୁ ଅସମ୍ମାନ ହେଲା ? ତାଙ୍କର ଲାଭଲାଭ
ଆସୁଥିବା ଜୀବନ ଉପରେ ଆଘାତ ଲାଗିଲା ?

ଭଲ ହୋଇଛି । ମନରେ ଆଜିଠି ହେଉଥିବା ବିଷ-ଭଣ୍ଡାରୁ ବିଷ
ଛୁଆଡ଼ିବାକୁ ସେ କଟକ ନ ଆସନ୍ତୁ । କାହିଁକି ଅପ୍ରିୟତା ହେବ ?

ବିନୋଦ ଅବା ତା'ଙ୍କର ପିଲାମାନେ କେବେ କଟକ-ଘରକୁ ଆସି-
ନାହାନ୍ତି । ଅଥଚ ଏହି ବାଟରେ କେତେ ଥର ସେମାନେ ଗ୍ରାମକୁ ଯାଇଛନ୍ତି ।
ସେଥିପାଇଁ ଏହି ଝରମଖ ବୁଢ଼ୀଶାଶୁ ଦାୟୀ । ଦୁଃଖବେଳେ ପଦେ ପଚାରି
ନ ଥିଲେ, ସୁଖବେଳରେ ଥରକୁ ଥର ଧାଇଁ ଆସୁଛନ୍ତି । ଇନ୍ଦିରାଙ୍କ
କୁଟୁମ୍ବର ଚଳନ ଦେଖି ହନ୍ତସନ୍ତ ହୋଇ ଫେରୁଛନ୍ତି ।

ଇନ୍ଦିରା ପଣ କରିଥିଲେ ଯେ, ଶାଶୁ ଆସିଲେ ସେ ନିଜର ତୁଣ୍ଡକୁ
ଆୟତ୍ତରେ ରଖିବେ । ଯେତେ ତୀବ୍ର ଈର୍ଷା-ଜରଜର ଶାଣୁଆ କଥା ଶାଶୁ
କହିଲେ, ତାର ଜବାବ ଦେବେ ନାହିଁ । ଯେତେ ଯାହା ହେଲେ ସେ ଗୁରୁଜନ,
ଜୀବନର ଶେଷ ପାଦରେ ପହଞ୍ଚିଲେଣି । ପରର ସୁଖ ଦେଖି ଆମ୍ବୁଡ଼ି-ସାମ୍ବୁଡ଼ି
ହୋଇ ସେ ଯଦି ଆନନ୍ଦ ପାଇବେ ତ ପାଆନ୍ତୁ ।

ବଡ଼ପୁଅ ଆନନ୍ଦଚନ୍ଦ୍ର ତଳେ ମୁଣ୍ଡ ଲଗାଇ ଓଳଗି ହୁଅନ୍ତି । କହନ୍ତି,
ଆସିଲୁ ଭଲ କଲୁ ବୋଉ ! ଏଘର ବି ତୋର । ଏଠି ତୋର ପୁଅବୋହୂ,
ନାତିନାତୁଣୀମାନେ ଅଛନ୍ତି । ଯେତେଦିନ ତୋର ଆଗ୍ରହ ହେଉଛି
ନିଧଡ଼କରେ ରହ ।

ସେତିକି ସେ କହନ୍ତି । ବୋଉଙ୍କର ଉତ୍ତରକୁ ଶୁଣିବାକୁ ସେ ଅପେକ୍ଷା କରନ୍ତି ନାହିଁ । ମା-ପୁଅଙ୍କର କ୍ୱଚିତ୍ ଭେଟ ହୁଏ । କଥାବାର୍ତ୍ତା ହେବାକୁ ତର ମିଳେ ନାହିଁ । ମା ପୁଅ ବାହୁଡ଼ିଲା ପରେ ଆନନ୍ଦ ଜାଣନ୍ତି, ସେ ତାଙ୍କର ପାଥେୟ ନେଇ ଗଲେ । ସେତିକି ସରିଲେ ହୁଏତ ପୁଣି ଆସିବାକୁ ମନ କରିବେ ।

ନାତୁଣୀ ତିନହେଁ ତାଙ୍କର ପାଖ ପଶନ୍ତି ନାହିଁ । ନାତି ସାନନ୍ଦକୁ କୋଳକୁ ଟାଣିଲେ ସେ ଗୋଡ଼ା ଧରି କାନ୍ଦେ । ନିଜେ ଇନ୍ଦିରା ଅବା ଆଉ କେହି ସାନନ୍ଦକୁ ତାଙ୍କର ସ୍ନେହର କବଳରୁ ରକ୍ଷା କରନ୍ତି ।

ଶାଶୁବୁଢ଼ୀ ଅନୁମାନ କରନ୍ତି, କେହି ତାଙ୍କର ପାଖରେ ପଶୁ ନ ଥିବା ଓ ଧରିଛୁଆଁ ଦେଉ ନ ଥିବା ପଛରେ ନିଶ୍ଚୟ ଇନ୍ଦିରାଙ୍କର ଉପଦେଶ ଅଛି ।

ସେ ଦିନେ ପଚାରିଲେ, ଆଗୋ ବୋହୂ, ଯେଉଁମାନଙ୍କୁ ଦେଖିବି, ଯେଉଁମାନଙ୍କ ସଙ୍ଗେ ଖେଳିବି ବୋଲି ଛଟିପିଟି ହୋଇ ପୁଅ ସହରରୁ ମୁଁ ଧାଇଁଆସେଁ, ସେମାନେ ତ ଡାକିଲେ ପାଖ ପଶୁନାହାନ୍ତି । ତମେ କଣ ତାଙ୍କୁ ଶିଖାଇଛ ?

ଇନ୍ଦିରା କହିଲେ, ସେମାନଙ୍କୁ ପଚାରୁ ନ ? ଅନୁକୁ ତମେ କଅଣ କହିଲ ଯେ, ଝିଅଟା ଆସି ମୋ ଆଗରେ କାନ୍ଦୁଥିଲା । ଯେଉଁମାନଙ୍କ ପାଖରୁ ଅକାଳେ ସକାଳେ ମୋ ପିଲାଏ କାଣିଚୁକର ସ୍ନେହଶ୍ରଦ୍ଧା କଥାପଦରେ ବି ଧାରନ୍ତି ନାହିଁ, ସେମାନେ କାହିଁକି ମୋ ପିଲାଙ୍କୁ କନ୍ଦାଇବେ ?

ବୁଢ଼ୀ କହିଲେ, ମୋ ଆଖିରେ ଅସଣ୍ଠଣା ଢଙ୍ଗ ପଡ଼ିଲାରୁ ମୁଁ ପଦେ ଆକଟି କହିଲି ।

ଅସଣ୍ଠଣା ଢଙ୍ଗ ପୁଣି ମୋ ଅନୁ ପରି ଛୁଆ ବକଟକର ! କାହାର ଜଭରେ ହାଡ଼ ଅଛି ଯେ କହିବ ?

ହଇଗୋ ବୋହୂ, ବଡ଼ିଲା ଝିଅଟା, ପାଠ ପଢ଼ି ପାଆସ କରିଛି । ଦିନନ୍ଦ ସମାଜ ପଢ଼ି ଖୁସି ହୋଇ ସୁଖଦା ଆଗରେ କହୁଥିଲା । ସୁଖଦ

ପାଞ୍ଚଟଙ୍କାର ଖୋଗ କରିଥିଲ ବଡ଼ଠାକୁରଙ୍କ ପାଖରେ । ତାକୁ ତମେ କହୁଛ ଛୁଆ ? ତା' ଆଖିରେ, ଗୁଣ୍ଡରେ, ଦେହରେ ତରଳ ପିଲାର ବୟସ ବୋଝେଇ ଆସିଲାଣି । କଣ ତମ ଆଖିକୁ ଦିଶୁନାହିଁ ?

ଇନ୍ଦିରା ଆତଙ୍କିତ ହେଲେ । ଇନ୍ଦିରା ପୁଣି କ୍ରୋଧରେ ଜଳିଲେ ନିଜ ଭିତରେ । ତଥାପି ସ୍ୱର ନରମାଇଁ କହିଲେ, ତମେ ମୋ ଗୁରୁଜନ । ତମ ସଙ୍ଗେ ବିତର୍କ କରିବ ନାହିଁ । ଖାଲି ଏତିକି ମୁଁ ପଚାରୁଛି, ପୁଅ ହେଉ କି ଝିଅ ହେଉ, ତା ଦେହରେ କ'ଣ ବୟସ ଲାଗନ୍ତା ନାହିଁ ? ସେଥିକି ଲାଜ କଅଣ, ଡର କାହିଁକି ? ମୋ ଅନୁପାର କାହିଁରେ ଦୋଷ ରହିଲା ବୋଉ ? ବିନନ୍ଦଙ୍କ ପିଲାଙ୍କ ପାଖରୁ ଆଇଚ । ମୋ ପିଲାଙ୍କର ରୂପ, ପାଠ ଓ ଢଙ୍ଗ ଦେଖି, ବି ପାଖ ତଉଲ କରି ସହିପାରୁନ ?

ବୁଢ଼ୀ ପାକୁଆ ପାଟିରେ ହସିଲେ । କହିଲେ, ଢଙ୍ଗ କଥା ଉଠାଇଲ ଯେ ବୋହୂ, ବଡ଼ିଲା ଝିଅଙ୍କର ଢଙ୍ଗ ଯଦି ଆଖିରୋଚକ ନ ହେଲା, ସେଥିକି ଦୋଷ ତାଙ୍କର ମା'ମାନଙ୍କର । ପିଲାଏ ଯାହା ଦେଖିଲେ, ଯାହା ଶିଖିଲେ, ସେଇଆ କଲେ । ଯୁବ୍ରଶ୍ଣ-ଟେ.କା ଭୂଆସୁଣୀ ବୋହୂ ହୋଇ ଯେତେବେ ତମେ ମୋ ଘରେ ପାଦ ଦେଲ, ତମକୁ କେମିତି ଚଳେଇଥିଲ ହେଜୁ କର । ଦେହରୁ ମୁଣ୍ଡରୁ ଲୁଗା ଟିକଏ ଖସିଗଲେ, ପାଟି ଏ କାନରୁ ଯାଇଁ ସେ କାନରେ ବାଜଲେ, ପିଠିରେ ଠିଆଗୋଇଠା ବସୁଥିଲା ।

ଯେତେ ଅତ୍ୟାଚାର କରିଥିଲ ମୋ ଉପରେ—

କହୁଛ ଅତ୍ୟାଚାର ? ସାତ ମାଇପିଙ୍କ ତୁଣ୍ଡରେ ତମର ଧନ୍ୟ ଧନ୍ୟ ପ୍ରଶଂସା ଶୁଭୁଥିଲା । ସହରକୁ ଆସି କେମିତି ତମେ ଲଙ୍ଗଳୀ ଢଙ୍ଗ ଧରିଲେ । ପେଟର ଝିଅ ପାଇଁ କୋଇଁ ଖୋଜିଲଣି ଟି, ପଦା'କୁ ଯାଉଛ ନାଟୁଆଣୀ ପରି !

ଲାଜରେ ଇନ୍ଦିରାଙ୍କର ମୁହଁ ଜଳିଯାଇଥିଲା । ତିନିକୋଡ଼ିରୁ ଉପର ହେବ ଶାଶୁଙ୍କର ଉମର । ପାଚିଲା ତମ୍ବାଳିଆ ଦେହ । ବେକତଳର ଗୁଣ୍ଡହାଡ଼ ଦୁଇଟି ବଡ଼ ପଞ୍ଜ ଦୁଇଆଡ଼କୁ ଲମ୍ବିଯାଇଛି । କେରିକେରିକା ମୁଣ୍ଡର କେଶ ଝୋଟ ପାଲଟିଲାଣି । ଆଖି ଦିଶୁଛି ପେଜୁଆ । କଥା କହିଲା-

ବେଳେ ମୁଣ୍ଡ ଦୋହଲଯାଉଛି । ସେହି ଶାଶୁବୁଢ଼ୀ ହାତରେ କାଠପାଳିଆ ଧରି ସେଥିରେ ଇନ୍ଦିରାଙ୍କ ତାଳୁରେ ଅର୍ଗାଡ଼ିଆ ପାହାରେ ଥୋଇଲା ପରି ସେ ମଣିଥିଲେ ।

ସେ ଦୀର୍ଘଶ୍ୱାସ ଛାଡ଼ି ଭିତର ପାଖର ଚଉଡ଼ା ବାରଣ୍ଡାର ମୋଜାଇକ୍ ଚଟାଣ ଉପରେ ବସି ଖାଲି ଆଖି ମିଟିମିଟି କରିବାକୁ ଲାଗିଲେ । ତାଙ୍କ ଦେହରେ ଅଳ୍ପ ଚଉଡ଼ାର ପାତଳ ବ୍ଲାଉଜ । ଛୁପିଛୁପିକା ଦାମିକା ଶାଢ଼ି ପିନ୍ଧିଛନ୍ତି । ମୁଣ୍ଡରେ ଲୁଗା ନାହିଁ । ଖରାଦିନ । ବେଳ ଅପରାହ୍ଣ ପାଞ୍ଚଟା । ପବନ ଧୀରେ ଧୀରେ ବହୁଛି । ଝାଳୁଆ ଦେହକୁ ଭଲ ସୁହାଉଛି ।

ଧୋବଲା ଛେଦା-ଲୁଗା ପିନ୍ଧି ସେ ଗୋଲେଇ ଖମ୍ବକୁ ଆଉଜି ଆଣ୍ଠୁ ଟେକି ବସିଛନ୍ତି । ତାଙ୍କର କେଇ ପଦ କଥା ଇନ୍ଦିରାଙ୍କର ମରମରେ ବାଜୁଛି ବୁଝି ମନେ ମନେ ସେ ଆମୋଦିତ ହେଉଛନ୍ତି ପରା ! ତାଙ୍କର ହସହସ ପାଳୁଆ ଓଠ ଦ'ପାଳ ଏହା ସୂଚାଇଦେଉଛି ।

ବଡ଼ ଝଞ୍ଜାଳ ପଛଧାଡ଼ କୋଠାର କଣ କୋଠରିରୁ ତିନି ଝିଅଙ୍କର ପାଟି ଶୁଭୁଛି । ସେମାନେ କ୍ୟାରମ୍ ଖେଳୁଛନ୍ତି । ସେହି କୋଠରିଟି ଅନୁପାର ପଢ଼ାଘର । ସାନନ୍ଦକୁ କାଖକରି ରଥିଆ ପଦାକୁ ନେଇଛି । ଖେଳାଉଥିବ । ହରିହର ବେନାମୀ-ପର୍ମିଟ୍ ପାଞ୍ଚଟି ନେଇ ସିମେଣ୍ଟ ଦେଢ଼ଶହ ବସ୍ତା ଆଣିବାକୁ ମାଲଗୋଦାମ ଯାଇଛି । ରାତି ହେଲେ ସେ ଫେରିବ । ଆନନ୍ଦ କେଉଁ ନଈ ଉପର ପୋଲକାମ ତନାଘନା କରିବାକୁ ଦୂର ମୋଫସଲକୁ ଦୁଇଦିନ ତଳେ ଯାଇଥିଲେ । ଫେରିନାହାନ୍ତି । କେବେ ଫେରିବେ ତାର ଠିକଣା ନାହିଁ ।

ଶାଶୁବୁଢ଼ୀ ଗତକାଲି ସଞ୍ଜରେ ଆସି ପହଞ୍ଚିଲେ ।

ଇନ୍ଦିରା ଶାଶୁଙ୍କ ଆଗରେ ନିଜକୁ ନିଃସହାୟ ମଣିଲେ । ଭାବିଲେ, ଆହା, ମୋତିମାଳା ମାଈଁ ଯଦି ଆଜି ଦିନଗୁଡ଼ିଏ ଅଟକି ଯାଇଥାନ୍ତେ, ଦୁଇ ବୁଢ଼ୀଙ୍କର ଭେଟ ହୋଇଥାନ୍ତା । ଶାଶୁଙ୍କର ଟାଣ ଟାଣ କଥାର ଠିକଣା ଜବାବ ସେ ଦେଇପାରିଥାଆନ୍ତେ । ହାଡ଼ରୁ ମାଉଁସ ଛଡ଼ାଇ ଦେଇଥାନ୍ତେ,

ଯେମିତ ଗତଥର ହୋଇଥିଲା । ପିଲମାନଙ୍କର ଝଣାଓଝର ଓ ଅନୁରୋଧ ରକ୍ଷାକର ମାଈଁ ଆଜ ଦିନଟିଏ ରହିପାରିଲେ ନାହିଁ । ତାଙ୍କର କେଉଁ ନାତିକୁ ଖୋରଧାରେ ଟାଇଫଏଡ୍ ଜର ହେବାର ଖବର ରତ୍ନମାଳାଙ୍କ ଠାରୁ ଜାଣି ସେ ଉଚ୍ଛନ୍ନ ହୋଇ ଗତଥର ଗ୍ଲାଯାଉଥିଲେ । ଶୀଘ୍ର ସେ ଫେରିବେ ବୋଲି ପିଲଙ୍କୁ ପ୍ରତିଶ୍ରୁତି ଦେଇଥିଲେ ।

ଉପରେ ପଡ଼ି ଶାଶୁ ମୁହଁ ହଲଇଲେ, ଆଲଆ ଲେଖାରେ ବାଳଆ ଆଈଙ୍କଠେଇଁ ଏତେ ସୁହାଗ କାହିଁକି ବା ?

ମାଈଁ ହସିହସି ଜବାବ ଦେଲେ, ଆନନ୍ଦଙ୍କର ମୁଁ ନରେଲା ମାଈଁ ଗୋ ! ତମେ କଅଣ, ମନକୁ ପଚାରି ମୁହଁ ଖୋଲ ।

ଶାଶୁଙ୍କର ବାକ୍ୟ ସ୍ଫୁରିଲା ନାହିଁ । ଟିକଏ ରହିକରି ସେ କହିଲେ, ଯେଉଁମାନଙ୍କର ମୁଣ୍ଡରେ ତିଳକ, ହାତରେ କୋଥଳି ସେମାନେ ସଂସାରକୁ ଠକନ୍ତି । ଜାଣିକରି ତ ନିଜକୁ ଠକନ୍ତି ।

ମାଈଁ ଡ଼େକ୍ସାରେ ବସିସାରିଥିଲେ । ତଥାପି ସେ ଜବାବ ଦେଲେ, ହଁ ଗୋ, ବିଧବା ହୋଇ, ଶ୍ରୀକ୍ଷେତ୍ରରେ ବଡ଼ଠାକୁରଙ୍କ ମାହାର୍ଦ୍ଦ ସେବା କରି ଯେଉଁମାନେ ଚମପରିକା ମାଛ, ମାଂସ ଓ ଶୁଖୁଆପୋଡ଼ାରେ ତୁଣ୍ଡ ପବିତ୍ର କରନ୍ତି, ତାଙ୍କରିମାନଙ୍କ ତୁଣ୍ଡରୁ ଏମିତିଆ ଭାଷା ବାହାରେ । ହଉ ଥା, ପଛରେ ରକ୍ତଗୁଡ଼ିଳ ଗ୍ରେବାଇଥାଆ, ଆଉ କେବେ ଦେଖାହେଲେ ଭଲକରି କଥାଭାଷା ହେବା ।

ଡ଼େକ୍ସା ଗ୍ଲଲଗଲା । ଦାଣ୍ଡରେ ଠିଆହୋଇ ଶାଶୁ ତାଙ୍କ ପଛରେ ଅଭଦ୍ର ଭାଷାରେ କଅଣ ସବୁ କହି ଗାଳି ଦେଉଥିଲେ । ମାଈଁ ପଛକୁ ଫେରି ଗ୍ଲହିଁ ନ ଥିଲେ ।

ଅନୁପା ଓ ନିରୁପା ବଡ଼ ପାଟି କରି ହସିଲେ । ଧାଇଁ ଧାଇଁ ଖଞ୍ଜା ଭିତରକୁ ଗଲେ ।

ଇନ୍ଦିରା ଦେଖିଲେ, ଫାଟକ କଡ଼ରେ ପାଚେରୀ କାନ୍ଥକୁ ଲଗାଇ ଅଟାକଳ ବସାଇବାକୁ ତୋଳା ହେଉଥିବା ଲମ୍ବ ଘରେ ଯେଉଁ ମିସ୍ତ୍ରୀ ଦୁଇ-

ଜଣ, ନାଥ ଓ ଉଦ୍ଧ କାମ କରୁଥିଲେ, ଆଉ ମୂଳିଆ ମୂଳିଆଣୀ ତିନିଜଣ, ସେମାନେ ହାତ ବନ୍ଦ କରି ଶାଶୁଙ୍କର ଫୁରୁକୁଟି ନାଚ ଦେଖି ଆମୋଦିତ ହେଉଥିଲେ ।

ଶାଶୁ ଶୂନ୍ୟକୁ ଝଟେଇ ହେଉଥିଲେ । ରାସ୍ତାଆଡ଼ୁ ଉଡ଼ିଆସୁଥିବା ଧୂଳିକୁ ଗୃପଡ଼ା ମାରୁଥିଲେ । ରଡ଼ ଛାଡ଼ି କହୁଥିଲେ, କଏ ଲୋ ତୁ, ମୋର ଘରଜ ବୋଲଉ, ପୋଲଖାଈ ଚଳେଇ-ବୈଷ୍ଣବୀ ! ବାଘର ଘରେ ମିରିଗର ନାଟ କରି ଗଲୁ । ପୁଅ ମୋର ଥାଆନ୍ତା ଯଦି ତୋ ଦାନ୍ତ ଉପାଡ଼ିଥାନ୍ତା ।

ମାଈଁଙ୍କର ଦ'ଧାଡ଼ି ଧୋବଫରଫର ମୁକ୍ତା ଖଞ୍ଜିଲା ପରି ଦାନ୍ତ ଅଛି । ସେ ଦାନ୍ତରେ ଶାଶୁବୁଢ଼ୀଙ୍କର ନଜର ପଡ଼ିଥିଲା । ମାଂସ ଯେତେ ନରମ ହେଉ, ଯେତେ ଭଲ କରି ସିଝିଥାଉ, ହାତରେ ଚକଟି ଚକଟି ତାକୁ ଗିଳିବାରେ ଯେଉଁ ଅସୁବିଧା ଓ କଷ୍ଟ, ସେ ଅନୁଭବ କରନ୍ତି । ଆଖି ବୁଜି ଟାକୁକରି ପ୍ରାଣବିକଳରେ ଗିଳିଲାବେଳେ, ଅନୁପା ଓ ନିରୁପାଙ୍କର ଯେଉଁ ଖିଲିଖିଲି ହସ ମାଈଁଙ୍କର ସୁନ୍ଦର ଦାନ୍ତ ଦ'ଧାଡ଼ି ଦେଖି ତାଙ୍କର ମନେ ପଡ଼ିଗଲା ପରି ! ଈର୍ଷାରେ ସେ ଜଳୁଥିଲେ । ସ୍ଥାନକାଳ ଭୁଲି ତାଙ୍କ ଈର୍ଷାକୁ ସେ ବାନ୍ତ କରୁଥିଲେ ।

ମାଈଁ ଅଦୃଶ୍ୟ ହୋଇସାରିଥିଲେ ।

ଗୋଲିଆ ଖମ୍ବକୁ ଆଉଜି, ମୁହଁକୁ ବଲବଲ କରି ଅନାଇଁ କେତେ ଅପମାନିଆ କଥା ସେ ଆଜି କହିଦେଲେ ! ଇନ୍ଦିରା ନାଟୁଆଣୀ ପରି ପଦାକୁ ଯାଉଛନ୍ତି ! ହଉ କହନ୍ତୁ । ସେ ରାଗିବେ ନାହିଁ । ବୁଢ଼ୀ ସେକାଳର ଲୋକ, ମଫସଲରେ ଦେହାନ୍ତ କଟାଇଥିଲେ । ସୁଖରେ ଯେଉଁ ପୁଅଙ୍କ ପାଖରେ ଶେଷ-ଜୀବନ ବିତାଉଛନ୍ତି, ସେ ସରକାରଘର ଗୁମାସ୍ତା । କାମ ଅଳପ କର ବା ବହୁତ କର, ମାସ ପୂରିଲେ ଦରମାଗଣ୍ଡାକ ଆସୁଛି । ତମୁକୁ ଅଣ୍ଡ-ନଅଣ୍ଡ ଯାହା ହେଉ, ଦରମା ଥୁଆ । ଯେତେ କାନ୍ଦ ବୋବାଳି ଛାଡ଼ିଲେ,

ଛନେ ମୁଣ୍ଡ ପିଟି କପାଳରେ ଆଉ କାଢ଼ିଲେ ସେତକ ନ ବଢ଼େ । ତେବେ ଅଛୁ ଛ, ମାଣକ ନ ହେଲେ ସେରକ ଅଛୁ, ପେଜପାଣି ପିଆଇ ତୋକ ଚଳାଇବାର ସମ୍ବଳ ।

ପେଟ ପାଇଁ ସେମାନଙ୍କର ଓ ତାଙ୍କର ଘରଣୀମାନଙ୍କର ନାଚୁଆ-ନାଚୁଣୀ ହେବା ଲୋଡ଼ା ନାହିଁ । ଭଦ୍ରସମାଜରେ ସାଙ୍ଗସରସା ହୋଇ ମିଶିବାକୁ ଯେଉଁମାନେ ଦୋହଳୀ ଡେଇଁ ଆଗେଇ ଯାଉଛନ୍ତି, ସେମାନେ ଅବଶ୍ୟ ଫଳ ପ୍ରାପତ ହେଉଛନ୍ତି । ଯେଉଁ ସାଙ୍ଗ ଓ ସଙ୍ଗିମାମାନେ ଦିନେ ନାକ ଟେକୁଥିଲେ, 'ଖବ୍‌ସ ତୁ ହେଲୁ ରେ କି ସାହସ କଲୁ' ବୋଲି ମୁହଁ ଉପରେ ଆଲୋଚନା କରୁଥିଲେ, ସେମାନେ ପରେ ସକେଇ ହେଉଛନ୍ତି, ଦେଖ ମ, କେମିତି ହାବେଳୀ ବାଣ ପରି ସେ ଉପରକୁ ଉଠିଲେ, କେତେ ଉପରେ ଥାଇ ପ୍ରଭା ପ୍ରକାଶି ସବୁ ରଙ୍ଗର ହସ ହସିଲେ !

ଶାଶୁ ବୁଢ଼ୀ । ତାଙ୍କର ଏଣ୍ଡୁଅ ଧାଙ୍ଗଡ଼ କଥାବାଡ଼ପାଏ । କପରି ବୁଝିବେ ଏବକାଳର ଗହନ ବେଭାର ? ତାଙ୍କର ପୁଅ ବନନ୍ଦଙ୍କର ଉପୁରି-ପଇସା ଅଧିକରୁ ଅଧିକ ହେବାପାଇଁ ବଡ଼ଠାକୁରଙ୍କ ପାଖରେ ଯେତେ ଗୁହାରିଲେ କି ହେବ, ଯାହା ମିଳିବ ସବୁ ସାଉଁଟା-କାଣ୍ଡ । କାକର ଧରି ଘଡ଼ା ଭରିବା ଗତି । ହଁ, ସେ ଯଦି ବସ୍‌-କଣ୍ଡକ୍ଟର୍‌ ହୋଇଥାଆନ୍ତେ, ସେଇ ବିନନ୍ଦ ମ, ତେବେ ଇଦ୍ଧିର ମାନିଥାଆନ୍ତେ । ଘରଘରଣୀମାନଙ୍କର ନାଚୁଣୀ ବେଶରେ ଭଦ୍ର-ସମାଜରେ ପାଞ୍ଚରେ ପଞ୍ଚେଇ ହେବାକୁ ଚେଷ୍ଟା କରିବା ଲୋଡ଼ା ପଡ଼ନ୍ତା ନାହିଁ । ତାଙ୍କମାନଙ୍କ ଟୋପିଗୁଡ଼ିକ ମୁଣାରେ ଦିନରାତି ସବୁବେଳେ ଲକ୍ଷ୍ମୀଠାକୁରାଣୀ ବରଷୁଥାଆନ୍ତେ । ସେମାନେ ଯୋଗଜନ୍ମା !

କେମିତି ବୁଝିବେ, ଏଇ ବୁଢ଼ୀ-ଶାଶୁ ଯେ ତାଙ୍କର ସାବତ ପୁଅଙ୍କ ଗୃହକୁ ଗଲା । ଗ୍ରେଡ଼-ଉନେଇଛ ବୋଲି ହୁରି ପଡ଼ିଲାରୁ ମହତ ସାଥିରେ ପେଟ ପୋଷିବାର ଉପାୟ ଗଲା । ପୋଲିସର ପିଟୁଣାରେ ଅଣ୍ଟା ପାଖ ବେଁ-ଶିର-ହାଡରେ ଯେଉଁ ଜଖମ ହୋଇଥିଲା, ଦରଜି ତ ଏବଯାଏ ପୂରା ଛାଡ଼ ନାହିଁ । ସେଥିରେ ସେ ଅକାମୀ ହେଲେ । ନାଥ ମିସ୍ତ୍ରୀ, ଅବା ଶାରଙ୍ଗ ଦାସ

ମୂଳଆଙ୍କ ପରି ମୂଳ ଲଗି ମୁଣ୍ଡଝାଳ ଭୁଣ୍ଡରେ ମାରି ସେ କୁହୁଡ଼ି ଫୋଡି-ପାରନ୍ତେ ନାହିଁ । କଅଣ କରନ୍ତେ, କହ ଗୋ ମାଡ-ଅମାଡରି ଜଗୁଆଳି ମୋର ଶାଶୁବୁଢ଼ୀ ? ପାଖରେ ଆସି ସେତେବେଳେ ତମେ, ତମ ପୁଅ ବନନ୍ଦ, ତମ ବୋହୂ ସୁଖଦା ଥରେ ଠିଆ ହୋଇଥିଲ କି ? ଆହା ପଦେ କହି ପିଲାଙ୍କ ଭୁଣ୍ଡରେ ଅଧାର ଦେଇଥିଲ କି ?

ଦୂରରେ ଥାଇ ତମେମାନେ ହସୁଥିବ । ଭାବୁଥିବ, ନିଜ ଭିତରେ କଥାଭାଷା ହେଉଥିବ—ରହ ଦେଖିବା, ଆନନ୍ଦ ଓ ଇନ୍ଦିରା କାଢିବେ କଅଣ । ପେଟର ଦାଉରେ ଏକାସଙ୍ଗରେ ସମସ୍ତେ ଜହ୍ନର ଡୋକ ପରିହାଣ ପାଇବେ । ହାତରେ ଭିକ୍ଷାପାତ୍ର ଧରି ଢେଇଁପଡ଼ିବେ ରାସ୍ତା ଉପରକୁ ।

ତମମାନଙ୍କର ଆଶା ସଫଳ ହେଲା ନାହିଁ ଗୋ ବୋଉ-ସାଆନ୍ତାଣି ! ତମରି ଗେହ୍ଲାପୁଅ ଆନନ୍ଦ, ଯାହାକୁ ତମେ ପିଲାଦିନେ କଥା ଅକଥାରେ ନିର୍ଦ୍ଦୟ ଭାବରେ କୋରୁଥିଲ, ମୁହଁକୁ ଚାହିଁଦେଲେ ଯାଉଣୁ ଆଂସୁଣୁ ଝିଙ୍କାସୁଥିଲ, ଯାହାକୁ ଅଇଁଠା ଭାତରେ ପେଜମିଶା ଡାଲି ଅଜାଡ଼ି ଖାଇବାକୁ ଦେଉଥିଲ, ସେହି ଅଧାପାଠୁଆ ମାହାଜନର ଗୁମାସ୍ତା ଟୋକାଟା ମୁଣ୍ଡରେ କେମିତି ଲକ୍ଷ୍ମୀ ସୁନା-କଳସ ଢାଳୁଛନ୍ତି, ସେଇଆ ଦେଖି ତାଟକା ହେଉଛ !

ମୁଇଁ ଇନ୍ଦିରା ମ, ତମରି ପୁଅଙ୍କର ସେହି ଲକ୍ଷ୍ମୀ ଗୋ ବୋଉ, ଏ-କାଳର ଢଙ୍ଗ ପ୍ରକାରେ ନିଜକୁ ମୁଁ ପ୍ରକାଶ କରିପାରିଛି । ମୋହିନୀ ରୂପରେ କେତେ ଦେବ, ଦାନବ, ମାନବଙ୍କୁ ମୋହିତ କରି ତମରି ପୁଅଙ୍କର ବେପାରକୁ ହାବେଳୀ ପରି ଉପରକୁ ଟେକୁଛି । ନାଚୁଣୀ ଅଧାନଙ୍ଗୁଳୀ ମୋତେ କଅଣ କହୁଛ ଗୋ ?

ହସିହୋଇଗଲା ।

ସେ ହସ ମୁଖର, ଖେଙ୍କିଲା ପରି, କେଞ୍ଚିଲା ପରି । ଇନ୍ଦିରା ବୁଢ଼ୀଙ୍କର ପେଜୁଆ ଆଖିକୁ ଚାହିଁଥିଲେ । ମୁକୁଳା କେଶ ଏପାଖ ସେପାଖ ହେଉଥିଲା । ଦେହ ଦୋହଲୁଥିଲା । ଘୂରିଲା ଘୂରିଲା ଉଡ଼ାହେଲା ଦେହ ନାଚୁଥିଲା ।

ବୁଢ଼ୀ ଓଠ ମେଲାଇ ବକାଙ୍କ ପରି ଗୃହିଁରହିଥିଲେ ।

ହସ ଥମିଲାରୁ ଇନ୍ଦିରା କହିଲେ, ଆମର ଖୁଣ ବାହୁନିବାକୁ ପୁଣି ସହରରୁ ଧାଇଁଆସିଛ କି ବୋଉ ? ତମ ଅମଳକୁ ଆମ ଅମଳ ସଙ୍ଗେ ତଉଲ କରିବାକୁ ମନ ବଳାଅ ନାହିଁ । ଆମର ଚଳଣି ବଦଳିଲାଣି । ଲାଜସରମ ଆମ ଦେହରେ ବସା ବାନ୍ଧି ନ ଥାଏ । ଲାଜସରମ ପରଙ୍କ ଆଖିରେ ଥାଏ । ତୁଣ୍ଡର କଥାରେ ଥାଏ । ବୁଢ଼ାବୁଢ଼ୀ ହେଲେ ପାକୁଆ ମୁହଁରୁ ଲାଜପାଣି ଝୁଲୁଡ଼ପଡ଼େ । କଥାରେ ଅସନା ଭାବନା ପଶେ । ତମର ସେଇଆ ହୋଇଛି । ମୋ ସଂସାର ବିଷୟରେ ମୁହଁ ଖୋଲିବ ନାହିଁ ବୋଉ ! ଆସିଛ, ଦିନେ ଦି'ଦିନ ଶାନ୍ତି ସୁଖରେ ବେଳ କଟାଇ ପୁଣି ତମର ସଣ୍ଣିଆ ସୁନାବୋହୂ ସୁନ୍ଦରିଆ ସଂସାରକୁ ଫେରିଯାଅ । ଏତିକି କହି ଇନ୍ଦିରା ଉଠିଥିଲେ ।

ଶାଶୁବୁଢ଼ୀ ବସୁମତୀ ହାରିବା ଲୋକ ନୁହନ୍ତି । ସେ ବି ଉଠି ଠିଆ ହେଲେ । ଚର୍ଜିଉଠିଲେ, ତତେ ମୁଁ ଡରେ କି ଲୋ ନାଁ-ପକେଇ ? ତୋ' ଗୁଣ କଣ ମତେ ଅଛପା ଅଛି ? ତୋ' ବାପ ଜାଣେ ତତେ ଗୁଞ୍ଜି କରି ମୋ' ଘରେ ଥୋଇଦେଇ ଯାଇଥିଲା ! ହଇଲେ କାହିଁକି ? ମନକୁ ପଗ୍ଚର । କହିବାକୁ ଲାଜ । ଛିଃ— । ଗୃଳିଯିବି ମ, ଏଇଲେ ମୁଁ ଗୃଳିଯିବି ।

ଯାଅ ବୋଉ, ଯାଅ । ପାଟିତୁଣ୍ଡ କର ନାହିଁ । ଲୋକହସା ହୁଅ ନାହିଁ ।

ମୁଁ ଲୋକହସା ହେବି, ନା ତୁ ହେବୁ ? ବଢ଼ିଲା ଝିଅଟା ଅନୁପା, ତାକୁ ଶାଢ଼ି ଖଣ୍ଡେ ପିନ୍ଧାଉନୁ । ମେଏମେ ପରିକା କାରବାର ହେବାକୁ ଛାଡ଼ିଦେଉଛୁ । ଏଡ଼େବଡ଼ ଝିଅ, ଆନନ୍ଦର ସେହି ଭେଣ୍ଡା ମଉନମୁହାଁ ଭଣଜା ସଙ୍ଗରେ କେମିତି ରଜଘସ ହୋଇ କାରବାର ହେଉଛି । ଦେହରେ ଲଦିହୋଇ ତାକୁ ଠେଲି କରୁଛି, ଠେଲି ହେଉଛି । ହସିହସି ଗଡ଼ିଯାଉଛି ।

ବହମ ମୋର ଭଣଜା, ପୁଅଠୁଁ ବଳି ଅଧିକ । ଆଠ ବରଷ ହେଲା, ଅନୁପା ନିରୁପା ତାର କୋଳରେ କାଖରେ ବଢ଼ିଛନ୍ତି, ଗୋ ବୋଉ ! ଭାଇ

ଉଭଣୀ । ସେମାନେ ବଡ଼ ହୋଇଛନ୍ତି କି ସାନ ହୋଇଛନ୍ତି, ସେମାନଙ୍କ ଆଖିକୁ କ'ଣ ଦିଶିବ ? ମୋ ଆଖିକୁ ଦିଶିବ ? ନ ଦିଶିବା ଭଲ । ସମସ୍ତେ ଗେଲ କରିକରି ହେବେ । ମାଡ଼ ମରାମରି ହେବେ । ବିଦ୍ୟମ ଅନୁପା ଓ ନିରୁପାଙ୍କ କାନ ଧରି ଉଠ୍‌ବସ କରାଇବେ, ପାଠ ଶିଖାଇବେ । ସେମାନେ କାନ୍ଦିଲେ ତାଙ୍କୁ ଗେଲ କରିବେ । ବୋଳ ଦେବେ । ତମେ କାହିଁକି ସନ୍ଧି-ପାରୁନ ? ତମ ମନରେ କାହିଁକି ଅସନା କଥାଣ ପୂରାଇଛ ?

ଇନ୍ଦିରା ମୁହଁ ବୁଲାଇ ଶାଶୁବୁଢ଼ୀଙ୍କୁ ଗୁହିଁଲେ । ତାଙ୍କର ମୁହଁ ମଳିନ ପଡ଼ିଥିଲା । ଅଜାଣତରେ ଦୁଇ ଆଖିରେ ଲୁହ ଛଳଛଳ ହେଉଥିଲା । କ୍ୟାରମ ଖେଳା ଛାଡ଼ି କୋଠା ଉପରୁ ଅନୁପା ଖଞ୍ଜା ଭିତରକୁ ଓହ୍ଲାଇ ଥିଲା । ବରଣ୍ଡା ଉପରକୁ ଆସି ବୋଉ ଓ ଜେଜେ ମା'ଙ୍କ ମୁହଁକୁ ଗୁହିଁଲା । ପଚାରିଲା, କ'ଣ ହେଲା କି ବୋଉ ? ତୋ ଆଖିରେ ଲୁହ କାହିଁକି ?

ଇନ୍ଦିରା ହସିଲେ । ମୁଗ୍ଧ-ଆଖିରେ ଫ୍ରକପିନ୍ଧା ଝିଅଟିର ମୁହଁକୁ ଗୁହିଁ ତା ମୁଣ୍ଡର କେଶ ସାଉଁଳିଦେଲେ ।

ଅମଳିନ ମଲ୍ଲୀଫୁଲ ପରି ଶୋଭନ ମୁହଁରେ ଗୋଲାପୀ ଆଭା । କାନରେ ନାଳ ପଥରବସା ଫୁଲ ଦିଓଟି ଝଟକି ଉଠୁଛି । ବେକରେ ଝୁଲୁଛି ଏକ-ସରିଆ ସୁନାର ହାର । ତହିଁରୁ ଝୁଲୁଛି ଅଶୋକଚକ୍ର ପେଣ୍ଡାଣ୍ଟ୍ । ତହିଁରେ ଖଞ୍ଜା ଚୁନା ଚୁନା ଧୋବ ପଥର । ହାତରେ ଦି'ଦି ପଟି ସୁନାର କାଚ, ଡାଇମଣ୍ଡକଟା । ସ୍ୱାସ୍ଥ୍ୟ ବଦଳିଛି, ତଥାପି ଅନୁପା ତନୁ-ପାତଳୀ । କିଏ କହିବ ସେ ବଡ଼ଝିଅ ହେଲାଣି ? ମନେପଡ଼ଯାଉଛି ତାର ପିଲାଦିନର କଣ୍ଠା-ଦୋହଲା ରୂପ । ବାର ଦିନେ ତେର ରୋଗ । ବିଦ୍ୟମର ନିର୍ବିକାର ଅକୁଣ୍ଠ ସେବା ।

ଅନୁପା ବଞ୍ଚିରହିଛି ।

କାହିଁ କହୁନୁ କାହିଁକି ବୋଉ ?

ତୋ ଜେଜେମା କହୁଛନ୍ତି ଏଣିକି ତୁ ଶାଢ଼ି ପିନ୍ଧିବୁ ।

କାହିଁକି ବୋଉ ?

ତଡେ ଭଲ ମାନବ ମା !
ମତେ ତ ଅଡୁଆ ଲାଗିବ ।

ଇନ୍ଦର ଆଜ କଅଣ କହିବା ଆଗରୁ ନିରୁପା ଓ ସୁରୂପା ପାଖକୁ ଆସିଲେ । ଦାଣ୍ଡ କବାଟ ମେଲାଇ ଝାଳନାଳ ହୋଇ ବଙ୍କିମ ଆସିଲା । ପିଣ୍ଡା ତଳେ ଠିଆହେଲା । ଧଳାକନାର ଝାଳଭିଜା ହାଓ୍ବାଇନରେ ସିମେଣ୍ଟଗୁଣ୍ଡ ଲେସିହୋଇଛି । ଝୁରୁଝୁରୁ ଅଲଗା କେଶ ଓ ରୁଢ଼ିଆ ମୁହଁର ଅବସ୍ଥା ସେହିପରି । ପିନ୍ଧିଥିବା କାଳିଆ ନଳୀପ୍ୟାଣ୍ଟର ଠାଏଠାଏ ସିମେଣ୍ଟ ଲାଗିଛି । ଆଖି ରଙ୍ଗ ଦିଶୁଛି । ତଥାପି, ମଣିଷ ପରି ମଣିଷଟିଏ ସେ । ମାମୁଁ ଆନନ୍ଦ-ଚନ୍ଦ୍ରଙ୍କ ପରି ଉଚ ଓ ସ୍ବାସ୍ଥ୍ୟବାନ୍ ।

ଇନ୍ଦର ତାକୁ ମୁଗ୍ଧ ଆଖିରେ ଚାହିଁଲେ । ମୁଣ୍ଡ ହଲାଇ ପଚାରିଲେ, ସୁରୁଖୁରୁରେ ସବୁ ଆସିଲା କି ବଙ୍କିମ ?

ହଁ, ମାଈଁ ! ଟ୍ରକ ବି ଯୋଗାଡ଼ କରିପାରିଲି । ଭଡ଼ା ଟିକିଏ ବେଶୀ ନେଲା । ବାଟରେ ଦି' ଜାଗାରେ ସେମାନେ ଟ୍ରକ ଅଟକାଉଥିଲେ । ଦି'ଦି ଟଙ୍କା ଇନାମ୍ ନେଲାରୁ ଆଉ କିଛି ଗଣ୍ଡଗୋଳ କଲେନାହାନ୍ତି । ଟଙ୍କା ସାତଟା ଅଧିକ ଖରଚ ହେଲା । ଗୋଦାମ ଗୁମାସ୍ତା ତା ପାଉଣା ମାଗୁଥିଲା; ବସ୍ତାକେ ଚାରଣା । ଟଙ୍କା ପନ୍ଦରଟି ଦେଲାରୁ ସେ ମୁହଁ ଆମ୍ବିଳା କଲା ।

ହଉ ହଉ, ତମେ ଯାଅ । ସେତକ ଭିତର ପାଖ ଗୋଦାମରେ ରଖାଅ । ଲୁଗାପଟା ବଦଳାଇ, କିଛି ଖାଇନିଅ । ସଞ୍ଜ ପରେ ଯାଇ ହାଡ଼ବନ୍ଧୁ ସମୁଦ୍ଧଙ୍କ ଦୋକାନରୁ ତିନି ଦଶବସ୍ତା ନେଇଆସିବ । ବାଉରିଆ ଖବର ପଠାଇଛି ।

ବଙ୍କିମ ପଚାରିଲା, ଟଙ୍କା ଦେବାକୁ ପଡ଼ିବ ତ ?

ଆଗରୁ ମୁଁ ଟଙ୍କା ଦେଇସାରିଛି । ହଉ, ଯାଅ ।

ବଙ୍କିମ ମୁଣ୍ଡ ନୁଆଇଁ ସଦର ଦରଜା ବାଟେ ପୁଣି ପଦାକୁ ବାହାରି-ଗଲା । ଅନୁପା ଓ ନିରୁପା ପିଣ୍ଡାରୁ ଓହ୍ଲାଇ ବଙ୍କିମର ପଛେ ପଛେ ଗଲେ ।

ଶାଶୁ ପଚାରିଲେ, କଏ କି ସେ ହାଡ଼ବନ୍ଧ, ସମ୍ବନ୍ଧ ? ଅନୁପା ପାଇଁ ପାତ୍ର ଠିକଣା କରିସାରିଲେଣି କି ବୋଉ ? ମହାପ୍ରସାଦ ନିର୍ବନ୍ଧ କରିସାରିଲଣି ? ଭଲ, ଭଲ । ଝିଅ ଘିଅ ସମାନ । ଝିଅର ବୟସ ହେଲା । ତାକୁ ନେଇ ପର-ଘରେ ଥୋଇଲେ ନିଶ୍ଚିନ୍ତ ହେବ । ତିଥିବାର ସ୍ଥିର କଲଣି ? ନନନ୍ଦକୁ ଖବର ଦେଲ ନାହିଁ ?

ବଳେ ସେ ନିମନ୍ତ୍ରଣ ଚିଠି ପାଇବେ । ସେହି ଚିଠିରୁ ସବୁ ଖବର ବୁଝିବ ବୋଉ ! ଏ ବେଳା ଆଉ ବସ୍‌ରେ ପୁରୀ ଯାଇପାରିବ ନାହିଁ । କାଲି ସକାଳ ଗାଡ଼ିରେ ଯିବ । ବିମଳ ନେଇ ଛାଡ଼ିଦେଇ ଆସିବ । ତମ ସଙ୍ଗେ ଗପ କରିବାକୁ ମୋର ତର ନାହିଁ । ମୁଁ ସଞ୍ଜରେ ସଭାକୁ ଯିବି । ସେଥିପାଇଁ ମତେ ପ୍ରସ୍ତୁତ ହେବାକୁ ପଡ଼ିବ ।

ତମେ ସଭାକୁ ଯିବ ? କି ସଭା ମ, ସେଠି କଅଣ ନାଚ-ତାମସା ହେବ ?

ସଭା ଶେଷରେ ହେବ । କେତେ ବଡ଼ବଡ଼ ଲୋକ ଆସିବେ । ସେମାନେ କହିବେ, ଆମ ନାରୀମାନଙ୍କ ଭିତରୁ ବି କେହି କେହି କହିବେ ।

କଅଣ କହିବେ ?

ପରଦା-ନିବାରଣୀ ସଭା ହେଉଛି । ପରଦା ଛାଡ଼, ଓଢ଼ଣା କାଢ଼ି ଆମ ଦେଶର ମାଇପେ ପଦାକୁ କିପରି ବାହାରିବେ, ଲାଜସରମ ଛାଡ଼ିବେ, ନିର୍ଭୟା ହେବେ···

ବାଉରି, କଣ୍ଡରା, ପାଣ ଓ କେଳାଘରର ମାଇପିମାନଙ୍କ ପରି ? ଏଇ ତେଲେଙ୍ଗାଣୀ ମୂଲିଆଣୀଙ୍କ ପରି ?

ହଁ, ହଁ ବୋଉ ! ସେମାନେ ସମସ୍ତେ ଆମର ଭଉଣୀ । ସଭାରେ ବଡ଼ବଡ଼ିଆ କହିବେ ଯେ ସେମାନେ ଆମର ଆଦର୍ଶ । ମୁଁ ବି ସେମିତି ଦି'ପଦ କହିଦେବି । ଲୋକେ ତାଳି ମାରିବେ । ଶୁଣିବାକୁ ଖୁସି ଲାଗେ । ନିଜକୁ

ସଙ୍ଗରେ ନେବ । ସେ 'ଦଶ ଅବତାର' ନାଚିବ । ଭଲ ନାଚେ । ତା ନାଚ ଦେଖି ସମସ୍ତେ ଖୁସି ହୁଅନ୍ତି । ତାଳି ମାରନ୍ତି । ଅନୁଟା ନିକମା, ପାଠ ଭଲ କି ସେ ଭଲ । ଆଗେ ନାଚୁଥିଲା । ଏବେ ଖାଲି ଡ୍ରାମାରେ ବାହାରେ । ଘର ଲାଜକୁଳୀ ।

ଶାଶୁ ରହି ରହି ଗୃହବଦନ ରହିଗଲେ ।

ଇନ୍ଦିରାଙ୍କ ସଙ୍ଗେ ଆଳାପ କରି ଭଲମନ୍ଦ ବାଣ୍ଟିବାକୁ ଆଉ ସୁଯୋଗ ତାଙ୍କୁ ମିଳି ନ ଥିଲା । ନାତୁଣୀମାନେ ପାଖେ ପଶିଲେ ନାହିଁ । ନାତିଟୋକା ବନ୍ଧମର କୋଠରିରେ ପଶି ଗପ କରିବାକୁ ଚେଷ୍ଟା କରି ସେ ବିଫଳ ହୋଇଥିଲେ ।

ତଳମହଲାର କଣିକଆ ଛୋଟ କୋଠରିରେ ବନ୍ଧମ ରହୁଥିଲା । ଖଣ୍ଡିଏ ତକ୍ତପୋଷ୍, ଗୋଟିଏ ଛୋଟ ଟେବୁଲ୍ ଓ ଗୋଟିଏ ଚଉକି । କାନ୍ଥ କଡ଼ରେ ଗୋଟିଏ ଆଲନା । ତହିଁରେ ଝୁଲୁଥିଲା ତାର ସମ୍ବଳ କେତେଖଣ୍ଡି ଜାମା, ପ୍ୟାଣ୍ଟ । ରାତିରେ ବେଳେବେଳେ ବୁଢ଼ୀ ସେହି କୋଠରିରେ ପଶନ୍ତି । ତକ୍ତପୋଷ୍ ଉପରେ ବସି ଏଣୁତେଣୁ ପଚାରନ୍ତି ।

ଇନ୍ଦିରା ଦେଖନ୍ତି, ବନ୍ଧମ ଚଉକି ଘୁଞ୍ଚାଇ ପଦାକୁ ବାହାରିଆସେ । ହାତରେ ବହି ଖଣ୍ଡିଏ ଧରି ଉପର ମହଲାକୁ ଉଠିଯାଏ । ଅନୁ ଓ ନିରୁଙ୍କର ପଢ଼ାଘରେ ପଶି ପିଲା ଦୁଇଟାଙ୍କୁ ପଢ଼ାଏ । କାଳେ ବୁଢ଼ୀ ସେ ଘରେ ପଶି ଏଣୁତେଣୁ ଗପିବେ, ସେଥିପାଇଁ ସେମାନେ କବାଟ କିଳନ୍ତି ।

ସମସ୍ତେ ତାଙ୍କୁ କରଛଡ଼ା ଦେଇ ରହୁଥିଲେ । କାହିଁକି ବୁଢ଼ୀ ପୁଣି ନ ଫେରି ମାଣ୍ଡଉଥିଲେ, ଇନ୍ଦିରାଙ୍କୁ ଅଜଣା ନ ଥିଲା । ସେ ମୁହଁ ଖୋଲି ମାଗନ୍ତି ନାହିଁ । ସବୁଥର ପରି ସେଥର ମଧ୍ୟ ଆଶା କରିଥାଆନ୍ତି ଯେ, ଇନ୍ଦିରା ତାଙ୍କୁ ବାଟଖରଚ, ହାତଖରଚ ଦେବେ ।

ସବୁ ନେଇ ଶେଷକୁ ସେ ବାହୁଡ଼ିଥିଲେ ଯେ ମୁହଁ ଫଣଫଣ କରିଥିଲେ । ଇନ୍ଦିରା ଦେଇଥିବା କୋଡ଼ିଏ ଟଙ୍କା ହାତଖରଚ ତାଙ୍କ ମନକୁ ପାଇ ନ ଥିଲା ।

ବଙ୍କମ ପାଖରୁ କିଛୁ ଆଦାୟ କରିବାକୁ ସେ ମୁହଁ ଖୋଲି ମାଗିଥିଲେ । ଦରିଦ୍ର ବଙ୍କମ ଦିଓଟି ଟଙ୍କା ତାଙ୍କୁ ଦେଇଥିଲା । ସେତକ ଅନୁପା ଦେଖି ଇଶ୍ୱରଙ୍କୁ କହିଥିଲା । ସେଇଥିପାଇଁ ହେବ ପରା, ସେ କହିଗଲେ, ଆଲୋ ବୋହୂ, ଏ ବଙ୍କମଟା ଭାରି ଗ୍ରେଟଲୋକ । ମଉନମୁହାଁଟା ଗୋଟିଏ ଦୋମୁଣ୍ଡିଆ ସାପ । ବୁଝି ହୁସିଆର ।

ମନ୍ତ୍ରୀଙ୍କ ଝିଅର ବାହାଘର । ସେଥିରେ ଯୋଗଦେବାକୁ ଯିବାଲାଗି ଇଶ୍ୱର ପ୍ରସ୍ତୁତ ହେଉଥିଲେ । ଆଜ ତାଙ୍କର ଶାଶୁଙ୍କ କଥା ମନେପଡ଼ୁଥିଲା । ଶନ୍ତାର ସେଇ ଖିଅରେ ମାଙ୍କ ଶାଶୁ ମୋତିମାଳାଙ୍କ କଥା । କୌତୁକରେ ରଜାଝିଅ ସଙ୍ଗେ କେଉଁ ସହରର ରଜାପୁଅର କେମିତି ଭେଟ ହୋଇଥିଲା, ସେଇ ଘଟଣା ସେ ଦିନେ ବନେଇଁ ଚୁନେଇଁ ତାଙ୍କର ନାତୁଣୀମାନଙ୍କୁ କହୁଥିଲେ । ବଙ୍କମ ପାଖରେ ଠିଆ ହୋଇଥାଏ ।

ନିବୁଝିଆ ସରଳମତି ଅନୁ, ପଚାରିଲା, କହ ମ ଆଈ, ସେଇ କନା-ଫୁଲର ନାମ । ବଙ୍କମଭାଇ ଶୁଣିଲେ ଶୁଣୁ । ସେ ଫୁଲ ସେ ଶୁଙ୍ଘିଲେ ଶୁଙ୍ଘୁ । ମୁଁ ବି ସେ ଫୁଲ ଶୁଙ୍ଘିଦେବି ।

କାହିଁକି ଲୋ ଅନୁ ! ତୁ ଅଦୃଶ୍ୟ ହୋଇ କଣ କରିବୁ ?
ବକଭାଇ କେଉଁ ଉଆସ ଭିତରେ ପଶିବ ମୁଁ ଦେଖିବି ।

ନିରୁପା ପଚାରିଲା, ଉଆସ ଭିତରକୁ ଗଲେ ତମେ ଦହେଁ କଅଣ କରିବ ?

ବଙ୍କମ କହିଲା, ତୋ ମିଛଗପର ମୂଳ ନାହିଁ, କ ଶେଷ ନାହିଁ ଆଈ ! ତୋ ଗପ ଘସର ହେଲାଣି । ରାଜାରାଜୁଡ଼ା କେବେଠୁଁ କୁଆଡ଼େ ଉଭେଇଗଲେଣି । ସେମାନଙ୍କ ଉଆସରେ ଏବେ ମୂଷା ଝିଟିପିଟି ରହିଲେଣି । ପାରା, ଚେଟମଣୀ, ଘରଚଟିଆ ବସା ବାନ୍ଧିଲେଣି । ସେ ସବୁ ଉଆସ ଭିତରକୁ ପଶିବା ଆଉ ଲୋଡ଼ା ହେବ ନାହିଁ ।

ତୁ ଠିକ୍ କହିଲୁ ନାତି ! କଳାଫୁଲ ଧଳାଫୁଲ ଲୋଡ଼ା ହେବ ନାହିଁ । ସମସ୍ତେ ଖୋଲା । ସମସ୍ତେ ଭେଟାଭେଟି । ଯାହାକୁ ଯାହାର ମନ ତାକୁ ସେ ବାହା ହୋଇପାରିବ । ବରକନିଆ ନିଜେ ନିଜର ହାତଗଣ୍ଠି ପକାଇବେ । ନିଜେ ହୁଳହୁଳି ଦେବେ । ନିଜର ଫୁଲଶେଯ ନିଜେ ସଜାଇବେ । ତୁ ବହୁତ ବହୁତ ପାଠ ପଢ଼ିଲୁ । ହାକିମ ହେବୁ । ତୋ ବାପା କୁଆଡ଼େ ଏବଠୁଁ ତୋ ପାଇଁ କନିଆ ଖୋଜିଲେଣି । ତୋ ମାମୁଁଙ୍କ ପାଖକୁ ଚିଠି ଦେଇଛନ୍ତି । ତୋ ମାଈଁ କହୁଥିଲେ । ତୋ ବାପ ପୂଜାଏ ବୁହୁଛନ୍ତି ।

ଅନୁପା କହିଲା, ବିକଭାଇ ବାବାଜୀ ହେବ ଲୋ !

ସତେ କି ବିକ୍ରମ ? ସେଇଥିସକାଶେ ମୁଣ୍ଡ ଫୁରୁଫୁରୁ କରିଛୁ ? ନିଶଦାଢ଼ି ଖିଅର ହେଉନୁ ?

ଖାଲି ସେତିକି ? ନିରୁପା କହିଲା, ସେ ମାଛ ମାଉଁସ, ଅଣ୍ଡା ଖାଉ-ନାହିଁ ।

ଅନୁପା କହିଲା, ଖାଲି ସେତିକି ନୁହେଁ ଲୋ ଆଉ ! କେତେ ଧର୍ମ-ଗ୍ରନ୍ଥ ଆଣି ପଢ଼ୁଛି । ଗୀତା ମୁଖସ୍ଥ କରୁଛି । ମତେ ମୁଖସ୍ଥ କରିବାକୁ କହୁଛି ।

ବିକ୍ରମ କହିଲା, ଏଇସବୁ ବାଜେ ଗପରେ ତୁ ସମୟ ନଷ୍ଟ କରିବୁ, ନା ପାଠ ପଢ଼ିବୁ ?

ପଢ଼ିବି ତ ଗଳ୍ପବହି ପଢ଼ିବି । ଉପନ୍ୟାସ ତ ଆଉ ଆଣି ହେଲ ନାହିଁ । କହିଲ, ସେଗୁଡ଼ାକ ଖରାପ । କାହିଁ, ମତେ ଖରାପ ଲାଗେ ନାହିଁ । ପଢିବାକୁ ଭାରି ମଜା ଲାଗେ । ସିନେମା, ଥିଏଟର, ଯାତ୍ରା-ନାଚରୁ ଉପନ୍ୟାସ ଭଲ, ଜାଣିଲୁ ଆଉ ! ଶୁଣ ବିକଭାଇ ! ମୁଁ ତମର ଗୀତା ମୁଖସ୍ଥ କରିବି ନାହିଁ । ସଂସ୍କୃତ ଉଚ୍ଚାରଣ ଭୁଲ କଲେ ତମର କାନମୋଡ଼ା ଖାଇବି ନାହିଁ ।

ମୋତିମାଳା କହିଲେ, ସେ ଛତରା ହେଉଛି ସେ ବାବାଜୀ ହେବ, ତତେ ମାତାଜୀ କରି ପକ୍ଷୀରାଜ ଘୋଡ଼ା, ଅବା ମନପବନ ଡଙ୍ଗାରେ ବସାଇ ଦରିଆ ମଝିରେ କେଉଁ ଦ୍ୱୀପକୁ, ଅଗନାଗ୍ନି ବନସ୍ତ ଭିତରକୁ ନେଇଯିବ । ଯେମିତି ମାୟାପୁରର ରଜାଝିଅକୁ ଅଳକାପୁରର ରଜାପୁଅ ଭଣ୍ଡ ସନ୍ନ୍ୟାସୀ

ବେଶରେ, ନଡେ ତ କନାଫୁଲ ଶୁଙ୍ଘି ଅଦୃଶ୍ୟ ହୋଇଥିଲା । ରଜାଝିଅ ନାଲିଫୁଲ ଶୁଙ୍ଘେଇ ମୋହ କରିଥିଲା । ସେ ରଜାପୁଅ ତାକୁ ମନପବନ ରଥରେ ପକାଇ ଉଡ଼େଇ ନେଇଗଲା, ଦରିଆ ମଝିର ଦ୍ୱୀପକୁ ।

ନିରୁପା କହିଲା, ଉଡ଼ାଜାହାଜରେ ନେଇଥିବ !

ଅନୁପା କହିଲା, ସବୁ ମିଛ କଥା ମ, ଡିଟେକ୍‌ଟିଭ୍ ନଭେଲର ଗଳ୍ପ ପରି । ପିଢ଼ିବାକୁ ଭଲ ଲାଗେ । ଆଉ ମ ! ତୁ ମାୟାପୁର ରଜାଝିଅ କଥା କହ, ଆମେ ଶୁଣିବୁଁ । ସାନନ୍ଦ ଶୋଇପଡ଼ିଲାଣି । ସୁରୂପା ବୋଉ ସାଙ୍ଗରେ ଭୁବନେଶ୍ୱର ଯାଉ । ମୁଁ ଯିବନାହିଁ । ମୁଁ ସାନନ୍ଦକୁ ସମ୍ଭାଳିବ ।

ସ୍ୱପ୍ନମ କହିଲା, ଆଉ ମନରୁ ଫାନ୍ଦ ଗଢ଼ାଏ ଅସନା କଥା କହନ୍ତୁ । ରଜାପୁଅ, ରଜାଝିଅ, ହରଣରୂନ, ଏଇଆ । ନ ଶୁଣିବା ଭଲ । ବସି ବସି ଇତିହାସ ପଢ଼ ।

ଦେଖ ଦେଖ, ନାତିଟୋକା କେଡ଼େ ତରକା । ତଥେ ସେ ଭୁଲେଇ ନେବାକୁ ବସିଛି । ପାଖରେ ନାଲି ଫୁଲଟିଏ ରଖିଛି । ଭଣ୍ଡ-ବାବାଜୀମାନେ ଏମିତି ଝିଅବୋହୂଙ୍କୁ ଭୁଲେଇ ନଅନ୍ତି ।

ଶୁଣୁ ଶୁଣୁ ସେଦିନ ଇନ୍ଦିରା ମନକୁ ମନ ହସିଉଠିଥିଲେ । ହସୁ ହସୁ ଥକ୍‌କା ହୋଇ ଜଳ ଜଳ କରି ଶୂନ୍ୟକୁ ଚାହିଁରହିଲେ । ଆଖିର ଦୃଷ୍ଟିରେ ବାହାର ଦୁନିଆ ତାଙ୍କୁ ଦିଶୁ ନ ଥିଲା । ମନର ଦୃଷ୍ଟି ଦୂର ଅତୀତକୁ ଟାଣି-ହୋଇଗଲା । ଦେଖିଥିଲା ଜଣେ ଭଣ୍ଡ-ବାବାଜୀକୁ, ଯିଏ ଦିନେ ତାଙ୍କର ପବିତ୍ର ସରଳ ଅନୂଢ଼ା ଜୀବନକୁ କଳଙ୍କିତ କରିଥିଲା । ଇନ୍ଦିରାଙ୍କର ଚିତ୍ତ ଥରି-ଉଠିଲା । ମନକୁ ଆକଟ କଲେ । ମନକୁ ସାନ୍ତ୍ୱନା ଦେଲେ, ସ୍ୱପ୍ନମ ଅନୁପା ଯାଇଉଡ଼ଣି !

ବାହାରେ କାର୍ ଠିଆ ହୋଇଛି । ହର୍ଣ୍ଣ ଶୁଭୁଛି । ଅନୁପା ସାଙ୍ଗରେ ଗଲେ ମନ୍ତ୍ରୀଘର ବାହାଘର ଦେଖନ୍ତା । ସେ କଣ ଯିବ ? ପ୍ରଥିକା ଅଛନ୍ତି । ସେ ଅନୁପାକୁ କୋଳକୁ ଟାଣିବେ । କହିବେ, ମୋ ଝିଅ ବୋହୂକୁ ମତେ ଦିଅ, ଆଉ ଉଚ୍ଛୁର କରନା ସମୁଦୁଣୀ ! ବାଉରିବନ୍ଧୁ ସେଥି ଗାଡ଼ିରେ ବସିଥିବ । ମନ କଲେ ସେ ଗାଡ଼ି ଚଳାଇବ ।

ଅନୁପା ନ ଯାଉ । ସେ ଝରୁପାକୁ ସାଙ୍ଗରେ ନେବେ । ଘରେ ତ ମାଈଁ ଅଛନ୍ତି ।

ମୋତିମାଳା ମାଈଁ ବଡ଼ହୁଆଳ ଘରୁ ତାଙ୍କ ଝିଅଘରୁ ଅନୁପା ପାଖକୁ ଚିଠି ଲେଖିଥିଲେ—ମାଆ ଲୋ ଅନୁ, ଏଠି ମୋ ସମୁଦୁଣୀ ବେମାର ପଡ଼ିଛନ୍ତି । ବିଛଣାରୁ ଉଠୁନାହାନ୍ତି । ମୋତେ ପାଖରୁ ଛାଡ଼ୁନାହାନ୍ତି । କଟକ ଏବେ ଯିବି କେମିତି ? ତୁମେ ସମସ୍ତେ ମୋ ଆଖିରେ ନାଚୁଛ । ଏଠାକା ହାଲ ସୁଧୁରିଗଲେ ମୁଁ ନିଜେ ଯାଇ ପହଞ୍ଚିଯିବି । ମନ ଦୁଃଖ କରିବୁ ନାହିଁ । ମୋ ସୁନା କଣ୍ଢେଇ, ତମମାନଙ୍କ ସ୍ନେହକୁ ମୁଁ ଝୁରିହେଉଛି । ଇନ୍ଦର ଭାବନ୍ତି, ସେ ଆଜ ଆସିବେ ନାହିଁ । ତାଙ୍କର ସମୁଦୁଣୀଙ୍କୁ ପକ୍ଷାଘାତ । ଗୋଡ଼ ହାତ ଚଳୁ ନ ଥିବ । ତୁଣ୍ଡ ଫିଟୁ ନ ଥିବ । ଖେମଟା ନାଟ କରି, ବାଉ କଥା କହି ଝିଙ୍ଗାସିବାକୁ ତୁଣ୍ଡ ଖୋଲୁ ନ ଥିବ । ମାଈଁ ଏବେ ନଷ୍ଟିନ୍ତି । ତାଙ୍କ ଝିଅ ରତ୍ନମାଳାର ଘରର ସେ ସର୍ବେସର୍ବା ହୋଇଥିବେ । ଖୁସିରେ ଥିବେ ।

ଝରୁମ ପାଇଁ ସେ ଗୋଟିଏ ଭଲ ପ୍ରସ୍ତାବ ପଠାଇଛନ୍ତି । ଝିଅଟି କୁଆଁରେ ଗୋଟିଏ ଗୁଜଳରେ ଗଢ଼ା । ସୁବର୍ଣ୍ଣ ପ୍ରତିମା ।

ବାଇଶ ବର୍ଷର ପିଲାଟା ବି.ଏ. ପାସ୍ କଲା । କେଉଁ ଲଙ୍କାଗଡ଼ ଜିଣିଲା ଯେ ଲୋକେ ତାକୁ ଛନ୍ଦିବାକୁ ଉଚ୍ଛନ୍ନ ? ପ୍ରସ୍ତାବ ପଠାଇଲେଣି । ହାତିଘୋଡ଼ା ଯାଚିଲେଣି । ଆହୁରି ପଢ଼ିବାକୁ ମନ କଲେ, ଟଙ୍କା ଦେଇ ପଢ଼ାଇବାକୁ ପ୍ରସ୍ତୁତ ହେଲେଣି । ଅପାଠୁଆ, ଅଧାପାଠୁଆ ଝିଅଗୁଡ଼ାଙ୍କୁ ପର-ଘରକୁ ବିଦାକରି ନଷ୍ଟିନ୍ତ ହେବାକୁ ସେମାନେ ଗୁହୁଁଛନ୍ତି । ଯୁଗ ବଦଳିଲେ କ'ଣ ହେବ । ଅପାଠୁଆ, ଅଧାପାଠୁଆ ଯୁବତୀ-ଝିଅ ଘରକୁ ପିତା । ପରଘରେ ଖଟିବା ବ୍ୟତୀତ ସେମାନଙ୍କର ଆଉ କିଛି ଗତି ନ ଥାଏ । କେତେ ରଜ, ଖୁଦୁରୁକୁଣୀ, କୁଆଁରପୁନେଇଁ କରିବେ ?

ନିଜେ ସେ ବି ଦିନେ ଘରକୁ ପିତା ହୋଇଥିଲେ । ଭାଇ ତ ନ ଥିଲେ; ପାଞ୍ଚ ଭଉଣୀରେ ସେ ଥିଲେ ସବା ସାନ । ରୂପରେ ଗୁଣରେ କେହି କାହାଠୁଁ ଊଣା ନ ଥିଲେ ।

ଖୁସିବାସିଆ ଚାଷୀ-ଘର । ଜମି ନ ବିକିଲେ ଦେଇନେଇ ସମ୍ମାନ ରଖି ବାହାଘର କରିହେବ ନାହିଁ । ଦିଆ-ନିଆ ବେପାର ଆଗ ଛିଣ୍ଡିଲେ ସେଇଠୁ ଝିଅର ରୂପଗୁଣ ଓ ଅନ୍ୟ କଥାର ବିଚାର । ଅନ୍ଧାରରେ ବାଡ଼ ବୁଲିଉଣ୍ଡି ଯେଉଁଠି ବାଜିଲା । ଝିଅର କପାଳ ।

ଯେତିକି ଚୂନାକୁ ସେତିକି ପିଠା । ଜମିବିକା ଧନକୁ ଚାହିଁ ଜୋଇଁ । ଚାରି ଝିଅଙ୍କୁ ଘରୁ ବିଦା କଲା ପରେ ଦେଖାଗଲା ଯେ, ବାକି ଯେତିକି ସମ୍ପତ୍ତି ଅଛି, ସେଥିରେ ବର୍ଷକର ପେଟପାଟଣା ସୁରୁଖୁରୁରେ ଚଳୁନାହିଁ । ସେଥିରୁ ଅଧେ ବିକି ଇନ୍ଦିରାଙ୍କୁ ପରଘରକୁ ବିଦାକଲେ ବାପ ମା ଅଧେଦିନ ଖାଲିପେଟରେ ଚଳିବେ ।

ଆନନ୍ଦଚନ୍ଦ୍ରଙ୍କ ବିଷୟରେ ପ୍ରସ୍ତାବ ଆସିଲା । ବାପ ମା ଓ ଗ୍ରାମବାସୀ ଜାଣିଥିଲେ ଯେ, ଝିଅର ଉପଯୁକ୍ତ ଜୋଇଁ ସେ ନୁହେ । ତା ଛଡ଼ା ଇନ୍ଦିରା ପାଇବ କନିଆ-ଶାଶୁ । ତେବେ, ଜମିବାଡ଼ି ସମ୍ପତ୍ତି ଭଲ ଅଛି । ପ୍ରସ୍ତାବଟିଏ ଯେତେବେଳେ ତା ମନକୁ ଆସି ପହଞ୍ଚିଛି, ପୁଣି ସେମାନେ କିଛି ଚାହୁଁ-ନାହାନ୍ତି, ସଙ୍ଗେ ସଙ୍ଗେ ରାଜି ହୋଇଯିବାର କଥା ।

ସେଗ୍ରାମର ଝିଅବୋହୂଙ୍କ ନାମରେ ଯେଉଁ ଅପବାଦ ସୃଷ୍ଟି ହୋଇଛି, ବଢ଼ିଲା ଝିଅ କେଇଟିଙ୍କୁ ମାନେମାନେ ପରଘରକୁ ବିଦାକଲେ ଯାଇଁ ନିସ୍ତାର । ଯାହା ଘଟିଗଲା, ସେଥିକୁ ଏବେ ମୁରବିମାନଙ୍କ ଭିତରୁ ଅଧିକାଂଶ ଦାୟୀ ।

ଦରବୁଢ଼ା, ଧଳଦାଢ଼ି ଥିଲା ଲମ୍ବ-କେଶିଆ ବାବାଜୀମହାତ୍ମା ଜଣକ ଅନ୍ଧାର ରାତିରେ, ଝିପିଝିପି ବରଷା ଓ ଭୁହାଇ ତୋଫାନର ସୁଯୋଗ ନେଇ ଯଦି ଖସି ପଳାଇ ନ ଥାନ୍ତା, ସେ ଆଜି ଜୀବନ ପାଇ ନ ଥାନ୍ତା । ସାବିତ୍ରୀ-ଅମାବାସ୍ୟା ମୋଟେ ଦୁଇଦିନ ଥାଏ ।

ବର୍ଷକ ତଳେ ସେ ବେକରେ ବଡ଼ବଡ଼ ରୁଦ୍ରାକ୍ଷର ମାଳା ଲମ୍ବାଇ, ହାତରେ କମଣ୍ଡଳୁ ଓ ଚିମୁଟା ଧରି, କାଖରେ ମୃଗଚର୍ମର ବିଡ଼ା ଜାକି, ଆଉ ଗୋଟିଏ ମୁଣା ଭିତରେ ଜଡ଼ିବୁଟି ଓ କେତେ କଅଣ ଧର୍ମଗ୍ରନ୍ଥ ଭରି ଇନ୍ଦିରାଙ୍କର ଗ୍ରାମରେ ପହଞ୍ଚିଥିଲେ ।

ନଈକୂଳିଆ ଗ୍ରାମଟିର ନାମ କନ୍ଦଡ଼ା । ଗ୍ରେଠ ହେଲେ ବି ଛୋଟିଆ ନ ହେଲେ ନାହିଁ, ନିଶ୍ଚେ ଷୋଳ ପାଠକର ଲୋକେ ବସବାସ କରୁଥିଲେ । ଧନୀରୁ ମୂଳିଆ ଯାଏ । ଅଧିକାଂଶ ଅଶିକ୍ଷିତ । ଟିପଚିହ୍ନ ଦେଲାଲୋକ । କେହି କେହି ସାକ୍ଷର ଯେ ନାମ ଦସ୍ତଖତ କରିପାରନ୍ତି । ଅନ୍ୟମାନେ ଅଧାପାଠୁଆ ।

ସମସ୍ତଙ୍କର ଧର୍ମଆଡ଼କୁ ମନ । ଗୋ-ବ୍ରାହ୍ମଣ, ମୁନି-ସନ୍ନ୍ୟାସୀ, ଦେବଦେବୀଙ୍କଠାରେ ଅଚଳା ଭକ୍ତି । କେଉଁ ଅପନ୍ତରାର ପଥର ଅବା ଗଛର ଆବୁରେ ଗୋଳାସିନ୍ଦୂର ବୋଳି କଜଳରେ ଆଖି, ନାକ ଓ ପାଟିର ସଙ୍କେତ ଦେଲେ, ହଜଣ କେହି ଅଲୌକିକ ସପନ ଦେଖିଲେ ବିଶ୍ୱାସ ଅଜାଡ଼ିହୋଇପଡ଼େ । ଅବିଶ୍ୱାସ କରିବାକୁ ଛାତି ଥରଥର କମ୍ପେ ।

ଗୋରା ତକତକ ସ୍ୱାସ୍ଥ୍ୟ, ସୁନ୍ଦର ଚଉହାତିଆ ମରଦ ସେ ସନ୍ନ୍ୟାସୀ । ପାନ-ପଚରିଆ ନିଖୁଣ ମୁହଁଟି ହସିଲାପରି । ଶୁଆଥଣ୍ଟ ପରି ବଡ଼ ନାକ । ଚଉଡ଼ା କପାଳ । ଚକଚକ ଉଜ୍ଜ୍ୱଳ ଦାନ୍ତ । ଧନୁପରି ଭ୍ରୂଲତା ହିଓଟି । ବଡ଼ ବଡ଼ ଉଜ୍ଜଳ ଆଖି ହିଓଟିରେ କମିଆ ଥାଏ । ସେ ଆଖି ମଣିଷକୁ ପାଖକୁ ଟାଣେ, ସେ ଆଖି ତାଙ୍କର ପାଦତଳେ ମଣିଷକୁ ଅବନତ କରେ । ମୂକ କରେ । ଆଜ୍ଞାବହ କରେ । ଅଳ୍ପ କଥା କହୁଥିଲେ ସେ ସନ୍ନ୍ୟାସୀ । ହରିନାମ କୀର୍ତ୍ତନ କଲାବେଳେ, ଧର୍ମଶାସ୍ତ୍ର ପଢ଼ାଇଲାବେଳେ ସେ ମୁଖର ହେଉଥିଲେ । ତୁଣ୍ଡରେ କୃଷ୍ଣନାମ ।

କନ୍ଦଡ଼ା ଗ୍ରାମରେ ଜଣେ ଧନୀ ମହାଜନଙ୍କର ବଗିଚା ଖଞ୍ଜାରେ ତାଙ୍କର ରହଣି ହୋଇଥିଲା । ତାଙ୍କର ଶାସ୍ତ୍ରଜ୍ଞାନରେ ମୁଗ୍ଧ ହୋଇ ଲୋକେ ତାଙ୍କୁ ଶୁକମୁନି ବୋଲି ଡାକିବାକୁ ଲାଗିଲେ । ସେ ଥିଲେ ବ୍ରହ୍ମଚାରୀ । ସେ ନିଜକୁ ବିରହିଣୀ ରାଧିକା ନାମରେ ପରିଚିତ କରାଉଥିଲେ । କହୁଥିଲେ, ଭଗବାନ ଶ୍ରୀକୃଷ୍ଣଙ୍କୁ ସେ ନିଜର ବିଶୁଦ୍ଧ ଭକ୍ତିଯୋଗରେ ମଥୁରାରୁ ନିଜ

ଆଖିକୁ ଉଚ୍ଛନ୍ନ କରାଇ ଆଣିପାରୁଥିଲେ । ନିଶୀଥରେ, ଅନ୍ଧକାରରେ, ଲୋକେ ରାତ୍ରିଅଧରେ ଶୁକମୁନିଙ୍କର ବନ୍ଦ-କୋଠରି ଭିତରୁ ନୂପୁର-ଧ୍ୱନି ଶୁଣିପାରୁଥିଲେ ।

ସେ ଥିଲେ ରାଧାଭାବାପନ୍ନ । ଯେଉଁମାନେ ବିଶୁଦ୍ଧ ଚିତ୍ତରେ ରାଧାଭାବାପନ୍ନ, ଅଥବା ଲଳିତା, ବିଶାଖା, ବୃନ୍ଦାବତୀ ଅବା କୌଣସି ଏକ ଗୋପୀଙ୍କର ଭାବାପନ୍ନ ହୋଇପାରୁଥିଲେ, ଚିନ୍ମୟଚିତ୍ତରେ ରସରାଜ ନଟବର କ୍ଷୀରଚୋର କୃଷ୍ଣଙ୍କୁ ସ୍ମରଣ କଲେ ବଂଶୀଧାରୀ ଗିରିଗୋବର୍ଦ୍ଧନଧାରୀ ଶ୍ରୀକୃଷ୍ଣ ଆସି ତା ଆଗରେ ଉଭା ହେଉଥିଲେ । ରାଧାଭାବାପନ୍ନ ଶୁକମୁନିଙ୍କର ଚରଣସେବା ନ କଲେ, ତାଙ୍କର କରୁଣାକଣିକା ଲାଭ ନ କଲେ ଚିନ୍ମୟତା ଆସିବ କିପରି ?

କନ୍ଦୁଡ଼ା ଗ୍ରାମର ଅନେକ ଧାର୍ମିକ ଭକ୍ତ ଦର୍ଶନ ଲାଭ କରିଥିଲେ । ଯେଉଁମାନଙ୍କର ଅନ୍ତର ଶୁଦ୍ଧ ନୁହେଁ, ଯେଉଁମାନେ ପାପର ବୋଝ ବୋହି ଆତଯାତ ହେଉଛନ୍ତି, ସେମାନେ ଅନ୍ଧକାରରେ ନୂପୁରଧ୍ୱନି ଶୁଣିଲେ ଶୁଣିପାରନ୍ତି । ଅଗୁରୁର ଗନ୍ଧ ଶୁଙ୍ଘିପାରନ୍ତି; କିନ୍ତୁ ପାପଚକ୍ଷୁରେ ମୋହନ-ରୂପ ଦେଖିବେ କିପରି ? ଗୁରୁସେବା କରି ଆଗ ପାପ କ୍ଷୟ ହୋଇପାରିଲେ ସେମାନଙ୍କୁ ଦିବ୍ୟ-ଦୃଷ୍ଟି ମିଳିପାରିବ ।

କନ୍ଦୁଡ଼ା ଗ୍ରାମର ନରନାରୀଙ୍କ ଉପରେ ଗୁରୁଦେବ ଶୁକମୁନିଙ୍କର ଦୟା ଥିଲା । ଅନେକ ପୁରୁଷ ଓ ସ୍ତ୍ରୀ ସେବା କରି ଚିନ୍ମୟଭାବ ପ୍ରାପ୍ତ ହୋଇଥିଲେ । ଦିବ୍ୟଦୃଷ୍ଟିରେ କୃଷ୍ଣଙ୍କର ଦର୍ଶନ ଲାଭ କରିଥିଲେ । ଅତି ଭାଗ୍ୟବତୀ କେତେ ରସରାଜଙ୍କର ସ୍ପର୍ଶ ଲାଭ କରିଥିଲେ ।

ସେହି ଭାଗ୍ୟବତୀମାନଙ୍କ ମଧ୍ୟରୁ ଇନ୍ଦିରା ହେଉଛନ୍ତି ଜଣେ । ତାଙ୍କର ମାତା, ଅନ୍ୟ କେତେଜଣ ସଂସାରୀଙ୍କ ପରି ବିଷୟବିଷରେ ଘାଣ୍ଟି ହୋଇଥିବାରୁ ସମ୍ପୂର୍ଣ୍ଣ ଚିନ୍ମୟଭାବ ପାଇପାରି ନ ଥିଲେ । ସେମାନେ କେବଳ ନୂପୁରଧ୍ୱନି ଶୁଣିଥିଲେ । ବଣମଲ୍ଲୀ ଓ ଅଗୁରୁର ଗନ୍ଧ ଆଘ୍ରାଣ କରିଥିଲେ । ନଟରାଜଙ୍କର ସ୍ୱରୂପ ଦର୍ଶନ କରିପାରି ନ ଥିଲେ । କେହି କେହି ଫସାରି ହେଲେ,

ବିଷୟପଙ୍କରେ ଘାଣ୍ଟିଚକଟି ହୋଇଥିଲେ ମଧ୍ୟ ପୁଣ୍ୟବନ୍ତ ଥିବାରୁ ରସିକଶେଖରଙ୍କର ଦର୍ଶନ ଲାଭ କରିଥିଲେ ।

ନିର୍ମାଲ୍ୟ ଯେଉଁମାନେ, ନିଷ୍ପାପ ନିଷ୍କଳଙ୍କ ଯେଉଁମାନେ, ସେମାନେ ସବୁ ପାଇଥିଲେ । ରସରାଜଙ୍କର ପ୍ରେମରେ ପାଗଳିନୀ ହୋଇଥିଲେ । ଗୁରୁଦେବ ଶୁକମୁନିଙ୍କର ଅପାର କରୁଣା ପାଇ କେହି କେହି କୃତକୃତ୍ୟ ହୋଇ ତାଙ୍କର ଚରଣତଳେ ସବୁ ଭକ୍ତି ଅଜାଡ଼ି ଦେଇଥିଲେ ।

ପରସ୍ପର ନିକଟରେ ଗୋଟିଏ ବିଷୟ ସେମାନେ ଗୋପନ ରଖୁଥିଲେ—ସ୍ପର୍ଶ ଓ ରସରାଜଙ୍କର କେଳିକଳା । ସେମାନେ ପ୍ରତ୍ୟେକେ ବିଚାରୁଥିଲେ ଯେ, ସେତକ ତାଙ୍କର ନିଜସ୍ୱ । ଗୁରୁଙ୍କର ସ୍ୱତନ୍ତ୍ର କରୁଣା, ଯାହା ଅବ୍ୟକ୍ତ ।

ଯୁବତୀ କନ୍ୟା ଇନ୍ଦିର ଲଳିତା ଭାବାପନ୍ନ ହୋଇଥିଲେ । ରାଧାଭାବାପନ୍ନ ଶୁକମୁନିଙ୍କର କଲ୍ୟାଣରୁ କୃଷ୍ଣପ୍ରେମ ଲାଭ କରିଥିଲେ । ପ୍ରେମ-ବାଇଆଣୀ ହୋଇ ଗୁରୁଙ୍କ ପଦରେ ସେବା କରିବାକୁ ଉଚ୍ଛନ୍ନ ହେଉଥିଲେ ।

ଭାଉଜକଲେଖା ହେବେ ଜଣେ, ମାଈସଞ୍ଜବେଳେ ଇନ୍ଦିରଙ୍କର ହାତଟି ଧରି ତାଙ୍କର ଅଗଣାଭିତରକୁ ନେଲେ । ସେ ଦୁଇଟି ସନ୍ତାନଙ୍କର ମା । ତାଙ୍କର ନାମ ଲୀଳାବନ୍ତ ।

ଇନ୍ଦିରଙ୍କ ହାତରୁ ପୂଜାଥାଳି ନେଇ ତୁଳସୀ ମୂଳରେ ରଖିଲେ । ସେ ଥାଳିରେ ଘୋରା ଚନ୍ଦନ, କର୍ପୂର, ଫୁଲମାଳ, ଲୋବାନବତି ଥିଲା । ଇନ୍ଦିରଙ୍କ ସାଙ୍ଗରେ ଦୁଇଜଣ ସମବୟସୀ ଥିଲେ । ସମ୍ପର୍କରେ ଜଣେ ପିଉସୀ ଓ ଆରକ ଝିଆରୀ । ସେ ଦୁହିଁଙ୍କର ଗୁରୁଦତ୍ତ ଗୋପିକା ନାମ ଥିଲା । ସମବୟସୀ ଆଉ ନାତୁଣୀ ଦୁହେଁ ଇନ୍ଦିରଙ୍କ ଆଗରୁ ଗୁରୁକରୁଣା ଲାଭ କରିଥିଲେ । ଘର ଆଗରେ ପୂଜାଥାଳି ଧରି ସେ ଦୁହେଁ ଅପେକ୍ଷା କରିଥିଲେ ।

ଲୀଳାବନ୍ତ କୋମଳ ସ୍ନେହବୋଳା ଭାଷାରେ ସେମାନଙ୍କୁ କହିଲେ, ଆଲୋ ରଙ୍ଗୀ, ବେଙ୍ଗୁଲି, ତମେ ଦୁହେଁ ଆଗରେ ଯାଅ । ଇନ୍ଦିର ଟିକିଏ ପରେ

ଯିବେ । ତାଙ୍କ ଥାନାରେ ଗୁରୁଙ୍କ ପାଇଁ ମୁଁ ଟିକିଏ ଘୋରା ଚନ୍ଦନ ପଠାଇବି । ସୁନା ଭଉଣୀ ବନ୍ଦେ, ଯାଅ ।

ସେମାନେ ଆଗେଇଗଲେ ।

ଲୀଳାବତୀ ଇନ୍ଦିରାଙ୍କର ଚିବୁକ ଟେକିଲେ । ହସ ହସ ହୋଇ କହିଲେ, ଦାଢ଼ିଆ କୃଷ୍ଣଙ୍କର ପ୍ରେମ ସେତିକି ଥାଉ, ଇନ୍ଦିରା ! ଅଭିଆଡ଼ୀ ଝିଅ; ବଡ଼ ପ୍ରମାଦ ।

ଇନ୍ଦିରାଙ୍କ ଦେହରୁ ମରଣ-ଝାଳ ବୋହିପଡ଼ୁଥିଲା । ଦେହ ଥରୁ-ଥିଲା । ମୁଣ୍ଡ ଭୁମୁଥିଲା । ଲୀଳାବତୀ ତାଙ୍କର ଅଣ୍ଟା ସୁରୁପାଖେ ହାତଟି ବେଢ଼ାଇଦେଲେ ।

ପିଠି ଥାପଡ଼ି କହିଲେ, ମତେ ବି ସେ ଦାଢ଼ିଆ କୃଷ୍ଣ ତାଙ୍କ ଛାତିରେ ଖାମଭିଡ଼ା ଦେଇଥିଲେ ଗୋ ଇନ୍ଦିରା ! ମରିବାକୁ ଯାଉଥିଲି । ପ୍ରାଣବିକଳରେ ତାର ଦାଢ଼ିପୁଳାକ ଧରି ଝିଙ୍କାଏ ଦେଲି । ସେହି ଗାତରେ ତାର କୃଷ୍ଣ-ପଣିଆର ବାବନାଭୂତ ଛାଡ଼ି ପଳାଇଲା ।

ଇନ୍ଦିରାଙ୍କ ଆଖିରୁ ଲୁହଧାର ଝରିଆସିଲା ।

ଲୀଳାବତୀ କହିଲେ, ତମେ ଓଲମୀ । କାନ୍ଦୁଛ କାହିଁକି ? ହସ ମ, ହସୁନ । ସେହି ଶୁକମୁନିଟା ମହାପାତକୀ । ତମର କି ଥାଏ ? ତମର ତ ସେଇଟା । ଗୋଟାଏ ଖେଳ । ଅଜଣା ଫଳ ଚାଖିଲ । ଖରି ମିଠା । ଇନ୍ଦିରା ଗୋ, ସେ ଫଳ ଯେ ବିଷଠୁ ବଳି ମାରାତ୍ମକ !

ଇନ୍ଦିରା ଆଖିରୁ ଲୁହ ପୋଛିଲେ । ଛାତି ଥରଥର କମ୍ପୁଥିଲା । ମୁଣ୍ଡରେ ଦୁଶ୍ଚିନ୍ତା ପଶିସାରିଥିଲା ।

ଲୀଳାବତୀ କହିଲେ, ଯେଉଁ ମଣିଷମାନେ ଅଜଣା ବାବାଜିର ଶାସ୍ତ୍ର-ପୁରାଣ ଶୁଣି ତାକୁ ମହାତ୍ମାମୀ ମଣିଲେ, ଗ୍ରାମରେ ଠାବ ଦେଲେ, ତାର ପାଦ-ପୂଜା କଲେ, ତାକୁ ବ୍ରହ୍ମର୍ଷି ଶୁକମୁନି ଡାକିଲେ, ଏବେ ବି ଡାକୁଛନ୍ତି, ଅସଲ ବେହିଆ, ପ୍ରକୃତ ନିର୍ଲଜ୍ଜ ସେହିମାନେ । ଆମର କି ଥାଏ ଗୋ ଇନ୍ଦିରା ? ଯେଉଁ ବୁଢ଼ା, ଦରବୁଢ଼ା ଓ ବୁଢ଼ୀ, ଦରବୁଢ଼ୀଏ ନିଜକୁ ଧର୍ମାତ୍ମା ଓ ପୁଣ୍ୟ-

ବାନ୍ ପୁଣ୍ୟବତୀ ସତୀ-ସାଧ୍ୱୀ ପ୍ରମାଣ ଦେବାକୁ କୃଷ୍ଣ ଦର୍ଶନ କଲେ ବୋଲି ପ୍ରଚାର କଲେ, ସେଇଗୁଡ଼ାକ ଅସଲ ପାପୀ । ଆମର କି ଥାଏ ? ସେଇଠାରୁ ଦାଢ଼ିଫୁଲାକ ଯଦି ମୁଁ ସେଦିନ ଅନ୍ଧାର ଘରେ ଟାଣି ନ ଥାନ୍ତି, ଓଃ—ଟାଣି-ଦେଲି ପିନା ଗୋଟାଏ ଝଙ୍କରେ, ତାର ଖିମବଳୁଆ ବାଳୁବାଳୁଆ ଗୁଣ୍ଡରେ ମୋର ପଞ୍ଜର ହାଡ କଡ଼କଡ଼ ହେଲା । ତା ନ ହୋଇଥିଲେ ମୁଁ ଆଜ ତମକୁ ଏସବୁ କଥା କହିପାରି ନ ଥାନ୍ତି । ମୁଁ ତ ସତକୁ ସତ ରାଧା-ବାଇଆଣୀ ହୋଇଥାନ୍ତି ଗୋ ! ହସ, ଏଥର ହସ । ହସି ହସି ସବୁ ଭୁଲିଯାଅ । ଭଙ୍ଗୀ ବେଙ୍ଗୁଲିଙ୍କୁ ସାବଧାନ କରିଦେବ । ଅଜଣା ଫଳ ଚାଖି ମଜ୍ଜି ଯାଇଛନ୍ତି । ବଡ଼ ପ୍ରମାଦ । ବୁଝିଲ ?

ଲୀଳାବତୀ ଇନ୍ଦିରଙ୍କର ଦୁଇ ଗାଲରେ ବୋକ ଦେଇଥିଲେ । ଇନ୍ଦିରଙ୍କୁ କୁତୁ କୁତୁ କରି ହସାଇ କହିଲେ, ଉଠ, ମୁଁ ବାସି-ଲୁଗା ଖଣ୍ଡେ ବଦଳି-ପକାଏଁ । ତମ ଭାଇ ପିଲାଦୁଇଟାଙ୍କୁ ସଙ୍ଗରେ ଧରି ଶ୍ରୀକମୁନଙ୍କ ଆରତି ଦେଖିବାକୁ ଯାଇଛନ୍ତି । ଶାଶୁଶଶୁର ଦିହେଁ ତ କେତେଥର କୃଷ୍ଣଦର୍ଶନ କଲେଣି । ଧର୍ମାତ୍ମା ସେମାନେ । ଆଖିକୁ ଭଲ ଦିଶୁନାହିଁ । ଶଶୁରେ ଅନ୍ଧାର-କଣା । ଆହୁରି ଦର୍ଶନ କରିବାକୁ ତାଙ୍କର ଆଗ୍ରହ । ସୁଯୋଗ ମିଳୁ ନାହିଁ ।

ଇନ୍ଦିରା ପ୍ରକୃତିସ୍ଥ ହୋଇସାରିଥିଲେ । ସେ ନିଜ ମନକୁ ହସିଲେ ।

ଲୀଳାବତୀ କହିଲେ, ଶୁଣିବ ଆହୁରି ମଜାର କଥା, ଇନ୍ଦିରା ! ଶଶୁରଙ୍କ ଆଗରେ ଶାଶୁ କୃଷ୍ଣଙ୍କ ରୂପ ବର୍ଣ୍ଣନା କରନ୍ତି । ଶଶୁର ପ୍ରତିବାଦ କରନ୍ତି । ହାତରେ ବଂଶୀ ଥିଲା କି ନ ଥିଲା, ମୁଣ୍ଡରେ ମୟୂରଚୂଳ, ବେକରେ କଦମ୍ବଫୁଲର ମାଳ ଥିଲା କି ନ ଥିଲା ? ବୁଢ଼ା-ବୁଢ଼ୀ ଦିହେଁ ବୋଲିବୋଲି ହୁଅନ୍ତି । ମତେ ଡାକ ପଡ଼େ । ମଲି ମଲି ହୋଇ ପାଖକୁ ଯାଏଁ । ଶାଶୁ ପଚାରନ୍ତି, ତୁ ତ ଦେଖିଛୁ ବୋହୂ, ତୋ ବାପାବଣ, ସତ କହ ।

କ'ଣ ତମେ କୁହ ଭଉଜ ?

ଅଡ଼ୁଆରେ ମୁଁ ପଡ଼େ ଗୋ ଇନ୍ଦିରା ! ଏକଥା ବାପବଣ ଭେକଙ୍କି ଟାଳ ସଙ୍ଗେ ସମାନ । ସତ କଥା ଯଦି କହିବି ଯେ କୃଷ୍ଣ ଠାକୁରଙ୍କର ବଡ଼

ବଡ଼ ନଣଦାଡି ଥିଲା, ତାଙ୍କର ଦେହରେ ବସନ ନ ଥିଲା, ସେ ଠାକୁରେ ବସ୍ତ୍ର ଅଧା ହରଣ କରି ପୂରା ହରଣ କରିବାକୁ ଚେଷ୍ଟା କରୁଥିଲେ, ଇନ୍ଦରା ଗୋ, ଆକାଶ ଅଜାଡ଼ ହୋଇପଡ଼ନ୍ତା ।

ତମେ କ'ଣ ବୁଝ, ସଜନ ?

ଯାହା କହିବାକୁ ଲାଜ, କେମିତି କାହାକୁ କହନ୍ତୁ ? ଭୁନି ରହେ, କାମ ବାହାନାରେ ଖସି ପଳାଏ । ରହ, ମୁଁ ଲୁଗା ପାଲଟି ଆସେଁ, ତମ ସଙ୍ଗରେ ଯିବି । ଶେଷଦର୍ଶନ କରିଆସିବି । ସେମାନେ ଫେରୁଛନ୍ତି । ଶାଶୁଙ୍କର ପାଟି ଶୁଭୁଛି ।

ସେହି ଲୀଳାବନ୍ତୀ ସଜନ, ଠାକୁର ଶୁକମୁନିଙ୍କର ପାଦରେ ଚନ୍ଦନ ବୋଳିଲେ । ବେକରେ ଫୁଲମାଳ ଦେଲେ । ତଳେ ମୁଣ୍ଡ ଲଗାଇ ଓଳଗି ହେଲେ । ସ୍ତୋତ୍ର ପଢିଲା ପରି ହାତ ଯୋଡ଼ି ପ୍ରାର୍ଥନା କଲେ, ତମ ଶକ୍ତି ଏବେ ଜଣା ହେ ଶ୍ୟାମ, ପ୍ରାଣ ଯେନି ଏବେ ମଥୁରା ପଳା ! ପୁଣି ସେ ମୁଣ୍ଡ ନୋଇଁ ନମସ୍କାର କଲେ । ପାଦରୁ ଚନ୍ଦନ ନେଇ ନିଜ ମୁଣ୍ଡରେ ବୋଳିଲେ । ଠିଆ ହୋଇ ପୁଣି ସେହି ପ୍ରାର୍ଥନା କଲେ ।

ଗୁରୁଦେବ ବୁଝିଲେ । ହାତ ଟେକିଲେ । ହସ ହସ ହେଲେ । ଦାଢ଼ିଆ ମୁଣ୍ଡକୁ ଅଳପ ହଲାଇଲେ ।

ତିନି ଘୃରିବନ ପରେ ଚଢ଼େଇ ଉଡ଼ିଗଲା ।

ଭକ୍ତମାନେ ବହୁତ ଖୋଜାଖୋଜି କଲେ । ଶୁକଦେବଙ୍କର ଭେଟ ମିଳିଲା ନାହିଁ । ଫଳ ହେଲା, ଗ୍ରାମର ଅପବାଦ । ଝିଅବୋହୁଙ୍କର ନିନ୍ଦା । ନିଜ ନିଜ ମଧ୍ୟରେ ଧରାପରା । ଯିଏ ଯାହାକୁ ଦେଖି ନ ପାରେ, ତା ପିଲା କୁଟୁମ୍ବଙ୍କର ନିନ୍ଦା । ନିଜ ନିଜ ଘରର ତିରିଲାମାନେ ସବୁବେଳେ ଭଲ, ପର ଘରର ତିରିଲାମାନେ ଖରାପ । କାଦୁଅ ପିଙ୍ଗାପିଙ୍ଗି । ଏପରି କି ହାତାହାତି ଲାଗିଲା । କିଏ ସମ୍ଭବ ନିଜର ସ୍ତ୍ରୀପିଲାଙ୍କ ବିରୁଦ୍ଧରେ ମହତସରା ଅପବାଦ ?

ପର ଗାଁର ଲୋକେ ତାଳି ମାରି ହସିଲେ । କନ୍ଧଡ଼ା ଗ୍ରାମର ନଈବନ୍ଧ ଉପରେ ସାତପାଞ୍ଚ ଲୋକ, ନ-ନୂଆଁଣୀ, ବାଇଆ କୁକୁର ଓ ବଳୁଆଙ୍କୁ ଛଡ଼ିବା ବାହାନାରେ ହାତରେ ଠେଙ୍ଗା ଧରି ଘଣ୍ଟ ପହରକରେ ଯାଉଁଣୁ ଗୀତ ବୋଲି ସ୍ୱର ଲମ୍ବାଇଲେ—କୋଇଲି ଲୋ ଶୁକମୁନି ମଥୁରକୁ ଚାଲ, କାହା ବୋଲେ ଗଲା ପୂତ ବାହୁଡ଼ି ନୋଇଲା ଲୋ – ।

କନ୍ଧଡ଼ିଆ ଉଚ୍ଛୃଙ୍ଖଳ ହେବାଇଲେ । ନିଜନିଜ ମଧ୍ୟରେ ତ ମନ ଫଟାଫଟି, ଏକାଠି ହେବେ ନା ପରଗ୍ରାମର ଟାହିଟାପରିଆ ଠାହୁଳିଆ ଠୋକାଦଳଙ୍କୁ ସାଧି କରିବେ ? ମନ ମାରି, ଗୀତ ନ ଶୁଣିଲା ପରି ରହିଲେ ।

ଶେଷକୁ ତାଙ୍କୁ ଭଲ ବୁଦ୍ଧି ଦିଶିଲା । ଗାତଅଧିଆ ନିଶାପ ହେଲା । ସବୁ ମକଦମା ରଫା ହେଲା । ପରଗ୍ରାମମାନଙ୍କର ଭଗାରିମାନଙ୍କୁ ହାସପରିହାସ କରିବାକୁ ଆଉ ସୁଯୋଗ ମିଳିଲା ନାହିଁ ।

ଇନ୍ଦର ଶାଶୁଘରକୁ ଆସିଲେ । ତାଙ୍କର ରୂପ ଚନ୍ଦ୍ରଉଦିଆ ପରି ଝଟକୁଥିଲା । ଦେହରେ ସୁନାରୂପାର ଗହଣା ସେହି ରୂପକୁ ଆହୁରି ଅଧିକ ଝଲସାଉଥିଲା । ଉପରେ ପଡ଼ି ଇନ୍ଦରଙ୍କ ବାପେ ପାଞ୍ଚଶ ଟଙ୍କା ରସ୍ତାଖର୍ଚ୍ଚ ଦେଇଥିଲେ । ଖତଥାଳ-ଜମି ବନ୍ଧା ପକାଇଥିଲେ । ବାହାଘରର ଯାନ-ଯୌତୁକ କିଛି ଊଣା ହୋଇ ନ ଥିବ । ଯାହା ଦେଇଥିଲେ ସେତିକରେ ହାକିମ ଅବା ଓକିଲ ଜୋଇଁ ମିଳିଥାଆନ୍ତା । କିନ୍ତୁ ଗୋଟିଏ ଅଧାପାଠୁଆ, କେଉଁ ମାହାଜନର ଗୁମାସ୍ତା, ତା'ର ପୁଣି ବିମାତା ଅଛି, ଯିଏ ଆଗ-ସଉତୁଣୀର ଝିଅ ଓ ପୁଅକୁ ବାର ଅବସ୍ଥା ଦେଉଥିଲା, ତା' ହାତକୁ ସୁବର୍ଣ୍ଣପ୍ରତିମା ଝିଅକୁ ଟେକିଦେଲେ କାହିଁକି ?

ପୁରୁଣା ଖାନ୍‌ଦାନ ଘର ! କପୂର ଗଲେ ବି କନା ଏବଯାଏ ମହକୁଛି । କାର୍ତ୍ତିକ ପରି ଚେହେରା ସେ ଜୋଇଁଙ୍କର । ଅର୍ଜ୍ଜୁନ ପରି

ସେ ବଜୁଆ । ଏହିପରି କେତେ କଥା କହି ଇନ୍ଦିରାଙ୍କର ବାପେ ଓ ଗ୍ରାମର ଅନ୍ୟ ମୁରବିମାନେ ପରିହରିବା ଲୋକଙ୍କୁ ସାନ୍ତ୍ୱନା ଦେଇଥିଲେ । ନିଜେ ବୋଧହୁଏ ସେମାନେ ଡରୁଥିଲେ, ଏମିତି ଗୋଟି ଗୋଟି ହୋଇ ଗ୍ରାମର ବଢ଼ିଲା ଝିଅଗୁଡ଼ିକ ଉଠିଯାଉନ୍ତୁ । ସେମାନେ ଦେଲା ନାଶ ହେଲା ପାରି ହୋଇ ଗ୍ରାମନାମରେ ପ୍ରଚଳିତ ଅପବାଦର ନିଆଁ, ଯାହାର ତାଉର ଉଗ୍ରତା ନ ଥିଲେ ବି, ତାଙ୍କ ମନରେ ଭୁଚ୍ଛାକୁ ଚିହ୍ନିକା ଚିଆଁ ଲଗାଇ ଚମକାଉଛି, ସେଥିରୁ ଉଦ୍ଧାର ପାଉନ୍ତୁ ।

ଇନ୍ଦିରା ଦୁଃଖ କରି ନ ଥିଲେ । ଯେଉଁ ଦାଢ଼ିଆ ବାଳବାଜୁଆ ଭଲୁ ବାବନାଭୂତର ରୂପ ଧରି ନୂପୁର ଧ୍ୱନି କରାଇ ତାଙ୍କୁ ରମିବିଦାରି ଲହୁଲୁହାଣ କଲେ ବି ଏହି ଦେହରେ ଅଜଣା କେଉଁ ସରଗର ଆନନ୍ଦ ଥିବାର ଆଗରୁ ଅଜଣା-ଅନୁଭବ ଜଗାଇଥିଲେ, କେତେ ସପନରେ ସେ ଆସି ଆନନ୍ଦ ବି ଦେଇଥିଲେ, ଭୟ ବି ଦେଖାଇଥିଲେ, ସେହି ରାଧାଭାବାପନ୍ନ ବ୍ରହ୍ମଚାରୀ ଶୁକମୁନି ଆନନ୍ଦଚନ୍ଦ୍ରଙ୍କ ଦେହରେ ଲୀନ ହୋଇଥିଲେ ।

ଆନନ୍ଦଚନ୍ଦ୍ରଙ୍କର ନିବିଡ଼ ଆଶ୍ଳେଷର ରୂପରେ ନୟନ ନିମୀଳିତ କରି ବାସର ରାତିରେ ଇନ୍ଦିରା ରସରାଜ ଦାଢ଼ିଆ-କୃଷ୍ଣଙ୍କୁ ଥରେ ସ୍ମରଣ କରିଥିଲେ ଓ ମନେ ମନେ କହିଥିଲେ, ହେ ମୋର ଭାଗ୍ୟର ନିୟନ୍ତା, ଦେବଦୁର୍ଲଭ ସ୍ୱାମୀ ମୁଁ ପାଇଛି । ସ୍ୱର୍ଗସୁଖର ଅଧିକାରୀ ମୁଁ ହୋଇଛି ତମରି ପାଇଁ । ଧନ ଓ ଉଚ୍ଚ ଆସନ ମୋର ଲୋଡ଼ା ନାହିଁ । ତମେ କୁଆଡ଼େ କଟକର ଜେଲରେ ଘଣା ପେଲୁଛ । ଯେତେ ଯାହାଙ୍କର ବିଶ୍ୱାସ, ନିଷ୍ଠା ଓ ଅନଭିଜ୍ଞତାର ସୁଯୋଗ ନେଇ ରାଧାଭାବରେ ଗେଲ କରି ପ୍ରୀତି ଲୁଟିରି କରିଥିଲ, ସବୁ ଗେଲ ପାଇଁ ସୋରିଷ ପେଡ଼ି ତେଲ କାଢ଼ୁଛ । ଦାଢ଼ି ନିଶ ତ ଆଉ ନ ଥିବ; ମୁଣ୍ଡ ଲଣ୍ଡା ହୋଇଥିବ ।

ଆହେ ରସଶେଖର, ତମେ ନରକକୁ ଯାଅ । ଆଉ ସେହି ଅଭିଭାବକମାନେ ବି ନରକକୁ ଯାଉନ୍ତୁ, ଯେଉଁମାନେ ନିଜକୁ ଧର୍ମାତ୍ମା ଓ ପୁଣ୍ୟବାନ ବୋଲି ପରିଚିତ କରାଇବାକୁ, ଅବା ପୁଣ୍ୟବତୀ ମହାସତୀ ବୋଲି

ଚଢ଼ାଇହେବାକୁ ଭଣ୍ଡ-ସନ୍ନ୍ୟାସୀର ପାଲରେ ପଡ଼ିଥିଲେ, ଆଖିର ଗୁହାଣି, ପାଟିର ହସ ଓ ଜ୍ଞାନ ପ୍ରକାଶର କମିଆରେ ଭୁଲି ମିଛୁମିଛୁକା କୃଷ୍ଣଚନ୍ଦ୍ରଙ୍କୁ ଦର୍ଶନ କରିଥିଲେ, ପ୍ରଚାର କରିଥିଲେ, ସେମାନେ ତମରି ସଙ୍ଗରେ ନରକକୁ ଯାଉନ୍ତୁ ।

କୁହାକୁହି ଖବର ପ୍ରଚଳିତ ହୋଇଥିଲା ଯେ, କେଉଁ ଗାଉଁଭୂଇଁ ଗ୍ରାମରେ ଶୁକମୁନି ପୁଣି କୃଷ୍ଣଦର୍ଶନ କରାଇବାକୁ ଚେଷ୍ଟା କରି ଧରା-ପଡ଼ିଥିଲେ । ଗ୍ରାମବାସୀଙ୍କଠାରୁ ବହୁତ ଛେଚା ଖାଇଲେ । ଠାକୁରଘରୁ ଠାକୁରଙ୍କର ସୁବର୍ଣ୍ଣପ୍ରତିମା ସମେତ ଗହଣାଗାଣ୍ଠି ଓ ବାସନକୁସନ ଚୋରି କରି ରାତିଅଧରେ ନେଇ ପଳାଉଥିବା ଅବସ୍ଥାରେ କୁଆଡ଼େ ଧରାପଡ଼ିଲେ । ମାଡ଼ ଡରରେ ସେ ମିଛ ଘଟଣାକୁ ସତ ବୋଲି ସ୍ୱୀକାର କରି ଦଣ୍ଡ ପାଇଲେ ।

ଧନ୍ୟ ରେ ଦାଢ଼ିଆ ବାବାଜି !

ଇଏବି ବୁଝିଲେ, ସବୁ ଦାଢ଼ିଆ ପୁଣ୍ୟାତ୍ମା ନୁହନ୍ତି, ଅବା ପାପାତ୍ମା ନୁହନ୍ତି । ମଣିଷରେ ମଣିଷ ଅଛନ୍ତି । ପୁଣ୍ୟାତ୍ମା ବୋଲି ଲୋକମୁଖରେ ଯେଉଁମାନେ ପ୍ରଚଳିତ, ସେହି ଶିବପ୍ରତିମାମାନଙ୍କ ମଧ୍ୟରୁ କେତେକଙ୍କର ଭିତର କେଉଁଠି ନାରଖାର ହୋଇଥିବ ସତେ ! ପାପାତ୍ମା ବୋଲି ଯେଉଁମାନଙ୍କୁ ଲୋକେ ଆଙ୍ଗୁଠି ଦେଖାଇଦିଅନ୍ତି, ସେମାନଙ୍କ ଭିତରୁ ଅନେକଙ୍କର ମନ ତଳେ ପୁଣ୍ୟତୋୟା ମନ୍ଦାକିନୀ ବହୁଥିବ । ମଣିଷର ଅବସ୍ଥା ତାକୁ ଭଲ ଓ ମନ୍ଦ କରିପାରେ । ଚିତାଲ-ପେଟିଆ, ତୋଳେ ପିଇ ଦଣ୍ଡେ ଜୀଇଁବା ଲୋକଙ୍କର ପାପ ଓ ପୁଣ୍ୟର କେଉଁ ବିଚାର ରହିବ ?

ତାଙ୍କ ଜୀବନରେ ସେ ବିଚାର ରହିନାହିଁ । ଯେକୌଣସି ଉପାୟରେ ଧନ ଅରଜିବାକୁ ପଡ଼ିବ, ଧନ ସଞ୍ଚିବାକୁ ହେବ ।

ତିନି ତିନୋଟି ଝିଅ ସେ ସଂସାରକୁ ଆଣିଛନ୍ତି । ରୂପ, ଗୁଣ ଓ ବିଦ୍ୟାବୁଦ୍ଧି ଯାହା ହେଉ, ଧନ ଦେବାର ପରିମାଣ ଉପରେ ସେମାନଙ୍କ ପାଇଁ ଚିହ୍ନିବକି ଚିହ୍ନିବକି ଜୋଇଁପାଇଁର ବିଚାର ପଡ଼ିବ ।

ଅନୁପା ପାଇଁ ବାଉଜିଆ ଉପଯୁକ୍ତ ଯେ, ଖାଲି ସେ ଟୋକାର ରୂପଟି ମନକୁ ପାଉନାହିଁ । ବାହାଘର ନାଁ ପଡ଼ିଲେ ଅନୁପା ଚିଡ଼ିଉଠୁଛି । ଛି ଛି, ମୁଁ ବାହା ହେବି ନାହିଁ । ମୁଁ ଯେତେ ପାରି ସେତେ ପାଠ ପଢ଼ିବି ।

ବେଶୀ ପାଠ ପଢ଼ିବାର ଧାରଣା ତା' ମୁଣ୍ଡରେ ବୋଧହୁଏ ବସନ୍ତ ପୂରାଇଦେଇଛନ୍ତି । ମଉଜମୁହାଁ ଟୋକାର ସେ ଗୋଟାଏ କୌଶଳ । ଅନୁପା ପାଠ ପଢ଼ିଲେ ବସନ୍ତର ସାହାଯ୍ୟ ଖୋଜିବ । ସେ ବାଧ୍ୟ ହୋଇ ମାମୁଁଙ୍କ ପାଖରେ ରହିବ । ରହିଲେ ତ ନିଶ୍ଚୟ ସେ ଏମ୍. ଏ. ପଢ଼ିବ ।

ପଢ଼ନ୍ତୁ । ସେଥିରେ ଇନ୍ଦ୍ର ଓ ଆନନ୍ଦଙ୍କର ଆପତ୍ତି ନାହିଁ । ମୁଠିଏ ଖାଇବ, ଅକାଳେସକାଳେ ଜାମାପ୍ୟାଣ୍ଟ ଦେଲେ ସେ ନେବ । ଅତି ଜରୁରୀ କ'ଣ ଆବଶ୍ୟକ ହେଲେ କିଛି ଅର୍ଥ ସାହାଯ୍ୟ ନେବ । ଭାରି ଆତ୍ମାଭିମାନୀ ସେ, ଅଳ୍ପଭାଷୀ ଲୁଡ଼ିଆମୁହାଁ ବସନ୍ତ । ବାପାଙ୍କ ପାଖରୁ ଟଙ୍କା ନ ଆସିଲେ ସେ ଚିରାଜାମା ପିନ୍ଧି ଆତଯାତ ହେବ ପଛେ, ନୂଆ ଖଣ୍ଡେ ପାଇଁ ମାମୁଁଙ୍କୁ ମାଗିବ ନାହିଁ ।

ରାତି ଦଶଟା । ଉପର ବାରଣ୍ଡାର ପାରାପେଟକୁ ଆଉଜି ଇନ୍ଦ୍ର ଠିଆ ହୋଇଥିଲେ । ଟିକିଏ ଦୂରରେ ଷ୍ଟ୍ରେଟ ବାର-ଲାଇଟ୍ କାନ୍ଥ ଉପରେ; ଛାତ ତଳେ ଦୁଇ ହାତ ଲମ୍ବ ଜଳୁଛି । ଉଜ୍ଜ୍ୱଳ ଆଲୁଅ ତାଙ୍କର ମୁହଁରୁ ଫାଳେ ଉଜ୍ଜ୍ୱଳ କରୁଛି । ସେ ମୁହଁ ଢଙ୍ଗ ଦିଶୁଛି । ଢଳ ଢଳ ଦିଶୁଛି । ମୁଣ୍ଡ ଉପରର ନେଟ୍‌ଭିଡ଼ା ବାଙ୍କୁଲି-ଜୁଡ଼ା ଟେଳ ପଡ଼ୁପଡ଼ୁ ଅଟକିଯାଇଥିବା ମୁଗୁନି-ପଥରର ଷ୍ଟ୍ରେଟ ମନ୍ଦିରଟିଏ ପରି ଦିଶୁଛି । ଦୁଇକାନରୁ ଓହଳିଥିବା ଧଳା-ପଥର ବସା ପିରାମିଡ ଦୁଲ୍‌ ମୋତିଖଞ୍ଜା ଝରି ଝୁଲିଉଠୁଛି । ଈଷତ୍ ଗୋଲାପୀ ରଙ୍ଗର ଶାଢ଼ି, ଯହିଁରେ ଧଳା ଜରିର ସୁନ୍ଦର ଫୁଲଗୁଡ଼ିଏ ଫୁଟି ପଡ଼ୁଛି, ଇନ୍ଦ୍ରଙ୍କର ଦେହକୁ ଆବୃତ କରିଛି । ବାହାରର ଝୁଲୁଝୁଲିଆ ପବନ ସତ୍ତ୍ୱେ ତାଙ୍କର ମୁହଁଟି ଝାଳେଇଉଠିଛି । ମୁଣ୍ଡ ସାମାନ୍ୟ ଝାଙ୍କୁଛି ।

'ନାରୀ ପ୍ରଗତି-ସଙ୍ଘ'ର କାର୍ଯ୍ୟନିର୍ବାହିକା ସମିତି ବୈଠକରେ ଯୋଗ ଦେଇ ଇନ୍ଦିରା ପରିମଳବାବୁଙ୍କ କାର୍‌ରେ ଫେରିଆସିଥିଲେ । ନିଜେ ପରିମଳବାବୁ ପହଞ୍ଚାଇଦେଇଥିଲେ । ତାଙ୍କରି ଘରେ ତ କାର୍ଯ୍ୟନିର୍ବାହିକା ସମିତିର ବୈଠକ ବସିଥିଲା । ପରିମଳବାବୁଙ୍କ ଗୃହିଣୀ ଶ୍ରୀମତୀ ବନହଂସୀ ଦେବୀ ସମିତିର ସଭାନେତ୍ରୀ । ଆଉ ଛଅ ଜଣ ସଭ୍ୟାଙ୍କ ପରି ଇନ୍ଦିରା ଜଣେ ସଭ୍ୟା ।

ପରିମଳବାବୁ ଉଚ୍ଚଶିକ୍ଷିତ । ତାଙ୍କର ବିଲାତି ମଦର ବ୍ୟବସାୟ ଅଛି । ମନ୍ତ୍ରୀ ଉପମନ୍ତ୍ରୀଙ୍କଠାରୁ ଆରମ୍ଭ କରି ବଡ଼ବଡ଼ିଆ ଅଫିସରଙ୍କ ସଙ୍ଗେ ଘନିଷ୍ଠତା ଅଛି । ସେ ପୁଣି କେଉଁଠି ଲୁହାପଥର ଖଣିର ମାଲିକ । କିନ୍ତୁ ବେପାର ଚଳେ ତାଙ୍କର ଶିକ୍ଷିତା ପତ୍ନୀ ବନହଂସୀଙ୍କ ନାମରେ । ଯେଉଁ ମହିଳାମାନେ ନାରୀ-ପ୍ରଗତି-ସଙ୍ଘର କାର୍ଯ୍ୟନିର୍ବାହିକା ସମିତିର ସଭ୍ୟା, ସେମାନେ ବଡ଼ବଡ଼ିଆମାନଙ୍କର ଘରଣୀ । ସେମାନଙ୍କର 'ବନହଂସୀ ବେପାର ସଂସ୍ଥା'ରେ ଅଂଶ ଅଛି । ଏ ସଂସ୍ଥା ସରକାରଙ୍କର ଅର୍ଡର ସପ୍ଲାଇ ମଧ୍ୟ କରନ୍ତି । ନାରୀମାନଙ୍କର ସଂସ୍ଥା ବୋଲି ସରକାରଙ୍କର ସାମାନ୍ୟ ସୁ-ନଜର ଥାଏ । ନାରୀଜାତିର ପ୍ରଗତିକୁ ସରକାର ଉତ୍ସାହିତ କରନ୍ତି ।

ଇନ୍ଦିରା କୌଣସି ବଡ଼ବଡ଼ିଆଙ୍କର ଗୃହିଣୀ ନୁହନ୍ତି । ତାଙ୍କର ଧନର ପ୍ରାଚୁର୍ଯ୍ୟ ନାହିଁ । କିନ୍ତୁ ସେ ସୁନ୍ଦରୀ, ଯୌବନବତୀ, ମିଷ୍ଟଭାଷିଣୀ ଓ ଶ୍ରଦ୍ଧା ଦେବାରେ ମୁକ୍ତହସ୍ତା । ଶିକ୍ଷା ବିଶେଷ ନ ଥିଲେ ମଧ୍ୟ ସେ ଅଶିକ୍ଷିତା ନୁହନ୍ତି । ସେ ପ୍ରଗତିଶୀଳା । ତାଙ୍କର ନିର୍ଭୀକ ସରଳ ବ୍ୟବହାର, ସମସ୍ତଙ୍କ ସଙ୍ଗେ ମିଶିବା ଓ କହିବାର ଭଙ୍ଗୀରେ ବଡ଼ବଡ଼ିଆଙ୍କୁ ମୁଗ୍ଧ କରି କୌଣସି କାମ ହାସଲ କରିବାପାଇଁ ସେ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରି-ପାରିଥିଲେ । ତେଣୁ, ସେ ସଙ୍ଘର ସଭ୍ୟା ହୋଇପାରିଥିଲେ । ନିଜର ଓ ଆନନ୍ଦଚନ୍ଦ୍ରଙ୍କର ବ୍ୟବସାୟର ଏହାହିଁ ଥିଲା ବଜ୍ର-କବଚ ।

ଆନନ୍ଦଚନ୍ଦ୍ର ଓ ଅମୃତ ହାଡ଼ବନ୍ଧ୍ କେତେଦିନ ହେଲା ସୁନ୍ଦରଗଡ଼ ଜିଲ୍ଲାର ବଣଜଙ୍ଗଲ ଓ ପାହାଡ଼ ଭିତରେ ବୁଲୁଛନ୍ତି । ମାଙ୍ଗାନିଜ୍-ଓର୍ ଖଣିର

ସନ୍ଧାନ ନେଉଛନ୍ତି । ସେମାନଙ୍କର ପୃଷ୍ଠପୋଷକ ହେଉଛନ୍ତି ଜଣେ କଚ୍ଛୀ ବେପାରୀ । ସେମାନେ ପ୍ରସ୍‌ପେକ୍‌ଟିଙ୍ଗ୍ ଲାଇସେନ୍‌ସ୍ ହାସଲ କରିଛନ୍ତି । ସେଥିପାଇଁ ସେମାନଙ୍କୁ ବେଶ୍ ଖର୍ଚ୍ଚାନ୍ତ ହେବାକୁ ପଡ଼ୁଛି । ଭାଗ୍ୟରେ ଥିଲେ କେଉଁଠି ଭଲ ଖଣିର ସନ୍ଧାନ ମିଳିଯିବ ।

ଇନ୍ଦିରା ଆନନ୍ଦଚନ୍ଦ୍ରଙ୍କର ଫେରିଲା-ବାଟକୁ ଅନାଇଁ ରହିଥିଲେ । ଫ୍ଲାଟର ସିଟିଂ ପାଇଁ ପରିମଳବାବୁଙ୍କୁ ପଠାଇ ବନହଂସୀ ଦେବୀ ଡକାଇ-ନେଇଥିଲେ । ନ ଯାଇ ଉପାୟ ନ ଥିଲା ।

ଅନୁପାର ଅଭିମାନଆଁ ମୁହଁ ପାଇ ସେଗଣା ସମୁଦୁଣୀଙ୍କର ଦାୟିତ୍ବ ଝିଅ ରତ୍ନମାଳା ଉପରେ ନ୍ୟସ୍ତ କରି ମାଙ୍କ ଶାଶୁ ମୋତିମାଳା ଆସି ଦ୍ୱିପ୍ରହରେ ପହଞ୍ଚିଥିଲେ । ପିଲାଙ୍କର ଆନନ୍ଦ କହିଲେ ନ ସରେ । ନିଶ୍ଚିନ୍ତ ହୋଇ ଇନ୍ଦିରା ସଭାକୁ ଯାଇଥିଲେ । ଅତି ସ୍ନେହୀ ସମବୟସୀ ବନହଂସୀଙ୍କର ଅନୁରୋଧ ରକ୍ଷା କରି ସମସ୍ତେ ସେଇଠାରେ ରାତିଭୋଜନ କରିଥିଲେ ।

ବଡ଼ ଲୋକଆ ଖାନା ।

ବନହଂସୀ ଦେବୀ ଶ୍ୟାମଳୀ । ପାଞ୍ଚଟି ସନ୍ତାନଙ୍କର ଜନନୀ । ସାମାନ୍ୟ ପୃଥୁଳା । ମୁହଁଟି ଗୋଲଗାଲଆ, ସୁନ୍ଦର । ତାଙ୍କର ସେଇ ଫୁଲିଲା ଫୁଲିଲା ଲମ୍ବାଳିଆ ଆଖି, ପାତଳ କଳା ମିଚମିଚ ଧନୁପରି ଭ୍ରୂଲତା, ଛୋଟ ଚାହିଁର ପାତଳ ନାଲି ଟୁକୁଟୁକୁ ଓଠ ଦ'ଫାଳରେ ସବୁବେଳେ ହସ ଲାଗି ରହିଥାଏ । ସେଇ ମନକିଣା ହସ ଦେଖି ବୋଧହୁଏ ତାଙ୍କର ସମବୟସ୍କ ପରିମଳବାବୁ ତାଙ୍କୁ ସ୍ନେହ କରିଥିଲେ । ନିଜେ ତ ସେ ସ୍ୱାସ୍ଥ୍ୟବାନ୍ ସୁ-ପୁରୁଷ, ଉଚ୍ଚ ଶିକ୍ଷିତ । ଜାତି ଓ ଭାଷା ଦୁହିଁଙ୍କୁ ଦୂର ହାତରେ ଆଡ଼େଇ, ବାପମାଆଙ୍କର ଅବାଧ ହୋଇ ବନହଂସୀଙ୍କୁ ସେ ବିବାହ କରିଥିଲେ ।

ରାତିଭୋଜନ ପରେ, କିଛି ସମୟ ହସଖୁସିରେ ଆଳାପ ହେଲା । ବିଦାୟ ପୂର୍ବରୁ ବନହଂସୀ ସମସ୍ତଙ୍କୁ ଗିଲସେ କରି କୋଳାକୋଳି ହେଲେ । ସେଥିରେ ସେ ସାମାନ୍ୟ ବିଦେଶୀ ସୁରା ମିଶାଇଥିଲେ । କହିଲେ, ଭଲ

ଲାଗିବ ନ, ଫୁର୍ତ୍ତି ଲାଗିବ । ଦେହକୁ ହିତ । ଦେହ ଓ ମନର କ୍ଳାନ୍ତି ଦୂର ହେବ । ଟିକିଏ ତ ! ନାହିଁ ନାହିଁ ହୋଇ, ଅନିଚ୍ଛାରେ ବାଧ୍ୟ ହେଲାପରି ଇନ୍ଦିରା ପୂରା ଗିଲାସର ଶେଷ ବିନ୍ଦୁ ମଧ୍ୟ ପାଟିରେ ଥୋଇଥିଲେ ।

ସେ ଏକାଥରେ ଅନଭ୍ୟସ୍ତ ନୁହନ୍ତି । ଆନନ୍ଦଚନ୍ଦ୍ର କେତେ ଥର ତାଙ୍କ ପାଖରେ ଅଳି କରି, ଅଭିମାନ କରି, ତାଙ୍କୁ ଭଲ ଚିଜ ଚଖାଇଛନ୍ତି । ଉଚ୍ଛ୍ୱସିତ ଉତ୍ତେଜନାରେ ତାଙ୍କୁ କୋଳାଗ୍ରତ କରିଛନ୍ତି ।

ମନ ଝିଗଡ଼ିଉଠେ । ନିଜ ଭିତରେ ଆଉ କିଏ ଛି ଛି କରେ । ତାର ସ୍ୱର ଇନ୍ଦିରା ଶୁଣିପାରନ୍ତି । ସ୍ୱାମୀଙ୍କର ଆଗ୍ରହର ସେ ଅନ୍ୟଥା ହୁଅନ୍ତି ନାହିଁ । ନିଜ ପାଖରେ ସେ ପ୍ରକୃତ ସତ୍ୟ କିପରି ଗୋପନ ରଖି-ପାରିବେ ଯେ ସେତିକରୁ ଟିକିଏ ସ୍ୱାମୀ ଯାଚିଲେ ଇନ୍ଦିରା ନାକ ଟେକି ମୁଣ୍ଡ ହଲାଇ ଛି-ଛି ନାହିଁ-ନାହିଁ କରୁଥିଲେ ମଧ୍ୟ ଗୋଟାଏ ଛପିଲା-ଆଗ୍ରହ ତାଙ୍କର ଭିତରେ କେମିତି ଠିକଣା ହୋଇଉଠେ ।

**କୋ**ଠରିର କବାଟ ଖୋଲିଲା ।

ଖିଲ ଖିଲ ହସି ଅନୁପା କୋଠରି ଭିତରୁ ବାହାରିଆସିଲା । ଶାଢ଼ିର ପଣତ ଲମ୍ବିଛି । ଠିଆମେଲା କବାଟ ବାଟେ ଦିଶୁଛି—ହରମ ଟେବୁଲ ପାଖରେ ଠିଆ ହୋଇ ପଦାକୁ ଚାହିଁଛନ୍ତି । ପିନ୍ଧିଛନ୍ତି ଖଣ୍ଡେ ଧୋବ ଗେଞ୍ଜି । ମୁଣ୍ଡର ଅଡୁଆ ନୁଖୁରା କେଶ ଫୁରୁଫୁରୁ ହୋଇ ପଙ୍ଖାର ପବନରେ ଇତସ୍ତତଃ ହେଉଛି । କହରିଆ-କଳା ନିଶ-ଦାଢ଼ି ଓ ଚନ୍ଦିରେ ଯୋଗ ଦେଇଥିବା କାନ ଉପରୁ ଲମ୍ବି ଆସିଥିବା କଳି, ତାଙ୍କର ବଳିଷ୍ଠ ସୁନ୍ଦର ମୁହଁକୁ କିପରି ଅସନା କରିଛି ।

ଇନ୍ଦିରା ଅନୁପା ଉପରକୁ ଦୃଷ୍ଟି ଫେରାଇଲେ । ଆଗରେ ଠିଆହୋଇ ସେ ଏବଯାଏ ହସୁଛି । ସେ ହସ ଅସ୍ୱାଭାବିକ ପରି ସେ ମଣିଲେ । ମୁଣ୍ଡର ଲମ୍ବ ବେଣୀ ଦୁଇଟି ପିଠିଆଡ଼େ ଦୋହଲୁଛି । ଦେହରେ ଅଳ୍ପ ଓସାରର

ଗାରଗାରିକା ବ୍ଲାଉଜଟିଏ । ଇନ୍ଦିରାଙ୍କ ବ୍ଲାଉଜ ଢଙ୍ଗର । ଲଜ ଲୁଚାଇବାକୁ ଯେତେ ଅଳ୍ପ କନା ଖରଚ କରାଯାଇପାରେ, ତା'ର ଆଦର୍ଶ ନମୁନା । ପଥରବସା ଚିକଚିକ ଅଶୋକ-ଚକ୍ର ପେଣ୍ଡାଣ୍ଟଲଗା ହାରଟିଏ ବେକରୁ ଝୁଲୁଛି । ସତର ବର୍ଷ ପୂରିଥିବା ସରଳା ବାଳିକାଟିଏ ସେ । ତା'ର କୁଳୁ-କୁଳିଆ ମୁହଁରେ ଟୋପିଟୋପି ଝାଳ । ହାତରେ କ'ଣ ଚିଠିଖଣ୍ଡିଏ ସେ ଧରିଛି । ଇନ୍‌ଲାଣ୍ଡ ପୋଷ୍ଟକାର୍ଡ । ସେ ହାତ ଅଳପ ଥରୁଛି । ସୁନାକାଚ ଦି'ପଟି ତଳକୁ ଖସି ଅଳପ ଝଟକୁଛି । ସେ-ହାତଟି ଥରିଲା ପରି ମନେ-ହେଉଛି, ଅଥବା ଇନ୍ଦିରାଙ୍କର ଝାଙ୍କଳା ମୁଣ୍ଡଟି ଥରୁଛି ।

ଅନୁପା ଇନ୍ଦିରାଙ୍କ ଆଗରେ ଥକା ହୋଇ ଠିଆ ହେଲା । ଥରିଲା-ହାତଟି ତଳକୁ ଖସିପଡ଼ିଲା । ସେ ଯେପରି ଶଙ୍କିତ ହେଲା । ଚମକି-ଉଠିଲା ପରି ମନେହେଲା । ତଳେ ଲୋଟୁଥିବା ପାତଳା ଶାଢ଼ିକୁ ଓଟାରି ଅନୁପା ଦେହରେ ଗୁଡ଼ାଇଲା । ଦେହଟି ତା'ର ଥରୁଥିଲା ।

ସହସା ମୁହଁଟି କିପରି ଶେତାଳିଆ ଦିଶିଲା । ତଥାପି ସେ ହସୁଥିଲା । ସେହି ଅସ୍ୱାଭାବିକ ହସକୁ ତା ଭିତରୁ କେଉଁ ବିଚଳିତ ଭାବ ଓଟାରି ଓଟାରି ପଛକୁ ଟାଣୁଥିଲା ; କିନ୍ତୁ ସେ ଛଟିପିଟି ହୋଇ ପଦାକୁ ବାହାରି-ଆସିବାକୁ ପ୍ରାଣପଣ ଚେଷ୍ଟା କରୁଥିଲା ।

ଇନ୍ଦିରା ସଳଖ ଠିଆ ହେଲେ । ପଣତରେ କପାଳ ପୋଛିଲେ । ମୁଣ୍ଡ ତ ଭ୍ରମୁଛି । ବନହଂସୀ ଦେବୀ କିଅଣ ଗୁଡ଼ାଏ ଟାଣୁଆ ସିରପ୍, ମହମହ ବାସ, କୋକାକୋଲାରେ ମିଶାଇଦେଇଥିଲେ । ସେଥିପାଇଁ ତାଙ୍କୁ ଗାଳି ଦେବାକୁ ମନ ହେଉଛି । ସେ ବି ନିଜେ ସେଇଥିରୁ କୋକାକୋଲାରେ ମିଶାଇ ପିଇଥିଲେ ଯେ ! ରାମକୁମାରବାବୁ, ଯିଏ ନୂଆବଜାରରେ ଅତି ଆଧୁନିକ ଲୁଗାଦୋକାନ ଖୋଲିଛନ୍ତି, ନିମଚୌଡ଼ିରେ ଯାହାଙ୍କର ସୁନାରୁପାର ଗହଣା ଦୋକାନ, ତାଙ୍କର ରକ୍ଷିତା ସ୍ତ୍ରୀ ଶ୍ରୀମତୀ ଜେସ୍‌ମିନ୍ ଦେବୀ, ନିଜେ ବନହଂସୀଙ୍କୁ ପିଆଇଦେଇଥିଲେ ।

ଲାଗିବ ମ, ଫୁର୍ତ୍ତି ଲାଗିବ । ଦେହକୁ ସ୍ୱଚ୍ଛ । ଦେହ ଓ ମନର କ୍ଳାନ୍ତି ଦୂର ହେବ । ଠିକଏ ତ ! ନାହିଁ ନାହିଁ ହୋଇ, ଅନିଚ୍ଛାରେ ବାଧ୍ୟ ହେଲାପରି ଇନ୍ଦିରା ପୂରା ଗିଲାସର ଶେଷ ବିନ୍ଦୁ ମଧ୍ୟ ପାଟିରେ ଥୋଇଥିଲେ ।

ସେ ଏକାଥରେ ଅନଭ୍ୟସ୍ତ ନୁହନ୍ତି । ଆନନ୍ଦଚନ୍ଦ୍ର କେତେ ଥର ତାଙ୍କ ପାଖରେ ଅଳି କରି, ଅଭିମାନ କରି, ତାଙ୍କୁ ଭଲ ଚିଜ ଚଖାଇଛନ୍ତି । ଉଚ୍ଛ୍ୱସିତ ଉତ୍ତେଜନାରେ ତାଙ୍କୁ କୋଳାଗ୍ରତ କରିଛନ୍ତି ।

ମନ ଝିଗଡ଼ିଉଠେ । ନିଜ ଭିତରେ ଆଜ କିଏ ଛୁ ଛୁ କରେ । ତାର ସ୍ୱର ଇନ୍ଦିରା ଶୁଣିପାରନ୍ତି । ସ୍ୱାମୀଙ୍କର ଆଗ୍ରହର ସେ ଅନ୍ତରାୟ ହୁଅନ୍ତି ନାହିଁ । ନିଜ ପାଖରେ ସେ ପ୍ରକୃତ ସତ୍ୟ କପରି ଗୋପନ ରଖି-ପାରିବେ ଯେ ସେତିକରୁ ଠିକଏ ସ୍ୱାମୀ ଯାଚିଲେ ଇନ୍ଦିରା ନାକ ଟେକି ମୁଣ୍ଡ ହଲାଇ ଛି-ଛି ନାହିଁ-ନାହିଁ କରୁଥିଲେ ମଧ୍ୟ ଗୋଟାଏ ଲୁଚିଲା-ଆଗ୍ରହ ତାଙ୍କର ଭିତରେ କେମିତି ଠିକଣା ହୋଇଉଠେ ।

କୋଠରିର କବାଟ ଖୋଲିଲା ।

ଖିଲ ଖିଲ ହସି ଅନୁପା କୋଠରି ଭିତରୁ ବାହାରିଆସିଲା । ଶାଢ଼ିର ପଣତ ଲମ୍ବିଛି । ଠିଆହେଲା କବାଟ ବାଟେ ଦିଶୁଛି—ବାଥରୁମ ଟେବୁଲ ପାଖରେ ଠିଆ ହୋଇ ପଦାକୁ ଚାହିଁଛନ୍ତି । ପିନ୍ଧିଛନ୍ତି ଖଣ୍ଡେ ଧୋବ ଗେଞ୍ଜି । ମୁଣ୍ଡର ଅଡ଼ୁଆ ନୁଖୁରା କେଶ ଫୁରୁଫୁରୁ ହୋଇ ପଙ୍ଖାର ପବନରେ ଇତସ୍ତତଃ ହେଉଛି । କଇଁଆ-କଳା ନିଶ-ଦାଢ଼ି ଓ ଚାହିଁରେ ଯୋଗ ଦେଇଥିବା କାନ ଉପରୁ ଲମ୍ବି ଆସିଥିବା କଳି, ତାଙ୍କର ବଳିଷ୍ଠ ସୁନ୍ଦର ମୁହଁକୁ କପରି ଅସନା କରିଛି ।

ଇନ୍ଦିରା ଅନୁପା ଉପରକୁ ଦୃଷ୍ଟି ଫେରାଇଲେ । ଆଗରେ ଠିଆହୋଇ ସେ ଏବଯାଏ ହସୁଛି । ସେ ହସ ଅସ୍ୱାଭାବିକ ପରି ସେ ମଣିଲେ । ମୁଣ୍ଡର ଲମ୍ବ ବେଣୀ ଦୁଇଟି ପିଠିଆଡ଼େ ଦୋହଲୁଛି । ଦେହରେ ଅଳ୍ପ ଓସାରର

ଗାଉଁଗାଉଁଲିଆ ବ୍ଲାଉଜଟିଏ । ଇନ୍ଦ୍ରଙ୍କ ବ୍ଲାଉଜ ଢଙ୍ଗର । ନିଜ ଲୁଗୁରିବାକୁ ଯେତେ ଅଳ୍ପ କମ ଖରଚ କରାଯାଇପାରେ, ତା'ର ଆଦର୍ଶ ନମୁନା । ପଥରବସା ଚକଚକ ଅଶୋକ-ଚକ୍ର ପେଣ୍ଡାଣ୍ଟଲଗା ହାରଟିଏ ବେକରୁ ଝୁଲୁଛି । ସତର ବର୍ଷ ଚାଲିଥିବା ସରଳା ବାଳିକାଟିଏ ସେ । ତା'ର କୁଳୁ-କୁଳିଆ ମୁହଁରେ ଟୋପିଟୋପି ଝାଳ । ହାତରେ କ'ଣ ଚିଠିଖଣ୍ଡିଏ ସେ ଧରିଛି । ଇନ୍‌ଲାଣ୍ଡ ପୋଷ୍ଟକାର୍ଡ । ସେ ହାତ ଅଳପ ଟେକିଛି । ସୁନାକାଚ ଦି'ପଟି ତଳକୁ ଖସି ଅଳପ ଝଟକୁଛି । ସେ-ହାତଟି ଥରିଲା ପରି ମନେ-ହେଉଛି, ଅଥବା ଇନ୍ଦ୍ରଙ୍କର ଝାଙ୍କଳା ମୁଣ୍ଡଟି ଥରୁଛି ।

ଅନୁପା ଇନ୍ଦ୍ରଙ୍କ ଆଗରେ ଥକା ହୋଇ ଠିଆ ହେଲା । ଟେକିଲା-ହାତଟି ତଳକୁ ଖସିପଡ଼ିଲା । ସେ ଯେପରି ଶଙ୍କିତ ହେଲା । ଚମ୍କି-ଉଠିଲା ପରି ମନେହେଲା । ତଳେ ଲୋଟିଥିବା ପାତଳା ଶାଢ଼ିକୁ ଓଟାରି ଅନୁପା ଦେହରେ ଗୁଡ଼ାଇଲା । ଦେହଟି ତା'ର ଥରୁଥିଲା ।

ସହସା ମୁହଁଟି କପରି ଶୋଚାଳିଆ ଦିଶିଲା । ତଥାପି ସେ ହସୁଥିଲା । ସେହି ଅସ୍ୱାଭାବିକ ହସକୁ ତା ଭିତରୁ କେଉଁ ବିଚଳିତ ଭାବ ଓଟାରି ଓଟାରି ପଛକୁ ଟାଣୁଥିଲା ; କିନ୍ତୁ ସେ ଗୁଟିପିଟି ହୋଇ ପଦାକୁ ବାହାରି-ଆସିବାକୁ ପ୍ରାଣପଣ ଚେଷ୍ଟା କରୁଥିଲା ।

ଇନ୍ଦ୍ର ସଳଖ ଠିଆ ହେଲେ । ପଣତରେ କପାଳ ପୋଛିଲେ । ମୁଣ୍ଡ ତ ଭ୍ରମୁଛି । ବନହଂସୀ ଦେବୀ କଅଣ ଗୁଡ଼ାଏ ଟାଣୁଆ ସିରପ୍, ମହମହ ବାସ, କୋକାକୋଲାରେ ମିଶାଇଦେଇଥିଲେ । ସେଥିପାଇଁ ତାଙ୍କୁ ଗାଳି ଦେବାକୁ ମନ ହେଉଛି । ସେ ବି ନିଜେ ସେଇଥିରୁ କୋକାକୋଲାରେ ମିଶାଇ ପିଇଥିଲେ ଯେ ! ରାମକୁମାରବାବୁ, ଯିଏ ନୂଆବଜାରରେ ଅତି ଆଧୁନିକ ଲୁଗାଦୋକାନ ଖୋଲିଛନ୍ତି, ନିମିଚୌଡ଼ିରେ ଯାହାଙ୍କର ସୁନାରୁପାର ଗହଣା ଦୋକାନ, ତାଙ୍କର ଉଷିତା ସ୍ତ୍ରୀ ଶ୍ରୀମତୀ ଯେସ୍ମିନ୍ ଦେବୀ, ନିଜେ ବନହଂସୀଙ୍କୁ ପିଆଇଦେଇଥିଲେ ।

ଯେସ୍‌ମିନ୍‌ ପାଠୋଇ ଝିଅ । ବି. ଏ., କି ଏମ୍‌. ଏ. ପାସ୍‌ କରିଛନ୍ତି । ସୁନା ଖଡ଼ିକା ପରି ପାତଳ ଦେହ । ଲମ୍ବା ମୁହଁ । ଭ୍ରୂଲତା ଓ ଛୋଟ ଗୋଲାଳିଆ ନାକଟି ବେଶ୍‌ ସୁନ୍ଦର । ସେ ଗୋଟାଏ ହସର ପେଡ଼ି । ସବୁ ଆନନ୍ଦ ତାଙ୍କରି ଭିତରେ ଠୁଳ । ଭଲ ଗୀତ ବୋଲନ୍ତି । ଷ୍ଟେଜ୍‌ ଉପରେ ନାଚନ୍ତି । ଡ୍ରାମାରେ ହିରୋଇନ୍‌ ହୁଅନ୍ତି ।

ସେ ବାହା ହୋଇଥିଲେ । ପ୍ରଥମ ସ୍ୱାମୀ ବିଜୁଳି ଇଲାକାରେ ଟେକ୍‌ନିସିଆନ୍‌ କାମ କରୁଥିଲେ । ତାଙ୍କର ଗୋଟିଏ ପୁଅ ଥିଲା ।

ଆହା ବିଚରା ପ୍ରଶାନ୍ତ ! ଟିକିଏ ଅସାବଧାନତା ପାଇଁ ସେହି ରାମକୁମାର-ବାବୁଙ୍କ ଘରେ, ବିଜୁଳି ତାର ଲାଗି ସେ ଜଳି ମଲେ । ଛାଡ଼ିଯାଇଥିବା ପୁଅଟିକୁ ଦଶବର୍ଷ ଟପିଲାଣି । ରାମକୁମାରଙ୍କ ଝିଅ ହେବାକୁ ହେଲାଣି ଦୁଇ ବରଷ । ହେନାଫୁଲ ପରି ସେ ସୁନ୍ଦର !

ଯେସ୍‌ମିନ୍‌ଙ୍କ ନାମରେ ରାମକୁମାର ଲକ୍ଷେ ଟଙ୍କା ମୂଲ୍ୟର ଘରବାଡ଼ି ଲେଖିଦେଇଛନ୍ତି । ତୁଳସୀପୁରରେ । କେତେ ଟଙ୍କା ତାଙ୍କ ନାମରେ କେଉଁ କେଉଁ ବ୍ୟାଙ୍କ୍‌ରେ ଜମା କରିଛନ୍ତି କେହି କହି ପାରିବେ ନାହିଁ ।

ଦିନେ ଆନନ୍ଦଚନ୍ଦ୍ର ଗୁପ୍ତରେ କହୁଥିଲେ, ସେହି ସମ୍ପତ୍ତି ଓ ସେହି ଧନ ରାମକୁମାରଙ୍କ ଧନର କାଣିଚାଏ ଗୋ ଇନ୍ଦିରା ! ଆଉ ତାଙ୍କୁ କେହି ପାରିବେ ନାହିଁ । ସବୁ କାଣ୍ଟ୍ରାକ୍ଟି, ସବୁ ଲାଇସେନ୍‌ସ ଯେସ୍‌ମିନ୍‌ ତାଙ୍କ ପାଇଁ କରାଇଆଣିବେ । କିଏ ତାଙ୍କୁ ନ ଚହ୍ନେ ! ଭେରାଇଟି ସୋ, ଜୟନ୍ତୀ ଉତ୍ସବ, ଡ୍ରାମା ଷ୍ଟେଜ୍‌ରେ ସବୁଠାରେ ଯେସ୍‌ମିନ୍‌ ଦିଶନ୍ତି । ରୂପ ଅଛି । ଧନ ପ୍ରଚୁର ଅଛି । ବୟସ ବଳେଇ ନାହିଁ । ପାଠ ପଢ଼ିଛନ୍ତି । ଏବକାଳିଆ ଭଦ୍ରତା ଶିଖିଛନ୍ତି । ପୋଷାକପତ୍ର ତ ଦେଖୁଛ—

ହଁ, ଦେଖୁଛି । ଅତି ସୁନ୍ଦର । ବେଶ୍‌ ମୂଲ୍ୟବାନ; କିନ୍ତୁ ସବୁ ତ ମିଳେ ବଜାରରେ । ସେଇ ପୁରୁଣା ଖାଉନ୍ଦ ରାମକୁମାରଙ୍କ ଦୋକାନରେ । ତହୁ ବଳି ତହୁଁ ବଳି ଚଳ । ମୁଁ ନିଜେ ଦେଖୁଛି ଗୋ, ବୁଝୁଛି ବି, ଭେକ

ନ ଥିଲେ ଭକ୍ତ ମିଳିବ ନାହିଁ । ତମେ ଭୈକ୍ଷଘଡ଼ିଙ୍କ ଆଶା କରିବ, ପୁଣି ପୃଥ୍ୱୀମଣ୍ଡଳକୁ ବି ଆଶା କରିବ ।

ତମେ ଅବଗୁଣ ପାଇବ ନାହିଁ, ଇନ୍ଦର ! ଯେତେ ମୂଲ୍ୟବାନ୍ ଶାଢ଼ି, ବ୍ଲାଉଜ ଓ ଗହଣା କିଣ, ସେସବୁ ବାଛିବାରେ ଯେଉଁ ଦକ୍ଷତା, ସେସବୁକୁ ପିନ୍ଧିବାରେ ଯେଉଁ କାଇଦା, ସେତିକି ଅଳ୍ପ ଲୋକଙ୍କୁ ଜଣା । ଯାହା ନୋହିଛି ବାଳକାଳେ, ତାହା ନ ହେବ କାଳେକାଳେ ।

ନଙ୍ଗଳା ହୋଇ ଆଗକୁ ଗଲେ ସେମାନେ କହିବେ ଏଇଟା ବାଇଆଣୀ । କଣେଇଁ କଣେଇଁ ଗୃହିଁବେ । ମନକୁ ମନ ଲଜ୍ଜିତ ହୋଇ ସେମାନେ ଖସି ପଳାଇବେ । ମରହଟିଆଣୀଙ୍କ ପରି ହାତେ ଓଢ଼ଣା ଦେଇ ଗୋଡ଼ରୁ ମୁଣ୍ଡଯାଏ ହଜାରଟଙ୍କିଆ ଶାଢ଼ିରେ ଘୋଡ଼ାଇହୋଇ ଆଗରେ ଠିଆ ହେଲେ, ମୂଲ୍ୟବାନ୍ ଶାଢ଼ିଟାକୁ ଥରେ ଗୃହିଁବେ, ସେଇଠୁ ଆଖି ଫେରାଇବେ । ତମେ ତମର ଠିଆ ହୋଇ, ଆପେ ଆପେ ପୁଣି ପଳେଇ-ଆସିବ । କାମ ଭଣ୍ଡୁର । ଘରେ ହାଜର କରିଥିବା ଉପହାର ବି ବ୍ୟର୍ଥ ।

ତମର ସେ ଲାଇସେନ୍‌ସଟା ହୋଇପାରିଲା ନାହିଁ । ଦୁଇ ହଜାର ଟଙ୍କାର ଉପହାର ପାଣିରେ ପଡ଼ିଲା ବୋଲି ମତେ କହୁଛ, ଉଦ୍ଧଉଛ କି ? ଅଣଓଡ଼ିଆଟାଏ ପାଇଗଲା ? ଓଡ଼ିଆ-ବଡ଼ବଡ଼ିଆଙ୍କର କଲମଗାରରେ ସେ ପାଇଲା ବୋଲି ନିଜେ ସମୁଦ୍ର ହାଡ଼ିବନ୍ଧୁଙ୍କୁ ଧନ୍ୟ ବାଦୁନୁଥିଲ । ସେଥିରେ ମୋର କି ଦୋଷ ?

ଆରେ, ତମେ କାନ୍ଦୁଛ ? ତମର ଦୋଷ କିଏ ଦେଉଛି ? ତମେ ଯେତିକି କଲ ସେକ୍ଷ ଢେର୍ । ଦୁଇ ହଜାର ଟଙ୍କା ପାଣିରେ ପଡ଼ି ମିଳେଇ ଯାଇନାହିଁ । ଆଜି ଦିନକୁ ଆଉ ଦିନ ଅଛି । ସେଇଟା ଆମର ବନସୀ କଣ୍ଟାରେ ଗୁନ୍ଥା ଶେଉଳ ପିଲ୍ଲ । ଦିନେ ବଡ଼ ଗ୍ରକୁଡ଼ ହାବୁଡ଼ିପିବ ।

ନ ହାବୁଡ଼ିଲେ ?

ଆଉ କେଉଁ ଘାଟରେ, ଅବା ପୋଖରୀରେ ଚର ଖୁଟିବା । ପୁଣି ଶେଉଳ ଗୁନ୍ଥି ବନସୀ ଖେଳାଇବା । ବେପାର ବଣିଜ କାମ ସେଇଆ ।

ବ୍ୟବସାୟରେ ଓଡ଼ିଆ, ଅଣ-ଓଡ଼ିଆ ସେମାନେ ବସ୍ତୁରନ୍ତି ନାହିଁ । ପରସ୍ପରର ସୁବିଧା ସମସ୍ତେ ଦେଖନ୍ତି । ସେମାନେ ବ ଗ୍ଲେଷ୍ଟରୁ ବଡ଼ କେତେ ବେପାରୀଙ୍କ ପର ଆଖି ବୁଜି ନିୟମ କରିଛନ୍ତି, ଯେକୌଣସି ଉପାୟରେ ଧନ ଭେଇବେ ଠୁକେଇବେ ଓ ତହୁଁ ଅଧିକ ତହୁଁ ଅଧିକ ଧନୀ ହେବେ । ଆଉମାନଙ୍କର ଯାହା ହେଉ, ଆଉମାନେ ତଳତଳାନ୍ତ ହେଉନ୍ତୁ, ମରନ୍ତୁ ଅବା ସରନ୍ତୁ, ସେଥିରେ ତାଙ୍କର କିଛି ଯାଏ ଆସେ ନାହିଁ ।

ସତ କହିଲ । ମୋର ସେକାଳ ପଖାଳ ମନେ ପଡ଼ୁଛି । ପଖାଳ ମୁଠିକ ତମର ଓ ବେଗଣା ଅନୁସାର । ମଣ୍ଡ ତୋରାଣି ମୋର ଏବଂ ଭଣଜା ବନ୍ଧମର । ଶାଗ ବ ନାହିଁ, ପିଆଜ ।

ଗତ କଥା ମନେ ନ ପକାଇବା ଭଲ ଗୋ ଇନ୍ଦ୍ରବା ! ଯେସମିନ୍ ଦେବୀଙ୍କ କଥା କହୁଥିଲ । ସେସ ମସ୍ତଙ୍କର ତହ୍ନା । ସେ ଫରୁଆଡ଼୍ । ଉପରେ ପଡ଼ ଗେଲ୍ହେଇ ହୋଇ ମିଶନ୍ତି । କେଡ଼େ ବାଗରେ ସ୍ୱର ଲମ୍ବାଇ ମଉଜିଆ କଥା କହନ୍ତି । କେଡ଼େ ସୁନ୍ଦର ଢଙ୍ଗରେ ପରିଷ୍କାର ହୋଇଥାନ୍ତି । ରାମକୁମାରବାବୁଙ୍କ ପାଇଁ ଜାଣ ସେ ବେପାର ଆଣି ଦିଅନ୍ତି । ତମେ ତାଙ୍କୁ ଅନୁକରଣ କରିପାରିବ ନାହିଁ । ମନ୍ତ୍ରୀଙ୍କ ଝିଅବାହା ଦିନ ସେ ଯେମିତି ଭଦ୍ରଲୋକଙ୍କର ତର୍ଚ୍ଚା କରୁଥିଲେ, ଦେଖିଛ ତ !

କାହିଁକି ପାରିବ ନାହିଁ ?

ପାରିବ ? ସେପରି ସାହସ ତମର ହେବ ? ମୁଁ ଜାଣେ, ରାମକୁମାର ଯେପରି ବ୍ୟବସାୟୀ, ଯେସ୍‌ମିନ୍ ସେହିପରି ବ୍ୟବସାୟୀ । କେହି କାହାକୁ ଊଣା ନୁହନ୍ତି ।

ଇନ୍ଦ୍ରବାଙ୍କର ଆଉ କିଛି କହିବାର ନ ଥିଲା ।

ଯେସ୍‌ମିନ୍‌ଙ୍କୁ ସେ ଅନୁକରଣ କରିପାରୁ ନ ଥିଲେ । ସବୁ ଗୁଣରେ ଯେସ୍‌ମିନ୍ ତାଙ୍କଠାରୁ ଅଧିକ । ମନେ ମନେ ଇନ୍ଦ୍ରବା ତାଙ୍କୁ ଈର୍ଷା କରୁଥିଲେ । ସେ ଜାଣିଥିଲେ ଯେ, ଯେସ୍‌ମିନ୍ ତାଙ୍କ ପ୍ରକୃତ, ଚଳନ ଓ ଦକ୍ଷତାର ଅପହଞ୍ଚ । ତାଙ୍କର ଚତୁରକଧର ଛଳକଥାରେ, ବନହଂସୀଙ୍କ ଗେଲ୍ହାଳିଆ

ଅନୁରୋଧରେ ସେ ଯାହା ପାନ କରିଥିଲେ, ଭାବିଥିଲେ, ତାଙ୍କର କିଛି ହେବ ନାହିଁ । କିନ୍ତୁ ପରମଜିତବାବୁ ଯଦି ହାତ ଧରି ତାଙ୍କୁ ଘର ଭିତରେ ପହଞ୍ଚାଇ ଦେଇ ନ ଥାନ୍ତେ, ସେ କେଉଁଠି ଝୁଣ୍ଟି ପଡ଼ିଥାନ୍ତେ ।

ଆଗରେ ଅନୁପା !

ଇନ୍ଦିରା ସାମାନ୍ୟ ଟଳିଲା ପରି ଭାଲ ପାହାଚ ପାଖକୁ ଆସିଲେ । କାନ୍ଥରେ ଭରା ଦେଇ ଠିଆ ହେଲେ । ପଚାରିଲେ, ଏତେବେଳଯାଏ କଅଣ କରୁଥିଲ କି ? ମାଉଁ କାହାନ୍ତି ? ପିଲାଏ କାହାନ୍ତି ?

ଅନୁପା କହିଲା, ଆଈ ଆରଘରେ ଗପ କହୁଣୁ ଶୋଇପଡ଼ିଲେ, ବୋଉ ! ଝକଝକି ମତେ ପଢ଼ାଉଥିଲେ । ନିରୁପା-ଦୁଷ୍ଟ ଗୋଲମାଲ କଲା ଯେ—

ସେ କାହିଁ ?

ଆଈଙ୍କ ପାଖରେ ଶୋଇଥିବ ।

ଧରାପରା ହେଉଥିଲ କାହିଁକି ?

ଅନୁପା କହିଲା, ତାଙ୍କ ବହି ଭିତରୁ ପିଇସାଙ୍କର ଏହି ଫଟୋଖଣ୍ଡିକ ମୁଁ ଝାମ୍ପିନେଲି । ସେ ଯେତେ ମାଗିଲେ ମୁଁ ଦେଲି ନାହିଁ । ସେ ମୋ'ଠାରୁ ଛଡ଼ାଇନେବାକୁ ଚେଷ୍ଟା କରୁଥିଲେ । ପିଇସାଙ୍କ ଫଟୋ । ହେଇଟି, ମୁଁ ତାକୁ ହାତରେ ଧରିଛି । ସେ ତ ହାରିଗଲେ ।

ସେ ଫଟୋ ଚୋରି କଣ ହେବ, ଅନୁପା ? ତାଙ୍କ ବାପାଙ୍କ ଫଟୋ ତାଙ୍କ ପାଖରୁ ଆଣିବା ଚୋରି କି ଦରକାର ଥିଲା ?

ଅନୁପାକୁ କେହି କେବେ ଏତେ କଥା ପଚାରନ୍ତି ନାହିଁ, କଇଫତ ମାଗନ୍ତି ନାହିଁ । ବୁଦ୍ଧି ଶିଖାନ୍ତି ନାହିଁ । ତା ବୋଉ କାହିଁକି ଏତେ କଥା ପଚାରିବେ ? ନିଜେ ତ ରାତି ଏଗାରଟାରେ କାହା ଗାଡ଼ିରେ ଫେରିଲେ । ସିନେମା, ଥିଏଟର, ଭଞ୍ଜ-ଜୟନ୍ତୀ, ଅବା କେଉଁ ସଭା କି ପାର୍ଟିରେ ଯୋଗ ଦେବାକୁ ଯାଇଥିଲେ । ତାଙ୍କ ସଙ୍ଗରେ ଯିବାକୁ ସେ ଅନୁପାକୁ ଡାକିଲେ

ନାହିଁ । କଅଣ କେଉଁଠି ଖାଇ ପିଇ ଆସିଛନ୍ତି । ମୁହଁଟା ଆଜ ଜାଉଆ ଦିଶୁଛି । ନଜେ ଟଳଟଳ ହେଉଛନ୍ତି । ଏମିତ ସେ କେବେକେବେ ଫେରନ୍ତି । କଏ ତାଙ୍କୁ କଇଫତ ମାଗିବ ?

ଅନୁପାର ଆଖିରେ ଲୁହ ଛଳଛଳ ହେଲା । ତା'ର ନାକପୁଡ଼ା ଦିଓଟି ଥରିବାକୁ ଲାଗିଲା । ସେ ଉତ୍ତର ଦେଲା, ବକଭାଇ ଭିନଦେଶ ଗଲେ ଏଇ ଚିଠିଖଣ୍ଡିକ ପାଇଥିଲେ । ସେ ଲୁଚିଇ ଲୁଚିଇ ପଢ଼ନ୍ତି । ପଢ଼ିଲାବେଳେ ଭୁନ ଭୁନ କାନ୍ଦନ୍ତି । ମୁଁ ଲୁଚ ଲୁଚ ପାଖକୁ ଗଲେ ସେ ଚିଠିଖଣ୍ଡି ଲୁଚେଇ-ଦିଅନ୍ତି । ପିଇସା କ'ଣ ଲେଖିଛନ୍ତି, ପଚାରିଲେ ସେ କିଛି କହନ୍ତି ନାହିଁ ।

ବନ୍ଦମ କୋଠରି ଭିତରୁ ପଦାକୁ ବାହାରିଲା । ସେମିତ ଗୋରୁମରା ରୂପ । ପରିଷ୍କାର ଦରସଫା ଲୁଗା ଓ ଗେଞ୍ଜି । ବାମ ହାତର କଚଟିରେ ନୂଆ ରିଷ୍ଟ-ଓ୍ୱାଚ । ସେହି ହାତରେ ବହି ଖଣ୍ଡିଏ ଧରିଛି । ବାଇଶି ବର୍ଷର ପୁଅ, କିନ୍ତୁ ତା'ର ବଳିଷ୍ଠ ଦେହ ଓ ରୁଢ଼ ବଳବଳ ମୁହଁ ତା'ର ବୟସକୁ ଆହୁରି ପାଞ୍ଚଟି ବର୍ଷ ଆଗେଇନେଲା ପରି ମନେହେଉଛି ।

ଇନ୍ଦର ତା ଉପରେ ଦୃଷ୍ଟି ପକାଇଲେ । ପଣତରେ ଝାଳୁଆ ମୁହଁକୁ ପୋଛିଲେ । ଆଖି ମିଟି ମିଟି କରି ପଚାରିଲେ, ତମର ବାପା କଅଣ ଲେଖିଛନ୍ତି କି ବିକ ?

ବନ୍ଦମ ଦୃଷ୍ଟି ନତ କଲା ।

କହୁନ ?

ବନ୍ଦମ କହିଲେ, ତାଙ୍କର ଦେହ ଭଲ ନାହିଁ । ସେ ଆଉ ବିଦେଶରେ ଚାକର କରିପାରିବେ ନାହିଁ ।

ନ କଲେ ନାହିଁ । ତମେ ବି. ଏ. ପାସ୍ କଲ । ଏବେ ପାରିଲାର ପୁଅ ହେଲ । ମାମୁଁଙ୍କର କେଉଁ କାମରେ ସାହାଯ୍ୟ କଲେ ସେ ତମକୁ ନିଷ୍ଟୟ ଦରମା ଦେଇ ରଖିବେ । ନାହିଁ ତ ଯଦି କେଉଁଠି ସରକାରୀ ଚାକିରି କରିବ, କହ । ମୁଁ ଯେଉଁଠି ହେଲେ ଚେଷ୍ଟା କରି ଲଗେଇଦେବି ।

ବିକ୍ରମ ଅସ୍ୱସ୍ତି ଅନୁଭବ କଲା । ଈଶ୍ୱରଙ୍କର ଆଶ୍ୱାସ ବାଣୀ ସତେ କି ତା'ର ଆତ୍ମାରେ ଢାଳିଲା ଲୁହାର ଶଆଁ ଲଗାଇଲା । କେତେ ସେ ସହୁଛି । ସବୁ ଆଘାତକୁ ସେ ମନରେ ଛେଦାଇ ମନକୁ ପଥର କରି ପଡ଼ିରହୁଛି ଭବିଷ୍ୟତ ଆଶାରେ । କଅଣ ସେ ଭବିଷ୍ୟତ, ନିଜେ ବିକ୍ରମ ବି ଜାଣେ ନାହିଁ । ପରୀକ୍ଷା ସରିଲା । ମାତ୍ର ଦୁଇ ଚାରି ଦିନ ପାଇଁ ବିକ୍ରମ ତା'ର ଗ୍ରାମକୁ ବୋଉଙ୍କ ପାଖକୁ ଯାଇଥିଲା । ଦେଖିଆସିଥିଲା । ତାଙ୍କର ଆର୍ଥିକ ଦୁରବସ୍ଥା । ମଳିନ ହୋଇଆସୁଥିବା ବୋଉଙ୍କର ରୋଗଣା ରୂପ । ପରୀକ୍ଷାର ଫଳ ବାହାରିଲା । ସେମିତି ସେ ଦୁଇଚାରି ଦିନ ପାଇଁ ଗ୍ରାମକୁ ଯାଇ କଟକ ଫେରିଆସିଥିଲା ।

କିଏ ତାକୁ ଫେରାଇଆଣିଥିଲା ?

ଅନୁପା !

ପୁଣି ଗୋଟାଏ ଅଦେଖା ଆଘାତ ଲାଗିଲା ତା'ର ଛାତିରେ । ମୁଣ୍ଡ ଭ୍ରମିଉଠିଲା । କାହିଁ କୁଆଡ଼େ ଧାଇଁ ପଳାଇବାକୁ, ମୁହଁ ଲୁଚାଇ ପ୍ରାଣଭରି କାନ୍ଦିବାକୁ ତା'ର ମନ ଡାକିଲା । ସେ ଆଖି ବୁଜିଲା । ଆଖିପତାର ଅନ୍ଧାର ଭିତରେ ଆତଯାତ ହେଉଥିବା ବିଜୁଳି-ପ୍ରଖର ସହସ୍ର ସହସ୍ର ସ୍ଫୁଲିଙ୍ଗର ଅସମ୍ଭାଳ ତେଜ ଓ ବେଗ ସହି ନ ପାରି ସେ ଆଖି ଖୋଲିଲା । ଦେଖିଲା, ଇନ୍ଦିରା ଝଲଝଲକା ପାହାଚ ଓହ୍ଲାଉଛନ୍ତି । ଅନୁପା ବାରଣ୍ଡାକଡ଼ରେ ମୂକ ହୋଇ ଠିଆହୋଇଛି । ଯେଉଁ ପତ୍ରଖଣ୍ଡି ସେ କେଜାଣି କେତେଥର ପଢ଼ି ହସିହସି ଲେଟିଯାଇଥିବ, ଯେଉଁ ପତ୍ରଟିର ପରୋକ୍ଷ ପ୍ରଭାବ ଆଜି ପୁଣି ସେମାନଙ୍କୁ ଆପ୍ୟୁତହୀନ କରିଥିଲା, ସେହି ଅଶୁଭ ପତ୍ରଟି ତା'ର ହାତରେ ସାମାନ୍ୟ ଥରି ଥରି ଉଠୁଛି । ଅନୁପା ବିକ୍ରମକୁ ଫେରି ଚାହିଁବାକୁ ସତେ କି ଆଜି ଭୟ କରୁଛି !

ଦୁଇ ପାହାଚ ଓହ୍ଲାଇ ପାର୍ବପେଠ୍‌ରେ ଭର ଦେଇ ଇନ୍ଦିରା ଅପେକ୍ଷା କଲେ । ମୁହଁ ବୁଲାଇ ପଛକୁ ଗୃହିଁଲେ । ତାଙ୍କର ସୁନ୍ଦର ମୁହଁଟି କପରି ଅଲଗା ଦିଶୁଛି, ଟିକଏ ରୁକ୍ଷ । ଭଙ୍ଗା ଭଙ୍ଗା ରୁକ୍ଷ ସ୍ୱରରେ ସେ କହିଲେ, ତୁ ଯା ଶୋଇବୁ, ଅନୁପା ! ପଢ଼ାଘରର ଆଲୁଅ ଲିଭାଇ ଟିକିନ ଦେଇଦେ ।

ମୁହଁ ଫେରାଇଲେ । ଆହୁରି ପାଦେ ଓହ୍ଲାଇଲେ । ଇନ୍ଦିରା ମଣିଲେ କେହି ଜଣେ ତାଙ୍କୁ ସାହାଯ୍ୟ ନ କଲେ ସେ ଆହୁରି ପନ୍ଦର ପାହାଚ ଓହ୍ଲାଇ-ପାରିବେ ନାହିଁ, ବଡ଼ ଅଗଣା ପାରି ହୋଇ, ପୁଣି ପାଞ୍ଚଟା ପାହାଚ ଉଠି ଦାଣ୍ଡ ଧାଡ଼ିର ଶୋଇଲା-ଘର ଭିତରକୁ ଯାଇପାରିବେ ନାହିଁ । ସେ ଧାଡ଼ି ଘରର ବ୍ରିଚ ଫେନ୍ସିକ ତାଙ୍କର କାନରେ ସେ ବାନ୍ଧି ରଖିଛନ୍ତି, ଅଣ୍ଟାରେ ଖୋସିଛନ୍ତି ।

ଅବଶ୍ୟ ଦାଣ୍ଡ-ବାରଣ୍ଡାରେ ଦୁଇଟା ବିଶ୍ୱାସୀ ମୂଲିଆ ଶୋଇଛନ୍ତି । ଭିତରପଟ ରୋଷେଇଘର ଓ ଭଣ୍ଡାରଘର ପିଣ୍ଡା ଉପରେ ପୂଜାରୀ ସୁଦର୍ଶନ ଓ ଚାକର ରଥିଆ ଶୋଇଛନ୍ତି । ସେମାନଙ୍କର ନିଦ ଘାଣ୍ଟିଛି । ବାରଣ୍ଡା-ଗୁଡ଼ିକର ଆଲୁଅ ଓ ଅଗଣାର ଆଲୁଅ ଜଳୁଛି । ମୂଲିଆ ଓ ଚାକରମାନଙ୍କୁ ସତର୍କ କରିବାକୁ ଓ ସେମାନଙ୍କର ନିଦ ଭଙ୍ଗାଇବାକୁ ବାହାର ବାରଣ୍ଡା ଓ ଭିତର ଅଗଣାର ଗୋଟିଏ କଣରେ କଲିଂ ବେଲ୍ ଲାଗିଛି । ସ୍ୱିଚ୍ ଅଛି ତଳ ଧାଡ଼ିର ଶୋଇବାଘର କାନ୍ଥରେ । ଆପଦ ବିପଦର ଆଶଙ୍କା ଦୂର କରିବାକୁ ସବୁ ପ୍ରକାର ସତର୍କତା ଅବଲମ୍ବନ କରାହୋଇଛି ।

ଆଜ କାହିଁକି ବେଶୀ ଡର ଡର ଲାଗୁଛି । ଏ ଯୁଗ ନିମକ୍‌ହାରାମ୍ ଯୁଗ । ଯେଉଁ ସବୁ ଚୋରି ଡକାୟିତି ଘଟଣାର ସମ୍ବାଦ ଖବରକାଗଜ-ମାନଙ୍କରେ ବାହାରୁଛି, ଯାହାସବୁ କାନରେ ପଡ଼ୁଛି, ସେଥିରୁ ବୁଝାଯାଉଛି ଯେ ପରର ଧନସମ୍ପତ୍ତି ଅପହରଣ କରିବାକୁ ଆଗ ବାଗ ଉଣ୍ଡନ୍ତି ସେହି ବିଶ୍ୱାସୀ ଲୋକ । ପ୍ରକୃତରେ ଏକା ବିଶ୍ୱାସୀ ହେଉଛନ୍ତି ବିଶ୍ୱାସ । ସେ ତଳ-ଘରେ ଥିଲେ ଇନ୍ଦିରା ନିରାପଦ ମଣନ୍ତେ ।

ନିରୂପା, ସୁରୂପା ଓ ସାନନ୍ଦ ମାଈଁଙ୍କ ପାଖରେ ଶୋଇପଡ଼ିଲେଣି । ରହିଲୁ ସେମାନେ ଉପରେ । ବିନା କାରଣରେ ଅନୁପାକୁ ସେ ଯେପରି କହିଲେ, ଅନୁପା କେଜାଣି କାହିଁକି ଡରିଗଲା । ତା'ର ଆଖିରେ ଲୁହ ଛଳ-ଛଳ ହେଲା ।

କଅଣ ସେ ଅନୁପାକୁ ପଚାରିଲେ, ଏବେ ଇନ୍ଦ୍ରଙ୍କର ମନେ ପଡ଼ୁନାହିଁ । କ'ଣ ବେଆଡ଼ା କଥା ପଚାରିଦେଲେ ? ନିଷ୍ପାପ ନିର୍ମଳ ଝିଅଟା କଅଣ ବୁଝିଲା ? ତାଙ୍କର ମନରେ ଯେଉଁ ସନ୍ଦେହର ବାଦଲ ଘାଙ୍କିଥିଲା, ସେହି ବାଦଲ-ଗର୍ଜନର କି ଅର୍ଥ ବା ବୁଝିଥିବ ତାଙ୍କର ସ୍ନେହର ପିଲୁଳା ପାଠ-ବାଇଆଣି ଝିଅଟି ? ଖେଳୁଆଳ ବୁଦ୍ଧି ସେ ଏବଯାଏ ଛାଡ଼ିନାହିଁ । ଗୋଟି ଖଣ୍ଡିକ ପାଇଁ, ଯୁଆନ୍ ଟୋକାଟା ବିକ୍ରମ, ତା ସଙ୍ଗେ ଅଭଦ୍ର ଭାବରେ ଭିଡ଼ାଓଟରା ହେଉଥିଲା !

ଇନ୍ଦ୍ର ଦେଖିଲେ, ଅନୁପା ଗଗଡମ ତମ ହୋଇ ଗୋଟି ଖଣ୍ଡି ବିକ୍ରମଙ୍କ ଉପରକୁ ପକାଇଲା । ଗୁରି ପାଦ ଦୁମ୍‌ଦୁମ୍ ହୋଇ ଆଗେଇଯାଇ କହିଲା, ନିଅ ତମର ଗୋଟିଟା ! ଓହୋ, ଭାରି ତ ! ତମେ ହାଡ଼ୁଆଣୀ କ ପାଲୁଣୀ ବାହା ହେଲେ ଆମର କି ଥାଏ ମ ? ତମ ବାପା ତ ତମକୁ ବକଛନ୍ତି ।

ଅନୁପା ତା'ର ପଢ଼ାଘର ଭିତରକୁ ପଶିଗଲା । ବିକ୍ରମ ସେହି ଭୂମିଙ୍କର ପଡ଼ଖଣ୍ଡି ତଳୁ ଉଠାଇଲା ନାହିଁ । ସେମିତି ଗମ୍ଭୀର ହୋଇ ସିଡ଼ିର ପାହାଚ ପାଖକୁ ଆଗେଇ ଆସିଲା ।

ଇନ୍ଦ୍ର ଭାବୁଥିଲେ, ବିକ୍ରମ ଯୁଆନ ହୋଇଛି । ମଣିଷ ପରି ମଣିଷ ହୋଇଛି । ତା'ର ବଳିଷ୍ଠ ହାତର ମାଂସପେଶୀ ପୂରିପୂରି ଉଠିଛି । କିନ୍ତୁ ତା'ର ଆଖିରେ ଅନୁପା ସେହି ସାତବର୍ଷର ଧଡ଼ିଆ-ଧେଡ଼ିଙ୍ଗ ବେଗଣା ପିଲା, ଯାହାକୁ ସେ କୋଡ଼ରେ କାଖରେ ବଢ଼ାଇ ହସଖୁସିରେ କେତେ ଗେହ୍ଲାରେ, କେବେ ନାଲିଆଖି ଦେଖାଇ, କାନ ମୋଡ଼ି, ଉଠ-ବସ କରାଇ ଶାସନ କରି ପଢ଼ାଇଛି । ପାଖରେ ଶୁଆଇ ଆହ୍ଲାଦ କରିଛି । ଗୋଟିଟାଏ ପାଇଁ ଧସ୍ତାପସ୍ତା !

ଚଟିଖଣ୍ଡି ଅନୁପା ପାଖରୁ ଫେରି ପାଇବା ପାଇଁ ଗଲେ ! ଏଥିରେ କି ଦୋଷ ବା ଲେଖିଲ ?

ଦୀର୍ଘଶ୍ୱାସ ଛାଡ଼ି ଇନ୍ଦିରା ପାହାଚ ପରେ ପାହାଚ ଓହ୍ଲାଇବାକୁ ଲାଗିଲେ । ଭାବୁଥିଲେ, କଅଣ ଗୁଡ଼ାଏ ଅସନା କଥା ସେ ମାନମହତ ଭୁଲି କହିଦେଲେ ପରା ! ତାଙ୍କର ମୁଣ୍ଡ ଠିକ୍ ନାହିଁ ? ନିର୍ଲଜ୍ଜୀ ଯେସ୍‌ମିନ୍ ଓ ପରମଳବାବୁଙ୍କର ପାଞ୍ଚଟି ପିଲାର ମା ବନହଂସୀ ତାଙ୍କର ମୁଣ୍ଡଖିଆ ଅବସ୍ଥା ପାଇଁ ଦାୟୀ ।

ନା, ଏକା ସେହି ବନହଂସୀ, ଯିଏ ଇନ୍ଦିରାଙ୍କର ରୂପ, ରଙ୍ଗ ଓ ସ୍ୱାସ୍ଥ୍ୟ ଦେଖି, ପୁଣି ତାଙ୍କର ଭରପୂର ଉନ୍ନତ ଅଙ୍ଗ ଦେଖି ଈର୍ଷାରେ ଜଳି-ପୋଡ଼ି ଯାଆନ୍ତି । ଟେଲରେ ଗେଲରେ ଉପହାସ କରି କେତେଥର ସେ ନିର୍ଲଜ୍ଜୀ ଇନ୍ଦିରାଙ୍କ ଗାଲରେ ଟିପ ଛୁଇଁ କହିଛନ୍ତି, ତମର ଯେଉଁ ରୂପ ! ମୋତେ ଦିନ ମାସକ ପାଇଁ ଉଧାର ଦିଅନ୍ତ ଭଉଣୀ, ମୁଁ ନିଶ୍ଚୟ ଅସାଧ୍ୟ ସାଧନ କରନ୍ତି ।

କଅଣ କରନ୍ତ ?

କମିଆଁ ! ମାୟାମୃଗ ଦେଖାଇ ସେମାନଙ୍କୁ ଯୋଜନ ଯୋଜନ ଦଉଡ଼ାଇ ତାଙ୍କର ବୁଦ୍ଧିବିବେକକୁ ଶିକାର କରନ୍ତି ଗୋ ! ଲାଇସେନ୍‌ସ, ପଞ୍ଜା, ପରମିଟ୍ ସବୁ ମୁଁ ଯୋଗାଡ଼ କରିପାରନ୍ତି ।

ନିଜକୁ ବିକି ? ଛି ।

ନିଜକୁ କାହିଁକି ବିକିବି ? ତାଙ୍କର ବିବେକକୁ ଧରି ତାଙ୍କରି ସ୍ୱାର୍ଥ ପାଖରେ ବିକନ୍ତି । ସେମାନଙ୍କୁ ମୁଁ ସୁନା-ଗାଡ଼ିଆରେ କାଟକୁଟି ଘୁଅ-ଗାଡ଼ିଆକୁ ଫୋପାଡ଼ିଦିଅନ୍ତି । ହାତଗୋଡ଼ ଧୋଇ ମୁଁ ରହନ୍ତି ନିର୍ମଳ । ପାଖକୁ ଧନ ଆସିଲେ ଆଉ କି ଭାବନା ? ସେମାନେ ତାଙ୍କର ଘଡ଼ା ଭରି କିଏ କୁଆଡ଼େ ଯିବେ । ଆଖିରେ ପଡ଼ିଲେ ବି ସେମାନଙ୍କୁ ମୁଁ ଚିହ୍ନିବି ନାହିଁ ।

ବନହଂସୀ ମାୟାବିନୀ । ଭାରି ମଜାର ଲୋକ । ମଜା ଦେଖିବାକୁ କୋକାକୋଲାରେ ଟିକିଏ ଅଧିକ ଢାଳିଦେଇଥିଲେ ପରା ! ହାତ ଧରି ଆଣି

ତାଙ୍କର କାର୍‌ର ଆଗ ସିଟ୍‌ରେ ବସାଇଦେଲେ । ପିଲାଙ୍କ ପରି ଟା-ଟା କରି, ଇନ୍ଦିରାଙ୍କର ଚିବୁକରେ ହାତ ଦେଇ ସେ ହସିହସି ବିଦାୟ ନେଇଁଣୁ ପରିମଳବାବୁଙ୍କୁ କହିଲେ, ଜଲଦି ଫେରିଲେ ପେସ୍‌ମିନ୍‌ଙ୍କୁ ନେଇ ପୁଣି ଛୁଡ଼ିଦେଇ ଆସିବ । ରାମକୁମାରବାବୁ କାହିଁକି ଗାଡ଼ି ଏତେବେଳଯାଏ ପଠାଇଲେ ନାହିଁ ।

ପରିମଳବାବୁ ଷ୍ଟିୟରିଂ ଧରି ଆଗରେ ବସିଥିଲେ । ଧୀରେ ଧୀରେ ଗାଡ଼ି ଚଳାଉଥିଲେ । ଇନ୍ଦିରାଙ୍କର ମୁଣ୍ଡ ଝାଙ୍କୁଥିଲା । ସେ ସବୁ ସାବଧାନତା ସତ୍ତ୍ୱେ ଦରଜା‌ଆଡ଼କୁ ଅବା ଷ୍ଟିଅରିଂ ଉପରକୁ ଥରକୁ ଥର ଢୁଙ୍କିପଡ଼ି ପୁଣି ସାବଧାନ ହୋଇ ସଳଖି ବସୁଥିଲେ । ପରିମଳବାବୁ ମୁହଁ ଖୋଲିଲେ, ଆପଣ ଟିକିଏ ବେଶୀ ଡୋଜଦେଇଛନ୍ତି । ସାବଧାନ ହୋଇ ବସନ୍ତୁ ।

କୋକାକୋଲା ତ !

ଇନ୍ଦିରା ସଳଖି ବସୁଣୁ ପୁଣି ଷ୍ଟିୟରିଂ ଉପରକୁ ଢଳିପଡ଼ୁଥିଲେ । ପରିମଳବାବୁ ଡାହାଣ ହାତରେ ଷ୍ଟିୟରିଂ ଧରି ବାମ ହାତରେ ଇନ୍ଦିରାଙ୍କୁ ଗୁଡ଼ାଇ ଧରିଥିଲେ । କହିଥିଲେ, ହଁ, କୋକାକୋଲା । ଘୁଞ୍ଚିଆସନ୍ତୁ । ସ୍ଥିର ହୋଇ ବସନ୍ତୁ । ଆଉ ଅଳପ ଦୂର ।

ଇନ୍ଦିରା ତାଙ୍କ ବଳିଷ୍ଠ ହାତକୁ ଦୂରେଇଦେଇ ପାରି ନ ଥିଲେ । ପରପୁରୁଷର ହାତଟି ! ସେ ଆମୋଦିତ ହେଉଥିଲେ । ଉଷ୍ମ ମନରେ ବିଚାରୁଥିଲେ ତାଙ୍କର ନିଜ ପଣ ଉଣା ହୋଇନାହିଁ । ଅନ୍ୟଜଣେ କିଏ ତାଙ୍କୁ ସଳଖେଇ ବସାଇବାକୁ ଯେ ଆଗ୍ରହୀ ହୋଇଥିଲେ, ତାହା ସେ ଅନୁଭବ କରିପାରିଥିଲେ । ଦେହ ଅନୁଭୂତ ସୁଖର ଚହଟା-ତାତିରେ ଦେହରେ ଟିକିଏ ଆମୋଦପ୍ରଦ କମ୍ପନ ଆଣିଥିଲା । କେଉଁ ଅତୀତ କାଳର ରାଧାଶ୍ରୀବାପନ୍ନ ଶୁକ-ମୁନିଙ୍କର ଚୁମ୍ବକ-ଆଶ୍ଳେଷରେ ମୂର୍ଚ୍ଛାଳିଆ ନୟନ-ନିମୀଳନକାରୀ ଉତ୍ତେଜନାର ଆନନ୍ଦ !

ପରିମଳବାବୁ ନମସ୍କାର କରି ଚାଲିଯାଇଥିଲେ । ଦେହରେ ଓ ମନରେ ସେ ଛାଡ଼ିଯାଇଥିଲେ ଯେଉଁ ଅଶାନ୍ତ ଉତ୍ତେଜନା, ତାହାହିଁ ତାଙ୍କର ମନରେ ଭରିଦେଇଥିଲା ଅବିଶ୍ୱାସର ଅସନା ଧାରଣା ସବୁ !

ଇନ୍ଦିରା ଅଟକିଲେ । ବିକ୍ରମ ପାହାଚ ଓହ୍ଲାଇ ଦୃଢ଼ ପଦକ୍ଷେପରେ ଓହ୍ଲାଇଆସୁଛି । ଇନ୍ଦିରାଙ୍କ ପାଖରେ ହେଲାଣି ।

ଇନ୍ଦିରା କହିଲେ, ରହ, ସେ ଚିଠିଟି ମୋତେ ଦିଅ ।

ବିକ୍ରମ ତାଙ୍କର ମୁହଁକୁ ଅତି ନିକଟରୁ ଉଜ୍ଜ୍ୱଳ ଆଲୁଅରେ ଦେଖି ଥକ୍କା ହୋଇ ଠିଆ ହେଲା । ନିଜକୁ ସେ ବିଶ୍ୱାସ କରିପାରିଲା ନାହିଁ । ସେ ନିଜେ ଯେତେ ନରାଧମ ହେଉ, ମାଈଁଙ୍କୁ ଅପ୍ରକୃତିସ୍ଥ ଅବସ୍ଥାରେ ଦେଖିବ ବୋଲି ଆଶା କରି ନ ଥିଲା । କେଉଁଠି ସେ କଅଣ ପିଇଦେଇ ଆସିଛନ୍ତି, ତାଆରି ମାଈଁ, କୁଳର ବଧୂ ! ଭଲ ହୋଇଛି, ତାଙ୍କରି ପାପର କୁହୁଡ଼ି ଭିତରେ ଲୁଚି ନିଜେ ସେ ପରିତ୍ରାଣ ପାଇଯିବ ।

ବିକ୍ରମ ଉତ୍ତର ଦେଲା, ଚିଠିଟା ସେଇଠି ପଡ଼ିଛି ।

ମୋତେ ଆଣି ଦିଅ ।

ବିକ୍ରମ ମୁଣ୍ଡ ତଳକୁ ପୋତି ପାହାଚ ଓହ୍ଲାଇବାକୁ ଲାଗିଲା । ଉତ୍ତର ଦେଲା ନାହିଁ । ମାଈଁଙ୍କ ପ୍ରତି ତା'ର ଘୃଣା, ନିଜ ପ୍ରତି ତା'ର ଘୃଣାକୁ ବଳି-ପଡ଼ିଥିଲା । ସେ ମନେ ମନେ ସ୍ଥିର କରିସାରିଥିଲା ଯେ, ତାକୁ ଏ ଘର ଓ ପରିସ୍ଥିତି ଛାଡ଼ି ଚାଲିଯିବାକୁ ହେବ । ଧନ ଓ ଧନ ଅର୍ଜନର ବ୍ୟାକୁଳତା ଧୀରେ ଧୀରେ ଏ ଘରକୁ ନରକକୁ ଓଟାରି ଆଣିସାରିଛି, ଯେଉଁ ନରକରେ ସେ ବି ହାବୁଡୁବୁ ହୋଇଛି ।

ଚିଠିର ଆଢ଼ ଦେଇ ଅନୁପା ପରିତ୍ରାଣ ପାଇବାକୁ ବେଶ୍ ଅଭିନୟ କରିପାରିଛି । ଧନ୍ୟ ତା'ର ଉପସ୍ଥିତ ବୁଦ୍ଧି ! ସେଇଠି ପଡ଼ିଥାଉ ସେ ଚିଠିଟି । ରକ୍ଷା-କବଚ । ଯାହାର ମନ ସେ ଗୋଟାଇନେଉ । ପଢ଼ୁ । ଜଣେ ବ୍ୟାକୁଳ-ହୃଦୟ, ବେଗଣା ବୁଢ଼ା-ବାପର ତା'ର ପୁଅକୁ ମଣିଷ କରିବାର ପ୍ରୟାସ

ପାଇଁ କେତେ ଆତ୍ମତ୍ୟାଗ, ମୋ ବୃଦ୍ଧ । କଅଣ ବା ଗୋପମାସ୍ଟ ସେଥିରେ ଅଛୁ ଯେ, ସେ ତାକୁ ଲୁଟୁରଦେବାକୁ ଛଟପଟ ହେବ ?

ଇନ୍ଦ୍ରବର ତା'ର ଉତ୍ତେଜିତ ଥରିଲା ହାତକୁ ଅଧା-ସିଡ଼ିର ପାହାଚ ଉପରେ ଧରି ଅଟକାଇ ରଖିଲେ । ସେ ହାତ ଉଷ୍ମ । ସେ ହାତ ଥର ଥର । ସେ ହାତ ଅଭିଯୋଗ କରୁଛି, ତିରସ୍କାର କରୁଛି—କ୍ଷୀର ପିଆଇ ତୁ କାଳସାପଟା, ତତେ ମୁଁ ଏ ଘରେ ପୋଷିଥିଲି । ବଡ଼ାଇଥିଲି । ପଢ଼ିବାର ସୁଯୋଗ ଦେଇଥିଲି । ତୁ ବେଙ୍ଗଟ ମାରିଛୁ । ଏହି କୁଟୁମ୍ବରେ ବିଷ ଚହଟାଇଛୁ । ମୋର ନରେନ୍ଦ୍ର ଅମୃତଭାଣ୍ଡରେ ତୋର ବିଷକଣିକା ଝାଡ଼ିଛୁ । ତୁ ବିଶ୍ୱାସଘାତକ । ଯାଉଛୁ କୁଆଡ଼େ ? କି ପ୍ରତିକାର ମୁଁ କରିପାରିବ ? କି ଅଭିଶାପ ମୁଁ ଦେବ ? କି ଦଣ୍ଡ ମୁଁ ବିଧିବ ତୋ ଉପରେ ଆରେ ଅକୃତଜ୍ଞ ପଶୁ ? ତୁ କହ । ଯାଉଛୁ କୁଆଡ଼େ ରେ ମଉନ-ମୁହାଁ ? ରହ !

ଇନ୍ଦ୍ରବର କହିଲେ, ରହ ! ଏଠିଟା ତମର କି ଦୋଷ କରିଛି ? ତମ ବାପାଙ୍କର ଏଠି । ନିର୍ବୋଧ ନିର୍ବୁଦ୍ଧିଆ ପିଲାଟା ଅନୁପା, ତା ଉପରେ ରାଗିଲ କି ? ଆଚ୍ଛା, ମୁଁ ନିଜେ ଅଣୁଛି । ପଢ଼ିବ ।

ଇନ୍ଦ୍ରବର ବିହମର ହାତ ଛାଡ଼ି ପାହାଚ କେଇଟି ଉଠିଲେ । ବାରଣ୍ଡାକୁ ଗଲେ । ଅନୁପା ପଢ଼ାଘରର କବାଟର ଶିକୁଳି ଦେଉଛି । ଟିପ ଉପରେ ଠିଆହୋଇ ଶିକୁଳି ଧରି ହାତ ବଢ଼ାଇ ଚଉକାଠ ଉପରର କୁଣ୍ଡାରେ ଲଗାଉଛି । ତା'ର ମୁଣ୍ଡ ପଛକୁ ଝୁଙ୍କିଛି । ଖୋଲା ଲମ୍ବ ବେଣୀ ଦିଓଟି ତଳକୁ ଓହଳି ଦିଓଟି କଳା ସାପ ପରି ଲହ ଲହ ହେଉଛି । ଛୁପିଛୁପିକା ନୂଆ ଫେସନର ପାତଳ ରଙ୍ଗଚହଟା ଶାଢ଼ିର ପଣତ ତଳେ ଅଜାଡ଼ି ହୋଇ ପଡ଼ିଛି ।

ଇନ୍ଦ୍ରବର ମୁହୂର୍ତ୍ତେ ଦୃଷ୍ଟି ଫେରାଇଲେ । ବାମ ହାତର ପାପୁଲିରେ ଉମିଳାମୁଣ୍ଡର କପାଳରୁ ଝାଳ ପୋଛିଲେ । ଡାହାଣ ହାତରେ ଇନ୍‌ଲଣ୍ଡ ପୋଷ୍ଟକାର୍ଡ଼ ଏଠିଖଣ୍ଡ ଅଣ୍ଟା ନୋଇଁ ତଳୁ ଉଠାଇଲେ । ଉଠି ଠିଆ ହେଲେ । ଅଣ୍ଟା ଉପରୁ ଦେହର ବସନ ଖସି ପାହାଚ ଉପରେ ଲୋଟିଛି । ଘୁଣ୍ଟରେ

ଭିଡ଼ା ଗ୍ରେଟ ବ୍ଲାଉଜ ତାଙ୍କୁ ବିଜ୍ଞାପନ-ଚିତ୍ର କେଉଁ କାଲେଣ୍ଡର୍‌ର ପାର୍ବତୀ, ଲକ୍ଷ୍ମୀ, ଅବା ଅନ୍ୟ କେଉଁ ଠାକୁରାଣୀଙ୍କର ଏବକା ଭଙ୍ଗୀ ଆଣି ଦେଇଛି । ତେଣିକି ତାଙ୍କର ନିଘା ନାହିଁ । ନିଘା ଦେବାର କାରଣ ବି ନାହିଁ । ପଛରେ ଦୁହିତା । ଆଗରେ କେତେ ପାହାଚ ତଳେ ପୁଷ୍ପପ୍ରଭମ ଭଣଜା ।

ଆଖି ଆଗରେ ରଙ୍ଗରଙ୍ଗକା ଦୁନିଆଟା ଭ୍ରମିଲା ପରି ଲାଗୁଛି । ଝିଣ୍ଣି ଅଠା ଅଠା । ଶୀଘ୍ର ତଳକୁ ଓହ୍ଲାଇ ତଳର ଶୋଇବାଘର ପଲଙ୍କରେ ବିଶ୍ରାମ ନେଲେ ସେ ସୁସ୍ଥ ହୋଇପାରିବେ । ବନହଂସୀଙ୍କର ଉପହାସକୁ ସେ ଫୁତ୍କ ମାରି ଉଡ଼ାଇଦେବେ । ଆଜି ଯେବେ ଦେଖା ହେବ, ବନହଂସୀ ମୁରୁକେଇ ହସି ଅବଶ୍ୟ ପଚାରିବେ, ଟିକିଏ ବେଶୀ ହୋଇଯାଇଥିଲା, ମୁଁ ସେଥିପାଇଁ ଦୁଃଖିତ ଇନ୍ଦ୍ର, ପରିମଳ କହୁଥିଲେ —

ହଁ, କହୁଥିଲେ ଯେ ତମକୁ ସେ ଗୁଡ଼ପର ଦେବେ ଗୋ ବନହଂସୀ! ମୋର ବେଶୀ ହୋଇ ନ ଥିଲା ଯେ ତାଙ୍କର ବେଶୀ ହୋଇଥିଲା । ସେ ପ୍ରକୃତିଛଡ଼ା ହୋଇଥିଲେ ।

ନିଜର ଭାବନାରେ ଇନ୍ଦ୍ର ହସିଉଠିଲେ । ରଠିଂ ହାତରେ ଧରି ଟଳଟଳ ଟିକିଏ ବେଗରେ ପାହାଚ ଓହ୍ଲାଉଣୁ ନିଜର ଭାରସାମ୍ୟ ରକ୍ଷା କରି-ପାରିଲେ ନାହିଁ । ତଳେ ଲୋଟିଥିବା ଶାଢ଼ିରେ ଗୋଡ଼ ଛନ୍ଦହୋଇ, ବିଷମ ଓହ୍ଲାଇ ଯାଉଥିବା ସର୍ବଶେଷ ପାହାଚ ଉପରେ ସେ ଝୁଣ୍ଟିଲେ । ବିଷମ ଓଲଟ ବୁଲି ଚୂହୁଁଣ୍ଣ ତାଆରି ଛାତି ଉପରେ ସେ ଚିତ୍କାର କରି ଅଜାଡ଼ିହୋଇ ପଡ଼ିଲେ ।

ତାଙ୍କୁ କୌଣସି ଦୁର୍ଘଟଣାରୁ ଉଦ୍ଧାର କରିବାକୁ ଆପେ ଆପେ ବିଷମର ଦୁଇବାହୁ ପ୍ରସାରିତ ହେଲା । ଇନ୍ଦ୍ରଙ୍କର ଅସାବଧାନ ପତନୋନ୍ମୁଖ ଅର୍ଦ୍ଧନଗ୍ନା ଦେହକୁ ଗୁଡ଼ାଇ ଧରିଲା । ଆପେ ଆପେ ଇନ୍ଦ୍ରଙ୍କର ଛସ୍ତ ବାହୁଲତା ଦିଓଟି ବିଷମର ଦେହରେ ବେଢ଼ାଇହେଲା । ଟଳଟଳ

ହଓଟି ଯୋଡ଼ହେଲା ଦେହକୁ ବସନ୍ତର ଦୃଢ଼ ପାହୁଣ୍ଡ ଓହ୍ଲାଇନେଲା ତଳର ଆଲୋକିତ ବାରଣ୍ଡା ଉପରକୁ ।

ଇନ୍ଦିରାଙ୍କର ଚିତ୍କାର ଶୁଣି ଅନୁପା ତଳକୁ ଓହ୍ଲାଇଆସିଲା । କ୍ଷିପ୍ର ଗତି । ତଳ ପାହାଚରେ ସ୍ତମ୍ଭିତ ହୋଇ ସେ ଠିଆ ହେଲା । ତା'ର ଗର୍ଭଧାରିଣୀଙ୍କର ଅବସ୍ଥା ତା'ର ଆଖିରେ ପଡ଼ିଲା । ବସନ୍ତର ବାହୁ ଦୁଇଟି ତାଙ୍କର ଉନ୍ମୁକ୍ତ ପିଠି ଉପରେ ଖସିଆସୁଛି ତଳକୁ । କିନ୍ତୁ ତା ବୋଉଙ୍କର ଦୁଇ ହାତର ଫାଶ ବସନ୍ତର ବେକ ପଛରୁ ଫୁଗୁଳିନାହିଁ ।

ବସନ୍ତ ଅନୁପାର ଆଖିକୁ ଚାହିଁ ଦୃଷ୍ଟି ନତ କଲା । ଅନୁପା ଦେହ ବୁଲାଇ ଓଲଟ-ଗତିରେ ପାହାଚ ପରେ ପାହାଚ ଡେଇଁ ଉପରକୁ ଉଠିଲା ।

ତଳ ଖଞ୍ଜାରେ ଚାକରମାନେ ଉଠିସାରିଥିଲେ । ବସନ୍ତର କୋଠରି ଭିତରୁ ଇନ୍ଦିରାଙ୍କର ବୁଢ଼ୀ-ଶାଶୁ ବସୁମତୀ ଆଖି ମଳମଳ ପଦାକୁ ବାହାରି-ଆସିଥିଲେ ।

ଇନ୍ଦିରାଙ୍କର ଅନୁପସ୍ଥିତ କାଳରେ ସେ ପୁରୀରୁ ଆସି ପହଞ୍ଚିଥିଲେ । ସଙ୍ଗରେ ଆଣିଥିଲେ ଆଖିର ଲୁହ ଏବଂ ସାନଦୋହ୍ଲ ଓ ସାନପୁଅଙ୍କ ବିରୁଦ୍ଧରେ ବେତାଏ ଅଭିଯୋଗ । ସେସବୁର କୌଣସି ଅଂଶ କେହି ଗ୍ରହଣ କରି ନ ଥିଲେ । ଏପରି କି ଇନ୍ଦିରାଙ୍କର ମାଇଁ ଶାଶୁ ମୋତିମାଳା ବି । ତେଣୁ ନିଜର କ୍ରୋଧ ଓ ଅଭିମାନକୁ ନଜେ ଢୋକି ବସନ୍ତର ତକ୍ତପୋଷ ଉପରେ ସେ ଇନ୍ଦିରାଙ୍କୁ ଅପେକ୍ଷା କରି ଶୋଇପଡ଼ିଥିଲେ ।

ସେ ଗର୍ଜିଉଠିଲେ, ବୋହୂ, ବୋହୂ— !

ତାଙ୍କରି ପାଟିରେ ଅର୍ଦ୍ଧମୂର୍ଚ୍ଛିତା ଇନ୍ଦିରା ବେଶାହତ ପରି ଚହିଁକି-ଉଠିଲେ । ସଳଖି ଠିଆ ହେଲେ । ବସନ୍ତର ମୁହଁକୁ ଚାହିଁ, ଶାଶୁଙ୍କର ପାଟି ଶୁଣି ସେ ନିଜର ଅବସ୍ଥା ସମ୍ବନ୍ଧରେ ସଚେତନ ହେଲେ । ଲୁଗା ଓଟାରି ଦେହରେ ଗୁଡ଼ାଇଲେ ।

ଉପର ମହଲରୁ ସାନନନ୍ଦର କାନ୍ଦଣା ଶୁଭିଲା । ମାଈଁଙ୍କର ପାଟି ବି ଶୁଭିଲା—କ'ଣ ହେଲା, ତୋ'ର କ'ଣ ହେଲା, ଅନୁପା ? ତୁଆଙ୍କ ପରି ତୁ କାନ୍ଦୁଛୁ କାହିଁକି ?

ସବୁ ଶବଦ ଇନ୍ଦରଙ୍କର କାନରେ ବାଜୁଥାଏ । ସେ ବଲବଲ କରି ଛତଆଡ଼କୁ ଅନାଉଁଥାନ୍ତି । ଢେଉପରି ମାଡ଼ିଆସୁଥାଏ ଚେତନା । ପରିସ୍ଥିତିର ବେଳାଭୂମି ଛୁଇଁ, ସେ-ଚେତନା ଫେନାୟିତ ହୋଇ, ଭଡ଼ମୋଡ଼ ହୋଇ ଫଣା ନୋଇଁ ପଛାଇଯାଉଥାଏ ବିସ୍ମୃତି-ଗର୍ଭକୁ । ପୁଣି ମାଡ଼ିଆସୁଥାଏ ।

ଇନ୍ଦର ହସିଉଠିଲେ । ସେ ହସ ଅନ୍ୟମାନଙ୍କୁ ଚମକାଇଦେଲା । ବିସ୍ମୟର ଭୟତ୍ରସ୍ତ ମୁହଁକୁ ଚାହିଁ ସେ କହିଲେ, ପାହାଚରେ ମୋର ଗୋଡ଼ ଖସିଗଲା । ମୁଣ୍ଡଟ ବୁଲାଉଥିଲା । ଶାଢ଼ିର କାନରେ ପାଦ ଛନ୍ଦୁରିହେଲା—

ଆଗେଇ ଆସିଲେ ଶାଶୂ । ଇନ୍ଦରଙ୍କର ପିଠି ଆଉଁସି ପଚାରିଲେ, ତୁ ଏମିତି ବାଇଆଣୀ ପରି ଦିଶୁଛୁ ! ତୋର କ'ଣ ହୋଇଛି ? ଏତେ ରାତି-ଯାଏ କେଉଁଠି ଥିଲୁ ? ତୁ କଅଣ ଏଣୁତେଣୁ ପିଇଦେଇଛୁ କି ?

ନା, ନା, ବୋଉ ! ହଁ, ହଁ, ବୋଉ ! ବନହଂସୀ ମୋର ସାଙ୍ଗ । ପରିମଳବାବୁଙ୍କ ଘରଣୀ । ମୋତେ ଗିଲାସେ ସରବତ ଦେଇଥିଲେ ଯେ—

ଶାଶୁଙ୍କୁ ସେ ପ୍ରଣାମ କରି ନ ଥିଲେ । କାହିଁକି ସେ ଅବାଞ୍ଛିତ ବ୍ୟକ୍ତିଟି ଅସମୟରେ ଆସି ଏ ଘରେ ପାଦ ଦେଇଛନ୍ତି, ତାହା ତ ପରେ ବୁଝାହେବ । ଇନ୍ଦର ମାନ୍ୟତା ଭୁଲିବେ କାହିଁକି ?

ଶାଶୁ ହାଁ ହାଁ କରୁଣୁ ତାଙ୍କର ବାଧା ନ ମାନି ଇନ୍ଦର ତାଙ୍କର ପାଦ ଧରି ପ୍ରଣାମ କଲେ । ପାଦରୁ ଧୂଳି ନେଇ ମୁଣ୍ଡରେ ଲଗାଇ ଉଠିଲେ । ହାତରୁ ଖସି ତଳେ ପଡ଼ିଥିବା ଚିଠିଖଣ୍ଡି ଇନ୍ଦର ହାତରେ ଧରିଲେ । ମନକୁ ମନ କହିହେଲେ, ସାରକେଶଘ ଭାଇଙ୍କର ଚିଠି । ପଢ଼ିବ ଯେ; ନଷ୍ଟପୁ ପଢ଼ିବ । ମୋ ପାଖକୁ ଯେଉଁ ଚିଠି ଦେଇଥିଲେ, ତାଙ୍କ ଚିଠି ତ ଜାଣି ପୁରାଣ । ତାକୁ ନ ଖୋଲି ପଲଙ୍କ ଉପରେ ଥୋଇଦେଇଛି । ପଢ଼ିବ ଯେ, ନଷ୍ଟପୁ ପଢ଼ିବ ।

ଶାଶୂ ପଚାରିଲେ, କୋଉଁ ଆମର ଶଠି ଦେଇଛନ୍ତି ? ଏ ଅଲକ୍ଷଣା ନାତି ଟୋକାଟା, କେତେ ଭେଣ୍ଡା, କେତେ ଟାଣୁଆ ଷଣ୍ଢ ପରି ହେଲଣି ! ତାକୁ ଆମ ଝିଅଜୋଇଁଙ୍କ ଖବର ପଚାରିଲି । କହିଲା, ସେମିତି ଅଛନ୍ତି । କରେ, ସେମିତି କଅଣ, ଭଲ କି ମନ୍ଦ ? ଅବେଇଜ ନ କହ । ମତେ ଦେଖି ଖାଲି ନାକ ଟେକୁଛୁ । ବୁଢ଼ୀହାଡ଼ୀଯାକ ସେ ମଉନମୁହାଁ ଚୁପ୍-ସଇତାନ ଷଣ୍ଢକୁ କେବଳ ଗଳଉଛନ୍ତି ।

ବନ୍ଧମ ମୁହଁ ଖୋଲିଲା, ମୋ ଉପରେ ତୁ ଏମିତି ରଗରଗ ହେଉଛୁ କାହିଁକି, ଆଈ ? ସାନ ମାଈଁ ଛଚେ ଗୁନ୍ଦା ମାରିଲେ, ତୋ ପିଠିରେ ଆଶୁଆ ଥୋଇଲେ, ସାନ ମାମୁଁ ତୋର ଝେଣା ଧରି ପଦାକୁ ଟାଣିଆଡ଼ିଦେଲେ, ତୁ ରାସ୍ତା ଉପରେ କଚଡ଼ା ହୋଇ ପଡ଼ିଲୁ, ସେଥିପାଇଁ କଣ ମୁଁ ଦାୟୀ ? ମୋ ତକ୍ତପୋଷ ଉପରେ ତୋତେ ଶୁଆଇଲି । ତୋର ଗୋଡ଼ ଘଷିଲି —

ବୁଢ଼ୀ ସକେଇ ସକେଇ କାନ୍ଦିଲେ । ଆଖିରୁ ଲୁହ ଝରିପଡ଼ୁଥାଏ । କହିଲେ, ସତ ଗୋ ବୋହୂ ! ସବୁ ସତ । ସବୁର କାରଣ କହନ୍ତି ସେ, କେମିତି ଏବେ ଶୁଣିବ ? ତମର ତ ଗୁଣ ନାହିଁ । ଝିଟିପିଟି କଙ୍କି ଧରିଲା ପରି ଏଇ ଟୋକା ଯଦି ତମକୁ ଜାବୁଡ଼ି ଧରି ତଳକୁ ଡେଇଁ ନ ଥାନ୍ତା, ତମର ଅବସ୍ଥା ରହି ନ ଥାନ୍ତା !

ହଁ, ବୋଉ ! ବନ୍ଧମ ନ ଥିଲେ ମୋ ମୁଣ୍ଡ ଫାଟି ଛତରଛାଉଳ ହୋଇଥାନ୍ତା । ହାତଗୋଡ଼ ଭାଙ୍ଗିଥାନ୍ତା ।

ମୋତିମାଳା ରାହା ଧରି କାନ୍ଦୁଥିବା ସାନନ୍ଦକୁ ଚୁଟିରେ ପକାଇ ତଳକୁ ଓହ୍ଲାଇଲେ । ତା ପଛେ ପଛେ ଓହ୍ଲାଇ ଆସିଲା ସାତ ବର୍ଷର ଝିଅ ସୁରୂପା । ମାଈଁଆଈଙ୍କ କୋଳରୁ ସାନନ୍ଦକୁ ନେଇ ବନ୍ଧମ ତା'ର ପିଠି ଥାପଡ଼ି କହିଲା, ତୁନି ହ, ତୁନି ହ ସାନ, ବୁଢ଼ୀ-ଅସୁରୁଣୀ ଆସିଛି । ଧରି ନବ ଟି, ତୁନି ହ ।

ବନ୍ଧମର କାନ୍ଧ ଉପରେ ମୁଣ୍ଡ ଟେକି ସାନନ୍ଦ ଆଈବୁଢ଼ୀ ବସୁମତୀଙ୍କୁ ଚାହିଁଲା । ଭୟରେ ସେହି ବନ୍ଧମର କାନ୍ଧ ଉପରେ ସେ ମୁହଁ ଲୁଚାଇ ତୁନି ହେଲା ।

ଇନ୍ଦିରା ସୁରୂପାର ହାତ ଧରି ଅଗଣାକୁ ଓହ୍ଲାଇଲେ । ତାଙ୍କର ଟଳ-ଟଳ ଅବସ୍ଥା ଦେଖି ବହମ ତାଙ୍କର ହାତ ଧରି ଶୋଇଲା-ଘର ବାରଣ୍ଡାର ପାହାଚ ଉଠାଇଲା । ମନରେ ତା'ର ପ୍ରତ୍ୟୟ ଆସିସାରିଥିଲା ଯେ, କେଉଁ ଆକସ୍ମିକ ବତାସର ଝୋଡ଼ରେ ଘୋଟିଆସିଥିବା କଳାଧୂମର ମେଘ ଉଡ଼ି ପଳାଇଛି । ଅନ୍ଧାର ରାତିର ନିର୍ମଳ ଆକାଶ ନେଳିଆ ଦିଶୁଛି । ସେହି ନେଳି-ଆକାଶରେ ବିଶୃଙ୍ଖଳ ତାରାଗୁଡ଼ିକ ମିଟି ମିଟି ହୋଇ ମନରେ ଆସ୍ଥା ଜନ୍ମାଉଛନ୍ତି ।

ସାନନ୍ଦକୁ ତଳେ ଠିଆ କରି ବହମ ମୁଣ୍ଡ ହଲାଇ ନିଜର ନୁଖୁରା ଇତସ୍ତତଃ କେଶ ଝାଡ଼ିଲା । ବାମ ହାତର ପାଞ୍ଚ ଆଙ୍ଗୁଠିରେ ସେହି ଅଳରା ଲମ୍ବ-କେଶକୁ ସଜାଡ଼ିଲା । ରୁଡ଼ ବଲବଲ ମୁହଁରେ ଆଙ୍ଗୁଠି ଓ ପାପୁଲି ସଞ୍ଚାଳି ସେ ମୁହଁ ବୁଲାଇ ଆକାଶକୁ ଅନାଇଁଲା । ସତେ, ଅନ୍ଧାରରାତିର ଆକାଶ ନିର୍ମଳ ଦିଶୁଛି । ତାରାଟିମାନେ ଉପହାସ କଲାପରି ଆଖି ମିଟି ମିଟି କରୁଛନ୍ତି । ଦକ୍ଷିଣକୋଣରୁ କଳାଧୂମର ମେଘର ପଟଳ କାୟା ବିସ୍ତାରି ସେହି ତାରାଟିମାନଙ୍କୁ ଗ୍ରାସ କରି କରି ଧୀରେ ଧୀରେ ଆକାଶ ମଝିକୁ ମାଡ଼ିଆସୁଛି ।

ବହମର ଆଖି ଓହ୍ଲାଇ ଆସିଲା ତଳକୁ । ଦୋଚାଲାର ବାରଣ୍ଡା ଉପରେ ପାରେପେଟ୍‌କୁ ଆଉଜି ସ୍ଥିର-ମୂର୍ତ୍ତିଟିଏ ଠିଆ ହୋଇଛି । ତଳକୁ ଚାହିଁଛି । ବାରଣ୍ଡାର ବାର୍-ଲାଇଟ ଲିଭିଛି । ଅଗଣାର ଆଲୁଅ ତା'ର ବିଷଣ୍ଣ ମୁହଁରେ ପଡ଼ୁଛି । ସେ ମୁହଁ ସତେ କି ଅଭିମାନ କରିଛି, ଅଭିଯୋଗ କରୁଛି, ଅଭିଶାପ ଦେଉଛି, ତିରସ୍କାର କରୁଛି । ନୀରବ ଭାଷାରେ ନିମନ୍ତ୍ରଣ କରୁଛି ସେହି ପ୍ରତିମାର ଭରପୂର ସୁନ୍ଦର ମୁହଁଟି, ଯାହାର ହାଡ଼ମାଳିଆ ରୋଗଣା ଗନ୍ଧଭଣଭଣ ଲଙ୍ଗଳା କଙ୍କାଳକୁ ଦିନେ ସେ ଧୋଇଧାଇ ପରିଷ୍କାର କରୁଥିଲା । ଅନୁପା !

ବହମର ଛାତିରେ କୋହ ଉଠିଥିଲା । କାନରେ ବାଜିଲା, ପଛରୁ ଇନ୍ଦିରା କହୁଛନ୍ତି, ତାଲା ଖୋଲି ହେଉନାହିଁ, ବକ ! କେତେ ଚେଷ୍ଟା କଲିଣି ।

ତମେ ଖୋଲଦଅ । ହେଇ, ନଅ ଏ ଗୁଡ଼ବ । ମୁଁ ଆଉ ଠିଆ ହୋଇ ପାରୁନାହିଁ । ମୁଣ୍ଡ ବେଶୀ ବେଶୀ ଭ୍ରମୁଛି । ଆଖିକୁ ସବୁ ଝାଳାଝାଳଆ ଦିଶୁଛି । ନଅ ଏ ଗୁଡ଼ବ । ବନବଂଶୀ ମତେ ବିଷ ଦେଇଛି, ବନ୍ଧମ ! ହଁ, ସେ ସେଇଆ କରିଛି ।

ଭଦ୍ରଙ୍କ ହାତରୁ ଗୁଡ଼ବ ପେଣ୍ଟିକ ନେଇ କବାଟର ତାଲ ଖୋଲୁଣୁ ଉତ୍କଣ୍ଠିତ ସ୍ୱରରେ ବନ୍ଧମ ଚିତ୍କାର କଲା, ବିଷ ! ଡାକ୍ତର ଡାକିବ, ମାଙ୍କ ?

ଯାଉଁଳ କବାଟ ଖୋଲ ଠିଆମେଲ ହୋଇସାରିଥିଲ । ବନ୍ଧମ ଘର ଭିତରକୁ ପଶି ସ୍ୱିଚ୍ ଟିପି ପଙ୍ଖା ଚଳାଇଲା । ଆଲୁଅ ଜାଳିଲ । ଝରକା-ଗୁଡ଼ିକ ମେଲିଲା ।

କାନରେ ତା'ର ଆଲକଙ୍କର ଝୋଧିଲ ଗାଳ ବାଜୁଥାଏ । ସେ ମୋତିମାଳାଙ୍କର ହାତ ଧରି ଅଟକାଇ ରଖିଥାନ୍ତି । ମନର ବିଷ ଉଦ୍‌ଗାରୁ ଥାଆନ୍ତି ।

ଦେଖ୍‌ଲେ ଭଉଣୀ ସେ ଚୁଲିପଶା ଟୋକାକୁ, ମତେ କହୁଛି ବୁଢ଼ୀ-ଅସୁରୁଣୀ ! ପୋଲିଖିଆର କେତେ ଗୁଡ଼ରମ ! ହଉଛି, ମୁଁ ଏ ଘରର କେହି ନୁହେଁ । ଏ ଘର ମୋର ନୁହେ କ ? ତମେ କହ ।ଆନନ୍ଦକୁ ଜନମ କରିନାହିଁ ସିନା, ମୁଇଁ ତାକୁ ପାଳ ବଢ଼ାଇ ମଣିଷ କରିଛି । ସେ ଟୋକାର ବୋଉ ଚନ୍ଦନାକୁ ବି ।

କଏ ମନା କରୁଛି କ ଅପା ? ନାତି ପିଲାଟା, ଥଟ୍ଟା ନକଲରେ କଅଣ ପଦେ କହିଦେଲା । କାହିଁକି ମନରେ ଧରୁଛ ? ଛାଡ଼ିଲ ମୋ ହାତ । ଦେଖେଁ, ବୋହୁଙ୍କର କ'ଣ ହୋଇଛି । ଗ୍ରୁ ଅଧ ହେଲଣି ଟି !

ହଇଲେ, ତାକୁ ତୁ କହୁଛୁ ପିଲ ? ହଁ, ମୁଁ ଆଇଲାବେଳକୁ ତା ମା ନଅ ବରଷର ହୋଇଥିଲା । ସେହି ଚନ୍ଦନା । ଆନନ୍ଦ ଯେ, ଛ' ବରଷର । ଦେଢ଼ ବରଷ ପରେ ବନନ୍ଦର ଜନମ । ବଅସ କ'ଣ ବଇଛି ? ଚନ୍ଦନାର ପେଟର ଛୁଆ ସେହି ମେଞ୍ଚଡ଼ ଖଣ୍ଡିକ, ଏବେ ଷଣ୍ଢ ପରି ବଳୁଆ ହେଲାକୁ ମତେ କହୁଛି ବୁଢ଼ୀ-ଅସୁରୁଣୀ !

ତୁନ ହୁଅ, ଅପା ! ପିଲାଙ୍କର କଥା ମନରେ ଧରନା । ତମର ଦେହ ଭଲ ନାହିଁ । ଶୋଇବ ଚାଲ । ମୁଁ ତମର ଗୋଡ଼ହାତ ମୋଡ଼ିଦେବି । ତମର ପୁଅ, ତମର ଘର । ଗୋଟାଏ ସୁନା ସିନା ଭେଣ୍ଡି ହେଲା !

ବୁଢ଼ୀ ଫୁଁ ଫୁଁ ହୋଇ କାନ୍ଦିଲେ । କହିଲେ, ଝନନ୍ଦର ଦୋଷ ମୁଁ ଦେବିନାହିଁ ଗୋ ! ଏଡ଼େ ଗେହ୍ଲାରେ ସାନବୋହୂକୁ ବଢ଼ାଇଥିଲି । ମୋ ପାଖରେ ଯାହା ଯେଉଁଠି ଥିଲା ସବୁ ତାକୁ ସମର୍ପିଦେଲି । ସେହି ପୁଣି ମତେ ପେଟରେ ମାଇଲା, ପିଠିରେ ମାଇଲା । ନାତିନାତୁଣୀଗୁଡ଼ାକ ବଲବଲ କରି ଅନାଇଁଥିଲେ । କିରିକିରି ହସୁଥିଲେ ସେ ଛତର ଦଳ । କେତେ ଗୁଅମୁତ ତାଙ୍କର ମୁଁ କରିଥିଲି । ପାଳି ବଢ଼ାଇଥିଲି । ଖାଲି ସେହି ସାନ ନାତି କୁମ ଭେଁ ଭେଁ ରଡ଼ୁଥାଏ । ମତେ ତା ବାପା ଗସ୍ତା ଉପରକୁ ଛୁଆଁଡ଼ି-ଦେଲା । ହେଲେ ଲୋ ଭଉଣୀ ! ମୋ ହାତମୁଠାରେ ସେହି ଗହାବାଳୀ ବୋହୂ ସୁଖଦାର ମୁଠାଏ ବାଳ ଉପୁଡ଼ି ରହିଥିଲା । ଆଜ କେହି ନୁହେଁ, ସାନ ନାତି କୁମ ମତେ ଝୁରିବ ।

ହଉ ଅପା, ଚାଲ । ତମକୁ ମୁଁ ଧରି ଧରି ସେ ଘର ଖଟ ଉପରେ ଶୁଆଇ ଦେଇ ଆସେଁ । ବୋହୂଙ୍କର କ'ଣ ହେଲା ଦେଖିଆସି ତମର ଗୋଡ଼ ଆଉଁସିବି ।

କଲୋ, ମୁଁ କ'ଣ ମଦପାଣି ପିଇଛି କି ? ମୁଁ ମୋର ଜନେ ମାଇପାରିବ । ତୁ ଯା ଯା ! ଛି, କେଡ଼େ ଅଭଲପଣ, କେଡ଼େ ଜଲଠା-ପଣ ! ବୋହୂଙ୍କର ସଣୁଣା ନାହିଁ । ନଙ୍ଗଳା ମୁକୁଳା ହୋଇ —

ଛି, କଅଣ ଗୁଡ଼ାଏ ଏଡ଼େ ପାଟିକରି ଗପୁଛ, ଅପା ? ଚାକରବାକର ଚେଇଁଛନ୍ତି । ପିଲାଗୁଡ଼ାକ ଜାଗିଛନ୍ତି । ତମର ତୁଣ୍ଡରେ ବାଇଶ ରହୁନାହିଁ । ମୁଁ କହୁଛି, ତୁନ ହୋଇ ଯାଅ ଶୋଇବ । ମୋ ସାନ-କୁହା ମାନ ।

ତୁ କଏ ଲୋ ପରଘରପଣୀ, ମତେ ଶୁଆରିବୁ ? ବୋହୂଙ୍କର ଅସଣୁଣାପଣ ସମସ୍ତେ ତ ଦେଖିଲେ । ମୁଁ ତୁଣ୍ଡରେ କହିଲି ବୋଲି ଛି ହେଲା ?

ମୋତିମାଳା କଥା କଟାକଟି କଲେ ନାହିଁ । ହୁଏତ ପରା, ବୟସ ଅଧିକ ହେବାରୁ, ଅବା ଅନ୍ୟ କେଉଁ କାରଣରୁ ବୁଢ଼ୀଙ୍କର ମତି ସ୍ଥିର ରହୁ-ନାହିଁ । ତୁଣ୍ଡର ଭାଷାକୁ ସେ ଆୟତ୍ତରେ ରଖିପାରୁନାହାନ୍ତି । ଉପରେ ପଡ଼ି ସେ ସମସ୍ତଙ୍କର ଦୋଷଗୁଣ ବାରୁଛନ୍ତି । ଜାଣିଜାଣି ମାଡ଼ ମୂଳାଉଛନ୍ତି ।

ସେ ଦ ଖେପାରେ ଯାଇଁ ଇନ୍ଦିରା ଥିବା ଘରେ ପଶିଲେ । ଦେଖିଲେ, ଇନ୍ଦିରା ପଲଙ୍କ ଉପରେ ଶୋଇଛନ୍ତି । ତାଙ୍କ ପାଖରେ ସାନନ୍ଦ । ବିକ୍ରମ ମଶାରି ପକାଉଛି । ସୁରୂପା କାକୁସ୍ଥ ହୋଇ ପଲଙ୍କର ବାଡ଼ା ଧରି ଠିଆ ହୋଇଛି, ବୁଲୁ ବୁଲୁ କରି ବୁଝିଁଛି ।

ବିକ୍ରମ କହିଲା, ତୁ ମାଇଁଙ୍କ ପାଖରେ ଶୁଅ, ଆଇ ! ତାଙ୍କର ବିଶେଷ କିଛି ହୋଇନାହିଁ, ମୁଣ୍ଡ ବୁଲାଉଛି । ସେ ଶୋଇପଡ଼ିଲେଣି । ସୁରୂପାକୁ କୋଳରେ ପୂରାଇ ତୁ ଶୁଅ । ଆଉ ପିଲା ଦୁଇଟା ଉପରେ ଅଛନ୍ତି ।

ଅନୁପା କାନ୍ଦୁଥିଲା ।

ମୁଁ ତାକୁ ବୁଝାଇଦେବି । ବୁଢ଼ୀ ଆଈର ଯତ୍ନ ବି ମୁଁ ନେବି । ପୁଅବୋହୂଙ୍କର ଅତ୍ୟାଚାର ସହି ନ ପାରି ସେ ପଳାଇଆସିଛି । ତା'ର ମୁଣ୍ଡ ବିଗିଡ଼ିବା ସ୍ୱାଭାବିକ ।

ଗୁଡ଼ାଏ ବକୁଛନ୍ତି ।

ମୁଁ ତାଙ୍କୁ ତୁନି କରିଦେବି । ତୁ ଭିତରୁ କବାଟ ବନ୍ଦ କରିବୁ । ଘର ଭିତରର ନେଳ ଆଲୁଅ ସେମିତି ଜଳୁଥାଉ ।

ଯେଉଁ ଅଣାୟତ୍ତ କୋମଳ ମାଂସଳ ଦେହଟି ତାକୁ ବିବ୍ରତ କରି ନବଢ଼ ଭାବରେ ଆଶ୍ଳେଷି ଧରିଥିଲା, ତା'ର ବଳିଷ୍ଠ ତନୁକୁ କେଉଁ ଅଜଣା ଭୟରେ ଥରି ଥରି କମ୍ପାଇଥିଲା, ସେହି ଦେହଟି ମଶାରି ଭିତରେ ନିଶ୍ଚଳ ହୋଇ ପଡ଼ିଛି । ସେ ଦେହଟି ତା'ର ମାତୃପ୍ରତିମ ମାଇଁଙ୍କର, ଯାହାଙ୍କୁ ସ୍ବପ୍ନର ବିଷ ବେ-ସୁରା କରାଇଥିଲା ।

ଲାଜରେ ମଥା ନୋଇଁ ବିକ୍ରମ ସେହି ପ୍ରକୋଷ୍ଠରୁ ପଦାକୁ ଆସିଲା । କବାଟ ଦି'ଫାଳ ଆଉଜାଇ ବାରଣ୍ଡାର ଆଲୁଅ ଲିଭାଇଲା ।

ଆଉ କିଛି ଭାବିବାକୁ ତା'ର ମନ ହେଲା ନାହିଁ ।

ଅଗଣା ସେପାଖ ବାରଣ୍ଡାରେ ବଦନର କୋଠରି କଡ଼ରେ ବସୁମତୀ କାନ୍ଥକୁ ଆଉଜି ବସିଛନ୍ତି । ଧାଇଁ ଧାଇଁ ହାଲିଆ ହୋଇ ପଡ଼ିଥିବା କୁକୁରଟିଏ ପରି ସେ ଧକାଉଛନ୍ତି । ବେଳେ ବେଳେ ସେହି ଆହତ କୁକୁରଟି ପରି ସେ ବୋବାଇ ଉଠୁଛନ୍ତି—ମୁଁ ବୁଢ଼ୀ-ଅସୁରୁଣୀ ! କଅଣ କହିଲି ସେ ଛତରା ଟୋକା, ଚନ୍ଦନାର ପୁଅ, ମୁଁ ବୁଢ଼ୀ-ଅସୁରୁଣୀ—

ବଦନ ଭାବିଲା, ପୁଅ ଓ ବୋହୂଙ୍କର ଅତ୍ୟାଚାର ସହି ନ ପାରି ବୁଢ଼ୀ ପଳାଇ ଆସିଛନ୍ତି । ସେମାନଙ୍କ ଉପରେ ଯେଉଁ କ୍ରୋଧ, ସେତକ ସେ ପ୍ରକାଶ କରୁଛନ୍ତି ଏଇଠି । ଅପାରଗ ଅକର୍ମଣ୍ୟ ସେକାଳର ମଣିଷ ସିଏ, ତାଙ୍କ ଆଖିକୁ ଏକାଳିଆ ଢଙ୍ଗ ଅଡ଼ୁଆ ଲାଗୁଛି । ତାଙ୍କ କଥା କେହି ଶୁଣୁନାହାନ୍ତି । ଦୁନିଆର ସଭିଙ୍କ ଉପରେ ସେ ଖାଲି ଉଗରଗ ହେଉଛନ୍ତି । ଯେଉଁମାନଙ୍କୁ ଅତ୍ୟଧିକ ସ୍ନେହ କରୁଥିଲେ, ଯେଉଁମାନଙ୍କ ପାଇଁ ନିଜର ଧନ, ମନ ଓ ଦେହର ସମସ୍ତ ଶକ୍ତି ଅପଚୟ କରିଥିଲେ, ନିଜର କେଉଁ ଅବଗୁଣ ପାଇଁ କେଜାଣି, ସେହିମାନଙ୍କର ଅତ୍ୟାଚାର ସହି ସହି ସେ ବାଉଳି ହୋଇଛନ୍ତି ।

ବସୁମତୀଙ୍କ ଆଗକୁ ଆସି ବଦନ କଅଁ ଳେଇ କହିଲା, ତତେ ମୁଁ ବୁଢ଼ୀ-ଅସୁରୁଣୀ କହିନାହିଁ, ଆଈ ! ପିଲାଟାକୁ ବୁଝାଇଦେବାକୁ ସେମିତି କହିଦେଲି । ତୁ ମୋର ସୁନା-ଆଈଟା ! ତୁ ଘର ଭିତରକୁ ଚାଲ୍ । ତୁ ଶୋଇବୁ, ତୋ ଆଣ୍ଠୁରେ ଓ ପାଦରେ ଯେଉଁ ଆଞ୍ଚୁଡ଼ା ଦାଗ ହୋଇଛି, ସେଥିରେ ମୁଁ ଔଷଧ ଘଷିଦେବି ।

ବଦନ ବସୁମତୀଙ୍କର ହାତ ଧରି ଉଠାଇଲା । ବୁଢ଼ୀ ଆହା ଆହା ହୋଇ ଉଠିଲେ । ବଦନ ଉପରୁ ତାଙ୍କର କ୍ରୋଧ ଡେଇଁପଡ଼ିଲା ବନନ୍ଦ ଉପରକୁ । କହିଲେ, ଆରେ ନାତି ! ସେଇ ବନନ୍ଦଟା ଅମଣିଷ ହେଲାଣି । ଯେଉଁଦିନ ପୁଲିସି ଫଉଜ ଆସି ତା' ଘର ଖାନ୍‌ତଲାସ କଲେ, କଣ ସବୁ ଠଙ୍କାକଉଡ଼ି, କାଗଜପତ୍ର ବୋହିନେଲେ, ତାକୁ ବି ଧରିନେଇଥିଲେ ରେ

ପୁଅ, ସେଦିନଠାରୁ ସେ ବାଇଆ କୁକୁର ପରି ହେଉଛି । ମୁଁ ଶୁଣୁଛି, ହାକିମଙ୍କ ଆଗରେ ସେ କହିଦେଲା ଯେ, ନୂଆଘରଟା ତୋଳିବାପାଇଁ ସେ କୁଆଡ଼େ ଆନନ୍ଦଠାରୁ ଦଶହଜାର ଟଙ୍କା ନେଇଥିଲା ।

ସେ ସବୁକଥା ଗଡ଼ିଆଧରେ କାହିଁକି ପଡ଼ୁଛୁ, ଅଁ ? ଟଙ୍କାପଇସା ଖବର ସେମାନେ ତାଙ୍କର ବୁଝିବେ । ତୁ ଘରକୁ ଚାଲ୍ ।

ବସନ୍ତ ଶୂନ୍ୟେ ଶୂନ୍ୟେ ବୁଢ଼ୀଙ୍କୁ ଟେକି ଘରଭିତରକୁ ନେଇ ଖଟ ଉପରେ ବସାଇଦେଲା । କହିଲା, ଏଥର ଶୋଇପଡ଼ । ମୁଁ ତୋ ଆଣ୍ଠୁରେ ଔଷଧ ଘଷିଦେଉଛି ।

ହଉ, ହଉ ରେ ନାତି ! ଠାକୁରେ ତତେ ଆଇଷ ଦେଉନ୍ତୁ । ମୁଁ କ'ଣ ପଚାରୁଥିଲି କି, ସତରେ କ'ଣ ଆନନ୍ଦ ବିନନ୍ଦକୁ ଟଙ୍କା ଦେଇଥିଲା ? ତେବେ ବିନନ୍ଦର ନୂଆ କୋଠାରେ ଆନନ୍ଦର ଭାଗ ରହିବ ?

ଟେବୁଲର ଡ୍ରୟର ଭିତରୁ ଆୟୋଡେକ୍ସ ଶିଶି କାଢ଼ି ବସନ୍ତ ଚକ୍ରପୋଷ ଉପରେ ବସି ବଡ଼ମାଙ୍କର ଗୋଡ଼ର ଅଣ୍ଠୁ ଦାଗମାନଙ୍କରେ ଔଷଧ ମାଲିସ୍ କରିବାକୁ ଲାଗିଲା । ଆଈଙ୍କ ପ୍ରଶ୍ନର ଉତ୍ତର ଦେଲା, କହିଲା ପର ଆଈ, ତାଙ୍କ ବେପାର କଥା ସେମାନେ ବୁଝିବେ । ଆମେ ଜଡ଼ା ଚଢ଼େଇ, ସେ ବିଷୟରେ ଆମେ ମୁଣ୍ଡ ଖେଳାଇବା ନାହିଁ । ଆମେ ଅରୁଚି ପଚାରୁଛୁ କଲେ ଆମ ମୁଣ୍ଡରେ କାଠଫାଳିଆ ବାଜିବ !

ସେଇଆ ଆଜ ଆମ ଘରେ ଘଟିଲା ରେ ନାତି ! ମୁଁ ଖବର ପାଇଲି ଯେ ଆନନ୍ଦଠାରୁ ଟଙ୍କା ନେବାକଥା ମିଛ । ଗୋଟାଏ ଧୂଆଁ ବାଣ । ମିଛ କଥାକୁ ସତ ବୋଲି ମାନିବାକୁ ବିନନ୍ଦ ଆନନ୍ଦକୁ କୁଆଡ଼େ ଚିଠି ଲେଖିଛି । କେଡ଼େ ନବ୍ବୁଡ଼ିଆ କାମ ! ଆନନ୍ଦ ମଙ୍ଗିଲେ ସୁଖିର କୋଠାରୁ ଆଉ ଭାଗ ଛାଡ଼ିବ ?

ତୁ ତ ପାଠୁଆ ପିଲା, ତୁ କହୁନୁ ? ଏଇକଥା ପାଇଁ ସୁଖଦା ସଙ୍ଗରେ ମୋର କଜିଆ । ମୁଁ କ୍ଷଣକୋପୀ । ସମସ୍ତଙ୍କୁ ଜଣା । ଗୋଇଠାଏ ଦେଲି ତା ପିଠିରେ । ସେଇଠୁ ଯାହା ହେଲା ଦେଖୁଛୁ !

ଆସ୍ତେ ଘଷ୍, ଜଙ୍ଘ ଦୁଇଟା ଦରଜ ଯେ, ହାତ ବାଜଲେ ପ୍ରାଣ ଛୁଡ଼ଯାଉଚ୍ଛି ।

ବଙ୍କମ ଅନୁଭବ କଲା, ଯେପର କଏ ବାହାର ବାରଣ୍ଡାରେ ଟିପେଇ ଟିପେଇ ଗ୍ଲୁଚ୍ଛି । ଏପାଖ ସେପାଖ ହେଉଚ୍ଛି । ଦୁଏ ତ କାନପାଖ ସେମାନଙ୍କର କଥା ଶୁଣୁଚ୍ଛି । ସେ ମୁଣ୍ଡ ଟେକ ଗ୍ହିଁଲା । ପୃଙ୍ଖାଗ୍ ଓ ଗୁକର-ଟୋକା ରଥ୍ଆ ଅଗଣାର ଆଲୁଅ ଲିଭଇ ଶୋଇବାକୁ ଗଲେ । ଉପର ମହଲାର ବାରଣ୍ଡା ଆଲୁଅ ଜଳୁଚ୍ଛି । ସେହ୍ଲ ଆଲୁଅରେ ତଳଖଞ୍ଜା ଅଳ୍ପ ଆଲୋକତ ହୋଇଚ୍ଛି ।

ସେ କାନେଇଲା ।

ବସୁମଣୀ ପଗ୍ରଲେ, ବୋହୁଟା ଏତେ ଗ୍ତରେ କାହା ସାଙ୍ଗରେ ମଟରଗାଡ଼ରେ ଫେଗ୍ଲା ? ହଇରେ ନାତ, ଏମିତ ଟଳଟଳ ହୋଇ ଉପରକୁ ଗଲା କାହିଁକ ? ପହରକ ପରେ ଚିତ୍କାର କର, ଅଭେକା ଲୋକହସା ଡଙ୍ଗରେ ତୋ'ଠେଇଁ ଉଡ଼ ହୋଇ ତଳକୁ ଆସିଲା କାହିଁକ ? କେଉଁଠି କଣ ପିଇଦେଇଚ୍ଛି କ ? ଶୁଣିଚ୍ଛି, ଏବକା ବଜାରବୁଲା ନୂଆଫେସନ୍ ବୋହୁଗୁଡ଼ାକ କୁଆଡ଼େ ମଦ ପିଉଛନ୍ତି ।

ବଙ୍କମ ଆହତ ହେଲା । ତା ଭିତରର ସଇତାନ୍ ଉତ୍ତେଜତ ହୋଇ-ଉଠିଲା । ତା'ର ସର୍ବାଙ୍ଗ ଥରେଉଠିଲା । ଭାବଲା, ଏହ୍ଲ ଅବରଜଆ ବୁଢିଲା ବୁଢ଼ୀଟାର ତଣ୍ଟିକୁ ଦୁଇ ହାତରେ ଚପି ସେ ଶେଷ କରଦେବ । ତେଣିକ ପାହା ହେବାର ହେଉଥାଉ । କେତେ ଘାଟରେ ଜୀବନସାଗ୍ ସେ ପାଣି ପିଇ ପିଇ ମୁଣ୍ଡବାଳ ଧୋବ କରିଚ୍ଛି । ଦୁନଆର ସମସ୍ତଙ୍କୁ ସେ କେବଳ ସନ୍ଦେହ କରିଜାଣିଚ୍ଛି ।

କହନ୍ତୁ କାହିଁକ ରେ ନାତ ?

ବଙ୍କମ ତକ୍ତପୋଷ ଉପରୁ ଉଠି ତଳେ ଓହ୍ଲାଇଆସେଲା । କଟମଟ କର ବସୁମଣୀଙ୍କ ମୁହଁକୁ ଗ୍ହିଁଲା । ତା'ର ମୁଣ୍ଡକୁ ପିତ୍ତ ଉଠିଥିଲା । ତା'ର ନାଲନାଲ ଆଖି ଦୁଇଟାରେ ନିଆଁ ଜଳୁଥିଲା । ଦୁଇହାତ ମୁଠାମୁଠା କର ସେ ଖରଶ୍ୱାସ

ଘୁଞ୍ଚଲା । ଦାନ୍ତ ରଗଡ଼ି କହିଲା, ବଦ୍‌ମାସ୍ ମନ୍ଥର ବୁଢ଼ୀ ! ଏ ଘରେ ପାଦ ଦେବାବେଳରୁ ଏତେବେଳଯାଏ ତୁ ଖାଲି ବିଷ ଉଗାରୁଛୁ । ସବୁ ସହିଥିଲି । ମାଆଠୁଁ ବଳି ମୋର ମାଈଁ । ନିର୍ମଳ ସୁବର୍ଣ୍ଣ ପ୍ରତିମା । ଲକ୍ଷ୍ମୀ ଠାକୁରାଣୀ । ତାଙ୍କରି ଡଙ୍ଗରେ ତୁ ଖୁଣ ବାଛିବାକୁ ସାହସ କଲୁ ?

ବସୁମତୀ ହିକମର ମୂର୍ତ୍ତି ଦେଖି, ଭାଷା ଶୁଣି ତଟସ୍ଥ ହେଲେ । ଉଠି ବସିବାକୁ ଚେଷ୍ଟା କରି, ଓହୋ ଉହୁ ହୋଇ ପୁଣି ଚକଆ ଉପରେ ମୁଣ୍ଡ ଅଜାଡ଼ିଦେଲେ ।

ହିକମ କହିଲା, ତୋର ତଣ୍ଟି ଚିପି ନିଶ୍ଚୟ ଆଜ ମୁଁ ମାରିଦେବି, ଯେମିତି ଆଉ କେବେ ତୋର ଖଳ ପାଟିରୁ ପରର ନିନ୍ଦା ବାହାରିବ ନାହିଁ ।

ଆର୍ତ୍ତକଣ୍ଠରେ ବସୁମତୀ ହାଲହାଲେଇଲା ପରି କହିଲେ, ମୁଁ କିଛି କହିନାହିଁ, ମୁଁ କିଛି କହିନାହିଁ ।

ହିକମ ନଇଁପଡ଼ି, ହାତ ଦୁଇଟା ବୁଢ଼ୀଙ୍କର ବେକ ପାଖକୁ ନେଇ ଖେଙ୍କିଉଠିଲା, ତୋ ଗୁଣର କଥା କଣ ଏକା ତୁଇ ବୁଝୁ କି ଆଉ, ଆଉ କେହି ବୁଝନ୍ତି ନାହିଁ ? ମନେପଡ଼ୁଛି କି, ତେର ବରଷର ଝିଅ ଚନ୍ଦନା । ଆଉ ଦଶ ବରଷର ପୁଅ ଆନନ୍ଦକୁ ଉଖୁଡ଼ାରେ ମହୁରା ବିଷ ଗୋଳାଇ ତୁ ଅଲକ୍ଷଣୀ ବୁଢ଼ୀ-ଅସୁରୁଣୀ ଖାଇବାକୁ ଦେଇଥିଲୁ ? ଭାବିଥିଲୁ, ତୋର ତିନି ବରଷର ପୁଅ ହିନନ୍ଦ ସବୁ ସମ୍ପତ୍ତି ଭୋଗ କରିବ । ତୋର ସେଇ ପୁଅ ହିନନ୍ଦ ମୋ କୋଳର ପାଚିଆରୁ ମୁଠାଏ ଝାମ୍ପିନେଇ ଆଗ ପାଟିରେ ପୂରାଇଥିଲା । ତୁ ଧାଇଁଆସି ତା ହାତ ଓ ପାଟିରୁ ସେଇ ଉଖୁଡ଼ା କାଢ଼ି-ପକାଇଲୁ । କଥା ପ୍ରଘଟ ହେଲା । ମୋ ଅଜା ତୋର ପିଠ ପିଠ କରି ଛେଚିଥିଲେ ।

ମି-ଛ, ମି-ଛ ଅପବାଦ—

ସେହି ଚନ୍ଦନାର ପେଟରୁ ମୁଁ ଜନମିଛି ବ୍ରହ୍ମରାକ୍ଷସ । ଆଜ ତୋର ତଣ୍ଟି ଚିପି ମାରିବି । ତତେ ନଇଁଯୋଷ୍ଠ ନାଳକୁ ପକାଇଦେବି । ସେଇଠି ତୁ ସଢ଼ିବୁ । ପୋକ ଭୁଟୁ ଭୁଟୁ ହେବୁ ।

ବସନ୍ତ ବସୁମତୀଙ୍କର ବେକରେ ଦୁଇ ହାତ ଲଗାଇଲା । ବୁଢ଼ୀ ପାଟି କରିଉଠିଲେ ।

କୋଠରି ଭିତରକୁ ଅନୁପା ଧାଇଁ ପଶିଲା । ବସନ୍ତକୁ ଟେବୁଲ ଆଡ଼କୁ ଠେଲିଦେଲା । ଗୋଟାଗୁଁଏ ସେ ଥରୁଥାଏ । ଆଖିକୁ ମଳିନ ମେଘ ଗ୍ରାସ କରିଥାଏ । ମୁହଁ ରକ୍ତହୀନ ଦିଶୁଥାଏ ।

ଅନୁପା ମୁହଁ ଖୋଲିଲା, ଭଲ ହେଉ ବା ମନ୍ଦ ହେଉ, ସେ ମୋର ଜେଜେମା । ଯାହା ତା'ର ମନ ସେ ଗପୁଥାଉ । ନିଜର ବିଷ ନିଜ ପାଟିରେ ଝାଡ଼ି ତାକୁ ସେ ଡୋକ ଆପେ ଆପେ ମରୁ, ବକଭାଇ ! ତମେ କାହିଁକି ତା ଦେହରେ ହାତ ଦେବ ?

ବସନ୍ତ ବିବ୍ରତ ହୋଇ ଶୁଣିଲା ।

ଅନୁପା ପୁଣି କହିଲା, ଦେଖ ମୋର ରୋଗଣା ଜେଜେମା କେମିତି କାନ୍ଦୁଛି । ସେ ନିଶ୍ଚେ ଅନୁତାପ କରୁଛି । ତମେ ପଦାକୁ ଯାଅ, ବକଭାଇ ! ଜେଜେମା ଟିକେ ଶୋଇପଡ଼ୁ । ରାତି ଦୁଇଟା ବାଜିବ, ଜାଣେତ ? ଯାଅ, ଯାଅ—

ଅନୁପାର ଅନୁନୟରେ ଆଦେଶର ଦୃଢ଼ତା ଥିଲା । ବାଧ ଶିଶୁଟି ପରି ବସନ୍ତ କୋଠରି ଭିତରୁ ପଦାକୁ ବାହାରିଗଲା ।

ଅନୁପା ବସୁମତୀଙ୍କର ଆଖିରୁ ଲୁହ ପୋଛିଦେଲା । କଅଁଳେଇ କହିଲା, ବକଭାଇ ତତେ ଡରିଯାଇଥିଲୁ ଲୋ ମା ! ସତେ କଅଣ ସେ ନିଜେ ଫାଶୀ ପାଇବାକୁ ମନ କରି ତୋ ତଣ୍ଟି ଚିପି ମାରିଦେଇଥାନ୍ତା ?

ମାରିଦେଇଥିଲେ ତରିଯାଇଥାନ୍ତି ଲୋ ବାଇଆଣୀ ! ତେଣିକି ତା'ର କ'ଣ ହୁଅନ୍ତା ମୁଁ ତ ଜାଣନ୍ତି ନାହିଁ ! ମୋର ଏଇ ପରଳ ମାଡ଼ି-ଆସୁଥିବା ଆଖି ଦୁଇଟା, ଆଉ ମୋର ଭୁଣ୍ଡିଟା ମୋର ଭାରି ଭଗାରି ହୋଇଛି ଲୋ ମା ! ସେଇ ଦୁଇଟା ମତେ ବାର ହଟହଟା କରୁଛି । ମରି-ଥିଲେ ସେ ଦୁଇଟାର ଭୟ ଯାଇଥାନ୍ତା ।

କାହାର କଥାରେ ବକଭାଇ ଚିଡ଼ନ୍ତି ନାହିଁ, ମା ! ଦେଖୁଛୁ ତ କେମିତି ବାଇଆ-ବାବାଜୀ ମଣିଷ । ଆମେ ସବୁ ଗେଲରେ ହେଉ କି ରାଗରେ

ହେଉ, ତାକୁ ଗୁପୁଡ଼ା କୋଉ ଆମ୍ଭୁଡ଼ି ସାମ୍ଭୁଡ଼ି ପକାଇଲେ ସେ ଖାଲି ହସୁଥାନ୍ତି । ଓଲଟି ଆମ୍ଭୁକୁ ଧରି ଗେଲ କରନ୍ତି । ତୁ କଅଣ କହୁଲୁ ଯେ—

କେଜାଣି ଲୋ ମା, ଅଛା ନକଲରେ ନାଡ଼ଠୋକାକୁ କଅଣ କହି-ଦେଇଥିବ। ମୋ ଅଜାଣତରେ ତା'ର ମରମ ବାନ୍ଧିଥିବ। ମୋ ଦେହରେ ସେ ଓଷଦ ଘଷୁଥିଲା ।

ଅନୁପା ମୁହୂର୍ତ୍ତେ ଚିନ୍ତା କଲା । ଯେଉଁ ଭାବନା ତା'ର ମନରେ ପଶିଲା, ତା'ର ଅନ୍ତରାତ୍ମା ଥରାଇଦେଲା । ଛାତି ଦୋହଲାଇ ସେ ଦୀର୍ଘଶ୍ୱାସ ଛାଡ଼ିଲା । ତକ୍ତପୋଷ ଉପରୁ ଉଠି ବସୁମତୀଙ୍କର ମୁଣ୍ଡରେ ହାତ ରଖି ସେ ଗେହ୍ଲେଇ କହିଲା, ଶୋଇପଡ଼ ମା ! ପଙ୍ଖା ଏମିତି ଧୀରେ ଚାଲିଥାଉ । ଆଲୁଅ ଲିଭାଇ-ଦେଉଛି ।

ଉତ୍ତରକୁ ଅପେକ୍ଷା ନ କରି ସେ ଆଲୁଅ ଲିଭାଇଲା । କବାଟ ଦି ଫାଳ ଆଉଜାଇବା ଆଗରୁ ଜେଜେମାଙ୍କ ବଚନ କାନରେ ବାଜିଲା—ଯାଆ ଲୋ ନାତୁଣୀ, ସେହି ବ୍ରହ୍ମରାକ୍ଷସ ନାଡ଼ଠୋକା ତତେ ଠାକରୁଛି । ତତେ ସେ ଗିଳିବ, ଗିଳିବ । ଏ ତ ଦୁନିଆ ସ୍ୱାନ୍ତ—

ଦୁଇ ପାଖର ଦର-ଆଉଜା କବାଟକୁ ଦୁଇ ହାତରେ ଧରି ଅନୁପା ପଥର ମୂର୍ତ୍ତି ପରି ଠିଆ ହୋଇ ରହିଲା । ଛାତି ଦାଉଁଦାଉଁ ପଡ଼ୁଛି । ମୁଣ୍ଡ ଭ୍ରମିଯାଉଛି । ମନରେ ତା'ର କେବଳ ପ୍ରତିଧ୍ୱନିତ ହେଉଛି ସେହି ଦିଓଟି ପଦ—ବ୍ରହ୍ମରାକ୍ଷସ, ଗିଳିବ ଗିଳିବ ! ଆଉ କ'ଣ ଜେଜେମା କହିବେ ଶୁଣିବାକୁ ସେ କାନ ଡେରିଲା । ବୁଢ଼ୀ ଚୁପ ହେଲେଣି ।

ପାଦ ଚିପି ଚିପି ଅନୁପା ଦେହଳୀ ଡେଇଁଲା । ନିଃଶବ୍ଦରେ କବାଟ ଆଉଜାଇଲା । ନୀରବ ହୋଇ ଠିଆ ହେଲା । ନିଶା ଗର୍ଜୁଛି । ମନ ଭ୍ରମୁଛି । ଛାତି ଦାଉଁଦାଉଁ ପଡ଼ୁଛି । ଅଗଣା ପାରି ବାରଣ୍ଡା ଉପରେ ଦୃଷ୍ଟି ପଡ଼ିଲା । ପାରାପେଟ୍‌ର କମଳକୁଠ ଡିଜାଇନର ଛିଦ୍ର ଭେଦି ଉପରବାରଣ୍ଡାର ଛିପି-ଛିପିକା ଆଲୁଅ ପଡ଼ୁଛି ।

ସେଇଠି, ଇନ୍ଦରଙ୍କର ଶୋଇଲା କୋଠରି ସାମ୍ନାରେ ବ୍ରହ୍ମ ବସିଛି । ଗୋଡ଼ ଦୁଇଟି ତଳକୁ ଲମ୍ବାଇଦେଇଛି । କପାଳରେ ହାତ ଥାପି ସେ ନିଷ୍ପଲକ ଦୃଷ୍ଟିରେ କଳାମେଘ ଘୋଟିଲା ଆକାଶକୁ ଅନାଇଁ ରହିଛି । ଦେଖୁଛି ଘନ ମେଘ ପଛରେ ତାରାଗୁଡ଼ିକର ଲୁଚ୍‌କାଳି ଖେଳ !

ଅନୁପା କ୍ଷଣେ ତାକୁ ଅନାଇରହିଲା । କେଜାଣି କାହିଁକି ତା ପାଖକୁ ଅନୁପା ଧାଇଁଗଲା ନାହିଁ । ନିର୍ଭୟରେ ନିଃସଙ୍କୋଚରେ ତା'ର ହାତ ଧରି ଟାଣି ଆଣିବାକୁ ତା'ର ସାହସ ହେଲା ନାହିଁ । ସେ ଆଜି ତା'ର ଅତି ଆପଣାର ବଳଭାଇ ନୁହେଁ । ସେ ନୁହେଁ କେଉଁ ସପନପୁରର ପକ୍ଷୀରାଜ-ଘୋଡ଼ା, ଅବା ମନପବନ-ଡଙ୍ଗା-ଚଢ଼ା ରାଜକୁମାର । ନୁହେଁ ସେ ସେହି ସ୍ନେ-ହଜରଜର ଆକଟିଲା ନିର୍ଦ୍ଦେଶିଲା ଘୁଞ୍ଚରେ ପକାଇ ଦେହ ଆଉଁସି ବୋକ ଅଜାଡ଼ିଲା ନି-ଡରିଲା ନିର୍ଭର । ସେ ସତେ ବ୍ରହ୍ମରାକ୍ଷସଟାଏ ! ତା'ର ଓ ସମସ୍ତଙ୍କର ସରଳ ନିର୍ମଳ ଦୃଢ଼ ପ୍ରତ୍ୟୟର ସୁଯୋଗ ନେଇ ତା'ର ଅଜଣା ଉତ୍ତେଜନାକୁ ଚେତାଇଛି । ମୂର୍ଚ୍ଛନାଆ ଅବୁଝା ଆନନ୍ଦ ବୋଳି-ଦେଇଛି ଦେହରେ । ହଁ ହଁ, ସେ ବ୍ରହ୍ମରାକ୍ଷସଟାଏ !

ସେ ଠାକ ବସିଛି । ତାକୁ ସେ ଗିଳିବ । ସେ ବିପଦ । ସେ ଭୟଙ୍କର । ସେ ଅବିଶ୍ୱାସୀ । ହାନିଲାଭର ଦାୟିତ୍ୱ ଦିନେ ତାଆରି ମୁଣ୍ଡରେ ଅଜାଡ଼ି ସେ ଉଡ଼ିଯିବ । ଆଉ ଧରା ଦେବ ନାହିଁ । ସେହି ଚୂଡ଼୍‌ସଇତାନ୍ ବଳେଇବୈଷ୍ଣବ ଲୋକଦେଖାଣକୁ ଆମିଷ ଜିଭରେ ଲଗାଏ ନାହିଁ । ସବୁ ପାଠ ପଛରେ ପକେଇ ପଦ୍ମାସନରେ ବସି ପ୍ରତିଦିନ ଗୀତା ଓ ଭାଗବତ ପଢ଼େ । ଏବଯାଏ ସବୁ ପିଲଙ୍କୁ ପାଖରେ ଠିଆ କରାଇ ବଡ଼ଭାଇଙ୍କ ପଦରେ ଜଣାଣ ବୋଲାଏ—ସତ୍ୟପଥେ ଧର୍ମପଥେ ଘେନିଯାଅ ମୋତେ । ବଡ଼ଭାଇଙ୍କ ପାଖରେ ପ୍ରକାଶ କରାଏ—ଯାହା ମୁଁ କରଇ, ଯାହା ମୁଁ କହଇ, ଯାହା ମୁଁ ଚିନ୍ତଇ ମନେ, ଜଗତର ପିତା ପରମ ଈଶ୍ୱର ଜାଣୁଛନ୍ତି ପ୍ରତିକ୍ଷଣେ । ସେହି ଅନାଗ୍ରହୀ ବଳଭାଇ ଏବଯାଏ ସେମିତି ବସିଛି, ମୁଣ୍ଡର କେଶକୁ ନିଜ ହାତରେ ଟାଣୁଛି ।

ଅନାଗୃହୀ ଅକଭାଇ, ଯିଏ ତା'ର ଗର୍ଭଧାରିଣୀ ଜନନୀଙ୍କର ଦେହକୁ.........।

ନା, ନା, ନା । ତା'ର ବୋଉ ମଦ ଖାଇ ପରିମଳବାବୁଙ୍କ ଘରୁ ବନହଂସୀ ମାଉସୀଙ୍କ ପାଖରୁ ଫେରିଥିଲା । ବନହଂସୀ ସ୍ନେହୀ । ଦେଖିଲେ କାଖେଇ କୁଣ୍ଢାଇ ପକାନ୍ତି । ପ୍ରଚୁର ଖାଇବାକୁ ଦିଅନ୍ତି । ବୋକ ପରେ ବୋକ ଅଜାଡ଼ିଦିଅନ୍ତି । ନିଜ ହାତରେ ଆଉ ଥରେ ବାସନା-ପାଉଡର ଅନୁପାର ମୁହଁରେ ଦେହରେ ଛୁଞ୍ଚି, ତାକୁ ସଜାଇ ଦିଅନ୍ତି । ସବଙ୍ଗ ଦେହରେ ଗୃମୁଚେ ବାସ-ସୁଗନ୍ଧ ଗୋଳାଇ କହନ୍ତି, ନେ ମା ପିଇ ଦେ, ଭଲ ଲାଗିବ; ଦେହକୁ ହିତ । ସେ ନିଜେ ପିଅନ୍ତି, ଇନ୍ଦିରା ଓ ଆଉମାନେ ବି ।

ବନହଂସୀ କହନ୍ତି, ମୋର ବଡ଼ପୁଅ ବିମଳଟି, ଆମ ଅନୁପା ସାଙ୍ଗର ହେବ । ବର୍ଷେ ଖଣ୍ଡେ ବଡ଼ ହୋଇପାରେ । ଖୁବ୍ ଭଲ ପଢ଼ୁଛି । ଗେମ୍‌ସ୍‌ରେ ଏ ବର୍ଷ ଚାମ୍ପିୟନ୍ ହୋଇଛି । ସିନିୟର-କ୍ୟାମ୍ବ୍ରିଜ୍ ପରୀକ୍ଷା ଦେଇଛି । ଦେଖିଛ ଇନ୍ଦିରା, କେମିତି ସୁନ୍ଦର ବଳୁଆ ଚେହେରା, କେଡ଼େ ଭଦ୍ର ପିଲା ! ଆଜିକା ଯୁଗରେ ଜାତିଆଣ କଥା କିଏ ପଚାରୁଛି ? ତମେ ରାଜି ହେଲେ ମୁଁ ଅନୁପାକୁ ବୋହୂ କରିବି, ହେଲା ?

ଇନ୍ଦିରା କହନ୍ତି, ମୋ ନିରୁପମା, ତେର ବର୍ଷର ଝିଅ । ତାକୁ ତ ଦେଖିଥିବ ! ସେ ଅନୁପମାଠାରୁ ସୁନ୍ଦର ଯେ । ତମ ବିମଳ ପାଇଁ ସେଇ ସାଜିବ । ଅନୁପାକୁ ଯିଏ ଦେଖୁଛି ସେ କହୁଛି ବୋହୂ କରିବ । ମୁଁ ତା'ର ସ୍ୱୟଂବର କରାଇବି ଗୋ ବନ ଦେବୀ !

ହଉ, ସେଇଆ ହେଲା । ଛୁଆଟା ତ ! ମୋର କିନ୍ତୁ ବାସନା ରହିଲା । ମୁଁ ଭାବୁଥିଲି, ଆମର "ନାରୀପ୍ରଗତି ସଙ୍ଘ" ତରଫରୁ 'ନିଖିଳ ଉତ୍କଳ ରୂପସୀ ପ୍ରତିଯୋଗିତା' କରାଇବା । କେବଳ ଅବିବାହିତା ଝିଅମାନେ ସେଥିରେ ଯୋଗ ଦେଇପାରିବେ । ମୁଁ ଗୋଟାଏ ମୋଟାମୋଟି ପ୍ଳାନ୍ କରିଛି । ଜିଲ୍ଲା ସ୍ତରର ପ୍ରଥମ ପୁରସ୍କାର ପାଞ୍ଚ ହଜାର, ଡିଭିଜନ୍ ସ୍ତରରେ ଦଶ ହଜାର,

ଆଜ ନଖିଳ ଉତ୍କଳ ସ୍ତରରେ ପଚଶ ହଜାର । ମୋଟ ଏକଲକ୍ଷ କୋଡ଼ିଏ ହଜାର ଟଙ୍କା । ବବଧ ବଗର ଖର୍ଚ୍ଚବାର୍ଚ୍ଚ ଟଙ୍କା ଅଶୀ ହଜାରରୁ କମ୍ ପଡ଼ବ ନାହିଁ । ଦୁଇଲକ୍ଷ ଟଙ୍କା ହେଲେ ଆମର ଚଳବ, ଅବଶ୍ୟ ଯଥେଷ୍ଟ ନୁହେଁ ।

ଦୁଇଲକ୍ଷ ଟଙ୍କା :

ତମେ ଚମକପଡ଼ ନା ଇନ୍ଦ୍ରଜିତ ! ଶ୍ରଦ୍ଧା ଉଠାଇବା । ଆମେ ଏକଯୋଟ ହୋଇ ବଡ଼ବଡ଼ିଆଙ୍କ ପାଖକୁ ଯିବା । ଧନ ପନ୍ଦରଟାରେ ଟଙ୍କା ଯୋଗାଡ଼ ହେବ । ଯେସ୍ମିନ୍ ଦେବୀଙ୍କୁ ଥରେ ପଚାରିବା । ସେ ରାଜି ହେଲେ କାର୍ଯ୍ୟ ନିର୍ବାହିକା ସମିତିରେ ପ୍ରସ୍ତାବକୁ ଭଲକରି ଆଲୋଚନା କରିବା । ଆଗ ତମେ କହ, ତମେ ପ୍ରସ୍ତାବରେ ରାଜି ତ ?

କାହିଁକି ରାଜି ନ ହେବ ?

ମୁଁ ଜାଣେ ତମେ ରାଜି ହେବ । ମୁଁ ଆଗରୁ ଜଣାଇଦେଉଛି, ନିଖିଳ-ଉତ୍କଳ ସ୍ତରର ପୁରସ୍କାର ମୋ ଅନୁପା ପାଇବ, ଅବା ତମେ ପାଇବ ।

ଇନ୍ଦ୍ରଜିତ ହସିହସି ଟେବୁଲ ଉପରେ ଲୋଟିଯାଇଥିଲେ । ସେ ହସ ଯେ ଅସ୍ୱାଭାବିକ ଥିଲା, ପାଖରେ ଠିଆହୋଇ ଅନୁପା ବେଶ ଉପଲବ୍ଧି କରି-ପାରୁଥିଲା । ହସ ଥମିବାରୁ ଇନ୍ଦ୍ରଜିତ ପଚାରିଲେ, ମୁଁ ଅଭିଆଡ଼ୀ ଝିଅ ନୁହେଁ ।

ମୁଁ ତମକୁ ଏମିତି ସଜାଇଦେବ ଯେ, ବିଚାରକମାନେ ସେଇଆ ଭାବିବେ । ଭାରି ମଜା ହେବ ମ, ମା ଓ ଝିଅଙ୍କ ଭିତରେ ପ୍ରତିଯୋଗିତା । ସେଇ ଦୃଷ୍ଟିରେ ଆମ ନିୟମାବଳୀକୁ ଆମେ ପ୍ରଣୟନ କରିବା ।

ପୁଣି ଇନ୍ଦ୍ରଜିତ ହସିହସି ନସ୍ୟାନ୍ତ ହୋଇଥିଲେ । ସେ ହସରେ ବନହଂସୀ ଯୋଗ ଦେଇଥିଲେ । ଦୁହିଁଙ୍କୁ ନିଶା ଘାରି ଆସୁଥିଲା । ଅନୁପା ଅସ୍ୱସ୍ତି ଅନୁଭବ କରୁଥିଲା । ତାକୁ ବି ସେଦିନ ସଙ୍ଗରେ ହସ ମାଡ଼ୁଥିଲା । ରୂପସୀ ପ୍ରତିଯୋଗିତାରେ ତା'ର ଗର୍ଭଧାରିଣୀ ତା'ର ପ୍ରତିଦ୍ୱନ୍ଦ୍ୱୀ ହେବେ । ଛି, ଛି, କେଡ଼େ ବଡ଼ମ୍ବନା ଅଘଟନା କଥା ।

ଯେଉଁ ସ୍ମୃତିରେ ସେ ଅନୁପା ନିଜକୁ ଭୁଲି ଆନନ୍ଦରେ ଗୁଡ଼ାଇ ହୋଇଥିଲା, ସେହି ସ୍ମୃତି, ସେହି ବ୍ରହ୍ମରାକ୍ଷସର ସ୍ମୃତିରେ ତା'ର ଚେତନାହତ ଜନନୀ···।

ଭାବନାକୁ ଆଉ ଅଧିକ ଦୂର ଆଗେଇବାକୁ ମନର ସାହସ ପଛଘୁଞ୍ଚା ଦେଲା। ସେହି ଅସୁସ୍ଥ ମନ ନିଜକୁ ପାତକୀ ମଣିଲା। ନିଜକୁ ଛିଃକାର କଲା। ଅନୁପା ମଣିଲା, ଯେପରି ବସୁମତୀ-କେଜେମାଙ୍କର ବିଳବିଳା ବିଳାପ ସଙ୍ଗେ ତା'ର ଉପଳବ୍ଧି ମନର ବିଳାପ ତା'ର କାନରେ ବାଜୁଛି।

ସେ ହାତ ପାପୁଲିରେ ଦୁଇକାନ ରୁଦ୍ଧ କଲା। ଭୟମିଶା ଘୃଣାଭରା ଦୃଷ୍ଟିଭଙ୍ଗୀରେ ବିକ୍ରମକୁ କଣେଇଁ ଚାହିଁଲା। ବିକ୍ରମ ବାରଣ୍ଡାରୁ ଉଠି ତଳକୁ ଆସିଲାଣି। ବୋଧହୁଏ ସେ ଅନୁପାକୁ ଠାବ କଲାଣି। ବୋଧହୁଏ ସେ ଆଗେଇଆସୁଛି। ତାକୁ ଫୁଲମାଳଟିଏ ପରି ଗୋଟାଇନେବ। ସ୍ମୃତିରେ ଗୁଡ଼ାଇ ଆଘ୍ରାଣ କରିବ। ଚୋକଟିଏ ଦେଇ ତା'ର ଚେତନା ନାଶିବ। ଫୁଲମାଳଟିଏ ସେ ଅନୁପା, ଆଉ ସେ ବିକ୍ରମକେଶରୀ, ଦେବତା ନୁହେ, ମଣିଷ ନୁହେ, ଛଦ୍ମବେଶୀ ବ୍ରହ୍ମରାକ୍ଷସଟାଏ—

କାନରେ ଦୁଇହାତ ଦେଇ ଟଳଟଳ ଚଞ୍ଚଳପାଦରେ ଅନୁପା ପାହାଚ ପରେ ପାହାଚ ଡେଇଁ ଉପରକୁ ଉଠିଲା। ତା'ର ମନେ ହେଉଥିଲା, ଯେପରି ବିକ୍ରମକେଶରୀ ତା'ର ପଛେ ପଛେ ଧାଇଁ ଆସୁଥିଲା। ଘନ ଘନ ନିଶ୍ୱାସ ଛାଡ଼ୁଥିଲା ଅନୁପା। ତା'ର ଛାତି ଦାଉଁଦାଉଁ ପଡ଼ୁଥିଲା।

ସେ ଉପର ବାରଣ୍ଡାର ଆଲୁଅ ଲିଭାଇଲା। ବାରଣ୍ଡା ଓ ତଳ ଅଗଣା ଅନ୍ଧକାରରେ ବୁଡ଼ିଗଲା। ଆକାଶରେ ଘୋଟି ରହିଥିଲା କଳାଧୂମର ବହଳ ବାଦଲ। ନକ୍ଷତ୍ରର ଚିହ୍ନବର୍ଣ୍ଣ ନାହିଁ। ଝିମିଝିମି ନିଶୂନ ରାତି। ଉପରର ପ୍ରଥମ କୋଠରି ପଡ଼ାଘରେ ତାଲା ପଡ଼ିଛି। ସିଡ଼ିର ବାମ ପାଖର କୋଠରି, ଯେଉଁଠି ବେଳେ ବେଳେ ତାର ବୋଉ ଶୁଅନ୍ତି, ପାଟରେ ଶୁଆନ୍ତି ସାନପିଲା ହିଓଟିଙ୍କୁ, ସେ ଘର ଭିତରୁ କିଳା ହୋଇଛି। ଶେଷ କୋଠରିରେ ମାଈଁ-

ଆଈ ପିଲାମାନଙ୍କୁ ପାଖରେ ଶୁଆଇ ଗପ କହୁଥିଲେ । ଗପ ଶୁଣୁଶୁଣୁ ସେମାନଙ୍କୁ ନିଦ ହୋଇଥିଲା । ମାଇଁ-ଆଈ ବି ମାଳା ଧରି ଶୋଇ ପଡ଼ୁଥିଲେ ।

ସେଇ ଘରେ ଏକା ନିରୁପା ଶୋଇଛି । ଯାଉଁଳୀ କବାଟ ଅଳପ ମେଲାଯାଇଛି । ଫାଙ୍କବାଟେ ଭିତର ଆଲୁଅ ବାରଣ୍ଡାରେ ପଡ଼ୁଛି । ଅନୁପା ଭାବିଲା, ସେ ନିରୁପାକୁ ଉଠାଇବ ନାହିଁ । ଧୀରେ ଧୀରେ ଯାଇ ତାଆରି ପାଖରେ ଶୋଇବ । ରାତି ପାହିଆସିଲାଣି, ଏହି କାଳ ରାତିଟା, କାହାକୁ ଆଉ ତା'ର ଡର ? ଛଅଦିନ ହେଲା ତା'ର ବାପା ଘରକୁ ଫେରିନାହାନ୍ତି । ରାତି ପାହି ଦିନ ହେଲେ ସେ ନିଶ୍ଚୟ ଫେରିଆସିବେ । ଏଘରର ସେ ରକ୍ଷାକବଚ । ତାଙ୍କୁ ସବୁ କଥା ସେ ନିଃସଙ୍କୋଚରେ କହିବ ।

କଅଣ ସେ କହିବ ?

ଦୁଇ ଆଖି ଭରି ଲୋତକର ଧାର ତା'ର ଗଣ୍ଡ ପ୍ଲାବିତ କଲା । ତା'ର ହୃଦୟଭିତର ପଟେ ପଟେ ଉପରକୁ ଧାଇଁଆସିଲା ନାହିଁ କାହିଁକି ? ଅନ୍ଧାରରେ ଅଗଣାରେ ଠିଆହୋଇ ସେ କଅଣ କରୁଛି ? କେଉଁଠି ସେ ଶୋଇବ ?

ଚହିଁକି ଉଠିଲା ସହସା ଗୋଟାଏ ଭାବନାରେ—ହରଷ ପାଦ ଚପିଚପି ତା'ର ନିଜ କୋଠରୀରେ ପଶିଛି । ନିଶ୍ଚୟ ପୁଣି ସେ ଜେଜେମାଙ୍କର ତଣ୍ଟି ଚିପିବ । ବୁଢ଼ୀକୁ ଜୀବନରୁ ମାରିଦେବ ।

ସେଇଠୁ ?

ସେଇଠୁ ସେ ଝୁଲିବ ଫାଶୀ-ଖୁଣ୍ଟରେ । ନା, ସେ ଏହା କରାଇଦେବ ନାହିଁ । ସେ ତଳକୁ ଯିବ । ତା'ର ବଡ଼ଭାଇକୁ ସେ ବଞ୍ଚାଇବ, ନିଶ୍ଚୟ ବଞ୍ଚାଇବ ।

କେଉଁ ଅଜଣା ଭୟରେ ତା'ର ପାଦ ଚଙ୍କିଲା ନାହିଁ । ଇଦର ଥିବା ଘରର କବାଟ ଖୋଲିଲା । କବାଟ ଦି'ଫାଳ ହେଲା । ଭିତରର ଆଲୁଅ ବାରଣ୍ଡାରେ ପଡ଼ିଲା । ମାଇଁ-ଆଈ ବାହାରିଆସିଲେ । ପୁଣି ତଳ ବାରଣ୍ଡାର ଆଲୁଅ ଜଳିଲା । ଅଗଣା ଆଲୋକିତ ହେଲା ।

ଅଗଣା ମଝିରେ ବଙ୍କମ ସେମିତ ଠିଆ ହୋଇଥିଲା । ଚମକିଲା ପରି ମୁହଁ ବୁଲାଇ ସେ ବାରଣ୍ଡା ପାଖକୁ ଗଲା । ପଚାରିଲା, କଅଣ କି ଆଈ ?

ପିଲା ଦୁଇଟା ଉପରେ ଏକା ଅଛନ୍ତି । ଅନୁପା ଆଉ ନିରୁପା ମ ! କାଳେ ସେମାନେ ଡରିବେ !

ସେମାନେ ଶୋଇ ପଡ଼ିବେଣି, ଆଈ ! ମାଈଁ କଣ ଉଠିଲେଣି କି ?

ଉଠିଲେ । ସେଇ ତ ମନେପକାଇଦେଲେ ଯେ, ଝିଅ ଦୁଇଟା ଏକା ଅଛନ୍ତି । ଇଢ଼ରୀ ପୁଣି ଶୋଇପଡ଼ିଲେଣି । ତୋ ଘରେ, ତୋ ଖଟରେ ବସୁମତୀ ଅପା ଶୋଇଲେ । ସେଇଥିପାଇଁ ତୁ ଏମିତି ଏପାଖ ସେପାଖ ହେଉଛୁ କି ନାହିଁ ? ଆଜି ଏ ଘରେ କ'ଣ ହୋଇଛି ମ, ସମସ୍ତଙ୍କୁ ହାଉଳ ଲାଗିଛି !

ବଙ୍କମର ଗୋଟାଏ ଦୀର୍ଘଶ୍ୱାସ, ଗୋଟିଏ ହୁଁ ।

ବୁଝିଲୁ ରେ ବଙ୍କ, ଏସବୁ ଆଜିକା ପାଗଯୋଗର କରାମତି । ମେଘ ଘୋଟିଛି । ଗୁଳୁଗୁଳି ଗରମ । ପତ୍ରର ଟିକିଏ କେଉଁଠି ହଲୁନାହିଁ । ମୁଣ୍ଡ ବୁଲାଇଦେଉଛି । ମଶାଙ୍କ ଉତ୍ପାତ କହିଲେ ନ ସରେ ।

ହଁ, ଆଈ ! ରାତି ଆଉ ଦ'ଘଣ୍ଟା ଅଛି । ଆଖିକୁ ନିଦ ଆସୁନାହିଁ । ତମେ ଆଈ ମାଈଁଙ୍କ ପାଖରେ ରହ । ଜାଣ ତ, ସେଘରର କବାଟ ଖୋଲା ରହେ ନାହିଁ ।

ତେବେ, ତୁ ଉପରକୁ ଯା । ମଝିଘରେ, ଅବା ଅନୁପାର ପଢ଼ା-ଘରେ ପଙ୍ଖା ଖୋଲି ଶୋଇପଡ଼ିବୁ । ଘରକର ବାହାର ପରି । ଦେଖିବୁ, ସେମାନେ କେମିତି ବନାମଶାରିରେ ଘୁଙ୍ଗୁଡ଼ି ମାରିଲେଣି । ମୁଁ ଜାଣେ, ଅନୁପାଟା ବଡ଼ ଝିଅ ହେଲାଣି ସିନା, ପାଠ ଗୁଡ଼ାଏ ପଢ଼ିଛି, ଭାରି ଡରକୁଳୀ । ବୁଢ଼ୀଅସୁରୁଣୀ, ବ୍ରହ୍ମରାକ୍ଷସ କଥା ପଢ଼ିଲେ ଥିରନଥା ହୁଏ । ମୋ କଡ଼କୁ ଲାଗି ଲାଗି ଆସେ ସେ ଅବେଇଜ ।

ବାରଣ୍ଡା ଉପରେ କାନ୍ଥକଡ଼କୁ ଅନୁପା ଲାଗି ଲାଗି ଗଲା । ସବୁ ଭୟ ତା'ର ଘୁଞ୍ଚି ଘୁଞ୍ଚି ଗଲା । ବଙ୍କଭାଇ ବ୍ରହ୍ମରାକ୍ଷସ ନୁହେଁ । ସେ ତ ତା'ର

ବକଭାଇ ! ଆସନ୍ତୁ ସେ ଉପରକୁ । ପଡ଼ାଘରେ କାନ୍ଦିବ, ମନ୍ଦିରରେ ଶୋଇବେ । ଜେଜେମା'ର ଛଣ୍ଟି ଶଟି ମାରିବେ କାହିଁକି ?

ଚନ୍ଦନାଅପା ଓ ତା'ର ବାପାଙ୍କୁ ପିଲାଦିନେ କେତେ ବିଷଗୋଳା ଉଖୁଡ଼ା ସେ ଖୋଇବାକୁ ଚେଷ୍ଟା କରିଥିଲେ । ନୂଆ କଥାଟିଏ ଆଜ ଅନୁପା ଶୁଣିଲା । ମିଛ ହୋଇପାରେ । ସାବତମା'ମାନଙ୍କ ନାମରେ ଲୋକେ ଏମିତି କେତେ ଦୁର୍ନାମ ମିଛରେ ରଟାନ୍ତି । ସେଥି ଦୁର୍ନାମକୁ ଆଜ କିଏ ବକଭାଇ ପରି ପିଲା, ଉତ୍ତେଜିତ ହୋଇ ପାପ କରି ମହାବିପଦକୁ କାହିଁକି ମୁଣ୍ଡକୁ ଟାଣିନେବ ? ଆସୁ ସେ ଉପରକୁ, ତା'କୁ ସେ ବୁଝାଇବ, ଛନ୍ଦବାନ୍ଧ ଅଟକାଇ ରଖିବ ।

ଅବ୍ୟକ୍ତ ଆନନ୍ଦରେ ସେ କୁରୁଳିଉଠିଲା । ମାଙ୍କି-ଆଈ ଅନୁମତି ଦେଇଛନ୍ତି । ନିର୍ଦ୍ଦେଶ ଦେଇଛନ୍ତି । କାହାରି ମନରେ କମ୍ପା କିଛି ନାହିଁ । କାହାରି ମନରେ ଅବିଶ୍ୱାସ ନାହିଁ । ସେମାନେ ଖେଳିବେ । ନାଟ କରିବେ । ଧରାପରା ହେବେ, ଯେମିତି ହୋଇଆସିଥିଲେ ଆଜଯାଏ । ରାତି ପାହିଲେ ପୁଣି ସମସ୍ତେ ଏକାଠି ହୋଇ ବଡ଼ ପାଟି କରି ପ୍ରାର୍ଥନା କରିବେ—ସତ୍ୟପଥେ ଧର୍ମପଥେ ଘେନଯାଅ ମୋତେ—

ଏ କ'ଣ ହେଲା ? କିଏ ସେମାନେ କଥାଭାଷା ହେଲେ, ଅନ୍ୟମନା ହୋଇ ଅନୁପା ଶୁଣି ମଧ୍ୟ ଶୁଣିପାରିଲା ନାହିଁ । ଦାଣ୍ଡକବାଟ ଖୋଲି ବିକ୍ରମ ଖଞ୍ଜା ବାହାରକୁ ଗଲା । ମାଙ୍କି-ଆଈ ଭିତରୁ କବାଟ କିଳିଲେ ।

ତଳକୁ ଧାଇଁଯାଇ ଘଟଣାଟି ବୁଝିବାକୁ ଅନୁପା ସାହସ କଲା ନାହିଁ । ଯେଉଁ ମାଙ୍କି-ଆଈ ବକଭାଇକୁ ରଜାପୁଅ କରିଥିଲେ, ପକ୍ଷୀରାଜ ଘୋଡ଼ା ଓ ମନପବନଡଙ୍ଗାରେ ବସାଇଥିଲେ, କାଣ ହାତରେ ଧରାଇଥିଲେ ଜ୍ଞାନଦେଈ ମାଳୁଣୀର ଧଳାଫୁଲ ଓ କଳାଫୁଲ, ଆଉ ତାକୁ ବସାଇଥିଲେ ଅତି ଅଲଅଳ, ଅତି ସୁକୁମାରୀ ଲବଣୀପିତୁଳା ଜେଉଁ ରାଜକୁମାରୀର ଦୁଧଫେଣ-ଜଣା ଶେଯସୁପାତିରେ, ପୁଣି ଗେଲରେ ଗେଲରେ ଝଗଡ଼ାଳି-ବଗିଡ଼ାଲି

ଦୁଇଟା ହାତକୁ ଯୋଡ଼ିଦେବାକୁ ଓଟାରୁଥିଲେ, କାହିଁକି ସେ ତାଙ୍କର ସେହି ଗେଲବସର ରଜାପୁଅ ନାତି ଟୋକାଟିକୁ ବାହାରକୁ ପଠାଇଲେ ?

ମାଙ୍କ-ଆଈ ବାରଣ୍ଡାର ଆଲୁଅ ଲିଭାଇଲେ । ପୁଣି ଇନ୍ଦିରାଙ୍କର କୋଠରିରେ ପଶି କବାଟ କିଳିଲେ । ଘୋଟିଗଲା ନିଘଞ୍ଚ ଅନ୍ଧାର ।

ଅନୁପାର ଛାତି ଥରଥର କମ୍ପିଲା । ମନେ ହେଲା, ସେହି ସୀମାହୀନ ଅକଳନ ଅନ୍ଧାରଟା ଗୋଟାଏ ବିରାଟକାୟ ଭୟଙ୍କର ବାବନାଭୂତର ଆକାର ଧରି ଆକାଶରୁ ଓଲଇଁପଡ଼ୁଛି, ତାକୁ ଗ୍ରାସ କରିବ ।

ସେ ପ୍ରକୋଷ୍ଠ ଭିତରେ ପଶି କବାଟ କିଳିଲା । ଦେଖିଲା, ପଲଙ୍କ ଉପରେ ଅମଳିନ ଧୋବ ଫରଫର ପଦ୍ମଫୁଲଟିଏ ପରି ତାଆରି ଅନୁଜା ନିରୂପା କଣେଇଁ ଶୋଇଛି । ନିଶ୍ଚିନ୍ତ ନିଦ । ଘନଘନ ନିଶ୍ୱାସ ଛାଡ଼ୁଛି । ତା'ର ତକିଆ କଡ଼ରେ ମାଙ୍କ-ଆଈଙ୍କର ରୁଦ୍ରାକ୍ଷମାଳଟି ଥୁଆ ହୋଇଛି ।

ଆଲୁଅ ଲିଭାଇ ଅନୁପା ନିରୂପା ପାଖରେ ଶୋଇଲା । ଅନ୍ଧାରରେ ସେଇ ସରଳ ନିଷ୍ପାପ ପ୍ରତିମା'ର ଦେହରେ ହାତ ପକାଇଲା । ଆଖି ବୁଜିଲା । ମୁଦିଲା ଆଖିକୋଣରୁ ତା'ର ଲୋତକର ଧାରା ଝରିଆସିଲା ।

ବିକ୍ରମ କେଶରୀସଦର ଦରଜା ପାଖରେ, ଡାହାଣ କଡ଼ର ଅଟାକଳି ଘର ନିକଟରେ ଠିଆ ହୋଇ ଶୂନ୍‌ଶାନ୍ ଗଳିରାସ୍ତାକୁ ଚାହିଁଲା । ରାସ୍ତା-ମୋଡ଼ର ବିଜୁଳି ଆଲୁଅ ହତା ଭିତରେ ପଡ଼ୁଛି । ଖଣ୍ଡେଦୂର ଯାଏ ଆଲୋକିତ କରୁଛି । ପାଚିରି-କାନ୍ଥରୁ ଦୂରେଇ ଛୁଡ଼ିଛାଡ଼ିକା ରୋପା ହୋଇ-ଥିବା ଝଙ୍କାଳିଆ କଲମୀ ଆମ୍ବଗଛଗୁଡ଼ିକର ଛାଇ ପଡ଼ୁଛି ହତାଭିତରେ ମୁରମ ରାସ୍ତା ଉପରେ । ସଦର ଫାଟକର ଦୁଇ କଡ଼ରେ ଫାଟକ ସୀମାରୁ ଦଶହାତ ଦୂରରେ ରୋପା ହୋଇଥିବା ନଡ଼ିଆ ଗଛ ବେଶ୍ ବୃଗାଳିଆ ହୋଇ ବଢ଼ିଉଠିଲାଣି । ଲମ୍ବ ବାହୁଙ୍ଗା ମୁରମ ରାସ୍ତା ପାଖକୁ ଲମ୍ବିଆସିଲାଣି ।

ଡାହାଣ ପାଖର ନଡ଼ିଆଗଛର ଗୁଳ ଉହାଡ଼ରେ, ବାହୁଙ୍ଗା ତଳେ ଠିଆହୋଇ ସେ ଆଖିରୁ ଲୁହ ପୋଛୁଥିଲା । କଅଣ ତା'ର କର୍ତ୍ତବ୍ୟ ସେ ବୁଝି-ପାରୁ ନାହିଁ । ସେ ଏତିକି ବୁଝିଲା ଯେ, ସମସ୍ତଙ୍କ ପାଖରେ ସେ ବିଶ୍ୱାସ-ଘାତକତା କରୁଛି । ବିଶ୍ୱାସଘାତକତା କରିଆସୁଛି । ତା'ର ନିଜ ଭିତରେ ଦେବ ଓ ଦାନବ, ମଣିଷ ଓ ପଶୁ, ବିବେକ ଓ ଉତ୍ତେଜନାର ଅହରହ ସଂଘର୍ଷ ଚାଲିଆସିଛି ।

କେବଠାରୁ, ସେ କହିପାରିବ ନାହିଁ । ଯେଉଁ ହାଡ଼ମାଳିଆ, ସ୍ନେହରଙ୍କୁଣୀ, ଲଙ୍ଗୁଳୀ, ରୋଗଣୀ ଝିଅଟିର ସେବା କରି, ଯତ୍ନ ନେଇ, ତାକୁ ବଞ୍ଚାଇ ବଢ଼ାଇଥିଲା, କଟିଗଲାଣି ନଅଟି ବର୍ଷ, ଯିଏ ଅସୁସ୍ଥ ହେଲେ, ଦେହ ମୁହଁ ଘଷି ବିଦାରି ପକାଇଲେ, ତାକୁ କୋଳକୁ ନେଇ, ଛାତିରେ ଭିଡ଼ି, ମୁହଁରେ ବୋକ ଅଜାଡ଼ି, ଗହାବାଳୀକୁ ସେ ଶାନ୍ତ କରାଉଥିଲା, ବୋଲି ମନାଉଁଥିଲା, ବିତିଗଲାଣି ତ ନଅଟି ବୈଶାଖ, କେବେ ତା'ର ବସନହୀନ ରୂପଟି ମନରେ ଆମୋଦପ୍ରଦ ବିକାରର ଚମକା-ଚଅଁ ଲଗାଇଥିଲା, କେବେ ପୁଣି ତା'ର ଫୁଙ୍ଗୁଳା ଦେହର ସ୍ୱାଭାବିକ ମଧୁର ପରଶ ବିଷମର ସ୍ନେହପ୍ରବଣ ତରୁଣ ଦେହରେ ଝିମିଝିମି ଶିହରଣର କୁତୁକୁତୁ ଚରାଇଥିଲା, ଖସିଗଲାଣିତ ନଅଟି ବସନ୍ତ, କେବେ ପୁଣି ସେହି ଅନୁପାର ନିରୀହ ଆଖିରେ ରଙ୍କୁଣୀ କାମନାର ଜୋଛନା ଝଟକିଥିଲା, ପୂରିଲା ଗଣ୍ଡରେ ବୋକ-ଆଗ୍ରହୀ ଅରୁଣିମାର ପାତଳ ଆଭା ଉକୁଟିଥିଲା, ବୋକଟିଏ ଦେଉଁଣୁ ସ୍ନାୟୁରେ ତଡ଼ିତର ବିବେକ ଦୋହଲା ପ୍ରଥମ ପ୍ରବାହ ଛୁଟିଥିଲା, ବିଷମ ମନେପକାଇ ପାରିଲା ନାହିଁ ।

ଉତ୍ତେଜନାକୁ ଦମନ କରି, ବିବେକକୁ ସତତ ଜାଗ୍ରତ କରି, ଅସଂଗତ ଅନୈତିକ ଖେଳରୁ ନିବର୍ତ୍ତିବାର ଶତଚେଷ୍ଟା ବିଫଳ ହୋଇଛି । ଦୁହିଁଙ୍କର ଆଗ୍ରହୀ-ଖେଳନା ଦୁହିଁଙ୍କ ପାଖରେ । ସାନ୍ନିଧ୍ୟ ଓ ଅଭ୍ୟାସ, ଦୁହିଁଙ୍କୁ ଦୁହିଁଙ୍କର ସ୍ୱାଭାବିକ କରିସାରିଥିଲା । ବାଧାହୀନ ସ୍ୱାଧୀନତା ଓ ପାଠପଢ଼ାର ଆଉ ସୁବିଧାସୁଯୋଗର ଅନ୍ତରାୟ ହୋଇ ନ ଥିଲା । ମାମୁଁ ଓ ମାଇଁଙ୍କର

ଧନ ଆହରଣର ସ୍ପୃହା ଓ ସବୁ ପ୍ରକାରର ଅସାମାଜିକ ଉଦ୍ୟମ ସେମାନଙ୍କୁ ନରକମୁଖୀ କରିସାରିଛି । ବିବିଧ ଉପାୟରେ ସେମାନେ ଧନ ଆହରିଛନ୍ତି । କେଇଟି ବର୍ଷ ଭିତରେ ସେମାନେ ଲକ୍ଷପତି ହୋଇସାରିଛନ୍ତି । ସେମାନଙ୍କର ଗ୍ରେଟଲେକ୍ସ ଅଛି, କିନ୍ତୁ ଘରେ ଆକଟ ନାହିଁ ।

ସେମାନଙ୍କ ପାଖରୁ ସେ, ବିକ୍ରମ କଅଣ ବା ଧାରିଛି ? ଗୃହର ଚାକରଙ୍କ ପରି ମୁଠିଏ ଅନ୍ନ । ବେଳେବେଳେ ସେତିକ ପୁଣି ନାକ-ଟେକା, ଛି-ଛିକର । ବିକ୍ରମ ସହିଛି । ମାଟି କାମୁଡ଼ି ରହିଛି । ରଖିଛି ତାକୁ ତା'ର ଭବିଷ୍ୟତ ଭାବନା, ନିଜ ପାଇଁ ଓ ତା'ର ପିତାମାତାଙ୍କ ପାଇଁ ଅନ୍ନବସ୍ତ୍ରର ସଂସ୍ଥାନ । ଏତିକ କୈଫିଅତ ତା'ର ବିବେକ ପାଖରେ ଆଖିମିଟିକା ମାରି-ପାରେ; କିନ୍ତୁ ତା'ର ବିବେକକୁ ଠକିପାରିବ ନାହିଁ । ଅନୁପାର ସ୍ନେହ, ଅନୁପା ପ୍ରତି ତା'ର ଆକର୍ଷଣ ତାକୁ ଏ ପରିସ୍ଥିତି ସହିତ ବାନ୍ଧି ରଖିଛି ।

ବିକ୍ରମର କାନରେ ବାଜିଯାଉଛି ତା'ର ବୋଉଙ୍କର ବାଣୀ—ଆଲୋ ସାଉଜ, ଏଇଠାକୁ ମୁଁ ବୋହୂ କରିବି ମ ! ଏଇ ଅନୁପାଟି, ମା'ର ବୋଉରଗ ସେ ହୋଇଛି ଟଗ ! ବିକ୍ରମ ଯେ ତା' ମାମୁଁ ଆନନ୍ଦର ଓଳ ଆଣିଛି । କେଡ଼େ ସୁନ୍ଦର ! ଭାଇଭଉଣୀ ପରି ଦିଶିବେ । ପିଉସି-ପୁଅ ଭାଇକୁ ମାମୁଁ-ଝିଅ ଭଉଣୀ, ଏବେ ସମାଜରେ ଚଳିଲାଣି !

ସେକାଳ·ମାଈଁଙ୍କର କରିକରି ହସ । ମୋତିମାଳା ମାଈଁ-ଆଈଙ୍କର ରାଜାପୁଅ ରାଜାଝିଅ ଗପ-ପାଚାଳ ରାଇଜରେ ସେହି ରାଜାଝିଅର ଘର । ଆମ ଅନୁପା ପରିକା ସୁନ୍ଦର । ରାଜାପୁଅ ପାରିଧିକି ଯାଇଥିଲା । ସେ ରାଜାପୁଅ, ଆମ ବିକ୍ରମ ପରି ତା'ର ରୂପ ଓ ସ୍ୱାସ୍ଥ୍ୟ । ଅଗନାଅଗନ ବନ ଭିତରେ, ଆଖି ନ ପାଏ ସରୋବର, କାଚକେନ୍ଦୁ ପରି ପାଣି । ରାଜହଂସୀର ପିଠିରେ ବସି ସେହି ତ୍ରିପୁରମୋହିନୀ କନ୍ୟା ଜଳକ୍ରୀଡ଼ା କରୁଥିଲା । ଚାରିପାଖରେ ପାଣି ଉପରକୁ ମୁଣ୍ଡି ଉଞ୍ଚକୁ ଫଣା ଟେକି ନାଗକନ୍ୟାମାନେ ଜଗି-ରହିଥିଲେ । ରାଜାଝିଅ ଆଉ ରାଜାପୁଅଙ୍କର ଚାରିଆଖିର ମେଳ ହେଲା ।

ଦୁହେଁ ଦୁହିଁଙ୍କୁ ଭଲ ପାଇଲେ । ଆଖିର ପଲକପାତରେ ରାଜହଂସୀ ଚୁମ୍ବକର ବୁଡ଼ିଲା । ରାଜାଝିଅକୁ ନେଇଗଲା ପାତାଳପୁରକୁ—

ସେଇଠୁ କଣ ହେଲା ଆଈ, ନିରୁପା ପଚାରେ । ମୋତିମାଳା ଆଈ ରାଜାପୁଅ ପାଇଁ ମନପବନ ଡଙ୍ଗା, ଧଳା ଫୁଲ, କଳା ଫୁଲ, ପୁଣି ମୋହିନୀ-ଶକ୍ତି ଥିବା ହଳଦିଆ ଫୁଲ, ଆଉ ନାଗକନ୍ୟାଙ୍କୁ ମୋହ କରିବାପାଇଁ ଧନ୍ୱନ୍ତରି ପଥର ଯୋଗାଡ଼ କରନ୍ତି । ରାତିଅଧରେ ପାତାଳପୁରର ରାଜନବରରେ ରାଜକନ୍ୟାର ଶୋଇଲା-କୋଠରୀରେ ଭେଟ ।

ସେଇଠୁ, ରାଜାପୁଅ କ'ଣ କଲା ଆଈ ! ନିରୁପା କୁତୂହଳୀ ହୋଇ ପଚାରେ । ସେଦିନ ନାଗରାଜାର ଝିଅକୁ ସେ ରାଜାପୁଅ ବାହା ହେଲା କି ?

ହିଁ, ହିଁ, ବାହାଘର ହେଲା । ସେମାନେ ମୁଦି ବଦଳ କଲେ । ଫୁଲମାଳ ବଦଳ କଲେ । କଳା ଫୁଲ ଶୁଙ୍ଘି ଅଦୃଶ୍ୟ ହେଲେ । ମନପବନ ଡଙ୍ଗାରେ ଚଢ଼ି ପଳାଇଆସିଲେ । ପୋଖରୀକୂଳରେ ପକ୍ଷୀରାଜ ଘୋଡ଼ାରେ ଚଢ଼ି ଶୂନ୍ୟରେ ଉଡ଼ି ରାଜାପୁଅର ରାଇଜକୁ ପଳାଇଲେ ।

ଅନୁପାର ଗାଲ ଚିପି ଆଈ କହିଲେ, ଯା ଯା, ପଢ଼ିବୁ । ନାତି ଟୋକାଟା ଚିଆ ହୋଇ ସବୁ ଶୁଣୁଛି । ଆଲୋ ହେ ଛତରା ! ଏ ଟୋକାଗୁଡ଼ାକ ଫୁଲର ନାମ ଜାଣିବାକୁ ଛଟପଟ, ହେଲେ ମୁଁ କେବେ ନ କହେ ।

ଏମିତି କେତେ ଗଲାବରଷର କଥା । ଥଟ୍ଟାତାମସା, ଉପହାସ, ଉପଲକ୍ଷ୍ୟ, ସିନେମା, ଥିଏଟର, ରସରସିଆ ରେଡିଓ-ସଂଗୀତ ସେମାନଙ୍କ ମନରେ, ଦେହରେ, ସ୍ନାୟୁରେ କେବେ କି ପ୍ରଭାବ ପକାଇଥିଲା ବିଷମର ମନେ ନାହିଁ । 'ଦକ୍ଷିଣେ ମାତୁଳକନ୍ୟା' ବିବାହ-ଚଳନର ଜ୍ଞାନ, ଅବାଞ୍ଛିତ ହେଲେ ବି ସାନ୍ନିଧ୍ୟର ଅଦମନୀୟ ଆଗ୍ରହକୁ କେବେ ଫୁଙ୍କି ଫୁଙ୍କି ଜଳାଇଥିଲା କେଜାଣି, କୌଣସି ମନୁର ଫୁଲ ଲୋଡ଼ା ହୋଇନାହିଁ । ରୂପକଥାର ରାଜକୁମାର ନାୟକ ବିଷମକେଶରୀ ନାଗପୁରର ରାଜଜେମା ଅନୁପାକୁ ପାଇ-ସାରିଥିଲା । ଆପଣାର କରିସାରିଥିଲା । ସଂଗୋପନରେ ବିବେକର ଅନବରତ ତାଡ଼ନା ଓ ନୀତି-ଅନୀତିର ଦ୍ୱନ୍ଦ୍ୱ ଆଗ୍ରହୀ କାମନା ପାଖରେ

ପରିଚିତ ହୋଇଥିଲା । ସନ୍ଦେହହୀନ ବ୍ୟବହାର ଛପିଛପି ମନରେ ପ୍ରବେଶୁ-ଥିବା ଆଶଙ୍କା ଓ ଅନୁତାପକୁ ଆଡ଼େଇ ଦେଉଥିଲା ।

ଆଜି ମାଈଁଙ୍କ ମନର ସନ୍ଦେହ ଲୁଚକାଳି-ଖେଳ ଜୀବନରେ ଯେଉଁ ଆଘାତ ଦେଲା, ସେ ଆଘାତ ତାକୁ ନିଜର ପ୍ରକୃତ ସ୍ଥାନକୁ ଫୋପାଡ଼ି-ଦେଇଛି । ତାକୁ ସତର୍କ କରି ମନେ ପକାଇ ଦେଇଛି ଯେ, ସେ ବିକ୍ରମ, ଏ କୁଟୁମ୍ବରେ ଜଣେ ଆଶ୍ରୟପ୍ରାର୍ଥୀ ମାତ୍ର ।

କାହିଁକି ଇନ୍ଦିରା ଗୋଟିଏ ସ୍ଥାନରେ ସ୍ଥାଣୁ ପରି ଏତେ ସମୟ ଠିଆ ହୋଇ ରହିଲେ ? ଝରକାବାଟେ ବିକ୍ରମର ଚଞ୍ଚଳ ଆଖି ତାଙ୍କୁ ଠାବ କରିଥିଲା । କାହିଁକି ଇନ୍ଦିରା ପାଟିକରି ଡାକିଲେ ନାହିଁ, କବାଟରେ ହାତ ମାରିଲେ ନାହିଁ ? କାହିଁକି ସେ ଅଧାବାଇଆଣୀ ପରି ହେଲେ ? କାହିଁକି ସେ ଝୁଣ୍ଟିପଡ଼ିଲେ ତାଆରି ବକ୍ଷରେ ? ହତଜ୍ଞାନ ସେ ହୋଇ ନ ଥିଲେ ତ !

ତାଙ୍କର ବ୍ୟବହାର କ'ଣ ସୁରାପାନର ପ୍ରତିକ୍ରିୟା, ଅବା ଯେଉଁ ସନ୍ଦେହ ତାଙ୍କର ମନରେ ଜାଗିଲା, ତାହାରି ସମ୍ଭାବନାର ବଜ୍ରପାତ ? ଚିଠି ଛଡ଼ାଛଡ଼ି ଆଳକୁ କେବଳ ଦୁର୍ନାମରୁ ଉଦ୍ଧାର ପାଇବାପାଇଁ ସେ ଗ୍ରହଣ କଲେ, କିନ୍ତୁ ତାଙ୍କର ଅଟଳ ବିଶ୍ୱାସର ସୌଧ ଯେ ଟଳିପଡ଼ି ଧୂଳିରେ ମିଶିଛି, ଏହି ଭାବନା ତାଙ୍କୁ ଅପ୍ରକୃତିସ୍ଥ କଲା ?

ରାତି ପାହିଲେ କିପରି ବିକ୍ରମ ସେମାନଙ୍କ ଆଗରେ ଠିଆ ହେବ, ସେମାନଙ୍କ ମୁହଁକୁ ଅନାଇଁ କଥା କହିବ—ମାଈଁ, ତା'ର ଆଈ ବସୁମତୀ ଓ ଅନୁପା ? ପଳାୟନ ହିଁ ଏକମାତ୍ର ଉପାୟ । ଏହି ସିଦ୍ଧାନ୍ତ ମନକୁ ଆଣି ବିକ୍ରମ ମାଈଁ-ଅଣ୍ଡ ମୋତିମାଳାକୁ ଠିକ ମାମୁଁଙ୍କର ଦୁର୍ଗଭିତରୁ ପଦାକୁ ବାହାରି-ଆସିଛି ।

ଆଈ ମ, ଗରମ ହେଉଛି, ମେଘ ଘୋଟିଆସିଲାଣି, ସିମେଣ୍ଟ ବସ୍ତାଯାକ ଟ୍ରକରୁ ଓହ୍ଲାଇ କୁଲିଗୁଡ଼ାକ ସେଡ୍‌ରେ ନ ରଖି ପଦାରେ ଫୋପାଡ଼ି ଦେଇଯାଇଛନ୍ତି । ବର୍ଷା ହେଲେ ସବୁ ନଷ୍ଟ ହୋଇଯିବ । ମୁଁ

ପଦାରେ ଥାଏଁ । ବାହାର ବାରଣ୍ଡାରେ ଶୋଇପଡ଼ିବ । ବର୍ଷା ପଡ଼ିଲେ ଲୋକଙ୍କୁ ଉଠାଇ ସିମେଣ୍ଟର ଛତ୍ର ନେବ । ରାତି ତ ଶୀଘ୍ର ପାହିବ—

ହରିବଲ୍ଲ ବସନ୍ତ, ସେ ମୁକ୍ତ ହୋଇଛି । ସେ ଏ ଘର ଛାଡ଼ି ପଳାୟନ କରିବ । ରାତି ପାହିଲାବେଳକୁ ସେ ଥିବ ବହୁତ ଦୂରରେ । କେହି ତା'ର ପତ୍ତା ପାଇବେ ନାହିଁ ।

ବସନ୍ତ ଉତ୍ତେଜିତ ହେଲା । ନଡ଼ିଆଗଛର ଛାଇ ତଳୁ ବାହାରି ସେ ସଦର ଫାଟକ ପାଖକୁ ଗଲା । ଆରେ, ଫାଟକରେ ଯେ ତାଲା ପଡ଼ିଛି । ଚାବିକାଠି ଥିବ ଆନନ୍ଦଚନ୍ଦ୍ରଙ୍କର ବିଶ୍ୱାସୀ ମୂଳିଆ ଶାରଙ୍ଗ ପାଖରେ । ହାତରେ ଠେଙ୍ଗା ଧରି ଶାରଙ୍ଗ ନୂଆ କୋଠାର ବାରଣ୍ଡା ଉପରେ ଶୋଇଛି ।

ତାକୁ ଉଠାଇଲେ ପଳାଇହେବ ନାହିଁ । କେତେ ପ୍ରଶ୍ନ ସେ ପଚାରିବ । ଅପାଠୁଆ ଶାରଙ୍ଗ ଅତି ବୁଦ୍ଧିଆ । ତାକୁ ଠକିବା ସହଜ ନୁହେଁ । ବସନ୍ତ, ଇଚ୍ଛିଲେ ଫାଟକ ଉପରେ ଚଢ଼ି ଅକ୍ଲେଶରେ ସେ ଆରପାଖକୁ ଯାଇପାରେ । କିନ୍ତୁ ତା ପରେ ? ହାତରେ ପଇସାଟିଏ ବି ନାହିଁ । ତା'ର ସଞ୍ଚିତ ଟଙ୍କା କେଇଟି, ଛୋଟ ଟ୍ରାଞ୍ଜିଷ୍ଟରଟି ଓ ହାତବନ୍ଧା ଘଣ୍ଟାଟି ସୁଟ୍‌କେସରେ ଅଛି, ଯାହା ଭିତରେ ତା'ର ଲୁଗାପଟା ଓ କାମିଜ ଗେଞ୍ଜି ବି ରହିଛି । ସୁଟ୍‌କେସ୍‌ର ଚାବି, ଫାଉଣ୍ଟେନ୍ କଲମ ଓ ବୋଉଙ୍କ ପାଖରୁ ମିଳିଥିବା ପତ୍ରଖଣ୍ଡିକ ଓ ଛୋଟ ଟର୍ଚ୍ଚ-ଆଲୁଅଟି ଟେବୁଲର ଡ୍ରୟର ଭିତରେ ଅଛି । ସେସବୁ ଆଣିହେବ ନାହିଁ । ଲୁଗା ଖଣ୍ଡିଏ ପିନ୍ଧି, ଦେହରେ ହାତକଟା ଅଧା-ମଇଳା ଗେଞ୍ଜି ଗଳାଇ ଖାଲିହାତରେ ସେ କୁଆଡ଼େ ପଳାଇବ ? ତା'ର ରୂପ ଓ ଭେକ ଦେଖି ଯେ କେହି ପଚାରିବ, ତମର ନାମ କଣ, କି କାମ କର, କେଉଁଠୁ ଆସୁଚ, ଯିବ କୁଆଡ଼େ, ସୁସ୍ଥସବଳ ଦେହ ଥାଇ ଭିକ ମାଗୁଛ, କେଉଁଠି କାହାର କ'ଣ ଚୋରି କରି ପଳାଇ-ଆସିଛ ?

ଏମିତି କେତେ ପ୍ରଶ୍ନ !

କୌଣସି ପ୍ରଶ୍ନର ଉତ୍ତର ସେ ଦେବ ନାହିଁ । ଲୋକେ ପୁଣି କଥା-ଭାଷା ହେବେ, ଆହା, ବଡଘ ବାଇଆଟିଏ !

ସତରେ ସେ ଚୋର । ସମସ୍ତଙ୍କର ପ୍ରତ୍ୟୟ ସେ ଚୋରି କରିଛି—ବାପ ମା, ମାମୁ ମାଇଁ, ଅନୁପା, ମୋତିମାଳା ଆଉ— । କେହି ଜାଣନ୍ତି ନାହିଁ, ଏପରିକି କୋମଳମତି, ହାସ୍ୟମୟୀ, ନିରୀହା ଅନୁପା ବି, ଯିଏ ଗଳ୍ପ ଶୁଣା, ରେଡ଼ିଓ ସଙ୍ଗୀତ ଶୁଣା, ସିନେମା-ଥିଏଟର ଦେଖା ଓ ଭେରାଇଟି ସୋ'ରେ କେଉଁଠି ନାଚିବାର ଆନନ୍ଦ ପରି ହୃଦୟର ଆଶ୍ଳେଷ ଓ ଆହ୍ଲାଦକୁ ମଣିଥିବ, ସମସ୍ତେ ସେମାନେ ପଚରାପଚରି ହେବେ, ଗଲା କୁଆଡ଼େ ସେ ହୃଦୟ, ବାପଙ୍କ ଚିଠି ପଢ଼ି ବାଇଆ ହୋଇ ପଳାଇଲା ?

ସୁସ୍ଥ ବ୍ୟକ୍ତିଟା ବାଇଆ ହେବ କପରି ? ପଦାକୁ ପଳାଇବା ଆତ୍ମହତ୍ୟା କରିବା ସଙ୍ଗେ ସମାନ ହେବ ।

ଆତ୍ମହତ୍ୟା !

ତାହାହିଁ ଭଲ । ଅନ୍ୟମାନଙ୍କର ଅଲକ୍ଷ୍ୟରେ ଯେବେ ସେ ଅନୈତିକ କଷ୍ଟ କରିଛି, କର୍ମ ସମାପନ ପରେ ଅନୁତାପର ନିଆଁରେ କେତେ ଦିନ ଛଟପଟ ହୋଇଛି । ନିଜର ଅବିମୃଷ୍ୟକାରିତା ପାଇଁ ନିଜକୁ ସେ ଦଣ୍ଡିଛି । ତଥାପି, ସେ ଶାନ୍ତି ପାଇନାହିଁ । ଭଗବାନଙ୍କର ଦୟା ଲାଭ କରିବାକୁ ଗୀତା ପଢ଼ିଛି, ଭାଗବତ ପଢ଼ିଛି, ବିଭୁପଦରେ ସବୁ ଦୋଷ ସମର୍ପିଦେଇ ସେ ପ୍ରାର୍ଥନା କରିଛି—ମୁଁ ମଣିଷଟିଏ, ଅଜ୍ଞାନ ବାଳୁତଟିଏ, ଜୀବନର ଚଳନରେ ଦୋଷତ୍ରୁଟି ହୋଇଯାଇଛି, ମତେ କ୍ଷମାକର ପ୍ରଭୁ !

ଭାବୁଛି, ହେଲା, ହେଲା ଏଥର । ସବୁ ଦୋଷତ୍ରୁଟି ଠାକୁରେ ଗ୍ରହଣ କରିଛନ୍ତି । ସେ କ୍ଷମା ଦେଇଛନ୍ତି । ହୃଦୟ ନିର୍ମଳ ହୋଇଛି । ଏଣିକି ସେ ସତ୍ୟପଥରେ ଧର୍ମପଥରେ ଚାଲିବ । କେବଳ ଅର୍ଥ-ଉପାର୍ଜନପ୍ରୟାସୀ ତା'ର ମାମୁଁ ଓ ମାଇଁଙ୍କର ସଂଯମହୀନ ଚଳନ ଏ ଘରର ଶାସନଡୋରକୁ ଢିଲା କରିଛି । ଅନୁପା ଆସିଛି ହସିହସିକା, ନିରୁପା ଆସିଛି ନାଚିନାଚିକା, ସୁରୁପା ଆସୁଛି ଗେହ୍ଲେଇ ଗେହ୍ଲେଇ ।

ପୁଣି ଗୋଡ଼ ଖସିଛି । ଅନୁପାନ୍ତି ତା'ର ଆହ୍ଲାଦ ଖୋଜୁଛି ।

ଭାବୁଛି, ଥରେ ନୁହେଁ, ଅନେକ ଥର—ସେ ଆତ୍ମହତ୍ୟା କରିବ । ଠାକୁରେ ତାକୁ ଦୟା କରିନାହାନ୍ତି । ସତ୍ୟପଥରେ, ଧର୍ମପଥରେ ଚାଲିବାକୁ ତା ମନରେ ସେ ଦୃଢ଼ତା ଦେଲେ ନାହିଁ । ସ୍ଖଳିତ ଜୀବନରେ ତା'ର ଆଉ ପ୍ରୟୋଜନ ନାହିଁ । ଜୀବନର ମଳିନ ଧୂମାୟିତ ଶିଖାକୁ ନିଜ ହାତରେ ସେ ଲିଭାଇଦେଇପାରିବ । ଲେଖିଦେଇପାରିବ ଏହି ଦୁନିଆରେ ବଞ୍ଚି ରହିଥିବା ଲୋକଙ୍କର ଅବଗତି ପାଇଁ, ମୋର ମୃତ୍ୟୁ ପାଇଁ ଅନ୍ୟ କେହି ଦାୟୀ ନୁହେଁ ।

•

ବାରମ୍ବାର ଚେଷ୍ଟା କରୁଛି । କାଗଜରେ ଲେଖିଛି, ଥରକୁଥର ପଢ଼ିଛି । ଚାଲୁଥିବା ବିଜୁଳି ପଙ୍ଖା, ଆଲନାରେ ଝୁଲୁଥିବା ଧୋଇ ପଡ଼ିଥିବା ଲୁଗା ଓ ଟେବୁଲକୁ ଚାହିଁଛି । ସବୁ ଠିକ ଠାକ୍, ଆଉ ଅଳ୍ପ ଟିକିଏ କାମ ବାକି ।

ଆଜଯାଏ ସେ ମରିପାରି ନାହିଁ ।

ଦୂର ମୋଫସଲରେ, ଭଙ୍ଗା ଚାଳଘରର ଛଣଉଡ଼ା ଚାଳ ତଳେ ବସି ଚକରେ ମାଣ୍ଡିଆ ପୋଷେ ପେଷୁଥିବା ତା'ର ଜନନୀ ଆଖିକୁ ଦିଶି-ଯାଆନ୍ତି । କେତେ ଆଶା କେତେ ସ୍ୱପ୍ନ ତାଙ୍କର—ପୁଅ ମଣିଷ ହେଉଛି, ହେଇଟି ଭବିଷ୍ୟତଟି ତାଙ୍କ ଆଖିକି ଦିଶିଯାଉଛି—ପୁଅ ମଣିଷ ହୋଇଛି, ଧନ ଅର୍ଜୁଛି, ତାଙ୍କର ଉପାସ ପେଟରେ ଓଦାକନା ଦେବା ଲୋଡ଼ା ହେବ ନାହିଁ । ଘରକୁ ଆସିବ ଦିବ୍ୟସୁନ୍ଦର ବୋହୂ !

କିଏ ସେ ? ଟିକି ଅନୁପା ? ମାଉଳ-କନ୍ୟା ! ସମାଜରେ ଚଳୁଛି; କିନ୍ତୁ ସତେ କ'ଣ ସେ ଏଇଆ ଚାହାନ୍ତି ! ଅବା ଭବିଷ୍ୟତରେ କାଳେ କ'ଣ ବିଘଟଣ ଘଟିବ, ସେଥିକୁ ସାବଧାନ ହେବାକୁ ମାଈଙ୍କୁ ନିର୍ଦ୍ଦେଶ ଦିଅନ୍ତି ?

ଦୂର ଜିଲା, ଭବାନୀପାଟଣା ସହରରେ କେଉଁ ଚାଳ ଘର ତଳେ ବସି ବୁଢ଼ା ବାପ, ରୋଗଣା ବାପ, ଫୁଙ୍କନଳୀରେ ଚୂଲି ଭିତରର ଓଦାଳିଆ କାଠକୁ ଫୁଙ୍କି ଫୁଙ୍କି, ପ୍ରବଳ ଧୂଆଁରେ ଆଖି ଓ ନାକରୁ ପାଣି ଗଡ଼ାଇ, ଭାତ

ଗଣ୍ଡିଏ ଫୁଟାଇବାକୁ ଚେଷ୍ଟା କରୁଥିବେ—ଦୁଃଖର ଦିନ ସରିଆସିଲା । ଜୀବନର ତପସ୍ୟା ପୂର୍ଣ୍ଣ ହୋଇଆସିଲା । ସେ ମଣିଷ ପରି ମଣିଷ ହେବ । ପୂର୍ବପୁରୁଷଙ୍କର ସମ୍ମାନ ଫେରିଆସିବ । ବନ୍ଧା ଦିଆ ହୋଇଥିବା ଭୂମି ଓ ବାସନ ମୁକୁଳା ହେବ । ଲୋକଙ୍କର ହାତ-ଉଧାରି ଶୁଝା ହେବ । ନୂଆ ଜମି କିଣାହେବ । ନୂଆ ଘର ତୋଳାହେବ । ସେଇଠୁ ପୁଅର ହାତକୁ ଦି'ହାତ କରିହେବ ।

ଅନୁପା ସଙ୍ଗେ ନୁହେଁ । ସେ ପ୍ରଶ୍ନ ମିଙ୍ଗିବାଦୀ, ପୁରୁଣାକାଳିଆ ପ୍ରଥାର ଭୂୟସୀ ପ୍ରଶଂସାକାରୀ ଓ ଆଧୁନିକତାର ବିରୋଧୀ ବୀରକେଶରୀଙ୍କ ମନରେ ସ୍ଥାନ ପାଇବାର ନୁହେ । ସେ ତାଙ୍କର ମନମାଫିକା ଜଣେ ଗୃହ-କର୍ମରେ ନିପୁଣା ବୋହୂ ସ୍ଥିର କରିଛନ୍ତି । ତାଙ୍କର କେତେ ଆଶା, ତାଙ୍କର କେତେ ସ୍ୱପ୍ନ !

ହେଉ, ସବୁ ବ୍ୟର୍ଥ ହେଉ । ତା'ର କି ଥାଏ ? ସେ ମରିବ । ପରିତ୍ରାଣ ପାଇବ । ମାନସିକ ଯନ୍ତ୍ରଣା, ବିବେକର ତାଡ଼ନା ଓ ବାରମ୍ବାର ସଂକଳ୍ପ ଭଙ୍ଗର ବେଦନାରୁ ସେ ରକ୍ଷା ପାଇବ ।

ଲେଖା ଖଣ୍ଡିକରେ ଜୀବନ ସ୍ୱାକ୍ଷର କରିଛି । କାଗଜକୁ ମଡ଼ିକି ଶ୍ଳୋକ ଗୀତା ବହି ଭିତରେ ରଖିଛି, ଯେଉଁଠି ଲେଖା ହୋଇଛି—ଜୀର୍ଣ୍ଣ ବସ୍ତ୍ର ପରିତ୍ୟାଗ କରି ମନୁଷ୍ୟ ଯେପରି ନୂତନ ବସ୍ତ୍ର ଗ୍ରହଣ କରେ, ସେହିପରି ଶରୀରକୁ ଜୀର୍ଣ୍ଣ ହେବାର ଦେଖି ଆତ୍ମା ତାକୁ ତ୍ୟାଗ କରି ଅନ୍ୟ ଦେହ ଗ୍ରହଣ କରେ ।

ତା'ର ଶରୀର ଜରାଜୀର୍ଣ୍ଣ ନ ହୋଇପାରେ ; କିନ୍ତୁ ତା'ର ମନକୁ ପାପର କୀଟ ଝିଞ୍ଜାରି ସାରିଛି । ସେ ଯାହା କରିବାକୁ ଯାଉଛି, ଧୀର ମନ ସ୍ଥିର ବୁଦ୍ଧିରେ ବିଚାର କରି ସିଦ୍ଧାନ୍ତ ଗ୍ରହଣ କରିଛି । ତା'ର ବିଚାରରେ ଉତ୍ତେଜନା ନାହିଁ, ଭାବପ୍ରବଣତା ନାହିଁ ।

ବାହାରୁ କିଏ କବାଟ ବାଡ଼େଇଲାଣି । ଅନୁପା ଡାକୁଛି । ସେଇଟା ଘୋଟାଏ ରାକ୍ଷସୀ । ଗୋଟାଏ କାଳସର୍ପ । ଝେଙ୍ଗେଟ ମାରି ମାରି ତା ମନକୁ

ବଷ-ଜରଜର କରୁଛି । ସେହି ରକ୍ଷସୀଟା ତା'ର ଆତ୍ମାକୁ ବାରମ୍ବାର ଗ୍ରାସ କରୁଛି । ସେ ରାହୁ, ପୁଣି ସେ କେତୁ । ସେଇ ତ ତା ଜୀବନର ଶନି ! ଡାକ ଛାଡ଼ୁଛି । କବାଟ ବାଡ଼ଉଛି । ଡେରି କଲେ ସେ ଅନ୍ୟମାନଙ୍କୁ ଡାକିବ, କବାଟ ଭଙ୍ଗାଇବ । ସେ ଜାଣେ, ପଙ୍ଖାର ସ୍ବିଚର ଉପର ଖୋଳରେ ଆଲନା ବାଜି ଭାଙ୍ଗିଯାଇଛି । ସାବଧାନ ନ ହୋଇ ସ୍ବିଚ୍ ଟିପିଲେ ସକ୍ ଲାଗିବ, ଆକ୍‌ସିଡେଣ୍ଟ ହେବ । ସେ ଭାବିବ, ହେଲା କି ଆକ୍‌ସିଡେଣ୍ଟ୍ ?

ଅନୁପା ଆହୁରି ଜୋରରେ କବାଟ ଧଡ଼ ଧଡ଼ କଲାଣି । ନ ଖୋଲି ଉପାୟ ନାହିଁ । ଏଥର ମଧ୍ୟ ତା'ର ଚେଷ୍ଟା ବ୍ୟର୍ଥ ହେଲା । ପୁଣି ଆଉ କେବେକାର ସୁଯୋଗକୁ ତାକୁ ଅପେକ୍ଷା କରିବାକୁ ହେବ । କାଗଜ ଖଣ୍ଡି ଚିରିଦେବା ଭଲ ।

ବିକ୍ରମ ତାହାହିଁ କଲା । ଚିରିଣ୍ଡା କାଗଜକୁ ଘରକୋଣକୁ ପକାଇଲା । ଚଳନ୍ତା ପଙ୍ଖାର ପବନରେ ଟିକି ଟିକି କାଗଜ ଖଣ୍ଡି ଇତସ୍ତତଃ ହେଲା । ରାତି ଆଠଟା ବାଜିଗଲାଣି ।

ସେ କବାଟ ଖୋଲିଲା ।

ଅନୁପା ଘର ଭିତରକୁ ପଶିଲା । ସ୍ଥିର ଅଗ୍ନିଶିଖା ପରି ସେ ସୁନ୍ଦର ଦିଶୁଛି, ଫେସନେବୁଲ୍ ଦିଶୁଛି । ବେଶଭୂଷା ହୋଇ ଲୋଭନୀୟ ହୋଇଛି । ଗମ୍ଭୀର । ଅପରିଷ୍କାର ପ୍ରକୋଷ୍ଠର ଚତୁଃପାର୍ଶ୍ୱରେ ଦୃଷ୍ଟି ପକାଉଛି । କିଛି କହୁନାହିଁ ।

କଅଣ ଦେଖୁଛୁ ଅନୁପା ?

ତମେ କଅଣ କରୁଥିଲ ?

ପ୍ରାର୍ଥନା, ଭଗବତ୍ ଗୀତା—

କାହା ପାଖକୁ ଚିଠି ଲେଖୁଥିଲ, ଚିରିଦେଲ ?

ଚିଠି ନୁହେଁ, ପ୍ରବନ୍ଧ । ଭଲ ହେଲା ନାହିଁ ଯେ—

ତମେ ମତେ ଭୁଲାଉଛ ବିକିଭାଇ ! ବୋଉ ପିଲାମାନଙ୍କୁ ସଙ୍ଗରେ ନେଇ ହାଡ଼ବନ୍ଧୁ ମଉସାଙ୍କ ଘରକୁ ତାଙ୍କ କାର୍‌ରେ ଗଲାଣି । ତାଙ୍କର ନୂଆ

କୋଠା ଆଜ ପ୍ରତିଷ୍ଠା ହେଉଛି । ବାପା ସେଇଠି ଅଛନ୍ତି । ବଡ଼ବଡ଼ଆଙ୍କୁ ଚର୍ଚ୍ଚା କରିବାର ଆୟୋଜନ କରୁଛନ୍ତି ।

ତୁ ଗଲୁ ନାହିଁ ? ପରୀଟିଏ ପରି ବେଶ ହୋଇଛୁ । ମହମହ ବାସୁଛୁ । ପ୍ରସ୍ତୁତ ହୋଇସାରିଛୁ । ଶାଢ଼ି ନ ପିନ୍ଧି ପେଣ୍ଟ ସାଲୁଆର୍ ପଞ୍ଜାବୀ ପିନ୍ଧିଛୁ, କେଡ଼େ ସୁନ୍ଦର ପାତଳା ଦାମିକା ଛୁପିଛୁପିକା କନା, ତତେ ଖୁବ ମାନୁଛି । ସମସ୍ତେ ପସନ୍ଦ କରିଥାଆନ୍ତେ ।

ସମସ୍ତେ ପୁଣି ମତେ ଟଣାଟଣି କରିଥାନ୍ତେ । ବୋକ ଦେଇଥାନ୍ତେ । କେହି କେହି କହିଥାନ୍ତେ—ଏଇଟିକୁ ମୁଁ ବୋହୂ କରିବି । ମୋ ବୋଉ ମତେ ଏମିତି ସଜେଇ ଦେଇଛି । କାନରେ ଫୁଲ ପିନ୍ଧାଇ ଗୁଣ୍ଠିରେ ଏଇ ବଡ଼ିଆ ହାରଟି ଲମ୍ବାଇ ଦେଇଛି । ମୁଁ ଖାଲି ମୋ ନଖଗୁଡ଼ିକରେ ଗୋଲାପୀ ନେଲ୍‌ପଲିସ୍ ଲଗାଇଛି । ମୁଁ ଖୁବ ଭଲ ଦିଶୁଛି, ନା ?

ମାଙ୍କ ସାଙ୍ଗେ ନ ଗଲୁ କାହିଁକି ?

ବାଉରିବନ୍ଧୁବାବୁ କାର୍‌ରେ ଆସିଥିଲେ । ସେ ପରା ତୁମର ବନ୍ଧୁ, ବିକଭାଇ, ତୁମକୁ ନିମନ୍ତ୍ରଣ ନ କଲେ କାହିଁକି ? ବୋଉ ପଚାରିଲା । ସେ ଜବାବ ଦେଲେ ଯେ, ସେଠାକୁ କେବଳ ବଡ଼ବଡ଼ଆଙ୍କୁ ନିମନ୍ତ୍ରଣ କରାହୋଇଛି । କେଡ଼େ ଷ୍ଟେଟଲୋକ ସେମାନେ, ତମେ ଦେଖିଲ ତ ?

ତୁ ନ ଗଲୁ କାହିଁକି ?

ସେମାନଙ୍କ ଉପରେ ମୋର ରାଗ ହେଲା । ବୋଉକୁ କହିଲି ଯେ, ମୋର ମୁଣ୍ଡ ବୁଲୁଉଛି, ବାପାଙ୍କୁ ପଠାଇଲେ ମୁଁ ପରେ ଯିବି, ତମେ ବି ଯିବ । ବୋଉ ମୋର ଅଭିମାନର କାରଣ ବୁଝିଲା । କହିଲା, ସେ ବାପାଙ୍କୁ ପଠାଇଦେବ । ତମେ ବି ଯିବ । ତମେ ପ୍ରସ୍ତୁତ ହୋଇପଡ଼, ବିକଭାଇ ! ସେଇ ନୂଆ ଗାଡ଼ିରେ ବାପା ଶୀଘ୍ର ଆସି ପହଞ୍ଚିବେ ।

ମୁଁ ତମମାନଙ୍କର ସମାନସ୍କନ୍ଧ ନୁହେଁ ଲୋ ଅନୁପା ! ମୁଁ କାହିଁକି ସେଠାକୁ ଯିବି ? ବାଉରିବନ୍ଧୁ ଲକ୍ଷପତିର ପୁଅ । ସେ ବାହାହେବ ଲକ୍ଷପତିଙ୍କର ଝିଅ ଅନୁପାକୁ । ମୁଁ, ମୁଁ କିଏ, ମୁଁ ଟା କଣ ?

ବନ୍ଧନ ହସିଥିଲା । ସେ ହସ ଅନୁପାର ଆଖିରେ ଲୁହ ଆଣିଥିଲା । ଅନୁପା ମୁହୂର୍ତ୍ତେ ନୀରବ ରହିଲା । ସେଇଠୁ ପଚାରିଲା, ବାପା ତୁମକୁ ଡାକଲେ ତମେ କ'ଣ ମନା କରିଦେବ ?

ତାଙ୍କର ଓ ମାଈଁଙ୍କର ଆଦେଶକୁ ମୁଁ କେବେ ତଳେ ପକାଇ-ନାହିଁ । ଅବାଧ୍ୟ ହେବାକୁ ମୁଁ କେବେ ସାହସ କରିପାରିବି ନାହିଁ । ମୁଁ ଯିବି, ନିଶ୍ଚୟ ଯିବି । ତୋର ଅନୁରୋଧ ମୁଁ ଏଡ଼ାଇପାରିବି ନାହିଁ ।

ଅନୁପା ଖୁସି ହେଲା । ତାଙ୍କ ପାଖକୁ ଆସି ବନ୍ଧନର ହାତଟିଏ ଧରି ଟାଣିଲା । କହିଲା, ମୁଁ କ'ଣ ଏହା ଜାଣେ ନାହିଁକି ? ଉଠ, ଉଠ ! ତମେ ପ୍ରସ୍ତୁତ ହୁଅ । ମୁଣ୍ଡ ସେମିତି ଫୁରୁଫୁରୁ ଉଡ଼ୁଥାଉ, ତମେ ନିଶଦାଢ଼ି ଗୁଡ଼ା ସେମିତି ବାଇଆ ବାଉଳ ପରି ଆସ । ମୋ ଆଖିକୁ ଖୁବ୍ ଭଲ ଦିଶୁଛ ।

କହୁ କହୁ ସେ ଲାଜେଇ ଗଲା । ସେହି ସୁବର୍ଣ୍ଣ ପ୍ରତିମା ଗେହ୍ଲେଇ ଝିଅଟିକୁ କୋଳକୁ ଟାଣି ତାକୁ ଗେଲ କରିବାକୁ ମନାସୁଣୁ ସେ ଖିଲଖିଲ ହସି କୋଠରୀ ବାହାରକୁ ଚାଲିଗଲା । ମୁହଁ ବୁଲାଇ କହିଲା, ଶୀଘ୍ର ଆସ, ମୁଁ ଦାଣ୍ଡରେ କାର୍‌କୁ ଅପେକ୍ଷା କରିଛି ।

ସେ ଅଦୃଶ୍ୟ ହେଲା । କାଗଜ ଖଣ୍ଡଗୁଡ଼ିକ ପଙ୍ଖାର ପବନରେ ଇତସ୍ତତଃ ଉଡ଼ି ବନ୍ଧନକୁ ଉପହାସ କରିବାକୁ ଲାଗିଲା । ଆତ୍ମହତ୍ୟାର ସଂକଳ୍ପ ସେଦିନ ଅନୁପାର କମନୀୟ ଅବୋଧ ଖିଆଲରେ ଲାଜରେ ପରିଣତ ହେଲା ।

ସେହି ଅନୁପା ତାକୁ ସପନ ସାଥିରେ ବାନ୍ଧି ରଖିଛି । ଆତ୍ମଘାତୀ ହୋଇ ମରିବାକୁ ପରୋକ୍ଷରେ ନିର୍ଦ୍ଦେଶ ଦେଇଛି, ପୁଣି ମରଣର ଦ୍ୱାର-ଦେଶରୁ ଫେରାଇ ଆଣିଛି ।

ସେ ନିଜେ ତା'ର ମାମୁଁଙ୍କର ପ୍ରାସାଦ ଭିତରୁ ବାହାରି ଆସିଛି । ସେ ଫେରିବ ନାହିଁ । ସେ ନିଷ୍ଠୁର ତାର କଳଙ୍କିତ ଜୀବନକୁ ନଷ୍ଟ କରିଦେବ । ଗୋଟିଏ ନିରୀହା ବାଳିକାର ଭବିଷ୍ୟତ୍‌କୁ ନଷ୍ଟ କରିବ ନାହିଁ । ତାର ଜୀବନ ପଥରେ କଣ୍ଟା ହୋଇ ରହିବ ନାହିଁ । ତାର ମରଣ ପରେ କିଏ କ'ଣ କହିବ, କିଏ କଣ ଆଲୋଚନା କରିବ, ସେ ଜାଣିବାକୁ, ଶୁଣିବାକୁ ନଥିବ ।

ବିକ୍ରମର ଉତ୍ତପ୍ତ କପାଳରେ ଓ ଫୁଙ୍ଗୁଳା ହାତରେ ଆକାଶରୁ କେତେ ଵିନ୍ଦୁ ଶୀତଳ ଜଳ ଝଡ଼ିପଡ଼ିଲା । ସେ ଆକାଶକୁ ଚାହିଁଲା । କଳା ମେଘ ସେମିତି ଜମାଟ ବାନ୍ଧି ରହିଛି । ପବନ ବହିଲାଣି, ଶୀତଳ ପବନ । କେଉଁଠି ବର୍ଷା ହେଲା ପରି ! ଆକାଶର ଗଡ଼ାଣିରେ ବେଳେ ବେଳେ ବିଜୁଳି-ଲତା ଝଲସିଉଠୁଛି । ପରେ ପରେ ଗରଜ ଉଠୁଛି ଅଶନି ।

ବର୍ଷା ହେବ ପରି ! ସେଡ୍ ବାହାରେ ଜମା ହୋଇଥିବା ସିମେଣ୍ଟ ବସ୍ତା ଗୁଡ଼ିକ ଭିଜିବ, ପଥର ପାଲଟିବ । ତା'ର କ ଥାଏ ?

ବର୍ଷା କୁଣ୍ଡା ଝାଡ଼ିବାକୁ ଲାଗିଲା ।

ବିକ୍ରମ ଟଳଟଳ ହୋଇ ଗୋଡାମ ଘର ପାଖକୁ ଗଲା । ଗୋଦାମ ଘରକୁ ଲାଗି ଖୋଲା ସେଡ୍‌ରେ ଲୁହାରେଲ୍ ଲୁହାଛଡ଼ ଗଦା ହୋଇଛି । ଯେଉଁ ଅଂଶଟି ଫାଙ୍କା ରହିଛି, ବାଗେଇ ରଖିଲେ ସବୁ ସିମେଣ୍ଟ ସେଇଠି ରଖାଯାଇ ପାରିବ । କିନ୍ତୁ, ତାର କ ଥାଏ ?

ପବନର ବେଗ ବଢିବାକୁ ଲାଗିଲା । ସୁ-ସୁ ଶବ୍ଦ ।

ସେ କ'ଣ ଅକୃତଜ୍ଞ ହେବ ? ଶାରଙ୍ଗ ଓ ଅନ୍ୟ ମୂଲିଆମାନଙ୍କୁ ଉଠାଇ ଦେଲେ ସେମାନେ କୌଣସି ବ୍ୟବସ୍ଥା କରିପାରନ୍ତେ । କିନ୍ତୁ ତାର ସଂକଳ୍ପ ପୂର୍ଣ୍ଣ ହୋଇପାରିବ ନାହିଁ ।

ଗୋଦାମ କଡ଼ରେ ଝଙ୍କାଳିଆ ଆମ୍ବଗଛଟିଏ ଅଛି । ତାଆରି ଡାଳରେ, ହଁ ତା'ରି ଡାଳରେ— ପିନ୍ଧିଲା ଲୁଗାକୁ ସେ ଦଉଡ଼ି କରିବ—

ବିକ୍ରମ ଧୀରେ ଧୀରେ ଆମ୍ବଗଛ ପାଖକୁ ଆଗେଇ ଯାଉଛି । ଛାତି ଦାଉଁ ଦାଉଁ । ଗୋଡ଼ ଥର ଥର । ମୁଣ୍ଡ ଭ୍ରମୁଛି । ଆକାଶରୁ ଛିରିକା ଜଳ

ଦେହରେ ମୁଣ୍ଡରେ ପଡ଼ୁଛି । ଶୀତଳ ଲାଗୁଛି । ପବନର ବେଗ ପ୍ରଖର ହେଲାଣି । ହେଉଛି ସେ ଶ୍ରେଷ୍ଠ ଆମ୍ବ ଗଛ । ବେଶୀ ସରୁ ନୁହେ । ଉପର ଡାଳକୁ ହାତ ପାଉଛି । ବେଶ୍ ମୋଟା । ଭାରି ସହ୍ବ ।

ଅନ୍ଧାରିଆ ସ୍ଥାନ । ପଛରେ ଉଚ୍ଚ ପାଚେରି । ଆଉ ପାଖେ ପଛଡାଣୀ-ଘର । ସେ ଘରର ହତା ଭିତରର ଜଙ୍ଗଲିଆ ଅନ୍ଧାରିଆ । ସେହି ହତାର ଶ୍ରେଷ୍ଠ ଘରେ ସମସ୍ତେ ଶୋଇଛନ୍ତି । କଅଁଳା ପିଲାର କାନ୍ଦଣା ଶୁଭୁଛି । ଆଗରେ ଦଶ ବାରହାତ ଘୁଞ୍ଚି ତାର ମାମୁଁଙ୍କର ନୂଆ ଏକତାଲା ଘରର ଶେଷ କୋଠରୀ । ଝରକାର ଉପର କବାଟ ଦୁ'ଫାଳ ଖୋଲା । ପରଦା ଟଣା ହୋଇଛି । ମଝି ଘରର ନେଳିଆ ଆଲୁଅ ଖୋଲା ମଝି-କବାଟର ପରଦା ଭିତରେ ଛୁଣି ହୋଇ ଆସି କଡ଼ର ଘରକୁ ସ୍ୱଳ୍ପ ଆଲୋକିତ କରୁଛି ।

ସେହି ମଝିଘରେ ଗହନ ନିଦରେ ଶୋଇ ପଡ଼ିଥିବେ ତାର ଦୟାମୟୀ ମାଈଁ ! ନଅ ବର୍ଷ ତଳେ ଯିଏ ଆହା କହି ସାହା ହୋଇଥିଲେ । ମୁଣ୍ଡରେ ହାତ ସାଉଁଳି ପାଖରେ ଆଶ୍ରା ଦେଇଥିଲେ । ଅଭୟ ଦେଇଥିଲେ । ଗରିବର ସଂସାର ଥିଲା ତାଙ୍କର, ଢୋକେ ପିଇ ଦଣ୍ଡେ ଜୀଇଁବାର ସମୟ । କାମରେ ଲୋଟଣୀ ପାରି ତାଙ୍କର ସ୍ନେହଶୀଳା ଆଲୁସି ବାଲୁସି ମାଈଁ ! ସାକ୍ଷାତ୍ ସୁବର୍ଣ୍ଣର ଲକ୍ଷ୍ମୀ ପ୍ରତିମା । ବେଶ ଓ ଚଳଣିରେ କୃଶିମତୀ ନାହିଁ । କେବେ ଫୁଙ୍ଗୁଳା ଦେହ, କେବେ କାହାର ଆଗମନ କାଳରେ ମୁଣ୍ଡରୁ ଗୋଡ଼ଯାଏ ଆବୃତା । ତାଙ୍କର ମନ, ଜୀବନ ଓ ଭାବନା ଶ୍ରେଷ୍ଠ ସଂସାରଟିକୁ ଆବୋରି ରହିଥିଲା । ତାଙ୍କର ଚଳନ୍ତି ଦେହପ୍ରତି ନଜର ନ ଥିଲା । ତାର କର୍ତ୍ତବ୍ୟପରାୟଣା ଦରିଦ୍ର ଘରର ଘରଣୀ ମାଈଁ !

ଧନ ଆହରଣର ସ୍ପୃହାରେ ଓ ଉଦ୍ୟମରେ କୁହୁକ କାଠି ଛୁଇଁଲା ପରି ବାହାର ଓ ଭିତର ସବୁ ବଦଳିଯାଇଛି । ମାମୁଁ ଓ ମାଈଁ ଧନ ପାଇଁ ନିଜ ନିଜର ଆତ୍ମାକୁ ସଇତାନର ଚରମାନଙ୍କୁ ସମର୍ପି ଦେଇଛନ୍ତି । ଦେଖିଛି, ଦେଖି ଆସିଛି ସେ ହଙ୍ଗାମ, ନଅବର୍ଷ କାଳ ସେମାନଙ୍କର ଧନ

ଆଚରଣର ସଇତାନୀ ଉପାୟ। ନୂଆ ନୂଆ ପଦ୍ଧତି। ମାମୁଁ ତା'ର ଦେଶର ରକ୍ଷକମାନଙ୍କୁ ଧନ ଦେଇ ଭକ୍ଷକ କରିପାରିଛନ୍ତି । ଶକ୍ତିଶାଳୀ ଆଗ୍ରହୀ ଭକ୍ଷକମାନଙ୍କୁ ନିଜର ସ୍ୱାର୍ଥସାଧନ ଅଭିଳାଷରେ ରକ୍ଷକଶ୍ରେଣୀର ଆସନରେ ବସାଇବାକୁ ଆପ୍ରାଣ ଚେଷ୍ଟା କରିଛନ୍ତି ।

କାନରେ ବାଜିଯାଉଛି ଦିନକର ରକ୍ତଅଧର ହାଃ-ହାଃ ହସ, ପହରକିଆ ବିଲୁଆଟଲର ହସ ପଟ୍‌କା। ପୁଣି ଚୁପ୍ ଚୁପ୍। ସେହି ମଝିଘରେ ବୋଧହୁଏ ମାଈଁ ଓ ମାମୁଁ ଦୁହେଁ କେଉଁଠୁ କଣ ଟିକିଏ ପିଇଦେଇ ଆସି-ଥିଲେ। ଅଧଘଣ୍ଟାଏ ପୂର୍ବରୁ କାହାର ଗାଡ଼ି ଆଣି ତାଙ୍କୁ ଛାଡ଼ିଦେଇ-ଯାଇଥିଲା। ଅନୁପା ଓ ନିରୁପା ସେମାନଙ୍କ ସଙ୍ଗରେ ଯାଇଥିଲେ। ସେମାନେ ବି ଫେରିଥିଲେ। ପଲଙ୍କ ଉପରେ ନିରୁପା ଶୋଇପଡ଼ିଥିଲା।

ଅନୁପା ତା'ର ବାପାଙ୍କୁ ଆଉଜି ତଳେ ଠିଆ ହୋଇଥିଲା। ତାକୁ ବି କ'ଣ ବିବେକନାଶିନୀ ସୁରାରୁ କିଏ ଟୋକେ ଦେଇଥିଲା? ଆନନ୍ଦଚନ୍ଦ୍ର ପଲଙ୍କ ଉପରେ ବସି ତାଙ୍କ ଆତ୍ମଜାର ପିଠି ଆଉଁସି ଦେଉଥିଲେ। ଇନ୍ଦିରା ନଇଁପଡ଼ି ଲୁହା ଆଲମାରିର ତଳଲକର୍ ଖୋଲି କଅଣ ରଖୁଥିଲେ।

ବିକମ ସାନନ୍ଦକୁ ପଲଙ୍କରେ ଶୁଆଇ ସୁରୂପାକୁ ଆଣିବାକୁ ସେ ଘରୁ ବାରଣ୍ଡାକୁ ବାହାରିଆସୁଥିଲା।

ହସ ଶୁଣି ପଛକୁ ଚାହିଁଲି। ତିନିହେଁ ହସୁଛନ୍ତି। ହସ ଥମିବାରୁ ଇନ୍ଦିରା କହିଲେ, ତମେ କହୁଥିଲ ସେ ଗୋଖରସାପ! ମୋ ଅନୁପା କେମିତି ତାଙ୍କର ଫଣା ନୁଆଁଇଲା? ସୋଫା ଉପରେ ଚେକା ପକାଇ ତମ ଦେଶର ମହନ୍ତ ମହାରାଜ ବସିଥିଲେ। ଆଉମାନେ ଯେମିତି ଲୁଚିଗଲେ, ପରଦା ଏ ପାଖରୁ ମୁଁ ଅନୁପାକୁ ହଲାଇଦେଲି। ଝିଅ ମୋର କର୍ପୂରମାଳଟି ନେଇ ଘରଭିତରକୁ ପଶିଗଲା। ତାଙ୍କୁ ଚମକାଇ ତାଙ୍କ ମୁଣ୍ଡବାଟେ ସେଇ ନଟେଲା କର୍ପୂରର ଝୁରିସରିଆ ହାରଟିକୁ ଗଳାଇ

ତାଙ୍କ ବେକରେ ଝୁଲାଇଦେଲା । ତାଙ୍କର ଦଳ ପାଇଁ ତମେ ଦେଇଥିବା ପାଞ୍ଚ ହଜାର ଟଙ୍କା ଥିବା ଥଳୀକୁ ସୋଫା ଉପରେ ଥୋଇ ତାଙ୍କ ପାଦରେ ହାତ ମାରି ମୁଣ୍ଡରେ ଲଗାଇଲା ।

ସେ ତମକୁ ପୁଛିଲେ ଗୋ ! ଆଗ ହସିଲେ । ଅନୁପାର ହାତଟିଏ ଧରି ପଚାରିଲେ, ତୁ କାହା ଝିଅ ଲୋ ମା ?

ତମର ନାମ କହିଦେଲି ମ ବାପା ! ପୁଣି ସାହସ କରି କହିଲି, ସେଥିରେ ଦଳ ପାଇଁ ପାଞ୍ଚ ହଜାର ଦେଇଛନ୍ତି । ଆଜ ଆପଣଙ୍କୁ ଷାଠିଏ ପୂରିଲା ପରା ! ଆମେସବୁ ଠାକୁରଙ୍କ ପାଖରେ ପୂଜା କଲୁଁ, ଜଣାଣ କଲୁଁ ଯେ ଏମିତି ଆପଣଙ୍କୁ ବଶାଶହେ ପୂରିବ । ଆପଣ ଏମିତି ଦେଶର କାମ କରୁଥିବେ, ଗରିବଙ୍କର ମଙ୍ଗଳ କରୁଥିବେ ।

ସାବାସ୍ ! ଏତେ କଥା କହିପାରିଲୁ, ମା ?

କହିଦେଲି ତ ! ସେ ଟିକିଏ ଭାବିଲେ । କହିଲେ, ଓହୋ ବୁଝିଲି । ବାପାଙ୍କୁ କହିବୁ, ସବୁ ଠିକ୍ ହୋଇଯିବ । ଆଉ କେବେ ଆସି ମୋତେ ଦେଖା କରିବେ । ତୋ ନାମଟି କଣ ?

ମୋ ନାମ ଅନୁପା !

ପଢୁଛୁ ?

ହଁ, ଏଗାର କ୍ଲାସରେ ।

ଏତେ କମ୍ ବୟସରେ ? ବାଃ ! ତୁ ମୋର ନାତୁଣୀ ପରିକା ।

ଏମିତି କଥାଭାଷା ହେଲା ମ ବାପା ! ପଚାରୁନ ବୋଉକୁ । ସେ ଭାରି ଖୁସି ହେଲେ । ତଳକୁ ଗୋଡ଼ ଝୁଲାଇ ମତେ ତାଙ୍କ ଦୁଇ ହାତରେ ପାଖକୁ ଆଉଜାଇଲେ । ସେ ଅଜା ଗେଲ କଲେ ମ ବାପା ! କେତେ ଜାତିର ହାର ସେଇ ସୋଫା ଉପରେ ଗଦା ହୋଇଥିଲା । ଏଇ ସୁନେଲି ରୁପେଲି ଜରି-ଫୁଲର ହାରଟି ଉଠାଇ ମୋ ମୁଣ୍ଡ ତାଙ୍କ ବେକ କଟିକି ନୁଆଁଇ ବେକରେ ଗଳାଇଦେଲେ ।

ଇନ୍ଦିରା କହିଲେ, କ'ଣ ସେ କହିଲେ, ଜାଣ ? ଆଉ କିଏ ହୋଇଥିଲେ କହିଥାଆନ୍ତେ, ଏ ଝିଅକୁ ମୁଁ ବୋହୂ କରିବି । ସେ କହିଲେ, ବରଣମାଳା ଆଗ ତୁ ଦେଲୁ ଲୋ ନାତୁଣୀ, ମୁଁ ବି ଦେଲି ଏ ଓଲଟ-ମାଳ । ତୋର ସ୍ୱୟମ୍ବର ହୋଇଗଲା ।

ଅନୁପା କହିଲା, ସେ ବୁଢ଼ାମାଙ୍କଡ଼ ଘରୁ ସେ ବାପା !

ଆନନ୍ଦଚନ୍ଦ୍ର ଅନୁପାକୁ କୋଳ କରି କହିଲେ, ନାତୁଣୀ ହିସାବରେ ଅଜାମାନେ କୋଳରେ କୋଳରେ ସେମିତି ଅଝଟିଆ କଥା କହନ୍ତି । ତୁ ଛଳ କରିବୁ ନାହିଁ । କ'ଣ ସେ କହିଲେ, ସବୁ ଠିକ୍ ହୋଇଯିବ ?

କହିଲି ତ ବାପା !

ଦେଖା କରିବାକୁ କହିଛନ୍ତି ?

କହିଲି ତ ବାପା, ବୋଉକୁ ପଚାରୁନ ।

ଇନ୍ଦିରା କହିଲେ, ମୋ ଝିଅର ଯେତେବେଳେ ସେ ତାଙ୍କର ମନକୁ ଅଜା ହେଲେ, ତାକୁ କୋଳ କଲେ, ଲୋକେ ତାଙ୍କୁ ଗୋଖର, ଚମ୍ପା, ବାଘ ଯାହା କହନ୍ତୁ, ମୁଁ କାହିଁକି ଡରିବି ? ସେ ମୋ ଧରମବାପ, ନୋହିଲେ ମଉସା ପିଉସା ସମ୍ପର୍କ ତ ଗୁଆଁକୁ ହେଲେ । ମୁଁ ସେ ଜଗୁଆଳକୁ ଆଡ଼େଇଦେଇ ଘରଭିତରେ ପଶିଲି । ସେ ହଁ ହଁ କରିବାକୁ ବେଳ ପାଇଲେ ନାହିଁ । ସେ ତ ଗୋଡ଼ ଲମ୍ବାଇ ବସିଥିଲେ, ମୁଁ ତାଙ୍କର ଗୋଡ଼ ଛୁଇଁ ତଳେ ମୁଣ୍ଡ ଲଗାଇ ଓଳଗି ହେଲି । କେଉଁମାନେ ଆଗରୁ ତାଙ୍କର ଗୋଡରେ ଚନ୍ଦନ ଓ ଅତର ବୋଳିଥିଲେ ମ, ପାଦ ଦିଓଟି ମହମହ ବାସୁଥିଲା । ଜାଣିଥିଲେ ମୁଁ ବି ଚନ୍ଦନ ଓ ଅତର ଗୋଳି ନେଇଥାନ୍ତି । ସେତିକିବେଳେ ଭଣ୍ଡା ହୋଇଗଲା ।

ଆନନ୍ଦ କହିଲେ, ଦେଶର ଚକ ସେ ଚଳାଉଛନ୍ତି । ରାଜାଙ୍କ ସମାନ । ରାଜା ତ ଚଳନ୍ତି-ବିଷ୍ଣୁ । ପାଦରେ ଚନ୍ଦନ-ତୁଳସୀ ଦେଲେ ଦୋଷ ଲେଖି ନ ଥାଏ । ଶୁଣ, ଯେଉଁମାନଙ୍କର ବର ଦେବାର ଶକ୍ତି ଅଛି, ସେମାନେ

ସାକ୍ଷାତ୍ ଦେବତା । ତମେ ତ ମୋ'ଠାରୁ ଅଧିକ ଜାଣିଛ, ତମକୁ ମୁଁ କ'ଣ ଶିଖାଇବ ? ଖାଲି ଗୋଟିଏ କଥା ତମର ମନେ ପକାଇ ଦେଉଛୁ । ଆମ ସମୁଦ୍ର ହାଡ଼ବନ୍ଧୁଙ୍କର ଅସଲ ମନ୍ତ୍ର ସେଇଟା । ଆମ ବାଉରିଆ ବ ବେଶ୍ ବୁଝିଥାର, ସେ ବ ଶିଖିଗଲଣି । କ'ଣ ଜାଣିଲ ନା, କାମ ହାସଲ କରିବାକୁ ଗଧର ପାଦ ଠାକୁରେ ଧରିଥିଲେ । ଆମର ସମ୍ମାନ ଊଣା ହୋଇନାହିଁ ।

ଇନ୍ଦ୍ର ଖୁସି ହେଲେ । କହିଲେ, ଗଧର ପାଦ ମୁଁ ଧରିଥିଲି ତ, ମତେ ଆଜ କଅଣ ଅଧିକ ଶିଖାଇବ ? ତମର କାମ ମୁଁ ବଗାଡ଼ ନାହିଁ, ବରଂ ସୁଧାରୁଛୁ । ସେ ହାଁ-ହାଁ ହୋଇ ଗୋଡ଼ ଟେକନେଲେ । ତାଙ୍କର ହାତ ଦଉଟି ଲମ୍ବାଇ ମୋର ବାହୁମୂଳରୁ ଧରି ଟେକ ଉଠାଇଲେ । କେଡ଼େ କେଡ଼େ ମୋଟା ମାଂସଳ ସେ ହାତ ଦୁଇଟା, ଆଉ ସେଥିର ଶକ୍ତି !

ଆନନ୍ଦ କହିଲେ, ହୁଁ, ସେଇଠୁ...?

ଇନ୍ଦ୍ର କହିଲେ, ମୋ ମୁଣ୍ଡରୁ ଲୁଗା ଖସିଥିଲା । ମୁଁ ହାତ ଯୋଡ଼ ଅନୁପାର କଡ଼କୁ ଘୁଞ୍ଚଯାଇ କହିଲି—ଉପରେ ମୋ ସ୍ୱର ଥରୁଥାଏ ଯେ—ମୁଁ କହିଲି, ଏ ଅନୁପା ମୋ ବଡ଼ ଝିଅ, ଆପଣଙ୍କ ଦର୍ଶନ ପାଇଁ ଆସିଥିଲି ।

ସେ ହସ ହସ ହେଲେ । କହିଲେ, ମୁଁ ଭାବିଲି ତତେ ଅନୁପାର ବଡ଼ ଭଉଣୀ ।

ମୁଁ ଲାଜେଇଗଲି । ତଳକୁ ମୁହଁ ପୋତ ଓଠ କାମୁଡ଼ଲି । ସେ ମୋ ଅବସ୍ଥା ବୁଝିଲେ ପରା, କହିଲେ, ଆନନ୍ଦବାବୁଙ୍କୁ କହିବ, ସବୁ ଠିକ୍ ହୋଇଯିବ । ଆଜ କେବେ ଆସିଲେ ଦେଖା ହେବା, କଥାଭାଷା ହେବା ।

ବନ୍ଧମ କାନ୍ଥ ଉହାଡ଼ରେ ଝରକା ପାଖରେ ଆଉ ମାଡ଼ୋଇବାକୁ ସାହସ କର ନ ଥିଲା । ରୂପର ପସରା ଅନୁପା ଆଧୁନିକ ବେଶଭୂଷାରେ ସଜେଇ ହୋଇ, ଆସ୍ତେ ବକଶାଇ ପ୍ରକୋଷ୍ଠରୁ ବାହାରିଆସୁଛୁ ।

ସ୍ୱପ୍ନର ଅନ୍ୟମନସ୍କତାରେ ପ୍ରଚଣ୍ଡ ବେଗରେ ମାଡ଼ିଆସିଲା ଯେଉଁ ପବନ ବାଧା ଦେଲା । ଗଜା ଆମ୍ବଗଛର ଶାଖା ଓ ପତ୍ର ଦୋହଲାଇବାକୁ ଲାଗିଲା । ବରକୋଳିଆ ବର୍ଷା ଟୋପା ଅଜାଡ଼ି ହୋଇପଡ଼ିଲା । ଆକାଶରେ ଆଖିଝଲସା ଅଶନି ଝଟକ । ବାଦଲ ଗର୍ଜି ଉଠିଲା । ଝରକାର କବାଟ ପବନରେ ବାରମ୍ବାର ବାଡ଼େଇହେବାର ଶବ୍ଦ ।

କେଉଁଠୁ ଆସୁଛି ସେ ଶବ୍ଦ ? ଦୋଚାଲା ଉପରୁ ? ହୋଇଥିବ । ସେମାନେ ଝରକା ପଟାରେ କଳଣୀ ଦେଇନାହାନ୍ତି । ଭାଙ୍ଗୁ ସେଗୁଡ଼ାକ, ସିମେଣ୍ଟବସ୍ତା ଓଦା ହେଉ, ପଥର ହେଉ, ସହସ୍ରାଧିକ ଟଙ୍କା ନଷ୍ଟ ହେଉ । କେଉଁ କାମ ଉପରୁ ସ୍ଥିର ହୋଇ ଆସିଥିବ, କଳାବଜାରରେ ତାର ମାଲ୍ ବିକି କରିବେ । ଅଧର୍ମ ବିତ୍ତ, ହେଲେ ହେଉ ସେ ନଷ୍ଟ ।

ଆଉ ଡେରି କରିବା ଉଚିତ ନୁହେଁ । ସେ ତାର ଦେଖିଲା କାମ କରିନେବ । ରାତି ପାହିଆସିଲା ! କାଲି ହେବ ଅମାବାସ୍ୟା । ଭାରି ମଜା ହେବ । ସେମାନେ ଆସି ସମସ୍ତେ ରୁଣ୍ଡ ହେବେ । ଦେଖିବେ, ଆମ୍ବଗଛର ଡାଳରୁ ସ୍ୱପ୍ନ ଝୁଲୁଛି, ନିଜର ଲୁଗାରେ । ଦେହରେ ଅଣ୍ଡର-ଉୟର ଓ ଗେଞ୍ଜି ପିନ୍ଧିଛି । ଆଖି ତରାଟିଛି । ଜିଭ କାଢ଼ିଛି । ସ୍ୱପ୍ନ ଝୁଲୁଛି । ସେ କାଠ ହୋଇଗଲାଣି ।

ବସୁମତୀ ଆଈ ନିଶ୍ଚୟ ଆଖିରୁ ଦି'ଟୋପା ଲୁହ ଝାଡ଼ିବେ । କହିବେ, ପିଲାଟାକୁ ଦାଇବ ଛୁଉଁଥିଲା ଗୋ, ତା ନିଜ ପାପ ନିଜକୁ ଖାଇଲା ।

ମାଈଁ ଇନ୍ଦ୍ରଙ୍କର ମନ ପାପ ଛୁଇଁବ । ଭାବିବେ, ନିଶ୍ଚୟ ସେ ଅନୁମାନ କରିବେ, ସୁରର ପ୍ରତାପରେ ଅପ୍ରକୃତିସ୍ଥ ଅବସ୍ଥାରେ ଗୋଟାଏ ପ୍ରେୟସୀ ପରିକା ସେ ପିଲାଟାର ଛାତିରେ ଗୁଣ୍ଡାଇହୋଇଥିଲେ । ସ୍ୱପ୍ନ ତାଙ୍କ ଦୃଢ଼ ଆଶ୍ଳେଷର କୋମଳ ସ୍ପର୍ଶର ବକ୍ଷାକ୍ତ ଉଷ୍ମ ଦେହରେ ଭେଦାଇଛନ୍ତି । କପରି ସେ ଭୁଲିବେ ? କହିବାକୁ ଲାଜ, କିନ୍ତୁ ସେ ଚୁ ଚୁ କରି କହିବେ, ତାଙ୍କ ବାପଙ୍କର ଟିକି ଏତିକ ଭିଆଇଲା । କୋମଳମତି ଭାବପ୍ରବଣ ପିଲାଟା, ବାପର ଦୁଃଖ ସହିପାରିଲା ନାହିଁ ।

ସେ ଶଟିରୁ ଠିକଏ ପଢ଼ିବେ ।
ବାରମ୍ବାର ପଢ଼ି ବଷମର ମନେ ଅଛୁ ।

—ପାହସମ୍ବଳ କେହ୍ନ ନ ଥିଲେ । ଡାକ୍ତରଖାନାରେ ପଡ଼ିଲ । ପନ୍ଦର ଦିନ ରହିଲ । ଦେହରେ ରକ୍ତ ନ ଥିଲ । ପେଟ ଫାମିଲ । ଦେହ ହେଲ ଶେତା । ଗୋଡହାତ ଓ ମୁହଁ ବେଙ୍ଗ ପରିକା ଫୁଲିଲ ରେ ବାପ, ଚାଲିବାର ଶକ୍ତି ନ ଥିଲ । ହାତରେ ଧନ ନାହିଁ । ଏଠାରେ କେତେ ସହକର୍ମୀଙ୍କଠାରୁ ଓ ଦୋକାନରୁ ଧାରଛୁ । କାହାକୁ ଶୁଝିପାରିନାହିଁ । କଏ ଆଜ ଉଧାର-ଧାର ଦେବ ରେ ପୁଅ ? ଭାବଥିଲି, ମରିବ । ମରିଥିଲେ ଛରିଯାଇଥାନ୍ତି ।

—ମୁଁ ବଞ୍ଚିଗଲ । ମୋତେ ଜାଣ ବଞ୍ଚାଇଲେ ମୋର ବନ୍ଧୁ ଦେବନାଥ । ମୋ ପାଇଁ ତୁ ବ୍ୟସ୍ତ ହେବୁ ନାହିଁ ! ମୁଁ ଭଲ ହୋଇଗଲେଣି । କାମରେ ଯୋଗ ଦେଲଣି । ଦେବନାଥବାବୁଙ୍କ ସ୍ତ୍ରୀ ସ୍ୱର୍ଗେ ଓ ତାଙ୍କର ଝିଅ ଉଲୂପୀ ମୋର ଯତ୍ନ ନେଉଛନ୍ତି । ଆଜ ଅଧିକ ପଢ଼ିବା ନ ପଢ଼ିବା କଥା ତୋର ମାଈଁଙ୍କୁ ପଚାରି ସ୍ଥିର କରିବୁ । ସେ ତୋ ମା'ଙ୍କଠାରୁ ବଳି । ମୋର ଆଉ ବଳ ପାଉନାହିଁ ।

— ଉଲୂପୀ ଦେବନାଥଙ୍କର ଏକମାତ୍ର ଝିଅ । ସେ ମୋର ସେବା କରୁଛି ଓ ଯତ୍ନ ନେଉଛି । କେଉଁ ମା ତା ପୁଅର, କେଉଁ ଝିଅ ତା ବାପର ଏତେ କରିପାରିବ ? ଜାଣ, ତାଆରି ପାଇଁ ମୁଁ ବଞ୍ଚିଲ । ଦେବନାଥବାବୁ ଅମିନ କାମ କରନ୍ତି । ତାଙ୍କ ଘର ବାଙ୍କି । ଭଲ ରୋଜଗାର । ପୁଅ ହଓଟି ସାନ ସାନ । ଦେବବାବୁ ଭଲ ଦେବେ ଯେ । ପାଞ୍ଚଶ ଟଙ୍କା ସ୍କଲାର୍ସିପ ବି ଦେବେ । ନିଜ ମୁହଁରେ ପ୍ରକାଶ କରୁଥିଲେ । ମୁଁ ମୁହଁ ଖୋଲିଲେ ସେ ହଜାରେ ଟଙ୍କା ବି ଦେଇପାରନ୍ତି । ସାଇକଲ୍, ଘଣ୍ଟା, ରେଡ଼ିଓ—

—ତିନି ଚାରି ମାସ ହେଲ ତୋ ସାଇକଲ ଚୋରିଗଲଣି ବୋଲି ଲେଖିଥିଲୁ । ମୋର ତ ଶକ୍ତି ନାହିଁ ରେ ପୁଅ, ତୋ ପାଇଁ ଗୋଟାଏ କିଣି-ଦେଇପାରିବ ! ଦେବବାବୁ କିଣେଇଦେବେ । ଯେବେ ତୁ ଏମ୍. ଏ. ପଢ଼ିବୁ,

ତୋ ନାମ ଲେଖାଇବାକୁ ଓ ବହିପତ୍ର ଖରିଦ କରିବୁ ସେ ଟଙ୍କା ଦେବେ । ମୋର ଔଷଧ-ପଥ୍ୟ ଓ ତୋର ଆଉ ତୋ ବୋଉଙ୍କ ନେବାପାଇଁ ତାଙ୍କ ପାଖରୁ ମୁଁ ତିନଶ ଟଙ୍କା ଆଣିସାରିଲିଣି ।

—ଜାତକ ଶୁଝିଛୁ । ଗଜପୋଟକ । ଝିଅ ଟଣ୍ଡେ ତ ଉଲୁପୀ ! ସ୍ୱାସ୍ଥ୍ୟ ଯେମିତି ସୁନ୍ଦର, ରୂପ ବ ସେମିତି । ଡଙ୍ଗ ବ । ରଙ୍ଗ ଟିକିଏ ଭଣା, କିନ୍ତୁ ଉଲୁପୀ କାଳୀ ନୁହେ । ସତର ବର୍ଷର ଝିଅ । ପାଠ ସିନା ପଢ଼ିଛି ପାଞ୍ଚ କ୍ଲାସ ଯାଏ, ରନ୍ଧାବଢ଼ା ଓ ଘରକାମରେ ଭାରି ସରସ । ତୋ ବୋଉ ରାଜ । ମୋ ମନକୁ ବ ପାଇଛି—

ମନେପଡ଼ୁଛି ବହମର, ତାର ମୃତ୍ୟୁର ଅବ୍ୟବହିତ ପୂର୍ବରୁ, ବାରମ୍ବାର ଚିଠିଖଣ୍ଡି ପଢ଼ି, ଅନୁପା ବ୍ୟଗ୍ର ଫଣ ଫଣ ହୋଇ ଦିନେ ତାକୁ ପଚାରିଥିଲା, ତମେ ଏଇ ଚିଠିର କ ଉତ୍ତର ଲେଖିଲ ?

ମୁଁ ଉତ୍ତର ଦେଇନାହିଁ ।

ଲେଖିଦେଉନ ଯେ ତମେ ଅପାଠୁଆ କନ୍ୟାଝିଅ ବାହା ହେବ ନାହିଁ ?

କେମିତି ତାଙ୍କର ଅବାଧ ହେବ ? ସେ ଜବାବ ଦେଇସାରିଛନ୍ତି, ଟଙ୍କା ଆଣିସାରିଲେଣି ।

ଛାର ତିନଶ ଟଙ୍କା ପାଇଁ ପିଉସା ତମକୁ ବିକିବେ ?

କେବଳ ତିନଶ ଟଙ୍କା ପାଇଁ ନୁହେଁ, ଅନୁପା, ସେମାନେ ମୋର ବାପାଙ୍କର ଅସହାୟ ଅବସ୍ଥାରେ ତାଙ୍କ ପାଖରେ ଠିଆ ହୋଇଛନ୍ତି । ତାଙ୍କର ଜୀବନ ରକ୍ଷା କରିପାରିଛନ୍ତି ।

ତାଙ୍କର ଟଙ୍କା ତମେ ଶୁଝିଦିଅ, ବଳଭାଇ ! ଭଲ ସାଇକଲ ଖଣ୍ଡିଏ ବ କଣ । ଏମ୍. ଏ. ପଢ଼ିବାକୁ, ମାନେ, ତମର ନାଁ ଲେଖାଇବାକୁ ଯାହା ଟଙ୍କା ଲୋଡ଼ା ହେବ ସବୁ ମୁଁ ଯୋଗାଡ଼ କରିଦେବ ।

ତୁ ଏତେ ଟଙ୍କା ରଖିଚୁ ଅନୁପା, ମାଉଁକୁ ମାଗିବୁ ?

ବୋଉକୁ ମାରିବି ନାହିଁ । ସେ ଘର ଗ୍ରେଟ ଲୋକ । ଯେତେ ଟଙ୍କା ତମର ଲୋଡ଼ା ହେବ ମୁଁ ତ ଦେବି; କେଉଁଠୁ ଯୋଗାଡ଼ କରିବ ତମର ଜାଣିବା କ ଦରକାର ?

ଅନୁପାର ଆଖିରୁ ଦ'ଧାର ଲୋତକ ଝରିପଡ଼ିଲା ।

ବିଷମ କହିଲା, ବନହଂସୀ ଦେବୀଙ୍କ ଘରକୁ ଯିବାକୁ ତୁ ସଜ ହୋଇଥିଲୁ । ଓଠରେ ନାଲି ରଙ୍ଗ ବୋଳିଛୁ । ମାଈଁ ତତେ ସଙ୍ଗରେ ନେଲେ ନାହିଁ । ସେଥିପାଇଁ ତାଙ୍କ ଉପରେ ରାଗିଛୁ ?

ମୁଁ ସଜ ହୋଇ ନ ଥିଲି । ବୋଉ ଘଣ୍ଟାଏ ପରିଶ୍ରମ କରି, ତା ଆଖିକୁ ମୁଁ ଯେମିତି ସୁନ୍ଦର ଦିଶିବି, ମତେ ସେମିତି ସଜାଇଥିଲା । ମୁଁ ନିଜେ ଯିବାକୁ ମନାକଲି ।

ମୁଁ ବଜାରରୁ ଫେରି ତମମାନଙ୍କୁ ଘରେ ଦେଖୁଛି । ମାଈଁଙ୍କୁ ଦେଖୁନାହିଁ । ନୂଆ କଥା ନୁହେଁ । କେଉଁ ସଭାସମିତି, ଟି-ପାର୍ଟି ଅବା ସିନେମା ଯିବାପାଇଁ ସଜ ହୋଇ ପିଲାମାନଙ୍କ ସଙ୍ଗେ ଆମ୍ବଗଛତଳେ ତୁ ଦୋଳି ଖେଳୁଥିବାର ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି ।

ଗାଡ଼ି ଧରି କମଳ ଆସିଥିଲା । ପଛସିଟ୍‌ରେ ଯେସମିନ୍, ବନହଂସୀ ଓ ଯୂଥିକା ମାଉସୀ ବସିଥିଲେ । ବୋଉ ଖୁସିହୋଇ ତାଙ୍କର ପାଖରେ ବସିଲା । ମତେ କମଳ ପାଖରେ ଆଗରେ ବସିବାକୁ ପଡ଼ିଥାନ୍ତା । ଡ୍ରାଇଭର ଗାଡ଼ି ଚଳାଉଥିଲା । ଗାଡ଼ି ଯାଉଥିଲା ଭୁବନେଶ୍ୱର । କମଳ ପାଖରେ ବସି ଯିବାକୁ ମୁଁ ଚାହିଁଲି ନାହିଁ ।

ବୁଝିଲି । ମାଈଁଙ୍କ ଉପରେ ତୁ ରାଗିନାହୁଁ । ମୋତେ ସାହାଯ୍ୟ କରିବାକୁ ତୁ ମନ କରିଛୁ, କିନ୍ତୁ ତାଙ୍କୁ ନ ଜଣାଇ ମୁଁ ତୋ ସାହାଯ୍ୟ ଗ୍ରହଣ କରିପାରିବି ନାହିଁ ।

ବେଳ ଅପରାହ୍ଣ ଛଅଟା । ସୂର୍ଯ୍ୟ ବୁଡ଼ିଲେ ମଧ୍ୟ ଆଲୁଅ ଲିଭି ନ ଥାଏ ।

ରଘୁଆ ଓ ସୁଦର୍ଶନ ହତା ଭିତରେ ପିଲାଙ୍କୁ ଖେଳାଉଥାନ୍ତି ।

ପଡ଼ାଘରେ ବଜଳି ଆଲୁଅ ଜଳୁଥିଲା । ପଙ୍ଖା ଧୀରେ ଧୀରେ ଘୂରୁଥିଲା । ତକ୍ତପୋଷ ଉପରେ ଅଧା-ଶୁଆ ଠାଣିରେ କାଖତଳେ ତକିଆ ଜାକି ବିକ୍ରମ ଅନୁପାର ଲୁହଝରା ମୁହଁକୁ ଚାହିଁ ରହିଥିଲା । ଟେବୁଲ ପାଖରେ ଅନୁପା ଠିଆ ହୋଇଥିଲା ।

ଅନୁପା କହିଲା, ସେମାନେ ତମର ବାପାଙ୍କର ଜୀବନ ବଞ୍ଚାଇଛନ୍ତି । ସେ ଜୀବନର ମୂଲ୍ୟ କିଏ ଦେଇପାରିବ ? ଯେଉଁ କାଳୀ ଝିଅଟି ପିଉସାଙ୍କର ସେବାରେ ମନପ୍ରାଣ ଢାଳିଦେଇଛି, ସେହି ଭଲପାଇବାକୁ ସେ ବୋଧହୁଏ କରିପାରିଲେଣି । ମୁଁ ଭାବୁଛି, ସେହି ଝିଅଟି ତମକୁ ମନେ ମନେ ବିବାହ କରିସାରିଛି ।

ଅନୁପା ତା ଆଖିର ଲୁହ ହାତପାପୁଲିରେ ପୋଛି ଟିକିଏ ହସିଲା । ପୁଣି କହିଲା, ତମର ସମ୍ମତି ତମେ ପିଉସାଙ୍କୁ ଜଣାଇଦିଅ ।

ଏତିକି କହି ସେ ଧୀରେ ଧୀରେ ପଦାକୁ ବାହାରିଯାଇଥିଲା ।

ସେଦିନ ବିକ୍ରମ ଭାବିଥିଲା, ଏହି ଘଟଣାରେ ଦୁହିଁଙ୍କର ମାନସିକ ବୁଝାମଣା ହୋଇଗଲା । ଯେଉଁ ଭୁଲ ଅଜାଣତରେ ହୋଇଥିଲା, ତା'ର ପୁନରାବୃତ୍ତି ହେବ ନାହିଁ ।

ପ୍ରବଳ ଝଡ଼ର ମିଶ୍ରିତ ଶବଦ । ବର୍ଷାଧୋଇବାର ବୃକ୍ଷ ଉପରେ ପତନର ଝିମିଝିମି ଶବଦ । ସେସବୁକୁ ଉପହାସ କଲା ପରି ପାଚେରି ଆରପାଖେ ଜଙ୍ଗଲିଆ ହତା ଭିତରୁ ବିଲୁଆପଲର ହୁକେ ହୋ ଶୁଭିଲା । ସେ ଶବଦ ଥମିଲା । ହତାଭିତର ପୁରୁଣା ନିମ୍ବଗଛର କୋରଡ଼ରୁ ପେଚକର କୁହାଟ ବି ଶୁଭିଲା ।

ରାତିର ଶେଷ ପ୍ରହର । ମରଣର ଅଗ୍ରଦୂତମାନେ ନିମନ୍ତ୍ରଣ କରିଗଲେଣି । ଡେରି କରିବା ଉଚିତ ନୁହେଁ । ଗଛର ଡାଳ ଦୋହଲୁଛି । ବିକ୍ରମ

ହାତ ଅଣ୍ଟାଳିଲା । ସାପ ପରି କଅଣ ଗୋଟାଏ ହାତରେ ବାଜିଲା । ଚମକି-ଉଠି ହାତ ଓଟାରି ଆଣିଲା । ଦେହ ଶୀତେଇଉଠିଲା ।

ବସନ୍ତର ମନେପଡ଼ିଲା, ଅନୁପା ଓ ନିରୁପା ଏଇ ଗଛରେ ଦଉଡ଼ି ବାନ୍ଧି ଦୁଇଦିନ ତଳେ ଦୋଳି ଖେଳୁଥିଲେ । ଆଜିଯାଏ ସେ ଦଉଡ଼ି ଝୁଲୁଛି । ହାତ ଅଣ୍ଟାଳିଲା । ହଁ, ହଁ, ଦଉଡ଼ିଟାଏ । ବେଶ୍ ମୋଟା । ଭଲ ହେବ । ଖାଲି ଫାଶଟାଏ ପକାଇ ବେକରେ ଗଳାଇ ଡେଇଁପଡ଼ିଲେ କାମ ସରିବ । ତେଣିକ ଯାହା ହେବାର ହେଉଥାଉ ।

ଦୋଚାଲା ଉପରର ବଜୁଳି ଆଲୁଅ ଜଳିଉଠିଲା । ସେଇ ଆଲୁଅର ଝଲକ ପଡ଼ିଲା ଗରଜ ଗରଜ ଦୋହଲୁଥିବା ଗଛର ପତ୍ର ଗହଳ ଉପରେ ।

ବସନ୍ତ ଆଖି ଟେକିଲା । ବାରଣ୍ଡା ଉପରେ ଅନୁପା ଓ ନିରୁପା । ଅନୁପା ନିରୁପାର ବେକରେ ହାତ ଗୁଡ଼ାଇଛି । ଡରୁଆଟିଏ । ନିରୁପା ପରି ସାହସୀ ନୁହେଁ । ଝରକାର କବାଟଗୁଡ଼ିକ ପବନରେ ଧଡ଼ଧଡ଼ ହେଉଛି । ଅସାବଧାନ ପିଲା ଦୁଇଟା ତେଣିକି ନିଘା ଦେଉନାହାନ୍ତି । କେତେ କଷ୍ଟ ସେ ନ ସହୁଛି ଏଇ କୋଠାଟି ପାଇଁ । ମାମୁଁଙ୍କର କୋଠା, କିନ୍ତୁ ସେ କାମ ଉଠାଇବାକୁ ମୂଲିଆ, ମିସ୍ତ୍ରୀ ଓ ବଢ଼େଇଙ୍କ ସଙ୍ଗେ କାନ୍ଧକୁ କାନ୍ଧ ମିଶାଇ-ଦେଇଛି ।

ଗୋଟାଏ ଉତ୍ସାହ, ଗୋଟାଏ ଆଗ୍ରହ । ଏଇ ଘରଟା ପାଇଁ ସେ ତାର ପାଠବହିକୁ ଆଡ଼େଇ ଦେଇଛି । କାନ୍ଥ କେତେ ଉଠିଲା, ଆଜି ଛାତ ପଡ଼ିବ, ଝରକା ଓ କବାଟ ଝୁଲିବ, ରଙ୍ଗ ବୋଳାହେବ । ପାଖେ ପାଖେ ଅନୁପା । ପାଖେ ପାଖେ ନିରୁପା । ହସିହସି ବାଲି ଉପରେ ଲେଟି ଯାଉଛନ୍ତି । ପାଟି କଲେ ପାଖକୁ ଧାଇଁ ଆସୁଛନ୍ତି । ହାତ ଧରି ଟାଣୁଛନ୍ତି ।

ନୂଆ ମିସ୍ତ୍ରୀ, ନୂଆ ମୂଲିଆ ଓ ମୂଲିଆଣୀମାନେ ଭାବୁଛନ୍ତି, ବସନ୍ତ ବଡ଼ବାବୁଙ୍କର ପୁଅ । କୁହାକୁହି ହେଉଛନ୍ତି । ସେଇ ଧାରଣାରେ ସମ୍ମାନ ଦେଖାଉଛନ୍ତି ।

ନବଜିଆ ଭିକାରି ମହାରଣା, ମାର୍ଶଙ୍କର କଳାବଜାର କାରବାରର ବିଶ୍ୱାସୀ ସହାୟକ ବିଶ୍ୱନାଥ ମିସ୍ତ୍ରୀଙ୍କୁ କହନ୍ତି, ବିକ୍ରମକୁ ଶୁଣାଇ ଶୁଣାଇ, ଆନନ୍ଦବାବୁଙ୍କର ପୁଅ ନାହିଁ, ଭଣଜା ହେବ ଏ ସମ୍ପତ୍ତିର ମାଲିକ ରେ ନାଥ, ରଜାପିଲା ପରି ଟୋକା ଖଣ୍ଡେ ତ !

ବିଶ୍ୱନାଥ କହନ୍ତି, ବାବୁଙ୍କର ତିନି ଝିଅ ଅଛନ୍ତି ।

ଭିକାରି କହନ୍ତି, ଜାଣିଛି ରେ ମୁଁ ଜାଣିଛି । ଦକ୍ଷିଣ ଘଇଜର ନ୍ବେଷର ଏବେ ଉତ୍ତରରେ କେତେ ଘରେ ଚଳେଇଲେଣି । ଭଣଜାକୁ ଜୋଇଁ କଲେଣି । ମୁଁ ଭାବୁଚି, ନିଶ୍ଚେ ଆନନ୍ଦବାବୁ ଭଣଜା ହାତରେ ତାଙ୍କର ଏଇ ବଡ଼ଝିଅକୁ ଦେବେ । ବିକବାବୁଙ୍କ ପରି ପିଲାକୁ ଝିଅ ଦେଇ ପୁଅ ପାଇବେ । ହେଁ-ହେଁଃ, ଭାଗ୍ୟରେ ଥିଲେ ଜୁଟେ ।

ଅନୁପା ବାଁରେଇ ହୋଇ, କିଛି ନ ଶୁଣିଲା ପରି ଭିକାରି ଆଉ କଅଣ କହିବେ, ଶୁଣିବାକୁ ପାଖେଇଯାଏ । ବିକ୍ରମ ମନେ ମନେ ଆମୋଦିତ ହୁଏ । ବାହାର ଦେଖାଣକୁ ପାଟି କରେ, ଆଉ ଟିକଏ ରହ ମାର ଭିକାରି, ଝରକା ପଠା ଭଲ ଚିକ୍‌କଣ ହେଲାନ ।

ଦେଖିଲୁ ରେ ନାଥ, କାଲିକା ମାଲିକର କଥା ! ମୋ ଭବିଷ୍ୟ ବଚନ ଅନ୍ୟଥା ହେବ ନାହିଁ ।

ବିଶ୍ୱନାଥ କହନ୍ତି, କାମରେ ମନ ଦିଅ ଭିକାରିଭାଇ ! ଯାହା କହିବାକୁ ଲାଜ—

ହଁ ରେ ନାଥ ! ସବୁ ଲାଜ ବେଢ଼ି ଉପରେ ହୋମନିଆଁରେ ପୁରୋହିତେ ପୋଡ଼ିଦିଅନ୍ତି । ଆରେ ଭାଇ ! ଆଜି ଯାହା ଅଜବ, କାଲି ତାହା ସଜଡ଼ା । ଦେଖି ଦେଖି ମୁଁ ବୁଢ଼ା । ତୁ ସତାର କର । ଭୋଜ ଖାଇ ମନ ମଉଜରେ ହାକୁଟି ମାରି କଲ୍ୟାଣ କରିବୁ ।

ଏପାଖ ସେପାଖ ହୋଇ, ପାଣ୍ଡପେଠ୍‌ରେ ଉଦ୍ଧିକି ପବନକୁ ଖାତିର ନ କରି ଅନ୍ଧାର ଭିତରେ କାହାକୁ ଜଣ୍ଡୁଛି ସେ ଅନୁପା ?

ତାକୁ ?

ସକାଳ ହେଲେ ବଳେ ସେ ଦେଖିବ, ଯେଉଁ ଡାଳରେ ଦଉଡ଼ି ବନ୍ଧାଇ ସେ ମନମଉଜରେ ଦୋଳି ଖେଳୁଥିଲା, ଦୋଳି-ଗୀତ ବୋଲୁ-ଥିଲା, ସେହି ଡାଳରେ ଝୁଲୁଛି, ପବନରେ ଦୋହଲି ଦୋହଲି ଦୋଳି ଖେଳୁଛି ଗୋଟିଏ ହତଭାଗ୍ୟର ଶବ !

ଅନୁପା ଆଖି ପୋଛୁଛି । କାନ୍ଦୁଛି ? ମୁହଁରେ ସ୍ୱେଦକଣା ଅବା ବର୍ଷାବିନ୍ଦୁ ? ଅନୁପା ତାଙ୍କୁ ଖୋଜୁଛି ? ମୁଣ୍ଡ ହଲାଇ ଅଳପ ହସି ବିକ୍ରମ ଅନୁପାକୁ ମନ ଭିତରେ କହିଲା—ଆଜି ତୁ ପାଇବୁ ନାହିଁ ।

କାହାର ବଜ୍ରମୁଷ୍ଟିରେ ସହସା ବିକ୍ରମର ନିବିଷ୍ଟତା ଭାଙ୍ଗିଲା ।

ଆରେ ହେ ଚନ୍ଦନା, ହେ ଚେମଣା, ଗଲା ରେ ଗଲା । ସିମେଣ୍ଟବସ୍ତା-ଗୁଡ଼ା ଓଦା ହୋଇଗଲା । ଆରେ ହେ ଚନ୍ଦନା—!

ବିକ୍ରମର ଛାତି ଦାଉଁ ଦାଉଁ । ଆଉ ଡେରି କଲେ ଚଳିବ ନାହିଁ । ଶାରଙ୍ଗ ପାଖରେ ଗ୍ରେଟ ଟର୍ଚ୍ଚଲାଇଟ ଅଛି । ହେଇଟି, ସେ ସିମେଣ୍ଟ ଗଦା ଉପରେ ଆଲୁଅ ଫୋକାଇଲାଣି । ଗୋଦାମଘରର କଡ଼କୁ ପାଟି କରି କରି ବୁଲିଆସୁଛି ।

ବର୍ଷା କୁଣ୍ଡା ଝାଡ଼ୁଛି, ହେ ଚେମଣା ! ଆଛା ଅସରାଏ କୁଟିଦେଲେ ସବୁ ପଥର ହୋଇଯିବ । ଆସ ରେ ହେ—

ଶାରଙ୍ଗ ବୁଲିଆସିଲାଣି । ଆଲୁଅ ଖେଳାଇ ପାଟି କଲାଣି—କିଏ ରେ ସେଠି, ସେ ଆମ୍ବଗଛ କଡ଼ରେ ? ଗ୍ରେର, ଗ୍ରେର, ଗ୍ରେର !

ପୁରୁଣା ବ୍ୟାଟେରି । ଆଲୁଅ କ୍ଷୀଣ । ନାଳିଆ ଦିଶିଲାଣି । ଆମ୍ବଗଛ କଡ଼ରେ ବୁଲିଯାଉଛି । ଶାରଙ୍ଗ ଗୋଟାଏ ହାତରେ ଠେଙ୍ଗା ଟେକିଲାଣି । ପାଟି କରୁଛି । ଗେଟ୍ ଆଡୁ ସେମିତି ଗ୍ରେର, ଗ୍ରେର ରଡ଼ ଛାଡ଼ି ଧାଇଁ-ଆସୁଛନ୍ତି କେଉଁମାନେ । ହୋଇଥିବେ ସବୁ ଚନ୍ଦନା, ଚେମଣା, କୁସ୍ତିଆ ।

ମନର କାମନା ପୂରଣ ହୋଇପାରିଲା ନାହିଁ । ହେବାର ଆଉ ଆଜି ସମ୍ଭାବନା ନାହିଁ । ଅଳେଇଡ଼ା ପ୍ରାଣଟା ବୃଥାରେ ଅଟକିଗଲା । ହଁ, ନିଜର ପ୍ରାଣଟା ନିଜର ଆୟତ୍ତରେ । ନିଜର ହାତରେ । ଯେତେବେଳେ ମନ

ସେତେବେଳେ ତାକୁ ଫୋପାଡ଼ି ଦେଇ ହେବ । ଆଜି ଏଣୁ ପ୍ରବଳ ପବନ, ମେଘୁଆ ରାତି ତାର ସଂକଳ୍ପର କାଳ ହେଲା । ସବୁଦିନେ ଯୋଗ ସମାନ ନଥିବ ।

ଶାରଙ୍ଗ କ'ଣ ଠେଙ୍ଗା ଟେକ ପାଖେଇ ଆସିଲାଣି ! ମୁଣ୍ଡରେ ଯଦି ଅର୍ଘାତିଆ ପାହାରେ ଥିଏ, ମୁଣ୍ଡ ଛତୁ ହୋଇଯିବ । ମରଣ ହେବ ଯେ, ଅତି କଲବଲ ସେ ମରଣ !

ଦୁଇ ହାତ ଟେକ ଭୟବିକଳିଆ ଥରିଲା ସ୍ୱରରେ ବଙ୍କମ ରଡ଼ି ଛାଡ଼ିଲା, ଶାରଙ୍ଗ !

ଠେଙ୍ଗା ନଇଁଲା । ଶାରଙ୍ଗର ଆଲୁଅ ପଡ଼ିଲା ବଙ୍କମର ମୁହଁରେ । ସେ ଥକ୍କା ମାରି ଠିଆ ହେଲା ।

ବଙ୍କମ ପାଟେଖେଇଗଲା !

ଶାରଙ୍ଗ ମୁହଁ ଖୋଲିଲା—ବାବୁ !

ହଁ ରେ, ମୁଁ । ଆମ୍ବଡାଳରୁ ଦଉଡ଼ି ଖୋଲୁଥିଲି । ପାରିଲି ନାହିଁ । ସିମେଣ୍ଟ ବସ୍ତା ଭିଜିଯାଉଛି । ସେଡ୍ ଭିତରେ ରଖିବାକୁ ହେବ । ଚାଲ, ଅଣ୍ଟା ଭିଡ଼ ।

ମତେ ଉଠାଇଦେଲ ନାହିଁ, ବାବୁ ?

ତୋର ସେଇଁ କୁମ୍ଭକର୍ଣ୍ଣିଆଁ ଘୁଙ୍ଗୁଡ଼ିମରା ନିଦ ! ମେଘ ଗର୍ଜନକୁ ବଳି ପଡ଼ୁଥାଏ । ହଉ, ସେମାନେ ବି ଆସିଗଲେଣି । ଚାଲ, ଚାଲ ରଡ଼ି ନ ଛାଡ଼ିଥିଲେ ସେଇ ମଗରଙ୍କର କ'ଣ ନିଦ ଭାଙ୍ଗିଥାନ୍ତା ? ସାବାସ୍ ଶାରଙ୍ଗ !

ବାବୁ, ସେ ଦଉଡ଼ି ?

କାଲି ଖୋଲା ହେବ । ଆଜି ଲୋଡ଼ା ନାହିଁ । ରାତି ପାହିଆସିଲା । ମତେ ମିଶାଇ ଆମେ ପାଞ୍ଚଜଣ ହେଲୁଣି । କେଇଟି ବସ୍ତା ସିମେଣ୍ଟ କଣ ଆମେ ଟେକ ସେଡ୍ ଭିତରେ ରଖି ଦେଇ ପାରିବା ନାହିଁ ? ଚାଲ, ଅଣ୍ଟା ଭିଡ଼ । ତମର ମନ ଖୁସି କରି ମୁଁ ଇନାମ୍ ଦେବି ।

ସମସ୍ତେ କାମରେ ଲାଗିଗଲେ । ପବନର ବେଗ କମିଆସୁଥାଏ । କିନ୍ତୁ ବର୍ଷାର ବେଗ ବଢ଼ିବାରେ ଲାଗିଥାଏ । ପାଞ୍ଚ ଜଣ ଯୁଆନ ମଣିଷଙ୍କର ଜୀବନମୂର୍ଚ୍ଛା ପରିଶ୍ରମର ଫଳରେ, ଚୁଣ୍ଡା କେରିପାଲ ଓ ସିମେଣ୍ଟଝୁଡ଼ା ପୁରୁଣା ବସ୍ତାଗୁଡ଼ିକରେ ସିମେଣ୍ଟ ବସ୍ତା ଘୋଡ଼ାଇ ସତର୍କତାର ସହ ସେଇ ଭିତରକୁ ବୋହିନେବାର କୌଶଳରେ ସେଗୁଡ଼ିକ ଯତ୍ନରେ ଯଥାସ୍ଥାନରେ ଗଦାମାରି ରଖାଯାଇପାରିଲା ।

କାମ ସରିଲାବେଳକୁ ରାତି ପାହିସାରିଥିଲା ।

ପ୍ରବଳ ପବନ ଓ ଛେଚରା ବର୍ଷା ମାଡ଼ିଆସିଥିଲା । ମେଘଅନ୍ଧାର ପାହାନ୍ତି ରାତିର ଶେଷ ଭେଳକିର ଧାରଣା ମନକୁ ଆଣୁଥିଲା ।

ଓଦା ସର ସର ବସନ୍ତ ପୋର୍ଟିକୋ ଭିତରୁ ବୈଠକଘରର ମୋଜାଇକ୍ କରା ଚଉଡ଼ା ବାରଣ୍ଡା ଉପରକୁ ଉଠିଲା । ଘରର କବାଟ ଓ ଝରକାଗୁଡ଼ିକ ବନ୍ଦ ହୋଇଛି । ଆନନ୍ଦଚନ୍ଦ୍ର କଟକ ବାହାରକୁ ଗଲେ ସେ ଘର ବନ୍ଦ କରାହୁଏ । ଭିତରପାଖେ ତାଲା ପକା ହୁଏ । ଚାବି ଥାଏ ଇନ୍ଦିରାଙ୍କ ପାଖରେ ।

ଏକକାନିଆ ହୋଇ, ଲୁଗାର ଫେର ଫିଟାଇ, ବସନ୍ତ ମୁଣ୍ଡ ଓ ଦେହ ପୋଛିଲା । କାନ୍ଥ ପାଲଟି ଅପର ପାଖ ଚପୁଡ଼ି ଝାଡ଼ିବାରେ ଲାଗିଲା । ରାତି ଅନିଦ୍ରା, ମାନସିକ ଉତ୍ତେଜନା, ଦୈହିକ ପରିଶ୍ରମ ସର୍ବାଙ୍ଗରେ କ୍ଳାନ୍ତି ଆଣିଥିଲା । ମନରେ ଆଣିଥିଲା ଅବସାଦ ।

ସେ ଅନୁଭବ କରୁଥିଲା, ଯେଉଁ କୁଟୁମ୍ବର ଜଣେ ହୋଇ ସେ ଆଠ ବର୍ଷରୁ ଅଧିକ କାଳ କଟାଇଛି, ସେହି କୁଟୁମ୍ବରୁ ସେ ବାହାରିଆସିଛି । ସେ ପାଠ ପଢ଼ି ଶିକ୍ଷିତ ହେବାକୁ ଆସିଥିଲା । ସେ ପାଠ ପଢ଼ିଛି । ବିଶ୍ୱ-ବିଦ୍ୟାଳୟର ଡିଗ୍ରୀ ଲାଭ କରିଛି । ମାତ୍ର ସେ ଶିକ୍ଷିତ ହୋଇପାରିନାହିଁ । ସେ ମଣିଷ ହୋଇପାରିନାହିଁ । ସେ ଦୁଇଗୋଡ଼ିଆ ପଶୁଟିଏ ହୋଇ ରହିଯାଇଛି ।

ବାରଣ୍ଡାର କଡ଼ରେ କାଠର ଲମ୍ବା ବେଞ୍ଚଟିଏ ପଡ଼ିଥିଲା । ପବନରେ ଉଡ଼ିଆସୁଥିବା ବର୍ଷାର ଜଳକଣାରେ ସେହି ବେଞ୍ଚଟି ଓଦା

ହୋଇସାରିଥିଲା । ସେ ବେଞ୍ଚଟିକୁ କାନ୍ଥ କଡ଼କୁ ଘୁଞ୍ଚାଇଆଣିଲା । କାନରେ ପୋଛୁ ସେହି ଓଦା ବେଞ୍ଚ ଉପରେ ବସି ସେ କାନ୍ଥକୁ ଆଉଜିଲା । ଦେହ ଶୀତଉଥାଏ । ଲୋମମୂଳ ଟାଙ୍କୋରିଉଠୁଥାଏ । ପବନର ଫୁଙ୍କାରେ ସର୍ବାଙ୍ଗ ଥରିଉଠୁଥାଏ ।

ଇଁଟାକଲ-ଘରକୁ ଲାଗି ଛୋଟ ଛୋଟ ଦୁଇ ବଖରା ଟିଣଛୁଆଣି ଘର । ପାଚେରି କାନ୍ଥକୁ ଲାଗିଛି । ଇଟାକଲର କାମ ସରି ନ ଥିବାରୁ ଏବଯାଏ ସ୍କୁଲ୍ ହୋଇନାହିଁ । ପାଖଘରେ ଶାରଙ୍ଗ ଓ ଅନ୍ୟ ମୂଲିଆମାନେ ରହନ୍ତି ।

ଶାରଙ୍ଗ ଓ ତାର ସଙ୍ଗୀମାନେ ସେଇଠି ଆଶ୍ରା ନେଇଛନ୍ତି । କବାଟ ବନ୍ଦ କରିଛନ୍ତି । ଝରକା ଖୋଲା ଅଛି । ଘର ଭିତର ଉଜ୍ଜ୍ୱଳ ଦିଶୁଛି । ସେମାନେ ବୋଧହୁଏ ଚୂଲି ଜାଳି ନିଜକୁ ସେକୁଛନ୍ତି ।

ବର୍ଷାପାତର ଅବିରାମ ଧାର ଭିତରେ ବିକ୍ରମ ସେହି ଝରକା ଆଡ଼କୁ ଅନାଇଁ ରହିଲା । ତାର କ୍ଳାନ୍ତ ଆଖିପତା ମାଡ଼ି ମାଡ଼ି ପଡ଼ିଲା । ସେ ଆଖି ବୁଜିଲା ।

ସ୍ୱପ୍ନରେ ଶୁଣିଲା ପରି ତାର ମନେ ହେଉଥିଲା ସ୍ନେହବୋଳା ଡାକ—

ବିକ, ବିକ, ବିକ !

ସେ ଡାକ ଆସୁଥିଲା ଯେଉଁ ମୁହଁରୁ ସେ ମୁହଁଟି ତାର ଜନନୀର ପରି ! ଅସ୍ପଷ୍ଟ, କିନ୍ତୁ ବାରିହେଉଛି । ଅଭାବ ଅନଟନ ସେହି ସୁନ୍ଦର ମୁହଁରୁ ସବୁ ରକ୍ତ ଶୋଷିନେଇଛି । ରୋଗ ବଇରାଗ ସେହି ମୁହଁଟିକୁ ବିଷାଦଗ୍ରସ୍ତ କରିଛି । ସେହି ମୁହଁର ବୟସକୁ ଅନ୍ତତଃ ଦଶ ବର୍ଷ ଆଗେଇ ନେଇଛି । ସେହି ଝାପ୍ସା ମୁହଁଟି ସତେ କି ରୋଦନ କରୁଛି । ଆଖିର ପଲକପାତରେ ସେ ମୁହଁଟି ଅଦୃଶ୍ୟ ହେଉଛି । ପୁଣି ସେ ଉଭା ହେଉଛି । କୁହୁକକାଠି ଛୁଇଁଲା ପରି ସେହି ମୁହଁଟିର ବୟସ, ଆଭା ଓ ଦଶାଭା ବଦଳିଯାଉଛି ।

ସେ ମୁହଁ ତାର ଜନନୀଙ୍କର ପୁଣି ସେଇ ମୁହଁଟି ଅନୁଯାର । ବିଷାଦ-ମଳିନ : ଲୁହ ଛଳ ଛଳ ।

ବସନ୍ତର କୋହଲା କପାଳରେ କାହାର ଉଷ୍ମ କୋମଳ ପରଶ ଲାଗିଲା । କାନରେ ବାଜିଲା ସେଇ ସ୍ନେହବୋଳା ଡାକ—ବଙ୍କ, ବଙ୍କ !

ତାର ସପନ ଭାଙ୍ଗିଲା । ନିଦ ଭାଙ୍ଗିଲା । ସେ ଆଖି ମେଲାଇ ଚାହିଁଲା । ପାଖରେ ଇନ୍ଦିରା ଠିଆ ହୋଇଛନ୍ତି । ଅଳପ ନଇଁ ତା'ର କପାଳରେ ହାତ ସାଉଁଳୁଛନ୍ତି ।

ବସନ୍ତ ଉଠି ବସିଲା । ହାତପାପୁଲିରେ ଆଖି ପୋଛିଲା । ବଡ଼ାଙ୍କ ପରି ଇନ୍ଦିରାଙ୍କୁ ଓ ଚାରିଆଡ଼କୁ ଅନାଇଲା । କେତେବେଳରୁ ରାତି ପାହିଲାଣି । ଅଧରାତିଆ ବର୍ଷା ଛାଡ଼ିଯାଇଛି । ଉଜ୍ଜ୍ୱଳ ନିର୍ମଳ ଆକାଶରେ ଖଣ୍ଡି-ଖଣ୍ଡିକା ପାତଳ ବାଦଲ ରୂପରେଖ ଓ ରଙ୍ଗ ବଦଳାଇ ବଦଳାଇ ଧୀରେ ଧୀରେ ଭାସିଯାଉଛନ୍ତି । ଆଗର ସବୁଜ ପଡ଼ିଆ ଉପରେ ପ୍ରଖର ସୂର୍ଯ୍ୟକିରଣ ଚକଚକ ହେଉଛି । ପ୍ରକୃତି ହେଲାଣି କୋଳାହଳମୟ । କାଳରାତିର ଅବସାନ ହୋଇସାରିଛି ।

ଆଗରେ ଠିଆ ହୋଇଛନ୍ତି ଇନ୍ଦିରା, ତାର ମାଈଁ । ସ୍ନାନ ସାରି ଲୁଗା ପାଲଟି ସେ ବାହାରକୁ ଆସିଛନ୍ତି ପରା । ଓଦା କେଶ ମୋଟା ଧୋବ ଶାଢ଼ି ଉପରେ ବନ୍ଧା ହୋଇ ପିଠିତଳକୁ ଲମ୍ବିଛି । ମୁହଁରେ ପ୍ରଫୁଲ୍ଲତା, ଆଖିରେ କୋମଳତା ଓ ଓଠରେ ସହାନୁଭୂତି ପ୍ରକାଶିଲା ମଧୁର ସ୍ମିତ । ସେଇ ତ ତାର ନଅବର୍ଷ ତଳର ସ୍ନେହମୟୀ ମାଈଁ, ମୁଣ୍ଡ ଆଉଁସି ଯିଏ ଗରିବ ଭଣଜା ପିଲାଟିକୁ ପାଖରେ ଆଶ୍ରା ଦେଇଥିଲେ !

ବସନ୍ତ ଠିଆ ହେଲା । ଏତେ ଡେରିଯାଏ ଶୋଇପଡ଼ିଥିବାରୁ ଟିକିଏ ଲାଜରା ହେଲା ।

ଇନ୍ଦିରା କହିଲେ, ମୁଁ ଶାରଙ୍ଗଠାରୁ ସବୁ ଶୁଣିସାରିଲିଣି, ବାବୁ ! ତମେ ନିଜେ ଯଦି ଲାଗି ନ ଥାନ୍ତ, ମୂଲିଆ କ'ଣ କାମ କରିପାରିଥାଆନ୍ତେ ? ସବୁ ନଷ୍ଟ ହୋଇଥାନ୍ତା । କେତେ କ୍ଷତି !

ବଳଦମ ଉତ୍ତର ଦେଲା, ସେମାନେ ମଧ୍ୟ ଜୀବନମୂର୍ଚ୍ଛା ଖଟିଛନ୍ତି, ମାଈଁ ! ପବନ ଓ ବର୍ଷାକୁ ମାନନାହାନ୍ତି । ସେମାନଙ୍କୁ ଇନାମ୍ ଦେବା ।

ଯାହା ତୁମେ ଉପଯୁକ୍ତ ମଣୁଛ ସେମାନଙ୍କୁ ଦେବା । ତମେ ଆମକୁ ନ ଉଠାଇ ଓଦାଲୁଗା ପିନ୍ଧି ଖୋଲା ବାରଣ୍ଡାରେ ଶୋଇପଡ଼ିଲ । ଅନ୍ୟାୟ କରିଛ । ଦେହ ଖରାପ ହେଲେ ନଜେ ଭୋଗିବ । ହଉ, ଭିତରକୁ ଯାଅ । ନିତ୍ୟକର୍ମ ଶେଷ କର । ଯେଉଁ ଔଷଧ ଖାଇଲେ ଦେହର ମଳାର ଛାଡ଼ିବ, ସରଦି କଟିବ, ମୁଁ ତମକୁ ଦେବି । ଆଜି ସାଲୁନ୍‌କୁ ଯାଇ ଭଦ୍ର ହୋଇ ଆସିବନି ! କେମିତି ବାଇଆ ବାଉଳ ଗୋରୁମରଙ୍କ ପରି ଦିଶୁଛ ! ଆସ—

ଇନ୍ଦର ମୁରୁକେଇ ହସି ପୋର୍ଟିକୋକୁ ଓହ୍ଲାଇଲେ । ଖଞ୍ଜା ଭିତରକୁ ନ ଯାଇ ଗୋଦାମଘରଆଡ଼େ ଚାଲିଗଲେ ।

ବଳଦମ ଖଞ୍ଜା ଭିତରକୁ ପଶିଲା । ଯାହାକୁ ଦେଖିବାକୁ ତାର ଆଖି-ଡୋଳା ଅଗଣାର ଚାରିଆଡ଼େ ବୁଲିଗଲା, ସେହି ଅନୁପା ଦୃଷ୍ଟିରେ ପଡ଼ିଲା ନାହିଁ । ଇନ୍ଦରଙ୍କର ଶୋଇବାଘର ବାରଣ୍ଡା ଉପରେ ସାନନ୍ଦ ତିନଚକିଆ ସାଇକଲ ଚଳାଉଛି । ସୁରୂପା ପଛରୁ ଓଟାର ଧରିଛି । ଜୋର୍‌ରେ ନ ଚଳାଇବାକୁ ସେ ସାନନ୍ଦକୁ ସତର୍କ କରୁଛି । କିନ୍ତୁ ସେ ଜିଦ ଧରି ପ୍ରତିବାଦ କରୁଛି । ବଡ଼ପାଟି କରି କାନ୍ଦୁଛି ।

ସାମନାର ବାରଣ୍ଡାରେ, ସିଢ଼ି ପାଖ ବାଠଘର ଆଗରେ, ନିରୁପା ମୋତିମାଳା ଆଈଙ୍କର ହାତ ଧରି ଟାଣୁଛି । ସେହି ହାତଟି କୋଥଳୀ ଭିତରେ ପଶିଛି । ବୋଧହୁଏ ମାଳା ଗଡ଼ାଇବାକୁ ଚେଷ୍ଟା କରୁଛି । ନିରୁପାର ଖୋଲା କେଶ ଧୋବ ଫରଫର ଫ୍ରକ୍ ଉପରେ ଦୋହଲୁଛି ।

ଅଗଣା ମଝିରେ ବଳଦମର ଗୋଡ଼ ଥଙ୍ଗ ଥଙ୍ଗ ହେଲା । ମାଟେଇ ମାଟେଇ ଆଗେଇଲା । ମୋତିମାଳା ଆଈ ହସି ହସି କହୁଛନ୍ତି, ଆଲୋ ରହ ଲୋ ଟୋକୀ, ବାରିଆଡ଼ ଅଗଣାରେ ବୁଢ଼ୀ ବସୁମତୀ ଅପା କଅଣ କରୁ-ଛନ୍ତି ମୁଁ ଦେଖିଆସେଁ । ବୁଢ଼ୀ ତ ଠଳଠଳ ହେଉଛନ୍ତି ।

ଅପା ଉପରେ ଭୂନ ଭୂନ କାନ୍ଦୁଛୁ, ଆଣ୍ଠ ପଗ୍ଭରଲେ କଛୁ କହୁନାହିଁ, ଓଲଟି ହସିଦେଉଛୁ । ଭୁ ପଗ୍ଭରଲେ ସେ ନଷ୍ଟେ କହ୍ବ । ଗ୍ଭତରେ ସେ ମୋଟେ ଶୋଇନାହିଁ । ମତେ ବ ଶୁଆଇଦେଇନାହିଁ । ଅନ୍ଧାର ଗ୍ଭତ ଆଜ ଝଡ଼ ବରଷାକୁ ତାର ଏତେ ଡର ଯେ—

ହେଇଟି, ବଙ୍କମ ଆସିଲାଣି । ତାକୁ ସଙ୍ଗରେ ନେଇ ଯା ନରୁ ! ସେ ଅନୁପାକୁ ଭୂନ କର୍‌ବ । କାହିଁକ କାନ୍ଦୁଛୁ ସେ ଏଇ ବାବାଜୀ ଟୋକାକୁ କହ୍ବ । ମୁଁ ଦେଖେଁ, ବସୁମତ୍ତ ଅପା କ’ଣ କରୁଛନ୍ତ ।

ମହିଦୁଆରେ ବଙ୍କମର ପାଦ ଅଟକଥିଲ । ଭୟରେ ତାର ଅନ୍ତରାତ୍ମା ଥରଉଠିଥିଲ । ମୋତମାଳା ଆଣ୍ଠ ବାଉଆଉର ଅଗଣାକୁ ଗ୍ଭଲ-ଯାଇଥିଲେ । ନରୁପା ବାରଣ୍ଡା ଉପରେ ଠିଆ ହୋଇ ରହ୍ଥିଲ । ବୋଧହୁଏ ସେ ବଙ୍କମକୁ କଣ କହ୍ବାକୁ ଅପେକ୍ଷା କରିଥିଲ ।

ବଙ୍କମ ତାର ହଂସାଉଡ଼ା ଉଦ୍‌ବେଗକୁ ଆୟତ୍ତ କର ବାରଣ୍ଡା ଉପରକୁ ଉଠିଲ । ବସ୍ମିତା ନରୁମାର ମୁହଁକୁ ଅନାଇଁ ଓଠରେ ମଳନ ହସ ଚହ-ଟାଇଲ । ବାରଣ୍ଡାର ଦୁଇ ପାଖେ ନସ୍ତ ଦୃଷ୍ଟି ଫେଖାଇ କୁଣ୍ଠିତ କଣ୍ଠରେ ଧୀରେ ପଗ୍ଭରଲ, କଣ ହେଲ, ନରୁ ?

ପବନ ଓ ବର୍ଷାରେ ଗ୍ଭତ-ପାହାନ୍ତାରେ ବଙ୍କମ ଓ ମୂଳଆମାନେ ଯେଉଁ ଅସାଧ ସାଧନ କରିଥିଲେ, ଘରର ସମସ୍ତେ ଜାଣି ସାରିଥିଲେ । ଅନୁପା ଓ ନରୁପାଙ୍କୁ ଏହା ଅଜଣା ନ ଥିଲ ଯେ ବଙ୍କମ ଓଦା ଲୁଗା ପିନ୍ଧ ହେମାଳଆ ପବନ ଓ ବର୍ଷାରେ ବାହାର ବାରଣ୍ଡାରେ ଗ୍ଭତ ଯାପନ କରିଛୁ । ନରୁପା କହ୍ଲ, ଗ୍ଭତସାର ଅପା ମୋ ସଙ୍ଗରେ ବାରଣ୍ଡା ଉପରେ ଏକଡ଼ ସେକଡ଼ ହେଉଥିଲ, ବଙ୍କ ଭାଇ !

କାହିଁକ ଲେ ?

ଅପାକୁ ଡର ମାଡ଼ୁଥିଲ ପର ! ସେ ଭାର ଡରୁଆ । ଅନ୍ଧାର ଗ୍ଭତ, ବଜୁଳ, ଘଡ଼ଘଡ଼, ପବନ ଓ ବର୍ଷା ମତେ ଦେଖିବାକୁ ଭଲ ଲଗେ । ଡର କାହିଁକ ବା ?

ତୁ ନିର୍ଭୟ ପିଲା । ଖାଲି ବୁଢ଼ୀ ଅସୁରୁଣୀ ନାଁ ପଡ଼ିଲେ କାନ୍ଦନ୍ତିନେ ପଶୁ । ଅନୁପା କାନ୍ଦୁଛି କାହିଁକି ?

କାନ୍ଦୁଛି, ପଢ଼ୁଥିଲେ ପୁଣି ହସୁଛି । ନିତ୍ୟକର୍ମ ସାରି, ବିସ୍କୁଟ ଓ ଚା ଖାଇ ଖଟ ଉପରେ ଶୋଇ ସେ ଗପ ବହି ପଢ଼ୁଛି, ଆଉ ସକେଇ ହେଉଛି । ତମେ ଆସ ଦେଖିବ ।

ମୁଁ ନିତ୍ୟକର୍ମ ସାରିନାହିଁ । ମୋ ବୋଉଙ୍କର ଦେହ ଭଲ ନାହିଁ ବୋଲି ସେ ଲେଖିଥିଲେ । ଔଷଧ ପାଇଁ କବିରାଜଙ୍କ ଘରକୁ ଯିବି । ଏ ବେଳା ଯଦି ମାମୁଁ ଫେରନ୍ତି, ଉପରବେଳା ଔଷଧ ନେଇ ମୁଁ ଆମ ଗାଁକୁ ଯିବି । ମୋର ତରତର ବେଳ । କି ବହି ଅନୁପା ପଢ଼ୁଛି ?

ଟମ୍‌କକାଙ୍କ କୁଟୀର ।

ବୁଝିଲି । ସେଇ ବହି ତାକୁ କନ୍ଦାଉଛି, ପୁଣି ହସାଉଛି । ଯା ତାକୁ କହିବୁ, ସେ ଆଉ କାନ୍ଦିବ ନାହିଁ । କାଲିକାର କାଳରାତି ପାହିସାରିଛି । ଅନ୍ଧାର ନାହିଁ । ବର୍ଷା ତୋଫାନ ବି ନାହିଁ । ଆକାଶ ପରିଷ୍କାର ହେଲାଣି । କେତେବେଳୁ ଖରା ପଡ଼ିଲାଣି । ଆଉ କାହିଁକି ଡର ? ଯା କହିବୁ—

ଖୁସି ହୋଇ, ତାର ସରଳ, ସୁନ୍ଦର ସ୍ୱାସ୍ଥ୍ୟଭରପୂର ନିଷ୍ପାପ ମୁହଁରେ ଅମଳିନ ଗୋଲାପଫୁଲର ଆଭା ଚହଟାଇ ନିରୁପା ଧାଇଁ ଧାଇଁ ପାହାଚ ପରେ ପାହାଚ ଡେଇଁ ଉପରକୁ ଚାଲିଗଲା ।

ସେ ଅଦୃଶ୍ୟ ହେଲା । ତାର ଗତିକୁ ବିକ୍ରମ ଚାହିଁରହିଥିଲା । ଭାବୁଥିଲା, ଅନୁପା ବୁଝିବ, ନିଶ୍ଚୟ ବୁଝିବ । ସେଇ ସରଳ ଓ ଦୁର୍ବଳ ଶିଶୁଟି ବଢ଼ି ବଢ଼ି ନଅବର୍ଷ ପରେ ଜଣେ ନିପୁଣ ଅଭିନେତ୍ରୀ ହୋଇସାରିଛି । ଏହା ଅନ୍ୟ କେହି ଜାଣୁ ବା ନ ଜାଣୁ, ତାକୁ ଅଜଣା ନାହିଁ ।

ଆହୁରି କେତେ ଶାଣୁଆ ପ୍ରଶ୍ନ ତାର ମନକୁ ବିନ୍ଧିବାକୁ ଲାଗିଲା । ସେ ତଳକୁ ମୁହଁ କରି ନିଜର ପ୍ରକୋଷ୍ଠ ଭିତରେ ପଶି କବାଟ କିଳିଲା । ବିଜୁଳି ଆଲୁଅ ଜାଳିଲା । ଘରର ଚଟାଣ ଉପରେ, ତକ୍ତପୋଷ କଡ଼ରେ ଆଈବୁଢ଼ୀଙ୍କର ମେଞ୍ଚା ମେଞ୍ଚା ଛେପ, ଖଙ୍କାର, ସିଙ୍ଗାଣି ପଡ଼ିଛି । ଦୁର୍ଗନ୍ଧ

ବାହାରୁଛି । ସେଇ ଚଟାଣ ଉପରେ ତାର ବୋଉଙ୍କର ଇନ୍‌ଲ୍ୟାଣ୍ଡଚିଠି-
ଖଣ୍ଡିକ ପଡ଼ିଛି !

ବଙ୍କିମର ଦେହରେ ଓଦାଲୁଗା ଶୁଖିସାରିଥିଲା । ଲୁଗା ପାଲଟିବା ଲୋଡ଼ା ହେଲା ନାହିଁ । ସେ ନଇଁପଡ଼ି ଚିଠିଖଣ୍ଡି ଉଠାଇଲା । ନିଜକୁ ନିଜେ ପଚାରିଲା, ଟେବୁଲର ଡ୍ରୟର ଭିତରୁ ଚିଠିଖଣ୍ଡିକ ପଦାକୁ କିଏ କାଢ଼ିଲା ? ତାର ଝର କଲମକୁ ଟେବୁଲ ଉପରେ ଖୋଲି ପକାଇଛି କିଏ ?

ବଙ୍କିମ ଟେବୁଲ ପାଖକୁ ବେତବୁଣା ଚଉକିଟି ଓଟାରି ଆଣିଲା । ତହିଁରେ ବସି ଚିଠିଖଣ୍ଡି ଖୋଲି ପରୀକ୍ଷା କଲା । ଦେଖେ ଚିଠିଟିର ଅନେକ ସ୍ଥାନରେ କଡ଼ରେ କିଏ ଗାର ପକାଇଛି । କେତେ ଜାଗାରେ ବୁନ୍ଦା ବୁନ୍ଦା ପାଣିର ଦାଗ ଲାଗିଛି । ଏବଯାଏ ଫଉଲା ଅଂଶ ଶୁଖି ନାହିଁ ।

କାହାର ଏ ସାହସ ? କାହାର ଏ ସହାନୁଭୂତିର ଲୋତକବିନ୍ଦୁ ?

ଅନୁପା ! କେତେବେଳେ ସେ ଏ ଘରଭିତରେ ପଶିଥିଲା ? କାହିଁକି ସେ ବଙ୍କିମର ଡ୍ରୟର୍ ଅଣ୍ଡାଳୁଥିଲା ତାର ନେଜେମାଆଙ୍କ ଉପସ୍ଥିତିରେ ? ଚିଠିଖଣ୍ଡି ପଢ଼ି ତାଙ୍କୁ ଶୁଣାଉଥିଲା କି, ସେଇ ହୁଂସୁକା ବୁଢ଼ୀ ଅସୁରୁଣୀକୁ ?

ବଙ୍କିମ ତା'ର ବୋଉଙ୍କର ଚିଠିରେ ଆଖି ବୁଲାଇଲା ।

——ପେଟ ପାଇଁ, ଓ ତୋ'ର ପାଠପଢ଼ା ପାଇଁ ତୋର ବାପା ବୁଢ଼ା ବୟସରେ, ଭଙ୍ଗା ସ୍ୱାସ୍ଥ୍ୟରେ କାହିଁ ଯାଇ କେତେ ଦୂରରେ ରହିଛନ୍ତି । ଆଖି ପାଉନାହିଁ । ନିଜ ହାତରେ ଠେକଣ ବସେଇ, ଚୂଲି ଫୁଙ୍କି ରୋଷେଇ କରୁଛନ୍ତି । କିଏ ତାଙ୍କର ମନ ଜାଣି ଖାଇବାକୁ ଦେବ ? ରୋଗରେ ଯାଣ୍ଟି-ହେଲେ, ଡାକ୍ତରଖାନାରେ ଯାଇ ପଡ଼ିଲେ । ଆମେ କାଳେ ବ୍ୟସ୍ତ ଅଧୀର ହେବୁଁ, ସେଥିପାଇଁ ଚିଠି ଖଣ୍ଡେ ଦେଲେ ନାହିଁ । ସବୁ ଦୁଃଖକଷ୍ଟ ଆପେ ଅଙ୍ଗେ ଭେଦାଇଲେ ।

—କରଜରେ ବୁଡ଼ିଗଲେଣି ବୋଲି ଲେଖିଥିଲେ । ତୋ ପାଖକୁ ସେ ଚିଠି ଦେଇଛନ୍ତି, ପଢ଼ିବୁ । ତାଙ୍କର ସେହି ଚାକିରି ଗ୍ରାମରେ ଦେବନାଥବାବୁ ଅତି ଉତ୍ତମ ଲୋକ । ଜାଣି ତ ତାଙ୍କର ଘରଣୀ ସ୍ୱର୍ଗଗା । ସେମାନେ ବିଦେଶ ଜାଗାରେ ତୋ ବାପାଙ୍କର ସେବା କରି ନ ଥିଲେ, ଯତ୍ନ ନେଇ ନ ଥିଲେ, ଅବସ୍ଥା କଅଣ ହୋଇଥାନ୍ତା ବର୍ତ୍ତିରଲାବେଳକୁ ଗୁଡ଼ି ଥରିଉଠୁଛି ।

—ଉଲୁପୀ ତୋ ବାପାଙ୍କ ମନକୁ ପାଇଛି । ତାଙ୍କ ଚିଠିରେ ଉଲୁପୀର ଯେଉଁ ରୂପଗୁଣ ସେ ବର୍ଣ୍ଣନା କରିଛନ୍ତି ତାକୁ ପଢ଼ି ମୁଁ ମୁଗ୍ଧ ହୋଇଛି । ଆମ ଘରକୁ ସେମିତିକା ସଗୁଣା ଥିବା କାମିକା ସ୍ନେହୀ ବୋହୂଟିଏ ଲୋଡ଼ା । ସୁଖଦୁଃଖକୁ ଆପଣାର କରି ସେ ଶାଗମୁଗ ଖାଇ ଚଳିପାରିବ । ତୋ ଝିଅଟିର ମନକୁ ଚିହ୍ନିଅଛି ପାଇଛି । ମୁଁ ରାଜି ହୋଇ ତୋ ବାପାଙ୍କୁ ଲେଖି-ଦେଇଛି । ତୁ ବି ତୋ ସମ୍ମତି ଜଣାଇଦେବୁ ।

—କେଉଁ ଏବେ ବାହାଘର ଏତେ ଜଲଦି ହୋଇଯାଉଛି ? କେଉଁଠି ଚାକିରି ବାକିରି କରି ଭଲ ରୋଜଗାର କରିବୁ । ତା ପରେ ଯାଇଁ ବାହାଘର । ଖାଲି ଜବାବ ହୋଇ, ସମ୍ବନ୍ଧର କଥା ପଡ଼ିରହିବ । ତୁ ବଡ଼ ଚାକିରି ପାଇବୁ ବୋଲି ଲୋକେ କୁହାକୁହି ହେଲେଣି । ଆଗ ସେହି ବନ୍ଧକ-ବନ୍ଧକ ଦିଆ-ହୋଇଥିବା ଆମର ଘରଥାଳି ଜମି ଦୁଇମାଣକୁ ମୁକାଳି ଆଣିବା । ସେଇଠୁ କରଜ ଶୁଝା ହେବ । ତମ ପଣଅଜାଙ୍କ ଅମଳର କମଳୁଠ ପାଞ୍ଚଶେଣୀଆ ଘରର ଯାହା ଅବସ୍ଥା ତ ଦେଖିଯାଉଛୁ । ତାକୁ ସଜାଡ଼ିବାକୁ ହେବ । ବୋହୂଟିଏ ଆସି ଚଳିବ କେମିତି ?

—ମୁଁ ଭଲ ଅଛି ଯେ ଦେହଟା କେମିତି ନରକୁଆ ଶେତା ହୋଇଯାଉଛି । ପାଦ ଦିଓଟି ସାମାନ୍ୟ ଫୁଲୁଛି । ହାତ ପାପୁଲି ଓ ଗୋଡ଼-ତଳିପା ଖାଲି ଜଳୁଛି । ଆସିଲାବେଳେ କବିରାଜଙ୍କଠାରୁ କଅଣ ଔଷଧ ଆଣିବୁ । କେତେଦିନ ହେଲା ତତେ ଦେଖିନାହିଁ ରେ ବାପ, ଆଖି ମୋର ଛଟପଟକଲି ହେଉଛି । ପାଞ୍ଚ ଛଅ କୋଶ ବାଟ । ପିଲାଟିମାନଙ୍କୁ ଦେଖିବାକୁ

ଯାଇପାରୁନାହିଁ ରେ ବାପ ! ଦେହ ତ ଭଲ ରହୁନାହିଁ, ପୁଣି ଖାଲି ହାତରେ କେମିତି ଯିବ ?

ବସନ୍ତର ଆଖିରେ ଲୋତକ ପୂର୍ଣ୍ଣ ହେଲା । କେତେ ବିନ୍ଦୁ ଝଡ଼ିପଡ଼ୁଥିଲା ଚନ୍ଦନାଙ୍କ ପତ୍ର ଉପରେ । ସେ ଆଉ ପଢ଼ିପାରିଲା ନାହିଁ । ପତ୍ରଟିକୁ ଭାଙ୍ଗି ସେ ପୁଣି ଟେବୁଲର ଡ୍ରୟାର ଭିତରେ ରଖିଲା ।

ବହିଗୁଡ଼ିକ ଟେବୁଲ ଉପରେ, ଅନ୍ୟମନସ୍କ ଭାବରେ ସଜାଡ଼ି ରଖୁଁ ମନ ଭିତରେ ନିଜକୁ ନିଜେ ସେ କହିଲା, ଏ ଧର୍ମଗ୍ରନ୍ଥ, ଆଉ ଦର୍ଶନ-ଶାସ୍ତ୍ର ମୋର ଆବଶ୍ୟକ ନାହିଁ ଲୋ ବୋଉ ! ସେଗୁଡ଼ାକ ମୋତେ ସତ୍ୟ-ପଥେ ଧର୍ମପଥେ ନେଇପାରିନାହାନ୍ତି । ସକଳ ତୀର୍ଥ ମୋର ତୋ'ରି ଚରଣତଳେ, ଯେଉଁ ପିତା ମୋତେ ମଣିଷ କରିବାପାଇଁ ନିଜକୁ ତିଳତିଳ କରି ଜଳାଇଦେଇଛନ୍ତି ତାଙ୍କରି ପାଦତଳେ । ତମରି ସେହି ପାଦର ଧୂଳି ମୋର ଶରଧାବାଲିରୁ ବଳି ପବିତ୍ର ।

ସେହିଦିନ ଅପରାହ୍ଣରେ ଆନନ୍ଦଚନ୍ଦ୍ର ସୁନ୍ଦରଗଡ଼ରୁ ଫେରିଆସିଲେ । ତାଙ୍କର ଅଭିଯାନ ସଫଳ ହୋଇଥିଲା । ସୁନ୍ଦରଗଡ଼ ଜିଲାର କେତେ ସ୍ଥାନରେ ସେ ଉତ୍କୃଷ୍ଟ ଧରଣର ମାଙ୍ଗାନିଜ ଧାତୁର ଖଣିର ସନ୍ଧାନ କରିପାରିଥିଲେ । ଏହା ପରର ପଦକ୍ଷେପ ହେଉଛି ପ୍ରସପେକ୍‌ଟିଂ ଲାଇସେନସ୍ । ସେ ଓ ତାଙ୍କର ବନ୍ଧୁ ଜାଣନ୍ତି ଯେ କାମଟି ବେଶ୍ ଅସାଧ୍ୟ । କିନ୍ତୁ ମୁକ୍ତ-ହସ୍ତରେ ଧନ ଖରଚ କଲେ, ମନପ୍ରାଣ ଦେଇ ଚେଷ୍ଟା କଲେ ସବୁ ଅସାଧ୍ୟ ସାଧନ କରିହେବ ।

ସେହିଦିନ ସଞ୍ଜରେ, ତାଙ୍କର ବୈଠକଘରେ ସେ ତାଙ୍କର ଯୋଜନା ସଂକ୍ଷେପରେ ବୁଝାଇ କହୁଥିଲେ । ତାଙ୍କର ଯୋଜନାକୁ ବୁଝିବାକୁ ଚେଷ୍ଟା କରୁଥିଲେ ଇନ୍ଦିରା, ବସନ୍ତ ଓ ଅନୁପା । ଦାଣ୍ଡପାଖର କବାଟ ବନ୍ଦ କରି ହୋଇଥିଲା । ଆଲୁଅ ଜଳୁଥିଲା । ବିଜୁଳିପଙ୍ଖା ଧୀରମନ୍ଥର ଗତିରେ

ବୁଝିଥିଲ । କାନ୍ଥରେ ଝୁଲା ହୋଇଥିବା ଦେବାଦେବୀ, ରାଜନୈତିକ ବୀର ଓ ସ୍ୱୟଂ ଆନନ୍ଦଚନ୍ଦ୍ରଙ୍କର ବଡ଼କରା ଛବି ଓ ଫଟୋଗୁଡ଼ିକ ଆନନ୍ଦଚନ୍ଦ୍ରଙ୍କର ଯୋଜନାକୁ ଏକଧ୍ୟାନରେ ବସି ଶୁଣୁଥିଲେ । ବିକ୍ରମ ଭାବୁଥିଲା, ବୋଧହୁଏ ସେମାନେ ପସନ୍ଦ କରୁଥିଲେ । ଆଶୀର୍ବାଦ କରୁଥିଲେ ।

ବିକ୍ରମ ଆଜି ଜଣେ ନୂଆ ମଣିଷ ପରି ଦେଖାଯାଉଛି । ଇନ୍ଦିରାଙ୍କର ସ୍ନେହଶୀଳ ଉପଦେଶ ମାନ ସେ ଆଜି ଭଦ୍ର ହୋଇଛି । ମୁହଁଟି ଦିଶୁଛି ଚିକ୍-ଚିକ । ମୁଣ୍ଡର କେଶକୁ ସେ ଅବହେଳା କରିନାହିଁ । ଘଞ୍ଚ କଳା କେଶ ବାମ-ପାଖ କପାଳକଡ଼ରୁ ଦୁଇପାଖକୁ କୁଣ୍ଡା ହୋଇଛି । ଅଧିକ ତେଲର ପ୍ରଭାବରେ ସେ କେଶ ଚିକଚିକ ଦିଶୁଛି । ପିନ୍ଧିଛି ଧୋବ ଲୁଗା । ଦେହରେ ପରିଷ୍କାର ଧୋବ କାମିଜ୍ । ତାର ରୁଚି ପରିବର୍ତ୍ତନକୁ ସମସ୍ତେ କୁତୁହଳୀ ହୋଇ କଣେଇଁ ଚାହୁଁଛନ୍ତି । କାରଣ ଦେଖିବାକୁ କେହି ଆବଶ୍ୟକ ମଣିନାହାନ୍ତି ।

ବିକ୍ରମ ଗମ୍ଭୀର ହୋଇ ତାର ମାମୁଁଙ୍କର କଥା ଶୁଣୁଛି । ସବୁ ଗ୍ରହଣ କଲା ପରି ମୁଣ୍ଡ ସାମାନ୍ୟ ହଲାଉଛି । ଧନ ଅର୍ଜନର ନୂଆ କୌଶଳ ଶିଖୁଛି ।

କହୁଛନ୍ତି ଆନନ୍ଦଚନ୍ଦ୍ର, ମଞ୍ଜି ନ ବୁଣିଲେ ଫଳ ଫଳେ ନାହିଁ, ଇନ୍ଦିରା ! ଆମର ପୁରୁଣା ମାଲିକ ଓ ତାଙ୍କର ଭାଇ ବିରାଦରଙ୍କର ବେପାର କୌଶଳ ଏତିକ ଥିଲା । ଏବେ ସେହି କୌଶଳ ଅନ୍ୟମାନେ ପ୍ରୟୋଗ କରୁଛନ୍ତି । ଭବିଷ୍ୟତରେ ବି କରିବେ । ଯେଉଁମାନେ ପାର୍ଟିରେ ଅଛନ୍ତି, ଯେଉଁମାନେ ଭବିଷ୍ୟତରେ ପାର୍ଟିକୁ ଆସିବାର ସମ୍ଭାବନା, ସମସ୍ତଙ୍କ ହାତରେ ଧନ ଥୋଇବାକୁ ହେବ । କେହି ଜାଣିବେ ନାହିଁ । ସବୁ ଚୁପ୍‌ଚାପ୍, କିନ୍ତୁ ସମସ୍ତେ ଜାଣିଥିବେ ।

ନୂଆ ଆଉ କଅଣ କହିଲ ? ତମର ବେପାର ପାଇଁ ମୁଁ ଓ ଅନୁପା କଅଣ ନ କରିଛୁ ଯେ ! ତମେ କହୁଥିଲ, ସେମାନଙ୍କ ଭିତରୁ କେହି କେହି ହାତ ଝାଡ଼ି ସଫା କଲେ । ଧରିଛୁଆଁ ଦେଲେ ନାହିଁ । ସବୁ ଧନ ପାଣିରେ ପଡ଼ିଲା ।

ପାଣିରେ ପଡ଼ିବ କାହିଁକି ଇଦ୍ରିସ ! ଆମ ପରି ପାଞ୍ଚ ବେପାରି ଯେଉଁ· ମାନେ କରିଛନ୍ତି, ଷଡିର ଗୃହିଣୀ, ଜିନିଷର ଦର ବଢ଼ାଇ ଆମେ ଲାଭ ଉଠାଇନେବା । ସମସ୍ତେ ସେଇଆ କରୁଛନ୍ତି । ଯିଏ ନ କରିବ, ତାକୁ ଲୋକେ କହିବେ ନିର୍ବୋଧ । ତା'ର ବେପାର ବୁଡ଼ିବ ।

ଇଦ୍ରିସ କହିଲେ, କାଲି ଦୁଇଟଙ୍କା ନ ଦେଲେ ଆଉ ନିଶୋଳା ଦୁଧ ଦେଇପାରିବ ନାହିଁ ବୋଲି ଗଉଡ଼ ଆଜି କହିଦେଇଗଲା । ସବୁ ଜିନିଷ ମହଙ୍ଗା ହେଲାଣି । ବଜାରକୁ ଗଲେ ହାଲୁକ ଶୁଖିଯାଉଛି । ସବୁ ବେପାରୀ ବାଦବୁଦ୍ଧିଆ ହୋଇ ଧନୁଦ୍ଧନ ଦର ବଢ଼ାଇଲେ । ଖାଉଟିଆ କପରି ଚଳିବେ କହ ତ !

ଆନନ୍ଦ ହସିଲେ । କହିଲେ, ତମ କଥାର ଜବାବ ଆମପରିକା ବେପାରୀଦଳ ଦେଇପାରିବେ ନାହିଁ । ବେପାରର ରଜା ଯେଉଁମାନେ, ଠିକଣାମୁଣ୍ଡରେ ଯେଉଁମାନେ ମାଲ ଲୁଚାଇ କଳାବଜାର କରୁଛନ୍ତି, ସେମାନଙ୍କୁ ପଚାରିଲେ ସେମାନେ କି ଉତ୍ତର ଦେବେ, ଜାଣିଛ ?

ଇଦ୍ରିସ ତାରି ମାମୁଁଙ୍କର ମୁହଁକୁ ବଲବଲ କରି ଚାହିଁଲା । ସେ ଜାଣେ ଜିନିଷପତ୍ରର ଦର ଧନୁଦ୍ଧନ ହୁ-ହୁ ହୋଇ ବଢ଼ିଚାଲିଛି । କାହିଁକି ବଢ଼ିଲା, ଏ ପ୍ରଶ୍ନ ପଚାରିଲେ ମୁଣ୍ଡବୋଝିଆ ଶ୍ରେଷ୍ଠ ବେପାରୀଠୁ ଆରମ୍ଭ କରି ବଡ଼ ବେପାରୀଯାଏ ସମସ୍ତେ କହୁଛନ୍ତି, ଆମେ କଅଣ କରିବୁ, ଆଜ୍ଞା ! ସବୁ ଜିନିଷର ଦର ତେଜିଛି । ଏଇ ଜିନିଷର ଦର ନ ତେଜିବ କପରି ? ଚଢ଼ା ଦରରେ କିଣା ହେଲା । ସାମାନ୍ୟ ଲାଭରେ ଆମର ବେପାର ।

ଆନନ୍ଦଚନ୍ଦ୍ର ହସହସ ହୋଇ କହିଲେ, ବଡ଼ ବଡ଼ ବେପାରୀମାନେ, ଯାହାଙ୍କର ସହସ୍ର ସହସ୍ର ହାତ ଦେଶ ଓ ବିଦେଶ ଯାଏଁ ଚାରିଆଡ଼କୁ ଲମ୍ବିଛି, ଆରେ ଇଦ୍ରିସ, ଯାହାଙ୍କର ଗର୍ବର ପରିଧି ମାପିହେବ ନାହିଁ, ସେମାନେ ଅତି ବିଶ୍ବାସରେ ତମ କାନରେ ଭୁନଭୁନ କହିବେ ଗୋଟିଏ ପଦ— ଚାହିଦା !

ଆନନ୍ଦଚନ୍ଦ୍ର ଉଚ୍ଚ ସ୍ୱରରେ ହସିଉଠିଲେ । ତାଙ୍କର ଆଖି-ତୋଳା ଦିଓଟି ଛଳଛଳ ଦିଶୁଛି । ବିଜୁଳି ଆଲୁଅରେ ସେ ତୋଳା ଦିଓଟି ଚକ୍‌ଚକ୍ ହେଲି । ସେ ହାତରେ ଧରିଥିବା ଲମ୍ବ ଚରୁଟକୁ ଓଠରେ ଲଗାଇ ଭଲ୍ କରି ଦୁଇଥର ଶୋଷିଲେ ।

ସେ ମାଝସଞ୍ଜବେଳେ ମଳୟଛଡ଼ା ବୁଦ୍ଧିବର୍ଦ୍ଧିନୀ ରଙ୍ଗିନ ସୁରାରୁ ସାମାନ୍ୟ ପାନ କରିଥିଲେ । ସଂଯତ ଅନୁପାନ । ନିଜେ ଇନ୍ଦିରା ତାଙ୍କୁ ଦେଇଥିଲେ । ଆନନ୍ଦଚନ୍ଦ୍ରଙ୍କର ଅନୁରୋଧକୁ ଇନ୍ଦିରା ମଧ୍ୟ ଏଡ଼ାଇ ପାରି ନ ଥିଲେ ।

ନୂଆ ଘଟଣାଟିଏ ଆଜ ସଞ୍ଜରେ ଘଟିଛି । ବିକ୍ରମର ଅକ୍ଳାନ୍ତ ପରିଶ୍ରମ ପାଇଁ ଇନ୍ଦିରାଙ୍କର ତା' ପ୍ରତି ସ୍ନେହର ପରିମାଣ ବଢ଼ିଯାଇଛି । ତାଙ୍କର ଆଦେଶ ପାଳନ କରି ବିକ୍ରମ ଆଜ ଭଦ୍ର ହୋଇଥିବାରୁ ଓ ତାର ଅସନା ରୂପ-ଢଙ୍ଗ ବଦଳାଇଥିବାରୁ ସେ ଅନୁକମ୍ପାରେ ଜର ଜର ହୋଇ ପଡ଼ି-ଛନ୍ତି । ଘଣ୍ଟାଏ ଆଗେ ଇନ୍ଦିରା ତାକୁ ହାତ ଠାରି ଶୋଇବା କୋଠରିକୁ ଡାକିଥିଲେ । ପଲଙ୍କ ଉପରେ ଅନୁପା ବସିଥାଏ । କୃଷ୍ଣ କଣ୍ଠରେ କଅଣ ଗୋଟାଏ ବୁଣୁଥାଏ ।

ଟି-ପଏ ଉପରୁ ଗ୍ଲାସ ଉଠାଇ ଇନ୍ଦିରା ତା ହାତକୁ ବଢ଼ାଇଦେଇ-ଥିଲେ । ସେଥିରେ ଅଧା ଗ୍ଲାସ ଦୁଧ ଭରିହୋଇଥାଏ । ତାର ରଙ୍ଗ ଦିଶୁଥାଏ ସାମାନ୍ୟ ଛାଇଆ । କହିଥିଲେ, ବହୁତ ପରିଶ୍ରମ ତମେ ଆଜ କରିଛ ବିକ ! ବର୍ଷାପାଣିର ମାଡ଼ ସହିଛ । ପବନଚୋଡ଼ରେ ଓଦା ଲୁଗା ପିନ୍ଧି ଖୋଲା ବାରଣ୍ଡାରେ ଓଦା ବେଞ୍ଚରେ ଶୋଇଛ । ଯେତେ ଟଙ୍କେଟ୍ଗେକଣ ହେଲେ ଜର କ'ଣ ଛାଡ଼ିଦେବ ଭାବୁଛ ? ନା, ନା ବିକ୍ରମ ! ନିମୋନିଆ ଧରିପାରେ ।

କିଛି ହେବ ନାହିଁ, ମାଈ !

ନ ହେଲେ ତ ଭଲ । କିନ୍ତୁ ଯଦି ହୁଏ, କଷ୍ଟ ପାଇବ । ପିଇଦିଅ ସେ ଔଷଧ । ସର୍ଦ୍ଦି, ଦେହର ମଇଳା ସବୁ ସେହି ଅଧ-ଗିଲାସକ ଦୁଧ କାଟି-ପକାଇବ । ପିଅ ।

ହସହସ ହୋଇ ମାଈଁ ତାକୁ ଔଷଧମିଶା ଗୋରସ ଗିଲାସେ ଧରାଇ ଦେଇଥିଲେ । ବିକ୍ରମ ତାଙ୍କର ସମ୍ମାନ ଊଣା କରି ନ ଥିଲା । ସେହି ଔଷଧମିଶା ଶକ୍ତି-ସଞ୍ଚାରିଣୀ ସୁଧା ତାର ମାଈଁ ଓ ଅନୁପା ପିଇସାରିଥିଲେ ।

କୃଶ୍ କଣ୍ଠା ପଲଙ୍କ ଉପରେ ରଖି ଅନୁପା ଥକ୍କା ହୋଇ ଚାହିଁ ଥିଲା ତାର କରୁଣାମୟୀ ଜନନୀଙ୍କର ହସିଲା ମୁହଁକୁ, ପୁଣି ବିକ୍ରମର ଢଳୁ ଢଳ ଆଖି ଦିଓଟିକୁ । ସେ ନୂଆ କଥାଟିଏ ଦେଖୁଥିଲା ।

ଈଶ୍ୱର କହିଥିଲେ, ତମ ବାପାଙ୍କର ଲାଜ-ସରମଛଡ଼ା ଚିଠିଟି ପଢ଼ିଲ, ବିକି ! ଦେହମୁଣ୍ଡ ସମସ୍ତଙ୍କର ହୁଏ । ବିଦେଶରେ ଥିଲେ ସାଙ୍ଗ-ସୁଖ ତ ସେବା କରିବେ । ଯତ୍ନ ନେବେ । ସଂସାର କଲେ ଧାର ଉଧାର ଲାଗି ରହିଥାଏ । ଏଥିପାଇଁ ଏବେଠୁଁ ତମକୁ ସେ ବାନ୍ଧିପକାଇବାକୁ ଚାହାନ୍ତି । ସେହିଁ ବୁଦ୍ଧି ତ !

ଅନୁପାର ଆଖିରେ ଦପଦପ ହୋଇ ଆଗ୍ରହ ଜଳିଲା । ତକିଆ ପାଖରୁ ଖାରକେଶରଙ୍କର ଚିଠିଖଣ୍ଡ ସେ ହାତରେ ଧରିଲା ।

ଈଶ୍ୱରୀ କହିଲେ, ହେ ମା, ସେ ଚିଠି ତୋର ବଡ଼ଭାଇକୁ ଦେ । ବେଳ ମିଳିଲେ ତା'ର ଜବାବ୍ ମୁଁ ଲେଖିଦେବି । ଲେଖିବି, ବିକ୍ରମ ଏଇଠି ରହି ଏମ. ଏ. ପଢ଼ିବ । ତା'ପରେ ବାହାଘର ।

ସ୍ପ୍ରିଂ-ଲଗା କଣ୍ଢେଇ ପରି ଅନୁପା ପଲଙ୍କ ଉପରୁ ତଳକୁ ଡେଇଁ-ଥିଲା । ବୋଧହୁଏ ଔଷଧମିଶା କ୍ଷୀର ଗ୍ଲାସକ ତା'ର ରକ୍ତରେ ଉତ୍ତେଜନାର ରଞ୍ଜକ ଲଗାଇଥିଲା । ହାବେଳୀ ବାଣର ଝୁରୁ ପରି ମୁଣ୍ଡର ମୁକ୍ତକେଶର ଝାଲରୀ ଝରାଇ, ମୁଣ୍ଡ ଦୋହଲାଇ ସେ ବିକ୍ରମର ପାଖକୁ ଆସିଥିଲା । ଚିଠି ଖଣ୍ଡି ତାର କାମିଜର ଛାତି ପକେଟରେ ଗୁଞ୍ଜି ସେ କହିଥିଲା, ଏବେ ହେଲା ତ ବଡ଼ଭାଇ ! ବୋଉର କଥା ତମେ ଅନ୍ୟଥା କରିପାରିବ ନାହିଁ । ନିଅ ତମର ଚିଠି ।

ଇନ୍ଦର ଘର ଭିତରୁ ପଦାକୁ ଯାଉଁଣୁ କହିଥିଲେ, ଆସ ହରମ ! ଆନେ ଅନୁପା ! ତୋ ବାପା ବୈଠକଘରେ ବସିଥିବେ । କେତେ କଅଣ ସେ କହିବେ, ଘର ମଜାର କଥା । ଆମେ ଶୁଣିବା । ଦାଣ୍ଡବନ୍ଧୁ ବାବୁ ଅବା ଆଜ କେହି ଯଦି ଆସିଯିବେ ନା—!

ସେହି ବୈଠକାଘରେ—

ଇନ୍ଦର କହିଲେ, ଚାନ୍ଦା ! ଦେଇ ଦେଇ ହରକତ ଲାଗିଲାଣି । ଦଶହରା, କାଳିପୂଜା, ମହରମ, ଗଣେଶଚତୁର୍ଥୀ, ସାହିଯାତ, କେତେ କହିବ ! ସାହିଲୋକଙ୍କୁ ଡର ଦେବାର କଥା ।

ହଁ, ଇନ୍ଦର ! ସେହି ବଡ଼ବଡ଼ଆ ବେପାରୀମାନେ ଉଚ୍ଚହରେ ହିଭିନ୍ନ ଦଳକୁ ଚାନ୍ଦା ଦିଅନ୍ତି । ଚାନ୍ଦା ନେଲା ଲୋକେ, ଆହୁରି ଆହୁରି ଚାନ୍ଦା ପାଇବା ଆଶାରେ ସେମାନଙ୍କୁ ଘଣ୍ଟ ଘୋଡ଼ାଇ ରଖନ୍ତି । ସେମାନେ ନିଶ୍ଚିନ୍ତରେ କାର-ବାର ଚଳାନ୍ତି । ଜନିଷପତ୍ରର ଦର ମନମାଫି ବଢ଼ାନ୍ତି । ବେପାର ବଣିଜ କଥା । ଆମର ମାଲ । ଲାଭ ପାଇଁ ବେପାର କରନ୍ତୁ । କ୍ଷତି ହେଲେ ଆମେ ସହିବୁଁ ।

ଇନ୍ଦର କହିଲେ, ସତ କଥା । କାଲି ଯଦି ଆମର ସିମେଣ୍ଟ ବସ୍ତା ପାଣିରେ ଭିଜିଥାଆନ୍ତା, କେତେ ଟଙ୍କା କ୍ଷତି ହୋଇଥାନ୍ତା କୁହ । ହରମ ଯଦି ସାହସ ଦେଖାଇ ନ ଥାନ୍ତା—। ହଇରେ ହକ, ନାଥମିସ୍ତ୍ରୀକୁ ଖବର ଦେଇଛୁ ?

ହରମ କହିଲା, ସଙ୍ଗେ ସଙ୍ଗେ ଦେଇଛୁ । ଆଜି ଦି’ ଜାଗାରେ ହ ବୁଝିଛୁ । ଘର ପାହିବା ଆଗରୁ ସବୁ ସରିଥିବ ।

ଦର ?

ବାଆର ପଚଶ ।

ଇନ୍ଦର ମୁହଁ ନେଫଡ଼ିଲେ । ସେ ଆଶା କରିଥିଲେ, ଆଗଥର ପରି ଚେଏରରେ ପ୍ଲେସ କରିଯାଇପାରିବ ।

ଆନନ୍ଦ କହିଲେ, କାମ ଉପରୁ ଗୁମାସ୍ତା ପଠାଇଛନ୍ତି । ପୁରୁଣା ମାଲ ଖସିଯାଉ । ମୁଁ ନେବି ନଅ ଟଙ୍କା ରେଟ୍‌ରେ । ଅନ୍ୟମାନଙ୍କୁ ତାଙ୍କର ସୁଧା ଦେବାକୁ ହେବ । ଆଜି ଦିନକୁ ଆଜି ଦିନ ଅଛି ।

ଇନ୍ଦିରା ଖୁସି ହୋଇ କହିଲେ, ତେବେ ଠିକ୍ ଅଛି । ଆଜି ଖଲାସ କର ।

ଆନନ୍ଦ କହିଲେ, ଶୁଣ୍ ବିକ୍ରମ ! ତୋର ଆଉ ଅଧିକ ପାଠ ଦରକାର ନାହିଁ । ମୁଁ ଭାବୁଛି, ତୋ ନାମରେ ଗୋଟାଏ ଔଷଧ-ଦୋକାନ ଖୋଲିବି । ଲାଇସେନ୍‌ସ କରାଇଦେବି । ତୋ ମାଈଁ ଟଙ୍କା ଦେବେ । ଦୋକାନ ତୁ ଚଳାଇବୁ । ଲାଭର ଅଧେ ଅଧେ ବଣ୍ଟା ହେବ । ପାଠ ଅଧିକ ପଢ଼ିଲେ କି ଲାଭ ? ବାଉଁଶିଆ ମାସକୁ ହଜାରରୁ କମ୍ କମଉ ନାହିଁ । ବେପାରର କାଇଦା ଶିଖିଲେ, ପ୍ରସାର ହେଲେ, ବର୍ଷ ସୁରିପାଞ୍ଚଟାରେ ତମ ଦୋକାନରୁ ବି ସେମିତି ଲାଭ ଉଠାଇପାରିବ ।

ଇନ୍ଦିରା ପଚାରିଲେ, ମୋ ନାମରେ ଖୋଲା ନ ହେବ କାହିଁକି ? ବିକ୍ରମ କାମ କରିବେ, ଟଙ୍କା ଦୁଇଶ ଦରମା ନେବେ । ଘରେ ଖାଇବେ, ପିନ୍ଧିବେ, ରହିବେ । ଆଉ ଯେଉଁଠି ଚାକିରି କଲେ କ'ଣ ଅଧିକ ଟଙ୍କା ପାଇବେ ?

ଆନନ୍ଦ କହିଲେ, ଏକା କଥା । ବିକ୍ରମ ନାମରେ ଦୋକାନ ରହିଲେ ଇନ୍‌କମ୍-ଟିକସ ଫାଙ୍କି ଦିଆଯାଇପାରିବ ।

ଇନ୍ଦିରା ପଚାରିଲେ, କିନ୍ତୁ— ।

ମନରେ ଜାଗିଥିବା ଚିନ୍ତା ଓ ସମ୍ଭାବନାକୁ ସେ ବାକ୍ୟରେ ପ୍ରକାଶ କରିପାରିଲେ ନାହିଁ । ତାହା ସମସ୍ତଙ୍କ କାନକୁ ଶୁଭିଲା,—କଳିକାଳରେ କାହାକୁ ବିଶ୍ୱାସ ? ଧର୍ମ କେବଠାରୁ ବୁଡ଼ିଗଲାଣି । ସମସ୍ତେ ସମସ୍ତଙ୍କୁ ତଳା କାଟିବାକୁ ଓଉ ଜଗିଛନ୍ତି ।

କ୍ଷଣକର ନୀରବତାକୁ ଅନୁପା ଦୋହଲାଇଦେଲା । ସେ ଉତ୍ତେଜିତ ହୋଇ ଚଉକିରୁ ଉଠିଲା । ବିକ୍ରମର ପାଖକୁ ଆସି ତାର କାନ୍ଧ ଧରି ହଲାଇ-

ଦେଲ । କହିଲା, ଭୁନ ହୋଇ ବସିଛ କାହିଁକି ? ତମେ କଅଣ କରିବ କହୁନ ?

ବସନ୍ତ ଚମକିଉଠିଲା । ସେ ମଧ୍ୟ ଚଉକିରୁ ଉଠିଲା । ମୁଣ୍ଡ ସାମାନ୍ୟ ଝୁଙ୍କି ଉଠୁଥାଏ । ସେ କହିଲା, ମୁଁ କଅଣ କରିବ ନ କରିବ, ସେ ବିଷୟ ଏକଯାଏ ଚିନ୍ତା କରିନାହିଁ । ମୋର ଉପସ୍ଥିତ କର୍ତ୍ତବ୍ୟ ହେଉଛି, ଆଜ ରାତିରେ ସିମେଣ୍ଟ ବସ୍ତାସବୁ ବନ୍ଦି କରାଇବ । ରାତି ପାହିଲେ ମୋ ରୋଗଣୀ ବୋଉଙ୍କ ପାଇଁ ଔଷଧ ନେଇ ଗ୍ରାମକୁ ଯିବ ।

ବସନ୍ତ ଟଳଟଳ ହୋଇ ଭିତର ବାରଣ୍ଡାକୁ ଆସିଲା । ଗୋଲେଇ-ଖମ୍ବର କଡ଼ୁଆ ଘୁଇ କାନ୍ଥ ଉପରେ ବଡ଼ ଝରକା କଡ଼ରେ ପଡ଼ୁଥାଏ । ସେହି ଘୁଇରେ କାନ୍ଥକୁ ଆଉଜ ଠିଆ ହୋଇଥାଏ ଆଢ଼-ସଫା ଲୁଗା ପିନ୍ଧ ମୂର୍ତ୍ତିଟିଏ । ସେହି ମୂର୍ତ୍ତିକୁ ହାବୁଡ଼ଯାଉଣୁ ବସନ୍ତ କହିଉଠିଲା, ଆଈ କଲେ ! ତୁ ବଞ୍ଚିଛୁ ?

ବସୁମଣ୍ଡ ଚିଲ୍‌ଲାଉଠିଲେ, ତୋ ମୁହଁରେ ନିଆଁ ଦେବାକୁ ଦଇବ ମୋତେ ବଞ୍ଚାଇ ରଖିଛି । ତୋର ସହଳ ସହଳ ମରଣ ହେଉ ରେ ନାତି !

ତୋ ଭୁଣ୍ଡ ସୁ-ଭୁଣ୍ଡ ହେଉ ଲେ, ଆଈ ! ତତେ ଗୋଟାଏ ଶେଷ ଗେଲ କରିଥାଏଁ ।

ବୁଢ଼ୀଙ୍କର ଥରିଲା ମୁଣ୍ଡକୁ ଦୁଇ ହାତରେ ଧରି ବସନ୍ତ ତାଙ୍କର ହାଡ଼ୂଆ ହନୁରେ ଗେଲ କଲା । କହିଲା, ମନେ ରଖିଥିବୁ ଲେ ଆଈ ! ଆରଜନ୍ମରେ ତତେ ମୁଁ ନିଶ୍ଚେ ବାହା ହେବ ।

ଅନୁପା ପଦାକୁ ଆସି ପଚାରିଲା କଏ ମ ବକଉଛି ?

ବସନ୍ତ ଉତ୍ତର ନ ଦେଇ ପିଣ୍ଡା ଉପରୁ ତଳକୁ ଆସିଲା । ଦରଜା ଆଡ଼କୁ ଆଗେଇ ଯାଉଥିଲା । ତାର କାନରେ ବାଜିଲା ଆଈଙ୍କର ଥରିଲା ଉତ୍ତର, ଆଉ କଏ ? ସେହି ବ୍ରହ୍ମରାକ୍ଷସ, ତୋର ଏ ଜନ୍ମର ବର ଲେ, ଟୋକୀ !

ସମସ୍ତେ ସେମାନେ ଜାଣନ୍ତି ଯେ ଶିରପଲ୍ଲି ଗ୍ରାମରେ ଦିନ କେଇଟି ରହି ବସନ୍ତ ଯଥାଶୀଘ୍ର କଟକ ଫେରିଆସିବ । ଗ୍ରାମକୁ ନ ଗଲେ ନ ଚଳେ । ବୋଉଙ୍କର ଦେହ ଭଲ ନାହିଁ । ତାଙ୍କର ଔଷଧ ଲୋଡ଼ା । ତାଙ୍କର ପଥ୍ୟର ସୁବନ୍ଦୋବସ୍ତ କରିବାକୁ ହେବ । ଘର ମରାମତି, ଘରୁଚୁଆଳି ଏମିତି କେତେ କାମ ।

ଆନନ୍ଦଚନ୍ଦ୍ର ସକାଳେ ପରମଳବାବୁଙ୍କ କାରରେ ଭୁବନେଶ୍ବର ଚାଲିଯାଇଥିଲେ । ସେହି ଗାଡ଼ିରେ ରାମକୁମାର ଓ ହାଡ଼ବନ୍ଧୁ ମଧ୍ୟ ଯାଇଥିଲେ । କ'ଣ ଗୋଟାଏ ବଡ଼ ଯୌଥ-କାରବାର କରିବାର ଉଦ୍ୟମରେ ସେମାନେ ବ୍ୟସ୍ତ । ଗ୍ରାମକୁ କେତେଦିନ ପାଇଁ ଯିବାକୁ ବସନ୍ତ ତା'ର ମାମୁଁଙ୍କର ଅନୁମତି ନେଇସାରିଥିଲା ।

ଦୟାମୟୀ ମାଇଁ ତାଙ୍କର ଚନ୍ଦନା ଅପାଙ୍କ ପାଖକୁ ବସନ୍ତର ହାତରେ ଟଙ୍କା କୋଡ଼ିଏଟି ପଠାଇଲେ । ତଳେ ମୁଣ୍ଡ ଲଗାଇ ବସନ୍ତ ତାଙ୍କୁ ପ୍ରଣାମ କଲାବେଳେ ସେ ତାକୁ କହିଲେ, ଶୀଘ୍ର ଆସିବ ବକ ! ଯେତେ ଯୋଜନା ଆମେ କରୁଛୁ, ତମେ ନ ଥିଲେ ସେସବୁ ମୂଳରୁ ଫସରଫାଟି ଯିବ । ଅପାଙ୍କୁ ପ୍ରଣାମ ଦେବ ।

ମୋତିମାଳା ଆଈ ଚିବୁକ ଧରି ଲୁହ ଜରଜର ଆଖିରେ କହିଲେ, ତୋର କୋଟିପରମାୟୁ ହେଉ ରେ ବକ ! ତୋର ଜୀବନ ଓ ମନରେ ଠାକୁରେ ସୁନାକଳସ ଢାଳନ୍ତୁ ।

ବସୁମତୀ ଆଈଙ୍କର ପାଦଧୂଳି ନେଇ ମୁଣ୍ଡରେ ମାରୁଣୁ ସେ କଲ୍ୟାଣ କଲେ, ଆଉ ତୋ ସେଇନ୍ତା-ମୁହଁ ଦେଖିବି ନାହିଁ ରେ ନାତି !

ବସନ୍ତ କାହାକୁ କିଛି ଉତ୍ତର ଦେଲା ନାହିଁ । ସେ କେବଳ ହସୁଥିଲା । ସୁରୂପା ଓ ସାନନ୍ଦଙ୍କୁ ସେ ଗେଲ କଲା । ନରୁପାର କପାଳରେ ହାତ ବୁଲାଇଲା । ଅନୁପାର ଗମ୍ଭୀର ମୁହଁକୁ ଚାହିଁ ମୁଣ୍ଡ ସାମାନ୍ୟ ହଲାଇ ହସୁଣୁ ତାର ଓଠପଟା ଥରଉଠିଥିଲା ।

ସମସ୍ତ ସକାଳ ବଣଟା । ଖରାତେଜ ପ୍ରଖର । ବେଳେ ବେଳେ ଚଳନ୍ତା ଖଣ୍ଡିଖଣ୍ଡିକା ମେଘର ଅନ୍ତରାଳରେ ସୂର୍ଯ୍ୟ ମୁହଁଛପା ଦେଲେ । ଘୁପ୍ପା ଘୋଟିଯାଉଛି, ପୁଣି ଅନ୍ତର୍ହିତ ହେଉଛି । ଖୋଲା ଗେଟ ପାର ହୋଇ ବସନ୍ତ ରିକ୍‌ସାରୁ ଓହ୍ଲାଇଲା । ଟ୍ରଙ୍କ୍ ଓ ସୁଟ୍‌କେସକୁ ସଜାଡ଼ି ରଖିଲା ।

ଟ୍ରାନ୍‌ଜିଷ୍ଟରକୁ ବେକରେ ଓହଳାଇ ସେ ଫାଟକ ବନ୍ଦ କରିବାକୁ ଗଲା । ଦୁଇ ପାଖର ଫାଟକ ଆଉଜାଉଣୁ ତାର ଦୃଷ୍ଟିରେ ପଡ଼ିଲା ସେଇ ଆମ୍ବଗଛ ଯାହାର ଶାଖାରୁ ଦୋଳି ଦଉଡ଼ାଟି ଲମ୍ବି ଆସିଛି । ଡାଳର ମୃଦୁ ଦୋଳନରେ ସେଇ ଦଉଡ଼ା ହଲୁଛି । ଓହଳିଲା ଜୀଅନ୍ତା ସାପ ପରି ସେ ଲହ ଲହ ହେଉଛି ।

ବସନ୍ତ ଫାଟକ ବନ୍ଦ କରି ରିକ୍‌ସାରେ ବସିଲା । ନିର୍ଦ୍ଦେଶ ଦେଲା ରିକ୍‌ସାଚାଳକକୁ, ବୌଦ୍ଧିଧୂଷ୍ଟ ବଜାର ବସ୍ ଷ୍ଟାଣ୍ଡକୁ ନିଅ ।

ରିକ୍‌ସା ଚାଲିଲା ।

ବସନ୍ତ ପଛକୁ ଫେରି ଚାହିଁବାକୁ ସାହସ କଲା ନାହିଁ । ତାର ମନେ ହେଉଥିଲା, ଯେପରି ସେଇ ଦୋଳି ଦଉଡ଼ିରେ ଗୋଟାଏ ଫଣା ହୋଇଛି । ସେଇ ଫଣାରୁ ଦି-ଫାଳିଆ ଜିଭଟାଏ ବାହାରି ଲହ ଲହ ହେଉଛି । ସେଇ ଦଉଡ଼ି ପୁଣି ଲମ୍ବି ଲମ୍ବି ଆସୁଛି ଗୋଟାଏ ଅକ୍‌ଟୋପସର ହାତ ପରି । ଧରିବ, ଗୁଡ଼ାଇବ, ଦଂଶିବ, ରକ୍ତ ଶୋଷିବ, ଜୀବନ ନେବ—

ବଡ଼ରାସ୍ତାର ମୋଡ଼ରେ ସେ ନିଶ୍ଚିନ୍ତ ହେଲା । ଜନତାର ଅଣ-ନିଶ୍ୱାସୀ ସୁଅ ଭିତରେ ସେ ଓ ତାର ଚଳନ୍ତା ରିକ୍‌ସା ସତ୍ତା ହରାଇଲା । ସେ ଦୀର୍ଘଶ୍ୱାସ ଛାଡ଼ିଲା । ଭାବିଲା, ଆଜି ପ୍ରାୟ ନଅଟି ବର୍ଷ ପରେ ସେ ଗୋଟାଏ ଦାସତ୍ୱର ବନ୍ଧନରୁ ମୁକ୍ତ ଲଭି ଆସିଛି । ସେ ଆଜି ନିଜେ ନିଜର ହୋଇଛି । ନଅଟି ବର୍ଷ ପୂର୍ବେ ସେ ବସନ୍ତ, ତେରବର୍ଷର ଗାଉଁଲି ନିଶାହ ପିଲାଟିଏ, ବଡ଼ଘରର ସଂସାରରେ ଆଶ୍ରା ପାଇଥିଲା । ଅଭାବ ଅନଟନ ସତ୍ତ୍ୱେ ସେଇ ସଂସାରରେ ସ୍ୱର୍ଗ ରାଜତ୍ୱ କରୁଥିଲା । ଧନ ଆହରଣର ଲୋଭ ସେଇ

ସଂସାରକୁ ନରକ ଆଡ଼କୁ ଓଟାରିନେଉଛି । ସଂଯମ ଓ ଶୃଙ୍ଖଳା କ୍ରମେ ଦୁର୍ବଳଯାଇଛି । ସମସ୍ତଙ୍କୁ ଚନ୍ଦ୍ରପ୍ରତିମା ପ୍ରାପ୍ତ କେବଳ ସୁନ୍ଦର କରିଛି ।

ଭବିଲା ବନ୍ଧନ, ନଜେ ସେ ସେଥିରୁ ରକ୍ଷା ପାଇନାହିଁ । ସ୍ବର୍ଣ୍ଣଅକ୍ଷର ପଢ଼ିବାର ସୁଯୋଗ ସେ ପାଇଛି ସତ, ମଣିଷ ହୋଇପାରିନାହିଁ । ସେ ଜଣେ ଅସଂଯତ ପଶୁ ହୋଇ ଫେରୁଛି । ଯେଉଁ ସର୍ବଗ୍ରାସୀ କଳାବଜାରିଦଳ ଜାଣି ଜାଣି ଅବା ଅଜାଣତରେ ବିରାଟ ଗୋଷ୍ଠୀ ଗଢ଼ି ସରଳ ନିରୀହଙ୍କର ରକ୍ତ ସଙ୍ଗେ ଜୀବନ ଶୋଷିନେଉଛନ୍ତି, ସେମାନଙ୍କୁ ସେ ସାହାଯ୍ୟ କରିଛି । ନୈତିକତାକୁ ସେ ସେମାନଙ୍କର ନରମେଧ-ଯଜ୍ଞରେ ଆହୁତି ଦେଇଛି ।

ସେ ଫିଟିଆସିଛି । ମରଣର ଦ୍ୱାରଦେଶରୁ ଫେରିଆସିଛି । କୌଣସି ପ୍ରଲୋଭନ ଆଉ ତାକୁ ସେହି ନରକମୁଖୀ ଲୁଣ୍ଠନ ମଟିକୁ ଓଟାରି ନେଇପାରିବ ନାହିଁ ।

ପେଟରେ ଶୋକ, ମୁହଁରେ ଲାଜ । ସେ ଏ ଯୁଗର ବାବୁ । ସମ୍ମାନ ସହ ବି. ଏ. ପାସକରି ଶିକ୍ଷିତ ଭଦ୍ରଲୋକଟିଏ ସେ ହେବାକୁ । ବୁନିଆଦି ଖାନଦାନ୍ କୁଳର ଦାୟାଦ । ତାର କୁଟୁମ୍ବ ଦାରିଦ୍ର୍ୟର ଶେଷ ସୋପାନକୁ ଓହ୍ଲାଇ-ଆସିଛି, ଖାନ୍‌ଦାନର ମହକ-ଭଡ଼ା ଛୁଣ୍ଡାକନାର ଟିକିଟିକି ଅଂଶ ଏଠି ସେଠି ଲାଗି ରହିଛି । ଜାଗ୍ରତ ସପନ ଦେଖାଉଛି । ସ୍ମୃତିରେ ଛନକା ଆଣୁଛି ।

ସେହି ଅତୀତ ଯୁଗ ଆଉ ଫେରିବ ନାହିଁ । ଭବିଷ୍ୟତ ଓ ବର୍ତ୍ତମାନ ଯୁଗର ଭଡ଼ାଓଟରି ଲାଗିଆସିଲାଣି । କାଲି କଅଣ ହେବ ସ୍ଥିର କରି-ହେଉ ନାହିଁ । ବର୍ତ୍ତମାନର ଅକଳନ ଚେର ଅତୀତର ମାଟି ଭିତରେ ରହିଛି । ଭବିଷ୍ୟତର ଝିଙ୍କାଓଟରିରେ ସେ ଦୋହଲୁଛି । ଟଳୁଛି । ଅତୀତର ଚେର-ଗୁଡ଼ିକ, ଯାହାର ସମଷ୍ଟି ସଂସ୍କୃତି ଓ କୃଷ୍ଟି ନାମରେ ପ୍ରସିଦ୍ଧ, ଛିଣ୍ଡି ଛିଣ୍ଡି ଯାଉଛି ।

ସହିହେଉନାହିଁ ତାର ପରିଣତି କଅଣ ହେବ । ଲୋକେ ପିଇ ଦଣ୍ଡେ ଜୀଇଁବାର ଜୀବନରେ ଅତୀତକୁ ଝୁଲି ଓଠ ଘଷିବା ପାଗଳାମି ସଙ୍ଗେ ସମାନ । ଭବିଷ୍ୟତକୁ ବିବିଧ ରୂପରେ ଅନୁମାନ କରି, ବିଭିନ୍ନ ରଙ୍ଗରେ ତାକୁ ଚିତ୍ର କରି ମନରେ ଦୁଃଖ ଅବା ଆନନ୍ଦ ଆଣିବାରେ ଲାଭ ନାହିଁ । ସେ ବିଂଶଶତାବ୍ଦୀ, ଶିକ୍ଷିତ ଆଧୁନିକ କର୍ମଠ ଯୁବକ । ବର୍ତ୍ତମାନର ଆଗରେ ମୁହାଁମୁହିଁ ଠିଆ ହୋଇଛି । ସେ ଆଖିରେ ଦେଖୁଛି । ସବୁ ଦୃଶ୍ୟ ମନରେ ଭେଦିଯାଉଛି । ତଉଲୁଛି । କଳନା କରୁଛି ।

ସଜ ସକାଳ । ରାତିର ଝଡ଼ ତୋଫାନ ଓ ବର୍ଷା ପରେ ନିଖିଳ-ପ୍ରକୃତି ନିସ୍ତବ୍ଧ ହୋଇଛି । ଏବଯାଏ ଆକାଶ ମେଘାଚ୍ଛନ୍ନ । ପୁଣି କେତେବେଳେ ସେ ଫାଟିବ । ଦାରୁଣ ତୋଫାନ ଛୁଟିବ, ନିଷ୍ଠୁର ବରଷା ଝରିବ । କେହି କହିପାରିବ ନାହିଁ ।

ଗତ ରାତିରେ ପ୍ରକୃତିର ତାଣ୍ଡବ ସେ ଦେଖିଛି । ଅଙ୍ଗେ ନିଭାଇଛି । କେଡ଼େ ହଟହଟା । ପୂର୍ବପୁରୁଷଙ୍କର ଜରାଜୀର୍ଣ୍ଣ ଘରର ସହସ୍ର-କଣା ହୋଇଥିବା ଚାଳ ଉଠୁଥାଏ ପଡୁଥାଏ । ମନେ ହେଉଥାଏ, କେତେବେଳେ ସେ ଚାଳ ଓଲଟି ପଡ଼ିବ । ଚାଳର ଛିଦ୍ରଗୁଡ଼ିକ ବାଟେ ବର୍ଷାଜଳ ଝରି ପଡୁଥାଏ ।

ଲଣ୍ଠନର କ୍ଷୀଣ ଆଲୁଅ ସାହାଯ୍ୟରେ ଗରିବ ସଂସାରର ଜିନିଷପତ୍ର, ଲୁଗାପଟା, ଏପାଖ ସେପାଖ କରି, କାହା ଉପରେ କୁଲା, ଟୋକେଇ, ହେଁସ, କାହା ଉପରେ ପୁରୁଣା ଅଖା, କନ୍ଥା, ପଖିଆ ଓ ଛତା ଘୋଡ଼ାଇ ହରିହର ଓ ତାର ବେଗଣୀ ମା ସେଗୁଡ଼ିକୁ ବର୍ଷାପାଣିରୁ ରକ୍ଷା କରିବାକୁ ଚେଷ୍ଟା କରିଥିଲେ । ମା ପୁଅ ଦୁହେଁ ଅଧା ଓଦା ହୋଇଥିଲେ ।

ଅଧବଖରିଆ ଭଣ୍ଡାର ଘର ଓ ବଖୁରିକିଆ ଶୋଇବା ଘରର ମାଟିଚଟାଣ ଓଦା ସରସର ହୋଇଥିଲା । ମାଟିକାନ୍ଥରୁ ପାଣିଧାର ଗଡ଼ି କାନ୍ଥ ଫଟାଇଥିଲା । ରାତିର ଶେଷ ପ୍ରହରକୁ ବର୍ଷା କମିଲା, କିନ୍ତୁ ପବନର ତୋଡ଼ ବଢ଼ିଲା । ଭିତର ଅଗଣାରେ ଫଳ ଲଦି ହୋଇଥିବା ବୁଢ଼ା ସଜନା ଗଛଟି ମଡ଼ମଡ଼ ହୋଇ ଭାଙ୍ଗିପଡ଼ିଲା । ଗୋଷଘର ଧାଡ଼ିର ନୂଆଁଣିଆ ଚାଳ ଉପରେ ସେହି ଗଛର ଅଗଡାଳ ମାଡ଼ି ବସିଛି ।

ହରିହରକେଶରୀର ଦେଢ଼ ବଖରା ଘରକୁ ଲାଗି ତାର ପିତୃବ୍ୟ ଧୀର-କେଶରୀଙ୍କର ଘର । ଗୋଟିଏ ଚାଳ । ଆପୋଷ ବଣ୍ଟାରେ ଧୀରକେଶରୀଙ୍କର ଭାଗରେ ମଧ୍ୟ ଦୁଇଟି ବଖରା ପଡ଼ିଛି । ସେହି ଘର ଉପରର ପୁରୁଣା ଚାଳ ଛପର କରାହୋଇଛି । ଛପର ଉପରେ ବତା ଭିଡ଼ା ହୋଇଛି । ପବନର ତୋଡ଼ରେ ସେ ଚାଳ ନଷ୍ଟ ହୋଇନାହିଁ । ହୁଏତ ଦୋହଲୁଥିବ, ଉଠିଥିବ, ପଡୁଥିବ । ସେଥିପାଇଁ ହରିହରର ଖୁଡ଼ୀ ବାସନ୍ତୀ ଚିନ୍ତା କରି ନ ଥିବେ । ପିଲା ଛନୋଟିଙ୍କୁ ପାଖରେ ଶୁଆଇ ସେ ନିଜେ ଚେଇଁ ରହିଥିବେ । ବଡ଼ ଜା ଚନ୍ଦନା ଓ ପାଟୁଆ ପୁତୁରା ହରିହର ଚାଳୁଣିଆ ପୁରୁଣା ଚାଳ ତଳେ କପରି ହଟହଟା ହେଉଥିବେ, ଅନୁମାନ କରି ମନ ପୂରାଇ ହସିଥିବେ ।

ସେମାନେ ନିଶ୍ଚିନ୍ତରେ ଶୋଇଛନ୍ତି । କ୍ଳାନ୍ତ ହୋଇ ରାତିର ଶେଷ ପ୍ରହରକୁ ଚନ୍ଦନା ବସନ୍ତର ପାଖରେ ଶିଶୁକାଠର ଚଉଡ଼ା ପଲଙ୍କ ଉପରେ ଶୋଇଥିଲେ । ବସନ୍ତର ଅଧା-ଓଦା ଲମ୍ବ କେଶ ଭିତରେ ତାଙ୍କର ଦୁର୍ବଳ ଆଙ୍ଗୁଠି ଚଳାଇ ତାକୁ ଶୁଆଉଥିଲେ । ସତେ କି ବାଇଶ ବର୍ଷର ସ୍ୱାସ୍ଥ୍ୟବାନ ବଳିଷ୍ଠ ପାଠୁଆ ପୁଅ ବସନ୍ତ ପୁଣି ଜନ୍ମଆଣି ପିଲା ହୋଇଛି, କୋଳରେ ଶୋଇଛି । ବସନ୍ତର ଥଣ୍ଡା ଦେହକୁ ସେ ତାଙ୍କର ଦୁର୍ବଳ ଉଷୁମ ହାତରେ ଆଉଁସି ଦେଉଥିଲେ ।

ବସନ୍ତ ବାଧା ଦେଇ ନ ଥିଲା । କରୁଣାମୟୀ ଜନନୀଙ୍କର ଅମୃତ ସ୍ପର୍ଶରେ ସେ ବିମୋହିତ ହୋଇଥିଲା । ତାର ମନେ ହେଉଥିଲା ଯେପରି ତା'ର ଜନନୀଙ୍କର ସେହି ଅକୃତ୍ରିମ ନିର୍ମଳ ଆହ୍ଲାଦ ତା'ର ଦେହ ଓ ମନରୁ ସବୁ କ୍ଳାନ୍ତି, ସବୁ ଅବସାଦ ଓ କଟକ-ରହଣୀ କାଳର ସବୁ କଳଙ୍କ ପୋଛି-ଦେଉଥିଲା । ତାକୁ ପୁଣି ନଅ ବର୍ଷ ତଳର ନିଷ୍କଳଙ୍କ ନିଷ୍ପାପ ଶିଶୁ କରୁଥିଲା । କଟକରୁ ବାହୁଡ଼ି ଆସିବାର ମାସଟିଏ ବିତିଗଲଣି । ସ୍ନେହମୟୀ ଜନନୀଙ୍କର ଏ ଆହ୍ଲାଦ ଊଣା ହୋଇନାହିଁ ।

ଯେତେ ଭାଇ ସେତେ ଘର । ଅଭାବ ଅସୁବିଧା ଘରଣୀମାନଙ୍କର ମନ ଫଟାଫଟିର କାରଣ ହୁଏ । ଗୋଟିଏ କୁଟୁମ୍ବ ଭାଙ୍ଗି ଅନେକ କୁଟୁମ୍ବ ହୁଏ । ଭିନେ ହେଲା ଭାଇ ପଡ଼ୋଶୀପଣକୁ ସରି ହୁଏ ନାହିଁ । ଭାଗ୍ୟବାନ କେବଳ ସେହି କୁଟୁମ୍ବର ସନ୍ତାନ, ଯେଉଁମାନେ ସବୁ ଅଭାବ ଅସୁବିଧାକୁ ଉଦାରତାର ସହିତ ସମ୍ଭାଳି, ପାରିବାରିକ ରାଗଦ୍ୱେଷ ଓ ଉତ୍ତେଜନାରେ ଗୁରୁତ୍ୱ ନ ଦେଇ ସଭିଙ୍କ ପ୍ରତି ସମଦୃଷ୍ଟି ଦେଇ ଦୃଢ଼ କର୍ତ୍ତବ୍ୟଜ୍ଞାନର ପାଶରେ ବାନ୍ଧି ରଖିପାରନ୍ତି, ସମସ୍ତେ ସମସ୍ତଙ୍କ ପାଇଁ ସ୍ୱାର୍ଥ ତ୍ୟାଗ କରନ୍ତି ।

ସହସ୍ରକେ ଗୋଟିଏ ।

ବସନ୍ତ ଜାଣେ, ତାର ଦୁଇ ମାମୁଁ ଆନନ୍ଦଚନ୍ଦ୍ର ଓ ବନନ୍ଦଚନ୍ଦ୍ରଙ୍କର କୁଟୁମ୍ବ ଭାଙ୍ଗି ପରସ୍ପରର ବିପରୀତମୁଖୀ ଦୁଇଟି କୁଟୁମ୍ବ ହୋଇଛି । ବଡ଼ମାମୁଁ ଆନନ୍ଦଚନ୍ଦ୍ର ଯେତେବେଳେ କଟକର ଜଣେ ମହାଜନଙ୍କର ଗୁମାସ୍ତା

ପାଇଁ କର ଅତି ଦୁଃଖରେ ସମସ୍ତ କଟାଉଥିଲେ, ତାଙ୍କର ବିମାତା-ପୁତ୍ର ସାନଭାଇ ବିନନ୍ଦ ପୁରୀ ସହରରେ ସପ୍ଲାଇ ଅଫିସରେ କିରାଣୀ ଥିଲେ । ଭଲରେ ଚଳୁଥିଲେ । ଭୁଲରେ କେବେ ବିନନ୍ଦ ଆନନ୍ଦଙ୍କୁ ସାହାଯ୍ୟ କରି ନ ଥିଲେ । ସେଥିପାଇଁ ବିମାତା ବସୁମତୀ ହୁଏତ ଅନେକ ପରିମାଣରେ ଦାୟୀ, କିନ୍ତୁ ଦୁଇ ମାଈଙ୍କୁ ସମ୍ପୂର୍ଣ୍ଣ ଦୋଷମୁକ୍ତ କରିହେବ ନାହିଁ । ବଡ଼ମାଈଁ ଇନ୍ଦିରାଙ୍କ ପାଖରେ ନଅବର୍ଷ କଟାଇ ସେ ଅନୁଭବ କରିଛୁ ଯେ, ସ୍ନେହ ଓ ଉଦାରତାର ଚଳନ୍ତି-ପ୍ରତିମା ପରି ବାହାରକୁ ଦିଶିଲେ ମଧ୍ୟ ନିଜର ସ୍ୱାର୍ଥକୁ ଆଗରେ ରଖି ସେ ଅନ୍ୟମାନଙ୍କ ସଙ୍ଗେ ଚଳପ୍ରଚଳ ହୁଅନ୍ତି ।

ସମସ୍ତେ ସ୍ୱାର୍ଥପର । ଇନ୍ଦିରା ତହିଁରୁ ମୁକ୍ତ ନୁହନ୍ତି । ତାଙ୍କର ସ୍ୱାର୍ଥପରତା ତାଙ୍କୁ ଲକ୍ଷପତିର ଘରଣୀ କରିସାରିଛି । ମାମୁଁ ଓ ମାଈଁ ଆହୁରି ଧନ ଉପାର୍ଜନ କରି ଧନବାନ ଶକ୍ତିଶାଳୀ ଗୋଷ୍ଠୀରେ ନିଜକୁ ମିଶାଇ-ଦେବାକୁ ଆପ୍ରାଣ ଚେଷ୍ଟା କରୁଛନ୍ତି । ସେମାନଙ୍କ ଦୃଷ୍ଟି ଆଗରୁ ଦୂରେଇ ରହିଥିବା ବିନନ୍ଦ ମାମୁଁ, ମାଈଁ ସୁଖଦା ଓ ତାଙ୍କର ପିଲାମାନେ ଆହୁରି ଦୂରେଇଯାଇଛନ୍ତି । ବିନନ୍ଦ ଧନୀ ହୋଇଛନ୍ତି; କିନ୍ତୁ ଅଳପ ଦରମା ପାଇ କିପରି ଏତେ ଧନ ଅର୍ଜନ କଲେ, ସେଥିପାଇଁ ଭିଜିଲାନ୍‌ସ ବିଭାଗର ଫେରରେ ପଡ଼ି ଛଟପଟ ହେଉଛନ୍ତି ।

ବଡ଼ ମାମୁଁ ଓ ବଡ଼ ମାଈଁ ଆଗେଇଯାଇ ତାଙ୍କୁ ଉଦ୍ଧାର କରିବା ପରିବର୍ତ୍ତେ ଗତ ଜୀବନର ଦୁଃଖ ସୁମରି ହୁଏତ ଆଡ଼େଇ ରହିବେ । ଦୁହିଁଙ୍କର ଅଧର୍ମ-ବିତ୍ତ । ଅର୍ଜନର ଉପାୟ ଅନୈତିକ ଓ ଅସାମାଜିକ । କିନ୍ତୁ ଜଣେ ହାତଗୋଡ଼ବନ୍ଧା ସରକାରୀ କର୍ମଚାରୀ, ଆରଜଣ ସ୍ୱାଧୀନ ବ୍ୟବସାୟୀ ।

ଦୁଇ ଭାଇ, ଦୁଇ ପଥରେ ଗତି । ଲକ୍ଷ୍ୟ ଗୋଟିଏ—ଧନ ଆହରଣ, ଉପାୟ ଯେତେ ହୀନ ହେଉ । 'ପେଟ ପୋଷେ ନାହିଁ ହୋଷ' ମାତ୍ର ପ୍ରତ୍ୟକ୍ଷରେ ଓ ପରୋକ୍ଷରେ ସେମାନଙ୍କୁ ସମାଜଦ୍ରୋହୀ କରିଛି । ଖାଲି

ଅସ୍ଵବର ତାଡ଼ନା ବଡମର ପିତା ଷୀରକେଶଷ ଓ ପିତୃବ୍ୟ ଧୀରକେଶଷଙ୍କୁ ମଧ୍ୟ ଭେନେ କରାଇଛୁ । ଅଜ୍ଞାତ ଜୀବନର ସ୍ନେହ ସୋହାଗ ଓ ପରସ୍ପରର ମଙ୍ଗଳ ପାଇଁ ବ୍ୟାକୁଳତା ପର ଜୀବନରେ ଦୁଇଟି ଭାଇଙ୍କୁ ଏକାଠି ବାନ୍ଧି ରଖିପାରି-ନାହିଁ ।

ସେମାନଙ୍କ ମଧ୍ୟରେ ଶତ୍ରୁତା ନାହିଁ; କିନ୍ତୁ ଅଭାବ ଓ ଅନଟନରେ କେହି କାହାର ସହାୟ ହୋଇପାରୁନାହାନ୍ତି । ଲମ୍ବ ପଣତ ସବୁକୁ ପାଏ । କିନ୍ତୁ ପଣତ ନ ଥିଲେ ସବୁ ଫୁଙ୍ଗୁଳା । ତାହାହିଁ ହୋଇଛୁ । ପୈତୃକ ସମ୍ପତ୍ତି ଜେଜେଙ୍କ ଅମଳରୁ ଧୀରେ ଧୀରେ ଛୁଣ୍ଡିଛୁଣ୍ଡିକା ବାପଦାଦଙ୍କ ଅମଳକୁ ଅତି ସଙ୍କୁଚିତ ହୋଇଥିଲା । ତଥାପି ଖାନ୍‌ଦାନର ଗେହ୍ଲାପଣ ଛାଡ଼ି ନ ଥିଲା । ସେହି ଗେହ୍ଲାପଣ ଓ ଅନାବଶ୍ୟକ ଅପରିମିତ ବ୍ୟୟ, ବାହା ନିମିତ୍ୟ, ପ୍ରାକୃତିକ ବିପର୍ଯ୍ୟୟ, ସଙ୍କୁଚିତ ଭୂ-ସମ୍ପତ୍ତିକୁ ଆହୁରି ସଙ୍କୁଚିତ କରିଥିଲା । ଜେଜେ ଓ ବାପଦାଦାଙ୍କୁ ପରର ଗୋଲାମି କରି ଧନ ଅର୍ଜିବାକୁ ପଡ଼ୁ ନଥିଲା ।

ବଡମର ଜେଜେ ଆଖି ବୁଜିଲା ପରେ ଅଳ୍ପ ପାଠୁଆ ଷୀରକେଶଷ ଓ ଧୀରକେଶଷ ଚାକିରି ପାଇଁ ବାରଘର ହେଲେ । ଶେଷକୁ ଷୀରକେଶଷ ଦୂରଦେଶ ଭବାନୀପାଟଣାରେ ବନ୍ଦୋବସ୍ତ ଇଲାକାର ଅସ୍ଥାୟୀ ଠିକା ମୋହରିର ହେଲେ । ଧୀରକେଶଷ ଭଦ୍ରଖର କେଉଁ ଗ୍ଲାଉଜକଳ ମାଲିକଙ୍କର ଗୁମାସ୍ତା ।

ବଡମର ସେହି ଧୀରଦାଦଙ୍କର ତିନୋଟି ସନ୍ତାନ । ସବୁଗୁଡ଼ିକ ପୁଅ । ବଡ଼ ପୁଅ ଶୁଭକେଶଷକୁ ନଅବର୍ଷ । ଧଡ଼ିଆ ପିଲାଟି, ବେଶ୍ ଚଞ୍ଚଳ ଓ ବୁଦ୍ଧିଆ । ଭଲ ପଢ଼ୁଛି । ମଝିଆଁ ମୋହନ ପାଞ୍ଚ ବରଷର ପିଲା । ସ୍ୱାସ୍ଥ୍ୟ ଭଲ, ସୁନ୍ଦର ଛୁଆଟି, ପାଠ ଆରମ୍ଭ କରିଛୁ । ସବାସାନ ମୋହନ ଦୁଇ ବର୍ଷର ଛୁଆ । ଦେହରେ କାଠି ଖଣ୍ଡେ । ଜୋକପରି ସେ ବଡମର ଖୁଡ଼ୀଙ୍କ ଛାତିରେ ଲାଗିଥାଏ । ଧଡ଼ିଆ ଦେହରୁ କ୍ଷୀର ଶୋଷୁଥାଏ ।

ତିନୋଟି ପିଲାଙ୍କୁ ପୋଷି ବଡ଼ାଇବାର ଦାୟିତ୍ୱ ଯେଉଁ ବାସନ୍ତୀଙ୍କ ଉପରେ, ସେ ଯେ ଚିଡ଼ୋଳ ପ୍ରକୃତିର ହୋଇଛନ୍ତି, ଏଥିରେ ଆଉ କ'ଣ

ହଠକତା ଅଛି ! ଚନ୍ଦନାଙ୍କୁ ସେ ଅଭକ୍ତି କରନ୍ତି ନାହିଁ । ଚନ୍ଦନା ରୋଗ ବଇରାଗରେ ପଡ଼ିଲେ ନିଜେ ବାସନ୍ତୀ ଓ ତାଙ୍କ ପୁଅ ଶୁଭ ସେବା କରନ୍ତି । କିନ୍ତୁ ଧନ ସାହାଯ୍ୟ କରିବାକୁ ବାସନ୍ତୀ ମୁଣ୍ଡ ହଲାଇଦିଅନ୍ତି । କହନ୍ତି, କାହୁଁ ପାଇବି ଅପା, ସାନ ପୁଅଟାକୁ ପଇସା ଅଭାବରୁ କ୍ଷୀର ଟୋପାଏ କିଣି ଦେଇପାରୁନାହିଁ ।

ଆରେ ହକ, ସେମିତି ଅଭାବରେ ନ ପଡ଼ିଥିଲେ ମୁଁ କ'ଣ ତୋର ସେହି ଚଣ୍ଡାଳ ହିଂସୁକୀ ଖୁଡ଼ୀକୁ ଟଙ୍କା ଦୁଇଟା ଧାର ମାଗିଥାନ୍ତି ? ମୁଁ ଜାଣେ, ନିଜର ଓ ପିଲାଙ୍କର ପେଟ ଶୁଖାଇ ସେ ରାକ୍ଷସୀ ଟଙ୍କା ସଞ୍ଚୁଛି । ମାସରେ ଥରେ ଦି' ଥର ଧୀର ଆସିଲେ ତାଙ୍କୁ ଟଙ୍କାର ହିସାବ ମାଗି ଝଟାପଟା କଜିଆ କରେ । ଘରେ ତ ଘଡ଼ିଏ ସେ ବସାଇଦିଏ ନାହିଁ । କାମରେ ଲଗାଇଥାଏ ।

ଭୁଲ ହ ବୋଉ !

ମୁଁ ପଛେ ଉପାସରେ ଶୁଏଁ, ତୋ ଦାଦର ଧଡ଼ିଆ ହାଡ଼ମାଳିଆ ରୂପକୁ ଦେଖିଲେ ମୋର ମନରେ ଦୁଃଖ ହୁଏ । ରଜାଘର ପୁଅ ପରି ଧୀରଙ୍କର ସ୍ୱାସ୍ଥ୍ୟ ଓ ରୂପ ଥିଲା । ଯାଉଁଣୁ ଆସୁଣୁ ତାଙ୍କୁ କାଉ କାଉ କରି ଶାସନ କରି ସେ ଡାଆଣୀ ଏ ରୂପ କରାଇଲାଣି । ନିଜକୁ ବି ସେ ନିଜେ ଶୋଷି ଖାଉଛି । ପଇସା ସଞ୍ଚିଲେ କି ଲାଭ ମିଳିବ ?

ହସମ ଉତ୍ତର ଦିଏ ନାହିଁ । ଭାବେ, ଅଭାବହିଁ ମଣିଷର ସ୍ୱଭାବ ବଦଳାଏ । କିପରି ଏ କୁଟୁମ୍ବର ଅଭାବ ସେ ଦୂର କରିପାରିବ ? ତାର ପ୍ରଥମ କର୍ତ୍ତବ୍ୟ ହେଉଛି ଘର ଛୁଆଣି କରିବା । ରୋଷଘରର ଚୁଲିକୁ ମରାମତି କରାଇବା । ସଙ୍ଗେ ସଙ୍ଗେ ପେଟପାଟଣାର ବ୍ୟବସ୍ଥା । ତା'ର ମାଉଁ ହେଉଁ କେତୋଟି ଟଙ୍କା ଦେଇଥିଲେ, କେବେଠାରୁ ସେତକ ସରିଲାଣି । କାଲି ରାତିରେ ଚୂଡ଼ା ପଖାଳ ଓ ଅମ୍ବୁଲ ଚକଟା ଖାଇ ବେଳ କଟିଲା ।

ଚାଉଳ, ଡାଲି, ତେଲଲୁଣ ଘରେ ଜୁଟୁ ନାହିଁ । ଜାଳେଣି କାଠର ଅଭାବ । ଭିତର ପାଖର ବାରଣ୍ଡା କୋଣରେ ଯେଉଁ ଘସି ଥାକ ମରାହୋଇ ରଖା-ହୋଇଥିଲା, ଗତ ବର୍ଷର ପାଣିଛାଟ ମାଡ଼ରେ ସେତକ ଦରଓଦା ହୋଇଛି ।

ପାତଳ ହୋଇ ଆସୁଥିବା ଆକାଶର ଚଳନ୍ତ ବଉଦକୁ ଚାହିଁ ଜଙ୍ଗମ ମନେ ମନେ ନିଃସହାୟତା ଓ ହତାଶାର କାନ୍ଦଣା ମନ୍ତ୍ର ଉଚ୍ଚାରିବାକୁ ଲାଗିଲା ଥରକୁ ଥର । ଦରିଦ୍ର-ପଞ୍ଚାକ୍ଷର ସେ ମନ୍ତ୍ର—କ'ଣ କରିବ ?

ବୁଲିବୁଲି ଜଙ୍ଗମ ଚିରପଲ୍ଲିର ସ୍ୱାଧୀନତା ପରର ଶିରି ଦେଖୁଛି । ଗ୍ରାମର ରୂପ ବଦଳିଛି । ରାସ୍ତାଗୁଡ଼ିକ ଉଚ୍ଚ କରାହୋଇଛି । ରାସ୍ତା କଡ଼ରେ କେତୋଟି ବିଜୁଳିଖମ୍ବ ପୋତା ହୋଇଛି । ତାର ଖଞ୍ଜା ସରିଲାଣି । ଶୀଘ୍ର ବିଜୁଳି ଆଲୁଅ ଆସିବ ।

ଗ୍ରାମର ଗହୀରକୁ ଦି ଭାଗ କରି ବଡ଼ ନାଳ ଖୋଳା ସରିଲାଣି । ସେ ନାଳ ବହୁ ଦୂରରୁ ଆସିଛି । ତଳମାଳଆଡ଼େ ବହୁ ଦୂରକୁ ଲମ୍ବିଯାଇଛି । ସେଇ ନାଳରୁ ଛୋଟ ଛୋଟ ବ୍ରାଞ୍ଚ ନାଳମାନ ଗହୀର ବିଲ ମଝିରେ ଖୋଳା ଯାଇଛି । ଶୀଘ୍ର ପାଣି ଆସିବ ।

ଯେଉଁ ଭୂମିରେ ଦୁବ କଅଁଳୁ ନ ଥିଲା, ସେଥିରେ ସୁନା ଫଳିବ । ଲୋକଙ୍କୁ ଭଲ ବିହନ ଓ ଭଲ ସାର ଯୋଗାଇ ଦିଆହେଉଛି । କିଣିବାକୁ ଧାନ ଋଣ ଦେବାର ବ୍ୟବସ୍ଥା କରାହୋଇଛି । ଉତ୍ପନ୍ନ ହେଉଥିବା ଫସଲ କିଣି-ନେବାର ବନ୍ଦୋବସ୍ତ କରାହୋଇଛି । ବଳକା ଶସ୍ୟ ଗ୍ରାମରେ ଆଜି ରହୁ-ନାହିଁ ।

ଫସଲ କଥା ଦୂରରେ ଥାଉ, ବାଡ଼ିବଗିଚାରେ ଫଳୁଥିବା ପନିପରିବା, ଶାଗ, ଲଙ୍କା, ଲାଉ, କଖାରୁଙ୍କ ଗ୍ରାମରୁ ସହରକୁ ବୋହିନେବାକୁ ଦଳ ଦଳ ବେପାରୀ ସାଇକଲ ଚଢ଼ି ନିତି ମୋଫସଲ ଗ୍ରାମକୁ ଧାଇଁଆସୁଛନ୍ତି । ଘର ଘର ବୁଲି ଯାହା ମିଳୁଛି, ସଂଗ୍ରହ କରି ନଗଦ ପଇସା ଗଣିଦେଇ

ଛୁଟି ପଳାଉଛନ୍ତି । କେଉଁଠିସାହିରେ ଦେଶୀ ନଦୀର ମାଛ ଉଠୁନାହିଁ । ଗଉଡ଼ସାହିରେ ଟୋପାଏ କ୍ଷୀର ମିଳୁ ନାହିଁ । ସବୁ ଚାଲିଯାଉଛି ଗ୍ରାମର ଚାହା ଦୋକାନକୁ ଅବା ଗ୍ଲେଟବଡ଼ ସହରମାନଙ୍କୁ ।

ଜମି ନ ଥିଲା ମୂଲିଆ ଦଳଙ୍କର ମୁହଁ ଉପରକୁ ହେଲଣି । ଜିନଷପତ୍ରର ମୂଲ୍ୟ ହୁହୁ ବଢ଼ିଲେ ବଢ଼ୁ, ବଳକା-ଚାଷୀର ହାତକୁ ଭଲ ଚାରି ପଇସା ଆସୁଛି । ଦର ବଢ଼ିଲାର ଆଳ କରି ମୂଲିଆ ତାର ମୂଲ ବଢ଼ାଉଛି । ସେତକ କରିବାପାଇଁ ସେମାନଙ୍କୁ ଟେକିଦେବାକୁ କେଳ ଉଣ୍ଡି ନେତା ଓ କର୍ମୀମାନେ ମୋଫସଲକୁ ଧାଇଁଆସୁଛନ୍ତି । କେତେ ମୂଲିଆ ସାଇକଲ ଚଢ଼ି ସହରାଞ୍ଚଳରେ କାମ କରିବାକୁ ନିତି ଯାଇ ନିତି ଫେରୁଛନ୍ତି । କେତେ ମୂଲିଆ ଓ ନଅଣିଆ ସଂସାରର ଲୋକ ଗ୍ରାମ ଭିତରେ ଓ ସାଇକଲରେ ଗ୍ରାମର ଉତ୍ପନ୍ନ ବୋହି ଗ୍ରାମ ବାହାରେ ବ୍ୟବସାୟ କରି ଭଲ ରୋଜଗାର କଲେଣି ।

ମନକୁ ମନ କହୁଥିଲା ସେ ବିକ୍ରମ, ସମ୍ଭାଳ ତମର ଭୂମି ହେ ମାଲିକେ; ଦେହରେ ତାକତ ଥିଲେ, ଅଣ୍ଟାରେ ବଳ ଥିଲେ ଲଙ୍ଗଳକଣ୍ଟିରେ ହାତ ପକାଅ, ନୋହିଲେ ସରିଲା । ଭାଗ ବଖରା ଦେଇପାର, କିନ୍ତୁ ସାବଧାନ ! ହଳ ଯାହାର ଜମି ତାହାର ଦୁଆ ଉଠିଲାଣି ।

ବିକ୍ରମ ଖବର ପାଉଛି ଯେ, ଶିକ୍ଷିତ କେତେ ଲଫଙ୍ଗା ଟୋକା ତାଙ୍କରି ପଡ଼ିଆ ପାଖ ପାଖ ଗ୍ରାମର ଆଉ କେତେ ଟୋକାଙ୍କ ସଙ୍ଗେ ମେଣ୍ଟ ବାନ୍ଧି, ରାତିଅଧରେ ଚୋରି ଡକାୟତି କରି ଭଲ ରୋଜଗାର କରୁଛନ୍ତି । ଗଛର ନଡ଼ିଆ, ପୋଖରୀର ମାଛ, ପିଢ଼ାର ଲାଉ, କଖାରୁ ଲୋକଙ୍କର ଉଭେଇଯାଉଛି । ପୋଲିସ ଭୂଆଁ ବୁଲୁଛି, ପତ୍ତା ପାଉନାହିଁ ।

ବିକ୍ରମ ଭାବୁଛି, ଚୋର ଡକାୟତ ସେ ଅନେକ ଦେଖିଛି । କେତେକଙ୍କ ସମ୍ପର୍କରେ ସେ ଅତି ଘନିଷ୍ଠ ଭାବରେ ଆସିଛି । ସେମାନଙ୍କର ପଦ୍ଧତି ଅଲଗା ଅଲଗା । କେଉଁମାନେ ଅତି ଉଚ୍ଚ ଆସନରେ ବସି ଆଇନ କରି ସେହି ଆଇନକୁ ଗୋଡ଼ରେ ଦଳି, ଚାନ୍ଦା, ଉପଢୌକନ ନେଇ ଅନ୍ୟ-

ମାନଙ୍କୁ ଲୁଟି କରିବାର ସୁଯୋଗ ଦେଇ, ସେହି ସୁଯୋଗର ମୂଲ୍ୟ ନେଇ ଧନୀ ହେଉଛନ୍ତି । କେଉଁକେଉଁମାନେ, ଉପରୁ ତଳଯାଏ, ହକ୍ ଦରମା ନେଇ, କଳ ଚଳାଇବାକୁ ନିଯୁକ୍ତି ପାଇ, ସେହି ନିଯୁକ୍ତିର ବଳରେ ଘୁ-ପାନ-ଖିଆ ହାତ-ଗୁଞ୍ଜା ଠୁଳାଇ, ନିଜର ସୁବିଧା କରିନେଉଛନ୍ତି । ଜାଣି ତ କାଳବିଟି ଓ ବଡ଼ ଶ୍ରେଷ୍ଠ ବେପାରି ଦଳ । ସେମାନଙ୍କୁ ତିନିଖୁଣ ମାଫ୍ । ସମସ୍ତେ ଜାଣନ୍ତି, ଲୋକେ ମୁନାଫା ପାଇଁ ବେପାର ବଣିଜ କରନ୍ତି । ପୁରୁଣା ବଚନ ଭିତ୍ତିଛି ଯେ, ବାଣିଜ୍ୟେ ବସତେ ଲକ୍ଷ୍ମୀ ।

ଏହି ପ୍ରବଚନ ବଳରେ ବିଶ୍ୱମର ମାମୁଁ ଓ ମାଣ୍ଡି, ହାଡ଼ିବନ୍ଧୁ, ବାଉରିବନ୍ଧୁ, ରାମକୁମାର ଇତ୍ୟାଦି ଶ୍ରେଣୀର ଉକ୍ତାସ୍ତିତ ପର୍ଯ୍ୟାୟଭୁକ୍ତ ହୋଇ-ପାରିବେ ନାହିଁ । ସେମାନେ ସମସ୍ତେ ଭଦ୍ରଲୋକ ! ଶିରପଲ୍ଲିର ଯେଉଁ ଅଧପାଠୁଆଦଳ ମାମଲତିକାରି ବେଉସା କରନ୍ତି, ଯେଉଁମାନେ ପୁଣି ରାଜନୀତିକୁ ଆଉଜି ସୁବିଧା ଝିଣ୍ଡି ଦଳ ବଦଳାଉଛନ୍ତି, ସେମାନେ ଭଦ୍ରଲୋକ । ବୁଦ୍ଧିବଳରେ ସେମାନେ ଧନ ଅର୍ଜିପାରୁଛନ୍ତି ।

ଗ୍ରାମରେ କେତେଗୁଡ଼ିଏ ପକ୍କାଘର ଓ ଟାଇଲ୍‌ଘର ତୋଳା ହୋଇ-ସାରିଛି । କେହି କେହି ଏବେ ବି ତୋଳୁଛନ୍ତି । ଗ୍ରାମର ଉନ୍ନତି ହୋଇଛି । ଲୋକଙ୍କ ହାତକୁ ପଇସା ଆସିଛି । କାଲି ଯେଉଁମାନେ ମଣିଷ ଭିତରେ ଗଣା ହେଉ ନ ଥିଲେ, ଯେଉଁମାନଙ୍କର ବୁଦ୍ଧି ଓ ବିଦ୍ୟା ନିରସ ବୋଲି ସେକାଳର ଅଦୂରଦର୍ଶୀ ମୁରବି-ମାମଲତିକାରମାନେ ଭବିଷ୍ୟଦ୍‌ବାଣୀ ଡାକବଜାଇ ପ୍ରଚାର କରୁଥିଲେ—ଏଇଟା ବାଜୁଙ୍ଗା ହେବ, ଗ୍ରାମର ଓ କୁଟୁମ୍ବର ନାମ ବୁଡ଼ାଇବ, ସେହିମାନେ ଘର କରିପାରିଛନ୍ତି । ଗ୍ରାମ କହିଲେ ଏବେ ସେହିମାନଙ୍କୁ ବୁଝାଉଛି ।

ବିପଦବାରଣର କୋଠା ତୋଳା ହେଉଛି । ପିଲାଦିନେ ତାକୁ ଚିନ୍ଧିଆ ବୋଲି ଡାକୁଥିଲେ । ସ୍କୁଲରେ ଅବଧାନେ ତାକୁ ନାକକାନ ଧରାଇ ଟାଣ ଖରାରେ ଏକଗୋଡ଼ିଆ ଠିଆ କରଉଥିଲେ । ଗ୍ରାମର ସେ

ଜଣେ ବଡ଼ ବ୍ୟବସାୟୀ । ସେ ତେଜରତି ଦୋକାନର ମାଲିକ । ତା'ର ସବୁ ଭାଇ ସେହି ବେପାରରେ ଲାଗିଛନ୍ତି । ତାଙ୍କର ବଡ଼ ଗୋଦାମ । ସବୁ ଜିନିଷ ମିଳେ । ଟିକିଏ ଚଢ଼ା ଦର । ସବୁ ଜିନିଷ ଫେଣ୍ଟାଫେଣ୍ଟି । ନେଲେ ନିଅ ନ ନେଲେ ନାହିଁ ।

ଆଜି ଯେଉଁ ତିନିଟା ଅପେକ୍ଷାକୃତ ଶ୍ରେଷ୍ଠ ଦୋକାନ ଅଛି, ତା'ର ଅବସ୍ଥା ଏକାପରି । ଭଲ ଚିଜରେ କିଏ କେତେ ଭେଲ ମିଶାଇ ଅଧିକ ଲାଭବାନ୍ ହୋଇପାରେ, ସେଥିକି ପ୍ରତିଦ୍ୱନ୍ଦ୍ୱିତା । ଗମରା ଗହମ, ନୋଳଧରା ଅଟା ଓ ସୁଜି, କଚିଆଲଗା ପୋକଡ଼ା ପାଣିପଶା ଚାଉଳ, ପୋକରା ଡାଲି, ଖଡରା ଲଙ୍କା, ଗନ୍ଧିଆ ତେଲ କାହାରି ନଷ୍ଟ ହୁଏ ନାହିଁ । ସବୁ ଉଧାରଖିଆ ଗରିବଙ୍କ ଘରକୁ ଯାଏ ।

ଉଧାର ଦେବାକୁ ବିକ୍ରମକୁ ବାପଦବାରଣ ମନା କରିଦେଲା । କହିଲା, ତମ ବାପା ଟଙ୍କା ପଠାଇଲେ ସବୁ ଶୁଝିଦେବେ କହି ତମ ବୋଉ ସଉଦା ଖାଇଲେ । ପଞ୍ଚାବନ ଟଙ୍କା ବାକି । ତା' ଉପରେ ସୁଧ । ସେତକ ଆଗ ଶୁଝି ବିକବାବୁ, ସେଇଠୁ ଧାର ମାଗିବ । ଖାଲି ଉଧାର ଦେଉଥିଲେ ମୋ ବେପାର ବୁଡ଼ିବ ।

ଲଜରେ ବିକ୍ରମର ମୁହଁ ଜଳିଗଲା । ତା' ବାପା ଅନେକ ଆପଣାର ଲୋକଙ୍କଠାରୁ ଧାରିଛନ୍ତି । କାଳିବାସି ସଉଦା ଓ ହାତଉଧାରି । ସମସ୍ତେ ଏବେ ତାକୁ ମାଗୁଛନ୍ତି । କେତେ ଉଧାର ତ ବର୍ଷ ବର୍ଷ କଟିଗଲାଣି ।

ଚନ୍ଦନାଙ୍କୁ ପଚାରିବାରୁ ସେ କହିଲେ, ହୋଇଥିବ ରେ ପୁଅ, ମତେ ସବୁ ଜଣା ନାହିଁ । ତୋର ପାଠପଢ଼ା ପାଇଁ ଟଙ୍କା ପଠାଇ ରୋଜଗାର ସରିଲା । ତୋ ମାମୁଁ ସିନା ଅଣ୍ଟା ଦେଇଥିଲେ, ଦି' ବେଳା ଦି' ମୁଠି ଖାଇବାକୁ ଦେଉଥିଲେ—

ହଁ ବୋଉ ! ଆଉ କହନା । ଏ ଅବସ୍ଥା ମୁଁ ଜାଣିଥିଲେ ପାଠ ଛାଡ଼ିଦେଇ ଚାଲିଆସିଥାନ୍ତି । କେଉଁଠି ମୂଲ ଲାଗି ପେଟ ପୋଷିଥାନ୍ତି । ତମକୁ ବି ପୋଷିଥାଆନ୍ତି ।

ଚନ୍ଦନା ସାନ୍ତ୍ୱନା ଦେଇ କହିଲେ, ତୁ ଦୁଃଖ କର ନା ପୁଅ, ଅଦୃଷ୍ଟିକୁ ଦଇବ ସାହା । ଠାକୁରେ ଦୟା କଲେ, ଆମର ଦୁଃଖ ଦୂର ହେବ । ଆମଠାରୁ ଅଧିକ ଦୁଃଖୀ ଏଇ ସଂସାରରେ ଅଛନ୍ତି । ଯିଏ ଯେଉଁ କର୍ମ ନେଇ ସଂସାରକୁ ଆସିଛି, ତାର ଫଳ ସେ ଭୋଗିବ ନାହିଁ ତ ଆଉ କିଏ ଭୋଗିବ ରେ ଧନ ? ତୋର ପୂର୍ବପୁରୁଷଙ୍କ କଥା ଥରେ ବିଚାର କର । ଶୁଣିଛି, ତାଙ୍କର ଜମି ଜମିଦାରୀ ଯାହା କହନ୍ତି ଗଙ୍ଗାରୁ ଗଉତମ ଯାଏ ବ୍ୟାପିଥିଲା । ସେମାନଙ୍କୁ ଗର୍ଭିଣୀ ଗାଈ ବାଛି ଗୁଣ୍ଡୁଥିଲା । ହେଲେ, ଚକ ତ ପୁଣି ଘୂରିବ ରେ ବାବୁ, ତୁ ଭାବନା କର ନା ।

ବିକ୍ରମ ମୁଣ୍ଡ ହଲାଇ ମାଉବଦରେ ତାର ଜନନୀଙ୍କର ବିଶ୍ୱାସକୁ ସ୍ୱୀକାର କରିଥିଲା । ଇତିହାସର ଉଦାହରଣ ଦେଇ ତାଙ୍କର ବିଶ୍ୱାସକୁ ଖଣ୍ଡନ କରିବାକୁ ସେ ପ୍ରୟାସୀ ହୋଇ ନ ଥିଲା । ମନରେ କ୍ଷଣକ ପାଇଁ ଆତଯାତ ହେଲା ଗୋଟିଏ ଭାବନା—ଦୁର୍ବଳର ଏକମାତ୍ର ଆଶ୍ରା କପାଳଲିଖନ, ଆଶ୍ରା ଭଗବାନ । ସମ୍ପ୍ରତି ତାକୁ ଏହାହିଁ ଗ୍ରହଣ କରିବାକୁ ହେବ, ନୋହିଲେ କି ସାନ୍ତ୍ୱନା ସେ ନିଜକୁ ଦେଇପାରିବ ?

ବାତ୍ୟା ଓ ବର୍ଷାରେ ଘରର ଅବସ୍ଥା ଯାହା ହୋଇଛି, ତାକୁ ମରାମତି କରିବାକୁ କାହୁଁ ସେ ଧନ ପାଇବ ? ବାଡ଼ିଗୋବରେ ଗୋବେ ଘୃଷଜମି ଦଖଲରେ ଏବେ ନାହିଁ ଯେ ତାକୁ ବିକି, ଅବା ବନ୍ଧା ପକାଇ କାହାଠାରୁ କିଛି ଆଣି ଗରଜ ମେଣ୍ଟାଇବ ।

ଘରଡିହ ସାତଗୁଣ୍ଠ । ସେଥିରୁ ତାଙ୍କ ଭାଗ ତିନି ଗୁଣ୍ଠରୁ ଅଧିକ । ଅରମାବାରି ଦେଢ଼ଗୁଣ୍ଠ ଇଜମାଲି । ସେଥିରେ ତିନିଗଛ ଆମ୍ବ, ଚାରିଗଛ ନଡ଼ିଆ । ପଣଅଜାଙ୍କ ଅମଳର ବୁଢ଼ା ଗଛଗୁଡ଼ା । ବାପା ଦାଦି ଦୁଇ ଦୁଇ ଗଛ ନଡ଼ିଆ ବାଣ୍ଟି ନେଇଛନ୍ତି । କେଉଁ ବର୍ଷ କେଉଁ ଗଛରେ ଆମ୍ବ ଉଦେ ବୋଲି

ଗଛ ଷଡୋଡ଼ି ଇଜମାଲ ରଖାଯାଇଛି । ବଣ୍ଟା ହୋଇଥିଲେ ତାଙ୍କ ଭାଗର ଗଛଟା ବିକ୍ରି ଷାଠିଏ ସତୁରି ଟଙ୍କା ଫଗ୍ରହ କରିପାଇପାରନ୍ତା । ସେ ଉପାୟ ନାହିଁ ।

ବନ୍ଦମ ଭାବିଲା, ତାର ଖୁଡ଼ୀ ବାସନ୍ତୀଙ୍କୁ କହିଲେ ଆମ୍ବଗଛ ବଣ୍ଟା-ଆରି କରିବାକୁ ସେ କ'ଣ ରାଜି ହେବେ ? ଗୋଟାଏ ଗଛ ଇଜମାଲ ରହିଲେ ରହୁ ।

ଆକାଶ ମେଘମୁକ୍ତ ହେଲଣି । ଖରାର ତେଜ ପ୍ରଖର ହୋଇଆସୁଛି । ବନ୍ଦମ ହାତଘଣ୍ଟାକୁ ଚାହିଁଲା । ସମୟ ସକାଳ ନଅଟା ।

ନନ୍ଦିବନ୍ଧ କଡ଼ରେ ଅଲେଖ ପାତ୍ରର ଜଳଖିଆ ଦୋକାନରେ ଭାରି ଭିଡ଼ ।

ପିଲାଦିନର ସେହି ଅନୁଚ୍ଚ ଅଣଓସାରିଆ ବନ୍ଧ ଆଉ ନାହିଁ । ବନ୍ଧ ଉଚ୍ଚ କରାହୋଇଛି । ତାଭିତର ଚଉଡ଼ା ଏତେ ବଢ଼ିଛି ଯେ, ତା' ଉପରେ ଅନେକ୍କଣରେ ସାଇକଲ ରିକ୍ସା ଯାତାୟାତ କରୁଛି । ବେଳେ ବେଳେ ଜିପ୍ ଓ କାର୍ ମଧ୍ୟ ଯାଉଛି, ଆସୁଛି । ମୋଫସଲରେ ନିଶ୍ଚୟ ନୂଆ ଜୀବନ ସଞ୍ଚରି-ଉଠିଛି । ଲୋକଙ୍କର ସମୟର ମୂଲ୍ୟ ବଢ଼ିଛି, ଅବା ସେମାନେ ଅତି ଅଳସୁଆ ହେଲେଣି । ପାଖ ଗ୍ରାମକୁ ଯିବାକୁ ବି ତାଙ୍କର ରିକ୍ସା ଲୋଡ଼ା ହେଲଣି ।

ଅଲେଖ ବିକୁଛି ବରା, ପକୋଡ଼ି, ପୁରି, ଲଡୁ, ଜିଲେପି, ରସଗୋଲା । ଚା' କେଟଲିରେ ପାଣି ଗର୍ଜୁଛି । ଗତବର୍ଷ ଝଡ଼ ଓ ବର୍ଷାରେ ତାର ଆସବେସଟସ୍ ଛାତର ଲମ୍ବାଳିଆ ଘରର କ୍ଷତି ହୋଇନାହିଁ । ଦିଓଟି ପିଲାଙ୍କୁ ସେ କାମରେ ଲଗାଇଛି । ନିଶ୍ୱାସ ମାରିବାକୁ ତାର ତର ନାହିଁ । ହିସାବ କରି ପଇସା ଗଣିବାରେ ସେ ବ୍ୟସ୍ତ ।

ଦୋକାନ ଆଗରେ ଦିଓଟି ବେଞ୍ଚ ପଡ଼ିଛି । ଶୀରପଲ୍ଲି ଓ ଆଖ ଖୁଆଡ଼ର କଏ, ରିକ୍ସାଚଢ଼ାଳ, ରିକ୍ସାବାଲା, ସବୁ ଜାତିର ଲୋକ ଜଳଖିଆ ଚା' ଖାଉଛନ୍ତି । ନଙ୍ଗଳା ଦେହ କାହାର ନାହିଁ । ସମସ୍ତେ ପିନ୍ଧିଛନ୍ତି ଜାମା । କାହାରି କାହାରି ହାତରେ ଘଣ୍ଟା ବନ୍ଧାହୋଇଛି । କେହି କେହି

ଭୁସି ପ୍ୟାଣ୍ଟ ବି ପିନ୍ଧିଛନ୍ତି । କେହି କେହି ସିଗାରେଟ ଓ ବିଡ଼ି ଟାଣୁଛନ୍ତି । ଅଲେଖର ଦୋକାନରେ ସବୁ ଅଛି । ଗୋପନରେ ଗଞ୍ଜେଇ ଓ ଅଫିମ ବି ମିଳେ ।

ଅଲେଖାଟା ଦିନେ ଛଟଛଟ ଲଫଙ୍ଗା ଥିଲା । କଟକର କେଉଁ ହୋଟେଲରେ ବୟ୍ କାମ କରୁଥିଲା । ଚୋରି କରି ହଗାଲଗା ମାଡ଼ ଖାଇ କଲିକତା ଚାଲିଯାଇଥିଲା । ସେଠାରେ ତିନିବର୍ଷ ରହି ବାବୁ ହୋଇ ଫେରି-ଆସିଲା । ତାଆର ଦୋକାନ । ଭଲ ରୋଜଗାର । ଶିରପଲ୍ଲିର ସେ ଓ୍ୟାର୍ଡ ମେମ୍ବର । ଗଣ୍ୟମାନ୍ୟ ଲୋକ ।

ଚାରିଚକ୍ଷୁର ମିଳନ ହେଲାରୁ ଅଲେଖ ମୁରୁକି ହସିଲା । ମୁଣ୍ଡ ଝୁଙ୍କାଇ କହିଲା, ବସ ବକବାବୁ, କପେ ଚା' ଖାଇଯିବ । କେବଠାରୁ ଆସିଲଣି, ଇଆଡ଼େ ଥରେ ଅନୁଗ୍ରହ ହେଲା ନାହିଁ ? ମୁଁ ସିନା ଜଞ୍ଜାଳରେ ପଡ଼ିଛି ! ଦେଖୁଛ ତ । ବସ ।

ଅଲେଖ ପୁଣି ତା କାମରେ ମନ ଦେଲା । ବକମ ମନ ଭିତରେ ଚମକି ଉଠିଲା । ଅଲେଖାର ରୂପ ବଦଳିଛି । ସେ ଗୋଲ ଫୁଲିଗଲାଣି । କଳା ମୁହଁରେ ଗାଲମୁଞ୍ଛା, ସରୁ ଲମ୍ବ ନଖ । ଦେହରେ ଅଧାହାତ କାମିଜ । ହାତରେ ରିଷ୍ଟୱାଚ୍ । ବକମ ଶୁଣିଛି, ଅଲେଖ ଏ ମଧ୍ୟରେ ଜମି ଦୁଇମାଣ କିଣିସାରିଲାଣି । ତାର ଘରକୁ ପକ୍କା କରିବାକୁ ସେ ମସୁଧା କରୁଛି । ଘର ତୋଳା ସରିଲେ ସେ ବାହା ହେବ ।

କନ୍ୟାପାତ୍ର ସେ କଲିକତାରୁ ତିନିଶହ ଟଙ୍କା ଦେଇ ତିନିବର୍ଷ ହେଲା କିଣି ଆଣିଥିଲା । ଝିଅଟି କୁଆଡ଼େ ପୂର୍ବବଙ୍ଗରୁ ପଳାଇଆସିଥିବା କେଉଁ କାପୁରୁଷ କୁଟୁମ୍ବର ହତଭାଗିନୀଟିଏ । ବାପଭାଇ ହାଣମୁହଁରେ ଗଲେ । ମା' କୁଆଡ଼େ ହଜିଲେ । ଘରେ ଯିଏ ଆଶ୍ରା ଦେଇଥିଲେ, ଘର ନୁହେ ତ ଫୁଟ୍‌ପାଥ୍, ସେମାନେ ହୋଟେଲରେ କାମ କରି ପେଟ ପୋଷୁଥିଲେ । ସେହି ହୋଟେଲରେ ବେକରେ ପଇତା ଝୁଲାଇ ଅଲେଖ ରୋଷେଇ କରୁଥିଲା ।

ଆସିଲାବେଳେ ବାର ତେରବର୍ଷର ହାଡ଼ଖୁରଖଣ୍ଡି ସାବନୀ ଝିଅଟିଏ ଥିଲା ସେ ପାବନୀ । ଧନବନ୍ତ ତା ଭାଷାରେ ସେ କାନ୍ଦୁଥିଲା । ଅଲେଖର ବାପା ଶ୍ରୀବନ୍ତ ଓ ମା ସୁଲକ୍ଷ୍ମୀ ପିଲାଟାର ଯତ୍ନ ନେଲେ । ନିଜ ଝିଅ ସଙ୍ଗେ ଝିଅ ପରି ପାଳିଲେ, ବଢ଼ାଇଲେ । ପାବନୀ ଏବେ ଝିଅ ପରି ଝିଅ ଖଣ୍ଡେ ହେଲାଣି । ରୂପ, ଗୁଣ, ଘରକରଣା, ଭଦ୍ରତା ଓ କାମଧାମ ସବୁଥିରେ ସେ ପ୍ରଶଂସା ପାଉଛି । ଶ୍ରୀବନ୍ତ ପାଣି ସେଇଆକୁ ବୋହୂ କରିବାକୁ ରାଜି ହେଲାଣି ।

ବନ୍ଧମ ଚା' କପେ ଖାଇବାକୁ ମନା କଲା ନାହିଁ । ପକେଟ ଅଣ୍ଡାଳି ପନ୍ଦରଟି ପଇସା କାଢ଼ି ଅଲେଖକୁ ବଢ଼ାଇଦେଲା । ଅଲେଖ ଥାଉ ଥାଉ କହି ହାତ ଦେଖାଇଲା । ଗଣ୍ଡକଭିଡ଼ କମିଲାରୁ ଅଲେଖ ନିଶ୍ୱାସ ମାରିଲା । କହିଲା, ତମକୁ ଅଟକାଇ ରଖିବାର କାରଣ ଅଛି, ବକବାବୁ !

କାରଣ ?

ହିଁ ବକବାବୁ ! ତମ ବାପା ଷାଠିଏଅଶି ବର୍ଷକ ତଳେ ମୋ'ଠାରୁ ପନ୍ଦର ଟଙ୍କା ହାତଉଧାର ନେଇଥିଲେ । କହିଥିଲେ, ଘୁରି ଗାଁକୁ ଯାଇ ମାସକ ଭିତରେ ଟଙ୍କା ପଠାଇଦେବେ । ବର୍ଷେ ପୂରିଲା । ତିନି ଖଣ୍ଡି ଚିଠି ଲେଖିଲି । ଜବାବ ଦେଉନାହାନ୍ତି । ତମରି ଖାତିରରେ ମୁଁ ତାଙ୍କୁ ବିଶ୍ୱାସ କରି ଦେଇଥିଲି ।

ବନ୍ଧମର ମୁହଁ ଜଳିଗଲା । ସେ ହଠାତ୍ କିଛି ଉତ୍ତର ଦେଇପାରିଲା ନାହିଁ । କେତେ ହାତଉଧାର ସେ କରିଛନ୍ତି ତାର କଳନା ନାହିଁ । ବନ୍ଧମର କାନକୁ ଯାହା ଆସିଛି, ଯେଉଁମାନେ ଯେତେ ଟଙ୍କା ତାକୁ ମାଗିଲେଣି ସବୁ ମିଶାଇଲେ ଟଙ୍କା ଘୁରିଶହ ପାଖେଇବ । କାହୁଁ ପାଇବ ଏତେ ଟଙ୍କା ଯେ, ପିତୃଋଣ ପରିଶୋଧ କରି ସେ ତାର କର୍ତ୍ତବ୍ୟ ପାଳନ କରିବ ? ନିଜର ଓ ବଂଶର ଆତ୍ମମର୍ଯ୍ୟାଦା ରକ୍ଷା କରିପାରିବ ?

ମୁଣ୍ଡର ବାଳକୁ ନିଜ ଆଙ୍ଗୁଠିରେ ବନ୍ଧମ ସାଉଁଳିବାକୁ ଲାଗିଲା । ମନେ ମନେ ସେ ତା'ର ପିତାଙ୍କ ଉପରେ ବିରକ୍ତ ହେଲା । ପରିଶୋଧ

କରିବାର ଶକ୍ତି ଯାହାଙ୍କର ନାହିଁ ଏବଂ ଏହା ତାଙ୍କୁ ଉତ୍ତମ ରୂପରେ ଜଣା, ସେ କାହିଁକି ଆଜି ଶୁଝିବ କାଲି ଶୁଝିବ କହି ଅନ୍ୟମାନଙ୍କ ପାଖରୁ ଧାର ଆଣିବେ ? ସମସ୍ତେ ସେମାନେ ଅବସ୍ଥାପନ୍ନ ନୁହନ୍ତି । ଚନ୍ଦନାଙ୍କ ପାଖରୁ ସେ ଶୁଣିଛି ଯେ, ତାଙ୍କର ସାହୁକାରଙ୍କ ମଧ୍ୟରେ ଅନେକେ ଅଛନ୍ତି ଅଭାବଗ୍ରସ୍ତ, ଧାନ କୁଟିଭୁଣି । ସେମାନେ ତାଙ୍କର ଋଣ ପାଇଁ କଷ୍ଟାଳ କରୁଛନ୍ତି । ଟଙ୍କର, ଧପ୍‌ପାଦଆ କହି ଶୋଧୁଛନ୍ତି । ଅଭିସଂପାତ ଦେଉଛନ୍ତି ।

ଯେଉଁମାନେ ଜବାବ୍ ଖିଲାପ୍ କରନ୍ତି, ସେମାନଙ୍କୁ ଆଜି କଅଣ କୁହାଯାଆନ୍ତା ? କେଉଁ ଗୁଣରେ ସେ ରିସ୍‌ପତଖୋର୍ ଉପରକି, ଲାଞ୍ଚଛଣା କର୍ମଚୃଷ୍ଟ ଓ କଳା ବଜାରରେ କାରବାର କରୁଥିବା ବେପାରୀଦଳଙ୍କ-ଠାରୁ ଅଲଗା ? ତାର ବାପା କୁଟୁମ୍ବ ପୋଷିବା ପାଇଁ ଓ ତାର ପାଠପଢ଼ା ପାଇଁ ଏହି ବୃତ୍ତି ଧରିଥିଲେ, ଏପରି କଇଫତ୍ ଦୁନିଆର ଲୋକେ, ଧାରଦେଲା ଲୋକେ ଏବଂ ବିବେକ ଦେନବ ନାହିଁ ।

ପ୍ରଶ୍ନଟି ପଶୋରିଦେଇ ଅଲେଖ ପାହ ତାର କାମରେ ବ୍ୟସ୍ତ ରହିଥିଲା । ଶି ଗ୍ଳିର ଦଳେ ପୁଅ ଓ ଝିଅ ଫଜଲ୍‌ପୁର ଗ୍ରାମର ଉଚ୍ଚ-ଇଂରାଜୀ-ବିଦ୍ୟାଳୟରେ ପଢ଼ିବାକୁ ଯାଉଁଣୁ ବନ୍ଧ ଉପରେ ଅଲେଖର ଦୋକାନ ଆଗରେ ଅଟକି ଯାଇଥିଲେ । ଦଶବର୍ଷରୁ ଚଉଦ ପନ୍ଦର ବର୍ଷର ପିଲାଟିମାନେ । ସମସ୍ତେ ସେହି ଗ୍ରାମର ଛୁଆ ।

ବୟସ କାହାରିକୁ ଷୋହଳ ନାହିଁ । ସେମାନଙ୍କର ପୋଷାକପତ୍ରର ଭିନ୍ନତା କହିଦେଉଛି ଯେ, ସେମାନେ ବିଭିନ୍ନ ଆର୍ଥିକ ସ୍ତରର ବାପ-ମାଆଙ୍କର ସନ୍ତାନ । କେତୋଟି ପୁଅ ନଳୀ ପ୍ୟାଣ୍ଟ ଓ ହାଓ୍ୱାଇନ୍ ପିନ୍ଧିଛନ୍ତି । ଦିଓଟି ଝିଅ ସାଲୱାର ପଞ୍ଜାବୀ ପିନ୍ଧି ଗ୍ଳୁତରେ ପାତଳ କନାର ସ୍କାର୍ଫ ପକାଇଛନ୍ତି । ହାଲ ଦୋହଲା ପିଠି ଉପରେ କେଶ ଖେଳାଇ ନଚମ୍ବ ନଚ୍ଛିଇ ସେମାନେ ଆଟଗଲି ଯାଉଛନ୍ତି ।

ଅଲେଖ ପାଞ୍ଚ ପାଠୁଆ ପିଲାଙ୍କ ପାଇଁ କାଗଜ, ପେନ୍‌ସିଲ, ରବର, ଶସ୍ତା ଝରକଲମ, ସୁଲେଖାସ୍ୟାହି ଓ କାଗଜଗୁଡ଼ା ପେପର-ସୁଇଟ୍‌ସ, ଚକଲେଟ୍ ଓ ଚାରମିନାର ସିଗାରେଟ ବ ପ୍ଲେଟ ଆଲ୍‌ମାରୀରେ ରଖେ । ତେଲ, ବାସନା ସାବୁନ୍ ଓ ଶସ୍ତା ପାଉଡର କିଛି ରଖିଛି । ସେ ଅଳ୍ପ-ସ୍ୱଳ୍ପ ହରେକ୍ ମାଲର ବେପାରୀ ।

ପିଲାମାନଙ୍କ ଭିତରୁ ବଡ଼ ପିଲାଟିଏ, ପେନ୍‌ସିଲ୍ ସଙ୍ଗରେ ଗୁଡ଼ାକ କପେ କିଣିଲା । ଗୁଡ଼ାଖଣ୍ଡ ଚିରାକରିଦେଇ ଖଣ୍ଡେ ଚାର୍‌ମିନାର ମୁହଁରେ ଜଳାଇଲା । ସମସ୍ତଙ୍କ ମଝିରେ ଧୂଆଁ ଛାଡ଼ି ବଙ୍କିମ ଆଡ଼କୁ କଣେଇଁ ଚାହିଁ କହିଲା, ତମ ଦୋକାନର ଗୋଟାଏ ବଡ ଅଭାବ ରହିଯାଇଛି, ଅଲଦାଦା । ତମକୁ ନିନ୍ଦା ହେଉଛି । ଫଜଲ୍‌ପୁରିଆ ଆମକୁ ବି ନିନ୍ଦା କରୁଛନ୍ତି ।

କାହିଁକି ରେ କେବଳା ?

ତମ ଦୋକାନରେ ରେଡ଼ିଓ ନାହିଁ । ମୁଁ କହୁଛି ଅଲଦା, କେତେଥର କହିଲିଣି, ଆମେ ପିଲାଏ ତମ ଦୋକାନକୁ ବଏକଟ କରିବୁଁ । ଦରକାର ହେଲେ ତମକୁ ଘେରାଓ କରିବୁ ।

ଅଲେଖ ଉତ୍ତର ଦେଲା, କିଣିବ କିଣିବ ହୋଇ ରେଡ଼ିଓ, ଅବା ଗୋଟାଏ ଟ୍ରାଞ୍ଜିଷ୍ଟର କିଣିପାରିନାହିଁ ରେ କେବଳା ! ଏଥର କଟକ ଗଲେ ନିଶ୍ଚୟ କିଣିଆଣିବି ।

ନଳୀପ୍ୟାଣ୍ଟ ପିନ୍ଧା ସେଇ ସତର ଅଠର ବର୍ଷର ପିଲାଟା ଚାର୍‌ମିନାର ସିଗାରେଟ୍ ଟାଣି ଟାଣି କନ୍ଧେ କନ୍ଧେ ଆଗେଇଗଲା ।

ବଙ୍କିମ ଅଲେଖକୁ ପଚାରି ବୁଝିଲା ଯେ ସେଇ ପିଲାଟି ବଲକା ବାଳଗାରଙ୍କର ବଡ଼ ପୁଅ କେବଳାନନ୍ଦ ଦାସ । ସେ ଫଜଲ୍‌ପୁର ହାଇସ୍କୁଲରେ ଏଗାର କ୍ଲାସରେ ପଢ଼େ । ଅନୁନ୍ନତ ଜାତିର ପିଲା ବୋଲି ସରକାରୀ ବୃତ୍ତି ପାଏ । ସେ ପୁଣି ଜଣେ ଛାତ୍ର-ନେତା । ସେ ବାବଦରୁ କେଉଁମାନଙ୍କ ପାଖରୁ କିଛି କିଛି ରୋଜଗାର କରେ । ଫୁଟ୍‌ବଲ ଭଲ ଖେଳିପାରେ । ସେ

ଷ୍ଟ୍ରାଇକ୍ ଯୋଗାଡ଼ କରେ । ମାଷ୍ଟରମାନେ ତାକୁ ଡରନ୍ତି । ସେ ପରୀକ୍ଷାରେ କପି କଲେ ସେମାନେ ଦେଖି ନ ଦେଖିଲା ପରି ଆଖି ବୁଜିଦିଅନ୍ତି । ତାର ବାପା ବଜାର ଟ୍ରେଡ଼ର, ତାର ମା ରଙ୍ଗୀ ଓ ଗୁଣ୍ଡପଦନିଆ ବଡ଼ ଭଉଣୀ ବେଙ୍ଗୁଲି ମୂଲ ଲାଗନ୍ତି । ଏବେ ଭଲରେ ଚଳୁଛନ୍ତି ।

ଦୋକାନରେ ଗରାକ ନ ଥିବା ବେଳରୁ ସୁଯୋଗ ନେଇ ବହମ କହିଲା, ଶୁଣ ଅଲେଖ, ବର୍ଷକ ତଳେ ମୁଁ ଗୋଟିଏ ଟ୍ରାନ୍‌ଜିଷ୍ଟର ଦେଢ଼ଶ-ଟଙ୍କା ମୂଲ୍ୟରେ କିଣିଥିଲି । ଜାଣ ସେ ନୂଆ ଅଛି । ମୁଁ ସେଇଟା ବିକିଦେବାକୁ ଚାହେଁ । ଆମର ଜରୁରୀ ଟଙ୍କା ଲୋଡ଼ା । ତମର ଯଦି ପସନ୍ଦ ହୁଏ—

ବର୍ଷଟିଏ ତ ବ୍ୟବହାର କରିଛ, ଚକବାବୁ ! କେତେ ଟଙ୍କାକୁ ବିକିବ ? ଯେତେହେଲେ ସେକେଣ୍ଡ-ହ୍ୟାଣ୍ଡ ।

ତମେ ଦେଖ । ନିଜେ ବସ୍ତୁର କଣ ଦାମ ସ୍ଥିର କର । ଯାହା ଉଚିତ ମନେକରୁଛ । ତମର କରଜ ଟଙ୍କା ପରିଶୋଧ କରିବ । ଘରଟା ମରାମତି କରାଇବ । ତମେ ତ ଆମର ଘରର ଶୋଚନୀୟ ଅବସ୍ଥା ଦେଖିଛ ।

ଦେଖିଛି । ଆଉ ଗୋଟାଏ ବର୍ଷା ଓ ତୋଫାନରେ ନିଶ୍ଚେ ଅଜାଡ଼ି ହୋଇପଡ଼ିବ । କେତେ ଟଙ୍କା ମୁଁ ଦେଇ ପାରିବ ଯେ ଏତେ କାମ ହେବ ?

ମୋର ଏହି ହାତଘଣ୍ଟା ବି ମୁଁ ବିକିଦେବାକୁ ଚାହେଁ, ଅଲେଖ ! ଏବେ ଏଇଟା ମୋର ଲୋଡ଼ା ହେବ ନାହିଁ । କେତେ ଆଡ଼େ ଚାକିରି ଖଣ୍ଡେ ପାଇଁ ଦରଖାସ୍ତ କରିଛି । କେଉଁଠି ଯଦି ଜୁଟିଯାଏ, ପୁଣି ମୁଁ ଗୋଟାଏ ଘଣ୍ଟା କିଣିନେବି ।

ବହମର କଣ୍ଠ ରୁଦ୍ଧ ହୋଇଆସିଲା । ଗୁଡ଼ି ଭିତରୁ କାନ୍ଦକାନ୍ଦର କୋହ ଉଠିଲା । ବିଚରା, ଶେଷକୁ ତାକୁ କାଲିକାର ଚୋର ଓ ଲଫଙ୍ଗା ଅଲେଖ ପାଖର ଶରଣାପନ୍ନ ହେବାକୁ ପଡ଼ିଲା !

ଅଲେଖ ଉତ୍ତର ଦେଲା, ଆଚ୍ଛା ହଉ, ମୁଁ ବୁଝେଁ ।

ଟ୍ରାନ୍‌ଜିଷ୍ଟର ପାଇଁ ପଞ୍ଚାନବେ ଓ ହାତଘଣ୍ଟା ପାଇଁ ଷାଠିଏ ଟଙ୍କା, ମୋଟ ଶହେ ପଞ୍ଚାବନ । ସେଥିରୁ ଧୀରକେଶରୀ ନେଇଥିବା ହାତ ଉଧାର ପନ୍ଦର ଟଙ୍କା, ସୁଧ ବାବଦକୁ ପାଞ୍ଚ ଟଙ୍କା ମଜୁରି ନେଇ ଅଲେଖ ପାଖ ଶହେ ପଇଁତିରିଶ ଟଙ୍କା ବିନମ ହାତକୁ ବଢ଼ାଇଦେଲା । ଲାଭକ୍ଷତିର ହିସାବର ବିନମର ମନ ଛୁଇଁଲା ନାହିଁ । ନିଜ ବଡ଼ିରେ ଘସି ଉବୁଟୁବୁ ହେଉଥିବା ହତାଶ ଲୋକଟିକୁ କାଠଗଡ଼ ହାବୁଡ଼ସିବାର ଆନନ୍ଦ ସେ ଉପଲବ୍ଧି କଲା ।

ବିନମ ଭାବିଲା, ଘରଟାକୁ ଏଥର ସେ ମରାମତ କରିପାରିବ । ଆଉ ଯେଉଁମାନଙ୍କର ପାଉଣା ଅଛି, ବିଶେଷତଃ ଗନ୍ଧଆ ଓରଫ୍ ବିପଦବାରଣ ବେହେରାଙ୍କର, ସବୁ ପରିଶୋଧ କରିବାକୁ ଟଙ୍କା ଅଣ୍ଟ ହେବ । ଯିଏ ଯାହା ଅପମାନିଆ କରି କହୁ, ମହତ ଯାଉ, ଦେହ ଓ ମନକୁ କାଠ କରି ସବୁ ସହିବାକୁ ପଡ଼ିବ । ମାମୁଁ ଘରେ ନିଜକୁ ଦାସାନୁଦାସ କରି, ସମସ୍ତଙ୍କର ସେବା ଅକୁଣ୍ଠିତ ମନରେ କରି, ବେଳେ ବେଳେ ମାଈଁଙ୍କ ତୁଣ୍ଡରୁ ଯେଉଁ ହାଡ଼ରୁ ମାଉଁସ ଝଡ଼ା କଥା ଭର୍ତ୍ସନା ସେ ଶୁଣିଛି, ତା'ଠାରୁ ଲୋକଙ୍କର ଗାଳି ଶାଣିତ ହେବ ନାହିଁ ।

ଗାଉଁଆ ପୁଅ ବିନମ କାର୍ଯ୍ୟରେ ଲାଗିପଡ଼ିଲା । ମୂଲିଆଙ୍କ ସଙ୍ଗେ ସେ ହେଲା ମୂଲିଆ । ଚାରିଆଡ଼କୁ ନଜର ରଖେ । ନିଜେ ଦୁଇଟା ମୂଲିଆର କାମ କରେ । ଖରାତରଳ ସେ ଅଙ୍ଗେ ନିଭାଏ, ଖିଆପିଆ ଭୁଲେ । ଘରଚାଳ ଉପରେ ଚଢ଼ି ନିହାତସଚା ଢିକଳ ଭୋଇଙ୍କ ସଙ୍ଗେ ମିଶି ପୁରୁଣା ସଢ଼ା ନଡ଼ା ଓଟାରେ । ଘରଛୁଆଁଣି କରେ । ବତା ଓ କାମୁଡ଼ା ଭିଡ଼େ ।

ଟୋକେଇରେ ମାଟି ଭରି ସେ ମାଟି ଗୋବର ଚକଟେ । କାନ୍ଥରେ ନେସେ । କେବଳ ନିଜ ଘରର କାମ ସେ କରେ ନାହିଁ । ଦାଣ୍ଡ ଧୀରକେଶରୀଙ୍କ ଭାଗରେ ପଡ଼ିଛି ଯେଉଁ ଦେଢ଼ ବଖରାର ଦଉଡ଼ି ଘର, ତା'ର

କାନ୍ଥ ଓ ଖଣ୍ଡିଆ ଖାବରା ଝଡ ଦାଣ୍ଡପିଣ୍ଡାକୁ ସଜାଡନ୍ତେ । ବସନ୍ତ ହେଉଛନ୍ତି ଘରଣୀ ଓ ପୁତ୍ରବଧୂ କେବଳାନନ୍ଦ ଦାସଙ୍କର ଜନମା ରଙ୍ଗୀ ଓ ତାର ଝିଅ ବେଙ୍ଗୁଲୀ ଘରଦ୍ୱାର ଲିପାପୋଛ କରି ପରିଷ୍କାର କରନ୍ତି ।

ସବୁବେଳେ ହସ ହସ । କିଏ କ'ଣ ପରିହାସ ଛଳରେ କଟୁକଥା ହାଣିଲେ ମନରେ ସେ କଥା ଛୁଞ୍ଚ ଫୋଡନ୍ତେ ସିନା, ଢଙ୍ଗରେ ଓ ବ୍ୟବହାରରେ ସେ ଛଳ କରେ ନାହିଁ । ଗ୍ରାମର ଲୋକେ ଆଶ୍ଚର୍ଯ୍ୟ ହୋଇ ଅନାଇଁ ରହନ୍ତି । ବୁଢ଼ାଳିଆ କେହି କେହି ମନ୍ତବ୍ୟ କରନ୍ତି, ଏତେ ପାଠ ପଢ଼ି ବସନ୍ତ ଶେଷକୁ ପାଠର ଓ କୁଳର ମହତ ଝି' କଡ଼ା କଲା ହେ, ମୂଲିଆଙ୍କ ସଙ୍ଗେ କାନ୍ଧ ଭିଡ଼ି ମୂଲ କାମ କଲା ।

ଅଧାପାଠୁଆ ଗାଁ ମାମଲତକାରିଆ କେହି କେହି କହିଲେ, ଖାରକେଶରୀ ବାହାପିଆପଣ ଦେଖାଇ ସଭିଙ୍କ ଆଗରେ ଲେକ୍ଚର ଝାଡ଼ୁଥିଲେ ଯେ, ତାଙ୍କ ପୁଅ ବସନ୍ତ ନିଶ୍ଚେ ହୋପଟି କଲକ୍ଟର ହେବ । ଧନେ ମଣିଷ ଚରାଇବ । ଟଙ୍କାପଇସା ମନକୁ ଆସି ଘରେ ଅଜାଡ଼ି ହୋଇପଡ଼ିବ । ଦେଖ ହେ ତାଙ୍କ ହୋପଟିଗିରି । ମୁଣ୍ଡରେ ମାଟି ଟୋକେଇ···

ଆଉ ଜଣେ କହିଲେ, ପାଠର ଗରବ ଭାଙ୍ଗିଲା ହେ ! ଅସରଦୁଆଙ୍କ ସମସ୍ତେ ବହି ଘୋଷିଲେ, ପାଠପଢ଼ି ପାଆସ କଲେ ପଣ ପଣ ସଂଖ୍ୟାରେ, ଚାକିରି କେଉଁଠୁ ମିଳିବ ? ମୁଁ କହୁଛି, ଆରେ ଚେମଣା, ବୁଲି ବୁଲି କରି ସେହି ଅଗଣା । ଫେରିଆସିଲ ତ ବାବୁ ! ପୂର୍ବପୁରୁଷଙ୍କ ଅର୍ଜିତ ଭୂମିବାଡ଼ି, ବାସନକୁସନ, ଆସବାବ୍ପତ୍ର ବିକେଇ ଫେସନ କରି ଉଡ଼େଇଲ କାହିଁକି ? ପାଠ ଘୋଷି ତମ ବୟସ ଉଜାଡ଼ିଲ କାହିଁକି ?

ଏହି ପ୍ରକାର ଆଲୋଚନାରେ ସତ୍ୟାସତ୍ୟ କେତେ, ଏହା ବିଚାରିବାକୁ ବସନ୍ତର ତର ନ ଥାଏ । ସେ ଜାଣେ ଦୁନିଆରେ ଜଣକର ସମସ୍ୟା ଆଉ ଜଣଙ୍କର ବୋଧଗମ୍ୟ ହୁଏ ନାହିଁ । ବୁଝାଇବା ଆବଶ୍ୟକ ନାହିଁ । ବୃଥାରେ ଉତ୍ତେଜନା ସର୍ଜନା, ସମୟ ନାଶ, ପୁଣି କାର୍ଯ୍ୟରେ ବ୍ୟାଘାତ । ନିଜର ସମସ୍ୟା ନିଜକୁ ସମାଧାନ କରିବାକୁ ହେବ ।

ପିଲାଦିନର ସାଙ୍ଗସାଥୀ, ଯେଉଁମାନେ ନିଜ ନିଜର ଧନ୍ଦାରେ ଲାଗି ରୋଜଗାରକ୍ଷମ ହେଲେଣି, କମାର, କୁମ୍ଭାର, ବଢ଼େଇ, କେଉଟ, ଗୁଡ଼ିଆ, ଅଳ୍ପ ଅଳ୍ପ ପାଠ ପଢ଼ି ଯେଉଁମାନେ କିଏ କେଉଁ ଶ୍ରେଣୀରୁ ପୋଥିରେ ଡୋରି ବାନ୍ଧି କୁଳ ବେଉସା ଶିଖିବାରେ ମନ ଦେଇଥିଲେ, ଏବେ ନିଜ ନିଜ ବେଉସାରେ ସୁଦକ୍ଷ ହୋଇ ଭଲ ରୋଜଗାର କରୁଛନ୍ତି । ସୁବିଧାରେ ତାଙ୍କର ସଂସାର ଚଳାଇ ଦୁଇପଇସା ହାତରେ ରଖିପାରୁଛନ୍ତି । ତାଙ୍କ ବେଶଭୂଷା, ନିଶକଟା, ପକେଟରେ ଝରି-କଲମ, ହାତରେ ଘଣ୍ଟା ବନ୍ଧା, ପାଦରେ ଚପଲ ଓ କେହି କେହି ସାଇକଲ ଚଢ଼ି ଯିବାର ଢଙ୍ଗରୁ ଜଣାଯାଉଛି । ସେମାନଙ୍କ ଭିତରୁ ବିସ୍ମୟରେ କେହି କେହି ପଗ୍ରୁଛନ୍ତି, ସେ୍ନ କ'ଣ କରୁଛ ବିକବାବୁ, କାଦୁଅ ଚକଟୁଛ ?

ଦେଖୁଛ ତ ଭାଇ !

ବଡ଼ ପାଠ ପାସ କରିଛ, ହାକିମ ହେବ ପରା !

କ'ଣ ହେବ ନ ହେବ ସେ ପରର କଥା । ଯାହା ମୁଁ ହୁଏଁ, ତମମାନଙ୍କଠାରୁ ବଡ଼ ହେବିନାହିଁ !

ସେମିତି କାହିଁକି କହୁଛ, ବିକବାବୁ ?

ମିଛ କହୁନାହିଁ । ତମେ ପ୍ରତ୍ୟେକେ ଜଣ ଜଣ କରି ନିଜ ନିଜ ବିଦ୍ୟାରେ ପାରଙ୍ଗମ ହୋଇସାରିଛ । କେତେ ବିଦ୍ୟା ଜାଣିଛ । ମୋର ପାସକରା ପୋଥିବିଦ୍ୟାରୁ ନିଶ୍ଚୟ ସରସ । ହଉ ଯାଅ, ହାତ ଅଟକିଲା ।

ସେମାନେ ଚାଲିଯାଆନ୍ତି ।

ଦେନା ପାଖକୁ ଆସି କହନ୍ତି, ଛୁଇ ନେଉଟିଲା ରେ ପୁଅ, ପଖାଳ ଚୁଡ଼ିକ ତୋ ପେଟରେ ହଜମ ହୋଇଯିବଣି । ସେତିକି ଥାଉ । କେତେବେଳେ ଆଉ ଗାଧୋଇବୁ ? ଦେହ ଦହିଗଡ଼ିବ ।

ବୋଉଙ୍କର ମଳିନ ମୁହଁକୁ ଚାହିଁଦେଲେ ଦିନେମର ହାଲୁକ ଶୁଖେ । ହାତଗୋଡ ଅଟକେ । ତାଙ୍କର ସୁନ୍ଦର ଗୋଲାଆ ମୁହଁ ହାଡ଼ୁଆ ଦିଶୁଛି । ଆଖିର ଧଳା ଡୋଳା ପେଜୁଆ ଦିଶିଲାଣି । ମୁଣ୍ଡର ଧଳାକଳା ମିଶା ମୁଟୁଣିଏ

କେଶ ତେଲ ନ ଲାଗି ଫୁର୍ ଫୁର୍ ହେଉଛି । ଗୋରା ଦେହ ନରକୁଆ ଶୋଭା ଦିଶୁଛି । ପିନ୍ଧିଛନ୍ତି ଦରମଇଳା ଅଳ୍ପ ଦାମ୍‌ର ମୋଟା ମିଲ୍ ଶାଢ଼ୀ ଖଣ୍ଡେ । ବେକରେ ଯେଉଁ ହରଡ଼ଫାଳିଆ ଷ୍ଟ୍ରେଟ ହାରଟି ସେ ପିନ୍ଧୁଥିଲେ, ସେତିକ ସେ କାହାକୁ ବିକିଦେଲେଣି ଅବା କାହା ପାଖରେ ବନ୍ଧା ପକାଇ ଚାଉଳ ଡାଲିର ବ୍ୟବସ୍ଥା କରିଛନ୍ତି । ବେକରେ ନେଳିଆ ରଙ୍ଗର କାଚମାଳି ଝୁଲୁଛି । ବାମ ନାକଚୂଡ଼ାରେ ଧଳା କାଚବସା ସୁନାର ଲବଙ୍ଗଟି, ଯାହା ଚନ୍ଦନାଙ୍କର ନାକର ଅଂଶ ହୋଇସାରିଛି, ବିଷମର ହେତୁ ପାଇଲାଦିନରୁ ଯାହା ସଙ୍ଗେ ସେ ପରିଚିତ, ସେତିକ ଏବଯାଏ ଅଛି । ହାତର ଦି' ଦି' ପଟ ରୁପାର କାଚ ଘୋରିହୋଇ ପାତଳ ହେଲଣି । ସେତିକ ବିଷମର ଜନମରୁ ଦେଖା, ଅତି ପରିଚିତ । ରୁପାର ବଟଫଳ ମାଳ ହାତରୁ କୁଆଡ଼େ ଗଲଣି ।

ବିଷମର ମନ ବିକଳ ହୁଏ । ବିଳପି ଉଠେ । ସବୁ ଯାଇଛି ପେଟପାଇଁ, ବିଷମର ପାଠପାଇଁ । ହେଇଟି, ବାଟଘରର ପିତଳ-ଗୋବମରା, କମଳୁଟକରା, ଜଇ-ଝିଞ୍ଜରା ଯାଉଁଳି କବାଟର ଫାଳକୁ ଆଉଜି ଖୁଡ଼ୀ ବାସନ୍ତୀ ଧୋବ ଶାଢ଼ୀ ଖଣ୍ଡେ ପିନ୍ଧି ଠିଆ ହୋଇଛନ୍ତି । ଦୁର୍ବଳ ସାବନା ହାତରେ ନୂଆ ରୁପାକାଚ ଝଟକୁଛି । ହାଡ଼ୁଆ ଲମ୍ବାଳିଆ ମୁହଁ । ଦୁର୍ବଳ ହେଲାରୁ କି କଅଣ, ଗୁମୁଦାନ୍ତ ଦିଓଟି ପଦାକୁ ଅଳପ ବାହାରିପଡ଼ିଲଣି । ଷ୍ଟ୍ରେଟ ନାକରେ ଦଣ୍ଡି ଝୁଲୁଛି । ଦୁଇ ନାକପୁଡ଼ାରେ ଦୁଇଟି ଷ୍ଟ୍ରେଟ ସୁନାଫୁଲ । କାନରେ ସୁନାର ଲବଙ୍ଗ । ବେକରେ ଦେଢ଼ଭରି ଅବା ଦୁଇଭରି ଓଜନର ନରସା ସୁନାର ଚେନ୍ । ଷ୍ଟ୍ରେଟ ପଦକଟିଏ ଝୁଲୁଛି । ସବୁ ପୁରୁଣା । ଧୀରକେଶବ ତାଙ୍କ ରୋଜଗାରରେ ପୁରୁଣା ରୁପାକାଚକୁ ଭଙ୍ଗାଇ ଟିକିଏ ଓଜନିଆ କରି ଆଠପଟି ନୂଆ ରୁପାକାଚ ଗଢ଼ାଇ ଦେଇଥିଲେ । ସେତିକ ।

ଖୁଡ଼ୀ ବାସନ୍ତୀ ବି ପାଣ୍ଟି କରିଉଠିଲେ, ସେତିକ ଥାଉ ବିକ ! ତମକୁ ଅପେକ୍ଷା କରି ତମ ବୋଉ ଉପାସରେ ଏପାଖ ସେପାଖ ହେଉଛନ୍ତି । ଆସ ।

ଖୁଡ଼ୀ ସହାନୁଭୂତିଶୀଳା ହୋଇଛନ୍ତି । ତାଙ୍କର ଆଦେଶ ଉପେକ୍ଷା କରିବା ଉଚିତ ହେବ ନାହିଁ । ବସନ୍ତ କାମ ଛାଡ଼ି ଉଠିଲା ।

ସାତଦିନ ଅକ୍ଲାନ୍ତ ପରିଶ୍ରମ କରି, ମୂଲିଆ ଓ ମୂଲିଆଣୀମାନଙ୍କ ସାହାଯ୍ୟରେ ଘରର ମରାମତି କାମ ବସନ୍ତ ଶେଷ କଲା । ପୁରୁଣା ଘର ଟିକିଏ ମୁଣ୍ଡଟେକେଇ ହସିଲା । ତାକୁ ଆଦୋର କରିବାର ପ୍ରୟାସ ମନରେ ଜାଗିଲା । ହେଲା, ନିଜକୁ ସେ ପରୀକ୍ଷା କରିସାରିଛି । ମନରେ ବଳ ଆସିଛି । ସବୁ ସେ କରିପାରିବ ।

ଦେଣା ଓ ଟ୍ରାନ୍‌ଜିଷ୍ଟର ବିକା ଟଙ୍କା ସବୁ ସରିଛି । ଘର ଖରଚପାଇଁ କାହୁଁ ସେ ଟଙ୍କା ଯୋଗାଡ଼ କରିପାରିବ ? ଘର ଓ ବାରି ବ୍ୟତୀତ ସେମାନଙ୍କର ଆଉ ଅଚଳନ୍ତ ସମ୍ପତ୍ତି କିଛି ନାହିଁ । ଚାକିରି ପାଇଁ କେତେ ଆଡ଼କୁ ସେ ଦରଖାସ୍ତ କରିଥିଲା । କୌଣସି ସ୍ଥାନରୁ ଡାକରା ଆସିନାହିଁ ।

କଅଣ ସେ କରିବ ? ଦୁଇଖଣ୍ଡି ପତ୍ର ଲେଖି ବସନ୍ତ ତା'ର ବାପାଙ୍କ ପାଖରୁ କୌଣସି ଉତ୍ତର ପାଇନାହିଁ । ବୋଉ ତା'ର ବାଇଆଣୀ ପରି ହେଉଛନ୍ତି । ବେଳେବେଳେ ତାଙ୍କ ଆଖିରୁ ଲୁହ ଝରିଯାଉଛି । ଉପାସ ରହୁଛନ୍ତି । ପଚାରୁଛନ୍ତି, ଉତ୍ତର ନ ଦେଲେ କାହିଁକି ? ଦେହ ଭଲ ହୋଇଯାଇଥିଲା ବୋଲି ତାଙ୍କର ଶେଷ ଚିଠିରେ ଲେଖିଥିଲେ !

କାର୍ଯ୍ୟବ୍ୟସ୍ତ ଥିବେ ବୋଉ !

ହିଁ ରେ, ବକ, ସେଇଆ । ତାଙ୍କର ଭୁଲା ମନ । ଚିଠି ଖଣ୍ଡେ ଲେଖିବାକୁ ସେ ବରାବର ଏମିତି ଭୁଲିଯାଆନ୍ତି । ମୁଁ ଯେ ଏଠାରେ ପଡ଼ି କେଡ଼େ ଛଟପଟ ହୁଏ, ଜାଣି ମଧ୍ୟ ସେ ଜାଣନ୍ତି ନାହିଁ ରେ !

ଘରେ ଯାଇ ତାଙ୍କୁ ଦେଖିଆସିବାକୁ ମନ ହେଉଛି, କିନ୍ତୁ ଦୂର ବାଟ, ହାତରେ ଧନ ନାହିଁ, କୌଣସିଠାରୁ ମିଳିବାର ସମ୍ଭାବନା ନାହିଁ । ବସନ୍ତର ମନକୁ ଯେଉଁ ବିଚାର ଆସିଲା, ସେ ତାର ବୋଉଙ୍କର ସମ୍ମତି ନେଇ ବାସନ୍ତୀଙ୍କୁ ପଚାରିଲା । ବାସନ୍ତୀ ମନା କରିଦେଲେ । କହିଲେ,

ଇଜମାଲି ସମ୍ପତ୍ତି ଭିତରେ ସେତିକି ରହିଛି, ସେହି ତିନୋଟି ବୁଢ଼ା ଆମ୍ବଗଛ । ତମ ପଣଅଜାଙ୍କ ଅମଳର । ତିନୋଟି ଗଛରେ ତିନି ଜାତିର ଆମ୍ବ ଫଳେ । ଘିଅ ଭଳି ଆମ୍ବ ।

ସବୁ ବର୍ଷ ଫଳେ ନାହିଁ, ଖୁଡ଼ୀ !

ନ ଫଳୁ । ଯେଉଁ ବର୍ଷ ଫଳେ, ସବୁଗଛରେ ଆମ୍ବ ରହେ ନାହିଁ । ତଥାପି ପାଟିରେ ଟିକିଏ ପାଚିଲା ଆମ୍ବ ବାଜେ । ସେହି ଗଛରୁ ଯଦି ଗୋଟିଏ ବିକିବ...

ଆଜି ଦୁଇଟା ରହିବ ।

ତମ ଦାଦା ଏ ଭିତରେ କେବେ ଆସିବେ ବୋଲି ଲେଖିଛନ୍ତି । ତାଙ୍କୁ ପଚାରି, ଗଛ ବଣ୍ଟା ଆଗ କରି, ତମ ଭାଗରେ ପଡ଼ିବା ଗଛଟିକୁ ବିକିଦିଅ । ଆମ ଭାଗର ଗଛ ଓ ଇଜମାଲି ଗଛ ଥାଉ ।

ଦାଦା କେବେ ଆସିବେ, ସେତେଦିନଯାଏ ଆମେ ଚଳିବୁଁ କିପରି ? ବୋଉ କନ୍ଦାକଟା କରୁଛି । ହାତରେ ଠଙ୍କା ହେଲେ ମୁଁ ଟିକିଏ ଭବାନୀପାଟଣା ଯାଆନ୍ତି ।

ବାସନ୍ତୀ ହସିଲେ । କହିଲେ, ଅବଗୁଣ ପାଇବ ନାହିଁ, ପୁଅ ! କେତେଦିନୁ କହିବି କହିବି ହେଉଛି । ତମ ବୋଉଙ୍କୁ ଡରି ତୁଣ୍ଡ ଖୋଲିବାକୁ ସାହସ କରିପାରୁନାହିଁ ! ତମେ ଯବାନ୍ ପୁଅ । ବେତାଏ ପାଠ ପଢ଼ିଛ । ପର ଘରେ ଥାଇ ଗଉଣିଏ ଠଙ୍କା ଖରଚ କଲ । ପାଆସ କରି ଘରକୁ ବାହୁଡ଼ିଲ । ସମସ୍ତେ କେତେ ଆଶା କରି ବସିଥିଲେ । ଭାବୁଥିଲେ, ତମେ କଅଣ ଗୋଟାଏ ବଡ଼ ହେବ । ଗଉଣି ମୁହଁରେ ଠଙ୍କା ଅଜାଡ଼ିବ । ତମେ ପୁଣି ପଚାରୁଛ ଚଳିବ କିପରି ? କାହିଁକି ତେବେ ଲୋକେ ସର୍ବସ୍ୱାନ୍ତ ହୋଇ ପିଲାଙ୍କୁ ପାଠ ପଢ଼ାଇବେ କହ ତ ?

କେତେ ଆଡ଼କୁ ଲେଖୁଛି ଖୁଡ଼ୀ ! ଚାକିରି ମିଳୁ ନାହିଁ । ମୋ'ପରିକା ପଣ ପଣ ପାଠୁଆ ବେକାର ହୋଇ ବୁଲୁଛନ୍ତି । ଯେଉଁମାନଙ୍କର ନଜର

ଲୋକସବୁ ଉପର ପାହ୍ୟାମାନଙ୍କରେ ଅଛନ୍ତି, ସୁବିଧା ଓ ସୁଯୋଗ ତାଙ୍କର ମୁଣ୍ଡରେ ଅଜାଡ଼ିହୋଇପଡ଼ୁଛି । ଆମର କଏ ଅଛି ଯେ ଉପରକୁ ଟାଣିବ, ପଛରୁ ଠେଲିବ ?

ଛିଃ ବାବୁନାନା ପରି କହୁଛ ପୁଅ ! କାହିଁକି ଏତେ ପଢ଼ିଲ ? ଜାଣ ତମର ପାଇଁ, ତମ ବାପା ଅଘରଦୁଆରିଙ୍କ ପାଖରୁ ଧାଇଁଲେ । ବଚନ ରଖି ନ ପାରି ଲାଜରେ ଯାଇଁ ବିଦେଶରେ ପଶିଲେ । ଜାଣ ତମରିପାଇଁ ତମର ବାପା ଦାଦା ଭିନେ ହେଲେ ବାବୁ ! ଏକା ତମର ଦାଦା କେତେ ରୋଜଗାର କରନ୍ତେ ଯେ—

ଚୁଲ୍ଲୀ !

ବସନ୍ତର ଆଖିରେ ଲୁହ ଛଳ ଛଳ ହେଲା ।

ବାସନ୍ତୀ କହିଲେ, ଯେଉଁ ଆମ୍ବଗଛଟା ତମ ଭାଗରେ ପଡ଼ିବ, ତମ ମନକୁ ତମେ ବାଣ୍ଟି ନିଜଦେଇ ବାବୁ ! ମୋର ରାଜା । ସେ ଧନ ସରିଲେ ତ'ଣ ଘରବାରି ବିକିବ ? ଗଛମୂଳରେ ବସିବ ? ମୂଲିଆ ମୂଲ ଲାଗି ତା' କୁଟୁମ୍ବ ପୋଷୁଛି, ଚୋର ଚୋରି କରି ତା କୁଟୁମ୍ବ ଚଳାଉଛି—

ଆଖିରୁ ଲୁହ ପୋଛି, ବସନ୍ତ ଉତ୍ତର ନ ଦେଇ ବାସନ୍ତୀଙ୍କ ଆଗରୁ ଉଠି ଚାଲିଗଲା ।

ବାସନ୍ତୀଖୁଡ଼ୀ ମରମ କଥା କହୁଛନ୍ତି । ତାଙ୍କର ନିଃଶ୍ୱାସ ଅତି ମୁନିଆ । ବସନ୍ତର ଭାବନା ଭେଦୁଛି । ତା' ଭାବନାକୁ କେଣ୍ଟା କେଣ୍ଟା ଲହୁଲୁହାଣ କରୁଛି । ଚନ୍ଦନା ଶୁଣିଥିଲେ କି ଜାଣିଥିଲେ ବାସନ୍ତୀଙ୍କ ସଙ୍ଗେ ଝଟାପଟା କଜିଆ କରିଥାଆନ୍ତେ । ତାଙ୍କର ଗୁଣ ଅବଗୁଣ ଗାଇ ସପ୍ତପୁରୁଷ ଉଦ୍ଧାରିଥାଆନ୍ତେ । ବସନ୍ତକୁ ଏହା ଅବିଦିତ ନାହିଁ । ସେ ଚୁପ୍ ରହିଲା; କିନ୍ତୁ ତାର ଖୁଡ଼ୀଙ୍କର ନଗ୍ନ ସତ୍ୟ ବଚନ ତାର ନିଶ୍ଚେଷ୍ଟତାକୁ ଭଲକରି ଦୋହଲାଇଦେଲା । ଖିଆପିଆ ଭୁଲି କେବଳ ଦରଖାସ୍ତ ଲେଖି ଫଜଲପୁର ପୋଷ୍ଟ-ଅଫିସରେ ଗଳାଇ ସେ ନିଶ୍ଚିନ୍ତ

ହେଲା ନାହିଁ । ଶିରପଲ୍ଲି ଓ ତାର ଆଖପାଖ ପାଞ୍ଚ ଛଅ ମାଇଲ ଭିତରେ ଯେତେ ମିଡ଼ଲ୍ ସ୍କୁଲ ଅଛି, ତାର ସେକ୍ରେଟେରି ଓ ପ୍ରେସିଡେଣ୍ଟମାନଙ୍କ ସଙ୍ଗେ ଦେଖାକରି ନିଜକୁ ସେ ପ୍ରାର୍ଥୀରୂପେ ଠିଆ କରାଇଲା ।

ସବୁଠାରୁ ସେ ଫେରିଲା । ବିଫଳମନୋରଥ ହେଲା । ମାଷ୍ଟର ଚାକିରି କେଉଁଠି କେଉଁଠି ଖାଲି ଅଛି । କିନ୍ତୁ ସବୁଠାରେ ରାଜନୀତି କାମ କରୁଛି । ପରିଚାଳନା ସଂସ୍ଥାର ଅର୍ଦ୍ଧଶିକ୍ଷିତ ମାମଲତକାରିଆ ମେମ୍ବରମାନେ ନିଜ ନିଜ ମଧ୍ୟରେ ଶକ୍ତି ପରୀକ୍ଷା କରୁଛନ୍ତି । କନ୍ଦଳ ଭିଆଣ କରୁଛନ୍ତି । ସମସ୍ତଙ୍କର ନିଜ ନିଜର ପ୍ରାର୍ଥୀ ଅଛନ୍ତି । ଯୋଗ୍ୟତା ପରିବର୍ତ୍ତରେ ସ୍ୱାର୍ଥ କାମ କରୁଛି ।

ବିକ୍ରମ ହତାଶ ହେଲା । ଏଣେ ଘରର ଅଭାବ ତୀବ୍ର ହେଉଛି । ରୋଗିଣୀ ବୋଉଙ୍କୁ ନିଃସ୍ୱ ଅବସ୍ଥାରେ ଗ୍ରାମରେ ଛାଡ଼ି ଚାକିରି ଅନ୍ୱେଷଣରେ ସେ ବାହାରିକୁ ଯାଇପାରୁନାହିଁ ।

ବିକ୍ରମ ସ୍ଥିର କଲା ଯେ, ତାଙ୍କ ଭାଗରେ ପଡ଼ିଥିବା ବୁଢ଼ା ଆମ୍ବ-ଗଛଟା ନିଶ୍ଚୟ ସେ ଅଲେଖ ପାଖକୁ ବିକିବ । ଅଲେଖର ବହୁତ କାଠ ଲୋଡ଼ା । ସେ ଗଛଟାକୁ ଦେଖିଯାଇଛି । ପସନ୍ଦ କରିଛି । ବିକ୍ରମ ତାର ପିଲା-ଦିନର ସାଙ୍ଗ ବୋଲି ଅଲେଖକୁ ମହଙ୍ଗା ପଡ଼ୁ ପଛକେ ସେ ପଚସ୍ତରି ଟଙ୍କା ଦେବାକୁ ରାଜି ହୋଇଛି । କହିଛି ଆଉ ଅଧିକ ଆଶା ଥିଲେ ଅନ୍ୟ କାହାକୁ ବିକ, ବାବୁ । ଏତିକିରେ ତ ମୋର କ୍ଷତି ହେବ, ଅଧିକ କ୍ଷତି ସହିବାକୁ ମୋର କାଢ଼ ନାହିଁ ।

ନଈବନ୍ଧ-ରାସ୍ତା କଡ଼ରେ, ଅଲେଖର ଦୋକାନରେ, ପିଲାମାନଙ୍କର ସ୍କୁଲକୁ ଯିବାବେଳେ ବିକ୍ରମର ମନ କଥାଟି ପକ୍‌କା ହେଲା । ଅଲେଖର ସର୍ତ୍ତ ରହିଲା ଯେ, ସେ ଆଗ କୋଡ଼ିଏ ଟଙ୍କା ଆଗୁରା ଦେବ । ଗଛ କଟାହୋଇ ତଳେ ପଡ଼ିଲା ଦିନ କୋଡ଼ିଏ, କାଠଚିରା ଶେଷ କରି ଅଲେଖ ତା ବାଡ଼ିରୁ ବୋହିନେଲା ପରେ ଆଉ କୋଡ଼ିଏ, ମୂଳ ଚଢ଼ାହୋଇ ବୁଢ଼ା ସଫେଇ ପରେ ବାକି ପନ୍ଦର ।

ବିକ୍ରମ ଉପସ୍ଥିତ ହେଲା । ବିକଳ ଭୋଇଙ୍କର କୁଳନନ୍ଦନ ତାର ଆଗ ବେଞ୍ଚରେ ବସି ଚା ପାନ କରୁଥିଲା । କପ୍ ଓ ପ୍ଲେଟ୍‌କୁ ଟେବୁଲ ଉପରେ ରଖିଲା । ହାତ ବଢ଼ାଇ ମାଗିଲା ସିଗାରେଟ୍ ଖଣ୍ଡେ । ବିନାଦ୍ୱିଧାରେ ଅଲେଖ ଖଣ୍ଡେ ଚାରମିନାର ତା' ହାତକୁ ବଢ଼ାଇଲା । ଛାତ୍ରନେତା କେବଳାନନ୍ଦ ଦାସ ଓହଳିଥିବା କଡ଼ାଦଉଡ଼ିର ନିଆଁରେ ସିଗାରେଟ୍ ଜଳାଇ ଦୁଇ ଦମ୍ ଶୋଷିଲା । ମୁହଁ ପଛକୁ ଫେରାଇ ଧୂଆଁ ଛାଡ଼ିଲା । ଉଠି ଠିଆହେଲା ।

ବିକ୍ରମ ତା ମୁହଁକୁ ଅନାଇ ପ୍ରଶ୍ନ ଭରସିଲା, ତମେ ବିକଳ ଭୋଇଙ୍କର ପୁଅ ?

ଆଜ୍ଞା ହଁ, ବିକଳାନନ୍ଦ ଦାସ କହିଲେ ଭଲ ହୁଅନ୍ତା ।

ସେଇ ଶବ୍ଦଟା ଅଧିକର ସମ୍ମାନପ୍ରଦ, କେବଳାନନ୍ଦ ! ତମେ ଜାଣ ନାହିଁ କି ବହୁବର୍ଷ ତଳେ ଯେଉଁମାନେ ଓଡ଼ିଶାର ରାଜା ଥିଲେ ସେମାନେ ଭୋଇ ନାମରେ ପରିଚିତ ?

ସିଗାରେଟ୍‌ରୁ ଆଉ ଦମେ ଶୋଷି କେବଳାନନ୍ଦ ଅଧାଜଳା ସିଗାରେଟ୍‌କୁ ତଳେ ପକାଇ ଦଳିଦେଲା । ବିକ୍ରମର ମୁହଁକୁ କାବା ହୋଇ ଚାହିଁଲା ।

ବିକ୍ରମ ସାମାନ୍ୟ ହସି କହିଲା, କିଏ ଜାଣେ, ତମେ ଭୋଇମାନେ ସେହି ରାଜବଂଶର ପିଲା ହୋଇଥିବ !

ଆଜ୍ଞା, ସେହି ରାଜାମାନେ କ'ଣ ହରିଜନ ଥିଲେ ? ସେମାନେ କ'ଣ ଅଛୁଆଁ ଥିଲେ ଓ ଦେବ ମନ୍ଦିରରେ ପଶି ଦାଅଁ ଦର୍ଶନ କରିବାର ଅଧିକାର ତାଙ୍କର ନ ଥିଲା ?

ବିକ୍ରମ ଅସ୍ୱସ୍ତି ଅନୁଭବ କଲା । ସେ ଭାବିଲା, ବିକଳାନନ୍ଦ ପିଲାଟି ଅଭଦ୍ର ହୋଇପାରେ, କିନ୍ତୁ ନିର୍ବୋଧ ନୁହେଁ । ସେ ତାର ଉତ୍ତରକୁ ଗୋଳେଇଦେଲା, ବହୁବର୍ଷ ତ କଟିଗଲାଣି, କିଏ କହିବ ଛୁଆଁ ଅଛୁଆଁ ଭେଦ କେବେ ପଶିଥିଲା ସମାଜରେ ? ଯାହାହେଉ ସେ ଅସନା ରୋଗ ଭଲ ହେଲାଣି । ତମେ ସମସ୍ତେ ହରିଜନ ହୋଇସାରିଛ ।

ମହାତ୍ମା ଗାନ୍ଧୀ ଆମ୍ଭକୁ ସେ ଅଧିକାର ଦେଇଯାଇଛନ୍ତି । ହାଡ଼ି, ପାଣ, ଚମାର, କଣ୍ଡରା ସମସ୍ତଙ୍କୁ ସେ ଗୋଟାଏ ଶବ୍ଦରେ ବାନ୍ଧିଦେଇଛନ୍ତି । ଭଲ ହୋଇଛି ସାର୍, ମୁଁ ବୃତ୍ତି ପାଉଛି । ପାସ୍ ଖଣ୍ଡେ କରିପକାଇଲେ—

କ'ଣ କରିବ ?

ଅଲେଖ ପାଢ଼ି କହିଲ, କେବଳାନନ୍ଦର ବହୁତ ଆଶା, ବଡବାବୁ ! ସେ କହୁଛି ସେ ଏମ୍. ଏଲ୍. ଏ. ହେବ । ମନ୍ତ୍ରୀ ବି ହେବ । ଆଜିଠାରୁ ତ ଲିଡର ହୋଇସାରିଲାଣି ।

କେବଳାନନ୍ଦ କହିଲା, ସେ ସବୁ ପରର କଥା, ସାର ! ପାଠ ପଢ଼ିବାକୁ ବେଳ ମିଳୁନାହିଁ । ପାର୍ଟିର କାମ କରିବାକୁ ପଡ଼ୁଛି । ପାସ୍ କେମିତି ହେବ ?

ପଢ଼ିବାକୁ ହେବ, କେବଳାନନ୍ଦ !

ପାଠ ନ ପଢ଼ି କପି କଲେ ବି ପାସ୍ ହେବ ବଡବାବୁ । ଅଲେଖ ପାଢ଼ି କହିଲା, ତାଙ୍କ ସ୍କୁଲର ଇତିହାସ ମାଷ୍ଟର ବାହାଦୁରି ଦେଖାଇ କପି ଧରିଥିଲେ । ପିଲାଙ୍କଠୁଁ ମାଡ଼ ଖାଇଲେ । ପିଲାଏ ତାଙ୍କର ସବୁ ଜିନିଷପତ୍ର ଲୋଟିନେଇଗଲେ । ଏବେ ତାଙ୍କର ବଦଳି ଯାଉଛି ।

କେବଳାନନ୍ଦ କହିଲା, ହଁ ସାର ! ନବକାର ମାଷ୍ଟରଙ୍କର ସ୍ୱଭାବ-ଚରିତ୍ର ଭଲ ନୁହେଁ । ପ୍ରଧାନ ଶିକ୍ଷକ ଲଙ୍କେଶ୍ୱର ଜେନାଙ୍କ ସଙ୍ଗେ ତାଙ୍କର ପଟେ ନାହିଁ । ନବକାର ବେହେରା ମାଷ୍ଟ୍ରେ ନିଜେ ଇସ୍ତଫା ଦେଇଛନ୍ତି । ନ ଦେଇ ଯିବେ କୁଆଡ଼େ ?

କାହିଁକି ?

ମିଛ ଭାଉଚର ଦେଇ ଆମର ଗେମ୍ସ୍-ଫଣ୍ଡର ଟଙ୍କାଗୁଡ଼ା ଖାଇଗଲେ । ଆମ ସ୍କୁଲର ସେକ୍ରେଟେରୀ ସର୍ବେଶ୍ୱର ପଧାନଙ୍କର ଝିଅ ନିର୍ମଳାର ଦାନ୍ତ ବଡ ବୋଲି ତାକୁ ବାହାହେବାକୁ ମନା କରିଦେଲେ । ନିର୍ମଳା ଆମ କ୍ଲାସରେ ପଢ଼େ । ଭଲ ପଢ଼େ, ସାର୍ ! ନବକାର ସାର୍ ତାକୁ ବିନା ପଇସାରେ ଟିଉସନ୍ କରୁଥିଲେ । ବାହାହେବାକୁ ମନାକରି ଆଉ

ବସନ୍ତ ସମ୍ମତ ହେଲା । ସକଳ ଭୋଇଙ୍କର କୁଳନନ୍ଦନ ତାର ଆଗ ବେଞ୍ଚରେ ବସି ଚା ପାନ କରୁଥିଲା । କପ୍ ଓ ପ୍ଲେଟ୍‌କୁ ଟେବୁଲ ଉପରେ ରଖିଲା । ହାତ ବଢ଼ାଇ ମାଗିଲା ସିଗାରେଟ୍ ଖଣ୍ଡେ । ସନାହ୍ନି ଧାରେ ଅଲେଖ ଖଣ୍ଡେ ଚାରମିନାର ତା' ହାତକୁ ବଢ଼ାଇଲା । ଛାତ୍ରନେତା କେବଳାନନ୍ଦ ଦାସ ଓହଳଥିବା କତାଦଉଡ଼ିର ନିଆଁରେ ସିଗାରେଟ୍ ଜଳାଇ ଦୁଇ ଦମ୍ ଶୋଷିଲା । ମୁହଁ ପଛକୁ ଫେରାଇ ଧୂଆଁ ଛାଡ଼ିଲା । ଉଠି ଠିଆହେଲା ।

ବସନ୍ତ ତା ମୁହଁକୁ ଅନାଇ ପ୍ରଶ୍ନ ଭରସିଲା, ତମେ ସକଳ ଭୋଇଙ୍କର ପୁଅ ?

ଆଜ୍ଞା ହଁ, ସକଳାନନ୍ଦ ଦାସ କହିଲେ ଭଲ ହୁଅନ୍ତା ।

ଭୋଇ ଶବ୍ଦଟା ଅତ୍ୟନ୍ତ ସମ୍ମାନପ୍ରଦ, କେବଳାନନ୍ଦ ! ତମେ ଜାଣ ନାହିଁ କି ଦୁଇଶ ବର୍ଷ ତଳେ ଯେଉଁମାନେ ଓଡ଼ିଶାର ରାଜା ଥିଲେ ସେମାନେ ଭୋଇ ନାମରେ ପରିଚିତ ?

ସିଗାରେଟ୍‌ରୁ ଆଉ ଦମେ ଶୋଷି କେବଳାନନ୍ଦ ଅଧାଜଳା ସିଗାରେଟ୍‌କୁ ତଳେ ପକାଇ ଦଳଖି ବସିଲା । ବସନ୍ତର ମୁହଁକୁ କାବା ହୋଇ ଚାହିଁଲା ।

ବସନ୍ତ ସାମାନ୍ୟ ହସି କହିଲା, କିଏ ଜାଣେ, ତମେ ଭୋଇମାନେ ସେହି ରାଜବଂଶର ପିଲା ହୋଇଥିବ !

ଆଜ୍ଞା, ସେହି ରାଜାମାନେ କ'ଣ ହରିଜନ ଥିଲେ ? ସେମାନେ କ'ଣ ଅଛୁଆଁ ଥିଲେ ଓ ଦେବ ମନ୍ଦିରରେ ପଶି ଦାଅଁ ଦର୍ଶନ କରିବାର ଅଧିକାର ତାଙ୍କର ନ ଥିଲା ?

ବସନ୍ତ ଅସ୍ୱସ୍ତି ଅନୁଭବ କଲା । ସେ ଭାବିଲା, ସକଳାନନ୍ଦ ପିଲାଟି ଅଭଦ୍ର ହୋଇପାରେ, କିନ୍ତୁ ନିର୍ବୋଧ ନୁହେଁ । ସେ ତାର ଉତ୍ତରକୁ ଗୋଳେଇଦେଲା, ଦୁଇଶ ବର୍ଷ ତ କଟିଗଲାଣି, କିଏ କହିବ ଛୁଆଁ ଅଛୁଆଁ ଭେଦ କେବେ ପଶିଥିଲା ସମାଜରେ ? ଯାହାହେଉ ସେ ଅସନା ରୋଗ ଭଲ ହେଲାଣି । ତମେ ସମସ୍ତେ ହରିଜନ ହୋଇସାରିଛ ।

ମହାତ୍ମା ଗାନ୍ଧୀ ଆମ୍ଭଙ୍କୁ ସେ ଅଧିକାର ଦେଇଯାଇଛନ୍ତି । ହାଡ଼ି, ପାଣ, ଚମାର, କଣ୍ଡରା ସମସ୍ତଙ୍କୁ ସେ ଗୋଟାଏ ଶବ୍ଦରେ ବାନ୍ଧିଦେଇଛନ୍ତି । ଭଲ ହୋଇଛି ସାର୍, ମୁଁ ବୃତ୍ତି ପାଉଛି । ପାସ୍ ଖଣ୍ଡେ କରିପକାଇଲେ—

କ'ଣ କରିବ ?

ଅଲେଖ ପାତ୍ର କହିଲା, କେବଳାନନ୍ଦର ବହୁତ ଆଶା, ବକବାବୁ ! ସେ କହୁଛି ସେ ଏମ୍. ଏଲ୍. ଏ. ହେବ । ମନ୍ତ୍ରୀ ବି ହେବ । ଆଜିଠାରୁ ତ ଲିଡର ହୋଇସାରିଲାଣି ।

କେବଳାନନ୍ଦ କହିଲା, ସେ ସବୁ ପରର କଥା, ସାର ! ପାଠ ପଢ଼ିବାକୁ ବେଳ ମିଳୁନାହିଁ । ପାର୍ଟିର କାମ କରିବାକୁ ପଡ଼ୁଛି । ପାସ୍ କେମିତି ହେବ ?

ପଢ଼ିବାକୁ ହେବ, କେବଳାନନ୍ଦ !

ପାଠ ନ ପଢ଼ି କଟି କଲେ ବି ପାସ୍ ହେବ ବକବାବୁ । ଅଲେଖ ପାତ୍ର କହିଲା, ତାଙ୍କ ସ୍କୁଲର ଇତିହାସ ମାଷ୍ଟର ବାହାଦୁରୀ ଦେଖାଇ କପି ଧରିଥିଲେ । ପିଲାଙ୍କଠୁଁ ମାଡ଼ ଖାଇଲେ । ପିଲାଏ ତାଙ୍କର ସବୁ ଜିନିଷପତ୍ର ଶ୍ରେଇ ନେଇଗଲେ । ଏବେ ତାଙ୍କର ଗ୍ଳକରି ଯାଉଛି ।

କେବଳାନନ୍ଦ କହିଲା, ହଁ ସାର ! ନବକାର ମାଷ୍ଟରଙ୍କର ସ୍ୱଭାବ-ଚରିତ୍ର ଭଲ ନୁହେଁ । ପ୍ରଧାନ ଶିକ୍ଷକ ଲିଙ୍ଗରାଜେଶ୍ୱର ଜେନାଙ୍କ ସଙ୍ଗେ ତାଙ୍କର ପଡ଼େ ନାହିଁ । ନବକାର ବେବେହେବ ମାଷ୍ଟ୍ରେ ନିଜେ ଇସ୍ତଫା ଦେଇଛନ୍ତି । ନ ଦେଇ ଯିବେ କୁଆଡ଼େ ?

କାହିଁକି ?

ମିଛ ଭାଉଚର ଦେଇ ଆମର ଗେମ୍ସ୍-ଫଣ୍ଡର ଟଙ୍କାଗୁଡ଼ା ଖାଇଗଲେ । ଆମ ସ୍କୁଲର ସେକ୍ରେଟେରୀ ସର୍ବେଶ୍ୱର ପଧାନଙ୍କର ଝିଅ ନର୍ମଳାର ଦାନ୍ତ ବଡ ବୋଲି ତାକୁ ବାହାହେବାକୁ ମନା କରିଦେଲେ । ନର୍ମଳା ଆମ କ୍ଲାସରେ ପଢ଼େ । ଭଲ ପଢ଼େ, ସାର୍ ! ନବକାର ସାର୍ ତାକୁ ବିନା ପଇସାରେ ଟିଉସନ୍ କରୁଥିଲେ । ବାହାହେବାକୁ ମନାକରି ଆଜ

ଟିଉସନ୍ କଲେ ନାହିଁ । ଆପଣ ସ୍ବୀକାର କରିବେ, ସାର୍ ? ଶିକ୍ଷକ ମିଳୁନାହାନ୍ତି ବୋଲି ନବକାର ସାରଙ୍କୁ ସଭାପତି ଚେମ ଚଉଧୁରୀ, ସେ ଆମର ସରପଞ୍ଚ ସାର୍, ରାଜି କରୁନାହାନ୍ତି ।

ଅଲେଖ ପାତ୍ର କହିଲା, ଘରେ ବସିଛ, ଅଭାବରେ ଅଛ, ମାଷ୍ଟର କାମରେ ରହିଯାଅ, ହଳବାବୁ ! ଆମ କେବଳା କହିଲେ ଚେମ ଚଉଧୁରୀ ତମକୁ ରଖିବାକୁ ରାଜି ହେବେ ।

ହଳଧର ପଚାରିଲା, କାହିଁକି ?

କେବଳା କହିଲା, ସେ ଆମର ପାର୍ଟିର ଲୋକ । ଆମେ ପିଲାଏ ତାଙ୍କୁ କହିଲେ ସେ କଥା ରଖିବେ । କୋଉ ଏବେ ତାଙ୍କର ହାତରୁ ସେ ଧନ ଦେବେ, ନା ଆପଣଙ୍କର ଯୋଗ୍ୟତାର ଅଭାବ ଅଛି ?

ହଳଧର କହିଲା, ମୁଁ ତମର ପ୍ରସ୍ତାବ ବିଚାର କରି କହିବି କେବଳାନନ୍ଦ ! ତମ ସ୍କୁଲବେଳ ଡେରି ହୋଇଯାଉଛି । ପିଲାମାନେ ଆଗେଇଗଲେଣି ।

ଡେରି ଟିକିଏ ହେଲେ ବି ମୋର ପ୍ରେଜେଣ୍ଟ ପଡ଼ିବ । ମୁଁ ହରିଜନ ପିଲା ବୋଲି ଶିକ୍ଷକମାନେ ମୋତେ ଟିକିଏ ସ୍ନେହ କରନ୍ତି । ମୁଁ ଯାଉଛି ।

କେବଳା ଅଣ୍ଟା ନୁଆଁଇ ହଳଧରକେଶରୀଙ୍କୁ ପ୍ରଣାମ କରି ଦ୍ରୁତ ପଦରେ ଫଜଲପୁର ଅଭିମୁଖେ ଯାତ୍ରା କଲା । ଅଲେଖ ପାତ୍ର କୋଡ଼ିଏଟି ଟଙ୍କା ହଳଧରର ହାତକୁ ବଢ଼ାଇଦେଇ କହିଲା, ହନେ ଦୁଇଦିନ ମଧ୍ୟରେ ମୁଁ ଗଛକଟାଳି ଯୋଗାଡ଼ କରି ଗଛ ହଣାଇବାକୁ ଯିବି । ତମେ ପାଖରେ ଥିବ ହଳବାବୁ, କେହି ଯଦି ବାଧାଦିଏ, ତମେ ସେ କଥା ବୁଝିବ । ତମର ଦାଦି ଖୁଡ଼ୀଙ୍କୁ ମୋର ପ୍ରାଣେ ଡର ।

କେହି ବାଧା ଦେବେନାହିଁ, କହି ହଳଧର ଟଙ୍କାତକ ପକେଟରେ ରଖିଲା । କଣେଇଁ ଚାହିଁଲା ଅଲେଖର ହାତକୁ, ଦେଖିଲା, ତାଆର ରିଷ୍ଟ-ଓ୍ବାଚ୍ ଟି ଅଲେଖର ହାତରେ ଶୋଭା ପାଉଛି । ତାଆର ଟ୍ରାନ୍ଜିଷ୍ଟରରେ ବିବିଧଭାରତୀର ହିନ୍ଦି-ଗୀତ ବୋଲହେଉଛି ।

ହବଣ୍ଡବଣତାରେ ହସିଯିବାର ଲୋକ ସେ ନୁହେଁ । ପ୍ରତ୍ୟେକ ପଦାର୍ଥ ଓ ଘଟଣାର ସାମ୍ପ୍ରତିକ ମୂଲ୍ୟ ସେ ବୁଝେ । ଘୁର ଘଣ୍ଟାଟାଏ ଓ ଟ୍ରାନ୍‌ଜିଷ୍ଟରର ବିଶେଷ କିଛି ଆକର୍ଷଣ ତା ପକ୍ଷରେ ନାହିଁ । ଶିରପଲ୍ଲି ଶ୍ରୋତାମଣ୍ଡଳୀର ସର୍ବସାଧାରଣ ଘରେ ସେ ଖବର ଶୁଣେ, ଖବରକାଗଜ ପଢ଼େ । ନିଜର ଅନୁଭୂତି ଓ ଆକାଶର ସୂର୍ଯ୍ୟ ତାକୁ ସମସ୍ତ ସୂଚନା ଦିଅନ୍ତି ।

ବୋଉ, ଖୁଡ଼ୀ ଓ ସାନଭାଇ ଶୁଭଙ୍କେଶର ତାକୁ ଘଣ୍ଟା ଓ ରେଡିଓ ସମ୍ବନ୍ଧରେ ପଚାରିଥିଲେ । ସେ ନିଃସଙ୍କୋଚରେ ହସି ହସି ବୁଝାଇ କହିଥିଲା ଯେ, ସେ ଅଲେଖ ପାଣ୍ଡକୁ ଫେରାଇଦେଇଛି । ହାତରେ ଘଣ୍ଟା ବାନ୍ଧିବାର ସଉକ ଓ କାନରେ ରେଡିଓ ସଙ୍ଗୀତ ଶୁଣିବାର ଆନନ୍ଦ ଖଙ୍କାପେଟିଆଙ୍କର ନ ରହିବା ଭଲ । ସେପରି ନିର୍ଲଜ୍ଜ ସଉକ ଓ ସେପରି ଲୋକଦେଖାଣିଆ ଆନନ୍ଦ ସ୍ଵାବଲମ୍ବୀ କଟା ବେଶ୍ୟାଙ୍କର ଲକ୍ଷଣ । ଆମର ଅବସ୍ଥା ବଦଳିଲେ ପୃଥିବୀ ନୂଆ ଜଣା ହେବ । ଆହୁରି ମୂଲ୍ୟବାନ୍, ଆହୁରି ସୁନ୍ଦର !

କାଟାଳଙ୍କର କୁରଡ଼ିଷ୍ଟେଟରେ ପଣ୍ଡିଆଙ୍କ ଅମଳର ବୁଢ଼ା ଶିଳ୍ପୁଆ ଆମ୍ବଗଛଟି କଡ଼ କଡ଼ ହୋଇ ଖୋଲି ବାଡ଼ିରେ ଅଜାଡ଼ିହୋଇ ପଡ଼ିଲା । ତାର ଶବ୍ଦରେ ବସନ୍ତର ଘୁମ ଦୋହଲିଉଠିଲା । ଗୋଟାଏ ଅବ୍ୟକ୍ତ ବେଦନାରେ ତାର କଣ୍ଠ ରୁଦ୍ଧ ହେଲା ।

ତାର ଖଡ଼ୀ ଘୁମରେ ଦୁଇବର୍ଷର ଧଡ଼ିଆ ପୁଅ ମୋହନକୁ ଜାକି ଧରିଥିଲେ । ତୁଣ୍ଡରେ ଚ୍ ଚ୍ ଶବ୍ଦ କଲେ । ମୋହନ କାନ୍ଦିଉଠିଲା । ଦୂରେଇ ଠିଆହୋଇ ଚନ୍ଦନା ଆଖି ପୋଛୁଥିଲେ ।

ଗଛ ଜଣିଲା ପରି ମୁଣ୍ଡ ଟେକି ହସ ହସ ହୋଇ ଅଲେଖ ପାଣ୍ଡ ବସନ୍ତର ପାଖକୁ ଆସି ତା' ହାତକୁ କୋଡ଼ିଏ ଟଙ୍କାର ନୋଟ ବଢ଼ାଇ-ଦେଲା ।

କହିଲା, ଯେତେ ଶୀଘ୍ର ପାରେଁ କାଠଗଡ଼ ମୁଁ ବୋହିନେବି । ଦୁଇଟି ବଳଦଗାଡ଼ ମୁଁ ଯୋଗାଡ଼ କରିସାରିଛି । କାଠ ଉପରେ ଟିକିଏ ନଜର ରଖିଥିବ ବାବୁ, ନୋହିଲେ ବାହାର ଲୋକ ଚୋରି କରିନେବେ ।

ବିକ୍ରମ ମୁଣ୍ଡ ଦୋହଲାଇ ସମ୍ମତି ଜଣାଇଲା ।

ଅଲେଖ ପଚାରିଲା, କେବଳା ସଙ୍ଗେ ଦେଖା ହୋଇନାହିଁ ?

ନାହିଁ ।

ମତେ ସେ କହୁଥିଲା ଯେ, ଚେମ ଚଉଧୁରୀ ପ୍ରେସିଡେଣ୍ଟଙ୍କୁ ସେ ତମ କଥା କହିଥିଲା । ଚେମବାବୁ ତମକୁ ଦରଖାସ୍ତ କରିବାକୁ ଖବର ପଠେଇଛନ୍ତି । ଏହେଟେସଙ୍କୁ ହାତ କଲେ ମାଷ୍ଟର ଚାକିରି ଖଣ୍ଡେ ନିଶ୍ଚେ ମିଳିଯିବ ।

କେବଳାର କଥାରେ ବିଶ୍ୱାସ ? ଲଫଙ୍ଗା ଅଭଦ୍ରଟାଏ । ଶୁଣିଲି, ସେ ତାର ବାପ ବିକଳାକୁ ଓ ତା ମା ରଙ୍ଗୀକୁ ପିଟିଥିଲା । ତାର ବଡ଼ ଭଉଣୀ ବେଙ୍ଗୁଲିର ଚୁଟି ଧରି ଟାଣିଥିଲା । ଘରୁ ବାହାର କରିଦେବ ବୋଲି ଧମକାଇଥିଲା !

ସବୁ ସତ, ବିକବାବୁ ! କେବଳା ଲଫଙ୍ଗା ହୋଇପାରେ, କିନ୍ତୁ ମୋ ଜାଣିବାରେ ସେ ବେଆଡ଼ା ଢଙ୍ଗ ସହିପାରେ ନାହିଁ । ଅସନା ଖାଦ୍ୟ ଖାଏ ନାହିଁ । ମଦ, ଗଞ୍ଜେଇ ଛୁଏଁ ନାହିଁ । ଅବେଳା ସଞ୍ଜରେ ନିରୋଳାରେ ବେଙ୍ଗୁଲି ଜଣଙ୍କ ସଙ୍ଗେ ଫୁସ୍ ଫୁସ୍ ହେଉଥିଲା । କେବଳା ଜାଣିଲା । ବିକଳା ଗୁହଳ କିଣିବାକୁ ଟଙ୍କା ନେଇ ଅଧାବାଟରେ ମଦ ଖାଇ ଅପନ୍ତରରେ ଗଡ଼ିଲା । ଠାଁରେ ବହୁତ ବେଶି ମଦ ମିଳୁଛି, ବିକବାବୁ ! ଯେଉଁମାନେ ସେ ବେପାର କରୁଛନ୍ତି, ତାଙ୍କୁ ସାଧ କରିବାକୁ ସେ ଧମକାଇଛି । ଆଚ୍ଛା, ଶୁଣ । ରଙ୍ଗୀ ଶାଗ ଖରିଡ଼ୁଥିଲା ଯେ ସେଥିରୁ ସାଁକୁଆ ଓ ଚେଲୁଣୀପୋକ ବାହାରିଥିଲା ।

ଏବେ ବୁଝିଲି ।

ତମେ ଦରଖାସ୍ତ ଖଣ୍ଡେ ପକାଇଦିଅ । ସର୍ବେଶ୍ୱରବାବୁଙ୍କର ଝିଅ ନର୍ମଳାକୁ ବିନା ଦରମାରେ ଟିଉସନ କରିବାକୁ ରାଜି ହେବ । ସିଏ ପଚାରିଲେ କହିବ, କୋଡ଼ିଏ ଟଙ୍କା ନେଉଚ । ଗୁଡ଼ିକର ଖଣ୍ଡ ଥୁଆ, ବିକବାବୁ !

ମିଛ କହିବ ଅଲେଖ ?

ଅଲେଖ ହସିଲା । କହିଲା, ସତ୍ୟଯୁଗ କେବେଠୁ ପଛରେ ପଡ଼ିଲାଣି । ମିଛରେ ଦୁନିଆ ଏବେ ଚାଲିଛି । ମୁଁ ସିନା ଅଳ୍ପ ପାଠୁଆ । ସବୁ ଖବର ମୁଁ ରଖେଁ । ଗିରିଜନମାନେ ତାଙ୍କ ମନକୁ ଗପନ୍ତି, ମୁଁ ଶୁଣେ । ତମେ ଦେଖୁଛ ବାବୁ, ସମସ୍ତେ ମିଛ କହି, ପାଣିରେ ସର ପକାଇ, ନିଜ ନିଜ କାମ କରି-ଯାଉଛନ୍ତି । ପାଠ ସାଙ୍ଗକୁ ଶାଠ ଭଲ ବୋଲି କରିବ ।

ବୁଝିଲି ଯେ, ପୁଣି ଶେଷକୁ ଯଦି କହିବେ ମୋ' ଦାନ୍ତୁରି ଝିଅକୁ ବାହା ହ ?

ହଁ, ନାହିଁ କହିବ ନାହିଁ । ଆଗ୍ରହ ଦେଖାଇବ । ଜାତକ ମଗାଇବ । ଆଜି କେଉଁଠି ଗୁଡ଼ିକର ଯୋଗାଡ଼ କରି କହିବ, ଜାତକ ଶୁଝିଲା ନାହିଁ । ମନ ଯଦି ମାନିଗଲା ତ ହେବ । ସର୍ବେଶ୍ୱରବାବୁ ଗତ ଥର ସରପଞ୍ଚ ଥିଲା-ବେଳେ ଭଲ ସମ୍ପତ୍ତି କରିଯାଇଛନ୍ତି । ହାତରେ ଟଙ୍କା ହେଲାରୁ ଏବେ ମହାଜନୀ କରୁଛନ୍ତି । ସେ ଭଲ ଦେବେ ।

କେବଳାକୁ ତେମ ଚଉଧୁରୀ କାହିଁକି ଭଲ ପାଆନ୍ତି ?

ଏଥର ସେ ସରପଞ୍ଚ ହେଲେ । କେବଳା ଓ ତା ସାଙ୍ଗମାନେ ଓ୍ୱାର୍ଡ଼ ମେମ୍ବରମାନଙ୍କୁ ଧମକାଇ ତାଙ୍କ ପାଇଁ ଭୋଟ କରାଇଦେଲେ । ଆଉ କଣ ଥିବ କିଏ ଜାଣେ ?

ହୁଁ ।

ତମର ତ ଅଭାବ ରହିଛି । ଦରଖାସ୍ତ ଦେଇ ଚେଷ୍ଟା କର ।

ହଉ ଦେଖିବା, କହି ବିକ୍ରମ ଘର ଭିତରକୁ ଗଲା । ସେ ଭାବିଲା, ଜଘନ୍ୟ ରାଜନୀତି-ରାକ୍ଷସ କେବଳ ସହରକୁ ଗ୍ରାସ କରିନାହିଁ, ମୋଫସଲକୁ ମଧ୍ୟ ଗ୍ରାସ କରିସାରିଛି । ମହାତ୍ମାଙ୍କର କଳ୍ପିତ ରାମରାଜ୍ୟର କାମନା କୁହୁଡ଼

ପରି କୁଆଡ଼େ ମିଳାଇଯାଇଛି । ବଞ୍ଚିରହିବାକୁ ହେଲେ ଏ କାଳର ବହୁବିଧ ଜୀବନ-ସମସ୍ୟାର ସମ୍ମୁଖରେ ଠିଆହୋଇ ଯୁଦ୍ଧ କରିବାକୁ ହେବ । ଯୁଦ୍ଧକ୍ଷେତ୍ରରେ ଯାହା କଲେ ବି ନ୍ୟାଯ୍ୟ । ବଞ୍ଚି ଜିତିଲେ ରାଜ୍ୟ ଭୋଗ । ହାରି ମରିଲେ ସ୍ୱର୍ଗ । ପଳାଇଲେ ନରକ ଯନ୍ତ୍ରଣା !

ଅଲେଖ ସେହି ଉପଦେଶ ଦେଲା ।

ମନଅର୍ଡ଼ର କରି ବସନ୍ତର ନାମରେ ଷୀରକେଶରୀ ପଚିଶ ଟଙ୍କା ପଠାଇଛନ୍ତି । କୁପନ୍‌ରେ ଲେଖିଛନ୍ତି, ଯୋଗାଡ଼ କରି ଏତିକ ପଠାଇଲି । ଘରଟାକୁ ଆଗ ଛୁଆଣି କରାଇନେବୁ । ମୋ ଦେହ ଏକପ୍ରକାର ଭଲ ଅଛି । ପରେ ପତ୍ର ଦେଉଛି ।

ଚନ୍ଦନାଙ୍କର ଆନନ୍ଦ କହିଲେ ନ ସରେ । ତାଙ୍କର ସ୍ୱାମୀ ଭଲ ଅଛନ୍ତି । ବାସୁକେଣ୍ଡ ଠାକୁରାଣୀଙ୍କର ଅପାର କରୁଣା । ତାଙ୍କ ପାଖରେ ସେ ମାନସିକ କରିଥିଲେ । ଆହୁରି ମନକାମନା ଅଛି—ଚାକିରିରେ ସ୍ୱାମୀଙ୍କର ଉନ୍ନତି ହେବ, ବସନ୍ତକୁ ବଡ଼ ଚାକିରି ମିଳିବ । ଠାକୁରାଣୀ ସମସ୍ତଙ୍କୁ ଘଣ୍ଟ ଘୋଡ଼ାଇ ରଖିବେ ।

ବାଇଦ ବାଜଣା କରି ଠାକୁରାଣୀଙ୍କର ମାର୍ଜନା ହେଲା । ହଳଦୀ ପାଣିରେ ସ୍ନାହାନ । ସିନ୍ଦୂର ଲେପନ । କଳା କରିଆ ଓଢ଼ଣ । ଭୋଗ ବନ୍ଧନ । କଷି କାଳିଆ ବୋଦା ବଳି ପ୍ରଦାନ ।

ଚନ୍ଦନାଙ୍କର ଗଭୀର ବିଶ୍ୱାସ ଓ ନିଷ୍ଠାକୁ ବସନ୍ତ ମୁଣ୍ଡ ନୁଆଇଁ ମାନି-ନେଇଥିଲା, ଏପରି କି ରଥିଆ କେଉଟ କାଳିସି ଲାଗିବା ପ୍ରସ୍ତାବକୁ ସେ ଆଡ଼େଇ ଦେଇପାରି ନ ଥିଲା ।

ରଥିଆ ଉପାସ କଲା । ଗଞ୍ଜେଇ ଧୂଆଁ ପ୍ରସାଦ ବମ୍-ଭୋଳାଙ୍କୁ ଦେଇ ଆଗ୍ରହୀ ଭକ୍ତମାନଙ୍କୁ ଧୂମ୍ର-ପ୍ରସାଦ ସେବନ ପାଇଁ ଚିଲମ ବଢ଼ାଇ-ଦେଲା । ସେ ଚିଲମ ହାତରୁ ହାତ ଢେଇଁଲା । ଅନେକେ ତାକୁ ଭକ୍ତିରେ

କପାଳରେ ଲଗାଇ ହନମୂ ବଦନରେ ଅନ୍ୟ ହାତକୁ ବଢ଼ାଇଦେଲେ । ହନମ ସେଣ୍ଟପରେ କଲା । ପ୍ରସାଦକୁ ଅବମାନନା କରହେବ ନାହିଁ । ବୋଧହୁଏ ସେଇଥିପାଇଁ ଅଲେଖ ଆଖି ବୁଜି ଅଳପ ଶେଷିଲା । କିନ୍ତୁ ଧୀର-କେଶରୀ ଯେଉଁ ଝାଲ୍-ଶୋଷା ଦେଲେ, ସେଇଥିରେ ମାଲ ଶେଷ । ମୋଟେ ଅଧଭରିଏ ତ !

ଧଡ଼ିଆ ଧେଡ଼ିଙ୍ଗ, ଚନ୍ଦାମୁଣ୍ଡିଆ, ଲମ୍ବ ମୁହଁରେ କୋରଡ଼-ଗାଲୁଆ, ପାଚିଲାପଶା ଆଖିଆ, ଚକଚକ ଜହ୍ନିମଞ୍ଜି କାନିଆ, ପାଞ୍ଚ ପୁଅର ଭାଗ୍ୟବାନ ବାପ, ପଚ୍ଚିଶ ବର୍ଷର ଦରବୁଢ଼ା ରଥିଆ, ମୁହଁରେ ସିନ୍ଦୂର ବୋଳ, ବେକରେ ମନ୍ଦାର ଫୁଲର ମାଳ ଲମ୍ବାଇ, ଝୁଣା ଧୂଆଁ ଶୋଷି କାଳିଶି ଲାଗିଲା । କାଳିଆ ବୋଦାର ପିଚକାରିମରା ଗରମ ରକ୍ତକୁ ଚୋକିଲା । ନାଚିଲା, ନାଚିଲା । ପ୍ରଶ୍ନର ଉତ୍ତର ଦେଲା । ସମସ୍ତଙ୍କର ଶୁଭ ମନାସି ବର ଦେଲା । ରାତି ପାହିଲା ।

ତିନ ଗ୍ରାମର ସ୍ତ୍ରୀପୁରୁଷ ଜମା ହୋଇଥିଲେ । ପଚିଶାଟି ଗ୍ରାମର ଉତ୍ସବ ହୋଇଥିଲା । କେତେ ବଳି ପଡ଼ିଲା । ହୋଗବାଗ ହେଲା । ହରିବୋଲ ହୁଳହୁଳି ଧ୍ୱନିରେ ନଈକଣ୍ଠିଆ ଉପର କୋଶଲା ମୁକର ଦେବୀଙ୍କ ପୀଠ କମ୍ପିଲା । ପେଟ୍ରୋମାକ୍ସ ଆଲୁଅରେ ଆସ୍ଥାନ ତଳ ହାଲେଲମୟ ହେଲା ।

ରାତିସାରା ଚାଲିଲା ଅଲେଖ ପାନର କାରବାର । ପାଉଡରର ଦୁଧରେ ଚା' । ଚଣାଗୁଣ୍ଡାରେ ପିଆଜ ଓ ପକୋଡ଼ି, ଲଡ଼ୁଦାନା, ରୁଟି, ବାଦାମ ତେଲରେ ଡାଲଡା ମିଶାଇ ସେଥିରେ ଛଣା ପୁରି, ନମ୍କି, ଶିଙ୍ଗଡ଼ା । ସବୁ ଶେଷ ।

ମାସକର ବେପାର ହେଲା ଗୋଟାଏ ରାତିରେ । ଧନ୍ୟ ବାସୁଲେଈଙ୍କ ମହିମା ! ହୋଟେଲ ପାଣ୍ଡ, ଏପରିକି କାଳିଶି ଦେଖିବାକୁ ଆସିଥିବା ବଙ୍ଗାଳୀ ଝିଅ ପାର୍ବତୀ ବି ଅଲେଖକୁ ସାହାଯ୍ୟ କରିଥିଲେ ।

ପାର୍ବତୀ ଝିଅଟି ହୋଇଥିଲା ଅନେକଙ୍କର ଆକର୍ଷଣ ।

ମଲ୍ଲୀଫୁଲ ପରି ଧୋବ ଫରଫର ସାଧାରଣ ସ୍ୱାସ୍ଥ୍ୟର ଡେଙ୍ଗାଳିଆ ଝିଅ । ଅଳ୍ପ ଲମ୍ବଳିଆ ନଖୁଣ ମୁହଁ, ପୃଚୁକା ଗାଲ, କିନ୍ତୁ ନାକଟି ବେଶ୍

ଧାରୁଆ । ତୂଳରେ ଅଙ୍କା ସରୁ ଭ୍ରୂଲତା ତଳେ, ପୂର୍ବଳ ପୂର୍ବଳ ଛଳଛଳ ଗେହ୍ଲିଆ ଆଖି । ଆସିଲାବେଳେ ତେର ବର୍ଷ ଝିଅଟାର କଣ୍ଠା ଦୋହଲୁଥିଲା । ବର୍ଷ ତିନି ଗୃହଟାରେ ଏତେ ସ୍ୱାସ୍ଥ୍ୟ, ଏତେ ରୂପ ସେହି ଖାଣ୍ଟିଆ ଦେହରେ ଖନ୍ଦି ହୋଇଗଲା । ଅଲେଖାର ବୋଉ ତାକୁ ଯେତିକି ଦନଗାନ୍ତ ଖଟେଇଛି, ବାସନମଜାରୁ ଗୁହାଳସଫା ଯାଏ, ସେତିକି ତାର ଯତ୍ନ ନେଇଛି । ଝିଅଠୁଁ ବଳି ଆହ୍ଲାଦ କରିଛି । ଏଇ ମଗୁଶିରରେ ନମିତ୍ୟ କରିବ ।

ବଙ୍କମର ନଜରରେ ଉଜ୍ଜ୍ୱଳ ପେଟ୍ରୋମାକସ ଆଲୁଅରେ ସେ ପାବନୀ ପଡ଼ିଥିଲା । ଅଲେଖାର ମୁହଁରେ ଗଢ଼ିଜଣାର ଆନନ୍ଦ ।

ମାନସିକ ସଫଳ କରାଇବାକୁ ରାତି ପହରକ ପରେ ଫଜଲପୁରରୁ ଅନେକ ଲୋକ ଆସିଥିଲେ । ତାଙ୍କ ସଙ୍ଗରେ ଥିଲେ ଚେକା-ଚଉଧୁରୀ ପଚିଶପାଚି ଚେମ ଚଉଧରୀ ସରପଞ୍ଚ । ଗୋଲଆ ଫୁଲୁକା ମୁହଁରେ ବହଳ ଭ୍ରୂଲତା । ଚ୍ଛୋଟ ଚ୍ଛୋଟ ଆଖି । ମୁନିଆ ଗୁହାଣୀ । ଆସିଥିଲେ ପୁଣି ସର୍ବେଶ୍ୱର ପଧାନେ ସେଙ୍କେଟେରୀ । ଡେଙ୍ଗାଳିଆ ଲୋକ । ତମ୍ବାଳିଆ ରଙ୍ଗ । ହନୁହାଡ଼ ଉଠିଲା-ଉଠିଲା । ମୁହଁରେ ଅସ୍ୱାଭାବିକ ହସ । ଭ୍ରମିଲା ଆଖି । ପ୍ରଧାନ ଶିକ୍ଷକ ଚନ୍ଦାମୁଣ୍ଡିଆ ଦରବୁଢ଼ା ଲଙ୍ଗୁଳି ଜେନା, ଆଉ କେତେ ଶିକ୍ଷକ ଓ ଛାତ୍ର ମଧ୍ୟ ଗୋଡ଼ାଣିଆ ହୋଇ ଆସିଥିଲେ । ସେହି ଦୋକାନ ଆଗରେ ଜୁଟିଗଲା କେବଳାନନ୍ଦ, ଗ୍ରାହକଭିଡ଼ର ।

ସୁବର୍ଣ୍ଣ ସୁଯୋଗ । ଠାକୁରାଣୀଙ୍କ ପୂଜାର ତୁରନ୍ତ ଫଳ । ବିନା ପଇସାରେ କୃତକୃତ୍ୟ ଅଲେଖ, ବଡ଼ବଡ଼ଆଙ୍କୁ ସ୍ପେସାଲ-ଟି' ଦେଲା । ବଙ୍କମକୁ ଚିହ୍ନାଇଦେଲା । ପାବନୀ ବି ପରିବେଷଣ କଲା । ଅଲେଖର ଆଖିର ଇସାରାରେ ବଙ୍କମ ହାତ ଯୋଡ଼ି ମୁଣ୍ଡ ନୋଇଁ ନମସ୍କାର କଲା । କେବଳାନନ୍ଦ ଚିହ୍ନାଇଦେଲା ।

ଚେମ ଚଉଧୁରୀ କହିଲେ, କେଶରୀ ବଂଶକୁ ନ ଜାଣେ କିଏ ? ତମର ପୂର୍ବପୁରୁଷେ ଓଡ଼ିଶାରେ ରାଜୁତି କରୁଥିଲେ ହେ, ଗଙ୍ଗାରୁ ଗୋଦାବରୀଯାଏ

ରାଜ୍ୟ ବ୍ୟାପିଥିଲା ! ସମସ୍ତ ବଦଳେ, ନା କଣ କହୁଛ ସର୍ବେଶ୍ୱର-ବାବୁ ?

ସର୍ବେଶ୍ୱରବାବୁ ଯାବଣାର କାର୍ଯ୍ୟବ୍ୟସ୍ତ ଚଳପ୍ରଚଳ ପ୍ରତିମାକୁ ଡବଡବ କରି ଗ୍ଭହିଁ, ମୁଣ୍ଡ ଦୋହଲାଇ, ହସିହସି ଉତ୍ତର ଦେଲେ, ଆଗେ ବେଳ ଡେରିରେ ବଦଳୁଥିଲା । ଏବେ ସହଳ ସହଳ ବଦଳୁଛି । ଆହୁରି ଜଲଦି ବଦଳିଲା ପରି ଯାଗଯୋଗ ହେଲାଣି । ଉଥିଆ କାଳଣିକୁ ପଗ୍ଭରିଲେ ସେ କହିବ ଯେ ।

ଚେମ ଚଉଧୁରୀ ହସିଲେ । ବିକ୍ରମଙ୍କୁ କହିଲେ, ତମ ସମ୍ବନ୍ଧରେ ମୁଁ ସବୁ ଖବର ପାଇଛି, ବିକ୍ରମବାବୁ ! ବେଳ ମିଳିଲେ ଟିକିଏ ଆମ-ଆଡ଼େ ଯିବ । କଥାଭାଷା ହେବା । ସେକ୍ରେଟେରୀବାବୁଙ୍କୁ ବି ଦେଖା କରିବ । ପରସ୍ପରକୁ ସାହାଯ୍ୟ କରିବା ସମସ୍ତଙ୍କର କର୍ତ୍ତବ୍ୟ । ନା, କଣ କହୁଛ, ହେଡମାଷ୍ଟରବାବୁ ?

ପ୍ରଧାନ ଶିକ୍ଷକ ଲିଙ୍ଗରାଜ ଜେନା ବିନମ୍ର ସ୍ୱରରେ କହିଲେ, ଆଜ୍ଞା, ତା ନୁହେଁ କଣ ? ପରସ୍ପରକୁ ସାହାଯ୍ୟ ନ କଲେ ଏ ଦୁନିଆରେ କିଛି କେବେ ହୋଇପାରିବ ନାହିଁ ।

ଢୋଲ ବାଇଦର ବାଜଣାରେ ଓ ହରିବୋଲ ନାଦରେ ବନ୍ଧତଳ କୋଚିଲା ମୂଳର ଠାକୁରାଣୀଙ୍କ ଆସ୍ଥାନ ପ୍ରକମ୍ପିତ ହେଲା । ଦୋକାନ ଆଗରେ ସମବେତ ସ୍ତ୍ରୀପୁରୁଷଙ୍କ ଗ୍ଭିତରେ ସେ ବାଇଦ ପ୍ରକମ୍ପ ଜଗାଇଲା । ସମସ୍ତେ ଧାଇଁଯାଇଥିଲେ କାଳଣୀ ପାଖକୁ । ଏକା ବିକ୍ରମ ଅପେକ୍ଷା କରି ଗ୍ରାମର ନେତାଦ୍ୱୟଙ୍କର ଆଲୋଚନାକୁ ମନେ ପକାଉଥିଲା । ଚିନ୍ତା କରୁଥିଲା, ପରସ୍ପରକୁ ସାହାଯ୍ୟର ଅର୍ଥ କଣ ?

କେବଳାନନ୍ଦ ଦୋକାନ ଆଗକୁ ଫେରିଆସି କହିଲା, ମୁଁ ସେମାନଙ୍କୁ ଆଗରୁ ଶୁଣାଇଦେଇଥିଲି ।

ନଗ୍ଭକାର ମାଷ୍ଟରଙ୍କୁ ଆଜ ଆମେ ଫେଆରୱେଲ ଦେଲୁ । ଦିନେ ଦୁଇ ଦିନ ମଧ୍ୟରେ ସେ ଗ୍ଭଲିଯିବେ ।

ବିକ୍ରମର ପାଟିରୁ ବାହାରିଲା, ଆହା ବିଚରା !

ଅଲେଖ କହିଲା, ମାଷ୍ଟରି ଚାକିରିଟା ନଷ୍ଟ ହୋଇଯିବ, ବିକବାବୁ ! ପ୍ରଥମ ମାସର ଦରମାରୁ ମୋର ଚାରିଟଙ୍କା ତିରିଶ ପଇସା ମୋତେ ଶୁଝି-ଦେବ । ଚା ଷ୍ଟଲରେ ତମ ପାଇଁ ମୁଁ ସେତିକି ଖରଚ କଲି ।

ବିକ୍ରମ ହସିଥିଲା ।

ଠାକୁରାଣୀ ଗାଧୁଆ ଓ କାଳଶିଳଗାରେ ବିକ୍ରମର ପଚାଶ ଟଙ୍କା ଖରଚ ହେଲା । ସେଥିପାଇଁ ଚନ୍ଦନାଙ୍କ ମନରେ ଅବଶୋଷ ନ ଥିଲା । କାମଟାକୁ ଧୀରକେଶରୀ ଓ ବାସନ୍ତୀ ପସନ୍ଦ କଲେ ।

ଧୀରକେଶରୀ ପିଲାଟିଦିନରୁ ବିକ୍ରମକୁ ସ୍ନେହ କରନ୍ତି । ତାକୁ କୋଳରେ କାଖରେ ବଢ଼ାଇଛନ୍ତି । ଭିନେ ହେଲେ ବୋଲି ତାଙ୍କର ସ୍ନେହ ଊଣା ହୁଅନ୍ତା କାହିଁକି ? ସେ ଏବେ ବିକ୍ରମକୁ ସ୍ନେହ ସଙ୍ଗେ ସମ୍ମାନ କଲେଣି । ବାସନ୍ତୀ ଓ ଚନ୍ଦନାଙ୍କୁ କହନ୍ତି, ବିକ୍ରମ ଆମର ବଂଶର ପ୍ରଦୀପ । ଶୁଭଟା ତା'ର ପଛରେ ଗୋଡ଼ାଇ ମଣିଷ ହେବ । ଚାକିରି ଗାଁକୁ ଫେରିବା ଆଗରୁ ସେ କହିଗଲେ, ଅଜାଙ୍କ ଅମଳର ଆମ୍ବଗଛଟା ଗଲାରୁ ବାରିଟା ହତଶ୍ରୀ ଦିଶୁଛି ।

ଅନ୍ୟ ଗଛ ନ ଥିଲା, ବାବା !

ବୁଝିଲୁ ରେ ପୁଅ ! ତୋ ବିଚାରର ଭୁଲ ହୋଇପାରେ ନାହିଁ । ଦରକାର ବେଳେ ଯଦି କାମକୁ ନ ଆସିବ, ପୂର୍ବପୁରୁଷଙ୍କର ରଖି ଯାଇଥିବା ସମ୍ପତ୍ତି ହେବ କ'ଣ ?

ବିକ୍ରମ ମନେ ମନେ ଗର୍ବ ଅନୁଭବ କରିଥିଲା । ଧୀରକେଶରୀ ଗ୍ରାମ ଛାଡ଼ିବା ଦିନ ବୀରକେଶରୀଙ୍କ ପାଖରୁ ପତ୍ରଟିଏ ଆସି ପହଞ୍ଚିଲା । ଘରେ ଆନନ୍ଦର ଢେଉ ଖେଳିଗଲା ।

ଦୁଇପ୍ରହର ବେଳେ ବନ୍ଦମ ଲଫାପା ଖୋଲି ପଅଟିକୁ ପାଟିକରି ନଜେ ପଢ଼ୁଣୁ ଘରଭିତରେ ଗୋଡ଼ ଲମ୍ବାଇ ବସି ଗୁଆ ଛାଞ୍ଚୁଥିବା ଚନ୍ଦନାଙ୍କୁ ଶୁଣାଉଥିଲା । ଧୈର୍ଯ୍ୟଚ୍ୟୁତ ହେଲାପରି ଲମ୍ବ ଚିଠିଟିଏ । ଭିତରେ ଭିତରେ ଓଡ଼ିଆ ଅକ୍ଷରରେ ଲେଖା ଇଂରେଜୀ ଶବ୍ଦ ।

ଲେଖିଥିଲେ ଯେ—ସେ ଭଲ ଅଛନ୍ତି । କାମ କରିବାକୁ ସକ୍ଷମ ହେଲେଣି । ଅଧାମାସର ଯେଉଁ ଦରମା ପାଇଥିଲେ ଦୋକାନବାକି ଓ ହାତଉଧାରି ଶୁଝିବାରେ ସେତକ ସରିଲା । ଖଣ୍ଡିଏ ଲୁଗା ଓ ଖଣ୍ଡିଏ କାମିଜ୍ କଣାରେ କିଛି ପଇସା ଖରଚ ହେଲା । ରଫୁକରା ପୁରୁଣା ଜାମା ପୂରୁପୂରୁ ହୋଇ ଛିଣ୍ଡିଯାଉଥିଲା । ସରକାରୀ ଚାକିରି । ମୁନ୍‌ସରିମ୍ କାମ । ପବ୍ଲିକ୍‌ଙ୍କ ସଙ୍ଗରେ କାରବାର । ହାକିମମାନଙ୍କ ପାଖକୁ ଯିବାକୁ ହୁଏ । ପ୍ରେସ୍‌ଟିଜ ରଖିବାକୁ ପଡ଼ିବ । ଭେକ ଥିଲେ ଭିକ ମିଳିବ । ସେଥିପାଇଁ ଲୁଗା ଓ ଜାମା କିଣିଲେ ।

—ତାଙ୍କର ବନ୍ଧୁ ଓ ସମ୍ବନ୍ଧ ଦେବନାଥବାବୁ ଅମିନ ହୁଇ ମଫସଲ ଗ୍ରାମକୁ ସର୍ଭେ କାମ ଓ ଖାନାପୁରୀ କାମ କରିବାକୁ ଚାଲିଗଲେଣି । ଯିବା ଆଗରୁ ସେ ତାଙ୍କର ପିଲାପିଲିମାନଙ୍କୁ ନେଇ ବାଙ୍କି-ଚର୍ଚ୍ଚିକାରେ ଛାଡ଼ିଦେଇ-ଆସିଲେ । ଝିଅ ଜଲୁପୀର ବାହାଘର ନ ସରିଲେ ତା ବୋଉ ଭାର୍ଗବୀ ଭବାନୀପାଟଣା ଫେରିବେ ନାହିଁ । ସେମାନେ ଗନ୍ଧହନ ବୀରକେଶରୀ କାନ୍ଧ-ପକାଇଥିଲେ ।

—ଝିଅପାକରେ ସୁନା ଖଣ୍ଡେ ସେ ଜଲୁପୀ ! ତାର ଗଢ଼ଣ, ଚାଲିଚଳଣ, ଗୁଣ ବୀରକେଶରୀଙ୍କୁ ମୁଗ୍‌ଧ କରିଛି । ରଙ୍ଗ ସାମାନ୍ୟ ଊଣା ହେଲେ ହେଉ । ତା'ର ହାତର ରେଖାଗୁଡ଼ିକ ଜକ ଜକ କରି ଦେଖାଇ-ଦେଉଛି ଯେ, ଜଲୁପୀ ଯେଉଁ ଘରର ବୋହୂ ହେବ, ସେ ଘରେ ଧନ ଧାନ୍ୟ-ଗୋପଲକ୍ଷ୍ମୀ ପରିପୂର୍ଣ୍ଣ ହେବ । ସୁଲକ୍ଷଣୀଟିଏ ।

—ଭାର୍ଗବୀଙ୍କ ସ୍ନେହ, ଦେବନାଥଙ୍କର ଅକୁଣ୍ଠିତ ସୌହାର୍ଦ୍ଦ୍ୟ, ଜଲୁପୀର ସେବା ଓ ଭକ୍ତିରେ ବୀରକେଶରୀ କିଣିହୋଇଯାଇଛନ୍ତି । ସେ

ଜବାବ ଦେଇଛନ୍ତି । ଚନ୍ଦନାଙ୍କର ସମ୍ବନ୍ଧ ଦେବନାଥ ଓ ଭାର୍ଗବୀଙ୍କୁ ଜଣାଇ-ଦେଇଛନ୍ତି । ଏପରି କି ଚନ୍ଦନାଙ୍କ ଫଟୋର ସେହି ଅଂଶଟି ତାଙ୍କୁ ପଠାଇ-ଦେଇଛନ୍ତି । ତାଙ୍କ ଚିଠିର ଉତ୍ତର ବିକ୍ରମ ଦେଇନାହିଁ । ଗୁଣବାନ୍, କର୍ତ୍ତବ୍ୟନିଷ୍ଠ, ପିତୃଭକ୍ତ ତାଙ୍କର ପୁଅ ବିକ୍ରମ । ବାପମାଆଙ୍କ କଥାରୁ ସେ ବାହାର ହେବ ନାହିଁ । କାହିଁକି ବିକ୍ରମକୁ ପଚାରିଲେ ସେଥିପାଇଁ ସେ ନିଜେ ଦୁଃଖ କରୁଛନ୍ତି ।

—କେଡ଼େ ଭଲ ସେ ଦେବନାଥବାବୁ ! ବୀରକେଶରୀଙ୍କର ସାମୟିକ ଅଭାବ ଉପଲବ୍ଧି କରି ନିଜ ମନକୁ ସେ ଶହେଟି ଟଙ୍କା ଆଗୁରା ତାଙ୍କୁ ଦେଇ ମୋଫସଲ ଗଲେ । ରାସ୍ତାଖର୍ଚ୍ଚ ବାବଦକୁ ସେ ସର୍ବମୋଟ ପଚିଶ ଟଙ୍କା ଦେଲେଣି । ଏତେ ବିଶ୍ୱାସ ! ବିନା ଲେଖାପଢ଼ିରେ ଏବେକାଳକୁ କିଏ କାହାକୁ ଦଶଟଙ୍କା ଦେଉନାହିଁ । ଇଏ ତ ପଚିଶ ଟଙ୍କା ! ମହାପ୍ରସାଦ ନିର୍ବନ୍ଧ ବି ହୋଇନାହିଁ । ଖାଲି ଠାକୁରାଣୀଙ୍କ ମନ୍ଦିରରେ ପଦେ କଥା !

—ଠାକୁରେ ତାଙ୍କୁ ଦେଉଛନ୍ତି । ବୁଦ୍ଧିମାନ୍ ଲୋକ ସେ ଦେବନାଥ ଅମିନ । ହାକିମମାନଙ୍କୁ ହାତରେ ରଖିପାରନ୍ତି । ସ୍ୱର୍ଗରେ ଇନ୍ଦ୍ର ମର୍ତ୍ତ୍ୟରେ ଅମିନ । ଭୂମିହୀନଙ୍କୁ ସେ ଭୂମି ଦେଇପାରନ୍ତି । ଭୂମିଥିବା ଲୋକର ଭୂମିର ପରିମାଣ ସେ କମାଇପାରନ୍ତି, ବଢ଼ାଇପାରନ୍ତି । ଆଙ୍ଗୁଠି ବଙ୍କାଇ ଘିଅ ଉଠାନ୍ତି । ତାଙ୍କ ନାମରେ କେତେ ସୁନାମୀ, ମିଛନାମୀ, ବେନାମୀ ଦରଖାସ୍ତ ପଡ଼େ । ଯାହାକୁ ଠାକୁରେ ସାହା, ତା'ର କିଏ କଅଣ କରି-ପାରିବ ? ସବୁ ନାଲିସ୍ କୁଆଡ଼େ ଫସରଫାଟିଯାଏ । ନିଜ ଦକ୍ଷତା ବଳରୁ ବହୁତ ଟଙ୍କା ସେ କମାଉଛନ୍ତି । ଟଙ୍କା ପଚିଶ କେତେର କେତେ ?

—ମୁନ୍‌ସରିମ କାମରେ ଚାରି ପଇସା ଉପୁରି ଅଛି ଯେ, ସେଇଟା କାକର ଧରି ଘଡ଼ା ଭରିବା କଥା । ଦିନକୁ ଯେଉଁ ଦୁଇ ଚାରି ଟଙ୍କା ହୁଏ, ସେଥିରେ ଭାଗବଣ୍ଟା ଅଛି । ସେ କଟୁ ଜଙ୍ଗଲ ବିଭାଗ, ପୋଲିସ କି ଅବକାରୀ ବିଭାଗ ଅବା ପୂର୍ତ୍ତ ବିଭାଗର କାମ ନୁହେଁ, ସ୍ଥିର ବନ୍ଦୋବସ୍ତ ବିଭାଗର କାମ ।

—ଆରେ ବନ୍ଧମ, ଅଧିକ ପାଠ ଆଉ କଣ କରିବୁ ? ଭଲ ଚାକିରି ଖଣ୍ଡିଏ ଯୋଗାଡ଼ କରନେ, ଯହିଁରେ ଉପରି ଦି’ପଇସା ଅଛି । ଆମରି ପୋଜିସନ ଲୋଡ଼ା ନାହିଁ ରେ ବାପ ! ଆମରି ଧନ ଲୋଡ଼ା । ଘର କରିବୁ, ଜମି କରିବୁ, ପୂର୍ବ ଗୌରବ ଫେରାଇ ଆଣିବୁ ।—”

ଖୁସି ହୋଇ ଚନ୍ଦନା କହିଲେ, ତୁ ସେଇଆ କର ରେ ପୁଅ । ଆମରି ଦୁଃଖ ଦୂର ହେବ । ଗ୍ରାମରେ ସମ୍ମାନ ବଢ଼ିବ । ଦଶ ପଚାଶ ଗ୍ରାମରେ ନାମ ଡାକ ହେବ । ଦେହକୁ କନା ନାହିଁ, ପେଟକୁ ଦାନା ନାହିଁ । ରୋଗ ବଇରାଗରେ ପଡ଼ିଲେ ଡାକ୍ତର ଡାକିବାକୁ ହାତରେ ଧନ ନାହିଁ । ଭଲ ଔଷଧ କାହୁଁ ବା ମିଳିବ ? ଦେଖିଲୁ ମୋର ଅବସ୍ଥା !

ବନ୍ଧମର ଆଖିରେ ଲୁହ ଛଳଛଳ ହେଲା । ଅଭାବରେ ସନ୍ତୁଳ ହୋଇ ତା’ର ବାପା ଜୀବନ ବଞ୍ଚାଇବାକୁ ଓ ତାଙ୍କର ଶ୍ରେଷ୍ଠ କୁଟୁମ୍ବକୁ ଢୋକେ ପିଆଇ ଦଣ୍ଡେ ଜିଆଇବାକୁ ପୂର୍ବପୁରୁଷର ସବୁ ସମ୍ପତ୍ତି ଜୁର କରିଥିଲେ । ନିଜର ସମ୍ମାନକୁ କେତେ ଲୋକଙ୍କ ପାଖରେ ବନ୍ଧା ରଖାଇ ଧନ ଆଣିଥିଲେ । ଶୁଝିବାକୁ ବାକ୍ୟ ଦେଇ ସେ ବାକ୍ୟ ରକ୍ଷା କରି ନ ପାରି ଧପ୍‌ପାହିଆଙ୍କ ତାଲିକାରେ ନାମ ଲେଖାଇସାରିଛନ୍ତି ।

କେଉଁ ଦେବନାଥବାବୁ, ତାଙ୍କର ସ୍ତ୍ରୀ ଓ କନ୍ୟାଙ୍କର ସ୍ନେହ, ଆଦର, ଭକ୍ତି, ପରିଚର୍ଯ୍ୟା ଓ ବିଶ୍ୱାସ ସତ୍ତ୍ୱେ ସେମାନଙ୍କୁ ତାଙ୍କର ପିସାଚର ଶିକାର କରିବାକୁ ମନ ବଳାଇଛନ୍ତି ? ସେ କ’ଣ ଜାଣନ୍ତି ନାହିଁ ଯେ, ଘରର ଅବସ୍ଥା ଯାହା, ପୁଣି ତାଙ୍କର ଯୋଗ୍ୟପୁଅଟି ବେକାରି, ବାହା ହୋଇ କୁଟୁମ୍ବରେ ଆଉରି ଗୋଟିଏ ପ୍ରାଣୀ ବଢ଼ାଇ ତାକୁ ଉପାସ ଭୋକରେ ଛଟପଟ କରିବାକୁ, ଆଉରି ଲୋକନିନ୍ଦା ସହିବାକୁ ବନ୍ଧମ କେବେ ସମ୍ମତି ଦେବନାହିଁ ?

ଚନ୍ଦନା ପଚାରିଲେ, ତୁ କାନ୍ଦୁଛୁ କାହିଁକି ପୁଅ ?

ବନ୍ଧମ ଲୁଗାକାନିରେ ଆଖି ପୋଛୁ ଉତ୍ତର ଦେଲା, କାନ୍ଦୁ ନାହିଁ ବୋଉ ! ବାପାଙ୍କର ଚିଠିଖଣ୍ଡି ପଢ଼ି ଦୁଃଖରେ ମୋ ଆଖିରେ ତା ମନକୁ ଲୁହ ଭରିଗଲା । ତୁ କିଛି ଚିନ୍ତା କରନା ।

ହଁ ରେ ପୁଅ ! ଆମର ଦୁରବସ୍ଥା ଦେଖିଲେ, ତାକୁ ଟିକଏ ସୁଧାର-ବାକୁ ବୁଢ଼ା ବୟସରେ ତୋ ବାପା ଦୂର ବିଦେଶରେ ଯେପରି ଦୁଃଖକଷ୍ଟରେ ଚଳୁଛନ୍ତି, ସେ କଥା ଶୁଣିଲେ, ଶତ୍ରୁର ଆଖିକୁ ଲୁହ ଆସିବ । ତୁ ମନଦୁଃଖ କରନା । ମୁଁ ଜାଣେ, ଠାକୁରଙ୍କ ଦୟାରୁ ଆମର ଦୁଃଖର ଦିନ ସରି-ଆସିଲା ।

ବୋଉ ମ, ବୋହୁଟିଏ ଘରକୁ ଆଣିଲେ ତାକୁ ତୁ କେଉଁଠି ଠାବ ଦେବୁ ? ଭଦ୍ରଲୋକର ଝିଅଟିକୁ ତୁ କ'ଣ ଖାଇବାକୁ ଦେବୁ ? ମୁଁ ତ ବେକାର ।

ବାହାଘର କଣ ଆଜି ହେଉଛି ନା କାଲି ହେଉଛି ? ତୁ ରୋଜଗାର କରିବୁ, ଭଲକରି ଢ଼'ବରେ ବୁଜଘର ତୋଳିବା, ଶିମିଳିତଳ ଦେଢ଼ମାଣିଆ କିଆରିକୁ ବନ୍ଧକମୁକ୍ତ କରିବା···

ଏସବୁ କେବେ ହେବ ?

ଯେବେ ହେବ ତେବେ ଯାଇଁ ବାହାଘରର କଥା ବିଚାରିବା । ପୁଅ ଥିଲେ ଝିଅ ଥିଲେ ବାର ଜାଗାରେ ସମ୍ବନ୍ଧ ପଡ଼େ । ବାହାଘର ହୁଏ ଗୋଟିଏ ଠାବରେ । ଦେବନାଥଙ୍କ ଝିଅ ଜଳ୍ପଲିକୁ ତୋ ବାପା ପସନ୍ଦ କରିଛନ୍ତି । ତାର ଗୁଣଗ୍ରାମ ଜାଣି ମୁଁ ହଁ ଭରିଲି ।

ନିଜେ ନ ଦେଖି ତୁ ହଁ ଭରିଲୁ କାହିଁକି ?

ତୋ' ବାପାଙ୍କର ମନକୁ ପାଉଛି । ସେମାନଙ୍କର ଯେତେ ପ୍ରଶଂସା କରି ସେ ଆଉ ଚିଠିରେ ଲେଖିଥିଲେ, ନାହିଁ କରିବା ତ ଦୂରର କଥା, ଦୋଦୋପାଞ୍ଚ ହୋଇ ଲେଖିବାକୁ ମୋର ସାହସ ହେଲା ନାହିଁ । ତୋ ବାପା ବିଦେଶରେ ନିସାହା ହୋଇ ବେମାର ପଡ଼ିଥିଲେ । ହାତରେ ଧନ ନ ଥିଲା । ଦେବନାଥବାବୁ ଓ ତାଙ୍କ ସ୍ତ୍ରୀ ଆଉ ଝିଅ ତାଙ୍କର ଯତ୍ନ ନେଉଥିଲେ । ମୁଁ ହଁ କରି ନ ଥିଲେ ସେମାନେ ପାଖ ପଶି ନ ଥାନ୍ତେ ।

ସତକଥା କୋଉ ! ବାପା ମତେ ଦେବନାଥବାବୁଙ୍କ ପାଖରେ ଟଙ୍କା ଗୁଡ଼ିକକୁ ବନ୍ଧା ପକାଇ ସାରିଛନ୍ତି ।

ଖାଲି ଟଙ୍କା ଗୁଡ଼ିକ, ପୁଅ ? ସେମାନଙ୍କର ସ୍ନେହ ? କିନ୍ତୁ, ବନ୍ଧା ପକାଇଛନ୍ତି, ଏପରି ଧାରଣା ତୁ ମନକୁ ଆଣନା । ତୋ' ମନକୁ ଯଦି ନ ପାଇବ, ପ୍ରସ୍ତାବକୁ କାଟିଦେବାକୁ କେତେବେଳ ଲାଗିବ କହ ? ବେଣୀ ଉପରୁ ବର ବାଛୁଛେ ।

ତାଙ୍କ ଟଙ୍କା ?

ଆଜି ଯେଉଁଠି ସମ୍ବନ୍ଧ ସ୍ଥିର ହେବ, ସେମାନେ ତାର ତିନିଗୁଣ ଦେବେ । ଆମେ କାହାର ଧାରୁଆ ହେବା ନାହିଁ । ତୋ ବାପା କହନ୍ତି, ନାକରେ ନିଶ୍ୱାସ ଥିବାଯାଏ ଉଧାର ଧନ ସୁଧମୂଳ ସହ ପରିଶୋଧ କରିବାକୁ ଆଶା ରଖିଥିବା । ସୁବିଧା ପାଇଲେ ନିଶ୍ଚୟ ଶୁଝିବା । ଯେତେ-ବେଳଯାଏ ନିଜ ଲକ୍ଷଣ ଅସମ୍ଭବ ଥିବ, କାହିଁ ପାଇବା ଯେ ଶୁଝିବା ? ବଞ୍ଚିଥିଲେ ଆଶା ଥାଏ ।

ଚନ୍ଦନାଙ୍କର ଆଶ୍ୱାସ ବଚନ ବିନୟର ଦୁଶ୍ଚିନ୍ତା ଦୂର କରିଥିଲା, ମନେ ପକାଇଥିଲା ଦସ୍ୟୁ-ରତ୍ନାକରର ଚରିତ, କୁଟୁମ୍ବ ପୋଷଣ ପାଇଁ ସିଏ ଅନୈତିକ ଅସାମାଜିକ କର୍ମରେ ବ୍ୟାପୃତ ଥିଲା । ପାପପୁଣ୍ୟର ଦାୟିତ୍ୱ ହେବ୍ୱି ରତ୍ନାକରର । ବିନୟର ମନ ଭିତରକୁ ଅପେ ଅପେ ପଶିଆସି-ଥିଲେ ରତ୍ନାକର ବାଲ୍ମୀକିଙ୍କର ମାନସ-ପୁତ୍ର ରମ ! ପିତୃସତ୍ୟ ପାଳନ କରିବାକୁ ସେ ଚଉଦ ବର୍ଷ ବନବାସ କରିଥିଲେ, ସଙ୍ଗରେ ଥିଲେ ଅନୁଜ ଲକ୍ଷ୍ମଣ ଓ ପ୍ରେମମୟୀ ମହାସତୀ ସୀତା !

ଅନୂପା !

ହେଉଛି ସେ ଆଗରେ ବସିଛନ୍ତି, ତା'ର ଗର୍ଭଧାରିଣୀ ଜନନୀ, ଯିଏ ଅନୁପାର ବୟସ୍କ-ସଂସ୍କରଣ । ଦୁହିଁଙ୍କ ମନରେ ତାର ଏଇ ସ୍ନେହମୟୀ ଜନନୀ ତାଙ୍କର ଅଜାଣତରେ, ପରିହାସ ଛଳରେ ପ୍ରଣୟର ବୀଜ ରୋପଣ କରିଆସିଥିଲେ । ସେ ଜାଣିଲେ ନାହିଁ ତ, ସପନରେ ବି ଅନୁମାନ କରି-ପାରିବେ ନାହିଁ, ତାଙ୍କର ସ୍ନେହର ପିତୁଳା ଦିଓଟି ତାଙ୍କର ଅଭିଳାଷ ପୂରଣ କରିସାରିଛନ୍ତି । କିନ୍ତୁ ଦୁହେଁ ହୋଇସାରିଛନ୍ତି ଆକାଶର କଇଁଆଁ ଓ ତଳକାର ମାଛ । ଜଣେ ଆଜି ଲକ୍ଷପତିଙ୍କର ଅତି ଆଧୁନିକା ଶିକ୍ଷିତା ଦୁଲାଳୀ, ଆଉ ଆଉକ, ପେଟ ପାଇଁ ଛଟପଟ ହଙ୍ଗମ ।

କଅଣ ଦେଖୁଛୁ, ପୁଅ ?

ତୋର ବେଗଣା ରୂପକୁ । ତତେ ଦେଖୁଣୁ ଅନୁପା ମୋର ମନେ ପଡ଼ୁଛି ।

ପିଲାଦିନେ ମୁଁ ତାଆର ପରିକା ହୋଇଥିଲି । ଦୁଇ ମାସ ପୂରିବ ତୁ ଆସିଲୁଣି, ସେମାନେ କେହି ଚିଠି ଖଣ୍ଡେ ବି ଦେଲେ ନାହିଁ । ସମସ୍ତେ ସ୍ୱାର୍ଥପର ରେ ପୁଅ, ଗରିବଙ୍କୁ କେହି ପଚାରନ୍ତି ନାହିଁ ।

କାର୍ଯ୍ୟବ୍ୟସ୍ତ ଥାଇ ମୁଁ ବି ମାମୁଁମାଇଁଙ୍କ ପାଖକୁ ଖଣ୍ଡେ ଚିଠି ଲେଖିପାରିନାହିଁ । ଆସିଲାବେଳକୁ ତୋ ପାଇଁ ମାଇଁ ମୋ ହାତରେ କୋଡ଼ିଏଟି ଟଙ୍କା ପଠାଇଥିଲେ । ଫେରାଇଦେବାକୁ ମୋର ମନ ହେଉଥିଲା । ନିରୁପାୟ ହୋଇ ଗ୍ରହଣ କଲି । ନଅବର୍ଷ କାଳ ସେମାନଙ୍କର ଯାହା ମୁଁ କରିଛି, ଯାହା ମୁଁ ସହିଛି, ତାର ମୂଲ୍ୟ କ'ଣ କୋଡ଼ିଏ ଟଙ୍କା ବୋଉ ?

ସେପରି କହନା, ବିକି ! ତାଙ୍କରି ପାଖରେ ଥାଇ ତୁ ଯୋଗ୍ୟ ହୋଇପାରିଛୁ । ମଣିଷ ହୋଇ ଫେରିଛୁ । ସେତିକି ମୋର ଲକ୍ଷେ ଟଙ୍କା । ଘରର ଜଣେ ହୋଇ ଚଳିଲେ, ସବୁ ସୁବିଧା ଅସୁବିଧା ଅଙ୍ଗେ ନିଭାଇବାକୁ ପଡ଼େ । ସେ କଥା ମନରେ ନ ଧରିବା ଭଲ । ତୋ ମାମୁଁ କୋଟିପତି ହେଲେ ବି ମୁହଁ ଖୋଲି, ହାତ ପାତି ମୁଁ ପଇସାଟିଏ ବି ମାଗିବି ନାହିଁ ।

ସ୍ନେହରେ ଖୁଦ୍‌ମଣ୍ଡୁଖ ପୋଷେ ଦେଲେ ଆଗ୍ରହରେ ଗ୍ରହଣ କରିବ । ବାପ ରେ, କଥାରେ ଅଛି — ଭାଇ ରଜା ହେଲେ ଭାଉଜ ରାଣୀ, ଯିଏ କହିବ ଏ ରଜାଙ୍କ ଭଉଣୀ । ସେଇ ପଦକ ସେ ଭଉଣୀର ସମ୍ମାନ । ଠାକୁରେ ତାଙ୍କର ବଞ୍ଚିତ କରନ୍ତୁ ।

ବହମ ମନକୁମନ ଲଜ୍ଜିତ ହେଲା । କହିଲା, ଘରକାମରେ ଲାଗି ରହିଲି । ଚାକିରି ପାଇଁ ବାରଆଡ଼କୁ ଦରଖାସ୍ତ ଦେବାରେ ବ୍ୟସ୍ତ ରହି ସେମାନଙ୍କ ପାଖକୁ ଚିଠି ନ ଲେଖି ମୁଁ ଅନ୍ୟାୟ କରିଛି, ବୋଉ !

ଚିଠି ଖଣ୍ଡେ ଦେ । ଘରକାମ ସରିଲାଣି । ତୋର ମନ ହେଉଛି ତ ଯା ଥରେ ବୁଲିଆସିବୁ । ଚାକିରିବାକିରି କେଉଁଠି ଯୋଗାଡ଼ର ଚେଷ୍ଟା କରିବୁ । ମୋର ଦେହ ଟିକିଏ ଭଲ ଅଛି । ଅନୁପା, ନିରୁପା, ସୁରୂପା ଓ ସାନନ୍ଦଙ୍କୁ ଦେଖିଆସିବାକୁ ମୋର ମନ ହେଉଛି ଯେ, ଯିବାକୁ ବଳ ପାଉନାହିଁ । ପୁଣି ଖାଲି ହାତରେ ମୁଁ କେମିତି ଯିବି ? ଅନୁପା ତ ସବୁବେଳେ ମୋ ଆଖିରେ ନାଚୁଛି । କେଡ଼େ ଝିଅଟିଏ ସେ ହେଲାଣି, କେମିତିକାଟିଏ ହୋଇଛି ! ବହୁତ ପାଠ ବି ପଢ଼ିଲାଣି । ତା'ର ବାହାଘର ପାଇଁ ତୋର ମାମୁଁମାନେ କ'ଣ ବ୍ୟବସ୍ଥା କଲେଣି ?

ସେସବୁ ବିଷୟରେ ମୁଁ ମୁଣ୍ଡ ଖେଳାଏ ନାହିଁ, ବୋଉ ! ତେବେ ଏତିକି ମୁଁ ଜାଣେ ଯେ, ଅନୁପାକୁ ଯେ ଦେଖେ, ପିଲାଦିନରୁ ଏବେଯାଏ, ସେ କହେ, ମୁଁ ଏଇଟିକୁ ବୋହୂ କରିବ ।

ସେମିତିକା ଝିଅଟିଏ ସେ । ତା' ବାପମା ତା' ପାଇଁ କେଉଁ ଲକ୍ଷପତିଙ୍କର ପୁଅଟିଏ ଖୋଜୁଥିବେ । ଯାହାର ଧନଦଉଲତ ଅଛି, ସେ ସ୍ୱର୍ଗର ରାଜା ଇନ୍ଦ୍ରର ପୁଅକୁ କିଣିପାରିବ । ହଉ ରେ ପୁଅ, ଠାକୁରେ ମୋର ଅନୁପା ନିରୁପାଙ୍କୁ ରାଜରାଣୀର ସୁଖ ଦେଉନ୍ତୁ ।

ଆହୁରି ଅଧିକ ଆଲୋଚନା କରିବାକୁ ବହମ ଅପେକ୍ଷା କଲା ନାହିଁ । ସେ ଧୀରେ ଧୀରେ ଉଠି ପଡ଼ାକୁ ଯାଉଣୁ ତାର ଖୁଡ଼ୀ ବାସନ୍ତୀଙ୍କୁ ଝରକା ପାଖରୁ ଲଣ୍ଡଭଣ୍ଡ ହୋଇ ଅଗଣାକୁ ଓହ୍ଲାଇପାଉଥିବାର ଦେଖିଲା । ତାର

ମନେହେଲା, ଯେପରି ତାର ଖୁଡ଼ୀ କାନପାରି ମା-ପୁଅଙ୍କର ଆଳାପ ଶୁଣୁଥିଲେ । ତାଙ୍କର ସେପରି ଖୋଳ ଥିବାର ବସନ୍ତକୁ ଅଜଣା ନାହିଁ । ବୋଧହୁଏ ତାଙ୍କର ରୂପ, ସ୍ୱାସ୍ଥ୍ୟ, ଶ୍ରେଷ୍ଠଲେଖା ପାଇଁ ସେ ସବୁବେଳେ ସନ୍ଦେହ କରନ୍ତି ଯେ, ଲୋକେ ତାଙ୍କର ବିଷୟରେ ଚର୍ଚ୍ଚା କରନ୍ତି, ଅଥବା, ସେ ପର-ଘରର ରହସ୍ୟ ଭେଦ କରିବାକୁ ସର୍ବଦା ଆଗ୍ରହୀ ।

ବସନ୍ତ ମନକୁ ମନ ହସି ପଡ଼ାକୁ ବାହାରିଗଲା । ମନଭିତରେ ଖୁଡ଼ୀଙ୍କୁ ସେ କହିଲା, କାଲି ପରି ମନେପଡ଼ୁଛି ତମର ଅକପଟ ସ୍ନେହ ମ ଖୁଡ଼ୀ ! ଦେହରୁ ଧୂଳି ଝାଡ଼ି ପଣତରେ ମୁହଁ ପୋଛି ଦେଉଥିଲ । ନିଜ ହାତରେ ଭୁଞ୍ଜାଉଥିଲ । ମୁଣ୍ଡ କୁଣ୍ଡାଇ ସଜ କରୁଥିଲ । ଦୁଇ ଗାଲରେ ବୋକ ଦେଇ କହୁଥିଲ —ମୋ ଧନ ରଜାପୁଅ ପରି ଦିଶୁଛି । ଭୁଲିନାହିଁ । ଭୁଲିପାରିବି ନାହିଁ । ତମ ପାଖରୁ ଗୋପନୀୟ ମୋର କିଛି ନାହିଁ ।

ସମୟ ପାଞ୍ଚଟା ହେବ ।

ଖରାତେଜ ମଉଳିଲାଣି । କେତେଦିନ ହେବ ବର୍ଷା ହୋଇ ନ ଥିବାରୁ ଚାଷୀକୁଳର ଚାଟେଣି ପଡ଼ୁଛି । ଆଷାଢ଼ମାସ ସାରା ଓ ଶ୍ରାବଣ କୃଷ୍ଣ-ପକ୍ଷର ଆରମ୍ଭରେ ମନଚାହାଁ ବର୍ଷା ହୋଇଥିଲା । ଇନ୍ଦ୍ରରାଜା ଭଲ ପାଳକ କରିଥିଲା । ଗହୀର ବିଲରେ ଧାନ ଗଛ ବେଶ୍ ଉଧୁଉଥିଲା । ଦୁଇ ହପ୍ତା ହେବ ବର୍ଷା ନ ଥିବାରୁ ଧାନବିଲରୁ ପାଣି ଶୁଖିଲାଣି । ସେତିକି ହେଲା ଭାବନା । ଗ୍ରାମରେ ସେହି ଚର୍ଚ୍ଚା ପଡ଼ୁଛି । ଆକାଶ କାଚକେନ୍ଦୂ ପରି ନିର୍ମଳ ।

ବସନ୍ତ ଗ୍ରାମରେ ବୁଲି ଚାଷୀକୁଳର ଏହି ଆଲୋଚନା ଶୁଣି ଚିନ୍ତୁଥିଲା, ଭଲ ଫସଲ ହେଉ ବା ନ ହେଉ, ତା ପରିକା କଣିଖିଆଙ୍କର ଲାଭ କ୍ଷତି କ'ଣ ? ସରକାର ଧାନଗୁଡ଼ିକର ମୂଲ୍ୟ ସ୍ଥିର କରୁଛନ୍ତି । ବଳକା ଚାଷୀଙ୍କର ଫସଲ ଜପ୍ତ କରୁଛନ୍ତି । ସେହି ଚାଷୀମାନେ ହେଉଛନ୍ତି ଲାଭବାନ ।

ହାତରେ ପଇସା ହେବାରୁ ଅନ୍ୟ ଦରବର ମୂଲ୍ୟ ବଢ଼ାଇ ଖରିଦ କରୁଛନ୍ତି । ସେହି ଆଗରେ ପୁଣି ଖୋଲା ବଜାରରେ ଧାନ ଚାଉଳର ଦର ବଢ଼ୁଛି । ନ-ଥିଲା ଭଦ୍ରଲୋକଙ୍କର ଅବସ୍ଥା ହେଉଛି ବାରଣ୍ଡା ବ କଡ଼ା ।

ବିକ୍ରମ ସେହି ନ-ଥିଲା ଭଦ୍ରଲୋକରୁ ଜଣେ । ସେ ମୂଲିଆ ନୁହେଁ । ବଢ଼େଇ, କମାର, କୁମ୍ଭାର ନୁହେଁ ଯେ, ନିଜର ମୂଲ ଓ ନିଜେ ଉତ୍ପନ୍ନ କରୁଥିବା ପଦାର୍ଥର ମୂଲ୍ୟ ବଢ଼ାଇ ବଢ଼ାଇ ଅଭାବ ଦୂର କରିବ । ସେ ଦୁଧରେ ପାଣି ଓ ଆମେରିକାର ଦୁଧଗୁଣ୍ଡ ମିଶାଇପାରିବ ନାହିଁ । ସେ ଦୁଧ ବ୍ୟବସାୟୀ ନୁହେଁ । ସେ ନଡ଼ିଆ ତେଲରେ ଅପମିଶ୍ରଣ କରିପାରିବ ନାହିଁ । ସେ ତାର ମାମୁଁମାଙ୍କ ପରି ସିମେଣ୍ଟ, ଚିନି, ଅଟା, ସୁଜିରେ କଳାବଜାର କରିପାରିବ ନାହିଁ ।

ସେ ପାଠୁଆ ବେକାର ।

ଆଖି ଆଗରେ ହଟ ଚମଟ ବେପାର ଦେଖୁଥିବ । ତତଲା ପେଟରେ ଛଟପଟ ହୋଇ ମଟ ମଟ କରି ଚାହିଁଥିବ । ଯୁଗକୁ ନିନ୍ଦିବା ଛଡ଼ା ଆଉ କାହାକୁ ସେ ନିନ୍ଦିପାରିବ ନାହିଁ । ସବୁ ହଟଚମଟିଆ ନିଜ କର୍ମମନ୍ତର ଯଥାର୍ଥତା ପ୍ରମାଣ କରିବାକୁ ବହୁ ଅକାଟ୍ୟ କାରଣ ଆଗରେ ଥୋଇବେ ।

ସେ ଏବେ କରିବ କ'ଣ ? ଫଜଲ୍‌ପୁର ଉଚ୍ଚ ଇଂରେଜୀ ବିଦ୍ୟାଳୟର ଶିକ୍ଷକତା ପାଇଁ ସେ ସଂସ୍ଥାର କର୍ତ୍ତାମାନଙ୍କ ପାଖରେ ଗୋଡ଼ ଭାଙ୍ଗି ଠିଆ ହେବ ? ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ଯେଉଁ ଦ୍ରବ୍ୟମାନ ଲୋଡ଼ା, ସେତକ ଯୋଗାଡ଼ ନ କଲେ ସେମାନେ ମୁହଁକୁ ଅନାଇଁବେ ନାହିଁ । ଏଣୁ ତେଣୁ କହି ବିଦାୟ ଦେବେ ।

କେବଳାନନ୍ଦ ଗୁପ୍ତରେ କହିଗଲା ଯେ, ତାଙ୍କର ପାର୍ଟି ପାଇଁ ଚେମ ଚଉଧୁରୀ ସଭାପତିଙ୍କୁ ଟଙ୍କା ତିରିଶଟି ଦେଲେ ସେ ଖୁସି ହେବେ । ସାମାନ୍ୟ କଥା ସାରୁ, ଥରଟିଏ ତ ଦେବେ, ଆଉ କ'ଣ ?

ଅଲେଖ କହିଲା, ଅସଲ ହେଲେ ସେହେଟେଶ୍ୱ । ତାଙ୍କର ନିରୋଳା ଗୁଆଡ଼ିଆରେ ଶରଧା । ମୁଁ ଯୋଗାଡ଼ କରିଦେବି । କାଲେକୁ କୋଡ଼ିଏ

ଟଙ୍କା । ନିତାନ୍ତ କମ୍‌ରେ କଲେଟିଏ ନ ଦେଲେ ପସନ୍ଦ ନ ହୁଏ । ବିଷମ ଶୁଣିଥିଲା ପ୍ରଧାନ ଶିକ୍ଷକ ଲଙ୍କୁଲ ଜେନାଙ୍କର ସବୁଥିରେ ସ୍ନେହ । କିନ୍ତୁ ସେ ଇଲିଶି ଶୁଖୁଆକୁ ରଙ୍କ । ସେ ମୁଣ୍ଡ ହଲାଇଦେଲେ ଅଡ଼ୁଆ ।

ବନ୍ଧ ଉପରକୁ ଉଠୁଣୁ, ବିଷମ ଭାବୁଥିଲା, କିପରି ସେ ଖଣ୍ଡେ ମାଷ୍ଟର-ସ୍କୁଟର ପାଇଁ ଏତେ ତଳକୁ ଓହ୍ଲାଇଯିବ ? ଆପେ ଆପେ ଆଶ୍ୱାସନାଟିଏ ମନକୁ ଆସିଲା, ସବୁ ସ୍ତରରେ ଏବକାଳର ଉନ୍ନତିକାମୀ ବୁଦ୍ଧିମାନମାନେ ଏହିପରି ଚଳନ୍ତି ଠାକୁରମାନଙ୍କର ପୂଜା କରନ୍ତି । ବର ଲଭି କରି ମନକାମନା ପୂରଣ କରନ୍ତି । କହିବାକୁ ସିନା ଲାଜ, ମୁହଁ ନ ଖୋଲି କରିଗଲେ ଲାଜ ନାହିଁ ।

ବିଷମର ଆଖିଆଗରେ ଉଭା ହେଲେ କଟକ ରହଣୀ କାଳର କେତେ କେତେ ଦି'ଗୋଡ଼ିଆ ଜୀବ, ଯେଉଁମାନେ ଚଳ-ପ୍ରତିମା ପ୍ରାୟ ସୁନ୍ଦର ଦିଶନ୍ତି । ଖାଲି ରୂପଭେକରେ ନୁହେଁ, ଚଳନରେ ମଧ୍ୟ । ଚିରି ଭିତରେ ଦେଖିଲେ ଜଣାପଡେ ତାହା କେଡ଼େ ନାରଖାର ।

ଭିତରକୁ ଚାହିଁବାକୁ ପରସ୍ପରକୁ ଲାଜ ମାଡ଼େ । ସେମାନେ ସମସ୍ତେ ସ୍ୱାଲୁଣୀ । ନିଲଠାପଣରେ ନିଜକୁ ଛୁଞ୍ଚ ମଣି କିଏ କାହାକୁ ବାନ୍ଧିବ ? ନିଜର ଗୋଡ଼କୁ କଣାଇଁ ଅନାଇଲେ ଦିଶେ ଗୋଦଡ଼ିଆ । ସେଥିରେ ପୂଜଗଳା ଅନେକ ନାଳିଆ ଆବୁ । ସେମାନେ ଆଖି ବୁଜି ମାର୍ଜାର ସ୍ୱଭରେ ଦୁଧ ପିଅନ୍ତି । କିନ୍ତୁ ଶୃଗାଳ ପରି ସଦା ସତର୍କ । ସେମାନେ ଶ୍ୱାନମାନସ । ବିବେକରେ ବାଙ୍କୁଲି ଲାଙ୍ଗୁଡ଼ ଖଞ୍ଜା ହୋଇଥାଏ, ହଲୁଥାଏ, ନିଜକୁ ଏ ଯୁଗର ମନ୍ତ୍ର ଅହରହ ସୂଚାଇ ଦେଉଥାଏ—ମୁଁ କାହାରି ନୁହେଁ ।

ବଞ୍ଚିବାକୁ, ବଞ୍ଚିଗଲେ ଧନ ଆହରି ଧନୀ ହେବାକୁ, ଧନୀ ହେଲେ ଆହୁରି ଆହୁରି ଧନ ପାଇଁ ଅନ୍ୟମାନଙ୍କୁ ଶୋଷି ଖାଇବାକୁ ଏ ଯୁଗର, ଏ ଦେଶର କେତେ ଲୋକ ବାଇଆ ହୋଇଛନ୍ତି । ସମସ୍ତେ ସୁଖରେ ରହନ୍ତୁ, ଏହି ପବିତ୍ର ମନ୍ତ୍ର ତୁଣ୍ଡରେ ଉଚ୍ଚାରି ପରସ୍ପରକୁ ବିଷ ଦେଉଛନ୍ତି ।

ଧସ୍ତପସ୍ତ ହୋଇ, ପରସ୍ପରର ବେକରେ ଦଉଡ଼ି ଗଳାଇ ଟଣାଓଟରା ହେଉଛନ୍ତି । ଅଗ୍ରଗତି ଅସମ୍ଭବ । ପରିଣତି ଜଳ ଜଳ ହୋଇ ଆଖିକୁ ଦିଶୁଛି ।

ବିକ୍ରମ ଭାବୁଛି, ତତଲା ପେଟରେ ତା' ପରିକା ଶିକ୍ଷିତ ବେକାର ଗତାନୁଗତିକ ପଥରେ ଦୁର୍ବଳ ଦେହକୁ ଠେଲିପେଲି ଆଗକୁ ନେଉଛନ୍ତି ଅନ୍ୟାୟ-ଅନୀତି-ଅବିବେକତାରେ ଗଢ଼ା ବିକଟାଳ ସ୍ୱାର୍ଥରାକ୍ଷସର ବିରୁଦ୍ଧରେ ହାତ ଟେକିବା ତ ଦୂରର କଥା, ପାଟି ଖୋଲି ପ୍ରତିବାଦ କଲେ ସେହି ରାକ୍ଷସର ଗୋଟିଏ ନିଶ୍ୱାସରେ ଟଳିପଡ଼ିବ । ଶରଣ ପଶିବା ଭଲ । ଭୋକେ ପିଇ ଦଣ୍ଡେ ଶୋଇଲେ, ସେହି ଦଣ୍ଡକ ଶୋଇବାର ସୁଯୋଗ ଓ ଆନନ୍ଦ ତ ମିଳିବ । ନିଜେ ବଞ୍ଚିଲେ ବାପର ନାମ ରହିବ ।

ବିକ୍ରମ ସ୍ଥିର କଲା ଯେ, ଅନ୍ୟ କେଉଁଠି ଭଲ ଚାକିରି ଖଣ୍ଡେ ସ୍ଥିର ନ ହେବାଯାଏ, ସେ ଫଜଲପୁର ସ୍କୁଲରେ ଶିକ୍ଷକତା କରିବ । ନିଜର ବିବେକକୁ କଳୁଷନ ପାଇଁ ସାନ୍ତ୍ୱନା ଦେଇ, ଆତ୍ମମର୍ଯ୍ୟାଦାକୁ ଅର୍ଥବର ପାଦତଳେ ଅବନତ କରିବ । ଅଲେଖ ଓ କେବଳାନନ୍ଦଙ୍କର ସାହାଯ୍ୟ ଲୋଡ଼ିବ । କିନ୍ତୁ କର୍ମକର୍ତ୍ତାମାନଙ୍କୁ ସନ୍ତୁଷ୍ଟ କରିବାକୁ ଅନ୍ତତଃ ଅଶୀଟି ଟଙ୍କା ଆବଶ୍ୟକ । ଏତେ ଟଙ୍କା କ'ଣ ବୋଉଙ୍କ ପାଖରେ ଥିବ ? ନ ଥିଲେ, ବିକ୍ରି କରିବାକୁ ଅବା ବନ୍ଧା ପକାଇବାକୁ ଚଳନ୍ତି ଅଚଳନ୍ତି ସମ୍ପତ୍ତି ଆଉ କିଛି ନାହିଁ । ମାସକ ଲାଗି ଉଧାର ଦେବାକୁ ଅଲେଖର କ'ଣ ବିଶ୍ୱାସ ହେବ ?

ମୁହଁରେ ଲାଜ ଓ ମନରେ ଦ୍ୱନ୍ଦ୍ୱ । ବିକ୍ରମ ଅଲେଖ ପାନର ଦୋକାନ ଆଗକୁ ଗଲା । ଭିଡ଼ ଲାଗିଛି । କାରବାର ହେଉଛି । ଟ୍ରାଞ୍ଜିଷ୍ଟରର ଗୀତ ବି ଶୁଭୁଛି । ଗରାଖଙ୍କ ଅପେକ୍ଷା ଶ୍ରୋତାଙ୍କର ସଂଖ୍ୟା ଅଧିକ । ସେମାନେ ଗ୍ରାମର ଲୋକ । ବିକ୍ରମର ଚିହ୍ନାପରିଚ । ତାକୁ ଚାହିଁ ହସ ହସ ହେଲେ । ଗୀତରେ ମନ ଦେଲେ । ଦିଓଟି ବେଞ୍ଚ ସେମାନେ ଅଧିକାର କରି ବସିଥିଲେ । ବିଡ଼ି ଟାଣୁଥିଲେ । କେହି ଉଠିଲେ ନାହିଁ । ସ୍ଥାନ ଟିକିଏ ଛାଡ଼ିଲେ ନାହିଁ ।

ବିକ୍ରମ ନିଜକୁ ଜଣେ ଅପରିଚିତ ବିଦେଶୀ ପରି ମଣିଲା । ସେ ଖଣ୍ଡେ ଦରମଇଳା ଧୋତି ପିନ୍ଧିଥିଲା । ଦେହ ଫୁଙ୍ଗୁଳା । ପାଦ ଲଙ୍ଗଳା । ସେମାନେ ତା' ବିଦ୍ୟାକୁ ଖାତିର କଲେ ନାହିଁ । ତା'ର ବଂଶମର୍ଯ୍ୟାଦାକୁ ଘେନା କଲେ ନାହିଁ । ତା'ର ଧୀରସ୍ଥିର ଶାନ୍ତ ସ୍ୱଭାବକୁ ସମ୍ମାନ ଦେଖାଇଲେ ନାହିଁ । ସେମାନେ ତାକୁ ବେଖାତିର କଲେ ପରା, ଯେହେତୁ ସେ ଗରିବ । ମୂଲିଆଙ୍କ ସଙ୍ଗେ ମୂଲିଆଙ୍କ ପରି କାମ କରେ । ସେ ବେକାର । ସେ ଗ୍ରାମର ରାଜନୀତିରେ ଯୋଗ ଦିଏ ନାହିଁ । ଲୋକଙ୍କୁ ହଇରାଣ କରିବାର ପଦ୍ଧତି ସେ ଜାଣେ ନାହିଁ ।

ନିଜ ଭାବନା ପାଇଁ ସେ ନିଜେ ଚମକି ଉଠିଲା । ଏଥିରୁ ଚିନ୍ତା ସ୍ରୋତ ମନର ପରିଚୟ ଦିଏ । କେଶରୀରାଜତ୍ୱ ହଜାର ବର୍ଷତଳେ ଶେଷ ହୋଇଥିଲା । ସେମାନଙ୍କର ରାଜ୍ୟ ନାହିଁ । ହାତପାଣି ନାହିଁ । ସେମାନେ ଅପଦାର୍ଥ । ଯେଉଁମାନଙ୍କ ଉପରେ ସେ ମନେ ମନେ ଅଭିମାନ କଲା, ସେମାନେ ସୁଦକ୍ଷ ବଢ଼େଇ, କେଉଟ, ଗୁଡ଼ିଆ ଓ କୃଷୀ । ନିଜର ହାତ ସେମାନଙ୍କର ସାମ୍ରାଜ୍ୟ, ଯାହାର କେହି ଲୋପ ସାଧନ କରିପାରିବେ ନାହିଁ । ଜନତାର ରକ୍ତର ସମଷ୍ଟି ହାତଟେକା ଧନ ହାତପାଣି ତାଙ୍କର ଲୋଡ଼ା ହେବ ନାହିଁ । ପରିଶ୍ରମର ଦାନ କରି ସେମାନେ ଧନ୍ୟ ।

ବିକ୍ରମର ମନର ଶକ୍ତି ଚେଇଉଠିଲା । ଆତ୍ମାଭିମାନକୁ ମନରୁ ନିକ୍ଷେପି ସେ ହସ ହସ ହୋଇ ଆଗେଇଗଲା । ତା' ଉପରେ ଦୃଷ୍ଟି ପଡ଼ିବାରୁ ଅଲେଖ ରୁଟିଝୁଡ଼ା ବନ୍ଦ କରି କହିଲା, ଆରେ, ହଜିଲା ବଳଦ ଖୋଜିଲଠେଇଁ । ତମର ଦୁ'ଖଣ୍ଡ ଚିଠି ପୋଷ୍ଟ ପିଅନ ଦେଇଯାଇଛି । ସରପଞ୍ଚ ଚେମ ଚଉଧୁରୀ ବିକଳା ହାତରେ ଖଣ୍ଡେ ଲଫାପା ଚିଠି ପଠେଇଛନ୍ତି । ବିକଳା ଚିଠି ଦେଇ ପୁଣି ଫଜଲପୁର ଗଲା, ମ୍ୟାଚ୍ ଖେଳିବ ।

**ଆଜି** ଶ୍ରାବଣ ଶୁକ୍ଳପକ୍ଷ ଦ୍ୱିତୀୟା, ଜୁଲାଇ ମାସ ସତେଇଶ ତାରିଖ, ଶନିବାର । ନିଶ୍ଚୟ ଶୁଭ ଦିନଟିଏ । ଫୁଲପୁର ବିଦ୍ୟାଳୟର ସଭାପତି ଶ୍ରୀଯୁକ୍ତ ତେମ ଚନ୍ଦ୍ରଧ୍ୱଜ ଖଣ୍ଡିଏ ଚିଠି ପଠାଇଛନ୍ତି । ସେ ଚିଠିରେ ନମ୍ବର ଦିଆହୋଇଛି । ସେ ଚିଠିରେ ବିକ୍ରମକେଶରୀ ପଠାଇଥିବା ଦରଖାସ୍ତର ପ୍ରାପ୍ତିସ୍ୱୀକାର କରିଛନ୍ତି । ସୋମବାର ଦିନ ସାକ୍ଷାତ କରିବାକୁ ସେ ନିର୍ଦ୍ଦେଶ ଦେଇଛନ୍ତି ।

ଦ୍ୱିତୀୟ ପତ୍ରଟି ଆସିଛି ବିଜୁଳି-ବୋର୍ଡ଼ ଅଫିସରୁ, ଭୁବନେଶ୍ୱର ମୁକାମରୁ । ଇଂରେଜୀ ପତ୍ର । ସେଥିରେ ନମ୍ବର ଦିଆହୋଇଛି । ଲୋଅର୍ ଡିଭିଜନ୍ କିରାଣୀ ଚାକିରି ପାଇଁ ଅଗଷ୍ଟ ମାସ ସ୍ଥିର ତାରିଖରେ ଭୁବନେ-ଶ୍ୱରରେ ଯେଉଁ ଇଣ୍ଟରଭ୍ୟୁ ହେବ, ସେଥିରେ ଉପସ୍ଥିତ ରହିବାକୁ ଜଣାଇ-ଦିଆହୋଇଛି । ଯିବାଆସିବା ଖର୍ଚ୍ଚ ନିଜକୁ ବହନ କରିବାକୁ ହେବ ।

ତୃତୀୟ ପତ୍ରଟି ବନ୍ଦ-ଲଫାପା । କଡ଼ରେ ଲେଖା ହୋଇଛି ତିନୋଟି ଅକ୍ଷର —ଅନୁପା ! ଅଜଣା ଶିହରଣ ଦେହରେ ଖେଳିଗଲା । ଦୋକାନ ଆଗରେ ଏତେ ଲୋକଙ୍କ ଉପସ୍ଥିତିରେ ପତ୍ରଟି ଖୋଲି ଆଖି ପକାଇବାକୁ ସେ ସଙ୍କୁଚିତ ହେଲା । ସେ ଖୋଜିଲା ନିରୋଳା ସ୍ଥାନ । କଅଣ ସେ ଲେଖିଥିବ, ଏହି ଭାବନାରେ ତାର ମନ ଚଞ୍ଚଳ ହୋଇଉଠିଲା ।

ବସ, ବିକବାବୁ ! ଚା' କପେ ଖାଅ । ସରପଞ୍ଚ କଅଣ ଲେଖିଛନ୍ତି କି ?—ଅଲେଖ ପଚାରିଲା ।

ସୋମବାର ଦିନ ଦେଖା କରିବାକୁ କହିଛନ୍ତି ।

ତେବେ ତ ହୋଇଗଲା ! ବାସୁଳେଈଙ୍କର ମହିମା ଦେଖିଲ ? ଉଷୁଆ କାଳିଶିଠାରେ ଅବତରି ସେଦିନ ଗୀତରେ ଠାକୁରାଣୀ କହି ନ ଥିଲେ କି ତମର ମନକାମନା ପୂରଣ ହେବ ? ତେବେ, ଯାହା କହିଥିଲି ସେତିକି ଯୋଗାଡ଼ କର । ମଝିରେ ମୋଟେ ଗୋଟିଏ ଦିନ ।

ଅଲେଖ ଗଣକଙ୍କଠାରେ ମନୋନିବେଶ କଲା । ବିକ୍ରମ କହିଲା, ସେଥିକି ମୋର ଆପତ୍ତି ନାହିଁ ଯେ, ଅବସ୍ଥାଟା ତମେ ବୁଝୁଛ । ପଛେ,

ଅର୍ଥାତ୍ ହାତକୁ ଚକାଷ୍ଟନ୍ ଆସିଲେ, ମନଖୁସିରେ ସବୁ କରାଯାଇ-ପାରନ୍ତା ।

ଠାକୁରମାନଙ୍କୁ ଆଗ ଭୋଗ ଦିଆଯାଏ, ବଳବାବୁ ! ସେମାନେ ହେଲେ ଦେବତା । ବୋଇଲେ ଆଗ ଦେ, ପରେ ବତା । ତମର ଗରଜ, ତାଙ୍କର ନୁହେଁ ।

ମାନସିକ ତ କରାଯାଏ, ଅଲେଖ ?

ହଁ ଯେ, ହ'ଗୋଡ଼ିଆ ଦେବତା ଭଳନେ ଧାତୁରେ ଗଢ଼ା ।

କାଲି ସକାଳେ ତମକୁ ଭେଟିବି ଅଟଲେଖ, କଥାଭାଷା ହେବା । ମୋର ଟିକଏ ଜରୁରୀ କାମ ଅଛି । ମୁଁ ଯାଉଛି ।

ଚା' ?

ଇଚ୍ଛା ନାହିଁ, ଆଜ ।

ବଙ୍କମ ଘରକୁ ଫେରିଲା ।

ସନ୍ଧ୍ୟା ହୋଇ ନ ଥାଏ । ଚନ୍ଦନା ଓ ବାସନ୍ତୀ ଷ୍ଟେଷଘର ଆଗ ଅଗଣାରେ କେଉଁ ବିଷୟରେ ଠିଆ ଠିଆ ଆଲୋଚନା କରୁଛନ୍ତି । ସେମାନେ ଟିକଏ ଉତ୍ତେଜିତ ହେଲା ପରି ମନେ ହେଉଥାନ୍ତି । ବଙ୍କମ କୋଠରି ଭିତରେ ପଶି, ଝରକା ପାଖରେ ଅନୁପାର ପତ୍ରଖଣ୍ଡି ଖୋଲି ମନେ ମନେ ପଢ଼ିବାକୁ ଲାଗିଲା—

ମାନସଶ୍ରେଷ୍ଠ,

ସମ୍ବୋଧନଟି କେଜାଣି କାହିଁକି ଅନୁପାର ମନକୁ ପାଇଲା ନାହିଁ । ଶବ୍ଦଟିରେ ଗାର ପକାଇ ତଳ ଧାଡ଼ିରେ ଲେଖିଲା,—ବଳଭାଇ !

ସେଇଠୁ ଚାରି ପତ୍ର । ଗୋଲ ଗୋଲ ସୁନ୍ଦର ଅକ୍ଷର । ବସେଇ ବସେଇ ଲେଖିଛି । ମଝିରେ ମଝିରେ କେତୋଟି ଶବ୍ଦ, ଏପରି କି ବାକ୍ୟ ଏପରି ଭାବରେ କାଟିଛି ଯେ, ପଢ଼ିହେଉନାହିଁ ।

—ଅପାଙ୍କର ଦେହ ଭଲ ନ ଥିଲା, କିଏ ତମକୁ ଏଠି ଅଟକାଇ ରଖିପାରନ୍ତା ? ଗଲ ଯେ ଭଲ କଲ, ଗୋଟି ଖଣ୍ଡେ ଏଠାକୁ ଦେବାକୁ କିଏ

ତମକୁ ମନା କଲି ? ତମ ଗାଁ ଶିରପଲ୍ଲିରୁ କଟକ ବାଟ ବ' ଖୋଜ ବୋଲି କହୁଥିଲ । ବେନେ ସକାଳେ ଆସି ସଞ୍ଜରେ ଫେରିଯାଇ ପାରିଥାନ୍ତ । ବାପାଙ୍କର ଯେଉଁ ଚକଚକ ଜଳାମିଚମିଚ ନୂଆ ଗାଡ଼ି ଆସିଛି, ତାକୁ ଥରେ ଦେଖିଯାଇଥାନ୍ତ । ଯେଉଁଠି ଠିଆହୋଇ ଗାଡ଼ିକୁ ଚାହିଁଲେ ମୁହଁ ଦିଶୁଛି । କାଲି ବଳଭାଇ, ମୁହଁ ଏମିତି ବଙ୍କେଇ ଅବଗଜଆ ଦେଖାଯାଉଛି ଯେ ଡରିବ ।

—ଶୈଳବାଳା ମହାବିଦ୍ୟାଳୟରେ ମୁଁ ନାଁ ଲେଖାଇସାରିଲିଣି । ମୋର କେତେ ଚନ୍ଦ୍ରା ସାଙ୍ଗ ବି ନାମ ଲେଖାଇଛନ୍ତି । ତମେ କହୁଥିଲ ବୋଲି ପି.ୟୁ. ରେ ମୁଁ ଇତିହାସ, ଲଜିକ୍ ଓ ଅର୍ଥଶାସ୍ତ୍ର ନେଇଛି । ପାଠପଢ଼ା ଆରମ୍ଭ ହେଲଣି । ମତେ ଭାରି କଷ୍ଟ ଲାଗୁଛି । ତମେ ଯଦି ଆସି ରହନ୍ତ ଓ ରେଭେନ୍‌ସାରେ ନାମ ଲେଖାଇ ଏମ.ଏ. ପଢ଼ନ୍ତ, ମୋତେ ପାଠ ବତାଇ-ଦିଅନ୍ତ । ବୋଉ କହୁଛି, ତମେ ଆସିଲେ ତା'ର ଔଷଧ ଦୋକାନରେ ରହନ୍ତ । ଲାଇସେନ୍‌ସ ଆସିଲାଣି । ଘର ଠିକଣା ହୋଇସାରିଛି । ବୋଉ କହୁଛି, ମାସକୁ ତମେ ଲାଭ ଧନରୁ ଦେଢ଼ଶ ପାଇବ । ଘରେ ତ ଖାଇବ, ପିଇବ, ରହିବ । ଏମ.ଏ. ନ ପଢ଼ି ବୋଉଙ୍କ ଦୋକାନରେ ରହିଲେ ବି ମୋର ଉପକାର ହେବ । ପାଠପଢ଼ାରେ ମତେ ସାହାଯ୍ୟ କରିବ ।

—ବୋଉ ତୁମକୁ ଝୁରିହେଉଛି, ବଳଭାଇ ! ଅଡ଼ୁଆକଳ ଚାଲିଛି । ସବୁବେଳେ ଘାଉଁ ଘାଉଁ ହେଉଛି । ଲୋକବାକ ଲାଗିଛନ୍ତି । ବୋଉ କହୁଥିଲା, ସେମାନେ ଚୋର କରୁଛନ୍ତି । ସିମେଣ୍ଟ, ଚିନି, ତେଲ ଓ ଲୁହାଛଡ଼ର କାରବାରରେ ଅଧିକ ଲାଭ ହେଉନାହିଁ । ଲାଭରୁ ଅଧେ ମିଛସତ କହି ନାଥିଆ ମିସ୍ତ୍ରୀ ଖାଉଛି । କହୁଥିଲା ସେ, ମାସକୁ ଅନ୍ତତଃ ତିନିଶ ଟଙ୍କା ମୁନାଫା ପାଣିରେ ପଡ଼ୁଛି । ତମେ ଯଦି ଥାଆନ୍ତ, ସେତକ ନାଥ ଚତା କାଟି-ପାରନ୍ତା ନାହିଁ । ବୋଉ କହୁଛି, ତମେ ଜଲଦି ଆସ ।

—ମାଇଁଅାଈ ମୋତିମାଳାଙ୍କର ସମୁଦୁଣୀଙ୍କର କାଳ ହୋଇଗଲା । ବୋଉ ପଚିଶ ଟଙ୍କା ବେଭାର ପଠାଇଥିଲା । ଆଜି ସେ କଟକ ଆସିପାରିବେ

ନାହିଁ । ନ ଅ.ସିଲେ ନାହିଁ । ତମର ତ ଆଉ କଳାଫୁଲ ଓ ଧଳାଫୁଲର ନାମ ଜାଣିବା ଆବଶ୍ୟକ ପଡ଼ିବ ନାହିଁ । ସବୁ ଗୁଣରେ ପରିପୂର୍ଣ୍ଣା, ସାକ୍ଷାତ୍ କାଳିକା-ପ୍ରତିମା, ତ୍ରିପୁରମୋହିନୀ ନାଗକନ୍ୟା ଉଲୁପୀକୁ ବେଦ୍ଧ କରିବେ ବୋଲି ପିଉସା ସ୍ଥିର କରିଛନ୍ତି । ବାପାଙ୍କ ପାଖକୁ ପିଉସା ଚିଠି ଦେଇଥିଲେ । ଶ୍ରୀମତୀ ଉଲୁପୀଙ୍କର ପ୍ରଶଂସା ଓ ଗୁଣାବଳୀ ଏତେ ଲେଖିଥିଲେ ଯେ, ଚିଠି ପଢ଼ି ବାପା, ବୋଉ, ଝରୁପା ଘର ହସିଲେ । ମତେ କିନ୍ତୁ ହସ ମାଡ଼ିଲା ନାହିଁ ।

—ହକହିଇ ନ ! ମୋ ପିଉସାଙ୍କର ସେହି ସୁନ୍ଦର ଚିଠିଖଣ୍ଡି ମୁଁ ସାଇତି ରଖିଛି । ବାରମ୍ବାର ପଢ଼ିବାକୁ ମତେ ଖୁସି ଲଗୁଛି । ଉଲୁପୀରାଣୀଙ୍କୁ ମୁଁ କେତେଥର ସପନ ଦେଖି ଚମକିଉଠିଲିଣି । କାହିଁକି ଜାଣ ? ସେ ଦେବୀ ରୂପରେ ଆସି, କେମିତି ରୂପ ବଦଳାଇ କଳାନାଗ ହୋଇ ଫଣା ଟେକି ଫଁ-ଫଁ ହୋଇ ମତେ ଚିହିଁଛନ୍ତି । ଗୋଟେ ମାରିବାକୁ ପାଖେଇ ଆସୁଛନ୍ତି । ଭାବୁଛି, ହେଉ ପଛେ ସପନ, ଏଥର ସେ ରୂପ ବଦଳାଇ ଫଣା ଟେକିଲେ ମୁଣ୍ଡରେ ପାହାରେ ଦେବି ।

—ଜେଜେମା ବସୁମତୀ ଭଲ ହୋଇଗଲେ । ଏଠାରେ ଅଧିକ ଦିନ ରହିପାରିଲେ ନାହିଁ । ଅସଂଯତ ମୁହଁର ଅସଭ୍ୟ ବ୍ୟଙ୍ଗସୂଚକ ଭାଷା ଶୁଣି କିଏ ଚୁପ ରହିପାରନ୍ତା ? ବୋଉର ଚଳଣି ଉପରେ ଟିପ୍ପଣି ଦେଲେ । ତମେ ଗଲା ପରେ ତମକୁ କଟାସମ୍ପା କଲେ । ଯେଉଁ କୁ-ଭାଷା କହିଲେ, ତମେ ଥିଲେ ସତକୁ ସତ ସେହି ହାଡ଼ମାଳିଆ ବୁଢ଼ୀ ଅସୁରୁଣୀର ତଣ୍ଟି ଚିପି-ଦେଇଥାନ୍ତ । ତାଙ୍କ ଦୋଷବଦିଆ କଥାରୁ, ତାଙ୍କର ଦିନରାତି ସେବା କରି ବି ମୁଁ ପରିତ୍ରାଣ ପାଇଲି ନାହିଁ । ମୋର ଧାରଣା ହେଲା ଯେ, ସେ ବୁଢ଼ୀ ହେବାରୁ ଅଡ଼ବାଇଆଣୀ ହୋଇଛନ୍ତି । ଯାହା ହେଉ, ବାଉଳିଭାଇଙ୍କର ଉପଦେଶରେ ସମସ୍ତେ ଜେଜେମାଆଙ୍କୁ ବର୍ଜନ କଲେ । ଦିନ ଛଟାରେ ସେ ବକ୍‌ବକ୍ ହେଲେ । ସେଇଠୁ ବୋଉର ଶରଣ ପଶି, ପୁଣି ନ ଯାଇ ଗ୍ରାମକୁ ଗଲେ । କେଉଁଠି ପୋତାଧନର ଅନୁସନ୍ଧାନ କରିବେ ।

—ଜେଜେମା ବୋଉଠାରୁ ପଚିଶ ଟଙ୍କା ଆଦାୟ କଲେ । ଲୁଚେଇ-କରି ବାପା କଅଣ ଦେଲେ ଆମେ ଜାଣୁନାହିଁ । ମାଙ୍ଗାନିଜ ଖଣିର ଲାଇସେନ୍ସ ପାଇଲାଦିନୁ ବାପା ଯେମିତି ମୁକ୍ତହସ୍ତ ହୋଇଛନ୍ତି ନା, ଟଙ୍କା ଶହେଟିରୁ ସେ ଊଣା ଦେଇ ନ ଥିବେ । ଏଡ଼େ ଗ୍ରେଟଲୋକ ସେ ବୁଢ଼ୀ ! ମୋ କନ୍ଦିକଣା ଟଙ୍କାରୁ ଦଶ ଟଙ୍କାର ନୋଟ୍ ସେ ଝାମ୍ପିନେଲେ । ଡରିକରି ମୁଁ କିଛି କହିଲି ନାହିଁ । ଗ୍ରାମକୁ ଗଲେ ଯାଉନ୍ତୁ । ତମର ରହିବା ଘର ପରିଷ୍କାର କରିଦେଇଛୁ । ଟିକ୍ଉଡ୍ର ଗୁଡ଼ାଏ ନୂଆ ଫର୍ନିଚର୍ ଆସିଲା । ରଖିବାକୁ ଥାନ ନ ଥିଲା । ସେହି କାଠର ପଲଙ୍କ, ଟେବୁଲ୍, ନେଲନ୍ କୋରରେ ବୁଣା ଚଉକି, ଆଲନା, କେଡ଼େ ସୁନ୍ଦର ର୍ୟାକ୍ ଓ ଆଲମାରି ! ଘର ପୂରିଯାଇଛି । ଦେଖିଲେ ଖୁସି ହେବ ।

—ତମ ଗୁଡ଼ିଯାଇଥିବା ବହି କେତେଖଣ୍ଡି ର୍ୟାକ୍ରେ ସଜାଇ ରଖିଛୁ । ବେଳେ ବେଳେ ସେଇଘରେ ମୁଁ ଓ ନିରୁପା ପଢ଼ୁଛୁଁ ବୋଲି ଚାରିଫୁଟ ଲମ୍ବର ଟିଉବ୍ ଆଲୁଅ କାନ୍ଥରେ ଲଗିଛି । ପଲଙ୍କ ଉପରେ ଗୋଟାଏ ବଢ଼ିଆ ଫୋମ୍-ଗଦି ପକାହୋଇଛି । ବସିଲେ ଚାରିଇଞ୍ଚ ଦବିଯାଉଛି । ପଢ଼ୁ ପଢ଼ୁ ନିଦୁଆ ଲାଗିଲେ ତାଆରି ଉପରେ ମୁଁ ଶୋଇପଡ଼ୁଛି ।

—ସକାଳେ ଓ ସଞ୍ଜରେ ମୁଁ ପ୍ରାର୍ଥନା କରୁଛି, ବଡଭାଇ ! ନିରୁପା ପାଖ ପଶୁନାହିଁ । ଯେମିତି ତମେ ଶିଖାଇଥିଲ, ସେମିତି, ଆଖି ବୁଜି, ଦୁଇହାତ ଯୋଡ଼ି । ସେହି ସୁନ୍ଦର ଓ ପବିତ୍ର ମନ୍ତ୍ରଟି ମୋର ଜପ ହୋଇଛି । ଖାଲି ମୋ ଓଠରୁ ବାହାରୁ ନାହିଁ, ମୋର ଅନ୍ତର ଭିତରୁ ଏବେ ବାହାରୁଛି—"ସତ୍ୟପଥେ ଧର୍ମପଥେ ନେଇଯାଅ ମୋତେ—ଭସାଅ ପରାଣ ମୋର ତବ ପ୍ରେମସ୍ରୋତେ —"

—ତମେ ବଡଭାଇ ନିଶ୍ଚୟ ଦୁଇବେଳା ଏହି ମନ୍ତ୍ର ପଢ଼ି ପ୍ରାର୍ଥନା କରୁଥିବ ତ ? ଯାହା ତମେ ବର୍ଷ ବର୍ଷ ଲାଗି ଆମକୁ ଶିଖାଇଛ, ଆମର ଅନ୍ତରରେ ଭେଦାଇଛ, ମୁଁ ଜାଣେ, ନିଜେ ତମେ ସେହି ପବିତ୍ର ମନ୍ତ୍ରର ଡୋରରେ ନିଜକୁ ନିବିଡ଼ ଭାବରେ ବାନ୍ଧିସାରିଛ । ଖାଲି ତମର ମନେ

ପକାଇଦେବାକୁ ମନ୍ଦ୍ରଟି ନିଜ ହାତରେ ଲେଖି ତମର ଭଗବତ୍‌ଗୀତା ଭିତରେ ରଖିଦେଇଥିଲି । ନିଶ୍ଚୟ ତମର ଦୃଷ୍ଟିରେ ପଡ଼ିଥିବ ।

—ମୋ ଅପାଙ୍କୁ ମୋର କୋଟି ପ୍ରଣାମ । ତମକୁ ସେଥିରୁ ଗୋଟିଏ ଊଣା । ଉତ୍ତର ଅପେକ୍ଷାରେ ରହିଲି—ଅନୁ ।

ସାତ ଆଠ ବର୍ଷର ଲଙ୍ଗୁଳୀ ଝିଅଟି ! ତାଆରି ଛାତିରେ ଲଦି ହୋଇ, ତାଆରି କାନ୍ଧରେ ମୁଣ୍ଡ ଥୋଇ, ଆହ୍ଲାଦରେ ତାଆରି ଗାଲରେ ଚୁମା ଦେଇ ବଡ଼ ହେଲା । କେବେ ସେହି ନିଷ୍ପାପ ସରଳ ନିରୀହ ଚେହେରା ଝିଅଟି ବଢ଼ିଉଠିଲା, ଗଢ଼ିହୋଇ ଦେହରେ ଶିହରିଆ ସୁଷମା ଲେପିଲା, ମରମରେ ମନଅରି ମମତାର ମୂର୍ଚ୍ଛନା ରାଗିଣୀ ମର୍ମରି-ଉଠିଲା, ସବୁ ଆଜି ବିକ୍ରମଙ୍କୁ ସପନ ପରି ଲାଗୁଛି ।

ଅନୁପା ଷୋଡ଼ଶୀ ହୋଇସାରିଛି । ସେହି ପଦଟି ଭିତରେ ସେ ଆତ୍ମଗୋପନ କରିଛି । ସେ ମନେ ପକାଇ ଦେଉଛି—ବିକ୍ରମ ସମାଜ ଭିତରେ ଜଣେ ଦାୟିତ୍ୱସମ୍ପନ୍ନ ଶିକ୍ଷିତ ଯୁବକ । ସେ ନିଶ୍ଚୟ ସତ୍ୟର ପଥ, ଧର୍ମର ପଥ ଅନୁସରଣ କରିବ !

ସଞ୍ଜର ଛାୟା ମାଡ଼ି ମାଡ଼ି ଆସୁଥାଏ ।

ଚନ୍ଦନା ଘରେ ପଶିଲେ । ବିକ୍ରମ ଅଜାଙ୍କ ଅମଳର ଶିଶୁକାଠରେ ତିଆରି ତକ୍ତପୋଷ ଉପରୁ ଓହ୍ଲାଇ ତଳେ ଠିଆହେଲା । ଆଉ କାନ୍ଥ ପାଖରେ ଅଣ୍ଟାଏ ଉଚ୍ଚର ପୁରୁଣା ଶିଶୁକାଠର ସିନ୍ଦୁକ । ତାଆରି ଉପରେ ଥୁଆ ହୋଇଛି ବିକ୍ରମର ପୁସ୍ତକଭରା ସୁଟ୍‌କେସ୍‌ଟି । ସେଥିରେ ଅଛି ବିକ୍ରମର ଭଗବତ୍‌ଗୀତା । ଅନୁପା ଦେଇଥିଲା । ଆସିଲା ଦିନ କାଗଜରେ ବାନ୍ଧି, ଅନ୍ୟ ବହି ସହ ସୁଟ୍‌କେସ୍‌ରେ ରଖିଦେଇଥିଲା ।

ଗ୍ରାମକୁ ଆସିଲା ଦିନରୁ ସେ ନିଜକୁ ଜର୍ମ-ଯଜ୍ଞରେ ହିଁ ଆହୁତି ଦେଇଛି । ପଞ୍ଚାକ୍ଷର ମନ୍ତ୍ର ଜପ କରିଛି । ଗୀତା ପଢ଼ିବା ଓ ପ୍ରାର୍ଥନା କରିବା,

ଆପେ ଆପେ ଅଭ୍ୟାସରୁ ଦୂରେଇଯାଇଛୁ । ସମ୍ଭବ, ଆଜ ରାତିରେ ସେ ଗୀତା ପାଠ କରିବ । ତାର ବୋଉକୁ ଶୁଣାଇବ ।

ଚନ୍ଦନା ପଚାରିଲେ, କ'ଣ କରୁଛୁ ରେ ପୁଅ, ହାତରେ କାହାର ଚିଠି ଖଣ୍ଡେ ଧରିଛୁ ? ବାପା ତୋର ପୁଣି ଚିଠି ଲେଖିଛନ୍ତି କି ?

ବଙ୍କିମ କହିଲା, ବାପା ଏବେ ଚିଠି ଲେଖିଥିଲେ । ତାଙ୍କର କ'ଣ ଆଉ କାମ ନାହିଁ ଯେ, ବସି ବସି ଖାଲି ଚିଠି ଲେଖୁଥିବେ ? ତୋ ଯୋଗ୍ୟ ପୁଅକୁ ଏଠି ସେଠି ବନ୍ଧା ପକାଇ ଟଙ୍କା ଆଣି ପଠାଉଥିବେ ?

ତୁ ଚିଡୁଛୁ କାହିଁକି ? କିଏ ଚିଠି ଦେଇଛି କହୁନୁ ? କେଉଁଠୁ ଶଙ୍କର ବାକରୁ ଚିଠି ଆସିଲା କି ?

ମନରେ ଅକାରଣ ତେଜ ଉଠୁଥିବା କ୍ରୋଧକୁ ଆୟତ୍ତ କରି ବଙ୍କିମ କହିଲା, ହଁ, ହଁ, ଶଙ୍କର ଚିଠି । କଟକରୁ ଆସିଛି । ଖାଇ ପିଇ, ବନା ଭଡ଼ାରେ ବିଜୁଳି ଆଲୁଅ, ବିଜୁଳି ପଙ୍ଖା ଟଙ୍ଗାହୋଇଥିବା ଘରେ ରହି ମାସକୁ ମାସ ଦେଢ଼ଶ ଟଙ୍କା ଦରମା ମିଳିବ ।

ଭଲ ଶଙ୍କର । ଦେଖିଲୁ ଠାକୁରାଣୀଙ୍କର ମହିମା ! ଡାକିଲେ ସେ ଜବାବ ଦିଅନ୍ତି । ମୁଁ ଆଉ ଥରେ ବାଇଦ ବାଜଣା କରି ଠାକୁରାଣୀ ଗାଧୁଆ କରିବି । ଏ ସୁବିଧା ତୁ ଛାଡ଼ ନା ।

ବଙ୍କିମ ଚିଠିଖଣ୍ଡି ଚନ୍ଦନାଙ୍କ ହାତକୁ ବଢ଼ାଇ କହିଲା, କଟକରୁ ଅନୁପା ଏ ଚିଠି ଲେଖିଛି । ପଢ଼ିଲେ ବୁଝିବୁ କପରି ଶଙ୍କର !

ବଙ୍କିମର ହାତରୁ ଚିଠିଖଣ୍ଡି ନେଇ ଚନ୍ଦନା କହିଲେ, ମୁଁ ଜାଣେ ପରା ! ତୋ ମାମୁଁ ତୋ ପାଇଁ ସେ ଶଙ୍କର ଯୋଗାଡ଼ କରିଦେଇଥିବେ । ଅନୁ ମୋର ସେଇଆ ଲେଖିଥିବ । ପୁରୁଣା ଚଷମା, ତା'ର ଗୋଟାଏ ନାଡ଼ ଭାଙ୍ଗିଯାଇଛି, ସୂତା ବାନ୍ଧିଛି, ସେଥିରେ କ'ଣ ରାତିରେ ପଢ଼ିପାରିବି ? ତୁ ପଢ଼ି ଶୁଣାଇବୁ ।

ବଙ୍କିମ ପଚାରିଲା, ଆଉ କେତେ ଟଙ୍କା ତୋ ପାଖରେ ଅଛି, ବୋଉ ? ମୋର ନିତାନ୍ତ କମ୍‌ରେ ଅଶୀ ଟଙ୍କା ଦରକାର ।

ଅଶୀ ଟଙ୍କା ! କଅଣ କରିବୁ ? ପାଖରେ ତିରିଶି ଚାଳିଶ ଟଙ୍କା ଥିଲେ ଥିବ । ବସ୍ତାଏ ପୁରୁଣା ସରୁ ଧାନ କିଣିଲି । ଭଜନ ସାଉଡଙ୍କ ଦୋକାନର ପାଣିପଣା ବଗଡ଼ା ନାଳ ଚାଉଳର ଭାତ ତୁ ଢୋକିପାରୁନୁ ।

ଚାକିରିଟିଏ ଏଇ ପାଖରେ ଅଛି । ହେଲେ ହୋଇପାରେ, ନ ହେଲେ ନାହିଁ । ଏଠି ହୋଇଗଲେ ମାମୁଁ ମାଇଁଙ୍କର ଆହୁରି ଗୋଲାମି କରିବାକୁ ମୁଁ କଟକ ଯିବି କାହିଁକି ?

ଗୋଲାମି !

ଅନୁପାର ଚିଠି ପଢ଼ିଲେ ବଳେ ବୁଝିବୁ । ତୋ ପାଖରେ ଟଙ୍କା ନାହିଁ ତ, ମୁଁ ଏଇ ଶିଶୁକାଠର ବଡ଼ ସିନ୍ଦୁକଟା ଅଲେଖାକୁ ବିକିଦେବି ।

ସେଇଟା, ଆଉ ଏ ଶିଶୁକାଠର ପଲଙ୍କଟା ତୋ ପଣଅଜାଙ୍କର ବାହା ଯୌତୁକ । ଇଜମାଲି । ତୋ ଦାଦାଙ୍କ ଘରେ ଥାନ ନାହିଁ ବୋଲି—

ବୁଝିଲି, ବୋଉ ! ତୁ ଖୁଡ଼ୀଙ୍କୁ କହ, ତାଙ୍କର ଯେଉଁଟା ଖୁସି ସେ ସେଇଟା ରଖନ୍ତୁ । ମୁଁ ଆଉଟା ନିଶ୍ଚୟ ବିକିବି । ମୋର ଅଶୀ ଟଙ୍କା ଲୋଡ଼ା । ମୁଁ ଅଲେଖା ପାଖକୁ ଯାଉଛି । ଏ ଗ୍ରାମରେ ସେହି ଏକା ମୋର ଆପଣାର ବନ୍ଧୁ ।

ସେହି ଅନ୍ଧାରିଆ ଘରଭିତରୁ ବାହାରି କ୍ଷିପ୍ରପଦରେ ବିକ୍ରମ ପଦାକୁ ବାହାରିଗଲା ।

ସ୍ଥାଣୁ ପରି ଠିଆହୋଇ ଚନ୍ଦନା ପଦାକୁ ଚାହିଁରହିଲେ । ଦୁର୍ବଳ ଦେହଟି ବରଡ଼ାପତ୍ର ପରି ଥରିବାକୁ ଲାଗିଲା । ଆଖି ଦିଓଟିରେ ଲୋତକ ଭରିଗଲା । ତାଙ୍କର ମନ ନାହିଁ ନାହିଁ କରିଲା । କେତେ ସୁଖଦୁଃଖର ସ୍ମୃତି ଲେପିହୋଇ ରହିଛି ଏହି ପଲଙ୍କଟିରେ, ଯାହା ଉପରେ ନିଜେ ବିକ୍ରମ ଓ ତାର ବାପ, ଦାଦ ଏବଂ ଜେଜେବାପା ଜନମିଥିଲେ । କଣେଇ, ପେଟେଇ, ହାମୁଡ଼ି, ଦରୋଟି ବଚନ କହି, ବଢ଼ି ମଣିଷ ହୋଇଥିଲେ । ବିକ୍ରମର ଜେଜେପା, ଜେଜେମା, ପୁଣି ବୀରକେଶରୀ ଓ ଧୀରକେଶରୀଙ୍କର ଜେଜେପା ଜେଜେମା ସେଇ ସାଉଁଳିଆ ପଲଙ୍କ ଉପରେ, ନଇଁଲା ବୟସରେ, ସବୁ ଦୁଃଖ-

ସୁଖ ମନରେ ଦେହରେ ଭୋଗାଇ, ଆସନ୍ନା ପୁରୁଷଙ୍କର ଶୁଭ ମନାସି, ଶେଷ ନିଶ୍ୱାସ ଛାଡ଼ି ଚିରଦିନ ପାଇଁ ଆଖି ବୁଜିଥିଲେ । ବିଷମ ବିଜୟ ଅଲେଖ ପାଖକୁ ?

ଆଖିରୁ ଲୁହ ଝରିପଡ଼ୁଥାଏ । ଚନ୍ଦନା ତାଙ୍କର ନାକପୁଡ଼ାରେ ଆଙ୍ଗୁଠି ଛୁଇଁଲେ, ସେଇଠୁ ଅଣ୍ଡାଳିଲେ ଦୁଇ କାନର ବିଜୁଳି । ବୋହୂ ହୋଇ ଏ ଘରେ ପାଦ ଦେବାର କେଇଦିନ ପରେ ତାଙ୍କର ଶାଶୂ ନିଜ କାନରୁ କାଢ଼ି ଯେଉଁ ସୁନା ଫୁଲ ହଳକ ତାଙ୍କୁ ପିନ୍ଧାଇ ଦେଇଥିଲେ, ସେ ଦିଓଟି ଏବଯାଏ ଅଛି । ନିରେଖା ସୁନା । ବାପଘରର ନିରସା ସୁନାର ସବୁ ଗହଣା ପେଟ ପାଇଁ ଯାଇଛି । ଆଜଯାଏ କାନରେ ସେ ହାତ ଦେଇ ନ ଥିଲେ । ଯାଉ, ଏଇ ହଳକ ବି ଯାଉ । ବିଷମର କାମରେ ଲାଗୁ । ପଲଙ୍କୁ ବିକି କରିବାକୁ ସେ ରାଜି ହେବେ ନାହିଁ ।

ଚନ୍ଦନା ଭାବିଲେ, ଆନନ୍ଦ ଓ ଇନ୍ଦିରା ଯଦି ଗୁଞ୍ଜିକରି ଖଣ୍ଡେ ବିଷମ ପାଇଁ ସ୍ଥିର କରିଛନ୍ତି, ସେ କଟକ ଯିବାକୁ କାହିଁକି ରାଜି ନ ହେଉଛି ? ଅନୁପା କଅଣ ଲେଖିଛି ଯେ, ପୁଅର ମତ ସମତୁଲ ରହୁନାହିଁ ?

ଚନ୍ଦନା ବୃନ୍ଦାବତୀଙ୍କ ପାଖରେ ସଞ୍ଜ ସଳିତା ଥୋଇ ଓଳଗି ହେଲେ । ଭୂମି ଉପରେ ବାରମ୍ବାର କପାଳ ଛୁଆଇଁ ସ୍ୱାମୀ, ପୁଅ, ଦେବର ଧୀରକେଶରୀ ଓ ତାଙ୍କର ପିଲା ତିନୋଟି, ବାସନ୍ତୀ ଓ ଦୁଇ ଭାଇ, ଭାଉଜ ଏବଂ ସେମାନଙ୍କର ପିଲାମାନଙ୍କର ମଙ୍ଗଳ କାମନା କଲେ । ଲଣ୍ଠନ ଜଳାଇ ଶୋଇବାଘର ସିନ୍ଦୂକ ଉପରେ ରଖିଲେ । ଡିବିରି ଜଳାଇ ରୋଷେଇଘରକୁ ଗଲେ । ଭାବିଲେ, ବାସନ୍ତୀକୁ ତ ଭଲ ପଢ଼ିଆସେ ନାହିଁ, ଶୁଭକେଶରୀକୁ ଦେଲେ ସେ ପଢ଼ି ଶୁଣାଇବ । ଆର ଘରେ ତାର ପାଟି ଶୁଭୁଛି । ପୁଣି ଭାବିଲେ, ବିଷମ ବିରକ୍ତ ହେବ । ଅନୁପା କଅଣ ଲେଖିଥିବ କେଜାଣି ?

ଅନୁପା, ସୁନାକଣ୍ଢେଇ ଅନୁପା ! ଗେଲରେ ଗେଲରେ ଯାହାକୁ ବୋହୂ କରିବେ ବୋଲି ସେ କେତେଥର କହିପକାଇଛନ୍ତି ! ଏବକାଳକୁ କୁଆଡ଼େ ଦକ୍ଷିଣୀ ଖଣ୍ଡରେ ହାଲଦର ଝିଅକୁ କେଉଁଠି କେଉଁଠି ବୋହୂ କରି

ଆଣିଲେଣି ଯେ ଲୋକେ ନିନ୍ଦା କରୁଛନ୍ତି, ଅପବାଦ ଦେଇ ଏଣୁତେଣୁ ରଟାଉଛନ୍ତି । ଭଲକଥା ନୁହେଁ । ଏ ଧାରଣା ସଂଯମ ଦୋହଲାଇବ । ଛି !

ଚୁଲିରେ ପାଣିହାଣ୍ଡି ବସାଇ, ଶୋଇବାଘରକୁ ଆସି, ଚନ୍ଦନା କାନରେ ଚଷମା ବାନ୍ଧି ଅନୁପାର ଚିଠିଖଣ୍ଡିକ ପଢ଼ିଲେ । କେଜାଣି କାହିଁକି ମନରେ କେତେ କମ୍ପା-କମ୍ପ ଜାଗିଲା । କେତେ ଜାଗାରେ ପାଠୋଇ ଝିଅଟି କଅଣ ସବୁ ଲେଖିଛି ବୁଝିହେଲା ନାହିଁ । ଆହୁରି ଥରେ ପଦଟି ପଢ଼ିଲେ । କପର ତାଙ୍କୁ ସବୁ ଅନ୍ଧାରିଆ ଲାଗିଲା । ତେବେ ସେ ଏତିକି ବୁଝିଲେ ଯେ ଇନ୍ଦର ତାଙ୍କର ନିଜର ସ୍ୱାର୍ଥସିଦ୍ଧି ପାଇଁ ବସନ୍ତକୁ ଡକାଇଛନ୍ତି । ସହରୀ ଝିଅ ଅନୁପା, ନିଜେ ପାଠ ପଢ଼ିବ ବୋଲି କେତେ ଢଙ୍ଗରେ କେତେ ପ୍ରଲୋଭନିଆଁ କଥା ଲେଖି ବସନ୍ତକୁ ଡାକ ଛୁଡ଼ୁଛି ।

ବସନ୍ତ ସୁନାପୁଅ, ଯେତିକି ହେଲା ସେତିକି । ମାଈଁଙ୍କର ଚାକର ହୋଇ ରହିବାକୁ ସେ ଯିବ ନାହିଁ ।

ଚନ୍ଦନା ଆଖିରେ ଲୁହ ଭରି କାନରୁ ସୁନାଫୁଲ ଦିଓଟି କାଢ଼ିଲେ ।

କେତେ ରାତିରେ ବସନ୍ତ ଫେରିଲା । ଚନ୍ଦନା ତାକୁ ଅପେକ୍ଷା କରି ଭିତର ବାହାର ହେଉଥାନ୍ତି । ଦାଣ୍ଡପିଣ୍ଡାରେ ଠିଆ ହୋଇ ସତେ କି ଅନ୍ଧାରକୁ କଳନା କରୁଥାଆନ୍ତି । ବାରମ୍ବାର ପଢ଼ି ଅନୁପାର ଚିଠିକୁ ସେ ମନେ ରଖିଥାନ୍ତି । ଭାବୁଥାନ୍ତି, ବସନ୍ତର ଉପସ୍ଥିତି ବିନା ଇନ୍ଦରଙ୍କର ମାସକୁ ମାସ ତିନିଶ କ୍ଷତି । ବସନ୍ତ ତାଙ୍କର ପାଖରେ ମୁଣ୍ଡ ବିକିବ ଯେ, ସେ ଦେବେ ଲାଭରୁ ଦେଢ଼ଶ । ଭଉଣୀର ସବୁ ଅଭାବ ଓ ଅସୁବିଧା କଥା ଆନନ୍ଦ-ଇନ୍ଦରଙ୍କୁ ଜଣା । ଅଯ୍ୟସରେ ଧନ ଉଡ଼ୁଛି । ଯୁଆ ତା ଉପରକୁ ଧନ ଫୋପାଡ଼ୁଛନ୍ତି । ଉପକାରିଆ ଭଣଜାକୁ ଜାଣି ଖାଲହାତରେ ବିଦା କଲେ । ଦୁନିଆରେ କିଏ କାହାର ମ !

ଭାବୁଥିଲେ ଚନ୍ଦନା, ସେ କୁଟୁମ୍ବର ସୁନାଝିଅଟି ଅନୁପା । ଉଲୁପୀର ରୂପଗୁଣର ପ୍ରଶଂସା ଶୁଣି ସମସ୍ତଙ୍କୁ ହସ ମାଡ଼ିଲା । ଅଭାବରେ ଖରଡ଼ହୋଇ କାଣିଚୁଏ ସହାନୁଭୂତି ମାଗୁଥିବା ବଡ଼ ଭଉଣୀଙ୍କ ପ୍ରତି ଅବଜ୍ଞା । ସେ ଦୁର୍ବିଙ୍କର ଧନବଳରେ ଗର୍ବିତ ସେ ହସ । ବୁଦ୍ଧିମତୀ ଅନୁପାକୁ ଭଲ ଲାଗି ନ ଥିଲା । ପିଉସାଙ୍କର ଚିଠିକୁ ଏକା ସେହି ଝିଅଟି ସମ୍ମାନ ଦେଖାଇଲା । ଭବିଷ୍ୟତରେ ଭାଉଜ ହେବ ଯେଉଁ ଝିଅଟି, ତାକୁ ଥଟ୍ଟା ନକଲରେ ବ'ସ୍ତିର ଧାଡ଼ି ଲେଖିଛୁ । କାଲି ସପନରେ ହେଉ ପଛେ, ଉଲୁପୀ କଳାନାଗ ହୋଇ ଅନୁପାକୁ ଚୋଟ ମାରିବାକୁ କାହିଁକି ଫଣା ଟେକିବ ? ଅନୁପା ତା'ର ଶତ୍ରୁ ନୁହେ !

ଛୋଟ ଟର୍ଚ୍ଚ ଲାଇଟର କ୍ଷୀଣ ଆଲୁଅ ଦେଖି ଚନ୍ଦନା ବୁଝିଲେ, ବହମ ଫେରିଆସିଲା । ଆଉ ଜଣେ କିଏ ତା' ସଙ୍ଗରେ ଅଛି । କଥାଭାଷା ହୋଇ ଆସୁଛନ୍ତି ।

ଆଜ କିଏ କରେ ପୁଅ ? ଉଚ୍ଚ ପିଣ୍ଡାର ଶେଷ ପାହାଚ ଉପରେ, ତୁଳସୀଚଉରାର ବୃନ୍ଦାବନ ଉପରେ ଠିଆ ହୋଇ ଚନ୍ଦନା ପଚାରିଲେ ।

ବହମ ଉତ୍ତର ଦେଲା, ଆମ ବକଳାନନ୍ଦଙ୍କ ପୁଅ କେବଳାନନ୍ଦ ।

ଚିହ୍ନିବାକୁ ଚନ୍ଦନାଙ୍କର ଅଳ୍ପ ବିଳମ୍ବ ହେଲା । ତାଙ୍କୁ ସାହାଯ୍ୟ କରିବାକୁ ନିଜେ କେବଳାନନ୍ଦ କହିଲା, ମୁଁ ତ କେବଳା ଲୋ ଅପା-ସାଆନ୍ତାଣୀ ! ବକଭାଇଙ୍କୁ ସଙ୍ଗରେ ନେଇ କେତେଆଡ଼କୁ ଯାଇଥିଲି । ମୁଁ ଜାଣେ, ଆପଣ ବ୍ୟସ୍ତ ହେଉଥିବେ । ନିଜେ ଗୁଡ଼ିବାକୁ ଆସିଲି ।

ସ୍ୱର ବାରି ଚନ୍ଦନା ଚିହ୍ନିଲେ । ଅଡୁଆଁ ବାଉର ପିଲାଟି ବିକଳା ଭୋଇ । ବହୁ ବର୍ଷ ପୂର୍ବେ ବୀରକେଶଙ୍କ ବାପାଙ୍କର ଗୋରୁ ଜଗୁଥିଲା । କୋଠିଆ ବି ରହିଥିଲା । ଚନ୍ଦନା ବୋହୂ ହୋଇ ଆସି, ଶାଶୁଙ୍କ ମରଣ ପରେ ଘରର ଦାୟିତ୍ୱ ନେଲେ । ସେହି ବିକଳା ତାଙ୍କୁ ଡାକୁଥିଲା ଅପା ସାଆନ୍ତାଣୀ ।

ଜମିବାର ଧୀରେ ଧୀରେ ବହିବଟା ହେଲା । ହଳ ଭାଙ୍ଗିଲା । ବଳଦା ହେଲା ନଡ-ମୂଳିଆ । ଅକାଳ ସକାଳ ଦେଖାରେ ବଳଦା ଡାକେ ଅପା-ସାନ୍ତାଣୀ, ତା' ଭରିଯା ଭଙ୍ଗଲା ଓ ବଢ଼ ଝିଅ ବେଙ୍ଗୁଲା ଓ ହେଉ ପାଇଲା ବଳନ୍ତ କେବଳା ବ । ଛୁଆଁ ଛୁତ ନାଁକୁ ଉଠିଲା । ବାଉରି, କଣ୍ଡରା, ପାଣ, ହାଡ଼ି ଓ ଡମ ସମସ୍ତଙ୍କୁ ମହାତ୍ମା କଲେ ହରିଜନ ।

ବଳଦା ଓ ତା ପିଲାଏ ପୂର୍ବକାଳର ଭେଦ ଓ ମାନ୍ୟତା ରଖି ଚଳୁଥିଲେ । ଅଧର୍ମ ହେବ ବୋଲି ଦୂରେଇ ରହୁଥିଲେ । ବଇମ ଅମଳର ପିଲାଏ ସେତକ ଛାଡ଼ିଲେ । କେବଳାନନ୍ଦ ନିଜ ସାଙ୍ଗିଆକୁ ବଦଳାଇ ଦାସ କରି ନିଜେ ନିଜେ ବଳେଇ ପଶେ, ଛୁଆଁ ଛୁତ ମାନ୍ୟତା ରଖେ ନାହିଁ । ପାଠ ଷ୍ଟ ଅକ୍ଷର ପଢ଼ୁଛି । ସରକାର ଘରୁ ଟଙ୍କା ପାଉଛି । ସେଥିପାଇଁ ସେ କୁଆଡ଼େ ଚନ୍ଦ୍ରସୂର୍ଯ୍ୟ ମାନୁନାହିଁ । ସେ ହୁସ୍ତା କୁଆଡ଼େ ଉଦ୍ଧତ ଦୁର୍ଦ୍ଦାନ୍ତ ହୋଇଛି । ସାଙ୍ଗ ଟୋକାଙ୍କୁ ଭେଳେଇ ଖେଳେଇ ତାଙ୍କର ନେତା ହୋଇଛି ଯେ ଆପଣା ମହତ ଆପେ ରଖି ଚଳିଲା ଲୋକେ, ତା' ପାଖରୁ ଦୂରେଇ ଯାଉଛନ୍ତି । ନିଜେ ତ ବଳଦା ଓ ବେଙ୍ଗୁଲା କହୁଥିଲେ, କେଉଁଠି କ'ଣ ଟିକିଏ ବଗିଡ଼ିଲେ, କେବଳାର ମନକୁ ନ ପାଇଲେ, କଥା ନାହିଁ ବାର୍ତ୍ତା ନାହିଁ, କେବଳ ଏକାଥରେ ଉଗ୍ରମୂର୍ତ୍ତି ହୋଇଉଠେ । ହାତଗୋଡ଼ର କରାମତି ବି ଦେଖାଏ । ଏପରି ଛତର ଟୋକାଟା ସଙ୍ଗରେ ବଇମ ସାଙ୍ଗ ହୋଇ ରାତିଅଧରେ ଫେରୁଛି । ଗାଁ ଶୂନ୍‌ଶାନ୍ ହେଲାଣି ।

କେବଳାନନ୍ଦ କହିଲା, ଆପଣ ନିଧଡ଼କ ରହନ୍ତୁ, ଭାଇ ! ସବୁପରି ନିଜେ ଜବାବ ଦେବେ । ସମ୍ପାଦକ ଓ ପ୍ରଧାନ ଶିକ୍ଷକ ବଳେଇପିବେ ନାହିଁ । ଆଉମାନେ ମେଣ୍ଢାଛେଳି । ସେମାନେ ପଡ଼ର ପୂକାକରେ ଖୁସି । ସମସ୍ତଙ୍କୁ ମହୁ ଚଖାଇଦେଲେ ସେମାନେ ହାବୁଡ଼ରୁ ଯିବେ କୁଆଡ଼େ ?

ଛି, ଛି !

ସେମିତି ବେଭାର ଚାଲିଛି, ଭାଇ ! ଆପଣ ମୋଟେ ପଛାନ୍ତୁ ନାହିଁ । ଥରେ ପଶିଗଲେ ଆପଣ ସମସ୍ତଙ୍କୁ ବାଟକୁ ଆଣିପାରିବେ । ଛାତ୍ରସମାଜ

ଆପଣଙ୍କ ପଛରେ ରହିବ । ମୁଁ ବିଜଳାନନ୍ଦ କ୍ୟାପ୍‌ଟେନ୍ କହୁଛି । ଆଜିକା ଶେଷ ଖେଳରେ ଶଙ୍କରପୁର ସ୍କୁଲକୁ ଦୁଇଗୋଲରେ ମୁଁ ହରାଇଛି । କପ୍ ଆଣି ସ୍କୁଲର ମର୍ଯ୍ୟାଦା ରଖିଛି । ଆପଣ ମୋଟେ ଦୋଦୋପାଞ୍ଚ ହେବେ ନାହିଁ ।

ବିକ୍ରମ ହସି ହସି କହିଲା, ହଉ ଯା, କାଲି ଶେଷ ନିଷ୍ପତ୍ତି କରିବା । ନେ, ଏ ଟର୍ଚ୍ଚ ଲାଇଟ୍ ।

ବିକଳାନନ୍ଦ ବିନା ଆପତ୍ତିରେ କ୍ଷୀଣତେଜର ଟର୍ଚ୍ଚ ଧରି, ଭୂମିରେ ନମସ୍କାର କରି, ବୁଟ୍-ଜୋତାରେ ଲେଫ୍‌ଟରାଇଟ୍ ଷ୍ଟାଇଲରେ ଶବ୍ଦ କରି, ନିଜ ରାସ୍ତା ଧରିଲା ।

ତଟସ୍ଥ ହୋଇ ଚନ୍ଦନା ପଚାରିଲେ, ସେ ଛତରା ବାଉରିଟୋକା କ'ଣ ଏତେ ବକୁଥିଲା ? ତା' ସଙ୍ଗରେ ଏତେ ରାତିଯାଏ ତୁ କେଉଁଠି ଥିଲୁ ରେ ପୁଅ ! ମୋର ପ୍ରାଣଟାକୁ ହାତରେ ଧରି ବୁଲୁଥିଲୁ ?

ବିକ୍ରମ ରାଗିଲା ନାହିଁ । ତା' ବୋଉଙ୍କର ଉତ୍କଣ୍ଠା ସେ ଉପଲବ୍ଧି କଲା । ପାହାଚ ଚଢ଼ି ଚନ୍ଦନାଙ୍କ ପଛେ ପଛେ ସ୍ୱଳ୍ପ ଆଲୋକିତ ବାଟଘରେ ପଶୁଣୁ ବିକ୍ରମ ନରମ ସ୍ୱରରେ କହିଲା, ତୁ ବ୍ୟସ୍ତ ହ'ନା ବୋଉ ! କେବଳା-ନନ୍ଦ ସଙ୍ଗରେ ମୁଁ ଫଜଲପୁର ଯାଇଥିଲି । ଜରୁରୀ କାମ ଥିଲା । ସେ କୁଆଡ଼େ ମୋର ମାମୁଁ ପୁଅ ସାନଭାଇ ?

ହଁ, ତା ବାପା ମତେ ଧର୍ମର ଭଉଣୀ କରିଥିଲା । ଆରେ ପୁଅ ! ତା' ବଡ଼ ଭଉଣୀ ବେଙ୍ଗୁଲି ବର୍ଷକର ହୋଇଥିଲା, ତୁ ଜନମ ହେଲୁ । ମାସକ ଯାଏ ତା' ବୋଉ ଉଙ୍ଗୁଳି ତତେ ସେକିଥିଲା । ବର୍ଷକ ଯାଏ ତୋ ଦେହରେ ତେଲହଳଦୀ ବୋଳିଥିଲା । ମୁଁ ତ ରୋଗଣା ହୋଇଥିଲି । ମୋର କ୍ଷୀର ହେଉ ନ ଥିଲା । ବେଙ୍ଗୁଲିକୁ ଆଡ଼େଇ ତୋ ଧର୍ମର ମାଈଁ ଉଙ୍ଗୁଳି ତତେ ତାର ଥନ ଦିଓଟିବର୍ଷେ ଖୁଆଇ କୋଳା କରିଥିଲା ରେ ! କେମିତି ମୁଁ ଭୁଲିପାରିବି ? ତତେ ଦୁଇବର୍ଷ ପୂରିଲାବେଳକୁ ଏଇ କେବଳାର ଜନ୍ମ ।

ବାଇଗଣୀର କ୍ଷୀର ମତେ ଖିଆଇଥିଲୁ ?

ଶିଶୁ ଯେ ଠାକୁରଙ୍କ ସଙ୍ଗେ ସମାନ । ମା'କ୍ଷୀର ଯେ ଅମୃତ ରେ ବାପ, ସେଥିରେ ଭେଦ ବିଚାର ନ ଥାଏ ।

ମୁଁ ଏବେ ବୁଝିଲି ବୋଉ ! କେବଳାନନ୍ଦ ମୋର ଅମୃତର ଭାଇ । ବେଙ୍ଗୁଲି ମୋର ରକ୍ତର ଭଉଣୀ, ମୋ ଅପା । ଇଙ୍ଗୁଲି ମାଉଁ ମୋର ଦ୍ୱିତୀୟ ମା । ଏବେ ଜାଣିଲି, ମୋ'ର ଭାଇଭଉଣୀ ଅଛନ୍ତି ।

ଚନ୍ଦନା ବାଟଘରର ଭିତରପାଖ କବାଟ ଉହାଡ଼ରୁ ଜଳନ୍ତା ଡିବିରି ଉଠାଇ କାନ ଉହାଡ଼ କହିଲେ, ଲକ୍ଷ୍ମଣରେ ଚଳେ ହେବ କଣ୍ଟିପିମା ଅଛୁ । ମଟିଘରେ କମେଇଁ ଦେଇଛୁ । ଭାତଗଣ୍ଡିକ ଶୁଖି ଚଣାଭୁଜା ହେବଣି । ତୁ ଯା, ଲୁଗାଜାମା ପାଲଟି ଗୋଷଘରକୁ ଆସିବୁ । ମୁଁ ଭାତ ବାଢ଼ୁଛି । ଡେରି କରିବୁ ନାହିଁ, ବାପ !

ଅଲେଖ ବଢ଼ ସିନ୍ଦୁକଟା ନେଇ ପଚିଶ ଟଙ୍କା ଦେବାକୁ ରାଜି ହୋଇଛି । ସେ ତ ପିଲାଦିନରୁ କେତେ ଥର ଆମ ଘରେ ସେହି ସିନ୍ଦୁକକୁ ଦେଖିଛି । ପଲଙ୍କଟା ଖୁଡ଼ୀ ନେବେ ତ ନେଉନ୍ତୁ ।

ଟଙ୍କା ପାଇଁ ତୁ ଚିନ୍ତା କରନା, ପୁଅ ! ଅଶୀ ଟଙ୍କା ମୁଁ ତତେ ଦେବି । ପଲଙ୍କ, ଅବା ସିନ୍ଦୁକ ବିକିବା ଲୋଡ଼ା ହେବ ନାହିଁ ।

ତୁ ଟଙ୍କା ଯୋଗାଡ଼ କରିଛୁ ?

ବିଦ୍ୟମର ପ୍ରଶ୍ନର ଉତ୍ତର ନ ଦେଇ, ଦୁଇ ଆଖିରେ ଲୁହ ଉଛୁଳ- ଉଛୁଳେଇ, କାନରେ ଡିବିରି ଆଲୁଅ ଉହାଡ଼ ଚନ୍ଦନା ଗୋଷଘରକୁ ଗଲେ । ମନେପଡ଼ିଲେ ଶାଶୁ । କାନରୁ ନକଲି ସୁନାର ଲବଙ୍ଗ ଦିଓଟି ଉତାରି ଯେଉଁଦିନ ଶାଶୁ ନିଜ କାନର ଫୁଲ ଦିଓଟି କାଢ଼ି ଚନ୍ଦନାଙ୍କୁ ପିନ୍ଧାଇ- ଦେଇଥିଲେ, ଆଖିରେ ଲୁହ ଛଳଛଳ କରି ସେ କହିଥିଲେ, ଏତିକି ସମ୍ବଳ ମୋର ଅଛି ଲୋ ମା ! ତୋ ଚନ୍ଦ୍ରଉଦିଆ ମୁହଁକୁ ଖାସା ମାନିବ ।

ଭାବୁଥିଲେ ଚନ୍ଦନା, ସେ ବି ସେଇଆ କରିଥାଆନ୍ତେ । ଯେଉଁ ଦେବନାଥବାବୁ ଓ ଭାର୍ଗବୀ ବିପଦବେଳେ ବନ୍ଧମର ବାପାଙ୍କ ପାଖରେ ବିଦେଶ-ଜାଗାରେ ଠିଆ ହୋଇ, ତାଙ୍କୁ ନୂଆ ଜୀବନ ଦେଇଛନ୍ତି, ତାଙ୍କର ଅଳଅଳ ଝିଅ ଗୁଣବନ୍ତୀ ଜୁଲୁପୀରାଣୀର କାନରେ ଫୁଲହଳକ ପିନ୍ଧାଇ ସେ ବି ସେଇଆ କରିଥାଆନ୍ତେ ।

ନ ହେଲା ତ ନାହିଁ । ନିଜରୁ ଉଦ୍ଧାର ପାଇବାକୁ ଜାଆ ବାସନ୍ତୀଙ୍କୁ ନ ଜଣାଇ, ସଞ୍ଜ ପରେ ଶୁଭକେଶରୀ ହାତରେ ତାଙ୍କର ବିଶ୍ୱାସୀ ଧର୍ମର ଭାଇଜ ରଙ୍ଗୁଲିକୁ ସେ ଡକାଇ ପଠାଇଥିଲେ । ଦାଣ୍ଡପଟ ବୃନ୍ଦାବନୀଙ୍କର ଉଚ୍ଚ ତଳଉଡ଼ା କଣ୍ଠରେ ସଞ୍ଜର ମହଳ ଆଲୁଅରେ ନିଜର ଅଭାବର ଉପାବନ୍ଧ ନେର ଆଭାସ ଠିକେ ଠିକେ ଦେଇଥିଲେ । ଫୁଲ ହଓଟି ତାର ହାତକୁ ବଢ଼ାଇ କହିଥିଲେ, କେଉଁଠି ଥୋଇ ଟଙ୍କା ବୃଳଣି ପଚିଶଟି ମତେ ଆଣି ଦେ, ରଙ୍ଗୁଲି ଭାଉଜ !

ମୁଁ ତ ଦୁଷ୍ଟର ଗୋ ଅପା ସାନ୍ତାଣୀ ! ପାଟଲ୍‌କଦଳୀର ମୂଲ ମୁଁ କାହୁଁ ବୁଝିବି ? ଉଜନ ରାଉତଙ୍କର ଘରଣୀ, ତାଙ୍କ ଟେରସ୍ତଙ୍କ ବିକରି-ପଇସାରୁ ହାଉଲେ ହାଉଲେ ଚିତାକାଟି ସଞ୍ଚୁଛି । ରାଉତାଣୀ ରାଣ୍ଡୀଖଣ୍ଡୀ ଅଭାବୀଙ୍କର ସୁନା ଗହଣା ଦୂକେଉଛି । ତାଙ୍କଠାରୁ ବୁଝେଁ ।

ଦୁଇ ତିନ ଘଣ୍ଟା ପରେ ରଙ୍ଗୁଲି ବେଷଘର ପାଖକୁ ଯାଇ ଡାକିଲା । ବାସନ୍ତୀଙ୍କର ଆଗ ହାବୁଡ଼େ ପଡ଼ିଲା । ପଚାରିଲେ, କୁଆଡ଼େ ଲୋ ରଙ୍ଗୁଲି ! ପୁଣି ତୋ ଜୋଇଁ ରଜନୀ ଦାସ ଆସି ବେଙ୍ଗୁଲିକୁ ନେବାକୁ କଟାଳ କଲା କି ? ପଠାଇଦେଉନୁ ? ବାହା ହେଲା ଝିଅକୁ ଘରେ ଗଡ଼ାଇ ନାଁ ପକାଉଛୁ କାହିଁକି ?

ତମ ସାରକଥା ମାନବି, ସାନ ଅପା ସାଆନ୍ତାଣୀ ! ସେ ଆଗ କାଳମାଟିରୁ ଫେରୁ । ତା ଦାଦରପୁଅ ସାନଭାଇଟା ଉନେ ହେଉ । ସେଇଟା ବ୍ଲେର ଡକାଇତ ଦଳରେ ମିଶିଛି ଯେ, ପୁଲିସି ଆସି ରଜନା ଘର ବି ଥରକୁ ଥର ଖାନତଲାସ କରୁଛି । ମହତ ସାରୁଛି । କରେ ରଜନା,

ତୋ ଭାଇ ମହନାଠଙ୍କୁ ଭଳେ ହେଉନୁ କାହିଁକ, ପଚାରିଲେ, ଓଲଟି ସେ ଜବାବ ଦେଉଛୁ, ଦାନ୍ଦଖୁଣ୍ଟି ମତେ ପାଳ ବଢ଼ାଇ ମଣିଷ କଲେ । କାଠି-ଚୁଆଁରେ ଦାନ୍ଦ ସେପୁରକୁ ଗଲାରୁ, ମୁଁ ମୋ ଖୁଣ୍ଟିକୁ ଫୋପାଡ଼ଦେବ କ ?

କୁଆଡ଼େ ଅବେଳାରେ ଆଇଚୁ ?

ପୋଷେ ଲୁଣ, ଆଉ ପୁଞ୍ଜାଏ ଲଙ୍କାମରିଚ ମାଗିନେବାକୁ । କଣିବାକୁ ଆଜ ହାତରେ କାଣୀ କଉଡ଼ି ନାହିଁ ।

ବାସନ୍ତୀ ମାଗୁଣୀଙ୍କୁ ଦେବାକୁ ବଡ଼ । ରଙ୍ଗୁଲି ଏହା ଜାଣେ । ଜବାବ ନ ଦେଇ ବାସନ୍ତୀ ତାଙ୍କର ଶୋଷଘରେ ପଶିବାରୁ ଚନ୍ଦନା ଆସିଲେ । ଅଣ୍ଟାରୁ ହାତ ଟାଣି ତରତର ହୋଇ ନୋଟବଢ଼ା ଚନ୍ଦନାଙ୍କ ହାତକୁ ବଢ଼ାଇ ରଙ୍ଗୁଲି କହିଲା, ବନ୍ଧା ରଖିବାକୁ ଗ୍ରଜ ନ ହେଲାରୁ ବିକଦେଲି ଗୋ ଅପା ! କୋଡ଼ିଏ ସାତ । ପାଞ୍ଚକୁ ସାତ କଲା କେତେ ନେହୁରାକୁ । କହିଲା, ପୁରୁଣା ଚଜ । ଭଲ କ ଭେଲ ଅଜଣା । ଆଉ କଟାଳ କଲେ ଉଠା ଲେ ତୋ ଶ୍ବେର ଦରବ । ଆମର ତ ଗରଜ—

ଭୁନ ହ, ଭୁନ ହ । ସେ କାନ ପାଉଥିବ । ନେ ତୁ ହ'ଟଙ୍କା, ତେଲଲୁଣ କରିବୁ ।

ରଙ୍ଗୁଲି ଗ୍ରହଣ କଲା । କହିଲା, କ କାମଟାଏ କଲି କ ?

ତାର ପ୍ରଶ୍ନରେ ଚନ୍ଦନାଙ୍କ ଆଖିରୁ ଲୁହ ଗଡ଼ିଆସିଥିଲା । କଣ୍ଠ ରୁଦ୍ଧ ହୋଇଆସୁଥାଏ । ସେ କହିଲେ, ନଜେ ଶ୍ବେରଣୀର ଅପବାଦ ମୁଣ୍ଡକୁ ନେଇ ଯେଉଁ କାମ ତୁ କଲୁ ଲେ ଠିକ ଖାଉଜ, ଏ ଘରର ସ୍ବର ପୁରୁଷର ମହତ ରଖିଲୁ । ମତେ ଚରିଦନ ଋଣୀ କଲୁ । ତୁ ବୁଝିପାରିବୁ ନାହିଁ ଲେ ରଙ୍ଗୁଲି ! ଦେଖା ତୋ କାନ, ଲୁଣ ପୋଷେ, ଲଙ୍କା ହଅଣ୍ଡା, ପୁଞ୍ଜାଏ ଭଲ-ପିଆଜ ନେଇ ଯା । ଘରେ ଯାହା ଥିଲା, ସେତକ ହ'ଭାଗ କରିଛୁ ।

ବହମ ପାଇଁ ହାତ ବାଢ଼ୁଣୁ ଅଭଲ ଗୃହରେ ରୋଗଣୀ ଚନ୍ଦନା କଅଣ ସଙ୍କଟରେ ପଡ଼ିଯାଇଛୁ, ସେକଥା ଭାବୁଥିଲେ । ଆଖିର ଅବାଧ ଲୁହ ପୋଛୁଥିଲେ । ବହମ ଶୋଷଘରେ ପଶିଲା ।

ଚନ୍ଦନାଙ୍କର ମୁହଁକୁ ଚାହିଁବାକୁ ତାର ଧୈର୍ଯ୍ୟ ନ ଥିଲା । ଭୋକରେ ପେଟ ଗରଜୁଥିଲା । ଚାରଗୁଣ୍ଡା ଢୋକ ପାଣି ଦୁ ଢୋକ ପିଇ ସେ ଟିକିଏ ଶାନ୍ତ ହେଲା । ଚନ୍ଦନାଙ୍କର ମୁହଁକୁ ଚାହିଁଲା ।

ସେଇ ସୁନ୍ଦର ମନକଣା ମୁହଁଟି ଉପରେ ଅଲଗା ଅଲଗା ଦିଶୁଛି । କାହିଁକି ଦିଶୁଛି ଏକଦମ ବୁଝିପାରିଲା ନାହିଁ । ମୁଣ୍ଡର ଦରପାଚିଲା କେଶ ଫୁରଫୁର ହେଉଛି । ସୀମନ୍ତରେ ତାଙ୍କର ଝଟକୁଛି ଲାଲ ଟହ ଟହ ସିନ୍ଦୂର ଗାର । ଅସ୍ପଷ୍ଟ ଆଲୁଅରେ କପାଳ ମଝିରେ ଝଟକୁଛି ସିନ୍ଦୂର ଟୋପା ।

ତାର ଦୟାମୟୀ ସ୍ନେହମୟୀ ଜନନୀ ହସୁଛନ୍ତି । କାହିଁକି ତାଙ୍କର ଶୋଥାଳିଆ ନିରକ୍ତିଆ ସୁନ୍ଦର ମୁହଁଟି ଅଲଗା ଅଲଗା ଦିଶୁଛି ? ଆଖି-କୋଣରେ ଲୁହର ଦାଗ ଲାଗିଛି ! ଖୁଡ଼ୀ କଜିଆ କଲେ କି ?

ତୋ' ଆଖିରେ ଲୁହ କାହିଁକି ବୋଉ ?

ଠିକ ଅନୁପାର ଚିଠିଖଣ୍ଡି ପଢ଼ିଲ ରେ ଧନ ! ତୁଆ ଖଣ୍ଡକର କେତେ ବୁଦ୍ଧି ହେଲାଣି ! କି ସୁନ୍ଦର ଚିଠି ସେ ଲେଖିଛି । ଜବାବ ଦେବୁ ତ, ତାକୁ ଆଉ ଆର ତିନୋଟି ପିଲାଙ୍କୁ ମୋର କୋଟି କଲ୍ୟାଣ ଜଣାଇଦେବୁ । ତୋର ମାମୁଁଙ୍କୁ ଓ ମାଇଁଙ୍କୁ ମଧ୍ୟ । ସେମାନେ ମୋର ମନେ ପଡ଼ିଲେ ଯେ—

ଏକଦମ ଆଶ୍ୱସ୍ତ ହେଲା । ଖାଇବାରେ ମନ ଦେଲା । କେତେ ଯତ୍ନରେ ତାର ବୋଉ ନିଜ ହାତରେ ରାନ୍ଧିଛନ୍ତି । ମୁଗଡାଲି ସାଙ୍ଗକୁ ମହୁରାଳି ମାଛର ରାଇ, ସେଥିରେ ପଡ଼ିଛି କଅଁଳିଆ ଜହ୍ନି ଓ ଲହୁଣ ପରିକା ସାରୁ । ଟିକିଏ ବଡ଼ିଚୁରା । ସୋରିଷ ଗୁଣ୍ଡା ଚକଟା ପୁରପଶା ଆମ୍ବ, ଆମ୍ବରରୁ ଫାଳିଏ । ଅରୁଚି ଛଡ଼ା, ମୁଖରୋଚକ । ସେ ସେଇ ଗଛର ଆମ୍ବ, ଯାହାକୁ ସେ ଅଲେଖାକୁ ବକସି କରିଦେଇଥିଲା । ଯେଉଁଠି ସେ ଗଛଟି ଠିଆହୋଇଥିଲା ସେଠାରେ ଏବେ ପୁରୁଷେ ଗହୀରିଆ ଗାଡ଼ । ଅଲେଖା ଚେରମୂଳ ସବୁ ତାଡ଼େଇ ନେଇଛି ।

ସେଇ ଗାଡ଼ଟା ଭିତରେ ପାଣି ଜମିଥିଲା । କୁଆଡ଼ୁ ଯେ ବେଙ୍ଗ ଆସି ଆଶ୍ରା ନେଲେଣି । ସମସ୍ତେ ସ୍ୱର ମିଳାଇ ରଡ଼ି ଛାଡ଼ୁଛନ୍ତି । ସେଷଘରକୁ

ଶୁଭୁଛି । ମନେହେଉଛି, ଯେପରି ସେଣ୍ଠି ନ-ଥିଲା ମଲା ଗଛଟାର ଗୋଟାଏ ଆତ୍ମା ଥିଲା । ସେଣ୍ଠି ଆତ୍ମାଟି ବିବିଧ ସ୍ୱରର ମିଶ୍ରଣରେ କର୍ଣ୍ଣକଟୁ କାରୁଣ୍ୟ କରୁଛି ।

ଅନୁପା କଲେଜରୁ ଫେରିନାହିଁ । ନିରୁପା ସ୍କୁଲରୁ ଫେରିନାହିଁ । ସକାଳେ ସ୍ୱରୂପାର ଦେହରେ ସାମାନ୍ୟ ତାତି ଥିଲା । ତାର ମୁଣ୍ଡ ବଥାଉଥିଲା, ତଥାପି ସେ ତାର ବୋର୍ଡ଼ିଂ ସ୍କୁଲକୁ ଯିବାପାଇଁ ହମହମ ହେଉଥିଲା, କିନ୍ତୁ ତାକୁ ବୁଝାଇ ସୁଝାଇ ଇନ୍ଦିରା ଘରେ ଅଟକାଇ ରଖିଛନ୍ତି । ଆଠ ବରଷର ଝିଅ, ସେ ଭଲ କି ତା ପାଠ ଭଲ । କ'ଣ ଗପବହି ଖଣ୍ଡେ ପଢ଼ୁଣୁ ଶୋଇ-ପଡ଼ିଛି । ତା'ର କଡ଼ରେ ପଲଙ୍କ ଉପରେ ଦୁଷ୍ଟଙ୍କର ଶିରୋମଣି ସ୍ୱରି ବର୍ଷର ପୁଅ ସାନନ୍ଦ ବି ଶୋଇଛି । ଚେଇଁଲାବେଳେ ତାର ହାତଗୋଡ଼ କଥା କହୁଥାଏ ।

ସମସ୍ତ ଅପରାହ୍ଣ ଝିମିଟା ।

ଉପରତାଲାର ମଝିଘରେ ଡ୍ରେସିଂଟେବୁଲ ଆଗରେ ଠିଆହୋଇ ଇନ୍ଦିରା ନିଜକୁ ସଜାଉଥିଲେ । ଆଉ ମାସ କେଇଟି କଟିଗଲେ ସେ ଚାଳିଶି ବର୍ଷରେ ପାଦ ଦେବେ । ତାଙ୍କର ସମବୟସୀ କେତେଜଣ ଆଈ ହୋଇ-ସାରିଲେଣି । ଅନୁପାଟି ଆଉ ଦୁଇବର୍ଷ ଆଗରୁ ଜନମିଥିଲେ ସ୍ୱାମୀଙ୍କ ଯେପରି ତାକୁ ବୋହୂ କରି ନେବାକୁ କେତେବର୍ଷ ହେଲା ନେହୁରା କରୁଛନ୍ତି, ତାଙ୍କ କଥା ମାନିଥିଲେ ନିଜେ ଇନ୍ଦିରା ବି ଆଈ ହୋଇସାରନ୍ତେଣି । କିନ୍ତୁ ସେଥିରେ ଯାଏ ଆସେ କେତେ ?

ଦେହ ସମସ୍ତଙ୍କର ଅଛି । ମନ ସମସ୍ତଙ୍କର ଅଛି । ଦେହରୁ ଜନମି କୁଆଁ କୁଆଁ କୁଆର ଦେହ ବଢ଼ି ବଢ଼ି ବଡ଼ ହୁଏ । ବଡ଼ହେଲା ଦେହ ପୋଖତ ହୁଏ । ସେଇଠୁ ସିନା ଶୁଖିଶୁଖିକା ମଉଳ ମଉଳ ଟଳିପଡ଼େ । କେତେ କେତେ ଠିକି ମନ ପାଗଳ ହୁଏ । ମନ ପାଖରା ହୁଏ । ତା'ର ବୟସ ଗଣା ହୁଏ ନାହିଁ ।

ଚାଳିଶି କଅଣ ଗୋଟାଏ ବୟସ ? ଦେହରେ ମାଂସ ପୂରି ରହିଛି । ନିଜ ମୁହଁଟି ନିଜକୁ ସୁନ୍ଦର ଦିଶୁଛି । ଭରପୂର ସ୍ୱାସ୍ଥ୍ୟ ଦେହର ରଙ୍ଗକୁ ଆହୁରି ଚୋରି କରିଛି । ମୁହଁରେ ପାଉଡ଼ରର ପରଖ, କଜଳ ଦି'ଗାର ନେତ୍ରରେ, ସରୁ ଲଞ୍ଜି ଆଖିକୋଣରେ, ସୀମନ୍ତରେ ଓ କପାଳରେ ସିନ୍ଦୂର, ବୟସକୁ ଦଶବାର ବର୍ଷ ପଛକୁ ଠେଲିଦେବ । ଏବକାଳର ବାଙ୍ଗ୍ଲା ଜୁଡ଼ା ଖାସା ମାନିବ । ସେମାନେ କୁହାକୁହି ହେବେ, ସାକ୍ଷାତ ଦେବୀପ୍ରତିମା ପରି ଇନ୍ଦିରା ଦିଶେ ! ଚାଳିଶଠାର ମା, ବଡ଼ ଝିଅକୁ ସତର । ଯିଏ କହିବ ଇଦସ ପଚିଶ ତିରିଶ ଭିତରେ । ଏବେ ହୋଟେଲରୁ ଓହ୍ଲାଇଛି । ନିଜକୁ ଟିକିଏ ସଜାଡ଼ି-ଦେଲେ ଏ ପ୍ରଶଂସା ସେ ଅରଜି ପାରିବେ । ମୁଣ୍ଡରୁ ଦରପାଚିଲା ଖାଇରିଆ କେଶ ଦି'ପୁଞ୍ଜା ସେ ଓପାଡ଼ି ଦେଇଛନ୍ତି ।

ସରିଲା ।

କୁଆଡ଼େ ଯିବାର ପ୍ରୋଗ୍ରାମ ଆଜି ନାହିଁ । ତେବେ, କିଏ କେତେବେଳେ ଆସି ପହଞ୍ଚିବ—ଯେସମିନ୍, ବନହଂସୀ, ଯୂଥିକା ଅବା ଆଉ କେହି ଗଣ୍ୟମାନ୍ୟ ବ୍ୟକ୍ତି ଓ ମହିଳା । ଚା, ବିସ୍କୁଟ୍, ଫ୍ରୁଟ୍ସ । କୋଲ୍ଡ୍ ଡ୍ରିଙ୍କ୍ ସଙ୍ଗରେ ଚୁମୁକେ ଚୁମୁକେ ସୁରୁ ଶୋଷିଲାବେଳେ ପ୍ରୋଗ୍ରାମ୍ ହଠାତ୍ ସ୍ଥିର ହୋଇଯିବା ଅସମ୍ଭବ ନୁହେଁ । ନୂଆ ଗାଡ଼ି ଚଢ଼ି ସ୍ୱାମୀ ଆନନ୍ଦଚନ୍ଦ୍ର ବାତଚକ୍ର ପରି ବୁଲୁଥିବେ । ହଠାତ୍ ଆସି ପହଞ୍ଚିବେ । କହିବେ, ଚାଲ ଭୁବନେଶ୍ୱର !

ପିଲାଏ ?

ସମସ୍ତେ ଚାଲ । ଘରେ ଚାକର ପୂଝାରୀ ଅଛନ୍ତି । ନେପାଳୀ ଗାର୍ଡ଼ ଚମନ ସିଂ ପହରା ଦେଉଛି । ଘରେ ଚାଲା ପକାଇଦେଲେ ନିଶ୍ଚିନ୍ତ ।

ପାଠପଢ଼ା ଛୁଆ ଅନୁପା କ'ଣ ଯିବାକୁ ରାଜି ହେବ ? ସେ ଏବେ ଘର ଜନ୍ତଆ ହେଲଣି, ଦେଖୁଛ ତ ! ଅଭିମାନିନୀ ହେଲଣି । ଯଦି ଥରେ ନାହିଁ କହିଦେଇଥିବ, ଯେତେ ବୁଝାଇଲେ ସେ ଆଉ ନ ବୁଝେ ।

ଖୁସିରେ ଯିବାକୁ କହୁନାହିଁ, ଇନ୍ଦ୍ର ! ବେପାର ଦୃଷ୍ଟିରୁ କହୁଛି । କାଲି ଗଣେଶ ଚତୁର୍ଥୀ । ଆଜ ଟିକିଏ ବଡ଼ବଡ଼ୁଆଙ୍କ ଘରେ ମୁହଁ ମାରିଦେଇ ଆସିବା । ସେମାନଙ୍କର ପିଲାମାନେ ନୂଆ ଡ୍ରେସ୍ ପିନ୍ଧି ପୂଜା କରିବେ । ଆମକୁ ବଜାରବାଟେ ଯିବାକୁ ପଡ଼ିବ । କିଛି ମିଠା ବି ସଙ୍ଗରେ ନେବା ।

ଅବାଧ ଅନୁପା ମଙ୍ଗିବ ନାହିଁ । ଦେଖୁନ କି ତାର ଢଙ୍ଗ ! କ'ଣ ବା ମୁଁ ତାକୁ କହିଦେଇଥିଲି ଯେ !

ସେ ରହୁ । ନିରୁପା ବି ରହୁ ।

ନିଜ ଭିତରେ କଥାଭାଷା ହେଉଥିଲେ ସେ ଇନ୍ଦ୍ର । ଅନୁପାର ବଦଳା ଢଙ୍ଗ ପାଇଁ ମନେ ମନେ ସେ ତଥ୍ୟ ଖୋଜୁଥିଲେ । ବିଷମ କଣ୍ଟକ ଛୁଡ଼ିବାର ପ୍ରାୟ ହପ୍ତାକ ଆଗରୁ ତାର ଜନ୍ମଦିନ ଉତ୍ସବ ହୋଇଥିଲା । ଅବଶ୍ୟ ବେଶୀ ଆଡ଼ମ୍ବର କରାହୋଇ ନ ଥିଲା । ଅନୁପାକୁ ଷୋଡ଼ଶ ପୂରି ସତର ଚାଲିଲା । ସେଥିର ଉପଲକ୍ଷରେ ସମୁଦୁଣୀ ଯୂଥିକା ଧଳା-ପଥରବସା ସୁନ୍ଦର ହାରଟିଏ ଅନୁପାକୁ ପିନ୍ଧାଇଦେଇଥିଲେ । ସ୍ଲେଟ ହାରଟି ତା ବେକକୁ ଭଲ ମାନୁଥିଲା । ଦୁଇ ତିନି ଦିନ ପରେ ଦେଖିଲାବେଳକୁ ତା ବେକ ଲଙ୍ଗଳା । କେଉଁଠି ସେ ହଜାଇ ଦେଇଥିଲା । ଯେତେ ଖୋଜାଖୋଜି କରାଗଲା, ମିଳିଲା ନାହିଁ ।

ଶୁଭ ହାରଟି । ଏମିତି କୁଆଡ଼େ ଶୂନ୍ୟେ ଶୂନ୍ୟେ ଉଡ଼ିଗଲା ? ଏହି କଥା ପଚାରିବାରୁ ଅନୁପା ଅଭିମାନ କଲା, କାନ୍ଦିଲା । ଯେତେ ବୁଝାଇଲେ ବୁଝିଲା ନାହିଁ । ନିଜ ମନକୁ ସେ ପ୍ରକୃତିସ୍ଥ ହେଲା । ନିଜେ ଇନ୍ଦ୍ର ସେଥିପର ହାରଟିଏ ଅଧିକ ଓଜନର ତା ପାଇଁ କିଣିଆଣି ଦେଲେ । ଗୋଟିଏ ଦିନ ସେ ବେକରେ ନାଇଥିଲା । ପରଦିନ ତାକୁ ଖୋଲି ଇନ୍ଦ୍ରଙ୍କୁ ଫେରାଇଦେଲା । କହିଲା, ତୁ ରଖିଥା ବୋଉ । ଏଇଟା ବାରମ୍ବାର ଖସିପଡ଼ୁଛି । ତୁ ତ ଜାଣୁ, ମୁଁ ଅଥରପାଟିଏ । ପାଠ ପଢ଼ିବି ନା ହାରକୁ ଜଗିବି, ସମ୍ଭାଳିବି ? ମାଗିଲେ ଦେବୁ ।

ସେଦିନ ତତେ ଅଥରପୀ କହୁଦେଇଥିଲି । ତୁ ମନକଷ୍ଟ କଲୁ କି ମା ? ତୁ ମୋର ସୁନାଝିଅଟି !

ଅନୁପା ହସିଥିଲା । କହିଲା, ମନକଷ୍ଟ କାହିଁକି କରିବି ବୋଉ ? ସତେ ମୁଁ କଣ ଅସାବଧାନ ନୁହେଁ କି ? କେତେ କଲମ ପେନ୍‌ସିଲ ମୋର କେଉଁଠି ହଜିଯାଉଛି । ପଗୁରୁନୁ ବଳଭାଇଙ୍କୁ ?

ବହମ ଗ୍ରାମକୁ ଯାଇ ରହିଲେ ଯେ ରହିଲେ । ଚିଠି ଖଣ୍ଡିଏ ବି ଦେଲେ ନାହିଁ । ତିନି ମାସ ପୂରିବାକୁ ଯାଉଛି । ଏ ଦୁନିଆରେ କିଏ କାହାର ? ଯେମିତି ସେ ଉଡ଼ଣିଗଲେ, ପାସ୍ ଖଣ୍ଡେ କଲେ, ମୁଣ୍ଡକୁ ହାତ ପାଇଲା । ତାଙ୍କର ରୂପ ବଦଳିଗଲା । ଆଉ ଏବେ ଆଁ ନ ହଅନ୍ତି । ବେପାରରେ କ୍ଷତି ହେଉଛି । ଔଷଧ ଦୋକାନ ଖୋଲିପାରିଲା ନାହିଁ । ପିଲାଙ୍କୁ ପାଠ ବୁଝାଇବାକୁ କେହି ନାହାନ୍ତି । ଗୁମାସ୍ତା ମୋହନର, ନେପାଳୀ ଗାର୍ଡ, ଚାକର-ବାକର ଅଛନ୍ତି ଯେ, ସେମାନଙ୍କ ଉପରେ ପୂର୍ଣ୍ଣ ଆସ୍ଥା ରଖାଯାଇପାରୁନାହିଁ ।

ବହୁଦିନ ପୂର୍ବେ ସାରଙ୍କେଶସାହୁଇ, ଚିଠି ନୁହେଁ ଯେ, ପୁରାଣ ଖଣ୍ଡେ ଲେଖି ପଠାଇଥିଲେ । ପଢ଼ିଲେ ହସିହସି ଗଡ଼ିଯିବାକୁ ମନ ହେବ । ଖୁସାମତିଆ ଚକଣିଆ ଚିଠି । ନିଜର ଦୁଃଖ ବର୍ଣ୍ଣନା । ବୋହୂଟିଏ ଠିକ୍ କରିଛନ୍ତି । ଖାଲି ତା'ଆର ନୁହେଁ, ତା' ବାପ, ମା, ଭାଇ, ଭଉଣୀ, କୁକୁର ବିଲେଇଙ୍କର ରୂପଗୁଣର ବାଖ୍ୟନା । କ'ଣ ସେ ବୋହୂଟିର ନାମ ? ଉଲୁପୀ ନା ଉତ୍ପୀ ?

ତମେ ତ ଠିକଣା କରିସାରିଛ, ଆଗଭୁଗ ବାଟଖର୍ଚ୍ଚ ବାବତକୁ ବାଦନ ଆଣିଛି, ମୁହଁ ମୁଲହିଜାକୁ ମାମୁଁ ମାଇଁଙ୍କର ସମ୍ମତି ଲୋଡ଼ିଛ କାହିଁକି ମ ?

ବେଶଭୂଷାରେ ସନ୍ତୁଷ୍ଟ ହୋଇ ଇଢଗ ବଡ଼ ଆଇନାରେ ନିଜକୁ ଚାହିଁଲେ । ଆଖି ଦିଓଟିରେ ଆଖି ମିଳାଇଲେ । ପଚରାପଚରି ଦୁଃଖସୁଖ ହେଲେ । ସେକାଳ ଓ ଏକାଳର କେତେ ଖବର, ଯହିଁରୁ ଅଧେ ମୁହଁ ଖୋଲି ନିଜ କାନକୁ ଶୁଣାଇହେବ ନାହିଁ ।

ଶୁକମୁନିଙ୍କର ମୂର୍ଚ୍ଛାନିଆ ନଟରାଜ ମୂର୍ଚ୍ଛନା ! ବିଷମ ପିଲାଟାର ଦେହରେ କେତେ ଶକ୍ତି ମ ! ଫୁଲ ପରି ଟେକି ସେ ଶୁଣ୍ଡରେ ନାକ ପାହାଚ ପରେ ପାହାଚ ଡେଇଁପାରେ । ଆଶ୍ଲେଷର କଠୋର ସ୍ପର୍ଶ !

ଅକୁଣ୍ଠଙ୍କ । ଚିଠି ଖଣ୍ଡେ ବି ଦେଲା ନାହିଁ ।

ନିଜର କଜଳଭରା ଆଖିକୁ ବୁଜିଁ ନିଜର ଅନ୍ତର ଆଲୋଡ଼ିବାକୁ ଇନ୍ଦିରାଙ୍କୁ ଲାଜ ମାଡ଼ିଲା । ସେ ଦୃଷ୍ଟି ବୁଲାଇଲେ । କଣ-ଘରର ଢ଼ି'ଫାଳିଆ ପାତଳା ପରଦା ଆଢ଼େଇ ଟଳଟଳ ହୋଇ ଆଠବର୍ଷର ଥାକୁଲି ଝିଅଟି ସୁରୁପା ମଝିଘରକୁ ପଶିଆସିଲା । ଛୁପିଛୁପିକା ଫ୍ରକ୍ ଖଣ୍ଡେ ସେ ପିନ୍ଧିଛି । ମୁଟୁଣିଏଁ ଲମ୍ବର କେଶ ଫୁର୍‌ଫୁର୍ ହେଉଛି । ଆଖି ହଠାତ୍ ରଙ୍ଗ ହଣୁଛି । ହାତରେ ଧରିଛି ଖଣ୍ଡିଏ ଇନ୍‌ଲ୍ୟାଣ୍ଡ ଚିଠି ।

ଇନ୍ଦିରା ତା ପାଖକୁ ଆସି ତାର ହାତ ଧରିଲେ । ଦେହରେ ତାତି ଭରି ରହିଛି । ସେ ବ୍ୟସ୍ତ ହୋଇ ସୁରୂପାର କାନ୍ଧ ଧରି କାନ୍ଥ କଡ଼ରେ ପଡ଼ିଥିବା ଯାଉଁଳି ପଲଙ୍କ ପାଖକୁ ନେଲେ । ଦୁଇ ହାତରେ ତାକୁ ଟେକି, ଫୋମ୍‌ବେଡ୍ ଉପରେ ବସାଇଲେ । ତାର ପାଖରେ ବସି ଆଙ୍ଗୁଠିରେ ମୁଣ୍ଡର କେଶ ସଜାଡ଼ିଲେ । ତାର ଦୁଇଟିକା ଗାଲରେ ଗେଲ କରି କଅଁ ନେଇ କହିଲେ, ଦିନସାରା ତ ଖାଲି ଉପାସ ରହିଛୁ ମା, ବାର୍ଲିପାଣି ଟିକିଏ ପିଇବୁ କି ?

ଅପା ଆସିଲେ ପିଇବି । ସେ କହିଯାଇଛି, କଲେଜରୁ ଫେରିଲା ବାଟରେ ମୋ ପାଇଁ କମଳାଲେମ୍ବୁ ଆଉ ବେଦାନା ଆଣିବ । ମତେ ବାନ୍ତି ବାନ୍ତି ମାଡ଼ୁଛି । ଖାଲି ଦୁଧବାର୍ଲି ପିଇଲେ ମୋର ବାନ୍ତି ହେବ ।

ଇନ୍ଦିରା କାନ୍ଥଘଣ୍ଟାକୁ ଚାହିଁଲେ । କହିଲେ, ସେ ଆଜି ରିକ୍ସାରେ ଫେରିବ । ତୋ ବାପା ଗାଡ଼ି ନେଇଯାଇଛନ୍ତି । ତାଙ୍କର ବହୁତ କାମ । କେତେବେଳେ ଫେରିବେ ଜଣାନାହିଁ । ପାଞ୍ଚଟା ବାଜିବ । ତୋ ଅପାକୁ ଆଣିବାପାଇଁ ଗାଡ଼ି ପଠାଇପାରିବ ନାହିଁ । ଚିଠିଖଣ୍ଡି କିଏ ଦେଇଛି ମା ?

ସୁରୂପା ଇନ୍ଦ୍ରଙ୍କ କୋଡ଼ ଉପରେ ଚିଠି ଖଣ୍ଡି ରଖି କହିଲା, ଭୁ ଗୋଦାମ ଘରେ ଥିଲା, ରଥିଆ ଆଣି ଦେଇଗଲା । ଗପବହି ଭିତରେ ରଖି-ଦେଇଥିଲି । ତତେ ଦେବାକୁ ଭୁଲିଯାଇଥିଲି ।

ସୁରୂପା ସେହି ପଲଙ୍କ ଉପରେ ଶୋଇପଡ଼ିଲା ।

ଇନ୍ଦ୍ର ଚିଠିଖଣ୍ଡି ଓଲଟପାଲଟ କଲେ । ଠିକଣାରୁ ଜାଣିଲେ ଯେ ସେହି ପତ୍ରଖଣ୍ଡି ଶିରପଲ୍ଲିରୁ ବହ୍ନିମକେଶରୀ ଅନୁପା ପାଖକୁ ଲେଖିଛି ।

ଖୋଲିବେ କି ନାହିଁ ସହସା ମନରେ ଦ୍ୱନ୍ଦ୍ୱ ଜାଗିଲା । କାହିଁକି ଏ ଦ୍ୱନ୍ଦ୍ୱ ନିଜେ ସେ ସ୍ଥିର କରିପାରିଲେ ନାହିଁ । ମନର ଦୁର୍ବଳସ୍ତରେ ଉଠି-ଆସିଲା ଯେଉଁ ଧୂମାଳ, ଇନ୍ଦ୍ର ବିଚଳିତ ହେଲେ—

—କୋଠରି ଭିତରେ ବିଜୁଳି ଆଲୁଅ ଧୂପକାଠିର ବାସନା ଧୂଆଁରେ ପାତଳ ଧୂଆଁଳିଆ ଦିଶୁଛି । ସେହି ଅସ୍ପଷ୍ଟ ପରିବେଶରେ ପଲଙ୍କ ଉପରେ ସୁନ୍ଦର କୁଳୁକୁଳିଆ ମୁହଁ ଉଦେରକୁ ଟେରକୁ ଥର ନଇଁଆସୁଛି ସ୍ୱାସ୍ଥ୍ୟ ଭରପୂର ବଳିଷ୍ଠ ମୁହଁଟିଏ, କୋକ ଦେଉଛି ।—

ନା, ସେ କିଛି ଦେଖି ନ ଥିଲେ ! ଅଧିକ ସୁରା ପାନ କରାଇ ବନ-ହଂସୀ ତାଙ୍କୁ ଅପ୍ରକୃତିସ୍ଥ କରିଥିଲେ ! କାର୍ ଭିତରେ ବନହଂସୀଙ୍କର ସ୍ୱାମୀ ପରିମଳବାବୁଙ୍କର ଗାଢ଼ ସ୍ପର୍ଶ ତାଙ୍କର ଦେହରେ ଓ ଅଣାୟତ୍ତ ହୋଇ-ଆସୁଥିବା ଚେତନାରେ ଯେଉଁ ଚମକ ଲଗାଇଥିଲା ତାହାହିଁ ଗୋଟାଏ ଅଶୋଭନୀୟ କ୍ଷଣିକ ଉତ୍ତେଜନାର ଚିହ୍ନ ମନରେ ଆଙ୍କୁଥିଲା ! ହଁ, ତାହାହିଁ ସତ୍ୟ ।

ମନତଳର ଧୂମାଳକୁ ପଛ କରି ଇନ୍ଦ୍ର ବହ୍ନିମକେଶରୀର ପତ୍ରଖଣ୍ଡି ସାବଧାନ ହୋଇ ଖୋଲିଲେ । ମନେ ମନେ ପଢ଼ିବାକୁ ଲାଗିଲେ—

—ସ୍ନେହର ଅନୁପା,

—ଝଡ଼ ଓ ବର୍ଷା ଦେହରେ ଭେଦାଇ, ଚନ୍ଦ୍ରିରବଲର କାଦୁଆ ବାଟରେ ମାଟିସରସର ହୋଇ, ନିଜର ବୋଝ ନିଜେ ବୋହି, ଯେତେ-

ଯେବେ ମୁଁ ପହଞ୍ଚିଲି, ଘରର ଅବସ୍ଥା ଓ ମୋ ବୋଉର ଭଙ୍ଗା ସ୍ୱାସ୍ଥ୍ୟ ଦେଖି ମୁଁ ହତଭମ୍ବ ହେଲି । ମୁଁ ହତାଶ ହେଲି । ଭାବିଲି, ଖଣ୍ଡେ ଭଲ ଘରେ ରହି, ସୁସ୍ଥରେ ମୁଠିଏ ଖାଇ, ମୋଟାସୋଟା ଖଣ୍ଡେ ପିନ୍ଧି କାଳ କଟାଇବା ଯଦି ଜୀବନର ଲକ୍ଷ୍ୟ ହୁଏ, ଅଧିକ ପାଠ ପଢ଼ିବା ମୋ ପକ୍ଷରେ ଉଚିତ ନ ଥିଲା । କଟକରେ ପ୍ରାୟ ନଅବର୍ଷ ରହି, ପାଠ ଘୋଷି, ବିଶ୍ୱବିଦ୍ୟାଳୟର ଉପାଧି ଲାଭ କରି ମୁଁ ମୋର ସମସ୍ତ ବ୍ୟର୍ଥତାରେ କଟାଇଦେଲି ।

—ଆମ ଘରର ନଙ୍ଗଳା ରୂପ ବିଷୟରେ କଅଣ ବା ଲେଖିବି ? ଦାରିଦ୍ର୍ୟ ଗୋଟାଏ ବଡ଼ ଅପରାଧ । ସେହି ଅପରାଧ ସଙ୍ଗେ ସ୍ୱୈରି ଉକାପୂତି, ଜାଲ ଜାଲିଆତି, କଳାବଜାର କାରବାର ସମସରି ନୁହେଁ । ଆମର ପୁରୁଣା ଘର ବହୁବର୍ଷ ହେଲା ମରାମତି ହୋଇ ନ ଥିଲା । ଗତ ଦୁଇବର୍ଷ ହେଲା ଛୁଆଣି ହୋଇ ନ ଥିଲା । ଏବେ ନିଶ୍ଚୟ ଭାଙ୍ଗିପଡ଼ିଥାଆନ୍ତା । ବୋଉର ଔଷଧ ପାଇଁ ହାତରେ ଧନ ନ ଥିଲା । ଦି' ବେଳା ଦି'ମୁଠା ଅନ୍ନ ମିଳିବା ବି ସମ୍ଭବ ହୋଇପାରୁ ନ ଥିଲା ।

—ବଞ୍ଚିବାର ଉପାୟ କ'ଣ ? ରେଡ଼ିଓ ଓ ମୋର ହାତଘଣ୍ଟା ବିକିଲି । ଆମ ବାଗରେ ପଡ଼ିଥିବା ଗୋଟିଏ ଆମ୍ବଗଛ ବିକିଲି । ବୋଉର କାନରେ ଯେଉଁ ସୁନାଫୁଲ ହଳକ ଥିଲା, ଗହଣା ଭିତରେ ତାଙ୍କର ଶେଷ ସମ୍ବଳ, ମୋତେ ନ ଜଣାଇ ସେତକ ସେ ବନ୍ଧା କରିଦେଇଛନ୍ତି । ଯାହାହେଉ, ଆମର ଚଳନ୍ତି ସମସ୍ୟାଗୁଡ଼ିକର ସମାଧାନ ହୋଇସାରିଛି । ନିଜେ ମୁଁ ପାଖ ଗ୍ରାମର ହାଇସ୍କୁଲରେ ଜଣେ ଶିକ୍ଷକରୂପେ ଯୋଗ ଦେଇଛି । ଏଣିକି କୌଣସିମତେ ଆମର ଗରଜ ମେଣ୍ଟିବ ।

—ଠିକେ ଠିକେ ଯାହା ମୁଁ ଲେଖିଲି ସେଇଥିରୁ ସହଜରେ ଅନୁମାନ କରିପାରିବୁ, କାହିଁକି ମୁଁ ଚିଠି ଖଣ୍ଡେ ଦେଇ ପାରି ନ ଥିଲି । କଟକ ଯାଇ ମାମୁଁମାଆଙ୍କର ଚରଣ ଦର୍ଶନ କରିବା ଓ ତୁମମାନଙ୍କୁ ମୋ'ର ସ୍ନେହ ଜଣାଇବା ମୋ ପକ୍ଷରେ ସମ୍ଭବ ହୋଇ ପାରି ନ ଥିଲା । ମାସକ ତଳେ ତୋର ଫଟୋଟି ପାଇଥିଲି । ବୋଉ ତାକୁ ଗଣ୍ଠିଧନ କରି ରଖିଛି ।

ବାରମ୍ବାର ପଢ଼ୁଛି, କହୁଛି, ମୋ ଅନୁପାର ରୂପଟି ଯେମିତି, ଅକ୍ଷରଗୁଡ଼ିକ ସେମିତି, ଜାଣିକରି ତ ବୁଦ୍ଧି ଓ ଭାଷା !

—ମାମୁଁ ମାଈଁଙ୍କୁ ମୋର ସହସ୍ର ପ୍ରଣାମ ଜଣାଇଦେବୁ । ମାଈଁ ମତେ ତାଙ୍କର ଔଷଧ ଦୋକାନର ଗୁମାସ୍ତା ବୁକକିପିଙ୍ଗ ଦେବାକୁ ଦୟାକରି ବାଛୁଥିଲେ । ତାଙ୍କର ଅପାର କରୁଣା ପାଇଁ ମୁଁ ଆପ୍ଳୁତ ହୋଇ-ପଡ଼ୁଛି । ତାଙ୍କର ଦୟାର ସୁଯୋଗ ନେବାକୁ ମୁଁ ହତଭାଗ୍ୟ ସମ୍ପୂର୍ଣ୍ଣ ଅକ୍ଷମ । ମାଷ୍ଟରଙ୍କ ସଙ୍ଗେ ମୁଁ ଏମ୍. ଏ. ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଛି । ଓ. ଏ. ଏସ୍. ପରୀକ୍ଷା ଦେବାପାଇଁ ମଧ୍ୟ ମୁଁ ମନ ବଳାଇଛି । ଆଶା ସଫଳ ହେବା ନ ହେବା ସୁବିଧା, ସୁଯୋଗ ଓ ସର୍ବୋପରି ଭାଗ୍ୟ ଉପରେ ନିର୍ଭର କରେ ।

—କଟକ ଗୁଡ଼ିଆ ବିନରୁ ମୁଁ ଆଜି ପ୍ରାର୍ଥନା କରିନାହିଁ । ବେଳ ପାଇ-ନାହିଁ । ଭଗବଦ୍‌ଗୀତା ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥ ଟ୍ରଙ୍କରେ ସେମିତି ରଖା-ହୋଇଛି । ଖୋଲିବାକୁ ମୋର ତର ବା ଆଗ୍ରହ ହୋଇନାହିଁ ।

—ତମେ ପିଲାଏ ମୋର ସ୍ନେହ ନେବ । ତମ ସମସ୍ତଙ୍କୁ ବୋଉ କଲ୍ୟାଣ ଜଣାଉଛି ।

—ପୁନଶ୍ଚ, ମାଈଁ ଆଉଙ୍କୁ ଚିଠି ଲେଖୁଥିଲେ ମୋର ହୋଇ ତାଙ୍କୁ ଲେଖିଦେବୁ, ବୁଢ଼ା ହେବାଯାଏ ତାଙ୍କର ସ୍ନେହଜରଜର ମନଓ୍ଵିଟରି ରଜାପୁଅ ରଜାଝିଅ ଗଳ୍ପଗୁଡ଼ିକ ମୁଁ ଭୁଲିପାରିବ ନାହିଁ । ଲେଖିବୁ, ଅହିବର ସବାତଳ ପାହାଚରେ ଠିଆ ହୋଇ, ମୁଁ ଦିନେ ଭାବୁଥିଲି ଯେ, ଯେଉଁ କଳିଙ୍ଗ ରାଇଜର ରାଜାମାନେ ହଜାର ବର୍ଷ ତଳେ ଭୁବନେଶ୍ୱରରେ ଲିଙ୍ଗରାଜ ମନ୍ଦିର ତୋଳାଇଥିଲେ ସେମାନେ କେଶରୀ ନାମରେ ପରିଚିତ ଥିଲେ । ମୁଁ ଵିକ୍ରମକେଶରୀ କ'ଣ ସେହି ବଂଶର ହୋଇ ନ ଥିବ ? ନିଶ୍ଚେ ହୋଇଥିବ । ମୁଁ ରାଜକୁମାର, କେବଳ ମୋର ପିଣ୍ଡ-ବ୍ରହ୍ମାଣ୍ଡର ରାଜ-ଚକ୍ରବର୍ତ୍ତୀ । ହେଲେ କଳାଫୁଲ, ଧଳାଫୁଲ, କି ଆଉ କେଉଁ ଫୁଲର ନାମ ଜାଣିବା ମୋର ଆଉ ଲୋଡ଼ା ହେବ ନାହିଁ ।

ଇନ୍ଦ୍ରଙ୍କର ଚିଠିପତ୍ର ଶେଷ ହେଲା । ବଜୁଲପଙ୍ଖାର ଧୀର ଚଳନ ସଙ୍ଗେ ତାଙ୍କର ସଯତ୍ନମାର୍ଜିତ ଦେହ ଓ ପାଉଡରର ପରଖ ବାସ ମୁହଁ ଝାଳେଇ ଉଠିଥିଲା । ସେ ଅନୁଭବ କରୁଥିଲେ, ଭାଷାରେ ଭଦ୍ରତା ଓ ଭାବରେ ସଂଯମ ଦେଖାଇବାକୁ ପ୍ରାଣପଣ ଚେଷ୍ଟା କରି ମଧ୍ୟ ବସନ୍ତ ତାଙ୍କର ମାମୁଁ ମାଈଁଙ୍କ ପ୍ରତି ଅନାସ୍ଥା ଭାବ ପ୍ରକାଶ କରିଛନ୍ତି । କୃତଜ୍ଞତା ପ୍ରକାଶ କରିବା ସ୍ଥଳରେ ତାଙ୍କର ଅକୃତଜ୍ଞତା ସୂଚାଇ ଦେଇଛନ୍ତି ।

ଇନ୍ଦ୍ର ଆଉ ଥରେ ସେହି ପତ୍ରଟିର କେତେ ଅଂଶରେ ଆଖି ବୁଲାଇଲେ । ମନକୁମନ ହସିଲେ । ବଡ଼ିରିଲେ, ପତ୍ରାକାମ ସରିଲା । ମୂଣ୍ଡକୁ ହାତ ପାଇଲା । ସେଇଠୁ, ବାହା ଶେଷରେ ବେଦମୁହଁପୋଡ଼ା ମତ !

ବସନ୍ତର ସେହି ଚିଠିଖଣ୍ଡିକ ଆନନ୍ଦଚନ୍ଦ୍ରଙ୍କର କୁଟୁମ୍ବରେ କେତେ ଦିନ ଯାଏ ବେଶ୍ ଚର୍ଚ୍ଚା ହୋଇଥିଲା । ଟିକିଏ ଆନ୍ଦୋଳନ ସୃଷ୍ଟି କରିଥିଲା । ସେହି ପତ୍ରଟି କେବଳ ଅନୁପାଠ ହୋଇ ରହିପାରିଲା ନାହିଁ, ହାତକୁ ହାତ ବୁଲିଲା ।

ଆନନ୍ଦଚନ୍ଦ୍ର କହିଲେ, ଯାହାଙ୍କୁ ଯାହା ଭଲ ଦିଶୁଛି, ନିଜ ଜୀବନର ଉନ୍ନତି ପାଇଁ ଯେଉଁ ବାଟକୁ ସିଏ ଠିକ ମଣୁଛି, ସେ ସେଇଆ କରୁ, ଇନ୍ଦ୍ର ! ବସନ୍ତର ଚିଠିକୁ ଏତେ ଆଲୋଚନା କରି ଉତ୍ତ୍ୟକ୍ତ ହେବା ଉଚିତ ନୁହେ ।

ମୁଁ ଉତ୍ତ୍ୟକ୍ତ ହେଉନାହିଁ ମ, ଲୋକଙ୍କୁ ମାନ କରି ଖପରରେ ଖାଇବା ଲୋକ ଆମେ ନୋହୁଁ । ବସନ୍ତଙ୍କ ପାଇଁ ଆମେ ଯାହା କରିଥିଲୁଁ, ତାଙ୍କଠାରୁ ବହୁତ କିଛି ପାଇବାକୁ ଆଶା କରିଥିଲି । ଆମେ ପାଇଲୁଁ କ'ଣ ?

କଅଣ ପାଇବାକୁ ଆଉ ତୁମେ ଆଶା କରିଥିଲ ? ସେ ଯେତେଦିନ ଆମ ପାଖରେ ଥିଲା, ତାର କର୍ତ୍ତବ୍ୟରେ କେବେ ସେ ହେଳା କରିନାହିଁ । ମୁହଁ ଖୋଲି ଦିନେ କେବେ ପ୍ରତିବାଦ କରିନାହିଁ । ମୋର ଏକମାତ୍ର ଭଉଣୀର ଏକମାତ୍ର ସନ୍ତାନ ସେ । ତଥାପି କ'ଣ ଆମ ଧନସମ୍ପତ୍ତିରୁ ତାକୁ

କେହି ଭାଗ ଦେଇଥାନ୍ତା କି ? ସେହି ଦୃଷ୍ଟିରେ ଦେଖିଲେ ସେ ପର । ତମେ ଏହା ପ୍ରମାଣ କରୁଛ ।

ମୋର ଦୋଷ ଦେଉଛ କାହିଁକି ? ତମେ ତମର ଭଉଣୀ ଭଣେଇ ଓ ଭଣଜାଙ୍କର ଆର୍ଥିକ ଦୁରବସ୍ଥା ସୁଧାରିବାକୁ ଯଦି ଧନ ଅଜାଡ଼ି ଦେଇ-ଥାନ୍ତ, ଏବେ ବି ଯଦି ସେଇଆ କରିବାକୁ ଚାହଁ, କିଏ ତମର ହାତ ଅଟକାଇ ରଖିଥାଆନ୍ତା, ଅବା ଅଟକାଇ ରଖିବ ?

ଏତେ ଦୁଃଖ ସତ୍ତ୍ୱ ମଧ୍ୟ ଅପା, କି ସାନଭାଇ କେବେ ମୋ ପାଖରୁ ଆର୍ଥିକ ସାହାଯ୍ୟ ଚାହିଁନାହାନ୍ତି । ବସନ୍ତ ବି ଚାହିଁନାହିଁ, ଇନ୍ଦ୍ର !

ନିଜ । ଉପରେ ପଡ଼ି କିଏ କାହାକୁ ସାହାଯ୍ୟ ଦେବ ଗୋ ! ଟଙ୍କା-କଉଡ଼ି ମାଟିଗୋଡ଼ି ନୁହେଁ । ତମର ମନ ହେଉଛି କି, ତମେ ତାଙ୍କ ଘରେ ନିଧିସମ୍ପତ୍ତି ଅଜାଡ଼ିଦେଉନ ?

ଏତିକି କହି ଇନ୍ଦ୍ର ସୋଫା ଚଉକିରୁ ରାଗ ତମତମ ହୋଇ ଉଠିଲେ । ଦୃଷ୍ଟି ପଡ଼ିଲା ଅନୁପା ଉପରେ । ଦୂରେଇ କରି ରଖା ହୋଇଥିବା ଅନ୍ୟ ଗୋଟିଏ ଚଉକିକୁ ଆଉଜି ସେ ବୈଠକଘରେ ଠିଆ ହୋଇଥିଲା ।

କଲେଜରେ ନାମ ଲେଖାଇବା ପରଠାରୁ ତାର ବେଶଭୂଷା ଓ ଚାଲିଚଳଣି ଧୀରେ ଧୀରେ ବଦଳିଯାଉଛି । କାନରେ ଦିଓଟି ଫୁଲ, ବେକରେ ପଦକଲଗା ଛୋଟ ହାର ଓ ହାତରେ ପଟିଏ ପଟିଏ ସୁନାକାଚ ଛଡ଼ା ଦେହରେ ଆଉ ଗହଣା ସେ ପିନ୍ଧୁନାହିଁ । ନଷ୍ଟୁମ କଲପର ଦେହରେ ପିନ୍ଧୁଛି ଖଣ୍ଡେ ଧଳା ବ୍ଲାଉଜ ଓ ଧଳା ଶାଢ଼ୀ । ଅଳ୍ପ କଥା ସେ କହୁଛି । ମୁରୁକେଇ ହସୁଛି । ସାଧାରଣ ବେଶ ତାର ରୂପ ଓ ସୌନ୍ଦର୍ଯ୍ୟକୁ ବଢ଼ାଇଛି ।

ଇନ୍ଦ୍ର ଅନୁପାର ଆଖିରେ ଲୁହ ଛଳଛଳ ହେଉଥିବାର ଦେଖି ଥକା ହେଲେ । ସେ କିଛି ପଚାରିବା ଆଗରୁ ଅନୁପା ତାର ବାପାଙ୍କ ପାଖକୁ ଆସି ଛୋଟ ଗୋଲ-ଟେବୁଲ ଉପରୁ ବସନ୍ତର ଚିଠିଟି ଉଠାଇ, ତାକୁ ଯତ୍ନ ସହକାରେ ଭାଙ୍ଗି ହାତରେ ଧରିଲା । ତାର ବୋଉଙ୍କ ମୁହଁକୁ କଣେଇ

ସୁହ୍ନି ଅଳପେଇ ହସି ଧୀରେ କହିଲା, ବଡ଼ଭାଇ କଣ ବା ଗୁଡ଼ାଏ ଏମିତି ଲେଖିଛନ୍ତି ଯେ ଆମ ଘରେ କେତେଦିନ ହେବ ଏତେ ଆଲୋଚନା ଲାଗିଛି, ବାପା ! ବୋଉ କହିଲାରୁ ମୁଁ ତାଙ୍କ ପାଖକୁ ଚିଠି ଖଣ୍ଡେ ଲେଖିଦେଇଥିଲି । ବହୁଦିନ ପରେ ସେ ଉତ୍ତର ଦେଇଛନ୍ତି । ତାଙ୍କ ଘରର ଦୁଃଖ-ଦୁର୍ଦ୍ଦଶାର କାହାଣୀ ଲେଖିଛନ୍ତି । ସେ କାହାକୁ ଟଙ୍କା ସାହାଯ୍ୟ ମାଗିନାହାନ୍ତି ।

ଆନନ୍ଦଚନ୍ଦ୍ର ଇନ୍ଦିରାଙ୍କର ବିସ୍ମିତ ମୁହଁକୁ ଅନାଇଁ ଅନୁପାର ସଜଳ ମୁହଁକୁ ଦୃଷ୍ଟି ଫେରାଇଲେ । କହିଲେ, ତୁ ଠିକ୍ କହିଲୁ ମା ! ତେବେ ତାର ଚିଠିଖଣ୍ଡି ଟିକିଏ ଅବାଗିଆ ହୋଇଛି । ନୁହେଁ କି ମା ?

ଇନ୍ଦିରା କହିଲେ, ଅପମାନିଆ ହୋଇଛି । ତାଙ୍କର ଯଦି ଅଭାବ ଅସୁବିଧା ଥିଲା, ସେ ଟଙ୍କା ମାଗିପଠାଇଲେ ନାହିଁ ?

ତାଙ୍କ ଚିଠିରେ ସେ ତାର କାରଣ ଲେଖିଛନ୍ତି, ବୋଉ ! ଗରିବର ଅଭିମାନ ଅଧିକ । ତାଙ୍କ ମନରେ ଧାରଣା ହୋଇଛି ଯେ ହଜାର ବର୍ଷ ତଳେ ଯେଉଁ କେଶରୀ ରାଜାମାନେ ଓଡ଼ିଶା ଭୂଇଁର ରାଜା ଥିଲେ, ସେ ସେହି ବଂଶର ପୁଅ । ସେ ପେଟରେ ଓଦାକନାଢ଼ିଆ ରାଜକୁମାର !

ଇନ୍ଦିରା ହସିହସି ପୁଣି ସୋଫାରେ ବସିପଡ଼ିଲେ ।

ଆନନ୍ଦ ମୁହଁ ହସୁଆଳ କରି ମୁଣ୍ଡ ହଲାଇଲେ । ରହସ୍ୟ କରି କହିଲେ, ହୋଇଥିବ ସତ । କେତେ ରାଜକୁମାରଙ୍କର ବଂଶଧର ଏବେ ହାଟରେ ପଡ଼ି ଦାଣ୍ଡରେ ଗଡ଼ଗଡ଼ଉଛନ୍ତି ମା ! ଯାହା କହ, ହାଡ଼ରୁ ବାହ୍ମଣ ଯାଏ ଆମେ ମହାପାତ୍ରିଆ ଦଳ ସେମାନଙ୍କର ହାତଟେକା କର୍ମଚାରୀ ଥିଲୁଁ । ବିଷମର ମନରେ ଗର୍ବ ହୋଇଛି । ତା' ବାପା ବୀରକେଶରୀଙ୍କର ଖାନଦାନିଆ ରୋଗ ତାକୁ ଧରିଛି ।

ଇନ୍ଦିରା କହିଲେ, ହଁ ବା ! ପିଠି ଅରକ୍ଷିତ ଭୂଣ୍ଡ ନରେନ୍ଦ୍ର ।

ଅନୁପା ନିଃସଙ୍କୋଚରେ ତାର ବାପାଙ୍କ ପାଖରେ ବସି କହିଲା, ତୁ ସତ କହିଲୁ । ତାଙ୍କର ଗର୍ବରେ ସେ ବାହ୍ମଣୀବେଙ୍ଗ ପରି ଫୁଲିଉଠିଛନ୍ତି । ତାଙ୍କର ସାରୁଗଛ ମୂଳେ ବସି ସେ ରଡ଼ ଛାଡ଼ୁଛନ୍ତି । ଆମର କି ଥାଏ ?

ବାପା ତାଙ୍କୁ କାହିଁକି ସାହାଯ୍ୟ ପଠାଇବେ ? ସେ ସବୁ ଗ୍ରହଣ ନ କରି ଫେରାଇଦେବେ ଆମ୍ଭକୁ ଅପମାନ ହେବ ।

ଇନ୍ଦ୍ରଙ୍କ ମୁହଁରୁ ବାହାରିଲା, ଫେରାଇଦେବେ ?

କାହିଁକି ଫେରାଇ ନ ଦେବେ ? ମୋ ଜାଣିବାରେ ସେ କାହାକୁ କେବେ କିଛି ହାତ ପାତି ମାଗିନାହାନ୍ତି । ଆଜି ତାଙ୍କର ଅଭାବ ନାହିଁ । ସେ ଚାକିରି କଲେଣି । ରୋଜଗାର କଲେଣି । ତାଙ୍କର ମନରେ ଗର୍ବ ଉଙ୍କିଚି ଉଠିଲାଣି । ସେ ନ ଆସିଲେ ନାହିଁ । ଆମର ଔଷଧ ଦୋକାନ ଚଳାଇବାକୁ ବାପାଙ୍କୁ ବହୁତ ବିଶ୍ୱାସୀ ଦରମାଖିଆ ଚାକର ମିଳିବେ । ମୋର ବି ମାଷ୍ଟର ଦରକାର ନାହିଁ । ମୁଁ ନିଜେ ନିଜେ ପଢ଼ିପାରିବି ।

କହୁକହୁ ଭରିବାଦଲିଆ ଆକାଶରେ ବିଜୁଳିର ହସ ପରି ଅନୁପାର ଓଠରେ ହସ ଚହଟିଲା । ଆଖିରୁ ଝରିଆସିଲା ଦି'ଧାର ଲୁହ ।

ସେ ଲୁହ ଇନ୍ଦ୍ର ଓ ଆନନ୍ଦଙ୍କର ଦୃଷ୍ଟିରେ ପଡ଼ିଲା । ସେମାନେ କାବୁ ହେଲେ । ସ୍ତବ୍ଧ ହେଲେ । ସେମାନେ ନିର୍ବାକ୍ ହୋଇ କଅଣ ଚିନ୍ତା କରିବାକୁ ଲାଗିଲେ ।

ବୈଠକଘରେ ମୁହୂର୍ତ୍ତକରେ ନୀରବତା ଘୋଟିଗଲା । ସେହି ନୀରବତାକୁ ଆହୁରି ଗମ୍ଭୀର କଲା ଚଳନ୍ତି ପଙ୍ଖାର ସମତାଳ ଅତି ନମ୍ର ଶବ୍ଦ ।

ଅନୁପା ତାର ବାପାଙ୍କ ପାଖରୁ ଉଠି ବାରଣ୍ଡାକୁ ଗଲା । ତାର ଚଳନ୍ତି ପ୍ରତିମାକୁ ଚାହିଁ ଇନ୍ଦ୍ର ତାଙ୍କର ମନର ଭ୍ରାନ୍ତିକୁ ଭାଷା ଦେଲେ, ପିଲାଟାର ହୋଇଛି କ'ଣ ମ, ତାକୁ ତ କେହି ପଦେ କିଛି କହିନାହିଁ, ସେ ତା ଆଖିକୁ ଲୁହ ଆଣିଲା କାହିଁକି ? ହଠାତ ଏ ଘରୁ ଗଲା ଦିନରୁ—

ଇନ୍ଦ୍ରଙ୍କର ଭାଷା ଓଠରେ ଅଟକିଲା । ଅବଶିଷ୍ଟ ଅଂଶ ସେ ମନେ ମନେ ନିଜକୁ ନିବେଦିଲେ—ଅନୁପା କିପରି ବଦଳିଯାଇଛି । କେବେ ସିନା ସେ ଅଭାବୀ ଘରର ଝିଅ ଥିଲା, ଏବେ ତାର ଅଭାବର ପ୍ରଶ୍ନ ଉଠୁନାହିଁ । କାହିଁକି ସେ ଦୀନ ଦରିଦ୍ର ବେଶରେ ଆତଯାତ ହେବ ? ନିଜର ବେଶଭୂଷାର

ସେ ଯତ୍ନ ନେଉ ନାହିଁ । ମୁହଁରେ ପାଉଡର ଟିକଏ ମାଖିବାକୁ, ଆଖିରେ ଦ'ଧାର କଜଳ ମଣ୍ଡିବା'କୁ ସେ ଭୁଲିଯାଉଛି । ତାର ସୁନ୍ଦର ମୁହଁଟି ଫିକାଳିଆ ଦିଶୁଛି । ଫୁର୍ତ୍ତି, ଆନନ୍ଦକୁ, ହସି ହସି ନସ୍ୟାନ୍ତ ହେବାକୁ ସେ ଆଉ ପସନ୍ଦ କରୁନାହିଁ ।

ଆନନ୍ଦ କହିଲେ, କାମକାର୍ଯ୍ୟରେ ବ୍ୟସ୍ତ ରହିଲି । ବେପାରର ତାଡ଼ନାରେ ଓଡ଼ିଶାସାରା ବୁଲିଲି । ବାହାରେ ଅଧିକାଂଶ ବେଳ କଟାଇ, ଅନୁପାର ଚଳଣରେ ପରିବର୍ତ୍ତନ ଦେଖି ମଧ୍ୟ ମୁଁ ଦେଖି ପାରି ନ ଥିଲି । ଝିଅ ବଡ଼ ହୋଇଛି । ଭାବପ୍ରବଣ ହେବାର ସମୟ ତାର ଆସିଛି । ତାର ମନରେ ଆଘାତ ଲାଗିଲାପରି ତାକୁ କିଛି କହନା, ଇନ୍ଦିରା !

ତାକୁ ମୁଁ କିଛି କହିନାହିଁ । ବିକ୍ରମ ଆମକୁ କେଉଁଥିଲା ପରି ଚିଠି ଖଣ୍ଡେ ଲେଖିଛି । ମୁଁ କ'ଣ ଆମର ଗୁମାସ୍ତା ହୋଇ ଚାକିରି କରିବାପାଇଁ ତାକୁ ଆସିବାକୁ ଖବର ପଠାଇଥିଲି ? ସେ ଏମିତି ଲେଖିଲା କାହିଁକି ? ମୋର ମନରେ ଦୁଃଖ ହୁଅନ୍ତା ନାହିଁ ?

ହେବାର କଥା, ଇନ୍ଦିରା ! କିନ୍ତୁ ଆମର ବୁଝିବା ଉଚିତ ଥିଲା ଯେ, ବିକ୍ରମ ଏଇ ପିଲାଗୁଡ଼ାଙ୍କୁ ବହୁତ ସ୍ନେହ କରୁଥିଲା । କାଖରେ କୋଡ଼ରେ ଧରି ବଡ଼ାଇଥିଲା । ଆମେ ଜାଣୁ ବିକ୍ରମ ଆମର ଭଣଜା । ଅନୁପା, ନିରୁପା ଜାଣିଥିଲେ ବିକ୍ରମ ତାଙ୍କର ଭାଇ । ଅନୁପାର ହେଜ୍ଜ ପାଇଲା ଦିନରୁ ତା'ର ସେବା, ଯତ୍ନ ଓ ସ୍ନେହ ଜାଣିଛି । ବିକ୍ରମକୁ ସ୍ନେହ କରିବା, ତାର ଦୁଃଖରେ ସମଦୁଃଖୀ ହେବା ତା ପକ୍ଷରେ ସ୍ୱାଭାବିକ ।

ଦୀର୍ଘଶ୍ୱାସ ସଙ୍ଗେ ଇନ୍ଦିରା ଉଚ୍ଚାରିଲେ, ସ୍ୱାଭାବିକ !

ଆନନ୍ଦ କହିବାକୁ ଲାଗିଲେ, ବିକ୍ରମର ଚିଠିଟି ପାଇ ଅନୁପା ଏତେ ବର୍ଷ ପରେ ବୁଝିଲା, ବିକ୍ରମ ତା'ର ଭାଇ ନୁହଁ, ସେ ଆପଣାର ନୁହେଁ । ସେ ପର । ଏ ଘର ସଙ୍ଗେ ତାର ସମ୍ପର୍କ ଅସ୍ୱାଭାବିକ ଥିଲା । ପରସ୍ପରର ସ୍ୱାର୍ଥ ପାଇଁ ସେ ସମ୍ପର୍କ । ଏ ଘରର ଉନ୍ନତି ଅବନତି ସଙ୍ଗେ ତା'ର ସମ୍ବନ୍ଧ ନାହିଁ ।

ତାର ପୂର୍ବପୁରୁଷଙ୍କର ଭଙ୍ଗାଘର, ତାର ରୋଗଣୀ ବୋଉ, ବିଦେଶୀ ବାପ ଓ ତାର ପିଣ୍ଡ-ବ୍ରହ୍ମାଣ୍ଡ ତାର ସର୍ବସ୍ୱ ।

ବୁଝିଲ ଗୋ, ଏବେ ମୁଁ ବୁଝିଲି । ତମେ ତମ ଅପାଙ୍କର ଚିକିତ୍ସା ପାଇଁ ବିଜୟଙ୍କ ଠିକଣାରେ କିଛି ଟଙ୍କା ପଠାଇଦିଅ । ସତରେ ମୁଁ ବିଜୟଙ୍କ ପାଖରେ ଋଣୀ ।

ଭଲ ବିଚାର କରିଛ । କେତେ ପଠାଇବି ? ଶହେ ?

ନାଇଁ ମ । ଦୁଇ ଶହ ପଠାଅ । ବିଜୟ ବୁଝନ୍ତୁ ଯେ ଆମେ ତାଙ୍କର ସ୍ନେହର ଧାରୁଆ ହୋଇ ରହିବାକୁ ଚାହୁଁ ନାହୁଁ ।

ଖୁସି ହୋଇ ଆନନ୍ଦ ମୁଣ୍ଡ ଟୁଙ୍ଗାରିଲେ । ଅଳପ ହସିଲେ । ବିଚାରିଲେ, ନିର୍ବୋଧ ଇନ୍ଦିରା ଟଙ୍କା ଦେଇ ସ୍ନେହର ଋଣ ପରିଶୋଧ କରିବାକୁ ଚାହାନ୍ତି !

ଭବାନୀପାଟଣାର ବନ୍ଦୋବସ୍ତ ଅଫିସରେ ବହୁ କର୍ମଚାରୀଙ୍କ ପାଇଁ ଯଥେଷ୍ଟ କାମ ନ ଥିଲା । କେତେଜଣ କର୍ମଚାରୀଙ୍କୁ ଜୟପୁର ଅଫିସକୁ ପଠାଇ-ଦେବାକୁ ଉପରୁ ଆଦେଶ ଆସିଲା । କେତେ ଅମଲାଙ୍କୁ ଛଟେଇ କରିବାକୁ ନୋଟିସ୍ ଦିଆହେଲା । ସେମାନଙ୍କ ମଧ୍ୟରୁ କେତେ ଜଣଙ୍କୁ ସେମାନଙ୍କର ଅଦକ୍ଷତା ଓ ଅନ୍ୟାନ୍ୟ କାରଣ ପାଇଁ ବିଦାୟ କରିଦେବାର କଥା ।

ବୀରକେଶରୀଙ୍କର ନାମ ସେହି ବିଦାୟୀ ଆମଲାଙ୍କ ତାଲିକାର ସର୍ବ ପ୍ରଥମ ନ ହେଲେ ବି ପ୍ରଥମ ଦଶଜଣଙ୍କ ମଧ୍ୟରେ ଥିଲା ।

ତାଲିକା ଦେଖି ବୀରକେଶରୀ ଆକାଶରୁ ଖସିପଡ଼ିଲା ପରି ମଣିଲେ । ଦିନେ ସେ ଜଣେ ସୁଦକ୍ଷ କର୍ମୀ ଥିଲେ । ଦେହର ପୀଡ଼ା ତାଙ୍କର ସବୁ ଶକ୍ତି ହରଣ କରିସାରିଥିଲା । ବନ୍ଧୁ ଦେବନାଥ, ତାଙ୍କର ସ୍ତ୍ରୀ ଓ କନ୍ୟାର ସାହାଯ୍ୟ ଓ ସେବା ବୀରକେଶରୀଙ୍କୁ ସେମୁରପୁର ଯିବାରୁ ଫେରାଇଆଣିଲା । ଟିକିଏ ସୁସ୍ଥ ହୋଇ ସେ କାର୍ଯ୍ୟରେ ଯୋଗ ଦେଲେ । କିନ୍ତୁ ତାଙ୍କର ଦକ୍ଷତା ସେ ଅନେକ ପରିମାଣରେ ହରାଇବସିଲେ । ଅଳ୍ପ ସମୟ କାମ

କଲେ ତାଙ୍କର ମୁଣ୍ଡ ଝାଇଁ ଝାଇଁ ହୁଏ । ଅକ୍ଷର ଓ ଅଙ୍କ ଝାଲଝାଲିଆ ଦିଶେ । ଅଣ୍ଟାପିଠି ଲାଗିଯାଏ । ପେଟରେ ବେଦନା ତ ରହିଛି ।

ନିଜର ରୂପକୁ ନିଜେ ଆଇନାରେ ଦେଖିଲେ ସେ ଚମକିଉଠନ୍ତି । ମୁଣ୍ଡରୁ ଦଶଅଣା କେଶ ଝଡ଼ିପଡ଼ିଛି । ଯେତିକ ରହିଛି, ଅଳ୍ପ କେଇ ମାସରେ ସେତିକ ପାଚି ଧୋବଲା ହେଲଣି । ଆଖି ଦିଓଟି କୋରଡ଼ ଭିତରେ । ମୁହଁର ହନୁହାଡ଼ ଦିଓଟି ବାହାରି ପଡ଼ି ଠିଆ । ପଞ୍ଚାବନ ବର୍ଷ ତାଙ୍କୁ ଚାଲିଛି । ସରକାରୀ କାଗଜପତ୍ରରେ କୌଣସି ଉପାୟରେ ସେ ନିଜର ବୟସକୁ ଅଣଚାଶ କରାଇପାରିଛନ୍ତି । ଗ୍ରେଟ ଗ୍ରେଟ ଦାନ୍ତ ଦି'ଧାଡ଼ି ଏବଯାଏ ତାଙ୍କର ସେମିତି ରହିଛି । ସେହି ଦାନ୍ତ ଦି'ଧାଡ଼ି ତାଙ୍କୁ ତାଙ୍କର ବୟସକୁ ଊଣାକରିବାରେ ସାହାଯ୍ୟ କରିଛି ।

ଦେହରେ, ବିଶେଷତଃ ହାତରେ ଓ ଗୋଡରେ ଶିରଗୁଡ଼ିକ ଦଉଡ଼ି ପରି ଦେଖାଯାଉଛି । ଛାତିର ହାଡ଼ ବଦାକାଠି ପରି ଗଣି-ହେଉଛି । ଭାବନ୍ତି ବାରକେଶରୀ, କି ଥିଲା ଏ ଦେହ, କି ହୋଇଛି ଆଜି !

ସମସ୍ତ ଥିଲା, ଯେବେ ସେ ପାଏ ଚୁଟର ଗଜା ଓ ଗୋଟାଏ ନଡ଼ିଆ ଅକ୍ଳେଶରେ ଚୋବାଇ ପାରୁଥିଲେ । ଅଧଘଣ୍ଟାଏ ଦଣ୍ଡ ବୈଠକ କରି ସେତିକ ଭସ୍ମ କରିଦେଉଥିଲେ । କଞ୍ଚା ସେରେ ମାଂସ ସିଝାଇ ଉଦରସ୍ଥ କରିପାରୁ-ଥିଲେ । ତାକୁ ହଜମ କରିପାରୁଥିଲେ । ତାଙ୍କର ଫୁଲିଲା ଫୁଲିଲା ମାଂସ-ପେଶୀ ଦେଖି ସାଙ୍ଗମାନେ କହୁଥିଲେ, ସାବାସ !

ଗରୁ ଖାଦ୍ୟ, ଶାଗ, ଖଟା, ଲଙ୍କା ନ ଖାଇବାକୁ ତାଙ୍କୁ ଡାକ୍ତର କବିରାଜ ମନା କରିଛନ୍ତି । ଜାଣି ତ ମାଂସ । ସ୍ୱାସ୍ଥ୍ୟର ଉନ୍ନତି ହେବ କିପରି ? ଗଣ୍ଡିଏ ଭାତ, ମୁଗଡାଲିରେ ବାଇଗଣ ଆଳୁ ପକାଇ ଡାଲମାରେ ପୂର୍ବ ସ୍ୱାସ୍ଥ୍ୟ ଫେରିବ କିପରି ? ଦୁଧ, ଘିଅ, ଛେନାକୁ ସ୍ୱପ୍ନ ଦେଖିବାକୁ ଲାଜ ମାଡ଼ୁଛି । ସ୍ୱାସ୍ଥ୍ୟ ନ ଫେରିଲେ ଦକ୍ଷତା ବଢ଼ିପାରିବ ନାହିଁ । ଯେଉଁ ହାକିମ-ମାନେ ତାଙ୍କ ପରିକା ସଚ୍ଚୋଟ କର୍ମୀଙ୍କୁ (ସାଙ୍ଗମାନେ ଥଟ୍ଟାରେ କହନ୍ତି— କବୁଟାନାଥିଆ, ଛେନାରୁ ଚୋପାଛଡ଼ା କର୍ମୀ ) ଛଟେଇ ତାଲିକାରେ

ରଖିଛନ୍ତି, ସେମାନେ ତାଙ୍କୁ ହାତରେ ନ ମାରି ଭାତରେ ମାରିବାର ବ୍ୟବସ୍ଥା କରିଦେଇଛନ୍ତି । ପ୍ରାଣଦଣ୍ଡର ଆଦେଶ । ଏ ଅବିଚାର, ଏ ଅନ୍ୟାୟ ସହିହେବ ନାହିଁ ।

ଭାବିଲେ ବୀରକେଶରୀ, ଆଦ୍ୟ ଜୀବନରେ କୃଷ୍ଣି କସରତରେ ବେଳ କଟାଇ ସେ ପାଠପଢ଼ାରେ ହେଳା କରିଥିଲେ । ତାଙ୍କର ପିତା ପ୍ରତାପ-କେଶରୀ ଏଇ ସେଟଲମେଣ୍ଟ ଇଲାକାରେ, କଟକ ରଭଜନ ସେଟଲମେଣ୍ଟରେ ମୋହରିର କାମ କରୁଥିଲେ । ତାଙ୍କର ପାଖରେ ରହି ସେ ତତ୍କାଳୀନ ଭିକ୍ଟୋରିଆ ଉଚ୍ଚ ବିଦ୍ୟାଳୟର ଦ୍ୱିତୀୟ ଶ୍ରେଣୀ (ଏବକାର ଦଶମ ଶ୍ରେଣୀ)ରେ ପାଠ ପଢୁଥିଲେ । ପରୀକ୍ଷା ଦେଲେ ଅକୃତକାର୍ଯ୍ୟ ହେବାର ସମ୍ଭାବନା ଅଧିକ, ଏହା ବୁଝିକରି ସେ ମହାତ୍ମାଗାନ୍ଧିଙ୍କର ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ବାନରସେନାର ଅନ୍ତର୍ଭୁକ୍ତ ହୋଇ ସେ ଅନ୍ୟାନ୍ୟମାନଙ୍କ ସଙ୍ଗରେ ମିଶି ମଦ ଦୋକାନ ଓ ବିଲାତି ଲୁଗା ଦୋକାନମାନଙ୍କ ଆଗରେ ପିକେଟିଂ କରିଥିଲେ ।

ସ୍କୁଲରୁ ତାଙ୍କର ନାମ କାଟିଦିଆହେଲା । ବାରମ୍ବାର ବେତମାଡ଼ ଖାଇ, ପୁଣି ସେ ପିକେଟିଂ କରିବା ହେତୁ ତାଙ୍କର ପିତା ପ୍ରତାପକେଶରୀଙ୍କୁ ଚାକିରିରୁ ବରଖାସ୍ତ କରାଗଲା ।

ଦେଶ ସ୍ୱାଧୀନ ହେଲା । ଏବେ ଅସହଯୋଗ ସଙ୍ଗକୁ ଆହୁରି ଦୁଇଟି ମାରାତ୍ମକ ନୈତିକ ଅସ୍ତ୍ର ସନସନ ପ୍ରୟୋଗ କରାଯାଉଛି—ଅନଶନ ଓ ଘେରାଉ । ଶେଷୋକ୍ତ ଅସ୍ତ୍ର ଚାଳନା ପାଇଁ ଅଧିକ ଲୋକ ଆବଶ୍ୟକ । ଜଣେ ବ୍ୟଥିତ ନିଷ୍ଠାପର କର୍ମୀ ଅନଶନ, ଏପରିକି ଆମରଣ ଅନଶନ ଅସ୍ତ୍ର ପ୍ରୟୋଗ କରିପାରେ ।

ଭାବି ଚିନ୍ତି ବୀରକେଶରୀ ସାତଦିନର ନୋଟିସ ଦେଲେ—ଯେଉଁମାନଙ୍କୁ କାର୍ଯ୍ୟରୁ ବହିଷ୍କାର କରାଯାଉଛି, ସେମାନଙ୍କୁ ପୁନର୍ନିଯୁକ୍ତ ପତ୍ର ଦେଇ କୋରାପୁଟ ବନ୍ଦୋବସ୍ତ ଅଫିସକୁ ପଠାଯାଉ । ସେମାନେ ସମସ୍ତେ ସଚ୍ଚୋଟ କର୍ମୀ । ଲାଞ୍ଚ ମିଛ ଓ ଜାଲ ଜାଲିଆତି ପାଖରୁ ଦୂରେଇ ରହନ୍ତି ।

ନିଜର କାମ ନିଜେ ନିଷ୍ଠାର ସହିତ ସମ୍ପାଦନ କରନ୍ତୁ । ହାକିମମାନଙ୍କୁ ସନ୍ତୁଷ୍ଟ କରିପାରି ନ ଥିବାରୁ, ସେମାନଙ୍କର ଅସ୍ନେହଭାଜନ ହୋଇ ମନ୍ଦ ମନ୍ତବ୍ୟର ଶିକାର ହୋଇଛନ୍ତି । ସାତଦିନ ମଧ୍ୟରେ ସୁବିଚାର ନ କଲେ ସମସ୍ତଙ୍କ ତରଫରୁ ସାରକେଶରୀ ଆମରଣ ଅନଶନ କରି ଆତ୍ମବଳି ଦେବେ ।

ନୋଟିସ ଅଗ୍ରାହ୍ୟ ହେଲା ।

ବନ୍ଦୋବସ୍ତ ଅଫିସ ପିଣ୍ଡାରେ ସାରକେଶରୀ ତାଙ୍କର ଆମରଣ ଅନଶନ ଆରମ୍ଭ କଲେ । କେବଳ ଜଳ ପାନ କରି ସେ ଗୋଟିଏ ଦିନ କଟାଇଲେ । ଅଫିସର ଅନ୍ୟାନ୍ୟ କର୍ମଚାରୀ ଓ ଭବାନୀପାଟଣାର ଛାତ୍ର-ସମାଜ, ସାଧାରଣ ଜନତା, ଏପରିକି ରାଜନୈତିକମାନଙ୍କର ମନ ଓ ଆସନ ଟଳିବାକୁ ଲାଗିଲା । ଦ୍ୱିତୀୟ ଦିନ ଆଉ ଦଶ ଜଣ ଅନଶନରେ ଯୋଗ ଦେଲେ । ସେମାନଙ୍କୁ ଦେଖିବାକୁ ଓ ସହାନୁଭୂତି ଦେଖାଇବାକୁ ଶହ ଶହ ସଂଖ୍ୟାରେ ଦେଖଣାହାରୀ ଅଫିସ ବାରଣ୍ଡାରେ ଜମାହେଲେ । ବିବିଧ ଧ୍ୱନି କଲେ ।

ପାଞ୍ଚଦିନ ବେଳକୁ ଅବସ୍ଥା ଅସମ୍ଭାଳ ।

ସାରକେଶରୀଙ୍କ କାର୍ଯ୍ୟକୁ ଅନୁମୋଦନ କରି ଅଫିସ ବାରଣ୍ଡା ଉପରେ ଅନଶନ କରିବାକୁ କେତେଜଣ ଛାତ୍ର ବସିଗଲେ । ଅଫିସର ସବୁ କର୍ମଚାରୀ ଧର୍ମଘଟ ଆରମ୍ଭ କଲେ । ଅବସ୍ଥା ଅଣାୟତ୍ତ । ହୁଲସ୍ଥୂଲ କାଣ୍ଡ । ସଶସ୍ତ୍ର ପୁଲିସ ମୁତୟନ । ସହରରେ ସଭା । ପ୍ରସ୍ତାବ ଗୃହୀତ ହେଲା—ସାର-କେଶରୀଙ୍କର ପ୍ରସ୍ତାବ ସମୀଚୀନ ହୋଇଥିବାରୁ ସରକାରଙ୍କର ଗ୍ରହଣ କରିବା ଆବଶ୍ୟକ । ସେମାନେ କାହାରି ଦୟା ଭିକ୍ଷା କରୁନାହାନ୍ତି । ସେମାନେ କାମ କରି, ନିଜର ଦକ୍ଷତାନୁସାରେ ଅର୍ଜନ କରି ପେଟ ପୋଷିବାକୁ ଚାହାନ୍ତି । ପରିସ୍ଥିତିକୁ ଆଉ ଜଟିଳ ଓ ବାତାବରଣକୁ ଅଧିକ ଅସୁସ୍ଥ ନ କରିବାକୁ ସେମାନଙ୍କର ଆବେଦନକୁ କର୍ତ୍ତୃପକ୍ଷ ଗ୍ରହଣ କରିବାକୁ ନଗରବାସୀ ଅନୁରୋଧ କରୁଛନ୍ତି ।

ଅଗତ୍ୟା କର୍ତ୍ତୃପକ୍ଷ ମାନିଲେ । ସୁବିଚାର କଲେ । ଛଟେଇ ଆଦେଶର ପରିବର୍ତ୍ତନ କରାଗଲା । ଇଚ୍ଛୁକ ବ୍ୟକ୍ତିମାନଙ୍କୁ ଜୟପୁର ଯିବାକୁ ଆଦେଶ ମିଳିଲା ।

ପେଟ ପାଇଁ ଅନଶନ କରି ବୀର ହୋଇଗଲେ ଜଣେ ମୁଖିଆ । ସମସ୍ତଙ୍କ ମୁହଁରେ ତାଙ୍କରି ବିଷୟରେ ଚର୍ଚ୍ଚା । କେବଳ ତାଙ୍କରି ପ୍ରଶଂସା । ସେ ସମ୍ମାନର ଅଧିକାରୀ ହେଲେ ।

କାର୍ଯ୍ୟସିଦ୍ଧି ପରେ, ଅନଶନ ବର୍ଜନ କରି ସେ ବେକରେ ଫୁଲମାଳ ଓ ଟଙ୍କିକିଆ ନୋଟର ମାଳ ଝୁଲାଇଲେ । ସଦର୍ପରେ ସହକର୍ମୀମାନଙ୍କ ଗହଣରେ ନିଜର ଗୃହଘର ବସାକୁ ଫେରିଆସିଲେ । ସେ ଅନୁଭବ କଲେ ଯେ ତାଙ୍କର ପେଟର ବେଦନା ଭଲ ହୋଇଯାଇଛି । ମୁଣ୍ଡ ଆଉ ଭ୍ରମୁ-ନାହିଁ । ଗୋଡ଼ବିନ୍ଧା ଉପଶମ ହୋଇଛି । ଓଜନ ବଢ଼ିଛି ନା କମିଛି ପରୀକ୍ଷା କରିବାକୁ ସେ ସାହସ କଲେ ନାହିଁ ।

ଶହେ ଏଗାର ଟଙ୍କା ତାଙ୍କର ନୋଟ ହାରରେ ଥିଲା । ଅଫିସର ବନ୍ଧୁମାନେ, ଏପରିକି ଯେଉଁ ଅଫିସରମାନେ ତାଙ୍କମାନଙ୍କୁ ନିକାଲଦେବାର ପ୍ରଥମ ନିଷ୍ପତ୍ତି ନେଇ, ଉପର କର୍ତ୍ତାମାନଙ୍କର ବାଧ୍ୟତାମୂଳକ ସହାନୁଭୂତି ପାଇଁ, ଦୟାକରି ପୂର୍ବ ନିଷ୍ପତ୍ତିକୁ ବଦଳାଇଲେ, ସେମାନେ ଓ ଅନ୍ୟ ଭାବ-ପ୍ରବଣ ସହାନୁଭୂତିଶୀଳ ବ୍ୟକ୍ତିମାନେ ଅନଶନ ହେତୁ ଭାଙ୍ଗିଯାଇଥିବା ସ୍ୱାସ୍ଥ୍ୟର ପୁନରୁଦ୍ଧାର ପାଇଁ ସ୍ୱତନ୍ତ୍ର ଭାବରେ ବୀରକେଶରୀଙ୍କୁ ଉପହାର ଦେଇଥିଲେ । ତାଙ୍କର କୋଟରଗତ ଆଖି ଓ ହାଡ଼ମାଳିଆ ଦେହ ସେମାନଙ୍କର ମନରେ ଅନୁକମ୍ପା ଜାତ କରାଇଥିଲା ।

କେତେ ଅଭିନନ୍ଦନ ପତ୍ର, ଖବରକାଗଜର ଅଂଶ ବୀରକେଶରୀ ସଂଗ୍ରହ କରି ସାଇତି ରଖିଥିଲେ । ମନରେ ତାଙ୍କର ପ୍ରଚ୍ଛନ୍ନ ଦୁଃଖ ରହିଗଲା ଯେ ତାଙ୍କର ଫଟୋ ଖଣ୍ଡେ କୌଣସି ଖବରକାଗଜରେ ବାହାରିଲା ନାହିଁ ।

ସମୁଦ୍ର ଦେବନାଥଙ୍କର ପତ୍ରର କେତେ ଧାଡ଼ି ତାଙ୍କୁ ବେଶ୍ ଆନନ୍ଦିତ କରିଥିଲା—ଟଙ୍କା ତ ପାନଦୋକାନ ଭିକାରି ବି କମାଉଛି । ନାମ କମାଉଛନ୍ତି କେତେଜଣ ? ଆମ ଗୋଷ୍ଠୀର ସମ୍ମାନ ତମେ ବଢ଼ାଇଛ । ସେଥିପାଇଁ ମୁଁ ଗର୍ବ ଅନୁଭବ କରୁଛି ସମୁଦ୍ର !

ବିକ୍ରମକେଶରୀର ପତ୍ରଖଣ୍ଡି ମନରେ ଆଶ୍ୱାସନା ଦେଇଥିଲା—

—ମୁଁ ଘର ମରାମତି କରିଦେଇଛି ବାପା, ଆପଣ ସେଥିପାଇଁ ଚିନ୍ତିତ ହେବେ ନାହିଁ । ଆପଣଙ୍କର ସ୍ୱାସ୍ଥ୍ୟ ପାଇଁ ଆମେ ଅନବରତ ଚିନ୍ତିତ । ସ୍ୱାସ୍ଥ୍ୟର ଯତ୍ନ ନେବେ । ଯଦି ଭଲ ନ ଲାଗୁଛି ବୁଲିକରି ଗାଁରୁ ଘରକୁ ଶୀଘ୍ର ଚାଲିଆସନ୍ତୁ । ବହୁ ଚେଷ୍ଟା କରି ଚାକିରି ଖଣ୍ଡେ ପାଇଛି । ଦରମା ଯାହା ମିଳିବ ସେଥିରେ ଆମେ ଖୁସିରେ ଚଳିପାରିବା ।

—ମୁଁ ଯେତେବେଳେ ଫଜଲ୍‌ପୁରରେ ପଢ଼ୁଥିଲି, ଆପଣ ତ ଜାଣନ୍ତି, ସେଠାକା ସ୍କୁଲ ସେତେବେଳେ ମାଇନର୍ ଥିଲା । ମୁଁ ସେହି ସ୍କୁଲରୁ ବୃତ୍ତି ପାଇ ଅଧିକ ପଢ଼ିବାକୁ କଟକ ଯାଇଥିଲି । କେବଠାରୁ ସେ ହାଇସ୍କୁଲ ହୋଇସାରିଲାଣି । ଛତୁ ଫୁଟିଲାପରି ଦେଶରେ ଏତେ ହାଇସ୍କୁଲ ଖୋଲାଲାଣି ଯେ ଆଉ ହିସାବ କରିହେବ ନାହିଁ । ଆପଣଙ୍କର ଜଣା ସରପଞ୍ଚ ପ୍ରେମ ଚଉଧୁରୀ ସେହି ସ୍କୁଲର ପରିଚାଳନା ସଂସ୍ଥାର ସଭାପତି । ତାଙ୍କରି ଦୟାରୁ ସେହି ସ୍କୁଲରେ ମୁଁ ଶିକ୍ଷକ ହୋଇ ନିଯୁକ୍ତି ପାଇଛି । ଦରମା ଶହେ ଦଶ ଓ ମହଙ୍ଗାଭତ୍ତା ସତୁରୀ । ସେଥିରୁ ସ୍କୁଲ ଫଣ୍ଡ୍ ଓ ଅନ୍ୟାନ୍ୟ ବାବଦ୍‌କୁ ବାଧ୍ୟତାମୂଳକ ଚାନ୍ଦା ଦେବାକୁ ହେବ । ସମସ୍ତେ ଦେଉଛନ୍ତି । ଯାହାହେଉ, ସବୁ ବାଦ୍‌ଯାଇ ଟଙ୍କା ଦେଢ଼ଶ ମିଳିବ ।

—ଶିକ୍ଷକ ଥାଇ ମୁଁ ତପୋଟି ଚାକିରିର ପରୀକ୍ଷା ଦେବାକୁ ପ୍ରସ୍ତୁତ ହେଉଛି । ବହି କିଣି ପଢ଼ି ଇତିହାସରେ ଏମ୍.ଏ. ପରୀକ୍ଷା ଦେବି । କଟକରେ ମାମୁଁଙ୍କ ବସାରେ ରହିବାକୁ ଭଲ ଲାଗୁନାହିଁ । କେତେ ବର୍ଷ ଆଉ ସେମାନଙ୍କ ଗଳଗ୍ରହ ହୋଇ, ନିଜକୁ ବଶଂବଦ କରି ଚଳିବି, ବାପା ? ଆପଣଙ୍କର ମନେଥିବ, ନଅବର୍ଷ ତଳେ ଯେବେ ଆପଣ ମୋତେ ମାମୁଁ-

ମାଈଁଙ୍କ ପାଦତଳେ ସମର୍ପି ଆସିଲେ ସେମାନେ ଥିଲେ କ'ଣ, କପର ଚଳୁଥିଲେ ! ବର୍ଷ କେଇଟାରେ ସେମାନେ ଲକ୍ଷପତି ହୋଇଛନ୍ତି । ସେମାନଙ୍କର ଚଳଣି ଓ ଢଙ୍ଗ ବଦଳିଯାଇଛି ।

—ସେମାନଙ୍କ ଉପରେ ମୋର ଈର୍ଷା ନାହିଁ, ବାପା ! ସେମାନଙ୍କୁ ମୁଁ ଘୃଣା କରୁନାହିଁ । କିନ୍ତୁ ହଂସମାନଙ୍କ ମଧ୍ୟରେ ବଗପକ୍ଷୀ ପରି ମୁଣ୍ଡ ନୋଇଁ ଚଳିବାକୁ ମୁଁ ସଙ୍କୁଚିତ ହୋଇ ରହିପାରିବି ନାହିଁ । ଯିଏ ପଚାରିବ ଏଇଟି କିଏ, ଏକୁଟିଆ ଥିଲେ ମାମୁଁ ଅବଶ୍ୟ କହିବେ ଭଣଜାଟିଏ । କିନ୍ତୁ ମାଈଁ ଏକା ଥିଲେ ନିଶ୍ଚୟ ଆଗ କହିଦେବେ, ପୁଏ ପିଲାଙ୍କ ମାଷ୍ଟର, ଅବା ମୋର ଔଷଧ ଦୋକାନର ଗୁମାସ୍ତା ।

—ତାଙ୍କ ଘରେ ଖାଇପିଇ, ତାଙ୍କର ଔଷଧ ଦୋକାନର ଗୁମାସ୍ତା ହୋଇ ରହିବାକୁ ମୋ ପାଖକୁ ସେ ଅନୁପା ହାତରେ ପତ୍ର ଲେଖାଇଥିଲେ । ତାଙ୍କ ଲାଭରୁ ମତେ କୁଆଡ଼େ ସେ ମାସକୁ ଦେଢ଼ଶ ଟଙ୍କା ଦେଇଥାନ୍ତେ । ଏତେବଡ଼ ଅପମାନର ଉତ୍ତର ଭଦ୍ର ଭାଷାରେ ମୁଁ ଦେଇଛି । ମୋର କୃତଜ୍ଞତା ଜଣାଇ ମୁଁ ମାଈଁଙ୍କର ଦୟାକୁ ପ୍ରତ୍ୟାଖ୍ୟାନ କରିଛି । ଆପଣ ଉତ୍ୟକ୍ତ ହେବେ ନାହିଁ । ତାଙ୍କ ପାଖକୁ ଏ ସମ୍ବନ୍ଧରେ କୌଣସି ପତ୍ର ଦେବେ ନାହିଁ ।

—ବୋଉର ଦେହ ଭଲ ଅଛି । ମୁଁ ତାର ଯତ୍ନ ନେଉଛି । ନିଃସଙ୍କୋଚରେ ଆପଣଙ୍କ ପାଖକୁ ଗୋଟିଏ ବିଷୟ ଲେଖିବାକୁ ମୁଁ ବାଧ୍ୟ ହେଉଛି । ଆପଣ ନିଜେ ଦେଖି, ବୁଝି ସନ୍ତୁଷ୍ଟ ହୋଇ ଆପଣଙ୍କର କୁଳବଧୂ ନିର୍ବାଚନ କରିବେ । ସେଥିପାଇଁ ବୋଉ ବ୍ୟତୀତ ଅନ୍ୟମାନଙ୍କର ମତାମତ ଲୋଡ଼, ଏଣୁତେଣୁ ଲେଖି ନିଜେ ହାସ୍ୟାସ୍ପଦ ହେବେ କାହିଁକି ? ମତେ ହାସ୍ୟାସ୍ପଦ କରାଇବେ କାହିଁକି ? ମୁଁ ଆପଣଙ୍କର ଅବାଧ୍ୟ ସନ୍ତାନ ନୁହେଁ ।

—ଆଉରି ଗୋଟିଏ କଥା ନ ଲେଖି ମୁଁ ରହିପାରୁନାହିଁ । ଆମର ଘର ନାହିଁ । ଜମିବାଡ଼ି ନାହିଁ । ମୁଠିଏ ଅନ୍ନ ସଂସ୍ଥାନ କରିବାକୁ ସଙ୍ଗତି ନାହିଁ । ଏବହୁଁ କୁଟୁମ୍ବ ବଢ଼ାଇ ଲୋକହସା ହେବାକୁ ମନ ବଳାଉଛନ୍ତି

କାହିଁକି ? ଯେଉଁମାନଙ୍କର ଟଙ୍କା ଆପଣ ଧାରିଛନ୍ତି, ସେମାନେ ଅଭିଶାପ ଦେଉଛନ୍ତି । କୁତ୍ସା ରଟାଉଛନ୍ତି । ମୋର ମୁହଁ ଉଳକୁ କରୁଛନ୍ତି । ମୁଁ ଦରମା ପାଇଲେ ଧୀରେ ଧୀରେ ସବୁ ପରିଶୋଧ କରିଦେବି ।

—ମୋର ଭବିଷ୍ୟତ ଓ ଆମ ଘରର ଭବିଷ୍ୟତକୁ ଦୃଷ୍ଟି ଦେଇ ଆପଣ ଅପେକ୍ଷା କରନ୍ତୁ । କାହାଠାରୁ ପାଞ୍ଚଶ ଟଙ୍କା ଆଗଭୁରା ଗସ୍ତଖର୍ଚ୍ଚ ଆଣିଲେ ଆମର ଭବିଷ୍ୟତ ବଦଳିଯିବ ନାହିଁ । ମୋର ଧୃଷ୍ଟତା ମାର୍ଜନା କରିବେ । ବୋଉକୁ ଏ ପତ୍ର ପଢ଼ି ଶୁଣାଇନାହିଁ ।—

ପତ୍ରଟି ଏକନିଶ୍ୱାସରେ ପଢ଼ି ବୀରକେଶରୀ ତାଙ୍କର ଫ୍ଲେଟ କୋଠରିର ଚାରିଆଡ଼କୁ ଚାହିଁଲେ । କେହି ଦେଖିଲା କି ? କେହି ତାଙ୍କର ମନେ ମନେ ପଢ଼ିଲା ଭାଷାର ଶବ୍ଦ ଶୁଣିପାରିଲା କି ? ଅନ୍ୟ କୋଠରି-ମାନଙ୍କରୁ ପାଟିତୁଣ୍ଡ ଶୁଭୁଛି । ସହକର୍ମୀମାନେ ବସ୍‌ରେ ଜୟପୁର ଯିବାକୁ ପ୍ରସ୍ତୁତ ହେଉଛନ୍ତି । ବେଳ ଏଗାର ହେଲାଣି । ଆଜି ଦୁଇ ଘଣ୍ଟାରେ ଅପରାହ୍ଣର ବସ୍ ଛୁଟିବ । କେତେବେଳୁ ସେ ନିଜେ ପ୍ରସ୍ତୁତ ହୋଇସାରିଛନ୍ତି ।

ବୀରକେଶରୀ ଦୀର୍ଘଶ୍ୱାସ ଛାଡ଼ି, ପୁଣି ତାଙ୍କର ପୁରୁଣା ଟ୍ରଙ୍କଟି ଖୋଲିଲେ । ତାଙ୍କର ଚଟି ବଡ଼ା ଖୋଲି ଚର୍ଚ୍ଚିରେ ସାମିଲ କରୁଣୁ ଦୃଷ୍ଟିରେ ପଡ଼ିଲା ଅନୁପାର ଚଟି । ତାକୁ ସେ ଦୁଇମାସ ତଳେ ପାଇଥିଲେ । ଫ୍ଲେଟ ଚଟିଟି । କେତେଥର ସେ ପଢ଼ିଛନ୍ତି । ଉପଯୁକ୍ତ ବୋହୂଟିଏ ସେ ସ୍ଥିର କରି-ପାରିଛନ୍ତି ବୋଲି ଆତ୍ମସନ୍ତୋଷ ଲାଭ କରିଛନ୍ତି ।

—ବାପା ଓ ବୋଉ ଆପଣଙ୍କର ପସନ୍ଦକୁ ପ୍ରଶଂସା କଲେ । କହିଲେ, ଭିନମଭାଇ ଓ ଆପଣଙ୍କ ଘରକୁ ସେହି ଝିଲୁପୀ ଭଲ ସାଜିବ । ଭିକଭାଇ ତା'ର ଗୁଣାବଳୀରେ ମୁଗ୍ଧ । ତାର ସୁନ୍ଦର ନାମଟି ମୋ ମନକୁ ପାଇଲା । ଖାଲି ମୋତିମାଳା ଅପା କହିଲେ, ବୋପା ଲୋ ! ନାଗରଜାର ଝିଅ, କେତେ ବିଷ ତା ଫଣାରେ ଥିବ !—

ବୀରକେଶରୀ ଚେଷ୍ଟ ଚୋକଲେ । ଏଣେ ତେଣେ ଆଉ ଥରେ ଚାହିଁ ଟ୍ରଙ୍କ ବନ୍ଦ କଲେ ।

ନୂଆ ଗୃହକର ।

ବିଷମକୁ ଧୀରେ ଧୀରେ ଆରେଇଆସୁଛି । ଫଜଲପୁର ସ୍କୁଲରେ ଚାରିଶହରୁ ଅଧିକ ଛାତ୍ର । ସ୍କୁଲଘର ହଷ୍ଟେଲରେ ମୋଟେ ପଚିଶ ଜଣ ରହନ୍ତି । ଅନ୍ୟମାନେ ଆଖପାଖ ଗ୍ରାମମାନଙ୍କରୁ ଗ୍ରାମ୍ୟ ରାସ୍ତା ଓ ବିଲର ହିଡ଼ ଉପରେ ଚାଲି ଚାଲି ଆସନ୍ତି । କେହି କେହି ତିନି ଚାରି ମାଇଲ ଦୂରରୁ ମଧ୍ୟ ଆସନ୍ତି । ଉପସ୍ଥିତିରେ ସାମାନ୍ୟ ବିଳମ୍ବ ହେଲେ ଶିକ୍ଷକମାନେ ଛାତ୍ରଙ୍କ ଉପରେ ବିରକ୍ତ ହୁଅନ୍ତି ନାହିଁ ।

ସ୍କୁଲରେ ଷାଠିଏରୁ ଅଧିକ ଛାତ୍ରୀ । ସେମାନଙ୍କ ମଧ୍ୟରୁ ଅର୍ଦ୍ଧାଧିକ ଫଜଲପୁର ଓ ତତ୍ସଂଲଗ୍ନ ଗ୍ରାମମାନଙ୍କରୁ ଆସନ୍ତି । ଅଳ୍ପ କେତେଜଣ ରହନ୍ତି ଦୂରିଆ ଗ୍ରାମରେ । ଟିକିଏ କ'ଣ ଅସୁବିଧା ହେଲେ କେହି କେହି ଅନୁପସ୍ଥିତ ହୁଅନ୍ତି ।

ଝିଅପିଲାଙ୍କୁ ତିନି ଖୁଣ ମାଫ୍ । ଗାଳି ଦେବା ଦୂରର କଥା, ଟିକିଏ ଟାଣ କଥା କହିହେବ ନାହିଁ । ପ୍ରଶ୍ନ ପଚାରିଲେ, ତାଙ୍କୁ ଉତ୍ତର ଜଣା ନ ଥିଲେ, ସେମାନେ ତୁଣ୍ଡାକୁ ଆଖିରେ ଲୁହ ଟଳ ଟଳ କରନ୍ତି । ସାଙ୍ଗପିଲାଏ କୁରୁଳି ଉଠିଲେ, କଥା ସରିଲା । କେହି କେହି କୁରସ ସ୍ୱରରେ ବୋବାଳି ଛାଡ଼ନ୍ତି । ଅବସ୍ଥା ଅସମ୍ଭାଳ ହୋଇଉଠେ । ପ୍ରଧାନ ଶିକ୍ଷକ ଲଙ୍ଗୁଳେଶ୍ୱରବାବୁ ହାତରେ ଲମ୍ବ ବେତ ଧରି ଧପାଳି ଆସନ୍ତି ।

ବିଷମକେଶରୀ ଧୀରେ ଧୀରେ ଅଭିଜ୍ଞ ହେଉଛି । ବିଦ୍ୟାଳୟର ଶିକ୍ଷକ ଓ ବିଭିନ୍ନ ଶ୍ରେଣୀର ଛାତ୍ରମାନଙ୍କୁ ଚିହ୍ନିବାକୁ ଚେଷ୍ଟା କରୁଛି ।

ତାଙ୍କୁ ଛାଡ଼ି ଆହୁରି ପନ୍ଦର ଜଣ ଶିକ୍ଷକ । ସମସ୍ତେ ତା'ଠାରୁ ବୟସରେ ବଡ଼ । ସେମାନେ ସଂସାରୀ । ଅଧିକାଂଶ ପିଲାକୁଟୁମ୍ବ ଧରି ଫଜଲ-ପୁରରେ ଭଡ଼ାଘରେ ରହନ୍ତି । ପ୍ରଧାନ ଶିକ୍ଷକ, ଦ୍ୱିତୀୟ ଶିକ୍ଷକ ଓ ସ୍କୁଲର କିରାଣୀମାନେ, ଚପରାଶିମାନେ ହତା ଭିତରେ ସେମାନଙ୍କ ପାଇଁ ତୋଳା ହୋଇଥିବା ଘରେ ରହନ୍ତି । ବଡ଼ ହତା ଭିତରେ ଅନ୍ୟମାନଙ୍କ ପାଇଁ ମଧ୍ୟ ଘର ତୋଳା ହୋଇପାରନ୍ତା, କିନ୍ତୁ ଧନାଭାବରୁ ସେତକ ହୋଇପାରୁନାହିଁ ।

ବସନ୍ତ ଶିରପଲ୍ଲିରୁ ନିତି ଯାଆସ କରେ । ସେ ଯେପରି ତତ୍ପର ହୋଇଛି, ଚନ୍ଦନା ମଧ୍ୟ ସେହିପରି ଚଞ୍ଚଳ ହୋଇଉଠିଛନ୍ତି । କାଉ କା ଡାକିବା ଆଗରୁ ମା ପୁଅ ବିଦେଁ ବିଛଣା ଛାଡ଼ନ୍ତି । ବସନ୍ତକୁ କପରି ମୁଠିଏ ମୁହଁରେ ଖୁଆଇ ନଅଟାବେଳେ ଫଜଲପୁର ପଠାଇବେ, ସେଥିପାଇଁ ସେ ତାଙ୍କର ଦୁର୍ବଳତାକୁ ଉପେକ୍ଷା କରି କାମରେ ଲାଗନ୍ତି । ଘର ଓଳା, ହାଣ୍ଡି-କୁଣ୍ଡେଇ ଧୂଆ, ବାସନ ମଜା, ଦୁଆର ଖରକା, ପଦନ ପାଣି ଛୁଞ୍ଚା, ଏମିତି କେତେ ଦୈନନ୍ଦିନ କାମ । ନିଜର ନିତ୍ୟକର୍ମ ଓ ତୁଳସୀ ପୂଜା, ନିର୍ମାଲ୍ୟ ସେବା ତ ରହିଛି ।

ବସନ୍ତ ତାର ନିଜ କାମରେ ଲାଗିଯାଏ । ନଦୀସ୍ନାନ ସାରି ସେ ଚୂଡ଼ାଭୁଜା ଗଣ୍ଡିଏ ପାଟିରେ ପକାଇ ପାଠପଢ଼ାରେ ମନଦିଏ । ଇତିହାସ, ଭୂଗୋଳ ଓ ଇଂରେଜୀ ସେ ବିଭିନ୍ନ ଶ୍ରେଣୀରେ ପଢ଼ାଏ । ସେଥିପାଇଁ ସେ ନିଜେ ପ୍ରସ୍ତୁତ ହୁଏ । ନୋଟ୍ ତିଆରି କରେ । ଚତୁର ଓ ମେଧାବୀ ପିଲାଏ କେତେ ପ୍ରଶ୍ନ ପଚାରନ୍ତି । ଯଥାଯଥ ଉତ୍ତର ଦେଇ ନ ପାରିଲେ ଅପ୍ରସ୍ତୁତ ହେବାକୁ ପଡ଼ିବ । କଥା ପ୍ରଧାନ ଶିକ୍ଷକଙ୍କ କାନକୁ ଗଲେ ସେ ପଦେ କହିବେ । କାହିଁକି ସେ ପଦେ ଶୁଣିବ ଓ ଲଜ୍ଜିତ ହେବ ?

ଖଣ୍ଡେ ସାଇକଲ ଓ ଗୋଟିଏ ହାତଘଣ୍ଟାର ଅଭାବ ସେ ଅନୁଭବ କରୁଛି । ଗ୍ରାମରେ ଅନେକଙ୍କର ଘଣ୍ଟା ଅଛି, ପଚାରି ସମୟ ବୁଝିହୋଇ-ପାରୁଛି । କିନ୍ତୁ କେହି କାହାର ସାଇକଲ ତ ଉଧାର ଦେବେ ନାହିଁ । ଯିବା-ଆସିବାରେ ଦେଢ଼ଘଣ୍ଟା ସମୟ ବୃଥାରେ ନଷ୍ଟ ହେଉଛି ।

ସ୍କୁଲରେ କାମକଲାର ଦୁଇମାସ ପୂରିବାକୁ ବସିଲାଣି, ଦରମା ମିଳିନାହିଁ । ସରକାରୀ ଗ୍ରାଣ୍ଟ ଟଙ୍କା ଆସି ନ ଥିବାରୁ ସମସ୍ତେ ହଇରାଣ ହେଉଛନ୍ତି । ପିଲାଙ୍କଠାରୁ ଆଦାୟ ହୋଇଥିବା ଦରମାରୁ ସେକ୍ରେଟେରୀ ଶିକ୍ଷକ ଓ ଅନ୍ୟାନ୍ୟ କର୍ମଚାରୀଙ୍କୁ କିଛି କିଛି ଦାଦନ ଦେଇଥିଲେ । ବସନ୍ତ ମୋଟେ ପଚିଶ ଟଙ୍କା ପାଇଥିଲା । ସେତିକ ପେଟକୁ ନିଅଣ୍ଟ । ସାଇକଲ କିଣିବାର ସ୍ୱପ୍ନ ସେ ଦେଖିବ କାହିଁକି ? ଚାଲିଛି ଯେମିତି ଚାଲୁ ।

ଯିବାଆସିବା ସମୟରେ କେବଳାନନ୍ଦ ଓ ଶୁଭକେଶଗ୍ଧ ସମେତ ଗ୍ରାମର କେତୋଟି ପୁଅ ଓ ଝିଅ ତାର ସହଯାତ୍ରୀ ହୁଅନ୍ତି । କଥାବସ୍ତା ହୋଇ ସ୍କୁଲ୍ରୁ ସମୟ ଜଣାପଡ଼େ ନାହିଁ । ବିକ୍ରମ ବାଜେ ଗଳ୍ପ କରେ ନାହିଁ । ପିଲଙ୍କ ଶିକ୍ଷଣୀୟ ଯେକୌଣସି ବିଷୟରେ ସମସ୍ତେ ବୁଝିଲା ଭଳି ସେ କହେ । ପିଲାଙ୍କର ମନ ଜିଣିନଏ । ଅନୁପା ଓ ନିରୁପାଙ୍କୁ ସେ ଏମିତି ଗେହ୍ଲେଇ ଗେହ୍ଲେଇ ପଢ଼ାଉଛି । ଏଗୁଡ଼ିକ ବି ତାର ବଡ଼ ଭଉଣୀ !

କେବଳାନନ୍ଦ ଆପେ ଆପେ ନିଜର ପ୍ରକୃତିକୁ ସୁଧାରିବାକୁ ଚେଷ୍ଟା କଲାଣି । ଦିନେ ବିକ୍ରମ ତାକୁ କହିଥିଲା ଯେ, ସେ ଉତ୍ତଆଣୀ ଦିଲା ଥିଲାବେଳେ ଇଙ୍ଗୁଲି ମାଙ୍କର କ୍ଷୀର ଶୋଷିଥିଲା । କେବଳାନନ୍ଦ ତାର ସାନଭାଇ । ଅଲେଖା କହିଥିଲା ଯେ, କେବଳା ତାକୁ ଏ ସମ୍ବାଦ ଦେଇ ସମସ୍ତଙ୍କ ଆଗରେ କାନ ମୋଡ଼ିହୋଇ ବ୍ରହ୍ମଚିପୁଡ଼ା ମାରିଦେଲା । ବାସୁଦେବଙ୍କ ଅଜାଙ୍କୁ ମୁହଁ କରି କହିଲା, ତୋ ଆଗରେ ଗଣ ପକାଇ କହୁଛି ମା, ଆଉ କେବେ ଯଦି ବଡ଼ ସିଗାରେଟ୍ ଛୁଇଁବି, ତୁ ମୋତେ ଖାଇଦେବୁ ।

ସତେ, କେବଳାନନ୍ଦ ବଡ଼ ସିଗାରେଟ୍ ଛୁଉଁନାହିଁ । ବାହାପିଆଙ୍କ ପରି ଗପୁନାହିଁ । ଦିନେ ଦୁଃଖ କରି ସେ କହୁଥିଲା, କପି ନ କଲେ ପାସ୍ କରି-ହେବ ନାହିଁ, ସାର୍ ! ପାଠ ତ ଜଣା ନାହିଁ, ପ୍ରଶ୍ନର ଉତ୍ତର କିପରି ଲେଖା-ହେବ ? ଯେଉଁମାନେ ଟିଉସନ ପଢ଼ୁଛନ୍ତି, ସେମାନେ ପ୍ରଶ୍ନ ଓ ତାର ଉତ୍ତର ଆଗରୁ ଜାଣିଥାନ୍ତି । ସେମାନଙ୍କର କପି କରିବା ଲୋଡ଼ା ପଡ଼େ ନାହିଁ ।

ଏବେ ମୁଁ ବୁଝିଲି ରେ କେବଳା, କାହିଁକି ଏବର୍ଷ ତମ ସ୍କୁଲରୁ ତେଇଶି ଜଣ ବୋର୍ଡ଼ ପରୀକ୍ଷା ଦେଇ ତହିଁରୁ ମୋଟେ ଛଅ ଜଣ ପାସ୍ କଲେ । ତୁ ମୋଟେ ଚିନ୍ତା କର ନା । ବିକଳ ମାମୁଁ ତୋ' ଉପରେ ବହୁତ ଆଶା ରଖିଛନ୍ତି ।

ଗତବର୍ଷ ସତର ଜଣ ପରୀକ୍ଷା ଦେଇଥିଲେ, ସାର୍, ପାସ୍ କଲେ ସାତ ଜଣ । ସପ୍ଲିମେଣ୍ଟାରିରେ ଆଉ ଦୁଇଜଣ ପାସ୍ କଲେ ।

ଏବର୍ଷ ଏଗାର କ୍ଲାସରେ ବନ୍ତଣି ଅଛନ୍ତି । ଏବନ୍ଧୁ ମନଦେଇ ପଢ଼ିଲେ ସମସ୍ତେ ପରୀକ୍ଷା ଦେବାକୁ ବସ୍ଥ ହେବେ । ମୁଁ କହୁଛି, ସମସ୍ତେ ପାସ୍ କରିବେ । କପି କରିବା ଦରକାର ନାହିଁ । ରାଜନୀତି ପାଖରୁ ଦୂରେଇ ରହି ପାଠ ପଢ଼ିଲେ ହେଲା ।

କେବଳାନନ୍ଦ ପକ୍ଷରେ ଆଉ ଯାହା ସମ୍ଭବ ହେଉ ବା ନ ହେଉ, ରାଜନୀତି ପାଖରୁ ଦୂରେଇ ରହିବା ସମ୍ଭବ ନୁହେଁ । ତା'ଛଡ଼ା ସେ ଆଥ୍-ଲେଟିକ୍ସର କ୍ୟାପ୍‌ଟେନ୍ । ତଥାପି ସେ ଏବେ ପାଠ ପଢ଼ିବାକୁ ଚେଷ୍ଟା କରୁଛି । କେବେକେବେ ସକାଳୁ ଆସି ଘରେ ପାଠ ବୁଝିଯାଉଛି ।

ଶୁଭକେଶରୀର ପାଠ ବହମ ଦେଖୁଛି । ଖୁଡ଼ୀଙ୍କର ସେ ସ୍ନେହଭାଜନ ହୋଇଛି । ଗ୍ରାମବାସୀଏ ତାକୁ ଶୁଭଦୃଷ୍ଟିରେ ଗ୍ରହିଁଲେଣି । ଗିରିପଲ୍ଲିରେ ବହମର ନୂଆ ଜୀବନ ତାକୁ ଆରେଇଚଲେଣି । ଅଳସ ଚିନ୍ତା କରିବାକୁ ତାର ସମୟ ନାହିଁ ।

ଶନିବାର ରାତି ।

ଚନ୍ଦନା ଶୋଇଘରେ ଅଛନ୍ତି । ବହମ ତା'ର ବସ୍ତ୍ରଗୁଡ଼ିକ ଟ୍ରଙ୍କରୁ କାଢ଼ି ଚଉଡ଼ା ପଲଙ୍କର ଗୋଟିଏ ପାଖରେ ସଜାଡ଼ି ରଖୁଥିଲା । ଗ୍ଳେଟ ଟେବୁଲ ଓ ଖଣ୍ଡେ ଷ୍ଟୁଲ୍ କ ତଉକ ଅଦ୍ୟାବଧି ସେ କିଣି ପାରି ନାହିଁ । ବସ୍ତ୍ରପତ୍ର ରଖିବାପାଇଁ ର୍ୟାକ୍ ବା ଆଲମାରି ନିତାନ୍ତ ଆବଶ୍ୟକ । ଅର୍ଥାଭାବରୁ ସେତକ ସେ କିଣିପାରି ନାହିଁ ।

ପଲଙ୍କ ଉପରେ ପୁରୁଣା ବସ୍ତ୍ର ଓ ଖାତାପତ୍ର ସଜାଡ଼ି ରଖୁଣୁ ସେ ଭାବୁଛି, ଦରମା ପାଇଲେ, ଅବା ତା'ର ବାପା ଜୟପୁରରୁ କିଛି ଟଙ୍କା ପଠାଇଲେ, ସେ ଆଗ ଏସବୁ ଅତ୍ୟାବଶ୍ୟକ ପଦାର୍ଥ ଆଖିବୁଜି କିଣି-ପକାଇବ । ତା'ପରେ ଆଉ ଯାହା ।

ସେହି ଆଉ ଯାହା ତ ଅନେକ ।

ଚନ୍ଦନାଙ୍କର ଅନ୍ତତଃ ଦୁଇଖଣ୍ଡି ଶାଢ଼ୀ ଦରକାର । ଖଣ୍ଡେ ପୁରୁଣା ଶାଢ଼ୀକୁ ଯେତେ ସିଲେଇ କରି ପିନ୍ଧିଲେ, ସେ ପୁର୍‌ପୁର୍ ହୋଇ ଛିଣ୍ଡୁଛି । ମୁହଁ ଖୋଲି ଚନ୍ଦନା ବିକ୍ରମକୁ ଖଣ୍ଡେ ରଙ୍ଗ କନ୍ତା କିଣି ଆଣିବାକୁ କହିଛନ୍ତି । କଟକର କବିରାଜ ଲକ୍ଷ୍ମୀନାରାୟଣ ଆୟୁର୍ବେଦୀୟ ପାର୍ସଲ କରି ଚନ୍ଦନାଙ୍କ ପାଇଁ ଯେଉଁ ଔଷଧ ପଠାଇଥିଲେ, ତାକୁ ସେବନ କରିବାରୁ ତାଙ୍କର ବେଶ୍ ଉପକାର ହୋଇଛି । କବିରାଜଙ୍କ ନିର୍ଦ୍ଦେଶମତେ ଯଦି ବିକ୍ରମ ତାଙ୍କୁ ଅନ୍ତତଃ ଦିନକୁ ଅଧକିଲେ କ୍ଷୀର ପିଆଇ ପାରିଥାନ୍ତା, ତାଙ୍କର ଆହୁରି ଉପକାର ହୋଇଥାନ୍ତା । ସେତକ ଯୋଗାଡ଼ କରିହେଲା ନାହିଁ । ବାସି ତୋରାଣିରେ କି ଲାଭ ମିଳିବ ? ଔଷଧ ବି ସରିଆସିଲା ।

ଚନ୍ଦନାଙ୍କର ଦୁର୍ବଳିଆ ମୁହଁକୁ ଚାହିଁଲେ ବିକ୍ରମର ହାଲୁକ ଶୁଖେ । କାନର ଫୁଲଫାଳକ ବନ୍ଧକି କଲା ଦିନରୁ ସେହି ମୁହଁଟି ଆଉଜାଳିଆ ଦିଶୁଛି । ବହୁ ଅନୁନୟ ପରେ ତା'ର ବୋଉ ଫୁଲ ଦିଓଟି ବନ୍ଧକି କରିବା କଥା ଗୁପ୍ତରେ ସ୍ୱୀକାର କଲେ । କାହାକୁ କେବେ କେତେ ଟଙ୍କାକୁ ବିକିଲେ ପ୍ରକାଶ ନ କରି କହିଲେ, ଚାକିରି କଲୁଣି ରେ ଧନ, ଦରମା ପାଇବୁ, ସୁବିଧା ଦେଖି ମୋ ପାଇଁ ସେମିତିଆ ଫୁଲ ହଳେ କିଣିଦେବୁ ।

ଚନ୍ଦନାଙ୍କର ମଧୁର ହସ । ସେହି ହସ ତଳେ କେଉଁ ଗଭୀର ବେଦନା ଲୁଚି ରହିଥାଏ । ବିକ୍ରମ ଅନୁଭବ କରେ । ସେ ଆଗରେ କାନ୍ଦିବାକୁ ସାହସ କରେ ନାହିଁ । ତା'ର ମନ ବାହୁନିଉଠେ । ଫୁଲଫାଳକ ସଙ୍ଗେ ସେ ଆବାଲ୍ୟରୁ ପରିଚିତ । ଶୁଣିଛି, ସେହି ଦିଓଟି ତା'ର ଜେଜେ-ମାଆଙ୍କ କାନରେ ଶୋଭା ପାଉଥିଲା । ତା'ର ବାପା ବି ସେହି ଫୁଲଫାଳକ ଦେଖି ତାଙ୍କର ବୋଉଙ୍କୁ ସୁମରଣ କରୁଥିବେ ।

ବିକ୍ରମ କେବେ ପୁଣି ବୋଉଙ୍କ ପାଇଁ ନୂଆ କାନଫୁଲ କିଣିପାରିବ ? ବେକ ପାଇଁ ସୁନ୍ଦର ଦ.ମିକା ହାର, ଯହିଁରେ ନାଲି, ନେଳୀ, ଧଳା, ପଥର ଝଟକୁଥିବ । ଅଜିକାଲି ତା' ମାଈଙ୍କ ବେକର ହାରଟି ପରି । ନ ହେଲା-ବେଳକୁ ଅନୁପା ବେକର ପ୍ଲେଟ ହାରଟି ପରି, ଯାହାକୁ ପିନ୍ଧିଥିବା ମାଉସୀ

ତାଙ୍କର ଭବିଷ୍ୟତର କୁଳବଧୂର ବେକରେ ସ୍ନେହରେ ଲମ୍ବାଇ ଦେଇ-ଥିଲେ । ଅସାବଧାନ ଅନୁପା କେଉଁଠି ତାକୁ ହଜାଇ ଦେଇଥିଲା । କେତେ ସାଙ୍ଘାତିକ କଥା ! ବୋଉଙ୍କର ହାତ ପାଇଁ କ'ଣ ସେ ଆଧୁନିକ ଡିଜାଇନ୍‌ର ବୃତ୍ତ ବୃତ୍ତ ପଟି ସୁନାର କାତ ଗଢ଼ାଇପାରିବ ନାହିଁ ?

ପା'ରିବ । ସେ ସବୁ କରିପାରିବ । କିନ୍ତୁ ଆଗ ତା'ର ଦରକାର ଘଣ୍ଟା ଓ ସାଇକେଲ । ଟ୍ରାଞ୍ଜିଷ୍ଟର ଖଣ୍ଡେ ଆଧୁନିକ ମଣିଷର ସର୍ବାଦୌ ଆବଶ୍ୟକ । ସଙ୍ଗୀତ ପାଇଁ ନୁହେଁ, ଶୁଣି ଶୁଣି ବିରକ୍ତ ଲାଗିଲାଣି । ସେ ଶୁଣିବ ସମ୍ବାଦ, ଦୁନିଆର ହାଲଚାଲ୍, ବଡ଼ ବଡ଼ ବ୍ୟକ୍ତିଙ୍କର ସୁଚିନ୍ତିତ ଭାଷଣ ଓ ଉପଦେଶ । ସାଧାରଣ ଜ୍ଞାନ ଯଥେଷ୍ଟ ନ ବଢ଼ାଇଲେ ସେ ଓ. ଏ. ଏସ୍. ପରୀକ୍ଷା ଦେବ କିପରି ? ପ୍ରସ୍ତୁତ ହେବାକୁ ଅନେକ ପୁସ୍ତକ ଲୋଡ଼ା । ତା' ସଙ୍ଗକୁ ଦୁଇଟା ଦୈନିକ ଖବରକାଗଜ—ଗୋଟାଏ ଇଂରେଜୀ, ଗୋଟିଏ ଓଡ଼ିଆ ।

ପଲଙ୍କ ଉପରେ ବହି ସଜାଇ ରଖୁଣୁ, ଦୁଇଟି ଖବରକାଗଜ ଅଂଶର କଟିଂ ଉପରେ ତା'ର ଦୃଷ୍ଟି ପଡ଼ିଲା । ଗ୍ରାମର ବିନୋଦବିହାର କ୍ଲବରୁ ସେ ସଂଗ୍ରହ କରିଥିଲା । ଗୋଟିଏ ତା'ର ପିତାଙ୍କର ଆମରଣ ଅନଶନ ବ୍ରତ ସମ୍ବନ୍ଧରେ, ଆଉଟି ତାଙ୍କର ବିଜୟ ଓ ଅନଶନ ଭଙ୍ଗ ସମ୍ବନ୍ଧରେ । ସବୁ ଶେଷ ହେଲା ପରେ ଏ ଖବର ତା'ର ଓ ଗ୍ରାମବାସୀଙ୍କର ନଜରରେ ପଡ଼ିଥିଲା ।

ସେମାନେ ବାତସ୍ପୃହ । ବିଜୟ ଟିକିଏ ଉତ୍ତେଜିତ ହୋଇଥିଲା । ଭାବିଲା, ସେବା କରିବାକୁ ଭିକାରୀପାଣ୍ଟଣା ଯିବା ଆବଶ୍ୟକ ନାହିଁ । କାମ ସରିଛି । ସମ୍ମାନ ବଢ଼ିଛି । ଚାକିରି ରହିଛି । କେତେ ଆମରଣ ଅନଶନର ଖବର ସେ ପାଇଛି । ତା'ର ସଙ୍ଗୀମାନେ ଜଣେ ଅଧ୍ୟାପକଙ୍କ ବଦଳି ସ୍ଥଗିତ କରିବାକୁ ମନ୍ତ୍ରୀଙ୍କ ଘର ଆଗରେ ସେପରି କରିଥିଲେ ।

ଚନ୍ଦନା ଆଖିରୁ ଲୋତକ ପୋଛି ବାରିକେଶ୍ୱରଙ୍କ ପାଖକୁ ନିଜେ ପତ୍ରଟିଏ ଲେଖିଥିଲେ । ପତ୍ର ତାଙ୍କ ପାଖରେ ପହଞ୍ଚିବା ଆଗରୁ ଜୟପୁର

ମୁହାମରୁ ଲେଖିଥିବା ସାରକେଶଗଙ୍କର ଲମ୍ବ ଚିଠି ଆସି ପହଞ୍ଚିଗଲା । ତାଙ୍କର ସଙ୍କେଟପଣ, ସାରତ୍ତ୍ୱ, ବିଜୟ ଓ ସମ୍ମାନବୃଦ୍ଧିର ଚିକିନିଖି ବିବରଣୀ । ବିକ୍ରମର ଖାଲି ଜାଣିବାର କଥା ଯେ, ତାର ପିତା ସୁସ୍ଥ ସବଳ ଅଛନ୍ତି । ରୋଗମୁକ୍ତ ହେଲେଣି । ସୁବିଧା ଦେଖି କିଛି ଟଙ୍କା ବି ପଠାଇବେ ।

ଲଣ୍ଡନର ଆଲୁଅ ଦେଖି ବିକ୍ରମ ତା'ର ଟ୍ରଙ୍କ ଭିତରକୁ ଚାହିଁଲା । ଅନ୍ୟାନ୍ୟ ପତ୍ର ସଙ୍ଗରେ ତା'ର ପିତାଙ୍କର ମୂଲ୍ୟବାନ ପତ୍ରଟି ନଜରକୁ ଆସିଲା । ସେଗୁଡ଼ିକ ଯତ୍ନସହକାରେ ଏକତ୍ର କରି ସୂତାରେ ବାନ୍ଧି ସେହି ଟ୍ରଙ୍କର ଗୋଟିଏ ପାଖରେ ଖବରକାଗଜରେ ଗୁଡ଼ା ହୋଇ ରଖା ହୋଇ-ଥିବା ପବିତ୍ର ଗୀତାର କଡ଼ରେ ସାଇତିଲା । ଭଗବତ୍‌ଗୀତା ଖଣ୍ଡି ଉଠାଇ ମୁଣ୍ଡରେ ଲଗାଇଲା ।

ସେହି ଗୀତା-ଭଗବାନଙ୍କୁ ମନେ ମନେ ସ୍ମରଣା କରି ସେ ମନ ମଧ୍ୟରେ କହିଲା, ଯେଉଁ ଉଦ୍ଦେଶ୍ୟରେ ଦିନେ ତମକୁ ମୁଁ ତନ୍ମୟ ହୋଇ ପାଠ କରୁଥିଲି, ବିଭିନ୍ନ ସମୟରେ ତମରି ଭଗବାନଙ୍କୁ ନମସ୍କାର ସହିତ ମୁଁ ପ୍ରାର୍ଥନା କରୁଥିଲି —ମୋତେ ସତ୍ୟପଥେ ଧର୍ମପଥେ ନେଇ ଯିବାକୁ, ମୋର ପ୍ରାଣକୁ ତମରି ପ୍ରେମର ସ୍ରୋତରେ ଭସାଇ ସବୁ ଉତ୍ତେଜନା ଓ ପ୍ରଲୋଭନରୁ ମୋତେ ରକ୍ଷା କରିବାକୁ, ସେହି ଆକୁଳ ଉଦ୍ଦେଶ୍ୟ ସଫଳ ହୋଇ ପାରି ନ ଥିଲା ।

ମୋର ନୂଆନୂଆ ଉତ୍ତେଜନା ବିରୁଦ୍ଧରେ ବାରମ୍ବାର ମୁଁ ସଂଗ୍ରାମ କରି ବିଫଳ ହେଉଥିଲି । ତଥାପି ମୁଁ ଆନ୍ତରିକ ସଂଗ୍ରାମ ଚଳାଇଥିଲି । କେବେ ସେହି ଗ୍ରେଟ, ରୋଗଣା, ନିରୀହ ପିଲାଟି ପ୍ରଲୋଭନର ମୋହିନୀ ମୂର୍ତ୍ତି ଧରିଲା, କେବେ ସେ ମନରେ ଅଦମ୍ୟ ଉତ୍ତେଜନା ଜାଗ୍ରତ କଲା, ମୁଁ ଜାଣେ ନାହିଁ ।

ପ୍ରଲୋଭନ ପାଖରୁ ମୁଁ ଦୂରେଇ ଆସିଛି । ଆଉ ତୁମେ ମୋର ଲୋଡ଼ା ହେବ ନାହିଁ ।

ବିକ୍ରମର ହାତରେ ସେଇ ପବିତ୍ର ଗ୍ରନ୍ଥଟି ନିରୋଳା କୋଠରି ଭିତରେ ସାମାନ୍ୟ ଥରିଉଠିଲା । ମୀରବ ଭାଷାରେ ସେ ଯେପରି କହି-

ଉଠିଲା, ମୁଁ ସବଂଷ ସବୁବେଳେ ସତ୍ୟ ଓ ଅସତ୍ୟର ଭେଦ ସୁଝାଇ-ଦିଏଁ। ସତ୍ୟପଥେ ଧର୍ମପଥେ ଅଗ୍ରସର ହେବାକୁ ମୁଁ ନିର୍ଦ୍ଦେଶ ଦିଏଁ। ପରିବେଶ ଓ ପରିସ୍ଥିତି ଏବଂ ତାହାରି ଭିତରେ ତୁମର ସଂକଳ୍ପ ଓ ସାଧନା ତୁମର ନିଜର।

ପରିବେଶ ଓ ପରିସ୍ଥିତି ମୋର ସାଧନା ଉଦ୍ୟମର ପରିପନ୍ଥୀ ହେଲା। ପରିବେଶ ଓ ପରିସ୍ଥିତିର କବଳରୁ ପଳାଇ ଆସିବାର ଉପାୟ ନ ଥିଲା। ଅତୀତର ତାଡ଼ନା ଓ ଭବିଷ୍ୟତର ଭାବନା ତାକୁ ସେହି ଧନ-ଲାଳସୀ ଅମାନ୍ତିକ ସଂସାର ସଙ୍ଗରେ ବାନ୍ଧିଦେଇଥିଲା। ଶୃଙ୍ଖଳ ଛିଣ୍ଡାଇ ଆତ୍ମରକ୍ଷା କରି ସେ ପଳାଇଆସି ପାରିଥିଲା। ସେଥିପାଇଁ ଭଗବାନଙ୍କୁ ଧନ୍ୟବାଦ।

ସେହି ଗହନ ଅନ୍ଧାର କଳଙ୍କଲେପିତ ନିଛାଟ ନିଶୀଥରେ ତୁମେ ହିଁ ଆକାଶକୁ କଳାଧୂମର ମେଘର ଫଉଜ ପଠାଇଥିଲ। ତୁମେ ଭଗବାନ୍ ନିଦ୍ରିତ ଧରଣୀକୁ ହଲାଇ ହଲାଇ ନିଚ୍ଛୁଇ ନିଚ୍ଛୁଇ ତୁମରି ନିଶ୍ୱାସ-ବତାସରେ ଜଗାଇଥିଲ। ଅଶନିର ବିଦ୍ରୂପ ହସରେ ମୋର ମରଣ ସଂକଳ୍ପରେ ଦ୍ୱନ୍ଦ୍ୱ ଜଗାଇଥିଲ।

କାଗଜରେ ଗୁଡ଼ା ହୋଇଥିବା ଗୀତାକୁ ବିକ୍ରମ କପାଳରେ ଲଗାଇଲା। ସ୍ପର୍ଶରେ ସେ ସାମାନ୍ୟ ଥରିଉଠିଲା। ଅନୁପା ହାତର ପରଶ ଲାଗିଛି। ତାର ମନର ମମତା ଭେଦିଛି। କାହିଁକି ସେହି ଉତ୍ତେଜନା-ବିହ୍ୱଳ, ନିଜକୁ-ଅର୍ପିଲା, ନିଷ୍ପାପ ପ୍ରେମର ପିତୁଳା, ପ୍ରତିଭଜନର ଆତ୍ମଦହନକାଙ୍କ୍ଷା, ଆକର୍ଷିଲା-ଅଗ୍ନିଶିଖା କେବଳ ଏହି ବହିଟିକୁ ଏତେ ଯତ୍ନରେ ଗୁଡ଼ାଇ ରଖିଛି ?

ବିକ୍ରମ ସେହି ଆବରଣ ଖୋଲି ପଲଙ୍କର କଡ଼ରେ ଫିଙ୍ଗିଲା। ବହିର ମଲାଟ ଝାଡ଼ୁଣୁ ତାହା ମଝିରୁ ଖୋଲିଲା। କ'ଣ ତହିଁରେ ଅଛି ? ଛବି ଖଣ୍ଡିଏ ? ପତ୍ର ଖଣ୍ଡିଏ ? ଗୋଟିଏ ଫଟୋ କି ? କାହାର ? ଅନୁପାର

ନୁହେଁ ତ ! ବନ୍ଦ ହୋଇଥିବା ଚଉଡ଼ା ଧୋବଳା ଲଫାପାଟି ମୁଦ କରା ହୋଇଛି । ଲଫାପା ଉପରେ ଅନୁପାର ହସ୍ତାକ୍ଷର । ଲେଖାହୋଇଛି ତାଆର ନାମ—ବସନ୍ତକେଶରୀ ।

ବହି ଭିତରୁ ସେ ଲଫାପାଟି ଉଠାଇଲା । ଓଜନଆ ଲାଗିଲା । ନିଶ୍ଚୟ ଲମ୍ବ ଚିଠିଟିଏ । କଅଣ ସେ ଲେଖିଥିବ ଅନୁମାନ କରୁଣୁ ତାର ଛାତିରେ ଛନକା ପଶିଲା । ଅପଯଶର ସବୁ ଦୋଷ ଅନୁପା ନିଶ୍ଚୟ ତାଆର ମୁଣ୍ଡରେ ଲଦିଦେଇଛି । ଦିନ ଦିନକର ଘଟଣା ମନେ ପକାଇ ସେ ଲେଖିଛି ପରା ! ବାପା ବୋଉ କ୍ଷୀର ପିଆଇ ଘରେ କାଳସାପଟି ପୋଷିଥିଲେ । ଲେଖିଥିବ, ଅତି ଭକ୍ତର ଲକ୍ଷଣ ଦେଖାଇ ତମେ ସ୍ନେହ ଚଷ୍କରଠାରୁ ବଳିଥିଲ ବଡ଼ଭାଇ ! ତମେ ମୋ ଜୀବନର ସର୍ବସ୍ୱ ଲୁଣ୍ଠନ କରିଛ । ତମର ଆଖିରେ ଓ ମୋର ଆଖିରେ ମୋତେ କଳଙ୍କିନୀ କରିସାରିଛ । କଅଣ ହେବ ମୋର ଭବିଷ୍ୟତ ? କାହା ଆଗରେ ମୋର ଦୁଃଖର କାହାଣୀ ବର୍ଣ୍ଣିପାରିବ ? କିଏ ମୋତେ କି ସାନ୍ତ୍ୱନା ଦେଇପାରିବ ?

ବସନ୍ତ ସନ୍ତ୍ରସ୍ତ ନେତ୍ରରେ ଖୋଲାଥିବା ଦ୍ୱାର ଆଡ଼କୁ ଚାହିଁଲା । ଠାବ କରୁଥିଲା ତାର ବୋଉଙ୍କୁ ଅବା ଖୁଡ଼ୀଙ୍କୁ । କାଳେ ସେମାନେ ଆସୁଥିବେ ! ନା, ସେମାନେ ତାଙ୍କର ନିଜ ନିଜର ଶେଷଘରେ କାର୍ଯ୍ୟବ୍ୟସ୍ତ ଅଛନ୍ତି । ଶୁଭକେଶରୀ ଆରଘରେ ନଦୁଆ ପାଟିରେ କବିତା ମୁଖସ୍ଥ କରୁଛି । ନ ଡାକଲେ ଉପରେ ସେ ପାଖକୁ ଆସିବ ନାହିଁ ।

ସୁବିଧା ବେଳ ଜାଣି ସେ ଲଫାପାଟି ଖୋଲିଲା । ଅଙ୍ଗୁଠି ଗଳାଇ ଯାହା ସେ ଓଟାରି ଆଣିଲା, ଦୃଷ୍ଟିରେ ପଡ଼ିବାରୁ ସେ ମୁହୂର୍ତ୍ତେ ସ୍ତମ୍ଭିତ ହୋଇ ରହିଲା । ଫଟୋ ନୁହେଁ, ପତ୍ର ନୁହେଁ, ଟଙ୍କା ! ଶହେ ଟଙ୍କିଆ ଚାରୋଟି, ଦଶ ଟଙ୍କିଆ ତିନୋଟି ନୋଟ୍ ଓ ଖଣ୍ଡିଏ ସ୍ଲେଟ ଚିଠି ଏକାଠି ଆଲ୍‌ପିନ୍‌ରେ ଗୁନ୍ଥା ହୋଇଛି ।

ଚିଠିରେ ଲେଖା ହୋଇଛି—ଦାନ ନୁହେଁ । ପାଉଣାର କାଣିଚାଏ ବି ନୁହେଁ । କେଉଁଠୁ ଆସିଲା, କପରି ଆସିଲା, କିଏ ଦେଲା, ଏସବୁ ପ୍ରଶ୍ନ

ଅବାନ୍ତର । କୌଣସି ସର୍ତ୍ତ ନାହିଁ । ଚମର କାମରେ ଲଗୁ । ପ୍ରାପ୍ତି ସ୍ୱୀକାର ଅନାବଶ୍ୟକ ।

ଚଠି ନୁହେଁ, ଟିପା । କାହାର ସ୍ୱାକ୍ଷର ନାହିଁ । ଅନୁପାର ହସ୍ତଲିପି । ସତେକି ନଜେ ଅନୁପା ସେଠାରେ ଉଭା ହୋଇଛି । ଆଖିରେ ଲୁହ ନାହିଁ, ତା'ର ଓଠରେ ହସ ନାହିଁ । ତା'ର ସୁନ୍ଦର କୁଳୁକୁଳିଆ ମୁହଁଟି ଗମ୍ଭୀର ଦିଶୁଛି ।

ବସନ୍ତର ଆଖି ଛଳଛଳ ହେଲା । କାଳେ ତା'ର ବୋଉ ଘର ଭିତରକୁ ପଶିଆସିବେ ଏହି ଆଶଙ୍କାରେ ସେ ତରତର ହୋଇ ଆଲ୍‌ପିନ୍ ଖୋଲି ସେହି ଛୋଟ ଟିପ୍‌ପଣୀକୁ ଗୀତାର ମଲାଟ ତଳେ ରଖିଲା । ଟଙ୍କାତକ ଘଣ୍ଟି ପୁଣି ସେହି ଖୋଲା ଲଫାପାରେ ଭରିଲା । ବହି ଓ ଲଫାପା ଟ୍ରଙ୍କ ଭିତରେ ସଯତ୍ନରେ ସାଇତି ଟ୍ରଙ୍କ ବନ୍ଦ କଲା । ଅନୁପାର ସ୍ୱର ତଥାପି ତା'ର କାନରେ ବାଜୁଥାଏ—ଦାନ ନୁହେଁ । ପାଉଣାର କାଣିଚାଏ ନୁହେଁ । କାମରେ ଲଗୁ ।

ଆଖିର ଲୁହ ଗାଲ ଉପରେ ବୋହିଆସିଲା । ଅନୁପା ତାଆର ପାଇଁ ପ୍ରେରଣୀ ହୋଇଛି । ଅନୁତାପ ନାହିଁ, କୁଣ୍ଠା ନାହିଁ । କେବଳ ସେ ତାର ଦେହକୁ ସମର୍ପି ଦେଇ ନ ଥିଲା, ସେ ତାର ମନ, ଜୀବନ ଓ ମମତାକୁ ତାଆର ପାଦତଳେ ସମର୍ପିଦେଇଛି । ଲକ୍ଷପତିର ଅଲିଅଳି କନ୍ୟା ! ଲକ୍ଷ-ପତିଙ୍କର ମନୋମାତା କୁଳବଧୂ !

ଚନ୍ଦନା ଘରଭିତରକୁ ପଶିଆସିଲେ । ଦ୍ୱାରବନ୍ଧ ଡେଇଁ ପାଦ ପକାଉଣୁ କହିଲେ, ସ୍କୁଲରୁ ଆସି ତୁଣ୍ଡରେ ପାଣି ନ ମାରି କେବଳା ସଙ୍ଗରେ ଗଲୁ ଯେ, ଡେରିରେ ଫେରିଲୁ । ସେତିକବେଳୁ ବହି ସଜାଡ଼ିବାରେ ଲାଗିଛୁ । ତତେ ଭୋକ କରୁନାହିଁ କି ବାପ ? ଏଁ, ତୁ କାନ୍ଦୁଛୁ ? ତୋ ଆଖିରେ, ଗାଲରେ ଲୁହ ! କଅଣ ହେଲା ?

ଚନ୍ଦନା ପଲଙ୍କ ପାଖକୁ ଆସିଲେ । ଦରମଇଳା ପୁରୁଣା ଶାଢ଼ୀର ପଣତ କେତେ ଜାଗାରେ ଫାଟିଯାଇଛି । ନାଲିଆ ଧଡ଼ିଟି ଲୁଗା କୋଣରୁ ଖସି କାନ୍ଧ ଉପରରୁ ତଳକୁ ଓହଳୁଛି । ଫୁରୁ ଫୁରୁ ଧଳା-କଳା କେଶ । କୋରଡ଼ିଆ ନସ୍ତେଜ ଆଖି । ଧୋବ ଫର ଫର ନିରକ୍ତିଆ ଶେଥା କପାଳରେ ସିନ୍ଦୂର ନେସିହୋଇଯାଇଛି । ହଲହଲ କେଇଟି ସଫେଦ ଦାନ୍ତ ଦ'ଧାଡ଼ି ଉପରେ ପାତଳା ଓଠପଟା ଦ'ଫାଳ ଥରଉଠୁଛି । କାନ ଦଉଟି ଫୁଙ୍ଗୁଳା ।

ବନ୍ଧମ ଗୁହାଁଦେଇ କାକୁସ୍ଥ ହେଲା । ସେ ହସ ହସ ହୋଇ କହିଲା, ମୁଁ କାହିଁ ନ ଥିଲି ବୋଉ, ମୁଁ କ'ଣ ପିଲାଟିଆ ହୋଇଛି ? କେତେ କେତେ କଥା ମୋର ମନେପଡ଼ୁଥିଲା । ମୋ ଅଜାଣତରେ ଆପେ ଆପେ ଆଖିକୁ ଲୁହ ଆସିଗଲା ।

ବନ୍ଧମ ଲୁଗା କାନରେ ମୁହଁ ପୋଛିଲା ।

ଚନ୍ଦନା ଟ୍ରଙ୍କକୁ ସାମାନ୍ୟ ଘୁଞ୍ଚାଇ ତଳକୁ ଗୋଡ଼ ଓହଳାଇ ପଲଙ୍କ ଉପରେ ବନ୍ଧମ ଆଗରେ ବସିଲେ । ମୁହୂର୍ତ୍ତେ ନିର୍ବାକ ହୋଇ କହିଲେ, ସେମିତି ହୁଏ ରେ ବାପ ! ଏକୁଟିଆ ବସି କେଉଁ କାମ କରୁଥିଲାବେଳେ ଗତ ଜୀବନର କେତେ କଥା ମନେପଡ଼େ । ସବୁ ଘଟଣା ସତେ କି ଆଖି ଆଗରେ ଘଟିଯାଏ । ସୁଖର ଓ ଦୁଃଖର ଘଟଣା । ଆପେ ଆପେ ହସିହୋଇଯାଏ । କାନ୍ଦହୋଇଯାଏ । ରାଗରେ ମୁହଁ ଫଣଫଣ ହୁଏ । କାହାର କେଉଁ ପ୍ରସ୍ତାବରେ ରାଜି ନ ହେବାକୁ ମନ କହିଲେ, ସେମିତି ଆପେ ଆପେ ମୁଣ୍ଡ ହଲି ହଲି ନାହିଁ କରେ । କାହାର ଦୁଃଖରେ ମନ ତରଳିଲେ ପାଟିରୁ ଚୁ ଚୁ ଶବ୍ଦ ବାହାରେ । ଲୁଚି ଲୁଚି କଏ ଯଦି କେଉଁଠୁ ଦେଖୁଥିବ, ସେ ଭାବିବ ବାଇଆଟିଏ ।

ସବୁ ମଣିଷ କ'ଣ ବାଇଆ କି ବୋଉ ?

ହଁ ରେ ପୁଅ ! ଅଳ୍ପେ ବହୁତେ ସମସ୍ତେ । ଯେଉଁମାନେ ଅନ୍ୟଙ୍କୁ ଖୁଣନ୍ତି, ସେମାନେ ଅଧିକ ବାଇଆ । ତୁ କେବେ ବାଇଆ ନ ଥିଲୁ । ନଟେଜାରେ ତୋ ଆଖିକୁ ଲୁହ ଆସିଲା କାହିଁକି ସେଇଆ ମୁଁ ବୁଝୁଛି ।

ଭଗବାନ ସୁଖ ଦେଇଥିଲେ । ତାଙ୍କ ଗୁଆଁକୁ ସେ ସୁଖକୁ ହାଜଲେ ହାଜଲେ ଓଟାଣିନେଲେ । ଠେଲିଦେଲେ ଦୁଃଖ । ତାକୁ ବ ସେ ହରଣ କରିବେ । ଏଥିକୁ ଭାବନା କାହିଁକି ? ଧୈର୍ଯ୍ୟ ଥିଲେ, ଠାକୁରଙ୍କର ଦୟା ଉପରେ ବିଶ୍ବାସ ଥିଲେ, ଦୁଃଖ ସହିବାର ଶକ୍ତି ଭଗବାନ ମନରେ ଦିଅନ୍ତି ।

ନବୋଧ ଶିଶୁଟି ପରି ନିର୍ବାକ ବିସ୍ମୟ ଚନ୍ଦନାଙ୍କର ମୁହଁକୁ ଗୁହିଁ-ରହିଥିଲା । ମନେପକାଉଥିଲା ସଞ୍ଜର ଘଟଣା । କେବଳାନନ୍ଦ ସଙ୍ଗରେ ସେ ତାଙ୍କର ଘରକୁ ବୁଲିଯାଇଥିଲା । ବିକଳି ଖ୍ରୋଇ କାହା ଘର କାମରୁ ବାହୁଡ଼ି ନ ଥାନ୍ତି । ଘରେ ଥାଆନ୍ତି ରଙ୍ଗୁଲି ମାଣ୍ଡି ଓ ବେଙ୍ଗୁଲି ଅପା ।

ସେମାନେ ବ୍ୟସ୍ତ ହୋଇପଡ଼ିଲେ । ତାଙ୍କର ଶ୍ରେଷ୍ଠ ଗୁଳଘର ଢ଼' ବଖରି ଓ ବୋଷଘର ଖୁଲିଆ କେଡ଼େ ପରିଷ୍କାର ପରିଚ୍ଛନ୍ନ । ଭଲରେ ଅଛନ୍ତି । ପଂଟି ପୁଆଦିକୁ ଛୁ ଛୁ କରି ମୋଟା ଖାଇ ମୋଟା ପିନ୍ଧି ସେମାନେ ବେଳ କାଟୁଛନ୍ତି । ମନରେ ଅବଶୋଷ ନାହିଁ । ଆଜ ଠାଏ କେଉଁଠି ବେଙ୍ଗୁଲି ଅପାର ବାହାଘର କରିବାକୁ ରଙ୍ଗୁଲି ମାଣ୍ଡି ଯୋଗାଡ଼ କରୁଛନ୍ତି ।

ସେମାନେ ତାଙ୍କର ଶ୍ରେଷ୍ଠ ବାରିର କଅଁଳ ମକାପୋଡ଼ା, କସି କାକୁଡ଼ି, ପାଚିଲା ଆତରେ ବିସ୍ମୟର ଚର୍ଚ୍ଚା କରିଥିଲେ । ବିସ୍ମୟ କେବଳାନନ୍ଦକୁ ପାଠ ପଢ଼ାଉଥିଲା । ଲଣ୍ଠନ ଆଲୁଅରେ ସେ ଲକ୍ଷ୍ୟ କଲା ଯେ ବେଙ୍ଗୁଲିର କାନରେ ହଳଟି ସୁନାର ଫୁଲ ଝଟକି ଉଠୁଥିଲା । ତାର ସୁନ୍ଦର, ସ୍ୱାସ୍ଥ୍ୟଭରା, ଶାବଳା ମୁହଁକୁ ସେହି ସୁନା ଫୁଲ ହଳଟି ଆକର୍ଷଣୀୟ କରିଥିଲା । ସେହି ଫୁଲ ହଳଟି ତା'ର ଅତି ପରିଚିତ ପରି ମନେହେଲା । ବୋଉଙ୍କ କାନ ଲଙ୍ଗଳା । ଦୁଇଟି ଦେଖଣା ଭିତରେ କି ସମ୍ପର୍କ ଅଛି, ସେ ଅନୁମାନ କରୁଥିଲା ।

ଚନ୍ଦନା କହିଲେ, ଘାତଗଣ୍ଡିକ ଶୁଣି ଚଣାଗୁଡ଼ନ ହେବ । ରାତି ଢ଼ଢ଼ୁର ହେଉଛି । ମୁଠିଏ ଖାଇ ତୋର ବହି ସଜାଡ଼ା ଶେଷ କଲେ ଭଲ ହେବ ।

ସରିଲା, ବୋଉ ! ଦେଖିଲୁ ଏ ଲଫାପା ଭିତରେ କ'ଣ ଅଛି ? ଟ୍ରଙ୍କ ସଜାଡ଼ୁଣୁ ଖଣ୍ଡିଏ ବହି ଭିତରୁ ମିଳିଲା ।

ଚନ୍ଦନା ଦେଖିଲେ । କହିଲେ ପୂରିଶ ତିରିଶ ଟଙ୍କା ! କିଏ ଦେଲା ଏତେ ଟଙ୍କା ? କଅଣ ହେବ ? ଆଉ କାହାର ଟଙ୍କା ପାଖରେ ରଖିଛୁ କି ?

ବିକ୍ରମ ଉତ୍ତର ଦେବାକୁ ସାହସ କଲା ନାହିଁ ।

ଚନ୍ଦନା ଲଫାପା ସହ ଟଙ୍କା ଖଟ ଉପରେ ରଖିଲେ । ମୁଣ୍ଡ ଭିତରେ କେତେ ଭାବନା ଠକମକ ହୋଇ ଫୁଟିଲା । ଶେଷକୁ ଯେଉଁ ସମ୍ଭାବନା ମନ ଛୁଇଁଲା, ତାଙ୍କର ଛାତି ଥରିବାକୁ ଲାଗିଲା । ଅଭେକା ରୂପ, ଉପାସ ପେଟ ବୋହି, ଗଛ ତଳକୁ ଆଶ୍ରା କରିବାର ପ୍ରପଞ୍ଚ ବୁଦ୍ଧି କିଏ ଦେଲା ଏ ବିକ୍ରମକୁ ?

ପଚାରିଲେ, ଘରଭଡ଼ା ଓ ବାକି, ସେତିକି ତ ତୋ'ର ସମ୍ବଳ ଥିଲା, କାହାକୁ ଠକି ଅବା ଧନ୍ଦା ଦେଇ ଏତେ ଟଙ୍କା ଆଣିଛୁ ? ତୁ କଣ କରିବୁ ? ଆମେ ଦୁହେଁ ରହିବା କେଉଁଠି ?

ବିକ୍ରମ ଚମକି ଉଠିଲା । ତାର ଜନନୀଙ୍କ ମନରେ ଧାରଣା ଜନ୍ମି-ଯାଇଛି ଯେ, ସେ କେବଳ ପୈତୃକ ସମ୍ପତ୍ତି ବିକି କରି ଅଭାବ ମେଣ୍ଟାଇବାକୁ ଚେଷ୍ଟା କରୁଛି । ପ୍ରକୃତ ଘଟଣା ପ୍ରକାଶ ନ କଲେ ତାଙ୍କର ମନର ଧାରଣା ଦୂର କରିହେବ ନାହିଁ ।

ସେ ସାମାନ୍ୟ ଉତ୍ତେଜିତ ହୋଇ କହିଲା, ତୋତେ ନ ପଚାରି ମୁଁ ଏଡ଼େ ଦୁଃସାହସ କରନ୍ତି ନାହିଁ, ବୋଉ ! ମୋତେ ନ ଜଣାଇ ମୋର ବହି ଭିତରେ ଏ ଟଙ୍କା ଅନୁପା ଲୁଚାଇ ରଖିଥିଲା । ତା' ସଙ୍ଗେ ଖଣ୍ଡିଏ ଚିଠି ବି ରଖିଥିଲା, ଆଜି ମୋର ନଜର ପଡ଼ିଲା । ମୋତେ ଯଦି ସେ କହିଥାନ୍ତା, ଅବା ପରେ ଲେଖି ଜଣାଇଥାନ୍ତା, ତୋର ଆମ୍ବଗଛ, ତୋର କାନଫୁଲ ବିକି ହୋଇ ନ ଥାନ୍ତା ।

ଅନୁପାର ଟଙ୍କା !

ବନ୍ଧମ ଉତ୍ତର ନ ଦେଇ ଭଗବତ୍‌ଗୀତା ଭିତରୁ ଗ୍ଲେଟ ଚିଠିଖଣ୍ଡି ଟାଣି ଚନ୍ଦନାଙ୍କ ଆଗରେ ଥୋଇଲା ।

ଚନ୍ଦନା ତଳକୁ ଓହ୍ଲାଇ ହାତ ଲମ୍ବାଇ ସିନ୍ଦୁକ ଉପରୁ ସ୍ୱାମୀ-କେଶସ୍ୱାଙ୍କର ପୁରୁଣା ପଚ୍ଛୀମ୍ବାକ୍ ଚଷମା ଆଣି ପିନ୍ଧିଲେ । ମନେ ମନେ ପଢ଼ିଲେ । ଆଉ ଥରେ ଗୁଣୁ ଗୁଣୁ ହୋଇ ପଢ଼ିଲେ । ତୁଣ୍ଡରେ ତୁହାଇ-ହେଲା—ପାଉଣାର କାଣିଗ୍ୱଏ ନୁହେ—

ହଁ, ବୋଉ ! ସେ ଠିକ୍ ଲେଖିଛି । ଆଠବର୍ଷ କାଳ ସେମାନଙ୍କୁ ସ୍ନେହ କରିଥିଲ । ସେମାନଙ୍କର ସେବା କରିଥିଲ । ବେଳେବେଳେ ମାଈଙ୍କର ଗଞ୍ଜଣା ସହିଥିଲ ।

ଆଉ କହନା ରେ ବାପ ! ତୁ ଯୋଗ୍ୟ ପୁଅ ହୋଇ ଫେରିଛୁ । ସେତିକ ମୋର ଲକ୍ଷେ ଟଙ୍କା ।

ଏ କାନରୁ ସେକାନ ନ ଜାଣୁ, ବୋଉ !

ଅନୁ ମୋର ମନା କରିଛୁ । ତା'କଥା ତଳେ ପଡ଼ିବ ନାହିଁ । ଏଇ ଚିଠି ଖଣ୍ଡିକ ମୁଁ ଚିରି ପକାଇବି । କାଳେ କାହାର ଦୃଷ୍ଟିରେ ପଡ଼ିବ । ଏ ଟଙ୍କା କାମରେ ଲଗିବ ରେ ପୁଅ । ତୋ'ର ପଢ଼ାଖରଚ ତୁଲେଇବାକୁ, ଆମ ଦୁହିଁଙ୍କର ପେଟପାଣଟା, ଯୋଗବୈଷ୍ଣବରେ ଖରଚ କରିବାକୁ ତୋ ବାପା ଥରକୁ ଥର କାଗଜ ଲେଖି ସ୍ୱୟଂପାଞ୍ଚ ଥରରେ ଭଜମା ସାହୁ ମାହାଜନଠାରୁ ଟଙ୍କା ଦେଢ଼ଶ ଆଣିଥିଲେ । ସ୍ୱୀକରି ନ ଥାଇ ଘରେ ବସିଥିଲେ । ସୁଧ ତ ଶୁଝି ହେଲା ନାହିଁ, ମୂଳ ଶୁଝନ୍ତେ କୁଆଡ଼ୁ ? ସାହୁତେ ବସେଇ ଉଠେଇ ଦେଲେ ନାହିଁ । ସୁଧମୂଳ ମିଶି ଅଢ଼େଇଶ । ଆଉ ଶହେ ଟଙ୍କା ତୋର କେଉଁ ପରୀକ୍ଷା ପାଇଁ ପୁଣି ଆଣିଲେ । ତିନଶ ପଚାଶ ଟଙ୍କାକୁ ଶିମୁଳତଳ ଦେଢ଼ମାଣିଆ ଜମିକୁ ସେ ଫଳବନ୍ଧକ ରଖିଛନ୍ତି । ଟଙ୍କା ନ ଶୁଝିବାଯାଏ ସେ ଦଖଲ କରୁଥିବେ । ସୁଧ ଆଡ଼କୁ ଫସଲ ଖାଉଥିବେ ।

ମୁଁ ଜାଣିଛି, ବୋଉ !

ଏ ଟଙ୍କାରେ ଆମର ସେଇ ଦୋଫସଲି ସୁନାଥାଳି ଜମିକୁ ଆଗ ମୁକାଲି ଆଣ । ସେଇ ଗହ୍ୱାର ମଝିରେ ନାଳ ଖୋଳା ହେଉଛି । ଏବନ୍ଧୁ ଜମିର ଦର ଗୁଣ୍ଣକୁ ଶହେ ଟଙ୍କା ଯାଏ ଚଢ଼ିଲଣି । ନାଳରେ ପାଣି ଗଲେ ଦୁଇଣ ହେବ ।

ଆମ ଦେଢ଼ମାଣିଆର ମୂଲ୍ୟ ସାତହଜାରରୁ ଅଧିକ ହେବ । ଏବେ ବୁଝିଲ, କାହିଁକି ଦାଦା ମତେ ଫୁସଲଉଥିଲେ । କହୁଥିଲେ, ଶେଷକୁ ସେ ଜମି କାହିଁକି ଭଜମା ଖାଇବ ରେ ପୁଅ, ତମେ ତ ଟଙ୍କା ଶୁଝିପାରୁନ । ଆମର ପୂର୍ବପୁରୁଷର ସମ୍ପତ୍ତି ଆମ ଆଖି ଆଗରେ ଭୂତ ଖାଇବ । ଦେହ ସହୁନାହିଁ ।

ପଚାରିଲି, ଉପାୟ କ'ଣ ଦାଦା, ଦେଖୁଛ ତ ଆମର ଅବସ୍ଥା ! ଭଜମା ଗଉତଙ୍କର ଟଙ୍କା ପରିଶୋଧ କରିବାର କାଢ଼ ଏବେ ଆମର ନାହିଁ । କାଲିକ କେମିତି ବଞ୍ଚିବୁ ସେକଥା ବିଚାରିବାକୁ ଡର ମାଡ଼ୁଛି ।

ଦାଦା କହିଲେ, ଆଜ ତୁ ବେକାର ବସିଛୁ, ଠାକୁର କଲେ କାଲିକୁ ବଡ଼ ଚାକରି କରିବୁ । ବହୁତ ଧନ କମାଇବୁ । ଟଙ୍କା ମିଳିବ । ଆମର ଏଇ ପୂର୍ବପୁରୁଷର ଜମି ମିଳିବ ନାହିଁ । ମୁଁ କଣ କହୁଛି କି ପୁଅ, ତୁ ତୋ' ବାପାଙ୍କୁ ଲେଖ । ସେ ମଙ୍ଗିବେ । ମୁଁ ଆମର ଶେଠ୍‌ଙ୍କଠାରୁ ଟଙ୍କା ପାଞ୍ଚଶ ଉଧାର ଆଣି ତତେ ଦେବି । ଭଜମାଙ୍କୁ ତା ଟଙ୍କା ଦେଇ ଜମି ତୁ ମୁକାଲିବୁ । ମତେ ସେ ଜମି ଫଳବନ୍ଧକ ଲେଖିଦେବୁ । ଯେବେ ମୋ ଟଙ୍କା ପରିଶୋଧ କରିବ, ତମ ଜମି ତମେ ଫେରାଇନେବ ।

ଚନ୍ଦନା ଚିହ୍ନକିଉଠିଲେ ।

ବିକ୍ରମ କହିବାକୁ ଲାଗିଲା । ଦାଦା କେଡ଼େ ପେଞ୍ଚୁଆ, ଏବେ ତୁ ବୁଝିଲୁ ? ଶସ୍ତାରେ ଜମିକୁ ମାରିନେବାକୁ ସେ କେମିତି ଗୋଟାଏ ଆମର ହୋଇ, ଓଠ ଚାଟୁଛନ୍ତି !

ଚନ୍ଦନା ମୁଣ୍ଡ ହଲାଇ କହିଲେ, ତୁ ସେମିତି ବିଚାରଣା କର ମନରେ ଈର୍ଷା ପୂରନା ! ଧୀର ସତ କହିଲେ । ତାଙ୍କର ପିଲାଏ କ'ଣ ମୋର ନୁହନ୍ତି ?

ଅଗ୍ରବକୁ ସିନା ଆମେ ଭଜନେ ହୋଇଛୁଁ । ଶୁଭକେଶରୀ ଆଜ ମୋହନ-
କେଶରୀଙ୍କୁ ତୋ ବାପା ଜୀବନପ୍ରାଣ କରିଥିଲେ । ସେ ସ୍ୱଦେଶ ଗନ୍ଧରୁ
ପିଲା ଦୁଇଟା ତାଙ୍କୁ ଝୁରିଲେ । ତାଙ୍କର କଣ୍ଠ ଦୋହଲାଇଲା ।

ବହଁମ ନଜର ହେଲା । କଥା ବୁଲାଇ କହିଲା, ଅଲେଖ ମତେ ଭଜନେ
ପାକଲୋଉଥିଲା । ଅଦ୍ଭୁତ ଲୋକଙ୍କୁ ଓଲମା ଲୋକେ ବ ଶ୍ରାବନ୍ତ ବୃଦ୍ଧ ଓଲମା ।
କହିଲା ସେ ଅଲେଖା, ଦେଖିବ ଯା ସ୍ୱକବାବୁ, ତମର ଅଞ୍ଚଳ ଜମିକୁ ସେ
ଭଜନା କେମିତି ଅକାମୀ କରିସାରିଲାଣି । ସାର ଗୁଣ୍ଡାଏ ଡାଳି ଡାଳି ସେ
ଜମିକୁ ଦ'କଣ୍ଡାର କଲାଣି । ଶେଷକୁ ତାକୁ ସେ ଗ୍ରାସିବ । ମୁଁ ହଜାରେ
ଦେବ । ତମ ବାପାଙ୍କୁ ଲେଖ, ଯାବନୀ ନାଆଁରେ ତାକୁ କବଲା କରି-
ଦେବେ ।

ମେଞ୍ଚଡ଼ି ଅଲେଖାର ଏତେ ବଡ଼େଇ ! ହିଁ, ହାତରେ ଧନ ହେଲାଣି,
ନ କହିବ କାହିଁକି ? କଳକତିଆଣୀ ଟିପଅଠାକୁ ଭୂମି ସଙ୍ଗରେ ବାନ୍ଧଦେବାକୁ
ବସିଛି । କେବେ ସେମାନଙ୍କୁ ଧୋକା ଦେଇ କାଳେ କୁଆଡ଼େ ଖସି ପଳାଇବ
ତାଙ୍କର ଏଇ ଡର । ଗଧ ଖଟଣି ଖଟୁଛି—

ବହଁମ କଥାକୁ ଆଡ଼େଇ କହିଲା, କେବଳା ଭଲ ପରାମର୍ଶ ଦେଲା ।
ଭଜନେ କହିଲା, ରହ ମ ସ୍ୱକହୁଇ, ଆମ ଜମି କୁଆଡ଼େ ପଳାଉଛି କି ?
ନାଳରେ ପାଣି ଆସୁ, ଜମି ଗୁଣ ଦୁଇଗ ହେବ । ନଜେ ଯଦ୍ଧ ଭଜନୀ
ରାଉତକୁ ନିଜ ବେଜଗାରରୁ ସଞ୍ଚ ଧନ ଦେଇ ଜମି ମୁକାଳି ନ ପାରିବ,
ଦୁଇ ତିନ ଗୁଣ ବଳ ଦେବା । ଜମି ମୁକୁଳା ହେବ ।

ଚନ୍ଦନା କହିଲେ, କେବଳାର ବୁଦ୍ଧି ସବୁଠୁ ସରସ । ତେବେ,
ଠାକୁରେ ତ ହାତକୁ ଠଙ୍କା ଦେଲେଣି, ଏତେଦିନ ଅପେକ୍ଷା କରିବା
ଦରକାର ନାହିଁ । କାଲି ସକାଳୁ, ହେଲୁ କେବଳାକୁ ସଙ୍ଗରେ ନେଇ ଲୁ
ଭଜନା ରାଉତଙ୍କ ଘରକୁ ଯା । ଫସଲ ଉଠିଛି, ଜମି ପଡ଼ିଆ ପଡ଼ିଛି—

ଭଜମନ ରାଉତେ ଝାଳଝୁଳ କରୁଥିଲେ । ବସନ୍ତକୁ ଭୁଆ ବୁଲାଇବାକୁ ଚେଷ୍ଟା କରୁଥିଲେ । କେବଳାନନ୍ଦର ଧମକରେ ସେ ବାଟକୁ ଆସିଲେ ।

ହଇ ହେ ରାଉତେ, ସିଧାସଳଖ ଭଦ୍ରଲୋକ ପରି ବାଟକୁ ଆସିବ, ନା ଆଉ କିଛି ଖୁଣ୍ଟୁଛ ? ଜମିକୁ ଦୁହିଁ ଦୁହିଁ ତା ଫଳନ୍ତ ଦେହକୁ ଶୁଖାଇ-ସାରିଛ । ଜମି ମଝିରେ ବ'ଗୁଣ୍ଡିଆ ଖାଲ ଖୋଳି ତାକୁ ଅକାମୀ କରିଛ । ଯେତେ ସେହି ଜମିରୁ ଏଇ ପଞ୍ଚ ବର୍ଷ ଭିତରେ ଭୋଗିଛ, ସେଥିରୁ ସୁଧ ଯାଇ, ମୂଳ ଶୁଝି, ଆହୁରି ତିନିଶ ଟଙ୍କା ଲାଭ ଉଠାଇଲଣି । ସେତିକ ତୁମେ ଖାଅ । ଅଧିକା ଗଣ୍ଡେ ଟଙ୍କା ନଅ । କେଶରୀ ପିଉସାଙ୍କର ହାତଲେଖା ଭଦ୍ରଲୋକ ପରି ଫେରାଇ ଦିଅ । ନୋହିଲେ—

ନୋହିଲେ କ'ଣ ?

ତମ କଳାବଜାରକୁ ଆମେ ପଣ୍ଡ କରିବୁଁ । ହେରାଉ ହେବ । ତମର ଗହମ, ଅଟା, ପୋକଡ଼ା ଖତରା ଚାଉଳ, ମିଶାତେଲ ସବୁ ପଦାକୁ ଆସିବ । ସେଇଠୁ ଅଗ୍ନି ଉତ୍ସବ । କ'ଣ ବୁଝିଲ ? ମୁଁ, ମୁଁ କ୍ୟାପ୍‌ଟେନ୍ କେବଳାନନ୍ଦ କହୁଛି ।

ରାଉତେ କହିଲେ, ମୋର ତିନିଶ ପଚିଶ ଟଙ୍କା ତମେ ଦେଇଦିଅ, ବସନ୍ତବାବୁ, ତମ ବା'ପାଙ୍କ କାଗଜରେ ଶୁଝ ପକାଇ ଫେରସ୍ତ ଦେବି ।

କିଛି କାଟିବ ନାହିଁ ? ବସନ୍ତ ପଚାରିଲେ ।

ରାଉତେ କହିଲେ, ହଉ, ପଚିଶ ଟଙ୍କା ଛାଡ଼ିଦେବି ।

କେବଳା କହିଲା, ସେ ଦୁଇଶ ଦେବେ । ଆଣ କାଗଜ । ଭଲରେ ଭଲରେ କାମ ସରୁ ।

ହେ ଟୋକା ! ତୁ ତ ହାରି କୁହାଳିଆ ହୋଇଛୁ । ସଂସାରରୁ ଆଇନ ଅଦାଲତ ଉଠିଯାଇନାହିଁ । କାଦୁଅ ଚକଟିବାକୁ ମୋର ମନ ହେଉ ନାହିଁ । ସେଇଥିପାଇଁ ମୁଁ କିଛି ଛାଡ଼ିଦେବାକୁ ମଙ୍ଗିଲି । ବସନ୍ତକେଶରୀ ବାବୁଙ୍କ ମୁହଁକୁ ଅନେଇ ଟଙ୍କା ଶହେଟି ମୁଁ ଛାଡ଼ିଦେଉଛି । ଏଇ ମୋର ଶେଷ କଥା । ଆଣ ଅଢ଼େଇଶ ।

ସେତିକିରେ କଥା ଛିଡ଼ିଲା ।

ହରମକେଶରୀ ଜମିର ଦଖଲ ନେଲା । ସଙ୍ଗରେ ଚନ୍ଦନା ଥିଲେ । ବାସନ୍ତୀ ଓ ଶୁଭକେଶରୀ ଜମି ଉପରକୁ ଯାଇଥିଲେ । ରଙ୍ଗୁଲି, ବେଙ୍ଗୁଲି, ହକଲା ଓ କେବଳା, କେତେ ଦେଖଣାହାରୀ, ଓଠଚଟା ଅଲେଖ ପାହ ହ ଥିଲେ । ବାଇଶି ଟୋକାର ଧମକରେ ହାରି, ମନ ଭିତରେ ଅନୁତାପ କରୁଥିବା ଭଜମ ରାଉତେ ସମସ୍ତଙ୍କ ଆଗରେ ଦଖଲ ଦେଉଥିଲେ ।

ମନଖୁସିରେ ଆଜ ସ୍ବରମିନାର ସିଗାରେଟ୍ ଖଣ୍ଡେ ଟାଣି ବନ୍ଧୁ ଯୁଆନ କେବଳାନନ୍ଦ ତାର ନେଳିଆ ନଳୀପ୍ୟାଣ୍ଟ ଉପରେ ନାଲି, କଳା ଓ ହଳଦିଆ ପଟିପଟିକା ହାତକଟା ହାଓ୍ବାଇନ୍ ପିନ୍ଧି ଆକାଶକୁ ଧୂଆଁ ଫୋପାଡ଼ି ରାଉତଙ୍କ ପାଖେ ପାଖେ ବୁଲୁଥିଲା । ବ୍ୟସ୍ତ ହୋଇ ମନକୁ ମନ କହୁହେଉଥିଲା, ରାଉତେ, ହରମଭାଇଙ୍କୁ ଅଡେଇଶ ଟଙ୍କା ଠକିନେଲ । ଖାତପୋତା ଖରଚ ଦୁଇଶ ତମକୁ ଦେବାକୁ ପଡ଼ିଥାନ୍ତା ।

ଭଜମ ରାଉତେ ନ ଶୁଣିଲା ପରିରେ ଜମି ଉପରୁ ଘରକୁ ବାହୁଡ଼ିଲେ ।

ବେଙ୍ଗୁଲୀର କାନରେ ସୁନାଫୁଲ ହଳକ ଚନ୍ଦନାଙ୍କ ଆଖିରେ ପଡ଼ିଲା । ମନ ଚହଁକିଉଠିଲା । କ'ଣ କହିବେ କହିବେ ହେଉଣୁ ସେ ଓଠ ଚିପିଦେଲେ !

ସଞ୍ଜ ପରେ ରଙ୍ଗୁଲୀ ନିଜେ ଯାଇ ନିବେଦିଲା, ବେଙ୍ଗୁଲୀର ଅକଲ ନାହିଁ ଗୋ ଅପା ସାଆନ୍ତାଣୀ ! ମୋ ହାତରେ ଫୁଲହଳକ ସେ ଦେଖିଥିଲା । କାହାର ସେ ଦରବ ସେ ବା ଜାଣନ୍ତା କିପରି ? ଏବ୍ଯାଏ ଜାଣିନାହିଁ । ଖାଲି ତାକୁ ମୁଁ କହିଲି, ଭଜମ ରାଉତଙ୍କ ଘରଣୀ ସତେଇଶି ଟଙ୍କାକୁ କିଣିଲେ । ମୁଁ ତ ଏଣେ ଆସିଲି, ସେ ଚଣ୍ଡାଳୁଣୀ ମୋ ପଛେ ପଛେ ଧାଇଁଗଲା ତାଙ୍କ ଘରକୁ । ତାଙ୍କୁ ତିନି ଟଙ୍କା ମୁନାଫା ଦେଇ ତିରିଶି ଟଙ୍କାକୁ ଫୁଲ

ଦଓଟି ମୁକୁଳାଇ ଲୁଚେଇ ରଖିଥିଲି । କେଇଦିନ ହେଲା ନାଇଚ୍ଛ । ସମ୍ବଲେଇ ସଡ କହ୍ନଲି । ମୁଁ ନିଜରେ ସହିଲି । କେମିତ ତମକୁ କହନ୍ତ ? ତା’ କାନରେ ସେତକ ଦେଖିଲେ ମନ ହଜନ୍ତ ହୁଏ । ହେଇଟି ନଅ ଅପା-ସାଆନ୍ତାଣୀ ! ଟଙ୍କା ତିରିଶିଟା ଦେଲେ ବେଙ୍ଗୁଲୀର ଧନ ତାକୁ ମୁଁ ଦେଇ-ଦେବ ।

ଚନ୍ଦନା ଥକ୍କା ହୋଇ ଶୁଣିଲେ । ରଙ୍ଗୁଲୀକୁ ସେ ଅବିଶ୍ୱାସ କଲେ ନାହିଁ । କାନଫୁଲ କାନରେ ଲଗାଇ ବେଙ୍ଗୁଲୀ ପାଇଁ ତିରିଶି ଉପରେ ଅଧିକ ପାଞ୍ଚ ଟଙ୍କା ରଙ୍ଗୁଲୀ ହାତରେ ଦେଲେ । କହ୍ନଲେ, ମନଟୁସିରେ ଯେଉଁ ଟଙ୍କା ପାଞ୍ଚଟା ତା’ପାଇଁ ଦେଉଚ୍ଛ, ରଙ୍ଗୁଲୀ ଭାଉଜ !

କେବଳା ଜାଣିଲେ ବେଙ୍ଗୁଲୀର ପ୍ରାଣ ଖାଇଦବ ।

ଏକା ଠାକୁରେ ଜାଣିବେ । ସ୍ୱର୍ଗପୁରରେ ମୋ ଶାଶୁ ଜାଣିବେ । ଆଉ କେହ୍ନ ଖବର ପାଇବେ ନହିଁ ।

କଥାରୁ ବଡ଼ ଆଞ୍ଜୁଳାଏ ରଙ୍ଗୁଲୀର କାନରେ ଅଜାଡ଼ି ଚନ୍ଦନା କହ୍ନଲେ, ଦେଖୁଛୁ ତ ରଙ୍ଗୁଲୀ, ବୁଢ଼ା ବୟସରେ ତମ ଭାଇ ବିଦେଶରେ ବୁଲିଲେ । ବିଜୟ ଯେ ନିର୍ମଯୁଁା ପିଲା । ହଳାଲ ପାଣିକୁ ହାତ ବଢ଼ାଇବ ନାହିଁ । କେବଳା ନ ଥିଲେ ସେ ଜମି ହାତକୁ ଆସି ନ ଥାନ୍ତା । ଭଜମା ବଉଡ କେତେ ଖେଳ ଖେଳଥାଆନ୍ତା । ନାକରେ ଦଉଡ଼ା ଦେଇ ଓଟାରୁଥାଆନ୍ତା । ସେ ଜମିର ତତ୍ତ୍ୱ ବକଳା ନ ନେଲେ କ’ଣ ପଡ଼ିଆ ପଡ଼ିବ ? ତାକୁ ତୁ କାଲି ମୋ ପାଖକୁ ନିଶ୍ଚେ ପଠାଇଦେବୁ ।

ରଙ୍ଗୁଲୀ ହିଁ ଭରିଲା ।

ବୀରକେଶରୀ ଯେଉଁମାନଙ୍କ ପାଖରୁ ପାଞ୍ଚ ତିନ ଧାରୁଥିଲେ, ସେମାନେ ତାଙ୍କର ପାଉଣା ପାଇଁ ବିଜୟ ପାଖକୁ ଧାଇଁଲେ ।

ବୀରକେଶରୀ କୌଣସି ତାଲିକା ରଖିନାହାନ୍ତି । ନ ଶୁଝିବାର ଫିକର ହୋଇପାରେ । ତେବେ ଚନ୍ଦନାଙ୍କୁ ଅଧିକାଂଶ ଜଣା ଥିଲା । ଅନୁପାବ ଟଙ୍କାରୁ ସୁଧ ସମେତ ହେତେକ ପରିଶୋଧ କହ୍ନଲେ । ବୀରକେଶରୀଙ୍କ ପାଖରୁ ଖବର

ମଗାଇ ବାକି ପାଉଣା ପରିଶୋଧ କରିବାର ନିର୍ଭର ଜବାବ ପାଇ ଅନ୍ୟମାନେ ବାହୁଡ଼ିଲେ । ସେମାନଙ୍କ ମନରେ ପଡ଼ିଆସି ହେଲା ଯେ, ବିକ୍ରମକେଶରୀ ସଚ୍ଚୋଟ ଲୋକ, ପାଉଣା ବୁଡ଼ିବ ନାହିଁ ।

କଥାରେ ଅଛି, ଠାକୁର ଦୟା କଲେ ଛପର ଫାଡ଼ି ଧନ ଅଜାଡ଼ି-ଦିଅନ୍ତି । ଏତେଦିନ ପରେ ମାମୁଁ ଆନନ୍ଦଚନ୍ଦ୍ର ମନିଅର୍ଡ଼ର କରି ଟଙ୍କା ଦୁଇଶ ପଠାଇଛନ୍ତି । କୁପନ୍‌ରେ ଲେଖିଛନ୍ତି— ଘରେ ତ ଆସିଲୁ ନାହିଁ, ଚିଠି ଖଣ୍ଡେ ବି ଦେଲୁ ନାହିଁ । ତୋ ମାଈଁ କହିଲେ, କ'ଣ ଅସୁବିଧା ଥିବ, ଏତିକି ପଠାଇଦିଅ । ଅପ'ଙ୍କୁ ଆମର ପ୍ରଣାମ । ତୁ କଲ୍ୟାଣ ନେବୁ—

ଅଭିମାନ କରି ଟଙ୍କା ଫେରସ୍ତ ଦେଲେ, ସମ୍ବନ୍ଧ ଠିକ୍ କରି ଛୁଡ଼ି-ଯିବ । କାହା ଉପରେ ଅଭିମାନ, କାହିଁକି ସେ ଅଭିମାନ ! ଏହାର ଉତ୍ତର ଦେଇହେବ ନାହିଁ । ଚନ୍ଦନାଙ୍କୁ କଅଣ ସେ ମନର କଥା କହିପାରିବ ? ବୋଉ ଲୋ ! ଯେଉଁ ଅନୁପାର ଦାନ ତମ ସମସ୍ତଙ୍କୁ ଆଜି ଋଣମୁକ୍ତ କରି-ପାରିଛି, ଯାହାର ଲୁନ୍ଦରୂପ, ମନକଣା ଗୁହାଣି, ଆଖି ଲାଖିଲା ଚଳଣି, ମିଠା ମିଠା ସ୍ନେହବୋଳା କଥା ଅଜଯାଏ ତୋ ଭୁଣ୍ଡରେ ବସା ବାନ୍ଧିଛି, ଯାହାକୁ ବୋଧ କରିବାର ଆଶା ନୁହେଁ, ଅଣଅଟକା ମମତା କେତେଥର ତୋ ଭାଷାରୁ ଝରିପଡ଼ିଛି, ତାର ନିଷ୍କଳଙ୍କ ଆଖି ଦିଓଟିର ଉଜ୍ଜ୍ୱଳ ନକ୍ଷତ୍ର ଦିଓଟିକୁ ଛୁଇଁବାର ସାହସ ତୋର ହତଭାଗ୍ୟ ପୁଅର ନାହିଁ ।

ସେ ମୂକ ହେବାକୁ ବାଧ୍ୟ ହେଉଛି ।

ବିକ୍ରମ ମନିଅର୍ଡ଼ର ରଖିଲା । ମାମୁଁ ଆନନ୍ଦଙ୍କ ପାଖକୁ କଅଣ ଲେଖି ସେ କୃତଜ୍ଞତା ଜଣାଇବ, ତାହା ବିଚାରୁଥିଲା । ଦୁଇ ଦିନ ପରେ ସେ ଇନ୍ଦିରାଙ୍କ ପାଖରୁ ପତ୍ର ଖଣ୍ଡିଏ ପାଇଲା ।

—ତମେ ଆମକୁ ଏକାଥରେ ସାତପର କରିଦେଲ, ବିକି ! କଅଣ ଆମର ଅପରାଧ କେବଳ ତମକୁ ଜଣା । ଔଷଧ ଦୋକାନ ଖୋଲା ହେଲାଣି । ଭଲ ଗୁମାସ୍ତା ଜଣେ ଶହେ ଟଙ୍କା ଦରମାରେ ରଖିଛୁ । ସେ ମାଟ୍ରିକ ପାସ୍ । କାମିକା ପିଲା ।

—ବେପାର ଭଲରେ ଚାଲିଛି । ବାଜରବନ୍ଧୁ ବିଶ୍ୱାସୀ ଗୁମାସ୍ତାଟିଏ ଦେଇଛି । ଶିବଚରଣଙ୍କ ସ୍ତ୍ରୀ ନାରାୟଣୀ ଜେମାମଣିଙ୍କର ସେ ମାଉସୀ ପୁଅ ଭାଇ । ସରପଞ୍ଚ ହୋଇ ଶିବଚରଣ ଭଲ ଧନ ଜୋଗାଡ଼ କରିଥିଲେ । ବାଜରଆଠାରୁ ଟଙ୍କା ଦି'ହଜାର ନେଇ ସେ ହାଡ଼ବନ୍ଧୁ ସମ୍ପୃକ୍ତଙ୍କର ପୁରୁଣା ଦଖଲ ଜମି ଉପରେ ନା-ଦାବୀ ଲେଖିଦେଲେ ।

—କଟକରେ ଶିବଚରଣ ଗୋଟିଏ ଟ୍ରଙ୍କ୍ କାରଖାନା ଖୋଲିଲେଣି । ଏଣିକି ସମସ୍ତେ ବେପାରରେ ମନ ଦେଲେଣି । ମାଷ୍ଟରୀ ଚାକିରି କରି କ ରୋଜଗାର କରିବ ? ତମେ କାଳେ ଅସୁବିଧାରେ ଥିବ, ସେଇଥି ପାଇଁ ଟଙ୍କା ଦୁଇଶ ପଠାଇଲି । ବୋଉକୁ ଦେବ ।

—ମନ ହେଲେ କେବେ ଆସିବ । ଏ ସଂସାରରେ କାହା ବିନା ଆଉ କାହାର କେଉଁ କାମ ଅଟକି ରହେ ନାହିଁ, ବାବା ! ଲୁଚିଲି ପୁଅ ଉପାସରେ ଶୁଏ । ମୂଲିଆ ମାନ କଲେ ନିଜ ପେଟକୁ ହାନି କରେ ।—

ମାଉସୀ ମାରିଲି ପରି ଚିଠି ।

ବିକ୍ରମ ଭାବିଲା, ଟଙ୍କା ଦୁଇଶ ସେ ଫେରାଇଦେବ, କିନ୍ତୁ ସେ ଟଙ୍କା ବୋଉଙ୍କୁ ଦେଇସାରିଛି । ମାଗିଲେ ସେ କଅଣ କହିବେ ? ସେ ଆଗ ଚିଠି ପଢ଼ନ୍ତୁ ।

ଚନ୍ଦନା ଚିଠି ପଢ଼ି ଖୁସି ହେଲେ । ବିକ୍ରମର ଗମ୍ଭୀର ମୁହଁ ଦେଖି ତା ମନର ଦ୍ୱିଧାଭାବ ବୁଝିଲା ପରି କହିଲେ, ଆରେ ବାପ ! ଶୁଖିଲା କାଠରୁ ଯେବେ ରସ ବହୁଛି ସେତିକି ଆମର ଭାଗ୍ୟର କଥା । ମା' ଠାକୁରାଣୀଙ୍କର ଦୟା । ଆନନ୍ଦ ମୋର ମା ପେଟର ସାନ ଭାଇ । ମନ ଛଟକିବା ନାହିଁ ? କେତେ ସତ କଥା ତୋ ମାଉସୀ ଶେଷରେ ଲେଖିଛି ରେ, ମନେ ରଖିଥା ।

ବିକ୍ରମ ଇନ୍ଦ୍ରାଙ୍କ ଚିଠିର ଉତ୍ତର ଦେଲା—ତମର ଅପାର କରୁଣା ପାଖରେ ମୁଁ ମୁଣ୍ଡ ନୁଆଁଉଛି, ମାଉସୀ ! ପେଟ ପାଟଣାର ବ୍ୟବସ୍ଥା କରିବାରେ

ବ୍ୟସ୍ତ ଥାଇ ମୁଁ କଟକ ଯାଇପାରିନାହିଁ । ବ୍ୟବସ୍ଥା କରି ସାରିଛି । ଯେତିକି ମୂଲ ମତେ ମିଳୁଛି, ସେତିକିରେ ଆମ ଦୁଇଜଣଙ୍କର ଚୋକ ଚଳିବାରେ ଅସୁବିଧା ହେଉ ନାହିଁ । ଅଧିକ ଉଚ୍ଚାଶା ମୋର ନାହିଁ । ବେଳ ମିଳିଲେ ତମର ଓ ମାମୁଁଙ୍କର ଚରଣଧୂଳି ମୁଣ୍ଡରେ ମାରିବାକୁ ମୁଁ ନିଶ୍ଚୟ ଯିବି ।—

ଯାଇଥିଲା । ଏକା ନୁହେଁ, ଚନ୍ଦନା ବି ସଙ୍ଗରେ ଯାଇଥିଲେ । ପଛେ ପଛେ ଗୋଡ଼ାଇପାଇଥିଲା ଅତି କୃତଜ୍ଞ କେବଳାନନ୍ଦ । ବିକ୍ରମର ପରାମର୍ଶ ମାନି ଦିନରାତି ପାଠ ପଢ଼ି, ସମସ୍ତଙ୍କୁ ଅବାକ୍ କରି ସେ ଦ୍ୱିତୀୟ ଶ୍ରେଣୀରେ ମାଟ୍ରିକୁଲେସନ ପରୀକ୍ଷାରେ ପାସ୍ କରିଥିଲା । କଟକ ଅବା ଭୁବନେଶ୍ୱରର କେଉଁ କଲେଜରେ ନାମ ଲେଖାଇ ଅଧିକ ପଢ଼ିବାକୁ ସେ ମନସ୍ଥ କରିଥିଲା ।

କେବଳାନନ୍ଦ ଗୋଟିଏ ରାତି ରହି ପରଦିନ ଭୁବନେଶ୍ୱର ଫେରିଗଲା ।

ବିକ୍ରମ ଓ ତାର ମା ଦୁଇଦିନ ରହିଯାଇଥିଲେ । ଚନ୍ଦନା ପିଲା-ମାନଙ୍କ ପାଇଁ ନେଇଯାଇଥିଲେ ଫେଣୀ, ମିଠେଇ, ଜାତିଜାତିକା ବଡ଼ି, ବାରିର ମକା, କାକୁଡ଼ି ଓ ଆତଫଳ । ବିକ୍ରମର ନେବାକୁ କିଛି ନ ଥିଲା ।

ସ୍ନେହ ସମ୍ମାନ ଦେଖାଇବାରେ ଇନ୍ଦିରା ଉଣା କରି ନ ଥିଲେ । ଚନ୍ଦନାଙ୍କୁ ତାଙ୍କର ବଡ଼ଘରିଆଣି ରୂପ ଦେଖାଇ ବିସ୍ମିତ କରିଥିଲେ । ନିଜର ସୌଭାଗ୍ୟ ପାଇଁ ମନେ ମନେ ଆତ୍ମଗୌରବ ଲାଭ କରିଥିଲେ ।

ଆନନ୍ଦଚନ୍ଦ୍ର ତାଙ୍କର ନିଜ କାମରେ ବ୍ୟସ୍ତ ରହୁଥିଲେ । ଦାଣ୍ଡର ବୈଠକଘରେ ସବୁବେଳେ ଭିଡ଼ ଜମିଥିଲା । ସାମ୍ନାର ବାଟରେ କେତେ ମଟରଗାଡ଼ି ଠିଆହେଉଥିଲା । ବଡ଼ବଡ଼ିଆ ଲୋକେ ଆସୁଥିଲେ, ହସଖୁସିରେ ବିସ୍କୁଟ ଖାଇ ଚା ଶୋଷି ବିଦାୟ ନେଉଥିଲେ । ଟେଲିଫୋନ୍ ରିଙ୍ଗରିଙ୍ଗିକା ଝଣ ଝଣ ଶବ୍ଦ କରୁଥିଲା ।

ବଡ଼ଲୋକଙ୍କର ମେଳ । ସାଧାରଣ ଲୋକେ ତାର ଅନ୍ତ କଳନା କରିପାରିବେ ନାହିଁ ।

ଦିନ ଦିଓଟି ରହଣି କାଳରେ ଆନନ୍ଦଙ୍କ ସଙ୍ଗେ ବିକ୍ରମର ଦୁଇଥର ଦେଖା । କେମିତି ଅଛୁ, ମାଷ୍ଟରୀ କାମ କିପରି ଚାଲିଛି, ପିଲାଗୁଡ଼ାକ ପାଠ ପଢ଼ୁଛନ୍ତି, ନା ରାଜନୀତି କରୁଛନ୍ତି, ଏମିତି ଉପରଠାଉରିଆ କେତେ ପ୍ରଶ୍ନ ସେ ଅନ୍ୟମନସ୍କ ଭାବରେ ପଚାରିଥିଲେ । ଉତ୍ତର ଶୁଣିବାରେ ଆଗ୍ରହୀ ନ ଥିଲେ । ବାରମ୍ବାର ଟେଲିଫୋନ୍ ଉଠାଇ କେଉଁମାନଙ୍କ ସଙ୍ଗେ କଥାଭାଷା ହେଉଥିଲେ । ଠାର ଭାଷା ।

ଆନନ୍ଦଚନ୍ଦ୍ର ଗୋଲ୍ ବୁଲିଆସୁଛନ୍ତି । ତାଙ୍କର ମୁହଁଟି ଚନ୍ଦ୍ରବଦନିଆ ହୋଇଆସୁଛି । ପେଟଟି ଆଟିକା ପରି ଗୋଲାକୃତି ଧରିଲାଣି । ଭିଲକର ମନଖୋଲା ସଶବ୍ଦରେ ହସିପାରୁନାହାନ୍ତି । ଚାଲିଲାବେଳେ ତେକାଚଢ଼ିଧୂଆ ଭଳି । ତାଙ୍କର ବନ୍ଧୁମାନେ—ସମୁଦ୍ର ଡାଉ଼ବନ୍ଧୁ, ପଦ୍ମମଳ, ରାମକୁମାର ଓ ରୂକରନ୍ତୁ ଚଉ଼ାଖିଆ ବଲିଚର ମଦୁଚଖା, ସେକାଳ ହାକମ ଏକାଳ ଖଣିମାଲିକ କମଳକୃଷ୍ଣ ସମସ୍ତେ ଗୋଲ୍ ବୁଲିଆସିଲେଣି । ସମସ୍ତଙ୍କୁ ବିକ୍ରମ ଦେଖିଥିଲା, ମୁଣ୍ଡ ନୋଇଁ ନମସ୍କାର କରିଥିଲା । ଚନ୍ଦ୍ରିକା-ହସର ଟିକିଏ ଟିକିଏ ଝଲକ ପାଇଥିଲା ।

ସେମାନେ ଉଦ୍‌ଯୋଗୀ ପୁରୁଷ । ଲକ୍ଷ୍ମୀଠାକୁରାଣୀ ତାଙ୍କର ପଛେ ପଛେ ଗୋଡ଼ାଇଛନ୍ତି । ସମସ୍ତଙ୍କର କାନ୍ଥରେ ଶ୍ରୀମାଙ୍କର ରଙ୍ଗିନ ଛବି ଝୁଲୁଥିବ । ଯୁଆଡ଼ୁ ଦେଖିଲେ ସେ ଛବିର ଆଖି ଦିଓଟି ସମସ୍ତଙ୍କୁ ଚାହିଁ ଆଶୀର୍ବାଦ କରୁଥିବ । ସମସ୍ତଙ୍କ ଘରେ ସତ୍ୟସାଇଁ ବାବାଙ୍କର ଫଟୋ ଟଙ୍ଗା ହୋଇଥିବ । ସେଥିରୁ ବିଭୂତି ଝରୁଥିବ ।

ଅପାରଗ ବିକ୍ରମ ଭାବଥିଲା, ବୋଧହୁଏ ତାର ଅଣାୟତ୍ତରେ ସେ ଈର୍ଷାପରାୟଣ ହୋଇ, ଏପରି ବିଚାରୁଥିଲା । କିନ୍ତୁ କାହାରି ପ୍ରତି ତା'ର ବିବେକ-ଶାଣିତ ମନରେ ଈର୍ଷା ନାହିଁ । ସେ ଧନୀ ହେବାକୁ ଚାହେଁ ନାହିଁ । ସେ ଜଣେ ସାଧାରଣ ନାଗରିକର ସରଳ ନିଷ୍ପାପ ଜୀବନ ଚାହେଁ । ଛୁଦ୍ରଜୀବନର ଅନ୍ତରଙ୍ଗ

ବନ୍ଧୁ ବାଜଶବନ୍ଧୁ ପରି ସେ ନଜର ଦୌଲତର ଗର୍ବରେ ମଣିଷ ନ ଚହ୍ନା ହେବାକୁ ଆଗ୍ରହୀ ନୁହେଁ । ନଜର ବ୍ୟାବସାୟିକ ବୁଦ୍ଧିରେ ସେ ବଳଆର । ପ୍ରଥମ ଦିନ ସନ୍ଧ୍ୟାରେ ତା’ ସଙ୍ଗରେ ଦେଖାହୋଇଥିଲା । ନଜର ମଟରଗାଡ଼ିରୁ ଓହ୍ଲାଇ ତାର ବୋଉଙ୍କ ସଙ୍ଗରେ ସେ ଘରଭିତରକୁ ପଶିଆସିଲା ।

ସେ ବି ସ୍ୱାସ୍ଥ୍ୟବାନ୍ ହୋଇସାରିଛି । ମୂଲ୍ୟବାନ ପାଉଁଶିଆ ରଙ୍ଗର ଦେହଚର୍ମ ଟେରିଲିନ୍ କନାର ଚପା ପଟଲୁନ୍ ପିନ୍ଧିଛି । ଈଷତ୍ ହଳଦିଆ ରଙ୍ଗର ଟେରେଲିନ କନାର ଅଧାହାତ ହାଉ୍‌ାଇନ୍-ଆବୃତ ବିଶାଳ ନିତମ୍ବ ଦୁଇଟିର ଭାରସାମ୍ୟ ରକ୍ଷା କରୁଛି ୦-୦।ଣି ଜଠର । ଗୋଲିଆ ମୁହଁରେ ଗେଣ୍ଡାଳିଆ ନାକ । ମାଂସଳ ମୁହଁର ଆଖିଯୋଡ଼ିକ ଛୋଟ ଛୋଟ ଦିଶୁଛି । ପ୍ରଜାପତିଆ ଘଞ୍ଚ ନିଶ ଶ୍ୟାମଳ ମୁହଁକୁ ବିକୃତ କରିଛି ।

ତା’ର ବୋଉ ଯୂଥିକା ଯେପରି ପୁରୁଣାକାଳିଆ ଥିଲେ, ସେହିପରି ଅଛନ୍ତି । ସ୍ୱାସ୍ଥ୍ୟ ବଦଳିନାହିଁ । ମେଘୁଆ ରଙ୍ଗର ଖଣ୍ଡେ ଶାଢ଼ୀ ପିନ୍ଧିଛନ୍ତି । ସର୍ବାଙ୍ଗରେ ସୁନା ଗହଣା । ଟଳିଲା ପରି ଚାଲୁଛନ୍ତି ।

ସେମାନଙ୍କୁ ଦେଖି ଇନ୍ଦିରା ପଲଙ୍କ ଉପରୁ ଉଠିଆସିଲେ । ଯୂଥିକାଙ୍କର ହାତ ଧରି ଘରଭିତରକୁ ନେଲେ । ଆନନ୍ଦରେ କୁରୁଳିଉଠି ସେ କହିଲେ, ଅପୁରୁବ କୁଆଡ଼େ ଆସିଲେ ? ତୁ ଆ ବାଉଶି, ଏଇଠି ଏଇ ପଲଙ୍କ ଉପରେ ବସ ।

ବାଉଶିବନ୍ଧୁର ମୁହଁକୁ ଚାହିଁ ବିକ୍ରମ ପଲଙ୍କ ଉପରୁ ଉଠି ଚାଳେ ଠିଆହେଲା । ମୁଣ୍ଡ ହଲାଇ ମୃଦୁକ ହସି ସ୍ୱାଗତ ଜଣାଇଲା । ଯୂଥିକାଙ୍କୁ ମୁଣ୍ଡ ନୋଇଁ ପ୍ରଣାମ କଲା ।

ଯୂଥିକା ହସ ହସ ହୋଇ କୁଶଳ ପ୍ରଶ୍ନ ପଚାରିଲେ, ଭଲ ଅଛ, ପୁଅ ? କେଉଁଠି ପରା ମାଷ୍ଟରୀ ଚାକିରି କରୁଛ ? ବାପାବୋଉ ଭଲ ଅଛନ୍ତି ?

ବିକ୍ରମ କହିଲା, ହଁ ମାଉସୀ ! ବୋଉ ମୋ ସଙ୍ଗରେ ଆସିଛନ୍ତି ।

ସତେ କି ବାପ ? ସେ କାହାନ୍ତି ?

ବୋଧହୁଏ ଉପରେ ପିଲାମାନଙ୍କ ପାଖରେ ଅଛନ୍ତି ।

ମୋ ଭାଗ୍ୟ ! ଆଜି ତାଙ୍କ ସଙ୍ଗେ ଦେଖାହେବ ।

ବାଉରିବନ୍ଧୁ ପଲଙ୍କ ଉପରେ ବସିଲା । କଟମଟ କରି ହରମର ଗୋଡ଼ରୁ ମୁଣ୍ଡଯାଏ ବାରମ୍ବାର ଚାହିଁଲା ।

ହରମ ଅଳ୍ପ ଦାମର ଧୋବ ଲୁଗା ପିନ୍ଧିଥାଏ । ଦେହରେ ଗଞ୍ଜି ଉପରେ ଧୋବ କନାର ପୂରାହାତ କାମିଜ । ଦରିଦ୍ର ପୋଷାକ, କିନ୍ତୁ ଉଜ୍ଜ୍ୱଳ ଶ୍ୟାମଳ ଦେହର ଭରପୂର ସ୍ୱାସ୍ଥ୍ୟ ତାର ଦାରିଦ୍ର୍ୟକୁ ଫୁ କରିଥିଲା । ଦୁ-ପାଖିଆ ଝୋଟ ଝୋଟ କେଶର ଫେରି । ଚଉଡ଼ା କପାଳ ତଳେ ଘଞ୍ଚ ଧନୁଆ ଭ୍ରୂଲତା । ନିର୍ଭୀକ ନିର୍ମଳ ଆଖି । ସୁ-ଉଚ୍ଚ ନାସିକା ତଳେ ଚୂନା ଚୂନା କେଶର ବହଳ ନିଶ ।

ବାଉରିବନ୍ଧୁ ଦେଖୁଥିଲା—ହରମକେଶରୀ ମଣିଷ ପରି ମଣିଷଟିଏ । ଅବିକଳ ସେ ଆନନ୍ଦଚନ୍ଦ୍ରଙ୍କର ଟୋକାଳିଆ ପ୍ରତିରୂପ ! ଧନଗର୍ବରେ ଗର୍ବିତ ତା'ର ମନକୁ ବନ୍ଧୁ ହରମକେଶରୀର ଗ୍ଳାନିହୀନ ବେଶ ଆଶ୍ୱାସନା ଦେଉଥିଲା ପରା !

ଦୟାର ପାତ୍ର ହୋଇ, ଶରଣାଗତ ହୋଇ, ଦିନେ ଯିଏ ତାଙ୍କର ଘରେ ଆଶ୍ରା ନେଇଥିଲା ସେହି କରଛଡ଼ାଦିଆ ନିଜ ଗୋଡରେ ଦମ୍ଭ ହୋଇ ଠିଆହୋଇଥିବା ଭଣଜାର ସୁନ୍ଦର ବଳିଷ୍ଠ ରୂପକୁ ଇନ୍ଦିରା ମଧ୍ୟ ଚାହିଁରହି-ଥିଲେ ।

ହରମ ବାଉରିବନ୍ଧୁର ମୁହଁକୁ ହସ ହସ ହୋଇ ଚାହିଁ ପଚାରିଲା, ଚିହ୍ନିପାରୁନ କି ବାଉରି ?

ତା'ର ମୁହଁ କର୍କଶ ଦିଶିଲା । ଗେଣ୍ଡାନାକର ପୁଡ଼ା ଫୁଲାଇ ସେ ଉତ୍ତର ଦେଲା, ନ ଚିହ୍ନିବାର କାରଣ ନାହିଁ । ତେବେ, ମଣିଷ ବଡ଼ ଶୀଘ୍ର ବଦଳିଯାଏ । ନୁହେଁ କି ?

ବାଉରିବନ୍ଧୁ ଇନ୍ଦିରାଙ୍କ ଆଡ଼କୁ ମୁହଁ ବୁଲାଇ କହିଲା, ମୁଁ ଏବେ ଭୁବନେଶ୍ୱରରୁ ଫେରୁଛି, ମାଉସୀ ! ବାଣୀବିହାରରୁ ଦେଖିଆସିଲି, ଅନୁପା

ପ୍ରଥମ ଶ୍ରେଣୀରେ ପି: ୟୁ: ପାସ୍ କରିଛି ! ଆଜି ଖବରକାଗଜରେ ଫଳ ବାହାରିପାରେ । ଆଗତୁରା ଖବର ଦେବାକୁ ଆସିଛି ।

ଆନନ୍ଦରେ ଅଧୀର ହୋଇ ବସନ୍ତ କହିଉଠିଲା, ସତେ, ବାଃ !

ଇନ୍ଦିରା କହିଲେ, ସେ ପାଠ ପଢ଼ୁ ନ ଥିଲା ମ ସମ୍ଭୁଦୁଣୀ, ଜାଣ ସେ ତପସ୍ୟା କରୁଥିଲା । ମାଷ୍ଟର ରଖିବାକୁ ମନାକରିଦେଲା । ସେ ଭଲ ତ ତା ପାଠ ଭଲ । ଦେଖୁନ କ ସିଏ ସେ ହେଲଣି ! ଖିଆପିଆରେ ଆଗ୍ରହ ନାହିଁ । ବେଶଭୂଷାରେ ସ୍ନେହ ନାହିଁ । ଆଗ ମନଖୁସିରେ ଭଞ୍ଜଜୟନ୍ତୀ, କୁମାରଉତ୍ସବ, ବୋଇତବନ୍ଦାଣ, ଜୟଦେବ ସମାରୋହ, ସ୍କୁଲରେ ତାଙ୍କର ନାଟକ ଅଭିନୟରେ ନାଚୁଥିଲା ସେ ସୁନା, ରୁପାର ପଦକ ବୃଷ୍ଟି ହେଉଥିଲା । ଏବେ ଡାକଲେ ମନା କରିଦେଉଛି । ବାଧ କଲେ ହାଣକୁ ଟାଣିଲାପରି ଯାଉଛି । ପାଠ, ଖାଲି ପାଠ ।

ବସନ୍ତର ମୁହଁକୁ ଅନାଇଁ ଚାଞ୍ଚଲ୍ୟଭରା ଦୃଷ୍ଟି ଓ ଭଙ୍ଗୀରେ ପୁଣି କହିଲେ, କାହା ଧନ କାହାର କାମ ଅଟକିଯାଏ ନାହିଁ, ସମ୍ଭୁଦୁଣୀ ! ଖାଲି କଥା କାଳକାଳକୁ ରହିଯାଏ । ଅନୁପା ଆମର ଟେକ ରଖିଛି ।

ଯୂଥିକା ପଲଙ୍କରେ ନ ବସି ଖଣ୍ଡେ ସୋଫାଲଗା ଷ୍ଟିଲ୍ ଚେୟାରରେ ବସିଥିଲେ । କହିଲେ, ଆଉ କ ପାଠ ? ଆଉ କ ନାଚ ତାମସା ?

ଇନ୍ଦିରା କହିଲେ, ତମ ବୋଉକୁ ଡାକିଦିଅ ଟିକେ, ସମ୍ଭୁଦୁଣୀଙ୍କ ସଙ୍ଗେ ପରିଚିତ ହେବେ ।

ବସନ୍ତ ବୁଝିଲା, ସେମାନଙ୍କର ଏବେଇ କଥାଭାଷା ତା ପରି ଜଣେ ବାହାରର ଲୋକକୁ ଶୁଣାଇ ନ ଦେବାକୁ ମାଈଁ ତାକୁ ଦୂରେଇଦେବାକୁ ଚାହାନ୍ତି । ସେ ନୀରବରେ ପଦାକୁ ବାହାରିଆସିଲା । ତା'ର ମନରେ ମାନାଭିମାନ ନ ଥିଲା । ଖାଲି ଭାବୁଥିଲା, ତା'ର ମାଈଁ ତାକୁ ବାକ୍ୟରେ ଚେଷ୍ଟା ଇ ଚେତାଇଦେଲେ ଯେ, ସେମାନଙ୍କଠାରେ ଆଉ ତାଙ୍କର ପ୍ରୟୋଜନ ନାହିଁ । ସେମାନେ ଅଲୋଡ଼ା ମଣିଷ ।

ଉପର ମହଲାର ସିଡ଼ିପାଖ ସେହି ପଢ଼ାଘରେ । ଅନ୍ଧାରର କେତେ ଶୋଇଲା ସ୍ମୃତି ଚେଇଁଉଠୁଛି । ବସନ୍ତ ଅନୁପାକୁ ସୁସମ୍ବାଦଟି ପ୍ରଥମେ ଜଣାଇଦେଲା । ଅନୁପା ମୁଣ୍ଡ ତଳେ ଲଗାଇ ବସନ୍ତକୁ ପ୍ରଣାମ କଲା । ତା' ଦେଖାଦେଖି ନିରୁପା । ଭଉଣୀ ଦୁହେଁ ପଲଙ୍କ ଉପରେ ବସି ତଳକୁ ଗୋଡ଼ ଲମ୍ବାଇଥିଲେ । ପାଖ ଟେବୁଲକୁ ଅଳପ ଘୁଞ୍ଚି ଗୋଟିଏ ଚେୟାରରେ ବସନ୍ତ ବସିଲା । ସାନନ୍ଦକୁ କାଖ କରି ଚନ୍ଦନା ଯାଇଥିବାକୁ ଭେଟିବାକୁ ତଳକୁ ଓହ୍ଲାଇଗଲେ । ତାଙ୍କର ହାତ ଧରି, ବାଉରିବନ୍ଧୁଙ୍କର ଆହ୍ଲାଦ ପାଇବାକୁ ଓ ଚକଲେଟ୍ ଆଦାୟ କରିବାକୁ ଇନ୍ଦ୍ରାଙ୍କର ଗେହ୍ଲାଝିଅ ସୁରୂପା ମଧ୍ୟ ଚାଲିଯାଇଥିଲା ।

ଟିଉବ୍ ଲାଇଟରେ ପ୍ରକୋଷ୍ଠଟି ଦିନ ପରି ଉଜ୍ଜ୍ୱଳ ଦିଶୁଥିଲା । ବିଜୁଳି ପଙ୍ଖା ନିଃଶବ୍ଦରେ ଧୀରେ ଧୀରେ ଘୂରୁଥିଲା । ସୁଖବରଟି ଜଣାଇ ଉତ୍ତର ଅପେକ୍ଷାରେ ହସହସ ବସନ୍ତ ଅନୁପାର ଆଖି ଦିଓଟିକୁ ଚାହିଁ ରହିଥିଲା ।

ତା'ର ଦୃଷ୍ଟି ବସନ୍ତକୁ କ'ଣ ପଚାରୁଥିଲା, ଅବା କହୁଥିଲା, କଳନା କରିବାକୁ ବସନ୍ତ ଚେଷ୍ଟା କରୁଥିଲା । କାଲି ଓ ଆଜି ଭିତରେ ବ୍ୟବଧାନ ମୋଟେ ଗୋଟିଏ ବରଷ । କିନ୍ତୁ ଯେଉଁ ପରିବର୍ତ୍ତନ ସେ ଦେଖୁଛି ଓ ଅନୁଭବ କରୁଛି, ତାକୁ ମାପି ସ୍ଥିର କରିବା ସମ୍ଭବ ନୁହେଁ ।

ଅନୁପା ଦୁର୍ବଳ ହୋଇଛି । ତା'ର ମୁହଁରେ ଗାମ୍ଭୀର୍ଯ୍ୟର ଭାବ । କାନରେ ଝୁଲୁଛି ଦିଓଟି ଅଶୋକଚକ୍ର । ମଥିରେ ଶଙ୍ଖ । ଚକ୍ରତଳେ ମୋତି ଝରର ଓଲଟ ତ୍ରିଭୁଜ । ପାଣିଚିଆ ଗୋଲାପୀ ରଙ୍ଗର ଶାଢ଼ୀ ଖଣ୍ଡିଏ ସେ ପିନ୍ଧିଛି । ସେହି ରଙ୍ଗର ବ୍ଲାଉଜ । ବେକରୁ ଝୁଲୁଛି ସୁନାର ଚେନ୍ । ଛାତିର ଶାଢ଼ୀ ଉପରେ ଦୋହଲୁଛି, ଝଟକୁଛି ଧଳା ପଥରବସା ବଡ଼ ଅଶୋକଚକ୍ରର ପଦକ । ହାତରେ ଦି ଦି ପଟି ସୁନାର କାଚ ।

ଚଉଦ ବର୍ଷର ଝିଅ ନିରୁପାର ସ୍ୱାସ୍ଥ୍ୟର ଉନ୍ନତି ଘଟିଛି । ସେ ମୋଟା ହୋଇଛି । ପାଉଡର ମଖା ଗାଲ ଦିଓଟି ଫୁଲକା ହେଲାଣି । ଆଖିରେ

କଳକ । ଧୋବ ଫରଫର ସାଲଓ୍ୱାର ଉପରେ ସେହି ଗୋଲାପୀ ରଙ୍ଗର ପଞ୍ଜାବୀ । ଅନୁପା ସତ୍ୟଶ ଅଳଙ୍କାର ।

ସେ ବଢ଼େଇଁ ଗେଲ ଦେବାକୁ ଧାଇଁ ଆସୁନାହାନ୍ତି । ଦେହରେ ଅଜାଡ଼ିହୋଇ ପଡ଼ୁନାହାନ୍ତି । ନିଜେ ବିଷମ ବି ସେମାନଙ୍କର ହାତ ଧରି ପାଖକୁ ଆଣିପାରୁନାହିଁ ।

ଅନୁପାର ହୋଇ ନିରୁପା ଉତ୍ତର ଦେଲା, ଅପା ଆଉ ଅଧିକ ପଢ଼ୁ, ସେମାନେ ଏହା ଚାହୁଁ ନାହାନ୍ତି, ବକଭାଇ ! ସେଥିପାଇଁ ଅପାର ମନରେ ଦୁଃଖ ।

ସେମାନେ କିଏ ?

ମଉସା, ମାଉସୀ, ବାଉଳଭାଇ ।

ମାମୁଁ କ'ଣ କହୁଛନ୍ତି ?

ସେ କ'ଣ କହିବେ ? ବୋଉ ଯାହା କହିବ ସେଇଆ । ବୋଉ କହୁଛି, ଅନୁପା ତ ଚାକିରି କରିବ ନାହିଁ, ବେଶୀ ପାଠ କାହିଁକି ପଢ଼ିବ ?

ହୁଁ ।

ବକଭାଇ, ତମେ ଯଦି ବୋଉକୁ କହିବ, ଅପାକୁ ଅଧିକ ପଢ଼ାଇବାକୁ ସେ ମଙ୍ଗିବ ।

ମୁଁ କହିବି ?

ଅନୁପା ଉତ୍ତର ଦେଲା, ନା । ମୋ ପଢ଼ା ବିଷୟରେ ତମେ ବୋଉକୁ କିଛି କହିବ ନାହିଁ । ତମର କି ଥାଏ ? ପଢ଼ିଲେ ମୁଁ ପଢ଼ିବି, ନ ପଢ଼ିଲେ ନାହିଁ । ବୋଉର କଥା ତମେ ରଖିନାହଁ, ତମର କଥା ସେ ରଖିବ ନାହିଁ ।

ସତ ।

ଅନୁପା ପଚାରିଲା, ତମେ କେବେ ଡେପୁଟି ହେଉଛ ?

ମୁଁ ପରୀକ୍ଷା ଦେଇନାହିଁ । ସେଥିପାଇଁ ପଢ଼ାପଢ଼ି କରିବାକୁ ବେଳ ପାଇନାହିଁ । ଘରକାମ ଓ ମାଷ୍ଟରୀ କାମରେ ମୋର ବେଳ କଟୁଛି ।

ଏମ୍. ଏ. ?

ସୁବିଧା ମିଳିଲେ ପଢ଼ିବି । ଅବସ୍ଥା ସୁଧୁରୁ । ପୁଣି ବାପାଙ୍କର ଦେହ ଖରାପ ହେଲାଣି ବୋଲି ସେ ଲେଖିଥିଲେ । ବୋଉଙ୍କର ସ୍ୱାସ୍ଥ୍ୟ ତ ଦେଖୁଛୁ । କାଲି ତାଙ୍କୁ କବିରାଜଙ୍କୁ ଦେଖାଏଁ । ସେଇଠୁ ଆଜି ଯାହା ।

ମାଷ୍ଟରୀ କାମ ଭଲ ଲାଗୁଛି ?

ଗୋଟାଏ ଚାକିରି । ଦରମା ମିଳୁଛି । ଟିଉସନ କରି ଆଉ କିଛି ରୋଜଗାର କରୁଛି । ଆରେଇଗଲାଣି ।

ତମର ହାତରେ ଘଣ୍ଟା ନାହିଁ ଯେ ? ମୋର ଦୁଇଟା ଘଣ୍ଟା ଅଛି । ଆଗ ଯେଉଁଟା ବାପା କିଣିଆଣିଥିଲେ, ସେଇଟା ଗୋଲିଆ । ଖୁବ୍ ବଡ଼ । ପୁଅମାନଙ୍କ ହାତଘଣ୍ଟା ପରି । ମୋ ସାଙ୍ଗମାନେ ହସିଲେ । ସେଇଟାକୁ ମୁଁ ଡ୍ରୟର ଭିତରେ ରଖିଛି । ମୁଁ ନିଜେ ଯେଉଁ ଘଣ୍ଟାଟି କିଣିଆଣିଲି, ସ୍ଲେଟ, ରେକ୍ଟାଙ୍ଗୁଲାର, ରୋଲ୍‌ଡ୍‌ଗୋଲ୍‌ଡ୍ । ଭାରି ସୁନ୍ଦର, ଅଳ୍ପ ଦାମର ହେଲେ କ'ଣ ହେଲା ! ରହ, ତମକୁ ଦେଖାଉଛି ।

ଅନୁପା ଉଠିଆସିଲା । ବନ୍ଦନା ପାଖକୁ ଗଲା । ବନ୍ଦନାର କୋଳ ଉପରେ ଅଞ୍ଚଳ ଲୋଟାଇ, ଲମ୍ବ ମୁକ୍ତ ବେଣୀକୁ ସ୍କନ୍ଧରେ ପକାଇ ସାମାନ୍ୟ ଝୁଙ୍କିଲା । ଟେବୁଲର ଡ୍ରୟର ଟାଣିଲା । ତା ଭିତରୁ ଘଣ୍ଟା ଦିଓଟି ଓ କେତେ ଖଣ୍ଡ ପୋଷ୍ଟକାର୍ଡ଼ ଆକାରର ଫଟୋ କାଢ଼ି ଟେବୁଲ ଉପରେ ରଖିଲା । ନିଜେ ସଳଖି ଠିଆହୋଇ ବନ୍ଦନାର କଡ଼କୁ ଆସିଲା ।

ଫଟୋଗୁଡ଼ିକ ବନ୍ଦନାକୁ ଦେଖାଇବାକୁ ନିରୁପା ଆସି ତାଙ୍କର ଡାହାଣ ପାଖରେ ଠିଆହେଲା ।

ଅନୁପା ଅନୁରୋଧ କଲା, ଏଇଟା ଏଭର-ବ୍ରାଇଟ୍ ଷ୍ଟିଲର ଫେବରିଲୁବା ଘଣ୍ଟା । ତମେ ନିଅ ।

ନିରୁପା କହିଲା, ସତେ, ତମେ ନିଅ । ମୋତେ ବି ବୋଉ ଟିକି ଘଣ୍ଟାଟିଏ କିଣିଦେଇଛି । ଅପାର ଦୁଇଟା ଘଣ୍ଟା କ'ଣ ହେବ ? ବୋଉ

ପଚ୍ଚରିଲେ ମୁଁ ନିଶ୍ଚେ କହିବି, ମୁଁ ପିନ୍ଧିଥିଲି, ନାଚିବାକୁ ଯାଇଥିଲି, ହଜିଗଲା ।

ଅନୁପା କହିଲା, ତୁ ମୋର ସୁନା ଭଉଣୀ, ନିରୁ ! ତୁ ମିଛ କାହିଁକି କହିବୁ ? ମୁଁ ସତକଥା କହିଦେବି । ତମେ ନିଅ, ବିକଶଭାଇ !

ନିରୁପାର ହାତଟିଏ ଧରି କଡ଼କୁ ଆଉଜାଇ ବିକ୍ରମ କହିଲା, ମୋ ପାଇଁ କାଲି ଗୋଟିଏ ଘଣ୍ଟା ମୁଁ ନିଜେ କିଣିଆଣିବି । କାହିଁକି ମାଈଙ୍କ ମନରେ ମୋ ପ୍ରତି ଅଶ୍ରଦ୍ଧା ଜନ୍ମାଇବ, ଅନୁ !

ବିକ୍ରମ ଗୋଟି ଗୋଟି କରି ଫଟୋଗୁଡ଼ିକ ପରୀକ୍ଷା କରିବାକୁ ଲାଗିଲା । ଜଣ ଜଣ କରି ଗୋଟିଗୋଟିକା ଫଟୋ, ପୁଣି ବିଭିନ୍ନ ସ୍ଥାନରେ ଉଠା-ହୋଇଥିବା ଗ୍ରୁପ୍ ଫଟୋ । ଝୁରୁଷ ନିରୁପା ସେଗୁଡ଼ିକର ସ୍ଥାନ, ସମୟ ଓ କିଏ ଫଟୋ ଉଠାଇଲା, ବିକ୍ରମକୁ ବୁଝାଇବାକୁ ଲାଗିଲା ।

—ଏଇଟି କୋଣାର୍କ ମନ୍ଦିରର ବେଢ଼ା ଭିତରେ ଉଠାଯାଇଛି । ଗୋପବନ୍ଧୁ ଭାଇ ଉଠାଇଛନ୍ତି । ସଞ୍ଜ ହୋଇ ନ ଥାଏ । ମଝିରେ ସାନନ୍ଦ, ତାର ଦୁଇ ପାଖରେ ମୁଁ ଓ ଅପା । ଅପା ପାଖରେ ମାଉସୀ ଓ ମୋ ପାଖରେ ବୋଉ ଠିଆହୋଇଛନ୍ତି । ପଛର ଧାଡ଼ିକୁ ଦେଖ । ସାନନ୍ଦ କାନ୍ଧରେ ହାତ ଦେଇ ତା ପଛରେ ଠିଆହୋଇଛି ସୁରୁପା । ଅପା ପଛରେ ଫାଲୁକା ବେଙ୍ଗ ବାଉରିଭାଇ । ମୋ ପଛରେ ଶ୍ୟାମବନ୍ଧୁ ଭାଇ । ସତ କହିଲ, ଭଲ ହୋଇନାହିଁ ?—

ବିକ୍ରମ କହିଲା, ଚମତ୍କାର ! ମୁଁ ଏ ଫଟୋଟି ନେବି ।

ବିକ୍ରମର ହାତରୁ ସେଖଣ୍ଡିକ ଓଟାରି ଅନୁପା କହିଲା, ନାଇଁ, ସେ ଖଣ୍ଡିକ ମୁଁ ମୋର ଆଲ୍‌ବମ୍ ଭିତରେ ଲୁଚାଇ ରଖିବି । ତମେ ଆଉ ଖଣ୍ଡିଏ ବାଛ, ତମର ଯହିଁରେ ଆଗ୍ରହ । ଆମେ ଦେଖିବୁ ନାହିଁ । ତମେ ତମର ଛାତି ପକେଟରେ ଲୁଚାଇଦିଅ ।

ନିରୁପା କହିଲା, ସେଇଆ ହେଉ । ଆମେ ଦିହେଁ ଖଟ ଉପରେ ବସିବୁଁ । ଆମେ କାହିଁକି ଜାଣିବୁଁ ?

ବସନ୍ତ ଭାବପ୍ରବଣ ହେଲା । ଦୁଇ ହାତରେ ଦୁହିଁଙ୍କର ପାପୁଲି ଧରି କହିଲା, ରତି, ଦେଖିଲଣି । ସେହି ଫଟୋକୁ ମୁଁ ମୋ ମନରେ ଲୁଚାଇ ରଖିଛି ତ ! ନଅ ବର୍ଷର ଅସଂଖ୍ୟ ଫଟୋ । କେତେ ରୂପ, କେତେ ରଙ୍ଗ, ଢଙ୍ଗ, ସାଜର ଫଟୋ । ସେ ସବୁ ଫଟୋର ଜୀବନ ଅଛି । ସେମାନେ କୋଳରେ ପଶନ୍ତି, କାଖରେ ବସନ୍ତି, କାନ୍ଧରେ ଚଢ଼ନ୍ତି । ସେମାନେ ଗେଲ ହୁଅନ୍ତି, ଗେଲ କରନ୍ତି, ଛାତିରେ ଲୋଟନ୍ତି । ସେମାନେ ହସନ୍ତି, କାନ୍ଦନ୍ତି, କଥା କହନ୍ତି ।

ନିରୁପା ପଚାରିଲା, ଏତେ ଫଟୋ ?

ଅନୁପାର ହାତ ଛାଡ଼ି ବସନ୍ତ ନିରୁପାର ମୁଣ୍ଡ ଛୁଆଁଇ ଗେଲ କଲା । ଅନୁପା ଧୀରେ ଧୀରେ ପଛେଇ ଯାଇ ପଲଙ୍କ ଉପରେ ବସିଲା ।

କେଉଁମାନେ କଥାଭାଷା ହୋଇ ପାହାଚରେ ଉଠୁଛନ୍ତି । ଉଦ୍ଧବଙ୍କର ପାଟି ଶୁଭୁଛି । ସେମାନେ ବାରଣ୍ଡା ଉପରେ ହେଲେ । ବସନ୍ତ ତାର ବୋଉଙ୍କର ସ୍ୱର ବାରିଲା ।

ସେ ପଚାରୁଛନ୍ତି, ଏଇ ମାର୍ଗଶିର ମାସରେ ?

ଉଦ୍ଧବ କହୁଛନ୍ତି, ସେ କ'ଣ ମଙ୍ଗିବ ? ପାଠ ଝୁଙ୍କ ତାର ଭାଙ୍ଗି-ନାହିଁ ।

ଯୂଥିକା କହିଲେ, କେଉଁ ଝିଅ ପରଘରକୁ ଯିବାକୁ ମଙ୍ଗେ କି ? ତମେ କହ ତ, ତମକୁ ମିଶାଇ କେଇଟି ଝିଅ ବେଦୀ ଉପରୁ ଉଠି ପଳାଇଛନ୍ତି ?

ତିନିହେଁ ଅନୁପାର ପଢ଼ାଘରେ ପଶିଲେ । ଚଉକିରୁ ଉଠି ବସନ୍ତ ଠିଆହେଲା । ଅନୁପା ବି । ଉଦ୍ଧବ ଥରେ ଅନୁପାର ମୁହଁରେ ଦୃଷ୍ଟି ବୁଲାଇ ଟେବୁଲ ଉପରେ ଖେଳେଇ ହୋଇଥିବା ଫଟୋଗୁଡ଼ିକରେ ଆଖି ପକାଇଲେ । ଦୃଷ୍ଟି ଟେକିଲେ ବସନ୍ତର ମୁହଁକୁ । ତାଙ୍କର ସେହି ଦୃଷ୍ଟିରେ ଓ ନାସାର କୁଞ୍ଚନରେ ବସନ୍ତ ଅନାଦରର ଆଭାସ ପାଇଲା । ସେହି ଅନୁଦାର ଦୃଷ୍ଟି ଯେପରି ତିରସ୍କାର କରି କହୁଥିଲା, ତମେ ବସନ୍ତ ବାହାର ଲୋକ, ଏଠି କାହିଁକି ବସିଛ ?

ସତକୁ ସତ ଓଠରେ କୃତ୍ରିମ ହସ ଝଲକାଇ ଟିକିଏ ବିସ୍ମିତ ହେଲା-ପରି ଉଦ୍ଧବ କହିଲେ, ଆରେ, ତମେ ଏଇଠି ? ବାଉରିବନ୍ଧୁ ତଳେ ଏକା। ସାନନ୍ଦ ଓ ସୁରୂପା ତାଙ୍କୁ କାଳିବଳି କରୁଛନ୍ତି।

ମୁଁ ଯାଉଛି, ମାଈଁ !

ବଙ୍କିମ କୋଠରିରୁ ବାହାରିଆସିଲା। ପାହାଚ ଓହ୍ଲାଇଲା।

ତଳ ବାରଣ୍ଡାରେ ସେ ମୁହୂର୍ତ୍ତେ ଅଟକ ସିଡ଼ି ପାଖର ଆଲୋକିତ ପ୍ରକୋଷ୍ଠକୁ କଣେଇଁ ଚାହିଁଲା, ଯେଉଁଠି ବସୁମଣ୍ଡି ଆଉ ପାଗଳୀର ପ୍ରଳାପ କଲା ପରି ମରମ କହୁଥିଲେ। କେବେଠାରୁ ତାଙ୍କର ଗ୍ରାମରେ ସେ ପ୍ରେତ-ଲୋକକୁ ଚାଲିଗଲେଣି। ସତେ କି ତାଙ୍କର ପ୍ରେତ ପୁରୁଷ ସେଇ ଆଲୋକିତ ସୁସଜ୍ଜିତ କୋଠରି ଭିତରୁ ଅ-ଶବ୍ଦ ଭାଷାରେ କହୁଉଠୁଛି, କେଉଁ କଥା ମୋ ପାଖରେ ତୁ ଲୁଚାଇ ପାରିବୁ ରେ ନାତି ? ତୁ ବି ଏ ଘରେ ପ୍ରେତ ହୋଇ-ସାରିଛୁ, ଅଲୋଡ଼ା ଓ ଘୃଣିତ !

ଆନନ୍ଦ ଓ ତାଙ୍କର ବନ୍ଧୁମାନେ ସନ୍ଧ୍ୟାବେଳେ ପାଣ୍ଡୁଆପରୁ ଫେରିଲେ। ତରବର ହୋଇ ସେମାନେ ରାତି ମେଲ୍‌ରେ କେଉଁ ଜରୁରୀ କାମରେ କଲିକତା ଗଲେ।

ପରଦିନ ସକାଳେ, ଉଦ୍ଧବ ଓ ତାଙ୍କର ପିଲାମାନଙ୍କର ନିଦ ଭୋରରେ ଭାଙ୍ଗିଲା। ଗ୍ରାମକୁ ଫେରିଯିବାକୁ ଚନ୍ଦନା ଓ ବଙ୍କିମ ପ୍ରସ୍ତୁତ ହୋଇ ରହିଥିଲେ।

ଚନ୍ଦନା ସବୁ ପିଲାଙ୍କୁ ଗେଲ କରିଥିଲେ। ଉଦ୍ଧବଙ୍କର ଚିବୁକରେ ହାତ ଦେଇ ଝରିଲା-ଆଖିରେ ଗଦ୍‌ଗଦ ହୋଇ କହିଲେ, ତମେ ସମସ୍ତେ ସଦାବେଳେ ମୋର ଆଖିରେ ନାଚୁଥିବ। ଠାକୁରେ ତମର ଅଧିକରୁ ଅଧିକ କରନ୍ତୁ। ବଙ୍କିମ ରୋଜଗାର କଲାଣି। ତମର ଧନଦରବରେ ମୋର ଆଶା ନାହିଁ ମ। ମୋର ଆଶା ତମର ଭାଷାରେ। ଅନ୍ତ ଆଜି ହରୁ, ଚିଠି ଖଣ୍ଡିଏ ଖଣ୍ଡିଏ ଦେଉଥିବ, ତମର ସୁ-ଖବର ଜଣାଉଥିବ।

ଇନ୍ଦଶଙ୍କର ପାଦ ଛୁଇଁ ବସନ୍ତ କପାଳରେ ଆଙ୍ଗୁଠି ମାରିଲା ।

ଇନ୍ଦଶ କହିଲେ, ଅପାଙ୍କର ଯତ୍ନ ନେବ, ଝିଅ ! ଚିଠି ଲେଖୁଥିବ । ସେ ତ ତମର ଘର । ଯେତେବେଳେ ମନ, ବୁଲିଆସୁଥିବ । ଆମକୁ ପର କରିବ ନାହିଁ ।

ଚନ୍ଦନା କହିଲେ, ବସନ୍ତକୁ ପର କରିଦେ ନା, ଇନ୍ଦଶ ! ସେ ତୋର ପିଲାଙ୍କ ଭିତରୁ ଜଣେ ।

ଇନ୍ଦଶ ମୁଣ୍ଡ଼ୁକେଇ ହସିଲେ ।

ଅନୁପା ଗମ୍ଭୀର ହୋଇ ଚାହିଁରହିଥିଲା । ନିରୁପା ସାନନ୍ଦକୁ କାଖ କରିଥିଲା । ସୁରୂପା ଅନୁପାର ଖୋଲାକେଶରେ ଆଙ୍ଗୁଠି ଗଳାଇ ଖେଳୁଥିଲା ।

**ସେ**ମାନେ ଦୂରେଇ ଯାଇଥିଲେ । ସମୟର ବ୍ୟବଧାନ ଅଜାତରେ ସ୍ମୃତି ଓ ଭାବପ୍ରବଣତାକୁ କ୍ଷୀଣରୁ କ୍ଷୀଣତର କରିଥିଲା ।

ନିଜ ଗୋଡ଼ରେ ଠିଆ ହୋଇ ବସନ୍ତ ଆତ୍ମପ୍ରତ୍ୟୟ ଲାଭ କରିଥିଲା । ନୂତନ ଉତ୍ସାହ ଓ ନୂତନ ଉଦ୍ଦୀପନାରେ ନିଜର ଭବିଷ୍ୟତକୁ ଗଠନ କରିବାକୁ ସେ ବଦ୍ଧପରିକର ହୋଇଥିଲା । କାର୍ଯ୍ୟରେ ବ୍ରତୀ ହୋଇଥିଲା । ନିଜ ରୋଜଗାରରେ ସେ କିଣିପାରିଥିଲା ହାତବନ୍ଧା ଘଣ୍ଟା, ନୂଆ ସାଇକେଲ, ଟିଣର ଗୋଟିଏ ଛୋଟ ଫୋଲ୍‌ଡିଙ୍ଗ ଟେବୁଲ ଓ ଦୁଇଟି ଚଉକି । ଛୋଟ ଟ୍ରାନ୍‌ଜିଷ୍ଟରଟିଏ ମଧ୍ୟ ସେ କିଣିସାରିଥିଲା ।

ଚଳନର ସୁବିଧା ପାଇଁ ସେ ଟ୍ରାଉଜର ଓ ହାଓ୍ୱାଇନ ବ୍ୟବହାର କରୁଥିଲା । ମୁହଁକୁ ଚୁଡ଼ିହୀନ, ଚିକ୍‌କଣ ଓ ନିର୍ମଳ କରିଥିଲା । ଦରିଦ୍ର ହେଲେ ବି ସେ ଅନ୍ୟମାନଙ୍କର ସ୍ନେହ ଓ ସମ୍ମାନର ଅଧିକାରୀ ହୋଇଥିଲା ।

ଘଣ୍ଟାର କଣ୍ଟା ପରି ତାର ଚଳନ । ପାହାନ୍ତା ପାଞ୍ଚଟାରେ ସେ ବିଛଣା ଛାଡ଼େ । ନଦୀରେ ନିତ୍ୟକର୍ମ ସାରେ । ଶିମୁଳତଳ କିଆରିକୁ ଥରେ ବୁଲିଦେଇ ଆସେ । ସେ କିଆରି ବକଳ ସୋଇଙ୍କର ତତ୍ତ୍ୱାବଧାନରେ ।

ଚାରିପଟେ ବାଡ଼ାବନ୍ଧ । ବାଡ଼ରେ କଡ଼େ କଡ଼େ ଝାଉଁଗଛ । ଛୋଟ ଟୁବକୁ ପୋଖରୀ କରି ତାର ଆଡ଼ରେ କଦଳୀଗଛ ପୋତା ହୋଇଥିଲା । ଭଲ ଉଧୁଉଥିଲା । କିନ୍ତୁ ବିନା କାରଣରେ ଗ୍ରାମର ସ୍ୱାର୍ଥପର ଲୋକେ ଓ ଜାଳ-ଯୋଗାଡ଼ୀ ଝିଅ, ମାଇପେ, ଗାଈଜଗା ଟୋକାଏ ବାଡ଼ାବନ୍ଧକୁ ଠାଏ ଠାଏ ମେଲା କରି ବତା ଓ ବାଉଁଶ ଓଟାରିନେଲେ । ଛୋଟ ଛୋଟ ଝାଉଁଗଛର ଡାଳ ଭାଙ୍ଗିନେଲେ । କଦଳୀଗଛକୁ ଗୋରୁଗାଈ ଉଝାଡ଼ି ପକାଇଲେ ।

ଭୂମିର ସେହି ଦୁରବସ୍ଥା ଦେଖିବାକୁ ବିଷମ ଥରେ ଆଖି ପକାଇ-ଆସେ । ଦୁଃଖ କରେ । ବିକଳ ଭାଇଙ୍କର ସତର୍କବାଣୀ ନ ଶୁଣି ଭୂମିଠାରୁ ସୁନା ଫଳାଇବା ମାନସରେ ସେ ବୃଥା ଧନ ଖରଚ କରିଥିଲା । ମୂଲିଆଙ୍କ ସଙ୍ଗେ ମୂଲିଆ ହୋଇ ଖଟିଥିଲା । କେତେ ବହୁମୂଲ୍ୟ ସମୟ ସେ ନଷ୍ଟ କରିଥିଲା ।

ଲୋକେ ଅଦଉତି ସାଧୁଛନ୍ତି । ଏକା ତାହାର ଉପରେ ନୁହେଁ, ପରସ୍ପର ଉପରେ । କାହାକୁ ସେ କଣ କହିବ ? କାହା ଆଗରେ ଫେରାଦ କରିବ ? ପରର ଅନିଷ୍ଟ କରିବା ଖୋଇ ସମସ୍ତଙ୍କର ରହିଛି । ସ୍ୱାଧୀନତା ସେହି ପ୍ରବୃତ୍ତିକୁ ବଢ଼ାଇଛି, କମାଇନାହିଁ ।

ନୂଆ କେନାଲରେ ପାଣି ଆସିଲା ।

କ୍ଷେତବିଲରେ ପାଣି ମାଡ଼ୁଛି । ଯେଉଁମାନଙ୍କର ଭୂମି ଅଛି, ସେମାନେ ଉପକୃତ ହୋଇଛନ୍ତି । ଅଧିକ-ଅମଳକାରୀ ବିହନ ବୁଣି, ସାର ପ୍ରୟୋଗ କରି ତିନିଗୁଣ ଫସଲ ଆମଦାନୀ କରୁଛନ୍ତି । ଲାଭବାନ୍ ହେଉଛନ୍ତି । ଯେଉଁ-ମାନଙ୍କର ଭୂମି ନାହିଁ, ସେମାନେ ଯେଉଁ ମୂଲିଆକୁ ସେହି ମୂଲିଆ ।

ମୂଲ ବଢ଼ିଛି । କେତେକ ପରିମାଣରେ ଅଭାବ ମେଣ୍ଟିଛି । ତଥାପି ଦୁଇବେଳା ପେଟ ପୂରୁନାହିଁ । ପିଠି ଘୋଡ଼ାଇ ହେଉନାହିଁ । ରୋଗ-ବଇରାଗରେ ଔଷଧ ମିଳୁନାହିଁ । ମୂଲିଆ ଓ ନଅଣ୍ଡିଆ ଚାଷୀଙ୍କ ମନରେ ହନ୍ତସନ୍ତ ହବ । ପେଟ ତାତିଲେ ପରର ଶିଷ୍ଟ ସେମାନେ ସହିବେ ତ ?

ବସନ୍ତର ମନରେ ଏପରି କେତେ ଭାବନାର ଢେଉ ଉଠେ । ସେ ଢେଉ ଆପେ ଆପେ ମୁଣ୍ଡ ନୁଆଁଏ । ସେ ତାର ଭୂମିକୁ ଗ୍ରହେ । ବିଜୁଳି ଖେଳି ଗାଁରେ ସ୍ଥାପନ କରୁଛନ୍ତି । ରଙ୍ଗୁଲି ସାହାଯ୍ୟ କରୁଛି ।

କେବଳାନନ୍ଦ ଭୁବନେଶ୍ୱର କଲେଜରେ ନାମ ଲେଖାଇ ହଷ୍ଟେଲରେ ରହି ଅଧ୍ୟୟନ କରୁଛି । ବୃତ୍ତି ପାଉଛି । କଲେଜ ଖେଳରେ ସେ ଅଗ୍ରଣୀ ହୋଇପାରିଛି । ଦଳିତ ଜାତିର ବଡ଼ବଡ଼ଆଙ୍କର ସଂସର୍ଗରେ ଆସିଛି । ଚିଠି ଲେଖେ । କେବେ କେବେ ଗ୍ରାମକୁ ଆସେ ।

ପିଲାଟା ବଦଳିଗଲାଣି । ଭଦ୍ର ହେଲାଣି । ତାର ମନରେ ଉଚ୍ଚାଶା ମୁଣ୍ଡ ଟେକିଲାଣି ।

ବେଙ୍ଗୁଲି ଦୁତିଅ ହୋଇଗଲା । ତା ବର କଟକର କେଉଁ ଅଫିସରେ ପିଅନ କାମ କରେ । ଯୋବ୍ରା ପାଖରେ ଥାଏ । ବେଙ୍ଗୁଲି ସେଇଠି ରହେ ।

ବିଜୁଳି ଖେଳି କହୁଥିଲେ, ସେ ଭଲରେ ଅଛି ।

ଘରକୁ ବାହୁଡ଼ି ବସନ୍ତ ଦେଖେ ଯେ, ତାର ବୋଉ, ଖୁଡ଼ୀ ଘରକାମରେ ଲାଗିଛନ୍ତି । ଶୁଭ ଓ ମୋହନଙ୍କର ନିଦ ଭାଙ୍ଗି ନ ଥାଏ । ଚୂଡ଼ା ଗୁଡ଼ ଚକଟା ଖାଇ ବସନ୍ତ ପାଠ ପଢ଼ିବସେ । ପରୀକ୍ଷା ଦେବାକୁ ସେ ପ୍ରସ୍ତୁତ ହେଉଛି । ଠଙ୍କା ନୈଭରେ ଆଉ ଚିଉସନ କରୁନାହିଁ । ଯଥାସମୟରେ ସ୍କୁଲ ଗମନ । ପାଠ ଛଡ଼ା ଗେମ୍‌ସ୍ ଓ ଅନ୍ୟାନ୍ୟ ଖବର ବୁଝି ଘରକୁ ଫେରୁଣୁ ସନ୍ଧ୍ୟା ।

ଜଳଯୋଗ । ବୋଉଙ୍କ ବରାଘା ଦୋକାନ ସଉଦା ।

ଗାଁ ଏବେ ହାଲୋଳମୟ ହେଲାଣି । ବିଜୁଳି ତାରରେ ଶକ୍ତି ଆସିଲାଣି । ଦାଣ୍ଡରେ ବିଜୁଳିଖମ୍ବ, ବିଜୁଳି ଆଲୁଅ । ଯେଉଁମାନଙ୍କର ନୂଆ ପକ୍‌କାଘର, ସେମାନେ ବିଜୁଳି ଆଲୁଅ ଲଗାଇଲେଣି । ସ୍ୱଳଘରଆଙ୍କର ସେଇ କିରାସିନି ଆଲୁଅ । ସମ୍ବଳହୀନଙ୍କର ଦେଉକ ବି ନାହିଁ । ଉଦ୍ଧର ଆଲୁଅରେ ଚଳୁଛି ।

ଗାଁ ମାମଲତକାରେ ଆଗେ ଯାହା ଥିଲେ, ଏବେ ବି ସେଇଆ । ସେମାନଙ୍କର ବେକରୁଣ୍ଟକଣ୍ଠ ବୁଦ୍ଧି । ପାଠ ଅଳ୍ପବହୁତରେ କିଛି ଯାଏଆସେ ନାହିଁ । କୂଟ କପଟରେ ସେମାନେ ନିପୁଣ । ଭୋଟ-ଭିକାରିଙ୍କର ସହାୟକ । ସେମାନେ ବୋଲଝାଣ୍ଡିଆ ରାଜନୀତିଜ୍ଞ । ମାଧିଆଭାଇ, ତୁଣ୍ଡରେ ସବୁ କଥାକୁ ହୋଇ ହୋଇ । ମନରେ ଅନ୍ୟ ବିଚାର ।

କିଏ ଅଚଳରେ ପଡ଼ୁ, କାହାର କୁଟୁମ୍ବ ଭାସି ଯାଉନ୍ତୁ, ଗ୍ରାମରେ ମନ ଫଟାଫଟି ହୋଇ ଗୋଟ ଗୋଟ ଝିମିଟି ଖେଳରୁ ମହାଭାରତ ଯୁଦ୍ଧର ସୂତ୍ରପାତ ହେଉ, ସେଥିକି ତାଙ୍କର ଭାବନା ନ ଥାଏ । ବରଂ ଭଲ ! ଝିହାଇଦେଇ ପଟ୍ଟାଇ ରହିଲେ ଗୋଳପାଣିରେ ସୁବିଧା ମିଳିବ, କିଛି ଘୁଣି ହେବ । ଆଗ ଅର୍ଥନୀତି, ସେଇଠୁ ରାଜନୀତି । ସେମାନଙ୍କର ଅର୍ଥନୀତିର ଅସଲ ଟିପ୍ ହେଲା ଦିଓଟି—ଧର୍ମନୀତି ଓ ସମାଜନୀତି !

ବିଜୟ ସେମାନଙ୍କୁ କରଛଡ଼ା ଦେଇ ରହିପାରେ ନାହିଁ । ରହିବା ଅସମ୍ଭବ । ଗ୍ରାମ ତିନି ଫାଙ୍କ । ଗ୍ରାମରେ ତିନିଦଳ । ସହରରେ, ବିଶେଷତଃ ରାଜଧାନୀ ଭୁବନେଶ୍ୱର ଓ ଆହୁରି ଉଚକୁ ଚାହିଁଲେ ଦିଲ୍ଲୀ-ରାଜନୀତିରେ ଯେତେ ଦଳ ଉଡ଼ାଓଟର ହେଉଛନ୍ତି, ପ୍ରଚାର କରୁଛନ୍ତି, ସେହି ଦଳ-ଗୁଡ଼ିକର ଚେର ଲମ୍ବି ଆସୁଛି ସୁଦୂର ଅଶିକ୍ଷିତ ଅନୁନ୍ନତ ଅଭାବଗ୍ରସ୍ତ ପଲ୍ଲୀକୁ । ସେମାନଙ୍କର ସହାୟକ ଲୋଡ଼ା—ଗାଁ ମୁରବି, ଗାଁ ମାମଲତକାର ।

ବିଜୟ ସେମାନଙ୍କର କଥା ଶୁଣିବାକୁ ବାଧ୍ୟ ହୁଏ । ପରଚର୍ଚ୍ଚା, ପରନିନ୍ଦା ମୁହଁ ଖୋଲି ସମର୍ଥନ କରିହୁଏ ନାହିଁ । ସେତିକି କଲେ ଅନ୍ୟ ଦଳଆଙ୍କର ସେ ଚକ୍ଷୁଶୂଳ ହେବ । ପ୍ରତିବାଦ ବି କରିହୁଏ ନାହିଁ । ଅକାରଣ ଶତ୍ରୁତା ଅର୍ଜିବ । ଶୁଣି ମୁରୁକେଇ ହସିବା, ଗମ୍ଭୀର ହୋଇ, ଓଠରେ ଚୂ ଚୂ କରି ସାମାନ୍ୟ ମୁଣ୍ଡ ହଲାଇବା, କୌଣସି ଆରରେ ଖସି ପଳାଇବା ଏକମାତ୍ର ପନ୍ଥା ।

ଯାହା କାନରେ ପଡ଼ିଲା ତାକୁ ମନରେ ସାଇତି ସେତିକି ତୁଣ୍ଡକୁ ନ ଆଣିବା ବୁଦ୍ଧିମାନର କାମ । ତୁଣ୍ଡରୁ ଖସିଲେ ନାନ୍ଦୁସ ତାଳିକାରେ ତା

ନାମ ସାମିଲ୍ ହେବ । ଆଜି ନ ହେଲେ ସେ କାଲି ଦୋମୁହାଁ ବୋଲି ଗଣିତ ହେବ । କେତେ କେତେ କାରଣରୁ ବୁଢ଼ିଆ ଲୋକେ ଢିଲ୍ଲୀରୁ ପଲ୍ଲୀଯାଏ, ଲୋକସଭାରୁ ପଞ୍ଚାୟତସଭାଯାଏ ବାରମ୍ବାର ଦଳ ବଦଳାଉଛନ୍ତି । ଚଳକୁ ଅଚଳ, ଅଚଳକୁ ଚଳମଚଳ କରିଦେଉଛନ୍ତି । ବିଷମ ତୁନି ରହେ । ତୁନି ରହିବା ଉତ୍ତମ ଉପାୟ ।

**ଅଲେଖ ପ'ଟର ବାହାଘରକୁ ଏତେବଡ଼ କାଣ୍ଡ ଘଟିବାକୁ ଯାଉଥିଲା !**

ଗୋଷ୍ଠୀଭେଦ ଭୂଲି ଗ୍ରାମର ଲୋକେ ଦି' ଫାଙ୍କ ହୋଇଗଲେ । ସେ ବିଭେଦ ବ୍ୟାପିଲା ସ୍ତ୍ରୀମହଲକୁ । କୁଟୁମ୍ବ ଭିତରେ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ବୋଲା-ବୋଲି, ଝିଙ୍ଟାପିଟା କଜିଆ । ସେଥିରେ ବ୍ରାହ୍ମଣରୁ ବାଉରି ଯାଏ ସବୁ ଜାତିର ମୁଣ୍ଡବଥା ।

ଗୋଟିଏ ଦଳର ମତ ହେଲା ଯେ ଅଲେଖ ସେ ବଙ୍ଗାଳୀ ଝିଅକୁ ପୋଇଲି ରଖିପାରେ; ବିବାହ କରିପାରିବ ନାହିଁ । ତାର ଜାତିଗୋତ ଜଣା ନାହିଁ । ଗ୍ରାମର ନିନ୍ଦା ହେବ ।

ଅନ୍ୟ ଦଳର ମତ ହେଲା ଯେ, ପୋଇଲି ରଖିବା ପ୍ରଥା ଅଚଳ ହେଲାଣି । ତାହା କରିବାକୁ ଅଲେଖକୁ ଅନୁମତି ଦିଆଯିବ ନାହିଁ । ଆଜିକାଲି ସବୁ ଜାତିରେ ସବୁ ଜାତି ବାହା ହେଲେଣି । ଅଲେଖ ପାବଲାକୁ ବାହା ହେଉ ।

ନିଶାପ ହେଲା, ସେଥିରେ ସମାଧାନ ହେଲା ନାହିଁ । ଟଙ୍କାର ଦିଏଣ ନେଏଣ ତା'ର କରାମତି ଦେଖାଇଲା । ଯେଉଁମାନେ ବିରୁଦ୍ଧ ଦଳରେ ଭାରି କୁହାଳିଆ ହୋଇଥିଲେ, ବାହାସ୍ଫୋଟ ମାରୁଥିଲେ, ନିଶ ଥାଉ ବା ନ ଥାଉ ନିଶ ସ୍ଥାନରେ ଆଙ୍ଗୁଠି ରଖି ତାଉ ଦେବାର ଅଭିନୟ କରୁଥିଲେ, ସେମାନେ ଅଶୁଖା ଉଧାର ଅଣ୍ଡାରେ ଖୋସି ଆଗ ତୁନି

ହେଲେ । ବିପକ୍ଷ ଦଳରୁ ଓହରିଆସି ପ୍ରଚ୍ଚାର କଲେ, ନିଜ ଦୁଃଖକୁ ଦୀର୍ଘ ଗୁହାରି ନାହିଁ, ପରସ୍ପର କଥାରୁ ଆମକୁ କି ମିଳିବ ? ସେଇଠୁ ସପକ୍ଷ ଦଳରେ ଯୋଗଦାନ ।

ଚଉଠୀ-ଶ୍ରେଣୀରେ ଟେକାମଣ୍ଡଳ ।

ଅଳେଖ ଭଲରେ ଅଛି । ଗୃହକୁ କଳ ବସାଇବାକୁ ବିଚ୍ଚାର କଲଣି । ଯେଉଁ ଉପାୟରେ ସେ ଧନ ଅର୍ଜନ କରୁ, ତାକୁ ଖଟାଇ ସେ ଅଧିକ ଧନ ଅର୍ଜନ କରି ବଡ଼ଲୋକ ହେବାକୁ ମନକଲଣି ।

ଗତି ଆଠଟାରେ ଘରକୁ ଫେରିବା ବାଟରେ ବନ୍ଧମ ତା'ର କଥା ବିଚ୍ଚାର କରେ । ଧନ ଅର୍ଜନ ପାଇଁ ଅଧିକ ପାଠ ଲୋଡ଼ା ନାହିଁ । ଅଳେଖ ତା'ର ପ୍ରମାଣ । ହତଭାଗ୍ୟ ବନ୍ଧମ ମାଷ୍ଟରଟିଏ । ଟଙ୍କା ଦେଢ଼ଶର ଆଜ୍ଞାବହ ଡରଡର ଚାକର ।

ବହି ଧରି ଘୋଷିବ, କଲମ ଧରି ଲେଖିବ, ଆଖି ମାଡ଼ି ମାଡ଼ି ପଢ଼ୁଥିବ, ଗତି ହେବ ଦଶଟା । ସେ ପରି ପରୀକ୍ଷା ଦେବ, ହେବ ଉପୋଷି !

ବେଗଣା ବୋଉ ଆଶା କରି ବସିଛନ୍ତି । ବେଗଣା ବାପା ବିଦେଶରେ ପେଟ ପାଇଁ କାମ କରୁଛନ୍ତି । ଘରକୁ ଯିବାଆସିବାରେ ଧନ ବ୍ୟୟ ହେବ, ଆଶଂକାରେ ଆସିପାରୁନାହାନ୍ତି । ଚାକିରି ଛାଡ଼ି ଚାଲିଆସିବାକୁ ଅନୁରୋଧ କଲେ ସେ ରାଜି ହେଉନାହାନ୍ତି । ସେ ଆଶା ଧରି ଖଟୁଛନ୍ତି ଯେ ପୁଅ ଉପୋଷି ହେବ, ତାଙ୍କର ଦୁଃଖର ଦିନ ଶେଷ ହେବ । ସେ ସଗର୍ବରେ ଘରକୁ ଫେରିବେ । ବୋଧହୁଏ ଦେବନାଥବାବୁଙ୍କ ପତ୍ର ଲେଖିବେ—

—ପାଞ୍ଚଶହ ନୁହେଁ, କେତେଆଡ଼ୁ ସମ୍ବନ୍ଧର ପ୍ରସ୍ତାବ ଆସିଲଣି । ସେମାନେ ପାଞ୍ଚହଜାର ଯାଚିଲେଣି । ତା ଛଡ଼ା ଆଧୁନିକ ଢଙ୍ଗରେ ଯାନ-ଯୌତୁକ । ପୁଅର ଇଚ୍ଛା—

ଯାହା ତାଙ୍କର ମନକୁ ଆସିବ ଲେଖିବେ ।

ଚନ୍ଦନାଙ୍କ ପାଖକୁ ଜୟପୁରରୁ ଚିଠି ଆସିଲା । ବନ୍ଧମ ପଢ଼ିଲା । ଶାରକେଶଙ୍କର ଦେହ ଭଲ ଅଛି, କିନ୍ତୁ ସେ କାମକୁ ପାରୁନାହାନ୍ତି ।

ତାଙ୍କୁ ଛୁଟି ନେଇ ଘରକୁ ଆସିବାକୁ ହାକମ ବାଧ୍ୟ କରୁଛନ୍ତି । ଛୁଟି ନ ନେଲେ କାର୍ଯ୍ୟରୁ ଅବ୍ୟାହତି ଦେବେ ।

ଆଉରି ଗୋଟିଏ ଦୁଃସମ୍ବାଦ ସେ ଜଣାଇଛନ୍ତି । କାହାଠାରୁ ଲାଞ୍ଚ ଖାଇ ଅନ୍ୟର ଜମିକୁ ଲାଞ୍ଚଦେଲା ଲୋକର ନାମରେ ଲେଖି-ଦେଇଥିବାରୁ ଦେବନାଥବାବୁଙ୍କୁ କାର୍ଯ୍ୟରୁ ଅନ୍ତର କରାଯାଇଛି । ସେ ଆଉ କୌଣସି ବନ୍ଦୋବସ୍ତରେ କାମ ପାଇବେ ନାହିଁ । ଯେଉଁ ସମ୍ପତ୍ତି ସେ କରିଛନ୍ତି, ଚନ୍ଦନା, ଘରେ ବସି ଦୁଇ ପୁରୁଷ ଅନାୟାସରେ ଚଳିଯିବେ । ଗ୍ରାମରୁ ସେ ଚିଠି ଲେଖିଛନ୍ତି ଯେ, ସେ ତାଙ୍କର ଝିଅ ଉଲ୍ଲୀର ବାହାଘର ଏଇ ମାର୍ଗଶିରରେ କରିବାକୁ ଚାହାନ୍ତି । ଦୁଇବର୍ଷ ଅପେକ୍ଷା କଲେଣି, ଆଉ ଅପେକ୍ଷା କରିପାରିବେ ନାହିଁ ।

କ ଉତ୍ତର ତାଙ୍କୁ ଦେବ ଚନ୍ଦନା, ବାପାଙ୍କୁ ପଚାରି ଶୀଘ୍ର ଜଣାଇବ ।

ବୋଉ ଲୋ ! ବାପାଙ୍କୁ ତୁ ସଙ୍ଗେ ସଙ୍ଗେ ଲେଖି ଦେ ଯେ ଦେବନାଥ-ବାବୁଙ୍କର ଆଉ ଅପେକ୍ଷା କରିବା ଉଚିତ ନୁହେଁ । ଅନ୍ୟ କେଉଁଠି ତାଙ୍କର ଝିଅକୁ ସେ ଉଠାଇଦିଅନ୍ତୁ । ମୋର ତ ନଜ ରକ୍ଷଣ ଅସମ୍ଭବ—

କ'ଣ କହୁଛୁ, ଧିଅ ?

ମୁଁ ତତେ ଡାକିବି, ତୁ ଲେଖିବୁ, ବୋଉ !

ତୋ ବାପାଙ୍କ ମନରେ ଦୁଃଖ ହେବ ରେ, ପ୍ରସ୍ତାବକୁ ଏତେ ଶୀଘ୍ର ଠକ୍ କରି ଛିଣ୍ଡାଇ ନ ଦେଇ ଟିକିଏ ଅପେକ୍ଷା କଲେ ଭଲ ହୁଅନ୍ତା । ତୋ ବାପା ଘରକୁ ଫେରିଆସନ୍ତୁ । ଭାବି ଚିନ୍ତି ଦେବନାଥବାବୁଙ୍କୁ ଜବାବ ଦିଆଯିବ ।

ବାଟଖର୍ଚ୍ଚ ପାଞ୍ଚଶ ଟଙ୍କାରୁ ଆଉ ଶହେ ବାକି ଥିବ ପରା, ବୋଉ ! ସେତକ ଅସୁଲ କରିପାରିଲେ, ଦୋଷ ମୋ ମୁଣ୍ଡକୁ ଟାଳିଦେଇ ବାପା ପ୍ରସ୍ତାବକୁ କାଟିଦେବେ । ନୋହିଲେ ଘୋଷାରିବେ ।

ସେମିତ କହନା, ପୁଅ ! ତୋ ବାପା ତୋର ମଙ୍ଗଳକାମୀ । ତୋତେ ମଣିଷ କରିବାକୁ କେତେ ଜୀବନମୂର୍ଚ୍ଛା ଦୁଃଖକଷ୍ଟ ସେ ସହିଛନ୍ତି । ତୁ ବିଚାରି ଦେଖ୍ ।

ବୋଉ ! ଯେଉଁ କଲ୍ୟାଣୀ ବାପାଙ୍କର ସେବା କରି ତାଙ୍କର ଭାଙ୍ଗି-ପଡ଼ିଥିବା ଦେହରେ ନୂଆ ଜୀବନ ଦେଲା, ତାର ଅନିଷ୍ଟ କରିବା କ'ଣ ବାପାଙ୍କ ପକ୍ଷରେ ଉଚିତ ? ବଡ଼ଭାଇ, ପାଠ ନ ପଢ଼ି ଘରେ ବସିଛି, କେତେଦିନ ତାକୁ ଅପେକ୍ଷା କରାଇବେ ? ମୁଁ ପିଲାଛୁଆ ନୁହେଁ । ନିଜ ଗୋଡ଼ରେ ଦମ୍ଭ ହୋଇ ଠିଆ ନ ହେବାଯାଏ, ଆମର ଆର୍ଥିକ ଅବସ୍ଥାର ଉନ୍ନତି ନ ହେବାଯାଏ, ମୁଁ ହାତରେ ଗୋଡ଼ରେ ଦଉଡ଼ି ବାନ୍ଧିହେବି ନାହିଁ । ଆମର ଅବସ୍ଥା ସୁଧୁରିବାକୁ ପାଞ୍ଚବର୍ଷ ଲାଗିପାରେ, ଦଶବର୍ଷ ବି ଲାଗିପାରେ ।

ଆମେ କଅଣ ବସିଥିବୁ ?

ମୁଁ ଯାହା କହିଲି, ତୁ ବାପାଙ୍କୁ ଲେଖିଦେ । କହିବୁ ଯଦି ମୁଁ ନିଜେ ଲେଖିଦେବି । ତାଙ୍କ ମନକୁ ମତେ ସେ ବନ୍ଧା ପକାଇ ଦେବନାଥ ଅମିନଙ୍କ ପାଖରୁ ଯେଉଁ ଟଙ୍କା ଆଣିଛନ୍ତି, ସୁଧ ସହ ସେତକ ସେ ଶୁଝିଦେଇ ମୋତେ ମୁକ୍ତ କରନ୍ତୁ ।

ଚନ୍ଦନା ମୁକୁନ୍ଦଙ୍କ ପରି ବସନ୍ତର କଥା ଶୁଣିଲେ । କୌଣସି କାରଣରୁ ପିଲାଟା ଉତ୍ତ୍ୟକ୍ତ ହୋଇଛି ବିଚାରି ସେ ଜବାବ୍ ଦେଲେ ନାହିଁ । ଭାବିଲେ, ବଳେ ତା'ର ମନ ବଦଳିବ । ଯାହା ସେ କହିପାରିଛି, ସେଥିପାଇଁ ଦୁଃଖିତ ହେବ ।

ଦିନ ପରେ ଦିନ କଟିଗଲା । ବସନ୍ତ ସବୁବେଳେ କାର୍ଯ୍ୟବ୍ୟସ୍ତ ରହିଲା । ରାତି ଅନିଦ୍ରା ହୋଇ ପାଠ ପଢ଼ିଲା । ପରୀକ୍ଷା ଦେବାକୁ କଟକ ଚାଲିଗଲା ।

ଫେରିଲା ସାତଦିନ ପରେ ।

ମୁହଁଟି ଶୁଖିଯାଇଛି । ଚଡ଼ଚଡ଼ ହେଉଛି । ଖିଆପିଆର ଠିକଣା ନାହିଁ । କହିପଢ଼ାର ନାମ ଧରୁନାହିଁ । ବେଶୀ ସମୟ ବାହାରେ କଟାଉଛି ।

ନିଜ ହାତରେ ମାଟି ଖୋଳି, ଘାସ ବାଛି କିଆରି କରୁଛି । ଖତ ଡାଳ ମାଟିରେ ମିଶାଉଛି । କେତେ ଜାତିର ଫୁଲଫଳର ମଞ୍ଜି ପୋତୁଛି ।

ଘଟଣାଟି ଶେଷକୁ ଜଣାପଡ଼ିଲା । ନିଜେ ସେ ପ୍ରକାଶ କଲା । ଗତବର୍ଷ ପର ଉପୋଟିବଣ୍ଟ ପରୀକ୍ଷାରେ ସେ ଭଲ କରିନାହିଁ । ଏଥର ମଧ୍ୟ ଦେଖା-ପୁଛା ପାଇଁ ତାକୁ ଡାକରା ଆସିବ ନାହିଁ । ପ୍ରତିବର୍ଷ ନୂଆ ନୂଆ ପିଲା ପରୀକ୍ଷା ଦେଉଛନ୍ତି । ତିନ୍ଦ୍ର ବନ୍ଦ ତିନ୍ଦ୍ର ବନ୍ଦ କୃଷ୍ଣ ଗୁରେ । ନିଜର ମୂଲ୍ୟ ସେ ନିଜେ ବୁଝିସାରିଲାଣି । ସ୍ୱନ୍ଦକୁ ହାତ ବଢ଼ାଇ ସମସ୍ତ ନଷ୍ଟ କରିବା ଲୋଡ଼ା ନାହିଁ । ମରୀଚିକାର ପଛରେ ଗୋଡ଼ାଇ ସମସ୍ତ ନଷ୍ଟ କରିବାକୁ ସେ ଚାହୁନାହିଁ ।

ନ ହେଲେ ନ ହେଲା ରେ ପୁଅ ! ସେଥିକୁ ତୁ ଚିନ୍ତା କର ନାହିଁ । ଚାକିରି ତ କରୁଛୁ । ସୁଖେଦୁଃଖେ ଚାଲିଯାଉଛି । ଯେତିକି ମିଳୁଛି ସେତିକି ଆମର ଲକ୍ଷେ ଟଙ୍କା । ତୁ ଯେମିତି କହୁଥିଲୁ, ସେମିତିକା ଚିଠି ଖଣ୍ଡିଏ ତୋ ବାପାଙ୍କ ପାଖକୁ ବୁଝାଇଶୁଝାଇ ଲେଖିଦେଇଛି । ଆଉ ଆମର ଭାବନା କ'ଣ ?

ମାଷ୍ଟରୀ ଚାକିରି ଖଣ୍ଡିକ ବି ଚାଲିଯିବ ଲୋ ବୋଉ ! ଟ୍ରେନିଂ ପାସ୍ ନ କଲେ ସେମାନେ ଆଉ ରଖିବେ ନାହିଁ । ସେମାନେ ମୋତେ କେବଠାରୁ ନୋଟିସ୍ ଦେଇସାରିଲେଣି । କାଳେ ଧାଇଯିବ ବୋଲି ବହୁତ ଚେଷ୍ଟା କରୁଥିଲି । କୁହାବୋଲା କଲି । ଫଳ କିଛି ହେଲା ନାହିଁ । ଏଇ ମାସ ଶେଷଯାଏ ମୋର ଚାକିରି । ସେଇଠୁ ପୁଣି ବେକାର ହେବ ।

ଏଁ —!

ଚନ୍ଦନା ଡରିଗଲେ । ଭାବିଲେ, ଭାଗ୍ୟ ଟିକିଏ ହସି ଦେଇଥିଲା । ପୁଣି ସେ ମୁହଁ ଲୁଚାଇବ । ହଟହଟା କରିବ । ବର୍ଷମର ବାପା ଚାକିରିରୁ ଅବସର ହୋଇ ଶୀଘ୍ର ଆସିବେ । ବର୍ଷମର ଚାକିରି ଯିବ । ସେଇଠୁ ଚଳିବ କିପରି ?

ପୁଣି କ'ଣ ଶିମୁଳିତଳ ଜମିଖଣ୍ଡିକ ବନ୍ଧା ପଡ଼ିବ ? ବିକି ହେବ ? ସେତିକି ସରିଲେ — ?

ବିକ୍ରମ ବେକାର ହେଲା । ଘରୁ ପଦାକୁ ଗୋଡ଼ କାଢ଼ିବାକୁ ସେ ଶଙ୍କିତ ହେଲା । ଗ୍ରାମର ଲୋକେ ଜାଣିଲେଣି । ମୁରବିକେଇ ହସି ପଚାରିଲେଣି, କି ହୋ ବିକିବାବୁ ! କାହିଁକି ସେମାନେ ତୁମକୁ ଛାଡ଼ିଦେଲେ ?

କେତେ ପ୍ରଶ୍ନ ।

ପିଲାଙ୍କୁ ପଢ଼େଇପାରିଲ ନାହିଁ ? କଲେଜରେ ସବୁ ପାଠ ଶେଷ କରିଥିଲ ପରା ? ତହବିଲ ଖାଇଗଲ ? ସଭାପତିଙ୍କୁ ଘେରାଉ କରିବାକୁ ପିଲାଙ୍କୁ ମତାଉଥିଲ ? ଅମୁକ ଲୋକର ବଡ଼ ଝିଅଟାକୁ କ୍ଲାସରେ କଷ୍ଟ ପାଠ ପଚାରି ଅପଦସ୍ଥ କଲ ଯେ, ସେ କୁଆଡ଼େ କାନ୍ଦିଲା ? ଅକସ ରଖି କେଉଁ ପିଲାକୁ ଫେଲ୍ କରାଇଦେଲ ଯେ—

ସେମାନଙ୍କ ପ୍ରଶ୍ନର ଉତ୍ତର ଦେବାକୁ ବିକ୍ରମକୁ ଘୃଣା ଲାଗେ । ପଦେ ଏଣୁ ତେଣୁ ଜବାବ ଦେଇ ସେ ଆସି ଘରଭିତରେ ପଶେ । ବହି ପଢ଼ିବାକୁ ଆଗ୍ରହ ହୁଏ ନାହିଁ । ସେଗୁଡ଼ା ଯେପରି ଉପହାସ କଲା ପରି ମୁହଁକୁ ଡବଡବ କରି ଚାହାନ୍ତି । ପଚାରନ୍ତି, ଘୋଷି ଘୋଷି ପାଠ ସରିଲା ନାହିଁ କି, ଆହୁରି ପଢ଼ିବ ? ଆମ ଭିତରେ ଜ୍ଞାନ ପାଇବ, ଧନ ପାଇବ ନାହିଁ । ଧନ ଅଛି ଅଲେଖର ତେଲ କଳେଇରେ, ଭଜନା ରାଉତର ଦଣ୍ଡି ଓ ବଟକରାରେ, ରଥିଆ କେଉଟର ମାଛ ଟୋକେଇରେ, ରାମ ବଢ଼େଇର ବଟାଳିରେ, ଧକଳା ଭୋଇର ଦା କଟୁରାରେ, ରାଜମାଡରେ—

ବିକ୍ରମର ବେଳ କଟେ ତା'ର ଛୋଟ ବଗିଚାରେ । ମାଟି ଖୋଳୁଣୁ, ଘାସ ବାଛୁଣୁ, ଜହ୍ନି, ଭେଣ୍ଡି, କଖାରୁ ଓ ମକା ଗଛର ମୂଳରେ ଖତ ମାଟି ଦେଉଣୁ ସେ ଅନେକ କଥା ଭାବେ ।

ବଡ଼ ବଡ଼ ଜଟିଳ ସମସ୍ୟା—ଏବକାର ରାଜନୀତି, ଦେଶରେ ଜନତାର ନୈତିକ ଅବନତି, ଧର୍ମ ମଧ୍ୟବିତ୍ତ ଓ ଦରିଦ୍ରଙ୍କର ଅବସ୍ଥା—। ବୈପ୍ଳବିକ ଚିନ୍ତା । ତା ପରେ ଶିକ୍ଷିତ ବେକାର, ପୁଣି ଦରିଦ୍ରଙ୍କର ଭବିଷ୍ୟତ କର୍ତ୍ତବ୍ୟ—

ଅବାନ୍ତର ଚିନ୍ତାରେ ବାଧା ଦିଅନ୍ତି ସ୍ନେହମୟୀ ଜନନୀ, ଖରାରେ କେତେବେଳଯାଏ ସିଝୁଥିବୁ, ବାପ, ଝାଳରେ ତ ଗାଧୋଇ ପଡ଼ିଲୁଣି । ସେତିକି ଥାଉ, ଆ ।

ବିକ୍ରମ ବାଧ୍ୟ ହୋଇ ଉଠେ । ବିରକ୍ତ ହେବାକୁ ସେ ମନ କରେ, କିନ୍ତୁ ଚନ୍ଦନାଙ୍କର ନିରକ୍ତିଆ ଶୁଖିଲା ମୁହଁକୁ ଚାହିଁ ସେ ତାର ଅଲୋଡ଼ା କ୍ରୋଧକୁ ଢୋକିଦିଏ । କହେ, ଯାଉଛି ଚାଲ ।

ବିକ୍ରମ ଉଠେ ।

ଚନ୍ଦନା କହନ୍ତି, ଏ ସବୁ ମୂଲିଆ କାମ ଆଉ ତୁ କରିନା, ପୁଅ ! ବେଳ ପାଇଲେ ମୁଁ କରିବି । ତୋ ଖୁଡ଼ୀ ବାସନ୍ତୀ କହୁଛି, ଗଉଣି ଗଉଣି ଟଙ୍କା ଖରଚ କରି ବିକିକୁ କ'ଣ ପାଠ ପଢ଼ାଇଥିଲ ମୂଲିଆ ହେବାକୁ ? ମୁଁ ତାକୁ କି ଜବାବ ଦିଅନ୍ତି ? ତୁ ଆଉ ସେ ଛୋଟ କାମରେ ହାତ ଦେଏନା ।

ବିକ୍ରମ ଉତ୍ତର ଦେଲା ମନେ ମନେ, ନିଜର କାମ ନିଜେ କଲେ ମଣିଷ ଛୋଟ ହୁଏ ନାହିଁ କି ବଡ଼ ହୁଏ ନାହିଁ । ସେ କେବଳ ତାର କର୍ତ୍ତବ୍ୟ କରେ । ବିକ୍ରମ ମୁହଁ ନ ଖୋଲି ଚନ୍ଦନାଙ୍କର ପଛେ ପଛେ ଘରଭିତରକୁ ଆସିଲା ।

ସେଦିନ ଅପରାହ୍ଣରେ ଚନ୍ଦନା କହିଲେ, ଚାକିରି ଖଣ୍ଡେ ପାଇଁ ତୁ ଚାରିଆଡ଼କୁ ଦରଖାସ୍ତ ଲେଖୁଛୁ । କେଉଁଠାରୁ ଡାକରା ଆସୁନାହିଁ । ମୁଁ ଭାବୁଛି, ତୁ ନିଜେ ଯାଇ ତୋ ମାମୁଁକୁ କହ । ସେ ଚେଷ୍ଟା କଲେ ତୋତେ କେଉଁଠି ସେ ରଖାଇଦେବ ।

ମୋ କଥା ମୁଁ ବୁଝିବି, ବୋଉ ମୋ ପାଇଁ ଅନ୍ୟ କାହାର ମୁଣ୍ଡ ଖେଳାଇବା ଲୋଡ଼ା ହେବ ନାହିଁ । ମାମୁଁମଣିଙ୍କର ଦୟାର ବୋଝ ବଳେଇପଡ଼ିବାରୁ ତାଙ୍କ ଘର ଛାଡ଼ି ମୁଁ ଚାଲିଆସିଥିଲି । ତାଙ୍କ ଘରକୁ ଯିବି ତ ଭଣଜା ହିସାବରେ ନମସ୍କାର କରିବାକୁ ଯିବି । ତାଙ୍କର କାଣିଚାଏ ଦୟା ମାଗିବାକୁ ଯିବି ନାହିଁ ।

ତାଙ୍କ ଉପରେ କାହିଁକି ତୁ ଅଭିମାନ କରି ଦୂରେଇ ରହିଛୁ ରେ ପୁଅ ? ଭଣଜା ପାଇଁ ଯନ୍ତ ମାମୁଁ କରୁଛି କରେ, ସେଇଟା ଦସ୍ତୁରଚଳେ ଗଣା ହୁଏ ନାହିଁ । କରଚଣ୍ଡା ଦେଇ ରହିଲେ କିଏ କାହାକୁ ପଚାରିବ ? ମୁଖ ନ ଫିଟିଲେ କାହାର କେବେ ଦୁଃଖ ଯାଏ ନାହିଁ ।

ମୋ କଥା ମୁଁ ବୁଝିବି, ତୁ ଶୁଣ ହ ! ଚାକିରି ପାଇଁ ତୁ ମତେ ବ୍ୟସ୍ତ କଲେ ମୁଁ ଘର ଛାଡ଼ି ଚାଲିଯିବି, କହୁଛି । ଦୁଃଖକଷ୍ଟ ସହି ଅପମାନଆ ସବୁ ବ୍ୟବହାର ମନରେ ଭେଦାଇ, ବିବେକର ବିରୁଦ୍ଧରେ ମଳିମଳି ହୋଇ ପରର ଧନ ବଢ଼ାଇବାକୁ କଳାବଜାର, ଚୋରବଜାରବାରରେ ସହାୟ ହୋଇ ଯୁଦ୍ଧା ପାଠ ପଢ଼ି ପାସ୍ କରିବା ମୋର ନିଜର ଆପୁତ୍ତିରେ ଥିଲି । ଚାକିରି ଦେବା ନ ଦେବା ପରହାତର କଥା ।

ହଁ ରେ ପୁଅ, କପାଳର କଥା । ଭାବିଛି, ମୁଁ ଠାକୁରାଣୀ ମାର୍ଜନା କରାଇବି । ରଥିଆ କେଉଟକୁ କାଳସି ଲଗାଇବି । ତାଙ୍କଠାରେ ଠାକୁରାଣୀ ଅବତରିଲେ ସେ ଯାହା କହିବେ ସତ ଫଳିବ । କାଳିଆ ବୋଦାଟିଏ ବଳି ଯାଚିବି । ରଙ୍ଗୁଲି ଭାଉଜର କଳାଛନଛନ ବୋଦାଟିଏ ଅଛି । ମାଗିଲେ ସେ ମନା କରିବ ନାହିଁ । ଦାଣ୍ଡିମୂଲ ଯାହା ହେବ ଆମେ ଦେବା ।

ତୋ'ର ଯାହା ମନ ତୁ କର, କିନ୍ତୁ ମୋ ନାମରେ କେବଳାର ସେହି ସ୍ନେହର ବୋଦାକୁ ଛେଦନ କରିବାକୁ ମାନସିକ କର ନା । ଘରି ପୋଷା ମାନିଛି । ଆଜି ଥରେ ଭୁବନେଶ୍ୱର ଯାଇଥିଲି । କେବଳାକୁ ଭେଟିଲି । ସେହି ବୋଦାଟି କଥା ସେ ମୋତେ ପଚାରୁଥିଲା ।

ଆରେ ପୁଅ ! ବୋଦା ଜନମ ଠାକୁରାଣୀଙ୍କ ପାଇଁ । ହଉ ହେଲା, ସେ ବୋଦା ନ ହେଉ, କେବଳାକୁ କହିଲେ ସେ ଆଉ କେଉଁଠୁ କିଣି ଆଣିବ । ମୁ ମାନସିକ କରେଁ । ତୋର ଚାକିରି ହେଉ, ସେଇଠୁ ଯାହା ।

ନିଜର ବିଶ୍ୱାସକୁ ମନରେ ଆଣ୍ଠି କରି ଧରି ତାର ବୋଉ ବୁଢ଼ୀ ହେଲେଣି । ଠାକୁରାଣୀଙ୍କ ପ୍ରତି ସବୁ ବିଶ୍ୱାସ ସତ୍ତ୍ୱେ ସେମାନଙ୍କର ଦୁଃଖ ଓ

ଦାରିଦ୍ର୍ୟ ଦୂର ହୋଇନାହିଁ । ପୁଷ୍ଟିକର ଖାଦ୍ୟ ଅଭାବରୁ ଦେହ ଭାଙ୍ଗିପଡ଼ୁଛି । ତଥାପି ମାନସିକ କରିବାକୁ ହେବ !

ଏଇଟା ଗୋଟାଏ କୁସଂସ୍କାର, ଏତକ ବୁଝାଇ ପୁରୁଷାନୁକ୍ରମେ ଗଡ଼ି-ଆସୁଥିବା ଅନ୍ଧବିଶ୍ୱାସକୁ ଚନ୍ଦନାଙ୍କର ମନରୁ ଛଡ଼ିବା ସମ୍ଭବ ନୁହେ । ତାଙ୍କର ଦୁର୍ବଳ ଆଶାପ୍ରୀ ମନ କୌଣସି ଯୁକ୍ତି ଗ୍ରହଣ କରିବ ନାହିଁ । ଦେବୀଙ୍କର କୋପଦୃଷ୍ଟି ପଡ଼ିବାର ଅହରହ ଆଶଙ୍କାରେ ସେ ମନ ଛଟପଟ ହେବ । ଦୁଃସ୍ୱପ୍ନ ଦେଖିବ । ଖାଲି ଆଉଟପାଉଟ ହେଉଥିବ ।

ବିଷମ ପ୍ରତିବାଦ କଲା ନାହିଁ । ଭାବିଲା, ଏ ମଧ୍ୟରେ ଯଦି ସେ କଟକ ଯାଇ ତାର ଦରଖାସ୍ତଗୁଡ଼ିକ ଉପରେ କ'ଣ ବିଚାର ହେଲା, ଖବର ବୁଝିଆସିବ । ନିଜର ନାମ ସେ ଏମ୍ପ୍ଲଏମେଣ୍ଟ ଏକ୍ସଚେଞ୍ଜ ଅଫିସରେ ତାଲିକାଭୁକ୍ତ କରିସାରିଛି । କାର୍ଡ ହାସଲ କରିଛି । ତାହାରିପରିକା ଶହ ଶହ ଶିକ୍ଷିତ ବେକାର ସେ ତାଲିକାରେ ଅଛନ୍ତି । ଦିନୁଦିନ ସଂଖ୍ୟା ବଢ଼ୁଛି । କୌଣସିଠାରୁ ଡାକରା ଆସିଲା ନାହିଁ । ସେ କ'ଣ ଏତେ ଅନୁପଯୁକ୍ତ, ହତଭାଗ୍ୟ !

ମାମୁଁଙ୍କ ବସାକୁ ଯିବ । ସେମାନଙ୍କୁ ଦେଖି ଖବର ଅନ୍ତର ବୁଝି ସେ ଗୋଡ଼େ ଗୋଡେ ଫେରିଆସିବ । ତାର ଉପସ୍ଥିତି ଅନୁସାର ଶେଷ ପତ୍ରର ଉତ୍ତର ଦେବ ।

ତିନି ମାସ ତଳେ ଅନୁସାର ପତ୍ରଖଣ୍ଡି ସେ ପାଇଥିଲା । ନିଜେ ପଢ଼ି ବାକ୍ସ ଭିତରେ ସେ ଲୁଚାଇ ଦେଇଥିଲା । ଚନ୍ଦନାଙ୍କୁ ଦେଖାଇ ନ ଥିଲା ।

ନିରୋଳା ବେଳରେ ପତ୍ରଟି କାଢ଼ି ସେ ଆଉଥରେ ପଢ଼ିଲା— ପ୍ରଥମ ବାର୍ଷିକ ପରୀକ୍ଷାରେ ଦ୍ୱିତୀୟ ଶ୍ରେଣୀରେ ଯେ ମୁଁ ପାସ୍ କରିପାରିଛି, ସେତିକ ମୋର ଭାଗ୍ୟ । ପଢ଼ାପଢିରେ ବେଶ୍ ବ୍ୟାଘାତ ଘଟିଥିଲା । ବାହାଘର ଓ ପାଠପଢ଼ା ଭିତରେ ଭିଡ଼ାଓଟରି ଯୁଦ୍ଧ ।

—ହାଡ଼ବନ୍ଧ, ମଞ୍ଜୁସା, ଯୂଥିକା ମାଉସୀ ଓ ମୋ ବୋଉ ଗୋଟାଏ ପାଖରେ, ଆଉ ମୁଁ ଆରପାଖରେ ।

—ବାଉରିଆଇଙ୍କ ନିର୍ଲଜ୍ଜପଣିଆ ଶୁଣିବ ? ନିରୁପା ହାତରେ ସେ ମୋ ପାଖକୁ ବଡ଼ିଆ ଚିଠିଖଣ୍ଡେ ପଠାଇଥିଲେ । ତାକୁ ଖୋଲି ପଢ଼ି ସଙ୍ଗେ ସଙ୍ଗେ ଚିରି ଫୋପାଡ଼ିଦେଲି । ସେଣ୍ଡୁ ନିରୁପା ଆଗରେ କହିଲି ତାଙ୍କୁ କହିଦେବାକୁ ଯେ, ମୁଁ ମଦ ଓ ମଦୁଆଙ୍କୁ ଘୃଣା କରେ । ବୋଉକୁ ସଫା ମନାକରିଦେଲି ଯେ ବି. ଏ. ପାସ୍ ନ କରିବା ଯାଏ ମୁଁ ବାହାହେବି ନାହିଁ ।

—ବୋଉ ମୋ ଉପରେ ରାଗିଛି । ଶୁଣିବ ମଜାର କଥା ? ତମେ ମୋ ପାଖକୁ ଚିଠି ଦିଅ କି ନାହିଁ ବୋଉ ନିରୁପାକୁ ଗୁପ୍ତରେ ପଚାରୁଥିଲା । ମୋର ବହି ଥାକ ସେ ଖୋଜୁଥିଲା । ତମେ କାହିଁକି ଚିଠି ଲେଖୁନା, ବିକଭାଇ ? ଅହା, ବିଚରା ବୋଉଟିକୁ ହତାଶ କଲି କାହିଁକି ? ତମକୁ ମୋ ରାଣ, ନିଶ୍ଚୟ ଚିଠି ଖଣ୍ଡିଏ ଦେବ । ତମ ମନକୁ ଯାହା ଆସିବ ଲେଖିବ, ବିକଭାଇ ! ମୁଁ ପଢ଼ିବି, ଖୁସିହେବି । ବୋଉକୁ ନିଶ୍ଚୟ ପଢ଼ିବାକୁ ଦେବି ।

—କେବେ ତମେ ଡେପୋଟି ହେଉଛ, ବିକଭାଇ ? କେବେ ସେ ନାଗରଜାର ଝିଅ ଉଲୁପୀ ମୋର ଭାଉଜ ହୋଇ ଆସୁଛନ୍ତି ? ମାନ ଅପମାନକୁ ତମର ଖାତିର ନ ଥାଏ, ମୁଁ ଜାଣେ । କାହିଁକି ତେବେ ତମେ ଆମ ଘରଆଡ଼େ ଆସୁନା ? ନିଶ୍ଚେ ଆସିବ ।

ଚିଠିଖଣ୍ଡି ବିକ୍ରମ ପୁଣି ତାର ଟ୍ରଙ୍କ ଭିତରେ ଲୁଚାଇଦେଲା । ଭାବିଲା, ଏହାର ଉତ୍ତର ସେ ଦେଇ ନାହିଁ କି ଦେଇପାରିବ ନାହିଁ । ମାମୁଁମାଇଁଙ୍କର ଆଦର ସ୍ନେହ ତ ନାହିଁ, ସମ୍ବନ୍ଧ ଛିଡ଼ିଯାଇଛି । ସେମାନଙ୍କର ଦର୍ଶନ କରିବାକୁ ବେକାର ଜୀବନରେ ଗଲେ ସେମାନେ ମଣିବେ, ଆସିଗଲେ କୃପାପ୍ରାର୍ଥୀ !

ଭଗ୍ନସ୍ୱାସ୍ଥ୍ୟ ନେଇ ଷାଉକେଶଷ ଗ୍ରାମକୁ ଫେରିଆସିଲେ । ତାଙ୍କୁ ଜଣା ନ ଥିଲା ଯେ, ବସନ୍ତର ଆଉ ମାଷ୍ଟ୍ରଷ ଚାକିରି ନାହିଁ । ସେ ବେକାର ହୋଇ ଘରେ ବସିଛି । ଷାରକେଶଷଙ୍କର ଚାକିରି ଯାଇନାହିଁ । ସେ ଚାକିରିରୁ ଇସ୍ତଫା ଦେଇନାହାନ୍ତି । ସେ ବନାଦରମାରେ ଚାରିମାସ ଛୁଟି ନେଇ ଆସିଛନ୍ତି । ସ୍ୱାସ୍ଥ୍ୟ ଫେରିଲେ ପୁଣି ସେ କାର୍ଯ୍ୟରେ ଯୋଗଦେବେ ।

ଘରର ଅବସ୍ଥା ବଦଳିଛି, କିନ୍ତୁ ବସନ୍ତର ନିଯୁକ୍ତିହୀନତା ତାଙ୍କର ମନରେ ହତାଶାର ଚହ୍ନିକା ଆଣିଲା । ଭାବିଲେ, ସବୁ ଆଶା, ସବୁ ଉଦ୍ୟମ ତାଙ୍କର ବିଫଳ ହୋଇଛି । ନିଜକୁ ତିଳ ତିଳ କରି ଜାଳି, ପୈତୃକ ସମ୍ପତ୍ତି ବିକି ତୋକେ ପିଇ ଦଣ୍ଡେ ଖାଇଁ, ଜାଣି ଗୋଟିଏ ଯୁଗ ତପସ୍ୟା କରି ସେ ବସନ୍ତକୁ ପାଠ ପଢ଼ାଇଲେ । ପିଲା ପାଠୁଆ ହେଲା, ମଣିଷ ହେଲା ନାହିଁ ।

ସ୍ୱେରମୁହାଁଟା । ଫନ୍ଦିଫିକର ଜାଣିଲା ନାହିଁ । ମାଇଚ୍ଛଙ୍କ ପରି ଘରେ ବସିରହିଲେ, ଆଜିକା ଦୁନିଆରେ କିଏ ଆଣି ଚାକିରି ଗୋଡ଼ତଳେ ଥୋଇଦେଇଯିବ ?

ମନର ଭାବ ସେ ପ୍ରଥମେ ପ୍ରକାଶ କଲେ ନିରୋଳାରେ ଚନ୍ଦନାଙ୍କ ଆଗରେ । ଗ୍ରାମର ଲୋକେ ବସନ୍ତକୁ ପ୍ରଶଂସା କରୁଛନ୍ତି, ଚନ୍ଦନା ! କହୁଛନ୍ତି, ଗ୍ରାମଯାକରେ ସାର ପିଲାଟାଏ ସେ ।

କାହିଁକି ପ୍ରଶଂସା ନ କରିବେ ? ମୋ ପିଲା ମିଛ କହେ ନାହିଁ । ଜାଲଜାଲିଆତି ଫିସାଦର ପାଖ ପଶେ ନାହିଁ । କାହାରି ଭଲରେ ନ ଥାଏ, କି କାହାରି—

ସେତିକି କଥା, ବସନ୍ତ ହଲିଲା ପାଣିକି ହାତ ବଢ଼ାଏ ନାହିଁ । ପୁଅ ନ ହୋଇ ସେ ଝିଅଟିଏ ହୋଇଥିଲେ ଭଲ ହୋଇଥାନ୍ତା ! ହଇ ହେ, ଏ ଦୁନିଆରେ ଯିଏ ନିଜେ ନାଟ କରି ନ ଜାଣେ, ସେ ଅନ୍ୟମାନଙ୍କୁ ନଚାଇବ କିପରି ? ଲୋକଙ୍କୁ ନ ନଚାଇଲେ ପଇସା ଝଡ଼ିବ ନାହିଁ ।

ତମେ ବସି ନଚାଉଥା । ବସନ୍ତ କାହୁଅକୁ ଯିବ ନାହିଁ, ଗୋଡ଼ ଧୋଇବ ନାହିଁ । ଚାରି ଅକ୍ଷର ପଢ଼ିଛି । ବୁଦ୍ଧି ଖଟାଇ ଚାରି ପଇସା ଭେଇବ ।

ଆମେ ଶାଗପାଣି ପିଇ ସଂସାରରେ ବଞ୍ଚିରହିବୁଁ । ଶ୍ରେଷ୍ଠ ଓକାଲତି କରି, ପରକୁ ଠକି, ହୀନସ୍ତା କରି ମୋ ପୁଅ ଧନୀ ହେବାକୁ ଚାହେଁ ନାହିଁ ।

ଏବେ ବୁଝିଲ, କାହିଁକି ସେ ଟୋକା ନିଷ୍କର୍ମା ହୋଇ ଘରେ ବସିଛି । ତମର ମୁହଁବଡ଼ା । ପରପିଲାଏ ଫଳକୁଫଳ ଆସି ତା'ଠାରୁ ପାଠ ବୁଝି-ଯାଉଛନ୍ତି । କେହି ତ ପଇସାଟିଏ ଦେଉନାହାନ୍ତି ?

ପାଠ ଗୃହପଦ ବୁଝିଲେ, ସେଥିକି ପଇସା ଦେବେ କାହିଁକି ? ବିକ୍ରମର କ'ଣ ପାଟି ଯୋଡ଼ହୋଇପଡ଼ୁଛି ?

ଯେ ପଦେକୁ ସେ ପଦେ । ବୋଲାବୋଲି । ଆରମ୍ଭ ହୁଏ ଝଗଡ଼ା । ଗୋଳ ଖୋଳାଖୋଳି । ଭାଗ୍ୟକୁ ଏକୁଟିଆ ଘର, ନୋହିଲେ ପଡ଼ୋଶୀ ଘରର ମାଇପେ ଭିଡ଼ ଆସନ୍ତେ, ହେଉ ପଛେ ଦାମ୍ପତ୍ୟ କଳହ । ପଦାକୁ ପାଟି ଶୁଭେ । ବାସନ୍ତୀ କାନପାରି ଶୁଣନ୍ତି । ପଦ ପଦ କରି ମନେ ରଖନ୍ତି ।

ବିକ୍ରମ ପଦାରୁ ଫେରିବା ଆଗରୁ, ଅବା ଫେରିବା ସଙ୍ଗେ ସଙ୍ଗେ ଝଗଡ଼ା ବନ୍ଦହୁଏ । ମୁହଁ ଫଣଫଣ କରି ବୀରକେଶରୀ ଘରୁ ବାହାରିଯାଆନ୍ତି । ଚନ୍ଦନା ଝରଝର ହୋଇ ଆଖିରୁ ଲୁହ ପୋଛନ୍ତି । ହସହସ ହୋଇ ଘରେ କିଛି ଅଶାନ୍ତି ନ ଘଟିଥିବାର ଢଙ୍ଗ ଦେଖାନ୍ତି ।

ବିକ୍ରମକୁ କିଛି ଅଛପା ରହେ ନାହିଁ । ବେଳ ଜାଣି ଖୁଡ଼ୀ ବାସନ୍ତୀ ବିକ୍ରମର କାନରେ ସବୁ ଫୋଡ଼ନ୍ତି । ଗୁରି ଗୁରି ପଦ ଯୋଡ଼ିଦିଅନ୍ତି । ନିଜର ମନ୍ତବ୍ୟ ବି ପ୍ରକାଶ କରନ୍ତି—ତମ ବୋଉଙ୍କର ଏଇଟା ଅନ୍ୟାୟ, ବିକ ! ଦେଖୁଛ ତ ସାଆନ୍ତଙ୍କର ରୂପ । ହାଡ଼ପଞ୍ଜର ଦେହ ହଡ଼ା ବଳଦ ପରି ହେଲାଣି । ବୁଢ଼ା ମଣିଷ । କାମକୁ ନ ପାରିବାରୁ ବେଗଣା ଦେହ ଧରି ଛୁଟି ନେଇ ଚାଲିଆସିଲେ । ଟିକଏ ଚଡ଼୍ଢୋଳ ହୋଇଛନ୍ତି । ତାଙ୍କ କଥା ସହିଗଲେ ହୁଅନ୍ତା ନାହିଁ ?

ବିକ୍ରମ ଜବାବ ନ ଦେଇ ଉଠିଆସେ । ସେ ଜାଣେ, ବାସନ୍ତୀଙ୍କର ଦରଦପଦରେ ମନଯୋଡ଼ା ପାଞ୍ଚଭେଦ ଥିବ । ତାଙ୍କର ଦେଖାଣିଆଁ ସହାନୁଭୂତି ଯେ ପ୍ରଚ୍ଛନ୍ନ ବିଦ୍ରୂପର ରୂପାନ୍ତର, ଏହା ବୁଝିବାକୁ ତାର ଆଉ ବାକି ନ ଥିଲା ।

ତେବେ ଘଟଣାଟି ସତ୍ୟ ଯେ, ତାର ବାପା ଓ ବୋଉଙ୍କ ମଧ୍ୟରେ ଝଗଡ଼ା ହୋଇଛି । ସେହି ଝଗଡ଼ାର ମୂଳ କାରଣ ହେଉଛି ଅଧିକ । ସେଥିପାଇଁ ସେ ନିଜେ ଦାୟୀ ।

ଷୀରକେଶଷ ଗ୍ରାମକୁ ଫେରିବାର ମାସ ପୂରିଗଲା । ଏହି ସମୟ ଭିତରେ ଘରେ ଛନ୍ଦିଷ୍ଟ ଥର ଅଶାନ୍ତ ହୋଇଗଲାଣି । କାହାର ଭୁଲ, କାହାର ଠିକ୍ ତାର ବିଚାରକ ଅନ୍ତତଃ ସେ ହୋଇପାରିବ ନାହିଁ । ମୁହଁ ଖୋଲି କାହାକୁ ସେ ସାନ୍ତ୍ୱନା ଦେଇପାରିବ ନାହିଁ । ଶାସନ କରିପାରିବ ନାହିଁ ।

ତାର ବାପା ନିଜର ଦୁର୍ବଳ ଦେହକୁ ଉପେକ୍ଷା କରି ଗ୍ରାମର ଘରଘର ବୁଲୁଛନ୍ତି । ନିଜ ରକ୍ଷଣ ଅସମ୍ଭବ, ସେ କାହୁଁ ପରକୁ ରଖିବ ? ତଥାପି, ସଣ୍ଡୀଟଣ୍ଡୀଙ୍କଠାରୁ ଆରମ୍ଭ କରି, ନିତ ମୂଳିଆ, ବଢ଼େଇ, କମାର, ଗୁଡ଼ିଆ, କେଉଟ, ଝୁଙ୍କରିଆ ଓ କଳାବଜାରୀ, ଠକ ବ୍ୟବସାୟୀଙ୍କ ପିଣ୍ଡାରେ, ଶାଳରେ, ଦୋକାନଘର, ଗାଁ ଦାଣ୍ଡ, ଭାଗବତ ଟୁଙ୍ଗୀ, ବିନୋଦବିହାରରେ ବସି ଗପ କରି ସମୟ ନଷ୍ଟ କରୁଛନ୍ତି ।

କଅଣ ସେ ଗଳ୍ପ, ବିଷୟକୁ ଅବିଦିତ ନାହିଁ । ନିଜର ବନ୍ଧୁନ୍ଦ୍ୱ ଅଭିଜ୍ଞତା, ତାଙ୍କର ଅନଶନ, ଯହିଁରେ ସେ ପ୍ରବଳପ୍ରତାପୀ ସରକାର ବାହାଦୂରଙ୍କର ଆସନ ଟଳାଇ ଅନ୍ୟାୟ ଆଦେଶ ରଦ୍ଦ କରାଇଥିଲେ । ପରସ୍ପରର ହାଲ୍‌ଚାଲ୍ ଶୁଣି ସହାନୁଭୂତି ଦେଖାଇବାରେ, ଅନ୍ୟର କାର୍ଯ୍ୟକୁ ପସନ୍ଦ କରି ଉତ୍ସାହିତ କରିବାରେ ମଧ୍ୟ ସେ ସମସ୍ତ ବ୍ୟସ୍ତ କରୁଥିଲେ । ସେ ସାରୁପରିବା ପରି ହେଉଥିଲେ । ସମସ୍ତଙ୍କ ସଙ୍ଗେ ମିଶୁଥିଲେ ।

ସବୁ ଘରର ଠିକଣାଖି ଖବର ତାଙ୍କୁ ଜଣାଥିଲା । ସବୁ ସେ ଜଳଜଳ କରି ଦେଖୁଥିଲେ । କିନ୍ତୁ କାହିଁରେ ଟିପ ଗେଞ୍ଜୁ ନ ଥିଲେ । ସେ ଅହିଂସ୍ର ମାମଲତକାର । ବୋଧହୁଏ ଅନ୍ୟମାନଙ୍କର ସବୁ ଗୋପନ ସମ୍ବାଦ ଜାଣି । କେଉଁ କାରଣରୁ କେଉଁମାନଙ୍କ ମଧ୍ୟରେ ଶତ୍ରୁତା ଜନ୍ମିଛି, ଆଗେ ଯେଉଁମାନେ ପରସ୍ପରର ମହାଶତ୍ରୁ ଥିଲେ, ଏବେ କେଉଁ କାରଣରୁ

ସେମାନଙ୍କ ଷୀଭଙ୍ଗର ସମ୍ପର୍କ ହୋଇଛନ୍ତି, ସେ କଳନା କରୁଥିଲେ । ସୁଆଡୁ ବରଷା ତେଣିକ ଛତା । ବାଗ ଭଣ୍ଡି ପଦେଅଧେ ଟେଣ୍ଡ୍ରଲ କଥା । ସେତକରେ ଆଉ କେଉଁମାନଙ୍କର ବୋଲବୋଲ, ବଧା ଉଆଜନ୍ଧ, ଚୁଟି ଧଗଧର ।

ଲଭ ନ ଥାଇ ଷାଉକେଶଗ୍ର କୃଟମ୍ପତର କଳାବଜାର ଚଳାଉ ନ ଥିଲେ । ସେ ଲଭ ପତ୍‌କଅନ୍ଧ ହେଲେ ହେଉ—ଫେଣାଏଁ କଲ୍ପଳ କଦଳୀ, ଢ଼'କଲେ ଅକ୍ତ, ସାରୁ, କାଳାମିଚମିଚ ବାଇଗଣ, କଅଁଳ ଛନଛନଆ ଭେଣ୍ଡି ସ୍ବରଣ୍ଡା, ମୁଠିଏ କୋଶଳାଶାଗ । ମସୁଧା ଦେବାର ମୂଲ୍ୟ । ନଜ କଗମତ ସମ୍ବନ୍ଧରେ ଲେକ୍‌ଚର ଦେବାର ଇନାମ୍ ।

ପରର ଦୋଷକୁ ଗୁଣ କରିବାରେ, ଟେକାଟେକ ବଳରେ କୁଆକୁ ଶୁଆ କରି ମୋହବଲ୍ଲରେ ମୁହଁ ବାନ୍ଧିବାରେ ସେ ପାରଙ୍ଗମ ଥିଲେ । ମଉକା ଦେଖି ଲହଡ଼ିଆ ପାଣି ଭିତରକୁ କୃଟମ୍ପତର ନଉକା ହାଉଲେ ହାଉଲେ ମେଲଦେଉଥିଲେ । ତାଙ୍କର ସେହି ନୌକା ଭିତରକୁ ଘୁଏଁ ଘୁଏଁ ଡେଇଁ ପଡ଼ୁଥିଲ ଟିଙ୍ଗୀ କଇଣ୍ଡି ପରି ଅଁଠଣା ଟଙ୍କାଏ । ଯଥା ଲଭ ।

ବିକ୍ରମକୁ ଏହା ଅଜଣା ନ ଥିଲ । ବନେ ଅଲେଖା ଅଟାରେ ଅଟାରେ କହିଲ, ଜାଣ କ ବିକ୍ରମବାବୁ ! ଷାଉକେଶଗ୍ର ମଉସା ଆସିଲ ଦିନରୁ ଆମ ଶିରପଲ୍ଲି ଗ୍ରାମରେ ଆଉ ମନ ଫଟାଫଟି ନାହିଁ । ସେ ଦୁଇ ପକ୍ଷର ଓକଲ ହୋଇ ସବୁ ମିଳାମିଶା କରାଇଦେଇ ପାରୁଛନ୍ତି । ତାଙ୍କର ଫିଜ୍‌ଟା ଅତି କମ୍ ।

ଫିଜ୍ ?

ମଉସା ନଜେ କେବେ ମାଗନ୍ତି ନାହିଁ, ବିକବାବୁ ! ସେ କେବଳ ପରର ବାରି ଓ ପିଣ୍ଡାକୁ ଅନାଇଁ ସ୍ନେହ ପ୍ରକାଶନ୍ତି, ପ୍ରଶଂସା କରନ୍ତି । ତାଙ୍କର ପରାପର ଭେଦ ନ ଥାଏ, ବିକବାବୁ ! ଯିଏ ଯାହା ଦିଏ, ନେବାକୁ ସେ ମନା କରନ୍ତି ନାହିଁ ।

ବିକ୍ରମ ଲଜିତ ହେଲ । କଥାକୁ ଅନ୍ୟ ବାଟରେ ମୋଡ଼ିଦେବାକୁ ସେ ପଚାରିଲ, ତୋର ସ୍ବଉଳ କଳ କେବେ ସ୍ଥଳ ହେବ, ଅଲେଖ ?

ଚଳାଇବାକୁ ଲୋକ ଦରକାର । ବିଶ୍ୱାସୀ ଲୋକ ଜଣେ ଜୁଟିଲେ ଭଲ ଦିନବାର ଦେଖି ସ୍ଥିରକରିବା । ହିସାବ ରଖିବାକୁ ଚତୁର ଲୋକଟିଏ ବି ଲୋଡ଼ା । ଥରେ ସ୍ଥିରହେଲେ ଆଉ ସମ୍ଭାଳି ହେବ ନାହିଁ । ବାରମଉସା ରହିବାକୁ ରାଜି ବୋଲି ପାବଣାକୁ କହିଥିଲେ ଯେ—

ବାପା ତୋର ଗୁମାସ୍ତା ହେବେ ?

ସେହି କଥା ମୁଁ ବିଚାରୁଥିଲି । ତେବେ ବିଦେଶରେ ରହି, ନିସାହା ଅବସ୍ଥାରେ ପଡ଼ି ଶହେ ଟଙ୍କା ରୋଜିବା ଅପେକ୍ଷା ଗ୍ରାମରେ ଥାଇ ଟଙ୍କା ଷାଠିଏଟି ରୋଜଗାର କରିବା ଶହେଗୁଣେ ଭଲ ।

ଅବ୍ୟକ୍ତ ବେଦନାରେ ବିଷମ ଛେପ ଢୋକିଲି । ବିଚାରିଲି, ଶେଷକୁ ଅଲେଖାର ଗୁମାସ୍ତା ହେବାକୁ କେଶରୀ ବଂଶର ପିଲା, ଅଲେଖାର ଅଜାଡିଆ ବଙ୍ଗାଳୁଣୀ ଝିଯା କାଳିକାର କଳକଣ୍ଠିଆଣୀ ଟୋକୀ ପାବଣା ପାଖରେ ଗୁହାରି କଲେ ! ଏହାଠାରୁ ବଳି ବଡ଼ ଅପମାନ ଆଉ କଅଣ ହୋଇ-ପାରେ ? କିପରି ସେ ଗ୍ରାମରେ ଆଉଯାଉ ହେବ, ମୁଣ୍ଡ ଟେକି ବାଟ ଚାଲିବ ? ଏହା ଅପେକ୍ଷା ମାଇଁଙ୍କର ଶରଣ ପଶି, ତାଙ୍କର ଗୁମାସ୍ତା ହୋଇ, କଳାବଜାର ବେପାରରେ ସାହାଯ୍ୟ କରି ପେଟ ପୋଷିବା ସହସ୍ରଗୁଣେ ଭଲ ।

ସଞ୍ଜ ଅନ୍ଧାର ଘୋଟି ଆସିଥାଏ । ଆଜି କାର୍ତ୍ତିକ କୃଷ୍ଣପକ୍ଷ ଦ୍ୱାଦଶୀ, ଅକ୍ଟୋବର ଊଣେଇଶ ତାରିଖ, ଶନିବାର । ଦୁଇଟି ଦିନ ପରେ ଦୀପାବଳୀ ଅମାବାସ୍ୟା । ବଡ଼ବଡ଼ୁଆଙ୍କୁ ଡାକ ପଡ଼ିବ— ଅନ୍ଧାରରେ ଆସ, ଆଲୁଅରେ ଯାଅ ।

ତାର ବଂଶର ସବୁ ବଡ଼ପଣ ଅର୍ଥ ଆଗରେ ମୁଣ୍ଡ ନୋଇଁଛି । ଅଞ୍ଚଳର ସବୁ ସନମାନ ଧନବାନର ପାଦତଳେ ଅରପି ଦେଇଛି । ଯେଉଁ ଉପାୟରେ ତାର ମାମୁଁ ଓ ଅଲେଖା ଧନ ଠୁଳାଇଛନ୍ତି, ସେମାନେ ସମ୍ମାନର ଅଧିକାରୀ ହୋଇସାରିଛନ୍ତି । ସେମାନଙ୍କ ପଛରେ ତାଙ୍କୁ ମନଇଚ୍ଛା ଗାଳି-ଦେଲେ, ତାଙ୍କର କାମ ଭଲ କି ମନ୍ଦ ଯେତେ ସମାଲୋଚନା କଲେ, ତାଙ୍କର କି ଥାଏ ?

ଅଲେଖର ବନ୍ଧ ଉପର ଦୋକାନରେ ବିଜୁଳି ଆଲୁଅ ଜଳୁଛିଟିକି । ଦଣ୍ଡାଚ ଗୁଡ଼ ବିଜୁଳି-ଖମ୍ବ । ସେଇ ଖମ୍ବରେ ବି ଆଲୁଅ ଲାଗିଛି । ତା ଚାରିପାଖେ ଗ୍ରାମଯାକର ସବୁ ପୋକ ଜମାହୋଇ ଘେରିଘେରି ବୁଲିବାକୁ ଲାଗିଲେଣି । ଅଲେଖର ଆଲୁଅ ସେମାନଙ୍କ ଆକ୍ରମଣରୁ ଉଦ୍ଧାର ପାଇନାହିଁ । ଦୋକାନ ଆଗରେ ପଡ଼ିଥିବା ବେଞ୍ଚ ଉପରେ କେତେଜଣ ଗାଁ ପିଲା ବିକ୍ରମର ସାମନାସାମନି ବସିଛନ୍ତି ।

ଅଲେଖ କହିଲା, ମଉସାଙ୍କର ଦେହ ଭଲ ନାହିଁ । ସେ କହୁଥିଲେ, ବୁଲିଲାବେଳେ ମୁଣ୍ଡ ଝାଙ୍କୁଛି । ପେଟ ଭଲ ରହୁ ନାହିଁ । କହ ବିକବାବୁ, ସେ କ'ଣ ମୋର କାମ ଚଳାଇପାରିବେ ? ପାର୍ବତୀଙ୍କୁ ସେ ଝିଅ କରିଛନ୍ତି । ପାର୍ବତୀ ଓଲମୀ ମୋ ସଙ୍ଗେ ଲଗାଇଛି; କିନ୍ତୁ ମଉସା ମୋ କାମକୁ ପାରିବେ ନାହିଁ । ଏ କପେ ହେବ କି ବିକବାବୁ ?

ଥାଉ ରେ ଅଲେଖ ! ତୁ ଯେଉଁ ସମ୍ବନ୍ଧ ପାତିଲୁଣି, ସେଇ ଅଧିକାରରେ ବିନା ପଇସାରେ ମୁଁ ଜଳଖିଆ ସବୁ ଖାଇହେବ । ବାପା ଯାହା ଭଲ ମଣିବେ, ଲଭକ୍ଷତି ବିଚାର କରି ତୁ ଯାହା ସ୍ଥିର କରିବୁ, ସେଇଆ ହେବ । ତା ମଝିକୁ ତୁ ମୋତେ ଓଟାର ନା ।

କ୍ଷୁବ୍ଧମନ ଘେନି ବିକ୍ରମ ଘରକୁ ବାହୁଡ଼ି ଆସିଲା । ସଞ୍ଜ ଆଲୁଅ ଲାଗି-ସାରିଥିଲା । ବାରଣ୍ଡା ଉପରେ ବସି ବଇଠା ଆଲୁଅରେ ଚନ୍ଦନା ପାଣି-କଖାରୁ କାଟୁଥିଲେ । ଘର ଭିତରେ ଟିଣ ଟେବୁଲ ଉପରେ ନୂଆ ହରିକାନ୍ ଆଲୁଅ ମିଞ୍ଜିମିଞ୍ଜି ଜଳୁଥିଲା । ଖାଇକେଣଙ୍କି ଘରକୁ ଫେରି ନ ଥିଲେ ।

ବିକ୍ରମ ପଚାରିଲା, ବାପା କୁଆଡ଼େ ଗଲେ ? ତାଙ୍କର ଦୁର୍ବଳ ଦେହ । ପେଟ ଭଲ ନାହିଁ । ରାତି ଅଧରେ କାହା ଘରେ କଅଣ ଖାଇ ଫେରିବେ । ମଇଦାନକୁ ଧାଇଁଥିବେ । ଯେତେ ଔଷଧ ଖାଇଲେ କି ଉପକାର ହେବ ? ଘରୁ ପଦାକୁ ଗୋଡ଼ କାଢ଼ିବାକୁ ତୁ ବାରଣ କଲୁ ନାହିଁ ?

ସେ କଣ କଥା ମାନିବେ ରେ ପୁଅ ? ଅଲେଖାର ବୋଉ ଏ ପାଣିକଖାରୁଟି ତାଙ୍କୁ ଦେଇଥିଲା । ତୋ ବାପ ତାକୁ ଘରେ ଥୋଇଛନ୍ତି କି

ନାହିଁ, ପୁଣି କେଉଁମାନେ ଆସି ବାଣ୍ଡରେ ଡାକିଲେ । ସଙ୍ଗେ ସଙ୍ଗେ ସେ ଝୁଲିଗଲେ । ମୋ ମନା ଘେନିଲେ ନାହିଁ ।

ସେ ବିଦେଶରେ ଥିଲାବେଳେ କଅଣ ଶିରପଲ୍ଲି ଗାଁ ରସାତଳକୁ ଖସିଯାଉଥିଲା ? ନିଜ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ନ ଦେଇ ପରଙ୍କର ଘରକଥାରେ ବାପା ମୁଣ୍ଡ ଖେଳାଇ, କେଉଁଠି କ'ଣ ଖାଇ, କାହା ଘରୁ ଶାଗ କେରିଏ, ବାଇଗଣ ପୁଞ୍ଜିଏ, ପାଣିକଖାରୁଟିଏ ଆଣି ନାଁ ପକାଉଛନ୍ତି କାହିଁକି ? ସମ୍ମାନ ହରାଉଛନ୍ତି କାହିଁକି ? ଲୋକେ ବାର କଥା କହୁଛନ୍ତି ।

ମୋ କଥା ସେ ଶୁଣିବେ ନାହିଁ । ତୁ ତାଙ୍କୁ ବୁଝାଇଦେବୁ ରେ ପୁଅ ! ତୋ କଥା ମାନି ସେ ଘରେ ରହିବେ ।

ବୀରକେଶରୀଙ୍କୁ ବୁଝାଇ କହିବାକୁ ବିକ୍ରମ ମନରେ ସାହସ ଠୁଳାଇ ପାରିଲା ନାହିଁ । ପରଦିନ ସକାଳେ ବୀରକେଶରୀ ନିଜ ମନକୁ କହିଲେ, ଆରେ ବିକ୍ରମ ! ମୋ ମତରେ ବେକାର ନିଶ୍ଚେଷ୍ଟ ହୋଇ ବସିବାଠାରୁ କାଶିବା ଭଲ । ତୁ ଥରେ କଟକ ଯାଇ ତୋ ମାମୁଁଙ୍କ ସଙ୍ଗେ ଦେଖାକର । ସେ ମନକଲେ, କାହାକୁ ପଦେ କହିଦେଲେ ତୋର ଚାକିରି ହୋଇଯିବ । ତୋର ନିଯୁକ୍ତି ନ ହେବା ଯାଏ ଆମ ସମସ୍ତଙ୍କର ଦୁର୍ଗତି ଦୂର ହେବ ନାହିଁ । ମୋର ଦେହ ଭଲ ଥିଲେ ମୁଁ ନିଜେ ଯାଇଥାନ୍ତି ।

ବିକ୍ରମ କହିଲା, ଯୁଆଡ଼କୁ ହେଲେ ମୋତେ ନିଶ୍ଚୟ ଯିବାକୁ ପଡ଼ିବ, ବାପା ! ଭୁବନେଶ୍ୱରରେ ଦୁଇଟି ଅଫିସରେ କାମ ପାଇଁ ଇଣ୍ଟରଭ୍ୟୁ ସକାଶେ ମୋ ପାଖକୁ ନୋଟିସ୍ ଆସିଛି । ଯଥେଷ୍ଟ ସମୟ ଅଛି । ମୁଁ ତରତର ହେଉନି ।

ମାମୁଁମାଇଁଙ୍କ ଉପରେ କୌଣସି କାରଣରୁ ଅଭିମାନ କରି ଦୂରେଇ ରହୁଛୁ କି ବିକ୍ରମ ? ସେଇଟା ତୋର ଭୁଲ । ନିଜର କାର୍ଯ୍ୟ ଉଦ୍ଧାର କରିବାକୁ ଭଗବାନ ଶ୍ରୀକୃଷ୍ଣ ଗଧର ପାଦ ଧରିଥିଲେ । ତା ବୋଲି

କ'ଣ ଆମେ କହିବା ଗଧଟା ଭଗବାନଙ୍କଠାରୁ ବଡ଼ ? ସିଧା ଆଙ୍ଗୁଠିରେ ଘିଅ ଉଠେ ନାହିଁ, ଜାଣୁ ତ ?

ବିକ୍ରମ ପ୍ରତିବାଦ କଲା ନାହିଁ । ସେ ଜାଣେ, କଥା କହି ନିଜର କାର୍ଯ୍ୟର ଯଥାର୍ଥତାକୁ ପ୍ରମାଣ କରିବାକୁ ଅତି ନିର୍ବୋଧ ବି ବାତୁଳ ହୋଇପାରେ । ପାଠ ପଢ଼ି ସେ ଘରେ ବେକାର ହୋଇ ବସିଛି । ନ କହିଲା ଲୋକେ ପଦେ ପଚାରିବେ । କେତେ ଉପଦେଶ ତା' କାନରେ ଅଜାଡ଼ିବେ । ନିଜର ବଡ଼ପଣ ଦେଖାଇ ସହାନୁଭୂତିର ଛଳନାରେ କୋମଳ ଦରଦୀ ଭାଷାରେ ପ୍ରମାଣ କରିବାକୁ ଚେଷ୍ଟା କରିବେ ଯେ, ବିକ୍ରମ ନିର୍ବୋଧ, ବିକ୍ରମ ଅପଦାର୍ଥ, ତାର ସବୁ ପାଠ ନିଷ୍ଫଳ ହୋଇଛି, ତାର କାଣିଚାଏ ବୁଦ୍ଧି ନାହିଁ ।

କାଦକାଦର କୋଦି ଛାତି ଭିତରେ ଉଠିଲା । ମୁହଁ ନ ଖୋଲି ସେ ବାରଦେଣଗଣଙ୍କ ଆଗରୁ ବଗିଚାକୁ ଚାଲିଆସିଲା । ସେଇଠି ସେ ତାର ସହସ୍ର ଅଳସ ଭାବନା, ଅତୀତ ଜୀବନର କରଣୀ, ବର୍ତ୍ତମାନର ଅସ୍ଥିରତା ଓ ଭବିଷ୍ୟତର ବହୁ ଯୋଜନାର ସ୍ୱପ୍ନ, ଦା' ଖଣ୍ଡିକ ମୁନରେ, ନିର୍ବିକାର ମାଟିର ଛାତିରେ ଅଜାଡ଼ି ଦେଇଥିଲା । ତା'ର ସ୍ୱପ୍ନ ସଫଳ ହୋଇନାହିଁ; କିନ୍ତୁ ତାର ଦେହମୁଣ୍ଡର ଝାଳକୁ ଧରିତ୍ରୀ ଫଳବାନ୍ କରିଛି—ମକା ଗଛରେ ଚଅଁର, ଜହ୍ନିଲଟାରେ ଗଣ୍ଡିକେ ଜହି, ଅସୁମାରି କଖାରୁ ଓ ପାଣିକଖାରୁ ନିବୁଜ କଞ୍ଚା ବାଡ଼ରେ ଓହଳିଛି ।

ବିକ୍ରମ ଗାମୁଛାର କାନରେ ଆଖି ପୋଛିଲା । କପାଳରୁ ଝାଳ ପୋଛିଲା । ତାର ଅତି ପ୍ରିୟ ଗଛଗୁଡ଼ିକ ଉପରେ ବାରମ୍ବାର ଦୃଷ୍ଟି ଖେଳାଇ ସେ କେଉଁ ଗୋପନ ସଂକଳ୍ପ କଲାପରି ମୁଣ୍ଡ ହଲାଇଲା । ମନକୁ ମନ ହସି, ମନେ ମନେ ନିଜ ପାଖରେ ନିଜେ ନିବେଦନ କଲା—ବାପା ଯାହା କହିଲେ, ଏ ଦୁନିଆରେ ତିଷ୍ଠି ରହିବା ପାଇଁ ତାହା ନିରାଟ ସତ୍ୟ । ଗଧ ଓ ଶ୍ରୀକୃଷ୍ଣ ଉପାଖ୍ୟାନ ପ୍ରଚଳିତ ସାମାଜିକ ବିଧାନର ସତ୍ୟପଥ, ଧର୍ମପଥର ଆଲୋକ-ସ୍ତମ୍ଭ ! ସିଧା ଆଙ୍ଗୁଠିରେ ଘିଅ ଉଠେ ନାହିଁ । ସୁଖରେ ଓ ଆନନ୍ଦରେ ରହି ଏ ସମାଜରେ ପ୍ରଚଳିତ ସମ୍ମାନର ଅଧିକାରୀ ହେବାପାଇଁ ଧନ ଲୋଡ଼ା,

ସମ୍ପତ୍ତି ନେଇଡ଼ା । ପ୍ରତିପତ୍ତି ଓ ପ୍ରଚଳିତ ସମ୍ମାନର ଅଧିକାରୀ ହେବାକୁ ହେଲେ ଧନ ସଂଗ୍ରହ କରିବାକୁ ହେବ । ଉପାୟ ଯାହା ହେଉ, ଚିନ୍ତା ନାହିଁ ।

ନିଜର ଭାବନାରେ ବସନ୍ତ ଶିହରିଉଠିଲା । ତାର ଅନ୍ତର ଭିତରେ ଆତ୍ମାପୁରୁଷ କାରୁଣ୍ୟ କରିଉଠିଲା । ମୁଣ୍ଡ ଟେକି ସେ ଆକାଶକୁ ଚାହିଁଲା । ଉଜ୍ଜ୍ୱଳ ନୀଳ ଆକାଶ କୋଣରେ ପ୍ରଦୀପ୍ତ ତପନ । କିରଣ ଖରତର ହୋଇ-ଆସୁଛି । ବସନ୍ତ ଓଉଁଗଛର ଛାଇତଳକୁ ଆସିଲା । ଆଜି ତାର ମନ ଚଞ୍ଚଳ ହୋଇଉଠୁଛି । ଭାବନା ଅସ୍ଥିର ହେଉଛି ।

ସେ ଭାବିଲା, ଗ୍ରାମରେ ରହି ଅଳସ-ଚିନ୍ତାରେ ବୁଡ଼ି ସେ ଆଉ ସମୟ କଟାଇବ ନାହିଁ । ଗ୍ରାମର ରାଜନୀତିରେ ମୁଣ୍ଡ ଖେଳାଇବ ନାହିଁ । ପରଘରର ହାନିଲାଭ ଆଲୋଚନା କାନରେ ଶୁଣିବ ନାହିଁ । ଘରର ଖବର ତାର ବାପା ବୁଝୁଛନ୍ତି । ତାଙ୍କର ନିଜ ଉପାୟରେ ସେ ଛୋଟ ସଂସାର ଚଳାଇବେ । ନିଜର ବୋଝ ସେ ଆଉ ତାଙ୍କ ମୁଣ୍ଡରେ ଲଦିବ ନାହିଁ । ସେ ତାର ଭାଗ୍ୟ ଖୋଜିବାକୁ ଦୁନିଆର ଦାଣ୍ଡକୁ ବାହାରିପଡ଼ିବ ।

ସେହିଦିନ ଅପରାହ୍ଣରେ ବସନ୍ତ ସାଇକଲ ଖଣ୍ଡି ଧରି ବାହାରିପଡ଼ିଲା । କେରିଆର୍ ଉପରେ ତାର ଛୋଟ ସୁଟ୍‌କେସ୍‌ଟି ବାନ୍ଧିଲା । ସେଥିରେ ସେ ତାର ପୋଷାକପତ୍ର, ଲୁଗାପଟା, ଦରକାରୀ କାଗଜପତ୍ର, ଛୋଟ ଟ୍ରାନ୍‌ଜିଷ୍ଟର, ଭଗବତ୍ ଗୀତା ଓ ଆରସି ପାନିଆ, ସେଭିଂସେଟ୍ ଇତ୍ୟାଦି ଗୁନ୍ଥି ଦେଇଥିଲା । ବୋଉକୁ ଲୁଚାଇ ଟଙ୍କା ପଚାଶଟି ସେ ସଞ୍ଚୟ କରି ରଖିଥିଲା । ସେତକ ସେ ତାର ଚମଡ଼ା ପର୍ସ୍‌ରେ ଭରି ପ୍ୟାଣ୍ଟ ପକେଟରେ ରଖିଲା । ସଜଡ଼ାସଜଡି କଲାବେଳେ ଚନ୍ଦନାକୁ ସେ କହିଲା, ଘରେ ବସି ବସି ବିରକ୍ତ ଲାଗିଲାଣି । କଟକ ଭୁବନେଶ୍ୱର ଯାଇ ଚାକିରି ପାଇବାକୁ ଚେଷ୍ଟା କରିବ । ଚାକିରି ନ ମିଳିଲେ ରୋଜଗାରର ଅନ୍ୟ କେଉଁ ପନ୍ଥା ଧରିବ ।

ଚନ୍ଦନାଙ୍କର ପାଦଧୂଳି ମୁଣ୍ଡରେ ମାରି ବସନ୍ତ ଦାଣ୍ଡକୁ ଓହ୍ଲାଇଲା ।
ମଧ୍ୟାହ୍ନଭୋଜନ ପରେ ଖିରିକେଶରୀ ଗ୍ରାମଭିତରକୁ ଚାଲିଯାଇଥିଲେ । କାହା
ଘରେ ବସି ପାନ ଖାଉଥିବେ । ଗ୍ରାମରେ କାହା ଘରେ କଅଣ ଘଟିଛି,
ସେଥିପାଇଁ କାହାର କେତେ ଅଣା ଦୋଷ, କିପରି ତାହା ସମାଧାନ କରିହେବ,
ସେସବୁ ବିଷୟରେ ଆଲୋଚନା କରୁଥିବେ । ବିଷୟ ନ ମିଳିଲେ ନିଜର
ଚାକିରି ଜୀବନର କିରିମତି ସମ୍ବନ୍ଧରେ ଗପ କରୁଣୁ ଢୁଳାଇ ପଡ଼ୁଥିବେ ।

କେତେବେଳେ ସେ ଫେରିବେ ଜଣା ନାହିଁ । ବସନ୍ତ ତାଙ୍କର
ପ୍ରତ୍ୟାବର୍ତ୍ତନକୁ ଅପେକ୍ଷା କଲା ନାହିଁ । ଚନ୍ଦନାଙ୍କୁ କହିଲା, ବାପା ମତେ କଟକ
ଯିବାକୁ କାଲି କହିଥିଲେ ବୋଉ ! ମୁଁ ଯାଉଛି ।

ତୋ ମାମୁଁ ମାଇଁ ଓ ଅନୁପା ନିରୁପା ହେଇକାଙ୍କୁ ମୋର କଲ୍ୟାଣ
କହିଦେବୁ, ବାବୁ ! ଆଗରୁ ଜାଣିଥିଲେ ପିଲାଙ୍କ ପାଇଁ ତୋ ହାତରେ କଅଣ
ହେଲେ ପଠାଇଥାଆନ୍ତି ।

ଖୁଡ଼ୀ ବାସନ୍ତୀ ଘରଭିତରୁ ବାହାରି ପଦାକୁ ଆସିଲେ । ସାନପୁଅ
ସୋହନକୁ ସେ କାଖରେ ବସାଇଥିଲେ । ମଝିଆଁ ପୁଅ ମୋହନ ବାଛୁରୀ ପରି
ତାଙ୍କ ପଛରେ ଗୋଡ଼ାଇଥିଲା । ଦଶବର୍ଷର ପୁଅ ଶୁଭକେଶରୀ ଘରେ ନ
ଥିଲା ।

ଦାଦା ଧୀରକେଶରୀ ଗ୍ରାମକୁ ଆସିଛନ୍ତି । ସେ ଘରେ ନାହାନ୍ତି ।
ସରପଞ୍ଚ ଚେମ ଚଉଧୁରୀଙ୍କ ପାଖକୁ ଫଜଲପୁର ଧାଇଁଛନ୍ତି । ତାଙ୍କ ମୁଣ୍ଡ
ଭିତରକୁ କିଏ କୂଟବୁଦ୍ଧି ପୂରାଇଦେଇଛି । ସେହି ବୁଦ୍ଧିରେ ଚାଳିତ ହୋଇ
ଗୋଟାଏ ଭୟଙ୍କର ପ୍ରସ୍ତାବର ସମ୍ଭାବନା ସମ୍ବନ୍ଧରେ ଚେମ ଚଉଧୁରୀଙ୍କର
ମତାମତ ଜାଣିବାକୁ ସେ ଆଗ୍ରହୀ ହୋଇଛନ୍ତି ।

ପ୍ରସ୍ତାବଟା ଗୁପ୍ତ ରଖିଛନ୍ତି, କିନ୍ତୁ ବାସନ୍ତୀଙ୍କର ଗୁପ୍ତ ଅନୁସନ୍ଧାନ
ବେଳେ ତାର ରୂପରେଖ ପଦାକୁ ଦିଶିଯାଇଥିଲା । ଧୀରେ ଧୀରେ ସ୍ପଷ୍ଟ
ହେଲାଣି ।

ଦିନେଦିନ ଚନ୍ଦ୍ର ଅଲେଖା ବନ୍ଧମକୁ ସେଭଳି ସମ୍ବାଦଟି ଦେଲା । ସେ ଦିନ ଆଜ୍ଞୁ ପ୍ରସ୍ତାବଟିଏ ବାଢ଼ିଲା ।

କଥା କଥଣ କି, ଦଶ ବର୍ଷ ତଳେ ବୀରକେଶରୀ ଓ ଧୀରକେଶରୀ ଭଲରେ ଭଲରେ ସମ୍ପତ୍ତି ଆପୋଷରେ ବଣ୍ଟନ କରିଥିଲେ । ପଶ୍ଚିମପାଖ ଚକରେ ଗୁଡ଼ୁଗୁଡ଼ିକା ପାଞ୍ଚ ଖଣ୍ଡ ମଟାଳିଆ ଭୂଇଁ, ଉକବା ଦୁଇ ମାଣରୁ କିଛି କମ୍, ତାଙ୍କୁ ଧୀରକେଶରୀ ଆଦରିଲେ । ପୂର୍ବପାଖ ଚକରେ ଥିବା ଘର-ପାଖିଆ ଖଣ୍ଡିଏ ବିଲ; ଉକବା ଦେଢ଼ ମାଣରୁ ସାମାନ୍ୟ ଅଧିକ, ଶିମୁଳିତଳ ଭୂଇଁ, ଦୋରସା ମାଟି, ତାଙ୍କୁ ବୀରକେଶରୀ ଆଦୋରିଲେ । ବଣ୍ଟା ଆସ କାଗଜର ଦିଓଟି ନକଲ ହେଲା । ସେଥିରେ ଦୁଇଭାଇ ସ୍ୱାକ୍ଷର କରି ଖଣ୍ଡିଏ ଖଣ୍ଡିଏ କାଗଜ ନିଜ ନିଜ ପାଖରେ ରଖିଲେ ।

ବୀରକେଶରୀଙ୍କ ଭୂମିରେ କେନାଲ ପାଣି ମାଡ଼ୁଛି, କିନ୍ତୁ ଧୀରକେଶରୀଙ୍କ ଭାଗରେ ପଡ଼ିଥିବା ଜମିରେ ପାଣି ମାଡ଼ୁନାହିଁ । ଧୀରକେଶରୀ ଚାହୁଁଛନ୍ତି ଯେ, ପରିବର୍ତ୍ତିତ ଅବସ୍ଥା ଦୃଷ୍ଟିରୁ ସମ୍ପତ୍ତିର ପୁନ ବଣ୍ଟନ ହେବା ଉଚିତ । ଶିମୁଳିତଳ ଜମିରୁ ଅଧେ ସେ ନେବେ ଓ ପୂର୍ବପାଖ ଗହ୍ୱରରେ ଥିବା ଜମିରୁ ଅଧେ ସେ ବୀରକେଶରୀଙ୍କୁ ଛାଡ଼ିଦେବେ । ଏଥିରେ କୁଆଡ଼େ ଭଜନ ସାଉତଙ୍କର କୁପରାମର୍ଶ ଅଛି । ସେ ହଜାରେ ଟଙ୍କା ଦେଇ ଶିମୁଳିତଳ ଜମିରୁ ଧୀରକେଶରୀଙ୍କର ଅଂଶ ଫାଳବନ୍ଧକ ନେବାକୁ ଚାହାନ୍ତି ।

ଅଲେଖ କହିଲା ଯେ ସେ ଦେଢ଼ହଜାର ଟଙ୍କା ଦେଇ ପୂର୍ବ ଜମିକୁ ଫାଳବନ୍ଧକ ନେବାକୁ ପ୍ରସ୍ତୁତ ଅଛି । ଆବଶ୍ୟକ ପଡ଼ିଲେ ଭଜନ ସାଉତଙ୍କ ସଙ୍ଗେ ଲଢ଼ାଲଢ଼ି କରିବ ।

ବନ୍ଧମ ଏ ସମ୍ବାଦକୁ ଧୂଆଁବାଣ ବୋଲି ମଣିଲା । ବାପାଦାଦାଙ୍କ ମଧ୍ୟରେ ବିଭେଦ ଜନ୍ମାଇ ଘରେ ଅଶାନ୍ତି ସୃଷ୍ଟି କରିବାକୁ ଦୁଷ୍ଟମତି ଲୋକଙ୍କର ଚକ୍ରାନ୍ତ ବୋଲି ଯୋଜିଲା । ବୃଥାରେ ବୀରକେଶରୀଙ୍କୁ ତାଙ୍କର ଭଗ୍ନସ୍ୱାସ୍ଥ୍ୟରେ ଉତ୍ତେଜିତ ନ କରିବାକୁ ସେ ନୀରବ ରହିଲା ।

ସାଇକେଲ ଧରି ବାହାରିଲାବେଳକୁ ତାର ଖୁଡ଼ୀ ବାସନ୍ତୀଙ୍କ ଉପରେ ଦୃଷ୍ଟି ପଡ଼ିଲା । ହସ ହସ ହୋଇ ତାଙ୍କୁ ନମସ୍କାର କରୁଣୁ ସେ ପଚାରିଲେ, ଅବେଳାରେ କୁଆଡ଼େ ବାହାରିଲୁ ବିକ, କେଉଁଠି ରତ୍ନାକର-ବାକର ମିଳିଲା କି ?

ଚନ୍ଦନା ବିରକ୍ତ ହୋଇ କହିଲେ, ପୁଅ ମୋର ଅନୁକୂଳ କରି ବାହାରିଛି; ତୋର କେଉଁ ବୁଦ୍ଧି ଯେ —

ବିକ୍ରମ ବାକ୍ୟଟିକୁ ଶେଷ କରାଇ ନ ଦେଇ ଉତ୍ତର ଦେଲା, କେଉଁଠି ରତ୍ନାକରବାକର ଖୋଜିବାକୁ ମୁଁ ବାହାରିଛି, ଖୁଡ଼ୀ ! ତମେ କଲ୍ୟାଣ କଲେ ନିଶ୍ଚୟ ମିଳିବ । ନ ମିଳିଲେ ଶିମୁଳିତଳ କଥାରିକୁ ସ୍ପଷ୍ଟ କରିବାକୁ ଶୀଘ୍ର ଫେରିଆସିବ । ବୋଝ ଜାଣିବାକୁ ଖୁଡ଼ୀ ପଦେ ପଚାରିଦେଲେ ତ ମୁଁ ଜବାବ ଦେଲି, ମୋ ଅନୁକୂଳ ବିଗିଡ଼ିବ ନାହିଁ । ତୁ ତୁନି ହୋଇ ଯା ।

ମୁହୂର୍ତ୍ତେ ଅପେକ୍ଷା ନ କରି ବିକ୍ରମ ସାଇକେଲ ଚଢ଼ି ଅଦୃଶ୍ୟ ହୋଇଗଲା । ଶିରପଲ୍ଲିର ବିଷାକ୍ତ ବାୟୁମଣ୍ଡଳ ଭିତରୁ କେତେ ଶୀଘ୍ର ସେ ବାହାରିଯାଇପାରିବ ତାହା ହିଁ ତାର ସେତେବେଳର ପ୍ରଧାନ ଉଦ୍ଦେଶ୍ୟ ଥିଲା ।

ଆଜି ଦୀପାବଳୀ ଅମାବାସ୍ୟା ।

ବିଭିନ୍ନ ରଙ୍ଗର ଷ୍ଟ୍ରେଟବଲ୍ବ ବିଜୁଳିବଲ୍ବର ପରସ୍ତ ପରସ୍ତ ମାଳରେ କୋଠାଗୁଡ଼ିକ ଝଲସି ଉଠୁଛି । ପାଚେରି ପାଖର ନଡ଼ିଆଗଛ, ପୁରୁଣା ଗୋଦାମଘର କଡ଼ର ଆମ୍ବଗଛ, ସପେଟା, ଲିଚୁ ଓ ଗୋଲାପଜାମୁ ଗଛ-ଗୁଡ଼ିକରେ ଆଲୋକମାଳାର ଆଖିମିଟିକା । ମୁରମ୍ ରାସ୍ତାର ଦୁଇ କଡ଼ରେ ରାସ୍ତା ପାଖରୁ ଦୂରେଇ ତୋଳା ହୋଇଥିବା ଦୁଇଧାଡ଼ି ନୂଆ ପକ୍କା ଘରର ଆଗରେ ଗୁଡ଼ଗୁଡ଼କା ପୋତା ହୋଇଥିବା କଦଳୀଗଛ । ଗଛକୁ ଗଛ ସଂଯୋଗ କରୁଥିବା ଫାଳ ବାଉଁଶ ଉପରେ ଚକଟା ମାଟିର ଗୁଳା ଉପରେ

ଅସୁମାର ମାଟିର ଘାପାଳୀ । ବଡ଼ ଫାଟକର ଦୁଇ ପାଖରେ କାନ୍ଧଲଗା କଦଳୀଗଛ । ସେ ବ ନାଲିଧଳ ବଲବ୍‌ରେ ଆଲୋକିତ ।

ଆଲୋକର ବନ୍ୟାରେ ଅମାବାସ୍ୟାର ଅନ୍ଧାର ଅପସରିଛି । ପ୍ରତି ଆଲୋକର ଚାରିପାଖରେ ଘୂରିବୁଲୁଛନ୍ତି ଅସୁମାର କ୍ଷୁଦ୍ର କୀଟ । ତେଲଘାପଗୁଡ଼ିକୁ ତେଜୁଛନ୍ତି, ସଜାଡୁଛନ୍ତି, ଚର୍ବିରେ ତେଲ ଢାଳୁଛନ୍ତି, ଶାରଙ୍ଗ ଓ ଆଜ ଦୁଇଜଣ ମୂଲିଆ । ବଡ଼ମକେଶଶ୍ୱ ସେମାନଙ୍କୁ ସାହାଯ୍ୟ କରୁଛି । ସେ ପିନ୍ଧିଛି ଲୁଗା ଓ ପଞ୍ଜାବୀ । ତାରି ପାଖେ ପାଖେ ସାତ ବର୍ଷର ପୁଅ ସାନନ୍ଦ । ସୁନ୍ଦର ସ୍ୱାସ୍ଥ୍ୟବାନ୍ ପିଲାଟି । ମୂଲ୍ୟବାନ୍ ପୋଷାକ-ପରିହିତ । ହାତରେ କେତୋଟି ଫୁଲଝରି ଧରିଛି । ତା ପଛେ ପଛେ ଧାଇଁଛି ଏଗାର ବର୍ଷର ଝିଅ ସୁରୂପା । ମୂଲ୍ୟବାନ୍ ଫୁଲପକା ଫ୍ରକ୍ ଖଣ୍ଡେ ପିନ୍ଧିଛି । ଠିକ ଅନୁପା ପରି ସେ ଦିଶୁଛି । ତା ହାତରେ କେତେଜାତିର ଫୁଲଝରି ।

ବୈଠକଘରର ଆଲୋକିତ ବାରଣ୍ଡାରେ କେତେଗୁଡ଼ିଏ ଆସନ ପଡ଼ିଛି । ସେଥିରେ ଇନ୍ଦିରା, ଅନୁପା ଓ ନିରୁପା ବସିଛନ୍ତି । ସେମାନଙ୍କ ସାମନାରେ ବସିଛନ୍ତି, ଦିନେ ଯିଏ ଜଣେ ବଡ଼ ହାକିମ ଥିଲେ, ବଳିତ-ଫେରନ୍ତା କମଳକୃଷ୍ଣ, କାର୍ଯ୍ୟରୁ ଅବ୍ୟାହତି ନେଇ (ତଡ଼ା ଖାଇ) ଯିଏ ମାଙ୍ଗାନିଜ୍ ଖଣି ଚାଳନାରେ ଆନନ୍ଦଚନ୍ଦ୍ରଙ୍କ ପାର୍ଟନର, ତାଙ୍କର ଏକମାତ୍ର ସୁପୁତ୍ର ସଞ୍ଜୟ ।

ଚାକିରି କରିବା ଆବଶ୍ୟକ ନ ଥିଲେ ବି ସମ୍ମାନ ଦୃଷ୍ଟିରୁ ସେ ଓ. ଏ. ଏସ୍. ପରୀକ୍ଷା ଦ୍ୱିତୀୟଥର ଦେଇଛନ୍ତି । ଆଶା କରିଛନ୍ତି ଯେ ସେ ନିଶ୍ଚୟ ଉଚ୍ଚସ୍ଥାନ ପାଇପାରିବେ । ଏ ଘର ସଙ୍ଗେ ତାଙ୍କର ବେଶ୍ ଘନିଷ୍ଠତା ଜମିଯାଇଛି । ଆତ୍ମୀୟତା ମଧ୍ୟ । ପନ୍ଦର ବର୍ଷର ଫ୍ରକ୍‌ପିନ୍ଧା ସ୍ୱାସ୍ଥ୍ୟବତୀ ଝିଅ ନିରୁପା ସୁନାଗହଣା ପିନ୍ଧି ଝଟକୁଛି । ବେଳେବେଳେ ନିଜ ଆସନରୁ ଉଠି ସଞ୍ଜୟ ପାଖକୁ ଯାଇ ଗେହ୍ଲେଇ ହୋଇ କଅଣ କହୁଛି । ହସି ହସି ନଇଁଯାଉଛି । ଅନ୍ୟମାନେ ହସିଉଠୁଛନ୍ତି ।

ବିକ୍ରମ କଣେଇଁ ଗୁହୁଁଛି । ସାନନ୍ଦର ହାତରୁ ଫୁଲଝରି ନେଇ ଖୋପରେ ଲଗାଇ ପୁଣି ତା ହାତକୁ ବଢ଼ାଇଦେଉଛି । ତାର ହାତ ଧରି ଉଜ୍ଜ୍ୱଳ ସ୍ଫୁଲିଙ୍ଗଗୁଡ଼ିକୁ ଦୂରେଇ ରଖୁଛି । ସୁରୂପା ତାର ଫୁଲଝରି ନିଜେ ଲଗାଉଛି । ଏତିକ ଶେଷ ପର୍ବ । ସନ୍ଧ୍ୟା ହେଉଣୁ ନ ହେଉଣୁ ବାଣଫୁଟା ପର୍ବ ଆରମ୍ଭ ହୋଇଥିଲା – ତାଳଫଟକା, ହାବେଲି, ଚକ୍ରୀ, ଘଡ଼ିବାଣ, ଝରି, ଏହିପରି ବିଭିନ୍ନ ପ୍ରକାର ବାଣ । ମାଈଁ, ପିଲାମାନେ, ସଞ୍ଜୟ, ବାଉରିବନ୍ଧୁ, ଶୁକର, ପୂର୍ଣ୍ଣାସି, ମୂଳିଆ ସମସ୍ତେ ସେଠି ଅଗ୍ନି ଉତ୍ସବରେ ଯୋଗ ଦେଇଥିଲେ । ଆନନ୍ଦ, ଉତ୍ତେଜନା, ହସ, କୋଳାହଳ, ଧାଁଧପଡ଼, ହାତ ଭିଡ଼ା ଓଟରା ।

ବିକ୍ରମ ନିଜକୁ ଅସଂପୃକ୍ତ ରଖି ପାରି ନ ଥିଲା । ମାଈଁ ଓ ପିଲା-ମାନଙ୍କର ଅନୁରୋଧରେ ଦୂରତ୍ୱ ରକ୍ଷା କରି ସେ ମଧ୍ୟ ଯୋଗ ଦେଇଥିଲା । ଘଣ୍ଟାକ ପରେ ବୃକୋଦର ବାଉରିବନ୍ଧୁ ତାର ସ୍କୁଟର୍ ଚଢ଼ି ଚାଲିଯାଇଥିଲେ, କିନ୍ତୁ ରହିଯାଇଥିଲେ ସଞ୍ଜୟ ।

ବାଉରିବନ୍ଧୁ ବେଶୀ ବିଦେଶୀ ସୁରା ପିଇଦେଇଥିଲେ । ଅତ୍ୟଧିକ ହସୁଥିଲେ । ଟଳଟଳ ହେଉଥିଲେ । ହସିହସି କେତେବେଳେ ଅନୁପାର ଓ କେତେବେଳେ ନିରୁପାର ହାତ ଧରି ଟାଣୁଥିଲେ । ସେମାନେ ବାଧା ଦଉ ନ ଥିଲେ । ଇନ୍ଦିରା ହସିହସି ନିସ୍ତାନ୍ତ ହେଉଥିଲେ । ପ୍ରତିବାଦ କରୁ ନ ଥିଲେ ।

ସଞ୍ଜୟ ଆନନ୍ଦ ଓ ଉତ୍ତେଜନା ଭିତରେ ନିଜକୁ ବୁଡ଼ାଇରଖି ମଧ୍ୟ ସଂଯତ ରହିଥିଲେ । ଭଦ୍ରତା ଭୁଲି ନ ଥିଲେ । ସେଠି ବରଂ ବାଉରି-ବନ୍ଧୁଙ୍କୁ ସ୍ନେହରେ ଅଭିନନ୍ଦନ ଜଣାଇ ହାତ ଧରି ବିକ୍ରମ ପାଖପାଏ ଟାଣିଆଣି କହିଥିଲେ, ମାତ୍ରା ଟିକିଏ ଅଧିକ ହୋଇଛି, ବାଉରିବାବୁ ! ସେମାନେ ଜାଣିବା ଆଗରୁ ଆପଣ ଘରକୁ ଫେରି ବିଶ୍ରାମ ନିଅନ୍ତୁ ।

ଆପଣ ରହିବେ ?

ପଛେ ପଛେ ମୁଁ ବି ଯିବି ।

ବାଇରବନ୍ଧୁ ଚାଲିଗଲେ, କିନ୍ତୁ ସଞ୍ଜୟ ରହିଗଲେ । ଏତେବେଳ-ଯାଏ ସେ ଅଛନ୍ତି । କ'ଣ ସବୁ ଗପ କରୁଛନ୍ତି । ତାଙ୍କର କାର୍ ଖଣ୍ଡିକ ପୋର୍ଟିକୋ କଡ଼ରେ ଅଣଆଡ଼ୁଆ ହୋଇ ରଖାହୋଇଛି ।

ସଞ୍ଜୟ ଉଠିଲେ । ପୋର୍ଟିକୋକୁ ଓହ୍ଲାଇ କାର୍ ପାଖକୁ ଗଲେ । ଇନ୍ଦିରା, ଅନୁପା ଓ ନିରୂପା ବାରଣ୍ଡାରୁ ଓହ୍ଲାଇ ବଜମ ପାଖକୁ ପଦାକୁ ଆସିଲେ । ତିନିହେଁ ମୂଲ୍ୟବାନ୍ ଶାଢ଼ୀ ଓ ଗହଣା ପିନ୍ଧି ଝଟକୁଥାନ୍ତି । ଇନ୍ଦିରାଙ୍କ ମୁହଁରେ ଓ ଚାଲିଚଳନରେ ପ୍ରୌଢ଼ତ୍ୱର ଧୂସର ଛାୟା ଓ ଶିଥିଳତା ପରିଲକ୍ଷିତ ହେଉଥିଲେ ମଧ୍ୟ ତାଙ୍କର ଭରପୂର ରୂପ ଓ ବେଶଭୂଷାର ପରିପାଟୀ ତାଙ୍କର ବୟସକୁ ଦଶବର୍ଷ ପଛକୁ ଓଟାରିନେଲା ପରି ମନେହେଉଥାଏ ।

କାଲି ସେ କହୁଥିଲେ, ବେଳେବେଳେ ତାଙ୍କର ପେଟର ବେଦନା ଅସହ୍ୟ ହେଉଛି । ଛାତି ଥରୁଛି । ମୁଣ୍ଡ ଭ୍ରମୁଛି । ଡାକ୍ତର ସୁଶାନ୍ତ ତାଙ୍କୁ ପରୀକ୍ଷା କରି ଔଷଧର ବ୍ୟବସ୍ଥା କରିଛନ୍ତି । ଖାଦ୍ୟର ପ୍ରକାର ଓ ପରିମାଣର ନିର୍ଦ୍ଦେଶ ଦେଇଛନ୍ତି । ଆଜି ସେ ଭଲ ଅଛନ୍ତି ।

ଇନ୍ଦିରା ସୁରୂପାର ହାତ ଧରି ପଚାରିଲେ, ଅପା ସାଙ୍ଗରେ ତୁ ସଞ୍ଜୟଭାଇଙ୍କର ନୂଆ ଘରକୁ ଯିବୁ କି ମା, ଅଞ୍ଜନା ଅପା ଆଉ ପ୍ରକାଶ-ଭାଇଙ୍କୁ ଦେଖିଆସିବୁ ? କେତେ କାଳୀମୂର୍ତ୍ତି ହୋଇଛନ୍ତି । ସଞ୍ଜୟ ଦେଖାଇ ଦେଖାଇ ନେବ ।

ତୁ ଗଲେ ମୁଁ ଯିବି । ନୋହିଲେ ସେ ଭୟଙ୍କର ମୂର୍ତ୍ତି ଦେଖିଲେ ମତେ ଡର ମାଡ଼ିବ ।

ସାନନ୍ଦ ଇନ୍ଦିରାଙ୍କୁ କୁଣ୍ଢାଇଧରି ଅଳି କଲା, ଅପା ସାଙ୍ଗରେ ମୁଁ ଯିବି, ବୋଉ ! ମତେ ଡର ମାଡ଼େ ନାହିଁ ।

ତୁ ଗଲେ ମୁଁ କେମିତି ନିଶ୍ଚିନ୍ତ ରହିବି ରେ ଧନ ! ତୁ ଯେମିତି ଖୁଜୁବୁଜିଆ ହୋଇଛୁ ନା ! ତୋ ବାପା ଆମ ଗାଡ଼ିରେ କମଳବାବୁଙ୍କ ସାଙ୍ଗେ ସକାଳ ଆଠଟାରୁ ପାରାଦୀପ ଗଲେଣି ଲୋ ସୁରୂପା, ସେ କେତେ-

ବେଳେ ଫେରିବେ, ଜଣା ନାହିଁ । ତେଣୁ ମୁଁ ଅପେକ୍ଷା କରିଛି । ଯିବୁ ତ ଅପା ସଙ୍ଗେ ଯା ।

ସ୍ୱରୂପା କହିଲା, ମୁଁ ଯିବ ନାହିଁ । ମୁଁ ଏଇଠି ବଡଭାଇଙ୍କ ପାଖରେ ଆଲୁଅ ଜାଳିବ, ବାଣ ମାରିବ । ତୋ ପାଖରେ ଥିବ ।

ଅନୁପା କହିଲା, ଥିଲେ ଥା । ତମେ ଆସ, ବଡଭାଇ ! ସଞ୍ଜୟ ଭାଇଙ୍କ ପାଖରେ ଆଗ ସିଟ୍‌ରେ ବସି ଯିବ । ଆମେ ଦୁ'ଭଉଣୀ ପଛରେ ବସିବୁଁ । ତମେ ବି ଦେଖା ଦେଖିବ । ସଞ୍ଜୟ ଭାଇ ତ ତମକୁ ଭଲ କରି ଚିହ୍ନନ୍ତି !

ବଙ୍କିମ କହିଲା, ଚିହ୍ନନ୍ତି । କଲେଜରେ ଦୁଇବର୍ଷ ଆମେ ଏକା କ୍ଲାସରେ ପଢ଼ୁଥିଲୁଁ । ବି. ଏ. ପାସ୍ କରି ମୁଁ ପାଠ ଛାଡ଼ିଲି । ସେ ଏମ୍. ଏ. ପଢ଼ି ପାସ୍ କଲେ ।

ଅନୁପା କହିଲା, ସେକେଣ୍ଡ କ୍ଲାସ ପାଇଲେ । ଓ. ଏ. ଏସ୍. ପରୀକ୍ଷା ଦେଇଛନ୍ତି । ଇଣ୍ଟରଭ୍ୟୁରେ ଅପିଅର୍ କରିଛନ୍ତି । କହୁଥିଲେ, ତମେ ବି ଆପିଅର୍ କରିଛ ! ସେଇଠି ତମକୁ ସେ ଦେଖିଥିଲେ ।

ବଙ୍କିମ ମୁଣ୍ଡ ନୋଇଁ ସାମାନ୍ୟ ହସିଲା । କହିଲା, ହଁ ଅନୁ, ଦେଖି-ଥିଲେ । ମୋ ସଙ୍ଗେ ଇଣ୍ଟରଭ୍ୟୁ ପରେ କଥା ହୋଇଥିଲେ । ମୋ ପରେ-ପରେ ତାଙ୍କୁ ଡକରା ହୋଇଥିଲା । ବୁଢ଼େଇ ଭୁଢ଼େଇ ମୋତେ ସେମାନେ ଅଧଘଣ୍ଟାଏ ଏଣ୍ତେଣ୍ତେ ସହସ୍ର କଥା ପଚାରିଲେ । ସଞ୍ଜୟବାବୁଙ୍କୁ ପଚାରିଲେ ଦଶବାର ମିନିଟ୍ । ସେହିଦିନ ହିଁ ମୁଁ ବୁଝିଲି ମୋର ନ ହେବାର କଥା ।

ଇନ୍ଦିରା କହିଲେ, ସେଇଆ ! ଦୁଇଜଣ ମେମ୍ବର ସଞ୍ଜୟର ବାପା କମଳକୃଷ୍ଣବାବୁଙ୍କର ପୁରୁଣା ବନ୍ଧୁ । ଚିହ୍ନାପରିଚ । ଆଉ ମାଲିକଙ୍କୁ ତମର ମାମୁଁଙ୍କର ସାଙ୍ଗ ରାମକୃଷ୍ଣବାବୁ ଭଲକରି ଚିହ୍ନନ୍ତି । ସେହି ତାଙ୍କୁ କହିଥିଲେ । ସଞ୍ଜୟକୁ ସେମାନେ ଆଗରୁ ଜାଣନ୍ତି । କଅଣ ଆଉ ଅଧିକା ପଚାରନ୍ତେ କି ?

ହିଁ, ମାଉଁ ! ଏ ତ ଧରାଧରି ଯୁଗ । ପରସ୍ପରକୁ ସାହାଯ୍ୟ କରିବା ବିଧି । ଆଗ ବନ୍ଧୁବାନ୍ଧବ, ସେଇଠୁ ଜାତିଆଣ, ସେଇଠୁ ପ୍ରିୟାପ୍ରୀତି, ଦେବାନେବାରେ ମୋହବତ, ଗାଁ, ଥାନା, ଜିଲ୍ଲା । ଏସବୁ ଉପରେ ଗୁଳକ-ମାନଙ୍କ ସୁପାରିସ୍ । ମୋର କିଛି ନାହିଁ । ନ ହେଲେ ଦୁଃଖ କାହିଁକି କରିବ ? ମୁଁ ସେକଥା ଭୁଲିଯାଇଛି । ସଞ୍ଜୟବାବୁଙ୍କର ଗାଡ଼ି ଷ୍ଟାର୍ଟ ହେଲା ନାହିଁ ତ ମାଉଁ । ଖାଲି ଘର୍ ଘର୍ ହେଉଛି । ଠେଲିବାକୁ ପଡ଼ିବ ।

ବଙ୍କିମ ଗାଡ଼ି ପାଖକୁ ଗଲା । ତା ପଛେ ପଛେ ଧାଇଁଲେ ନିରୁପା ଓ ସାନନ୍ଦ । ବଙ୍କିମର ସାହାଯ୍ୟରେ ଫିଆଟ୍-କାରଟିକୁ ସଞ୍ଜୟ ଷ୍ଟାର୍ଟ କରି-ପାରିଲା ! ବ୍ୟାଟେରୀ ଦୁର୍ବଳ ଥିବାରୁ ଅସୁବିଧା ଘଟୁଥିଲା ।

ଗାଡ଼ିରୁ ଓହ୍ଲାଇ ସଞ୍ଜୟ ବଙ୍କିମକୁ ଧନ୍ୟବାଦ ଜଣାଇଲା । କହିଲା, ଆପଣଙ୍କ ବିଷୟରେ ମାଉସୀ ମତେ ସବୁ କହିଛନ୍ତି । ଫୋନ୍‌ରେ ଏଇଠୁ ମୁଁ ଆମ ଘରୁ ବିକାଶଠାରୁ ଖବର ନେଲି ଯେ, ଲୋକ ସମ୍ପର୍କ-ବିଭାଗରେ ଅନେକ-ଗୁଡ଼ିଏ ଅସ୍ଥାୟୀ ସହକାରୀ ଋକର ଖାଲିଅଛି । ଭଣୋଇଁ ହେଲେ କ ହେବ, ଆଇ: ଏ: ଏସ୍: ମେଜାଜି । ହଉ ଦେଖିବା, ଏତିକି ଛଡ଼ା ଆଉ ଅଧିକା କ'ଣ ସେ କହନ୍ତେ ? ତେବେ ଆପଣ ନିଶ୍ଚିନ୍ତ ରହନ୍ତୁ । ଇଣ୍ଟରଭ୍ୟୁ ଦୁଇଦିନ ପରେ ହେବ ତ ?

ସଞ୍ଜୟର ସହାନୁଭୂତି ବଙ୍କିମର ଅସହ୍ୟ ହେଲା ; କିନ୍ତୁ ବଞ୍ଚି-ରହିବାପାଇଁ ନିଯୁକ୍ତି ଓ କିଛି ଅର୍ଥ ନିଶ୍ଚୟ ଆବଶ୍ୟକ । ଗ୍ରାମର ବିଷାକ୍ତ ବାୟୁମଣ୍ଡଳ ଭିତରକୁ ଓ ସାମାନ୍ୟ ଲାଭପାଇଁ ତାର ବାପାଙ୍କର ସମ୍ମାନହାନି-କର ଏଘର ପିଉସା ସେଘର ମଉସା କୂଟନୀତି ପାଖକୁ ସେ ବେକାର ହୋଇ ଆଉ ଫେରିଯିବାକୁ ରୁହେ ନାହିଁ । ବେକାର ଅବସ୍ଥାରେ ତାକୁ ଗ୍ରାମରେ ଆତଯାତ ହେବାର ଦେଖିଲେ ଗାରକେଶରୀ କେବଳ କେତେ ଅବାନ୍ତର ଉପଦେଶ ତା' କାନରେ ଅଜାଡ଼ି ଦେଉଛନ୍ତି । ପ୍ରତିବାଦ କଲେ ସେ କୁ-ପୁତ୍ର ହେବ । ନୀରବ ହୋଇ ସବୁ ଶୁଣି କିଛି ନ କରିବା ବି ସୁ-ପୁତ୍ରର ଲକ୍ଷଣ ନୁହେଁ ।

ଚାକିରି ପାଇଁ ଦରଖାସ୍ତ କରି ଅନ୍ୟର ଅନୁଗ୍ରହପ୍ରାର୍ଥୀ ସେ ହୋଇସାରିଛି । ତା' ପରି ଓ ତା'ଠାରୁ ଅଧିକ ଯୋଗ୍ୟ ପ୍ରାର୍ଥୀ ଅନେକ ଥିବେ । ନିଜ ନିଜ ଉପାୟରେ ଚାକିରି ଖଣ୍ଡେ ଲାଭ କରିବାକୁ ନିଶ୍ଚୟ ଚେଷ୍ଟା କରୁଥିବେ । ଦୟାମୟୀ ମାଈଁ ଯଦି ତା'ପାଇଁ ଚେଷ୍ଟା କରୁଛନ୍ତି ତ କ୍ଷତି କଅଣ ?

ସାମାନ୍ୟ ଥରିଲା ସ୍ୱରରେ ବିକ୍ରମ ଉତ୍ତର ଦେଲା, ହଁ, ଦୁଇଦିନ ପରେ ।

ଇନ୍ଦିରା କହିଲେ, ତା' କଥା ତତେ ଲାଗିଲା, ପୁଅ ! ଆମର ଭଣଜା ସିନା, ତାଙ୍କ ଘରର ଅବସ୍ଥା ଭଲ ନୁହେଁ । କେଉଁଠି ଚେର ଲାଗିଗଲେ, ତେଣିକି ଦେଖାଯିବ ।

ପଛ ପାଖରେ କବାଟ ଖୋଲୁଣୁ ନିରୁପା ଗାଡ଼ି ଭିତରେ ପଶିଲା । ଯେଉଁ ସୁରୁପା ମନା କରୁଥିଲା, ସେ ଲୋଭ ସମ୍ଭାଳି ନ ପାରି ନିରୁପାର ପାଖରେ ବସିଲା । ଅନୁପା ଥଙ୍ଗ ଥଙ୍ଗ ହୋଇ କହିଲା, ତମେ ଆଗରେ ବସିବ କି ବିକଭାଇ ? ଚାଲୁନା, ବିକାଶଭାଇଙ୍କୁ ନିଜେ ଦେଖା କରି ଆସିବ ! ତମକୁ ସେ ଆଗରୁ ଚିହ୍ନି ରଖିଥିବେ ।

ସଞ୍ଜୟ ଆଗ ସିଟ୍‌ର କବାଟ ଖୋଲିଲା ।

ଇନ୍ଦିରା କହିଲେ, ସାନନ୍ଦକୁ କ'ଣ ମୁଁ ଆଜି ସମ୍ଭାଳି ପାରିବି କି ମା ? ଦେଖୁନୁ, ସେ କେମିତି ହୁରୁହୁରୁ ହେଉଛି । ବିକ ଥାଆନ୍ତୁ । ତୁ ବରଂ ତୋ ଗୋଲାପକୁ ବିକକଥା କହିବୁ । ଅଞ୍ଜନା ବିକାଶକୁ କହିଲେ, ତା'କଥା ସେ ତଳେ ପକାଇବ ନାହିଁ । ଇଂଜିତା ମାଉସୀଙ୍କୁ ମୋର ବହୁତ ବହୁତ କହିବୁ । ତୁ ଆଗରେ ବସି ଯା ।

ନିଜେ ଇନ୍ଦିରା ପଛ ସିଟ୍‌ର ଦରଜା କଲଲେ । ଅନୁପା ଆଗ ସିଟ୍‌ରେ ବସି ଦରଜା ବନ୍ଦ କଲା । ସଞ୍ଜୟ ଷ୍ଟିୟରିଂ ଧରି ଧୀରେ ଧୀରେ ଗାଡ଼ି ଚଳାଇ ମୁରମ୍ ରାସ୍ତାକୁ ଆଣିଲା । ବିକ୍ରମ ବୁଲିଆସି ଦୁଇହାତ ଯୋଡ଼ି ସଞ୍ଜୟକୁ ନମସ୍କାର କଲା । ଗେଟ୍ ଅତିକ୍ରମ କରି ଗାଡ଼ି ଚାଲିଗଲା । ନବାବ୍ ବିକ୍ରମର

ଯୋଡ଼ିଲା ହାତ ଖୋଲିଲା ନାହିଁ । ଦେହ କ୍ଷଣକାଳ ପାଇଁ ଅଚଳ ହୋଇ ରହିଲା । ମୁଣ୍ଡ ଭିତରେ ଚିନ୍ତାର ଆଲୋଡ଼ନ ନ ଥିଲା ।

ପାଖକୁ ଆସି ଶାରଙ୍ଗ ମୂଳିଆ ଖିଁ ଖିଁ ହୋଇ ହସିଉଠିଲା । ବନମର ନିବଷ୍ଟତା ଭାଙ୍ଗି ସେ ପଚାରିଲା, କାହାକୁ ଏତେବେଳଯାଏ ହାତ ଯୋଡ଼ି ଜଣାଣ କରୁଛ, ବାବୁ ?

ବନମର ଦୁଇହାତ ହୁଗୁଳିଲା । ସେ ଦେହ ବୁଲାଇ ଶାରଙ୍ଗର ହସିଲା ମୁହଁକୁ ଚାହିଁ କହିଲା, ତତେ କଣ ଜଣାନାହିଁ କରେ ଶାରଙ୍ଗ ! ମନକାମନା ପୂରଣ ପାଇଁ ମଣିଷ କାହା ପାଖରେ ହାତ ଯୋଡ଼ି ଜଣାଣ କରେ ?

ଠାକୁରାଣୀ ?

ହଁ, ଠାକୁରାଣୀ । ଯେତେ ଯେଉଁଠି ଅରକ୍ଷିତ ଅଛନ୍ତି ସମସ୍ତଙ୍କୁ ଠାକୁରାଣୀମାନେ ସାହା ।

ହଁ, ବାବୁ ! ସେହିମାନେ ଏ ସଂସାରକୁ ଚଳାଉଛନ୍ତି ।

ବନମ ନିଜକୁ ଶାସନ କରି ନୀରବ ହେଲା । ମୂଳିଆଟି ସଙ୍ଗରେ ବେଶୀ ଆଲୋଚନା କରି ସମସନ୍ଦସା ହେଲେ ମାମୁଁ ମାଇଁଙ୍କର ବଡ଼ପଣରେ ଆଞ୍ଚ ଲାଗିବ । ସେ ଦେଖିଲା, ମାଇଁ ବୈଠକଘରର ବାରଣ୍ଡାରେ ସାନ୍ଦର ହାତ ଧରି ଠିଆ ହୋଇଛନ୍ତି । ଆଜି କଅଣ କହିବେ ବୋଲି ହୁଏତ ତାକୁ ଅପେକ୍ଷା କରିଛନ୍ତି ।

ବନମ ଇନ୍ଦିରାଙ୍କ ପାଖକୁ ଫେରିଲା ।

ପଚୁଣାଘର ଆଗରେ, ମୁରମ୍ ରାସ୍ତାର ଡାହାଣପାଖ ନୂଆକୋଠାର ପ୍ରଥମ ପ୍ରକୋଷ୍ଠଟି ବେଶ୍ ବଡ଼ । ନୂଆଘରର କାମ ସରିନାହିଁ । ଝରକା ଓ କବାଟରେ ରଙ୍ଗ ବୋଳାହେଉଛି । ବିଜୁଳି ଆଲୁଅ ଲାଗିଛି । ପଙ୍ଖା ଝୁଲି-ନାହିଁ । ପ୍ରକୋଷ୍ଠର କୋଣମାନଙ୍କ ପାଖରେ ରଙ୍ଗଟିଣ ଓ ଅନ୍ୟାନ୍ୟ

ଉପକରଣ ସବୁ ରଖା ହୋଇଛି । ଟେବୁଲ ଓ ଚଉକିଗୁଡ଼ିଏ ବାର୍ଣ୍ଣିସ୍ ହୋଇ ହୋଇ ଶୁଖୁଛି । ସେହି ଘରର ମଝିରେ ଗୋଟିଏ ଷ୍ଟୋଭ ତକ୍ତପୋଷ । ଏଥର ଆସି ବସନ୍ତ ସେହି ପ୍ରକୋଷ୍ଠରେ ଆଶ୍ରା ନେଇଛି ।

ଗୃହର ପୂଜାରୀ ଆସି ତାର ତତ୍ତ୍ୱ ନେଉଛନ୍ତି । ଖିଆପିଆ ବେଳେ ତାକୁ ଟେକ୍କା ଭିତରକୁ ଡାକନେଉଛନ୍ତି । ସେଇଠି ଭୋଜନ । ମାମୁଁ ମାଈଁ ଓ ପିଲାମାନଙ୍କ ସଙ୍ଗେ ହସଖୁସିରେ ଆଳାପ । ଅସୁବିଧା ହେଉ ନାହିଁ । ସେ ଯେ ଜଣେ ବାହାରର ଲୋକ ହୋଇସାରିଛି, କେବଳ ସେ ନୁହେଁ, ଘରର ପିଲାମାନେ, ଗୃହର ପୂଜାରୀ ଓ ମୁଲିଆ ମିସ୍ତ୍ରୀମାନେ ଅନୁଭବ କରୁଛନ୍ତି । କିନ୍ତୁ ସମସ୍ତେ ଏହି ତାକୁ ଗୋଟିଏ ସ୍ୱାଭାବିକ ଘଟଣା ବୋଲି ଗ୍ରହଣ କରିଛନ୍ତି ।

ଦିଓଟି ରାତି କଟିସାରିଛି । ରଙ୍ଗ, ବାର୍ଣ୍ଣିସ୍‌ର ଗନ୍ଧ, ମଶାଙ୍କର ଉପଦ୍ରବ, ତକ୍ତପୋଷ ଉପର ଟାଣ ବିଛଣାର ଅନୁଭୂତି ଦେହସହା ହୋଇଛି । ସବୁ ଅସୁବିଧାକୁ ସେ ଆପଣାର କରିନେଇଛି । ଛଳ ନାହିଁ । ଅମ୍ଳାନ ବଦନର ଛଳନା ।

ଅବସ୍ଥା ତାକୁ ଦୂରେଇ ଦେଉଛି । କାହା ପାଖରେ ସେ ପ୍ରତିବାଦ କରିବ ? ଏ ଘରର ପ୍ରିୟ ଭଣଜାଟିଏ ହେଲେ ବି କାହା ପାଖରେ ସେ ଦରିଦ୍ର କରୁଣାପ୍ରାର୍ଥୀ ଅଭିମାନ କରିବ ? ତା'ର ବୁଝିବାକୁ ବାକି ନାହିଁ ଯେ, ନିଜର ଅବସ୍ଥା ସମ୍ବନ୍ଧରେ ସଚେତନ ନ ହେଲେ ଅତୀତ କାଳର ବଡ଼ିମାକୁ ଜପାମାଳି କରି, ବୃଥା ଗର୍ବସ୍ଫୀତ ଅହମିକାର ଆସ୍ଫାଳନ କଲେ କିଛି ଲାଭ ହେବ ନାହିଁ ।

ଦୁଇ ଦିନର ଅବସ୍ଥାନ ମଧ୍ୟରେ ଆନନ୍ଦଚନ୍ଦ୍ରଙ୍କ ସଙ୍ଗେ ତାର ଅଳ୍ପ ସମୟ ନିରୋଳାରେ ଦେଖା ହୋଇଥିଲା । ଶାରଦେଶ୍ୱରୀ ଓ ଚନ୍ଦନାଙ୍କ ସମ୍ବନ୍ଧରେ ସେ ଅନ୍ୟମନସ୍କ ଭାବରେ କେତେକଥା ପଚାରିଥିଲେ । ବସନ୍ତର ଉତ୍ତର ଶୁଣିବାକୁ ତାଙ୍କର ଧୈର୍ଯ୍ୟ ଓ ସମୟ ନ ଥିଲା । ଟେଲିଫୋନ୍‌ରେ ବ୍ୟବସାୟିକ ସମ୍ବନ୍ଧରେ କେତେ ଲୋକଙ୍କ ସଙ୍ଗେ ତାର ଭାଷାରେ

ଆଲୋଚନା, ବନ୍ଦିକର ଓ ଆୟକର ମୋକଦମା ବିଷୟରେ କେଉଁ ଉକିଲ-ମାନଙ୍କ ସଙ୍ଗେ କଥାବାର୍ତ୍ତା ଓ ସାକ୍ଷାତ ପାଇଁ ସମୟ ନିର୍ଦ୍ଧାରଣ । କେଉଁ ବଡ଼ବଡ଼ିଆ ବନ୍ଧୁମାନଙ୍କର ଆଗମନ । ହଠାତ୍ ଭିତରେ ଏକାଧିକ କାର୍‌ର ପ୍ରବେଶ ।

ଆନନ୍ଦଚନ୍ଦ୍ରଙ୍କର ବିଚଳିତ ଭାବ, ଉଦ୍‌ବିଗ୍ନତା, ପୁଣି ସ୍ୱାଭାବିକତାର କୃତ୍ରିମ ମୁଖରେ ପ୍ରସନ୍ନତାର ଆଲୋକ ।

ଆଚ୍ଛା ବିକ୍ରମ, ସେମାନେ ଆସିଲେଣି । ଜରୁରୀ କାମର ଆଲୋଚନା ହେବ । ପରେ କଥାଭାଷା ହେବା । ଦୂର୍ଯ୍ୟୋଧଙ୍କୁ କହି କପର ବ୍ୟବସ୍ଥା କରିବେ ।

କଥାଭାଷା ହେବାକୁ ଆଦୌ ସୁଯୋଗ ମିଳିନାହିଁ ।

ଇନ୍ଦିରାଙ୍କ ସଙ୍ଗେ କେତେଥର ଭେଟ ହୋଇଛି । ବିକ୍ରମର କାହାଣୀ ସେ ମନଦେଇ ଶୁଣିଛନ୍ତି । ପଚ୍ଚାରି ପଚ୍ଚାରି ଖାରକେଶରୀ, ଚନ୍ଦନା ଓ ଗ୍ରାମର ଖବର ବୁଝିଛନ୍ତି । ନିଜ ବଡ଼ପଣିଆର କଥା ନିଜେ ଗପିଛନ୍ତି ।

ମୁଁ ଆସୁଛି, ବିକ ! ଦେହଟା ଭଲ ଲାଗୁନାହିଁ । ସେମାନେ କଣ ଛାଡ଼ିବେ ? ବନହଂସୀ ଫୋନ୍ କରିଥିଲେ । ଆମର "ନାଟ୍ୟ-ପ୍ରଗତି-ସଂଘ" ତରଫରୁ ଏବର୍ଷ କୁମାରୋତ୍ସବ ବେଶ୍ ଜାକ୍‌ଜମକରେ ହୋଇଥିଲା । ସାଂସ୍କୃତିକ ବିଭାଗର ମନ୍ତ୍ରୀ ପ୍ରଧାନ ଅତିଥି ହୋଇଥିଲେ । କବିଚନ୍ଦ୍ର ପ୍ରଧାନ ବକ୍ତା ।

ଖବରକାଗଜରୁ ପଢ଼ିଥିଲି, ମାଉଁ ! ବୈଷ୍ଣବପାଣି କବିଙ୍କର "ଶିଶୁପାଳ" ସୁଆଙ୍ଗ ଅଭିନୀତ ହୋଇଥିଲା । ଅତି ପ୍ରଶଂସିତ ହୋଇଥିଲା । ଫଟୋର ଛବିଗୁଡ଼ିକ କାଳି ବିଳିବିଳି ହୋଇଥିଲା । ଚିହ୍ନିପାରିଲି ନାହିଁ । ନାମରୁ ବି ଜାଣିପାରିଲି ନାହିଁ ଯେ ଅନୁପା ରୁକ୍ମଣୀ ହୋଇଥିଲା ଓ ଆମର ସଞ୍ଜୟବାବୁ ଶ୍ରୀକୃଷ୍ଣ ହୋଇଥିଲେ ।

ବିକ୍ରମ ଅନୁପାର ମୁହଁକୁ ବୁହଁଣୁ ସେ ଦୃଷ୍ଟି ନୁଆଁଇଲା । ହସିଲା । ଚନ୍ଦ୍ରଇନ୍ଦିଆ ମୁହଁ ସାମାନ୍ୟ ଲାଜବି ହେଲା । ସେ କହିଲା, ସୁଆଙ୍ଗରେ ପାର୍ଟ

ନେବାକୁ ମୁଁ ଯେତେ ନାହିଁ କଲି, ସେମାନେ ମାନିଲେ ନାହିଁ । ମତେ ବାଧ୍ୟ କଲେ । ବେଶୀ ମୋ ବୋଝ, ଗୋଲାପ ଆଉ ପ୍ରକାଶ ଭାଇ ।

ନିରୁପା କହିଲା, ଆହା ! ସତେ ଯେମିତି ତୋର ମନ ନ ଥିଲା । ପାର୍ଟ ଘୋଷି ଘୋଷି ମୁଖସ୍ଥ କରୁଥିଲୁ । ସଞ୍ଜୟଭାଇଙ୍କ ସଙ୍ଗେ ରିହାର୍ସଲ । ବାଉରଭାଇଙ୍କର ଯେଉଁ ରୂପ, ସେ ଯଦି ଶ୍ରୀକୃଷ୍ଣ ହୋଇଥାନ୍ତେ, ଭଲ ସାଜିଥାନ୍ତା । ପେଟ ହଲାଇ ଥାକୁଲ୍ ଥାକୁଲ୍ ନାଚିଥାନ୍ତେ । ସେ କୃଷ୍ଣ ହେଲେ ନାହିଁ କି ଶିଶୁପାଳ ହେଲେ ନାହିଁ ।

ଇନ୍ଦିରା କହିଲେ, ରାଜୁ ରାୟଙ୍କୁ ଶିଶୁପାଳ ପାର୍ଟ ଭଲ ମାନୁଥିଲା । ସବୁ ସୁନା ପଦକ ସେ ଓ ମୋ ଅନୁ ପାଇଲେ ।

ଅନୁପା କହିଲା, ତୋର ବଡ଼ିଆ ସୁନା ପଦକଟି ତୁ ସଞ୍ଜୟଭାଇଙ୍କୁ ଦେଲୁ କାହିଁକି ? ତାଙ୍କର ଆକ୍ଟିଂ ସେତେ ଭଲ ହୋଇ ନ ଥିଲା । ଓଡ଼ିଶୀ ନାଚ ନାଚି ନିରୁପା ସୁନା ମେଡାଲ ପାଇଲା ହକଭାଇ ! ତାକୁ ଶିବମାମୁଁ ଦେଲେ । ପ୍ରଶଂସା କରୁଥିଲେ ।

ନିରୁପା କହିଲା, ଅପା ଭାରି ହିଂସୁକି !

ଇନ୍ଦିରା କହିଲେ, କେବେ ସିନା ଶିବଚରଣ ନୋଥ, ଫୁଲଗୁଣା ପିନ୍ଧି, ମୁଣ୍ଡରେ ହାତେ ଓଢ଼ଣା ଦେଇ ନାଚୁଥିଲେ ଓ ବାହୁନୁଥିଲେ; ଏବେ ସେ ଗଣ୍ୟମାନ୍ୟ ଭଦ୍ରଲୋକ ହେଲେଣି । ମୋଟାମୋଟି ହୋଇ ଡେକାଡଉଧୁସ୍ତ । ବଡ଼ ବଡ଼ ତୋରଣିଛଣା ନିଶ । କଳା ଲମ୍ବିଛି ଗାଲ ମଝିଯାଏ । ମୁଣ୍ଡର ଲମ୍ବ କେଶ ଓଲଟାଇ କୁଣ୍ଡାଉଛନ୍ତି । ଟ୍ରଙ୍କ୍ ଫାକ୍ଟରୀର ମାଲିକ । ତାଙ୍କ ଦୋକାନରେ ପୁଣି ଆଲୁମିନା ପଦାର୍ଥ, ଆଉ ହରେକ୍ ଚିଜ । ଚାଲିରେ, ମୁହଁଭଙ୍ଗୀରେ, କଥାଭାଷାରେ ଏବଯାଏ ଟିକିଏ ମାଇଚ୍ଛା ଢଙ୍ଗର ଛିଟା ଅଛି ଯେ ! ଶିବଚରଣ କନୁ ଭାରି ସ୍ନେହ ।

ଅନୁପା କହିଲା, ଶିବମାମୁଁ ମତେ କହିଲେ, ତୁ ସିନା ମେଡାଲ-ଗୁଡ଼ାଏ ପାଇଲୁ ଲୋ ମା, ତୋ ଆକ୍ଟିଂ ମୋ ମନକୁ ଆସିଲା ନାହିଁ । ରୁକ୍ମିଣୀ ହୋଇଥିଲୁ, ଶ୍ରୀକୃଷ୍ଣ ତତେ ନେଲାବେଳେ ବୃଦ୍ଧପଦ ବାହୁନିପାରିଲୁ

ନାହିଁ ! ମନଖୁସିରେ ଗଳା ମେଲ ବାହୁନିଥାନ୍ତି । ହାତରେ କର୍ପୂର ଘଷି ସେ ହାତକୁ ଆଖିରେ ମାରି ଢ'ଧାର ଲୁହ ଗଡ଼ାଇଥାନ୍ତି । ଲୋକଦେଖାଣକୁ ଟିକଏ ଉଡ଼ଓଡ଼ାର ହୋଇଥାନ୍ତି ।

ଇନ୍ଦିରା ପଚାରିଲେ, କେଉଁଠି ତତେ ସେ ଏତେ କଥା କହିଲା, ଅନୁ ?

ଡ୍ରପ୍‌ସିନ୍ ପଡ଼ିଲା ପରେ । ପେଣ୍ଡାଲ କଡ଼ରେ । ଦେଖଣାହାରୀ ବାହାରେ ପାଟିତୁଣ୍ଡ କରୁଥିଲେ ।

ନିରୁପା କହିଲା, ମୁଁ ତାଙ୍କ କଥା ଶୁଣିନାହିଁ, ବୋଉ ! ତାଙ୍କୁ ମୁଁ ପେଣ୍ଡାଲ କଡ଼ରେ ଶିଶୁପାଳଙ୍କ ପାଖରେ ଦେଖିଛି । ମତେ ଦେଖି ସେ ମୁଣ୍ଡ ଟୁଙ୍କାରି ହସିଲେ । ରଜୁବାବୁଙ୍କୁ କହିଲେ, ସେ ନିରୁପାଟା ମୋ ଭଉଣିଜା ଯେ। ଅନୁପା ବି । ଅନୁ ଆଜି ସେ ଟୋକା ଖଣ୍ଡିକ, ସଞ୍ଜୟ, ଲକ୍ଷ୍ମୀନୃସିଂହ ପରି ବଣୁ ନ ଥିଲେ କି ? ଭଲ ଯୋଡ଼ି ।

ରଜୁବାବୁ କ'ଣ କହିଲେ ?

ମୁଁ ଶୁଣିନାହିଁ । ସଞ୍ଜୟଭାଇ ଅପାକୁ ଓ ମତେ ଡାକିଲେ । ଆମେ ଚାଲିଆସିଲୁଁ ।

ସେତିକିରେ ଆଲୋଚନା ସରିଲା ।

କିଛିକ୍ଷଣ ସମସ୍ତେ ନୀରବ ରହିଲେ । ସେହି ନୀରବତା ଭିତରେ ଅନୁପା ଓ ନିରୁପା ବୈଠକଖାନାରୁ ଖଞ୍ଜା ଭିତରକୁ ଚାଲିଗଲେ ।

ଇନ୍ଦିରା କେତେବେଳଯାଏ ଗମ୍ଭୀର ହୋଇ ତଳକୁ ଚାହିଁରହିଲେ । ମନକୁ ମନ ଟିକଏ ହସିଲେ । ବିକ୍ରମକୁ ପଚାରିଲେ, ସଞ୍ଜୟକୁ ତମେ ଚିହ୍ନ, ନିକି ? ରୂପ ଓ ସ୍ୱାସ୍ଥ୍ୟ ତ ସୁନ୍ଦର, ତାର ଚଙ୍ଗଢାଙ୍ଗ କିପରି ଜାଣ କି ?

ବିକ୍ରମ କହିଲା, ସେ ଭଲ ଖେଳାଳି । ଡ୍ରାମାରେ ମିଶନ୍ତି । ଟିକଏ ବଡ଼ଲୋକଆ । ସାଧାରଣ ପିଲାଙ୍କ ସଙ୍ଗେ ମିଶନ୍ତି ନାହିଁ । ଭାରି ଖର୍ଚ୍ଚୀ ।

ବଡ଼ଲୋକର ପିଲା ଯେମିତି ହୁଅନ୍ତି ।

ହଁ, ମାଈଁ ! ବେଶ୍ ଭଦ୍ର ।

ନିଶ୍ଚୟ ଲଜକୁଳା ହୋଇଥିବ, ବଳ ! ମୋ ଅନୁପାର ଗୋଲାପର ଭାଭ । ତଥାପି, ଆମ ଘରେ ତାର ଅକାଳେ ସକାଳେ ଦେଖା ମିଳେ ନାହିଁ । ବର୍ଷକ ତଳେ ବିକାଶ ସଙ୍ଗେ ଅଞ୍ଜନାର ବାହାଘର ହେଲା । ଆମେ ସମସ୍ତେ ତାଙ୍କର ନୂଆଘରକୁ ଯାଇଥିଲୁଁ । ତା ବୋଉ ରଞ୍ଜିତା ସମସ୍ତଙ୍କୁ ଝିଅ ବଦାବଦ ଯାଏ ଅଟକାଇଦେଲେ । ସେହି ବାହାଘର ପରଠାରୁ ଆମର ଦୁଇଟି କୁଟୁମ୍ବ ମଧ୍ୟରେ ଘନିଷ୍ଠତା ବଢ଼ିଲା । ସଞ୍ଜପୂର ଲଜକୁଳୀଗିର ଟିକଏ ଭାଙ୍ଗିଲା ।

ଅନୁପା ପୁଣି ଘରେ ପଶିଲା । କହିଲା, ବୋଉ, ବନହଂସୀ ମାଉସୀ ଫୋନ୍ କଲେଣି । ବୈଠକଖାନାରେ ନିରୁ ଫୋନ୍‌କୁ ଧରି ବସିଛି ।

ଇନ୍ଦ୍ର ଧୀରେ ଧୀରେ ଉଠି ତଳମହଲାର ଶୋଇବା ଘରୁ ପଦାକୁ ଗଲେ । ବିକ୍ରମ ପଲଙ୍କ ଉପରୁ ଉଠିଲା । ଦ୍ୱାରବନ୍ଧ ପାଖରେ ଅନୁପା ଠିଆ-ହୋଇ ତାକୁ ଏକଆଖିରେ ଚାହିଁଥିଲା । ରୂପ ଓ ସାଜସଜ୍ଜାରେ ସେ ଝଟକୁଥିଲା । ପଦାକୁ ମୁହଁ ବୁଲାଇ, ପୁଣି ମୁହଁ ଫେରାଇ କହିଲା, ବୋଉ ଯେଉଁ ଟଙ୍କା ପଠାଇଥିଲା ତାକୁ ତମେ ଫେରାଇ ଦେଲ ନାହିଁ କାହିଁକି ?

ବୋଉ ପାଇଁ ସେ ପଠାଇଥିଲେ ।

ଏଇଟା ତମର ଆଗ୍ର । ସେ ଭିକ୍ଷା ଦେଇଥିଲା । ତମର ସମ୍ମାନ ତମେ ବିକଢ଼ା କଲ, ବିକ୍ରମଭାଇ ! ତମେ ଗରିବ ହଁ, କିନ୍ତୁ ତମର ମନର ଟେକରେ ମୋର ବିଶ୍ୱାସ ଥିଲା ।

ତୋର ଦାନ ବି ମୁଁ ଗ୍ରହଣ କରିଥିଲି । ମୋର ମାନସମ୍ମାନକୁ ତୁ ଆଗ ମୋତେ ଖରବଟରେ ଢୋକାଇଥିଲୁ ।

ବିକ୍ରମଭାଇ !

ଅନୁପା କ୍ଷୀଣ ସ୍ୱରରେ ଚିତ୍କାର କରିଥିଲା । ତାର କଜ୍ଜ୍ୱଳପୂରିତ ଲୋଚନଯୁଗଳ ଛଳଛଳ ହୋଇଥିଲା ।

ବିକ୍ରମ କହିଲା, ଦାରିଦ୍ର୍ୟ ଓ ନିଃସଙ୍ଗତା ମଣିଷର ଅହମିକାର ମୁଣ୍ଡ ନୁଆଁଏ, ଅନୁ ! ତାର ବିଦ୍ୟା, ବୁଦ୍ଧି, ଦକ୍ଷତା, ସାହସ ଓ ଉତ୍ସାହର

ଗୋଡ଼ରେ ବେଢ଼ ପିନ୍ଧାଏ । ମୋର ସେଇଆ ହୋଇସାରିଛି । ଦୀପ ଲିଭିବା ଆଗରୁ ଯେପରି ଜଳିଉଠେ, ମୁଁ ସେହିପରି ଜଳୁଛି । ଶେଷ ଚେଷ୍ଟା କରିବାକୁ ଆସିଛି । ଉଠିପାରି ସବୁ ଉଠିପାରି ହେବାର ଆଶା ନାହିଁ । କବରୀ ଗୁଳର ଖଣ୍ଡିଏ ଯନ୍ତ୍ର ନ ହେବ, ମୋର ଆଶାଦୀପର ଶେଷ ଝଲକ ଲିଭିବ ।

ସେଇଠୁ ?

ପୁଣି ଅନ୍ଧାର ହେବ ଅନୁ, ତା'ପରେ କ'ଣ ହେବ ଏବଠାରୁ ମୁଁ କହିପାରିବି ନାହିଁ ।

ବନ୍ଧମ ହସିବାକୁ ଲାଗିଲା ।

ଗତକାଲର ଦୃଶ୍ୟ, କଥୋପକଥନ, ହସ ଓ ମାଙ୍କ ଇନ୍ଦିରାଙ୍କର ତରତର ପ୍ରତ୍ୟାବର୍ତ୍ତନର ସ୍ମରଣ, ଦେବଳୀ ରାତିର ଅନ୍ଧାରକୁ ଥରାଇଥିଲା । ମଶାପଲର ଆକ୍ରମଣରେ ଛଟପଟ, କ୍ଲାନ୍ତିରେ ଅବଶ, ତନ୍ଦ୍ରା ବନ୍ଧମକୁ ହସାଇଥିଲା ।

ମଟର ହର୍ଣ୍ଣର ଶବ୍ଦରେ ସେ ଚମକିଉଠିଲା । ତକ୍ତପୋଷର କଠିନ ଗୁଡ଼ ଉପରେ ବସି ସେ ଭାବିଲା, ରାତି ବୋଧହୁଏ ଅଧିକ ହୋଇନାହିଁ । ତା'ର ମାମୁଁ ଫେରିଆସିଛନ୍ତି । ତାଆର କୋଠରି ସିଧା ଗାଡ଼ି ଅଟକିଲା । କୁତୁହଳୀ ବନ୍ଧମ ଖୋଲା ଝରକା ପାଖକୁ ଆସିଲା ।

ବାହାରେ ଆଲୁଅର ଜୁଆର । ଗାଡ଼ିର ଆଗ ସିଟ୍‌ରୁ ଆଗ ସଞ୍ଜୟ ଓହ୍ଲାଇଲା । ଆଉଥରେ ହର୍ଣ୍ଣ ବଜାଇ ସେ ସାମନା ବାଟେ ବୁଲିଆସିଲା । ଦରଜା ଖୋଲିଲା । ଆଗ ସିଟ୍‌ରୁ ଅନୁଗ୍ରା ଓ ପଛରୁ ନିରୁପା ଏବଂ ସୁରୂପା ଓହ୍ଲାଇଲେ । ପୋର୍ଟିକୋ ଓ ବୈଠକଖାନାର ବାରଣ୍ଡାରେ ଆଲୁଅ ନାହିଁ । ବୋଧହୁଏ ଭିତର ପାଖରୁ ଇନ୍ଦିରା ଘର ବନ୍ଦ କରି ପୂର୍ବପରି ତାଲା ପକାଇଛନ୍ତି ।

ନରୁପା ଓ ନଦରେ ଠକଠକ ସ୍ୱରୂପା ବାହାର ଖଞ୍ଜାର କବାଟ ପାଖକୁ ଆଗେଇଗଲେ । ସଞ୍ଜୟର ଆଗରେ ଠିଆ ହୋଇ ଅନୁପା ଦୁଇହାତ ଯୋଡ଼ି, ମୁଣ୍ଡ ସାମାନ୍ୟ ନୁଆଇଁ ପ୍ରଣାମ କଲା । ମୁଖମଣ୍ଡଳରେ ହସର ଜ୍ୟୋତି । ଗେଲବସର ଗୀତରେ ମଥା ଆନ୍ଦୋଳାଇ କହିଲା, ଅଶେଷ ଧନ୍ୟବାଦ, ସଞ୍ଜୟଭାଇ ! ବୋଉକୁ ପଚାରି କାଲି ଦି'ପହରେ ନନ୍ଦନକାନନ ଯିବା ପ୍ରୋଗ୍ରାମ୍ ପକ୍କା କରିବା ।

ସଞ୍ଜୟ ଅନୁପାର ହାତପାପୁଲି ଧରି ସାମାନ୍ୟ ହଲାଇଲା । କହିଲା, ମୁଁ ଅନୁରୋଧ କଲେ ମାଉସୀ ଅରାଜି ହେବେ ନାହିଁ । ବିକାଶ ଭୁବନେଶ୍ୱର ଫେରିଗଲା । ଅଞ୍ଜନା ଅଛି । ତମେ ତାକୁ କାଲି ଫୋନ୍‌ରେ କହିଲେ ସେ ମନା କରିବ ନାହିଁ । ନିଶ୍ଚୟ କହିବ ତ ?

ଅନୁପା କହିଲା, ଆଚ୍ଛା, ହଉ !

ଖୁସି ହୋଇ ସଞ୍ଜୟ ଅନୁପାର ହାତ ସଜୋରେ ହଲାଇ, ହଲାଇ କାଇଦାରେ ଓଠରେ ଲଗାଇଲା । ତ୍ରସ୍ତା ହରିଣୀ ପରି ଅନୁପା ଚଞ୍ଚଳ ହେଲା । ଆଗକୁ, ପଛକୁ ଓ ଦୁଇ କଡ଼କୁ ଚାହିଁଲା । ହାତଟି ଓଟାରି ନେଲା ନାହିଁ ।

ବିକ୍ରମର ମନେ ହେଲା, ଦୁହେଁ ଦୁହିଁଙ୍କ ମୁହଁକୁ ନିଷ୍ପଳକ ହୋଇ ଚାହିଁରହିଲେ । ଆଖି ଆଖିର ମିଳନ । ଗୋପନ ବୁଝାମଣା । ବିକ୍ରମ ମଣିଲା, ଦୁହିଁଙ୍କ ମୁହଁରେ ହସ ଚକମିଲା ।

ହଠାତ୍ ବିକ୍ରମର ଛାତିତଳେ ଅବୋଧ୍ୟ ଯନ୍ତ୍ରଣା, ମୁଣ୍ଡଭିତରେ ଉତ୍ତପ୍ତ ତେ ଫାନ । ଦୁଇ ବାହୁର ମାଂସପେଶୀ ଟାଣକ ଉଠିଲା । ଗୋଡ଼ ଦିଓଟି ଥରିଉଠିଲା । ତା'ର ଇଚ୍ଛା ହେଲା, କବାଟ ମୁକାଳ ସେ ପଦାକୁ ଡେଇଁ ଆସ ସଞ୍ଜୟର ବେକ ଚିପି ମାରିବ । ତା' ପରେ ଅନୁପାର । ପରିଣାମ ଯା'ହା ହେବାର ହେଉ । ଅଚଳ ପାଦରେ ଦୁଇ ପାହୁଣ୍ଡ ପଛେଇଆସିଲା । କବାଟର କଳଣୀରେ ହାତ ଦେଲା ।

କଏ ଯେପରି ତାର ଅନ୍ତରତଳେ ନାହିଁ ନାହିଁ କରୁଛିଠିଲା । ସେହି ବିଶିଷ୍ଟ ବ୍ୟକ୍ତିର କହୁଉଠିଲା, ତୋ'ର କ ଥାଏ ? ଅନୁପାର ଦାୟିତ୍ୱ ତୋ ମୁଣ୍ଡରେ ଲଦା ହୋଇନାହିଁ । ନିଜର ଦାୟିତ୍ୱ ସେ ବୁଝେ ! ସଞ୍ଜୟକୁ ସ୍ନେହର ଫାଶରେ ବନ୍ଧନ କରି ଆତ୍ମସାତ କରିବାକୁ ମାଈଁ ସୁଯୋଗ ଦେଇଛନ୍ତି । ଅବାଧ ମିଳାମିଶାକୁ ସ୍ୱାଗତ କରିଛନ୍ତି । ପ୍ରକାରାନ୍ତରେ ସେ ନିର୍ଦ୍ଦେଶ ଦେଇଛନ୍ତି—ତୁ ଆଗେଇ ଯା ଅନୁ, ରୂପ ଓ ଅଭିନୟରେ ତାକୁ ମୁଗ୍ଧ କରି, ବଶୀଭୂତ କର ।

ଯାହା ଘଟିବାର ଘଟିଛି । ବିବେକ ମୂକ ସାକ୍ଷୀ ।

ଅଜ୍ଞାତରେ ତା ଜୀବନରେ ଅଣାୟତ୍ତରେ ଯାହା ଘଟିଥିଲା, ସେଥିପାଇଁ ସେ ଅନୁଶୋଚନାରେ ଦିନେ ନିଜର ପ୍ରାଣ-ପ୍ରଦୀପକୁ ଲିଭାଇ-ଦେବାକୁ ସଂକଳ୍ପ କରିଥିଲା । ତା'ର ଚେଷ୍ଟା ବିଫଳ ହୋଇଥିଲା । ସେହି ଘଟଣାଟି ତା'ର ବିବେକକୁ ବାରମ୍ବାର ଦଂଶନ କରୁଛି । ସେକାଳର ସଂସମହୀନତାକୁ ସେହି ବିବେକ ଧିକ୍କାର କରୁଛି ।

ଭଲ ହେଲା । ଆଜିଠାରୁ ତା'ର ବିଚଳିତ ବିବେକର ଅନୁଶୋଚନା ଦୂର ହେବ । ନିଜ ପାଖରେ ସେ କଇଫିୟତ ଦେଇପାରିବ—ଯାହା ଅଜ୍ଞାତରେ ଘଟିଥିଲା, ସେଥିପାଇଁ ସେ ଦାୟୀ ନୁହେଁ । ଯେଉଁମାନେ "ଦକ୍ଷିଣେ ମାତୁଳ-କନ୍ୟା"ର ଧାରଣା ପିଲାଟିଦିନରୁ ମନରେ ଜମ୍ମୁତ ଭାବନା ଜନ୍ମାଇଥିଲେ, ସେମାନେ ଦାୟୀ । ଏ ଧାରଣା ମନରେ ଜଗାଇ ଯେଉଁମାନେ ନିର୍ଜନ ସାନ୍ନିଧ୍ୟର ସୁଯୋଗ ଦେଇଥିଲେ, ସେମାନେ ଦାୟୀ । ବୋଉ, ମାଈଁ ପୁଣି ଆଉ ମୋତିମାଳା—

ଅନୁପା ଆକାଶର ନକ୍ଷତ୍ର । ସେ ଧରଣୀବକ୍ଷର ବାମନଟିଏ । ଅନୁପା ସଞ୍ଜୟକୁ ଭଲପାଇଛି । ତା'ର ସ୍ନେହର ପଛରେ ମାଈଁ ଇନ୍ଦିରାଙ୍କର ସମର୍ଥନ ଅଛି । ସେ କାହିଁକି ଉତ୍ତେଜିତ ହେବ ?

ସଞ୍ଜୟ ଅନୁପାର ଉପଯୁକ୍ତ ପାତ୍ର । ଅନୁପା ସୁଖୀ ହେଉ । କଦାକାର, ବୃକୋଦର, ମଦ୍ୟପ ବାଉରିବନ୍ଧୁ ରାହୁ ହୋଇ ଚନ୍ଦ୍ରମାକୁ ଗ୍ରାସ କରିବାର ସୁଯୋଗରୁ ବଞ୍ଚିତ ହେଉ ।

ବିକ୍ରମ ତକ୍ତପୋଷ ଉପରକୁ ଫେରିଆସିଲା । ମୁଣ୍ଡର କେଶ ଟାଣି ତା'ର ହନ୍ତସନ୍ତ ମନକୁ ସାନ୍ତ୍ୱନା ଦେବାକୁ ଲାଗିଲା—କାହାର ସୁପାରିସ୍ ନେଇ ସେ ଚାକିରି କରିବାକୁ ଚାହେଁ ନାହିଁ । ନିଜର ଯଦି ଦକ୍ଷତା ଓ ଯୋଗ୍ୟତା ନ ଥିବ, ଚାକିରି ଖଣ୍ଡେ ନ ମିଳିବ ତ ନାହିଁ । ସେ ଅନ୍ୟ କେଉଁ ପନ୍ଥା ଧରିବ । ଅନୁପା, ସଞ୍ଜୟ ଓ ବିକାଶଙ୍କର ଦୟାକୁ ସେ ସମ୍ବଳ କରିବ ନାହିଁ । ରାତି ପାହିଲେ ଏ ଘରକୁ ନମସ୍କାର କରି ସେ ଭୁବନେଶ୍ୱର ଚାଲିଯିବ । ସେଇଠି ତା'ର ଗୁରୁ କେବଳାନନ୍ଦ ପଥ ପାଇ ତାକୁ ଅପେକ୍ଷା କରିଥିବ ।

ରାତି ପାହିଲା । ଖରା ପଡ଼ିଲା । ବିକ୍ରମର ନିଦ ଭାଙ୍ଗିଲା ନାହିଁ । ପାହାନ୍ତା ପହରକୁ ତାକୁ ନିଦ ହୋଇଯାଇଥିଲା । ବାହାରେ କୋଳାହଳ । ସ୍ୱରୂପା ଓ ସାନନ୍ଦଙ୍କର ପାଟି ଶୁଭୁଛି । ସେମାନେ କଜିଆ କରୁଛନ୍ତି । ନିରୁପା ଦୂରରୁ ପାଟି କରି ସେମାନଙ୍କୁ ଶାସନ କରୁଛି ।

ବିକ୍ରମ ଉଠି କବାଟ ଖୋଲିଲା । ଦେଖିଲା, ପିଲା ଦୁଇଟା ଅପୁଟା ତାଳପଟକା ଗୋଟାଉଛନ୍ତି । ଧରପର ହେଉଛନ୍ତି । ପୋର୍ଟିକୋ ଆଗରେ ନିରୁପା ଠିଆ ହୋଇ ସେମାନଙ୍କୁ ଡାକୁଛି । କଜିଆ ନ କରିବାକୁ କହୁଛି । ସେମାନେ ଶୁଣୁନାହାନ୍ତି ।

ତଉଲିଆ ଖଣ୍ଡେ କାନ୍ଧରେ ପକାଇ ବିକ୍ରମ ପଦାକୁ ବାହାରିଲା । ପିଲା ଦୁଇଟାଙ୍କୁ ଅଲଗା କଲା ନାହିଁ । ନିରୁପାକୁ ପାଖକୁ ଡାକିଲା ନାହିଁ । ସେମାନେ ଧାଇଁଆସି ପୂର୍ବ ପରି ତା'ର ହାତ ଧରି ଟାଣୁନାହାନ୍ତି । ନିରୁପା ତାକୁ ବଲବଲ କରି ଅନାଇଛି । ଡାକୁନାହିଁ । ପାଖକୁ ଆସୁନାହିଁ । ସେମାନେ ବିକ୍ରମ ସମ୍ବନ୍ଧରେ ବୀତସ୍ପୃହ ହୋଇଛନ୍ତି । ବିକ୍ରମ ବାହାରର ଲୋକ ହୋଇସାରିଛି ।

ନିତ୍ୟକର୍ମ ସାରି ବିକ୍ରମ ପ୍ରସ୍ତୁତ ହେଲା । ସାଇକଲ ଖଣ୍ଡି ପୋଛି ନିର୍ମଳ କଲା । ପଦାକୁ କାଢ଼ିଲା । ପଛ କେରିଆର୍‌ରେ ସୁଟକେସ୍ ବାନ୍ଧିଲା ।

ଆଗରେ ଖଞ୍ଜା ହୋଇଥିବା ବାସ୍କେଟ୍-କେଣ୍ଆର୍‌ରେ ଓଦା ଲୁଗା ଓ ଛଇଳଆ ରଖିଲା ।

ଭେକରେ ପେଟ ଗର୍ଜୁଛି । ରାତରେ ସେ ଉପାସ ରହିଥିଲା । କେହି ତାକୁ ଡାକବାକୁ ଆସି ନ ଥିଲେ । ଖଞ୍ଜାଭିତରକୁ ଯାଇ ସେ ସୁଦର୍ଶନ ପୂଝାରୀଙ୍କୁ ନଜେ ମାଗି ଖାଇନାହିଁ । ରଥିଆ ଗୃକର ତାକୁ ଡାକବାକୁ ଆସିନାହିଁ । ସମସ୍ତେ ଦୀପାବଳୀ ଅମାବାସ୍ୟାର ଉତ୍ସବରେ ମତ୍ତ ଥିଲେ । କାହା ଉପରେ ତା'ର ଅଭିମାନ ନାହିଁ ।

ସେ ପ୍ରସ୍ତୁତ ହୋଇସାରଛି, କନ୍ତୁ ମାମୁଁ ଓ ମାଇଁଙ୍କୁ ଜଣାଇ ନ କର ସେ ଯାଇପାରୁନାହିଁ । ବନ୍ଧମ ବୁଝିସାରଥିଲା ଯେ ତାର ମାମୁଁ ବହୁତ ରାତରେ ଫେରଲେ । ବେଶୀ ଡେରରେ ଉଠିବାର ତାଙ୍କର ଅଭ୍ୟାସ ହୋଇଛି ।

ଇଦାନ କହୁଥିଲେ, ବେଶୀ ପରଶ୍ରମ କରୁଛନ୍ତି । ରାତରେ ଅନେକ ସମୟ ଯାଏ ଅନଦ୍ରା ରହୁଛନ୍ତି । ବାରଆଡ଼େ ବାର ପ୍ରକାର ବ୍ୟବସାୟ ବଢ଼େଇ ହୋଇପଡ଼ୁଛି ଯେ ନଜେ ନ ଦେଖିଲେ ଅଧୀନସ୍ଥ କର୍ମଗ୍ରାମାନେ ଠାକୁର ଖାଇ ଖଟଟ୍ଟା ଗିଳଦେବେ । ଆପୁକାର ଓ ବଣିକର ହାକମମାନେ ଆଖିବୁଜା ଟିକସ ବଷିଦେଇଛନ୍ତି । ସେଥିରୁ ଶହାତ ନ ମିଳଲେ ଗୁଡ଼ଘର ପିମ୍ପୁଡ଼ି ଖାଇଯିବ । ରାଜନୈତିକ ଦଳର ନେତା ଉପନେତାଙ୍କର ଗୃହା ପାଇଁ ଯେଉଁ କଟାଳ, ସେତକ ନ ବୁଝିଲେ ବେପାର ବୁଡ଼ବ । ଏମିତ ତାଙ୍କର କେତେ ପ୍ରକାର ଚନ୍ତା । ରକ୍ତଚାପ ବଢ଼ିଛି । ଔଷଧ ଖାଉଛନ୍ତି । ଆପଣାର ହୋଇ ଆମର କେହି ବଶ୍ୱାସୀ ନାହାନ୍ତି, ବନ୍ଧମ ! ଅନୁପା ଯଦ ପୁଅଟିଏ ହୋଇଥାନ୍ତା !

ମାଇଁ ତାକୁହିଁ ଛଳାଇ ଜଣାଇଦେଉଥିଲେ ଯେ ସେ ଆପଣାର ନୁହେଁ । ସେ ବଶ୍ୱାସୀ ନୁହେ । ସେ ପର ।

ବନ୍ଧମ ପାଖରୁ କୌଣସି ଉତ୍ତର ସେ ଆଶା କର ନ ଥିଲେ । ବନେଇକର ଉପରେ ପଡ଼ ବନ୍ଧମ ତୁଣ୍ଡ ଖୋଲ ଉତ୍ତର ଦେଇ ନ ଥିଲା ।

କ ଉତ୍ତର ବା ସେ ଦେଇଥାନ୍ତା ? ଅନ୍ୟାୟରେ, ଅସାମାଜିକ ସୂତ୍ରରେ ଧନ ଉପାର୍ଜନ କରି ଧନବାନ୍ ହେଲେ ଆନନ୍ଦର ପଛେ ପଛେ ଯେଉଁ ମନସ୍ତାପ, ଭୟ ଓ ଦୁଃଖ ଗୋଡ଼ାଇଥାଏ, ସେତକ ପୁଣି କିଏ ଭୋଗିବ ?

ସେଥି ପାଇଁ ନୂଆକୋଠାର ନୂଆ କୋଠରିରେ ରହିବାକୁ ଇଙ୍ଗିତ ଦେଇଥିଲେ—ବନ୍ଧୁବାନ୍ଧବ, କୁଣିଆମେଳ ଓ ଭଦ୍ରଲୋକମାନଙ୍କ ପାଇଁ ନୂଆକୋଠାର ପ୍ରଥମ କୋଠରିଟି ବେଶ୍ ଫରକତ । ଗାଧୁଆଘର ଓ ପାଇଖାନାଘର ଲାଗିଛି ଯେ ଏବଯାଏ ପାଣିର ବ୍ୟବସ୍ଥା କରାହୋଇନାହିଁ । ନ ହେଲେ ନାହିଁ, ଅଟାଳିଘର ପାଖରେ ଏ ସବୁର ସୁବିଧା ଅଛି ।

ଅନୁପା କହିଥିଲା, ସେ ଘରେ ଆଳକୁଟ ମାଳକୁଟ କେତେ ଜିନିଷ ରଖା ହୋଇଛି । ଟେବୁଲ ଚଉକି ନାହିଁ ।

ହଁ, ମା ! ତକ୍ତପୋଷ ପଡ଼ିଛି । ଜଣେ ମଣିଷ ଢନେ ଦୁଇଢନ ରହିବାକୁ ଅସୁବିଧା ହେବ ନାହିଁ । ଗ୍ରାମରେ ଖଟଖଟିଆରେ ସମସ୍ତଙ୍କର ବେଳ କଟେ । ବିକ୍ରମ ଘରର ପୁଅ । ଖଞ୍ଜାରେ ଚଳିବାକୁ କିଏ ତାକୁ ବତାଇବ କି ?

ବିକ୍ରମ କହିଲା, ମୋ ପାଇଁ ଏତେ ଚିନ୍ତା କରୁଛ କାହିଁକି, ମାଈଁ, ସେଥି ଘରେ ରହିବାକୁ ମୋର ବେଶ୍ ସୁବିଧା ହେବ । ସାଇକେଲ ଖଣ୍ଡି ଘରଭିତରେ ନିରାପଦରେ ରହିପାରିବ ।

ଇନ୍ଦିରା ଖୁସି ହୋଇ କହିଲେ, ସତେ ତ !

ଅନୁପା ଆଜି ମୁହଁ ଖୋଲି ନ ଥିଲା । ମୁହୂର୍ତ୍ତକ ପାଇଁ କେଉଁ ଅବ୍ୟକ୍ତ ବେଦନାରେ ତାର ମୁହଁ ମଳିନ ଦିଶିଲା । ଚିତ୍ରପ୍ରତିମାର ଆଖି ପରି ଅନୁପାର ଆଖି ଦିଓଟି ତାଆରି ଉପରେ ସ୍ଥିର ରହିଥିଲା । ହୁଏତ ସେ କିଛି ଦେଖୁ ନ ଥିଲା । ଗମ୍ଭୀର ଚିନ୍ତାରେ ନିମଗ୍ନ ଥିଲା ।

ସବୁ ଅସ୍ନେହ, ଅପମାନ ଓ ଅନାଦରକୁ ସସ୍ମିତ ମୁଖରେ ଆପଣାର କରି ବିକ୍ରମ ପଦାକୁ ଆସିଥିଲା ।

ପ୍ରକୋଷ୍ଠ ଖୋଲା ଥିଲା । ତା ଭିତରକୁ ଚାହିଁ ସାଇକେଲରେ ହାତ ଥୋଇ ସେ ବି ଚିନ୍ତା କଲା, ଇନ୍ଦସଙ୍କ ମନରେ ଏବଯାଏ ସନ୍ଦେହର ଭୂତ ନାଚ କରୁଛି । ଭୟ ଦେଖାଉଛି । ତେବେ, କାହିଁକି ସେ ଏହି ଘରେ ମୁହୂର୍ତ୍ତେ ରହିବ ? ସଙ୍ଗେ ସଙ୍ଗେ ଭୁବନେଶ୍ୱର ବା ଅନ୍ୟ କେଉଁଠିକି ଚାଲିଯିବ ନାହିଁ କାହିଁକି ? ତାଙ୍କର ଅନାସ୍ଥା ଭାବର ଠିକଣା ଜବାବ୍ ସେ ଦେଇପାରିବ ।

ତା'ର ଚିନ୍ତା ଭିତରେ ପ୍ରବେଶି ମ୍ଳାନମୁହୀଁ ଅନୁପା ଅଳି କରିଥିଲା, ତମର ଅପମାନ ଯେତେ ବଡ଼ ହେଉ ପଛେ, ଯେତେ ଦୁଃଖ ଅସୁବିଧା ପଛେ ଭୋଗିକରି, ମୋର ସମ୍ମାନ ରକ୍ଷା କରିବାକୁ ଦିନଟିଏ ହେଲେ ତମେ ସେଇଠି ରହିଯାଅ, ବିକଭାଇ !

ତିନୋଟି ରାତି ସେ ସେହି କୋଠରିରେ କଟାଇସାରିଛି । ତା'ର ମନରେ ଛଳ ନାହିଁ । ଛନ୍ଦକପଟ ନାହିଁ । କୌଣସି ଉଦ୍ଦେଶ୍ୟ ନାହିଁ । ଏହାର ପ୍ରମାଣ ସେ ଇନ୍ଦସଙ୍କୁ ଦେଇସାରିଛି ।

ସେହିପରି ସ୍ୱାଭାବିକ ଗତିରେ ସେ ତାଙ୍କର ପଦଧୂଳି ନେଇ ନିଜର ଭାଗ୍ୟ ଅନୁସରି ବିଦାୟ ନେଇଯିବ । ଭବିଷ୍ୟତ ଚିନ୍ତା ଏବଠୁଁ କରି କୁହୁଡ଼ି ପହଁରିବ ନାହିଁ । କାହାର ବିରୁଦ୍ଧରେ ମନରେ ଈର୍ଷା ପୋଷଣ କରି ନିଜକୁ ସେ ଛଟପଟ, ବିବ୍ରତ କରିବ ନାହିଁ ।

ସୁରୂପା ଓ ସାନନ୍ଦଙ୍କ ହାତରୁ ଅଫୁଟା ବାଣ ଛଡ଼ାଇ ତଳେ ପକାଇ ନିରୁପା ସେମାନଙ୍କୁ ଆକଟ କରୁଛି । କହୁଛି, ସେଗୁଡ଼ାକ ଭଲ ନୁହେଁ, ଫୁଟିବ ନାହିଁ । ହାତ ମଇଳା କରନା ଛି !

ବିକ୍ରମ ସେମାନଙ୍କ ପାଖକୁ ପୋର୍ଟିକୋ ଆଗକୁ ଗଲା । ସାନନ୍ଦ ଅଜଟ ହୋଇଥିବାର ଦେଖି, ତାକୁ ଦୁଇହାତରେ ଟେକି ଛାତିଉପରକୁ ନେଲା । ବୁଝାଇ କହିଲା, ନିରୁପାର କଥା ଠିକ୍ । ତୁ ଦୁଷ୍ଟ ହ'ନା, ସାନୁ ! ପୁଣି ଭଲ ବାଣ ବଜାରରୁ କିଣାହୋଇ ଆସିବ ।

ଅସ୍ମିର ସାନନ୍ଦ ବନ୍ଦନର ଛାତଉପରୁ ତଳକୁ ଓହ୍ଲାଇ ଘର-ଭିତରକୁ ଛୁଟି ପଳାଇଲା । ତା ପରେ ଗଲା ସୁରୂପା । ନରୁପା ପଚାରିଲା, ଝକଝକ ସାଇକେଲରେ ବାନ୍ଧି ନିଜେ ସଜବାଜ ହୋଇଛ, କୁଆଡ଼େ ଯିବ କି ବଡ଼ଭାଇ ?

ଭୁବନେଶ୍ୱର ଯିବ ।

ଇସ୍ ! ତମ ମୁହଁଯାକ ମଶା କେମିତି ଫୋଡ଼ି ନ'ଲି ନାଲି ଦାଗ କରିଛନ୍ତି ! ମଶାରି ନ ପକାଇ ଶୋଇବା ତୁମର ଅନ୍ୟାୟ ହୋଇଛି । ଖଞ୍ଜା-ଭିତର କଣରେ କେଡ଼େ ଚମତ୍କାର ବ୍ୟବସ୍ଥା କରାହୋଇଛି । ସେଇଟା ତ ତମର ରହଣୀ ଘର, ରାତିରେ ସେଇଠି ଶୋଇଲ ନାହିଁ ?

ମଶା ଠିକଏ ଫୋଡ଼ନ୍ତୁ ପଛେ ଏ ଘରଟି ବେଶ୍ ଫାଙ୍କତ । ମଶାରି ପକାଇଥିଲେ ବେଶୀ ଗରମ ହୋଇଥାନ୍ତା । ନିଦ ହୋଇଗଲେ ଗଲା ।

ସତେ ବଡ଼ଭାଇ, ବିଜୁଳି ପଙ୍ଖାର ପବନ ମଶାରି ଭିତରେ ପଶି-ପାରୁନାହିଁ । ଗରମରୁ ରକ୍ଷା ପାଇବାକୁ ଉପରଘରେ ଅପା ତା ମଶାରି ଟେକି ଦ'ରାତି ହେଲା ଶୋଉଛନ୍ତି । ହେଲେ ତାଙ୍କୁ ନିଦ ହେଉ ନାହିଁ । ଛଟପଟ ହେଉଛନ୍ତି । ଉଠି ବସୁଛନ୍ତି, ପୁଣି ଶୋଉଛନ୍ତି ।

ମାମୁଁ ମାଈଁ ଉଠିନାହାନ୍ତି ?

ନା, ବଡ଼ଭାଇ ! ଅପା ବି ଉଠିନାହାନ୍ତି । କାଲି ରାତିରେ ସେ ଓ ତା ଗୋଲାପ ଅଞ୍ଜନା ଅପା ବିକାଶଭାଇଙ୍କ ସଙ୍ଗେ ଦେବୀ ଦେଖିବାକୁ ଗଲେ । ଆମେସବୁ ଗଲୁଁ ସଞ୍ଜୁଭାଇଙ୍କ ସଙ୍ଗରେ । ଓଃ, ଫେରିବାକୁ କେତେ ଡେରି ହେଲା । ରାତିଯାକ ଛଟପଟ ହୋଇ ପାହାନ୍ତାକୁ ସେ ଶୋଇପଡ଼ିଛନ୍ତି । ତାଙ୍କୁ ଦେଖା ନ କରି ତମେ କ'ଣ ଭୁବନେଶ୍ୱର ଚାଲିଯିବ ? ଜଳଖିଆ ଚା ଖାଇ ଯିବ ନାହିଁ ?

ମୋର ଡେରି ହୋଇଯିବ, ନରୁ !

ପୁଖାଶ ସବୁ କରିସାରିବଣି । ଭିତରକୁ ଚାଲ ।

ଅନୁପା ପଦାକୁ ଆସିଲା ।

ସେ ନିତ୍ୟକର୍ମ ସାରି ପ୍ରସ୍ତୁତ ହୋଇଛି । ଧଳାଶାଢ଼ୀ ଖଣ୍ଡେ ପିନ୍ଧିଛି । କେଶ ମୁକୁଳା । ସେଥିରେ ଜଳବିନ୍ଦୁମାନ ଲାଗିଛି ।

ସେ ପାଖକୁ ଆସିଲା । ତାକୁ ଦେଖି ନିରୁପା କହିଲା, ତୁ ନିଶ୍ଚେ ଛିଟାଗାଳି ପଢ଼ିଥିଲୁ, ଅପା ! ଦେଖ୍, ବିକାଶଭାଇ ରେଡି ହୋଇ ଭୁବନେଶ୍ୱର ବାହାରିଲେଣି । ମୁଁ ତାଙ୍କୁ ଅଟକାଉଥିଲି । ଗୁ କପେ ଖାଇ ଯିବେ ନାହିଁ ?

କାହିଁକି ଅଟକାଇଲୁ ? ତାଙ୍କର ଜରୁରୀ କାମ ଥିବ । ପୂଝାରୀଙ୍କୁ କହିଲେ ସେ ଗୁ କପେ ଏଇଠିକି ଆଣି ଦେବେ । ଯା, କହ—

ନିରୁପା ଖଞ୍ଜାଭିତରକୁ ଗଲା ।

ବହେଁ ଦୁହିଁଙ୍କୁ କିଛିକ୍ଷଣ ଚାହିଁରହିଲେ । କିଏ କଅଣ କହିବ ବୋଧହୁଏ ବହେଁ ବିଷୟ ସ୍ଥିର କରିପାରୁ ନ ଥିଲେ । ହସହସ ହୋଇ ଆଗ ବିକ୍ରମ ମୁହଁ ଖୋଲିଲା—ତମେସବୁ ଆଜକାଲି ସକାଳ ପ୍ରାର୍ଥନା କରୁନାହଁ କି ଅନୁ ?

ନାଇଁ । କିନ୍ତୁ ତମେ ଶିଖାଇଥିବା ପ୍ରାର୍ଥନାଟି ମୋର ମନଭିତରେ ଖୋଦିତ ହୋଇଯାଇଛି । ଖାଲି ସକାଳେ ନୁହେଁ, ସବୁବେଳେ ମନେ ପଡୁଛି । ମଣିଷର ପ୍ରାର୍ଥନା ଓ ଚଳଣି ଭିତରେ ଆକାଶ ଓ ପାତାଳର ପ୍ରଭେଦ । ନୁହେଁ କି ?

ଗୋଟିଏ ଦୀର୍ଘ ନିଶ୍ୱାସରେ ବିକ୍ରମ ତା'ର ଉତ୍ତର ଦେଲା ।

ଅନୁପା କହିଲା, ଛାଡ଼ ସେ କଥା । କାଲି ତମର ଇଣ୍ଟରଭ୍ୟୁ । ଆଜି ନ ଯାଇ କାଲି ସକାଳେ ଗଲେ ବି ଚଳିବ । କିନ୍ତୁ ଆଜି ଦିନଟିଏ ଏଠାରେ ରହିବାକୁ କହି ତମକୁ ଅଧିକ ଦୁଃଖ ଦେବାକୁ ମୁଁ ଚାହୁଁନାହିଁ । ବିକାଶ-ଭାଇ ମତେ କଥା ଦେଇଛନ୍ତି । କାଲି ପୁଣି ଫୋନ୍ କରି ତାଙ୍କର ମନେ ପକାଇଦେବି ।

ଅନୁପା—!

ତମେ କଅଣ କହିବାକୁ ଯାଉଛ, ମୁଁ ଅନୁମାନ କରିପାରୁଛି, ବିକ-ଭାଇ ! ତମକୁ ମୋ ରାଣ, ମାନ ଅଭିମାନ କଥା ଏବେ ବିଚାର କରନା । ଆଗ

ତମର ଗୋଡ଼ ଲାଖିପାରୁ । ସେଇଠୁ ଭଲମନ୍ଦ ବିଚାର କରିବ । ମୋର ଶ୍ରେଷ୍ଠ କଥାଟି ନିଶ୍ଚୟ ମାନିବ ।

ଅନ୍ୟର ସୁପାରିସ୍‌ରେ ଚାକିରି ଖଣ୍ଡେ ପାଇବା ଉପାୟ ରହିବାଠାରୁ ଅଧିକ ଦୁଃଖପ୍ରଦ ହେବ ନାହିଁ କି ?

ତମ ପାଇଁ ମୁଁ ମୁହଁ ହରେଇସାରିଛି । ମୁଁ ମୁଣ୍ଡ ନୋଇଁଛି । ମତେ ଅପମାନିତ କରାଇବ ?

ଅନୁପାର ଦୁଇ ଆଖି ଛଳଛଳ ହେଲା ।

ବିକ୍ରମ କହିଲା, ତୋର ସମ୍ମାନ ଓ ବଡ଼ପଣର ଟେକ ରଖିବାକୁ ମୁଁ ତୋର କଥା ମାନିବି, ଅନୁ ! ଇଣ୍ଟର୍‌ଭ୍ୟୁ ଦେବି । ଚାକିରି ମିଳିଲେ ଚାକିରି କରିବି ଖାଲି ତୋ'ରି ପାଇଁ ।

ସତେ ବିକିଭାଇ, ମୋ'ରି ପାଇଁ ! ମୋର ଆଉ ଗୋଟିଏ ଅନୁରୋଧ ଅଛି, ରଖିପାରିବ ?

କଅଣ ତୋ'ର ଅନୁରୋଧ ?

ଚିଠି ଖଣ୍ଡିଏ ଦେବ ?

ମାଈଁ ବିରକ୍ତ ହେବେ ।

ସେକଥା ମୁଁ ବୁଝିବି । ତମର ଚିଠି ପାଇଲେ ମୁଁ ନିଶ୍ଚୟ ଉତ୍ତର ଦେବି । ବୋଉ ଅକୃତଜ୍ଞ ହୋଇପାରେ, ବିକିଭାଇ, ମୁଁ ଅକୃତଜ୍ଞ ହେବ-ନାହିଁ ।

କହୁ କହୁ ଅନୁପାର ମୁହଁ ଆରକ୍ତ ହେଲା । ସେ ଆଉ ବିକ୍ରମର ମୁହଁକୁ ଚାହିଁପାରିଲେ ନାହିଁ । ମୁହଁ ଫେରାଇ ଅଞ୍ଚଳରେ ଆଖି ପୋଛି ସେ ଧୀରେ ଧୀରେ ଖଞ୍ଜାଭିତରକୁ ଚାଲିଗଲା ।

ଇନ୍ଦିରାଙ୍କ ପାଖକୁ ବିକ୍ରମ ଯେଉଁ ଶ୍ରେଷ୍ଠ ଚିଠିଖଣ୍ଡି ଲେଖିଥିଲା, ସେଥିରେ ଆନୁଗତ୍ୟ ପରିପୂର୍ଣ୍ଣ ଥିଲା ।

—କପରି ମୁଁ ମୋର ହୃଦୟର କୃତଜ୍ଞତା ଭାଷାରେ ପ୍ରକାଶ କରିବି, ମାଈଁ ! ତମେ ଦୟା କରି ନ ଥିଲେ ମୁଁ କ'ଣ ଏହି ଚାକିରି ଖଣ୍ଡିକ ପାଇ-ପାରିଥାନ୍ତି ? କଅଣ ବା ମୋର ଯୋଗ୍ୟତା ? ମୋ ଅପେକ୍ଷା ଆହୁରି ଅଧିକ ଯୋଗ୍ୟ କେତେ ପ୍ରାର୍ଥୀ ବଡ଼ା ବଡ଼ା ସାର୍ଟିଫିକେଟ୍ ଓ ସୁପାରିସ ଧରି ଆସି-ଥିଲେ । ମୋର ସାର୍ଟିଫିକେଟ୍ ଯେ ତୁମେ । ମୋର ସୁପାରିସ ହେଉଛନ୍ତି ଅନୁପା ଓ ସଞ୍ଜୟବାବୁ । ମୋ ପାଇଁ ସେମାନଙ୍କର ଚେଷ୍ଟା ତମରି କରୁଣାର ଫଳ । ଅଭାବରେ ଭାସିଯାଉଥିବା ଗୋଟାଏ କୁଟୁମ୍ବକୁ ତମେ ହିଁ କୂଳରେ ଲଗାଇଲ । ମୁଁ କାର୍ଯ୍ୟରେ ଯୋଗଦେଇସାରିଛି । ତିନ ନମ୍ବର ଇଉନିଟ୍‌ରେ ମାର୍କେଟ ବିଲ୍ଡିଂ କଡ଼ରେ ଗୋଟିଏ ମେସ୍‌ରେ ରହିଛି ।

ସେହି ଚିଠିରେ ଇନ୍ଦିରାଙ୍କର ସ୍ୱାସ୍ଥ୍ୟହାନି ପାଇଁ ଚରମ ବ୍ୟସ୍ତତା ପ୍ରକାଶ କରିଥିଲି । ଉଦ୍‌ବେଗ ଜଣାଇଥିଲି । ଅତି ବେଶି କାର୍ଯ୍ୟବ୍ୟସ୍ତ ନ ରହି ବିଶ୍ରାମର ମାତ୍ରା ବଢ଼ାଇବାକୁ ସବିନୟ ଅନୁରୋଧ କରିଥିଲି । ଇନ୍ଦିରାଙ୍କୁ ଓ ମାମୁଁ ଆନନ୍ଦଙ୍କୁ ଶତକୋଟି ପ୍ରଣାମ ଏବଂ ଜଣଜଣ କରି ସବୁ ପିଲାଙ୍କୁ ସ୍ନେହ ଓ କଲ୍ୟାଣ ଜଣାଇଥିଲି ।

ଅନୁପା ପାଖକୁ ଲେଖିଥିବା ଚିଠିଟି ଆହୁରି ଛୋଟ—ମୋର ଏହି ଚାକିରି ପାଇଁ ତୁ ଯେତେ ଚେଷ୍ଟା କରିଛୁ, କପରି ମୁଁ ଭୁଲି-ପାରିବି ? ଜାଣ ମୋର ଏଇ ଚାକିରି ତୋ'ରି ପାଇଁ । ମୋତେ ତୁ ଓ ସଞ୍ଜୟ-ବାବୁ ଋଣୀ କରିସାରିଛ । ମୁଁ ଦରିଦ୍ର । କପରି ମୋର ଋଣ ଶୁଝିପାରିବି ? ତମ ଦୁହିଁଙ୍କୁ ମୁଁ କେବଳ ଧନ୍ୟବାଦ ଦେଇପାରିବି ସିନା ! ସେତିକି ସହଜ ଓ ଶସ୍ତା । ମୋ ମାଈଁଙ୍କର ଯତ୍ନ ନେବାର ଦାୟିତ୍ୱ ତୋ'ରି ।

ସବୁ ପିଲାଙ୍କ ଆଗରେ ଇନ୍ଦିରା ତାଙ୍କର ମତ ବ୍ୟକ୍ତ କଲେ, ପେଟ ତାତିଲେ ସମସ୍ତେ ବାଗକୁ ଆସନ୍ତି । ମୁଣ୍ଡ ନୁଏଁ । ଗର୍ବ ଭାଙ୍ଗେ । ନୁହେଁ କି ଅନୁପା ?

ଅନୁପା ସମର୍ଥନ କରି ଉତ୍ତର ଦେଲା, ହଁ ଲୋ ବୋଉ ! ସେଇଟା ବୋଧହୁଏ ମଣିଷର ଖୋଇ । ସେହି ମଣିଷ ପୁଣି କେବେ ଧନୀ ହୋଇଗଲେ, ହୋଗଭାଗ୍ୟରେ ରହିଲେ ତାର ସ୍ୱଭାବ ବଦଳିଯାଏ ।

ନିରୁପା ପ୍ରଶ୍ନ କଲା, ବଡ଼ଭାଇ ଘର ଗର୍ବୀ କ ଅପା ? ସେ କଅଣ ଅବାଗିଆ ଲୋକ ? ବାହାର ଘରଟାରେ ଟେବୁଲ ଚଉକ ଓ ଟିଣ ମଝିରେ ମଶାବଣରେ ଶୋଇ ତାଙ୍କର ମୁହଁ ଦେହ କେମିତି ସିଇଁ ହୋଇଥିଲା ତୁ ଦେଖିଥିବୁ । ପୂର୍ବାଶା କହୁଥିଲେ ଯେ ବଡ଼ଭାଇଙ୍କୁ ରାତିରେ ସେ ଖାଇବାକୁ ଦେବାକୁ ଭୁଲିଯାଇଥିଲେ । ସେ ଦେବାଲି ଦେଖିବାକୁ ଚାଲିଯାଇଥିଲେ । ବଡ଼ଭାଇ ଉପାସରେ ଶୋଇଥିଲେ । କାହିଁ, ସେ ତ ଛଳ କରିନାହାନ୍ତି ।

ଉଦ୍ଧବ କହିଲେ, ସତେ ଲୋ ନିରୁପା, ତମେ ସବୁ ସଞ୍ଜରୁ ସାଙ୍ଗରେ ଚାଲିଗଲ । ତାଙ୍କୁ ଡାକ ଖାଇବାକୁ ଦେବାକୁ ମୁଁ ଭୁଲିଗଲି । ଘର ବ୍ୟସ୍ତ ଲାଗୁଛି । ଲାଜର କଥା । ଭଣଜାପୁଅ, ମାମୁଁଘରେ ଉପାସରେ ଶୋଇଲା ! ଭୁଲ ହ, ଲୋକହସା କଥା ।

ଅନୁପାର ଛାତି କୋରିହେଉଥିଲା । କାହା ଉପରେ ସେ ରାଗିବ ନିଜେ ବୁଝିପାରୁ ନ ଥିଲା । ତା' ବୋଉ ବଡ଼ମଭାଇଙ୍କୁ ପଦାକୁ ତଡ଼ି-ଦେଇଥିଲେ । କାହିଁକ ସେପରି କରିଥିଲେ, ଅନୁପା ଅନୁମାନ କରୁଥିଲା ।

ଉଦ୍ଧବଙ୍କ କଥା ଶୁଣି ଅନୁପା ହସିଲା । କହିଲା, ଏଥିରେ ଲାଜର କଥା ବା ଲୋକହସାର କଥା କିଛି ନାହିଁ, ବୋଉ ! ଉପାସରେ ଶୋଇବା ତାଙ୍କର ଅଭ୍ୟାସ ହୋଇଥିବ; ସେ ନିଜେ ଜାଣିପାରି ନ ଥିବେ ।

ଉଦ୍ଧବ ଗମ୍ଭୀର ହେଲେ । ଅନ୍ୟମନସ୍କ ହେଲେ । ତାଙ୍କ ଘରେ ବଡ଼ମର ରହଣି ଓ ଚଳଣି ସହସା ତାଙ୍କର ମନେପଡ଼ିଲା । ପିଲାଙ୍କର ଛାଡ଼ିଲା ଭାତ, ଶାଗପାଣି ତା ଆଗରେ ଯାହା ଥୋଇଦେଲେ ତା'ର ସନ୍ତୋଷ । ଅଳପ ବହୁତ ମଣେ ନାହିଁ । ମୁହଁ ଖୋଲି କିଛି ମାଗେ ନାହିଁ । ପଛରେ ଦେଲେ ବିଅ, ନୋହିଲେ ନାହିଁ ।

ସୁନାମୁଣ୍ଡା ପଡ଼ିଥିଲେ ସେ ସାଉଁଟି ଆଣି ହାତରେ ଦିଏ । ଯେଉଁ କାମରେ ଲଗାଇଲେ ସେ କରେ । ଆପତ୍ତି ଅଭିଯୋଗ ତା ତୁଣ୍ଡରୁ ବାହାରେ ନାହିଁ । ତାକୁ ଦୂରେଇ ରଖିବା ଉଚିତ ହୋଇନାହିଁ ପରା ! ନଅବର୍ଷ କାଳ ଯେ ଦୁଃଖସୁଖର ସାଥୀ ହୋଇଥିଲା, ତା' ପ୍ରତି ଏପରି କଠୋର ବ୍ୟବହାର,

କେବଳ ବାହାର ଲୋକ ନୁହନ୍ତି, ବଡ଼ବଡ଼ ପିଲାଙ୍କ ମନରେ ଓ ତାଙ୍କ ବାପାଙ୍କ ମନରେ କି ଧାରଣା ଜନ୍ମାଉଥିବ ?

ଅନୁପାର ହସ ଓ ଅନୁପାର ମନ୍ତବ୍ୟରେ ଶାଣୁଆ ବିଦ୍ରୂପ ଲୁଚିରହିଥିଲା । ସେ ବୁଲିଯାଇଛି । ତା ପଛେ ପଛେ ନିରୂପା ସୁରୂପା ବୁଲି-ଯାଇଛନ୍ତି । ଚିଟି ବିଝଣ୍ଡି ଫଳଙ୍କ ଉପରେ ପଡ଼ିଉଛି । ଅନୁପା ବଡ଼ ଝିଅ । ପାଠୋଇ ଝିଅ । ନିଜର ଦାୟିତ୍ୱ ସେ ନିଜେ ବୁଝେ । ସହରରେ ବଢ଼ିଛି । ଚଳପ୍ରଚଳରେ ତା'ର ସ୍ୱାଧୀନତା ଅଛି । ତାକୁ ଆକଟି ହେବ ନାହିଁ । କଲେଜକୁ ଯିବାଆସିବା ଝିଅଟିକୁ ଅଟକାଇ ହେବ ନାହିଁ । କାହାର ପ୍ରକୃତିକୁ କିଏ ଜଗିପାରିବ ?

ବିହମକୁ ଟଙ୍କା ଭିତରେ ନ ରଖି ଦାଣ୍ଡଘରେ ରଖାଇ ଅନୁପା ପ୍ରତି ତାଙ୍କର ଧାରଣାର କି ପରିଚୟ ସେ ଦେଇଛନ୍ତି ? ସେ ହୁଣ୍ଡୀ ନୁହେ । ସବୁ ସେ ବୁଝିପାରିଥିବ । ମନେ ମନେ ବ୍ୟଥିତ ହୋଇଥିବ । ତା'ର ମନର ବ୍ୟଥା ତାକୁ ବିଦ୍ରୋହୀ କରିଥିବ । ତା'ର ତୁଣ୍ଡର ଭାଷା କ'ଣ ସେହି ବିଦ୍ରୋହର ବିଦ୍ରୂପ ? ପାଠ ପଢ଼ିବା ବାହାନାରେ ସେ ବାହା ହେବାକୁ ମନା କରିଦେଉଛି । ଜଣା କଥା ଯେ ସେ ଆଉ ପାଠ ପ୍ରତି ବିଶେଷ ମନଯୋଗୀ ହେଉନାହିଁ । ନିଜର ପାଠ ନ ପଢ଼ି ପିଲାମାନଙ୍କୁ ପଢ଼ାଇବାରେ ସେ ବ୍ୟସ୍ତ ରହୁଛି ।

ହାଡ଼ବନ୍ଧୁବାବୁ ଓ ଯୂଥିକା ବଡ଼ପୁଅର ବାହାଘର ପାଇଁ ବ୍ୟଗ୍ର ହୋଇପଡ଼ିଲେଣି । ବୃନ୍ଦ ପାଞ୍ଚଦିନ ତଳେ ଯୂଥିକା ଆସି ବ୍ୟସ୍ତ କରୁଥିଲେ । ସେଦିନର କଥାଭାଷାରୁ ଜଣାପଡ଼ିଲା, ସେ ଆଉ ସହାର କରିବେ ନାହିଁ । ଅନୁପାର ସ୍ୱାଧୀନ ଚଳଣି, ଅଧିକ ପାଠପଢ଼ା ଓ ସର୍ବସାଧାରଣ ଉତ୍ସବରେ ଯୋଗ ଦେବା ସେ ପସନ୍ଦ କରୁନାହାନ୍ତି । ପୁଅ ବାଉଟିବନ୍ଧୁର ମଧ୍ୟ ସେହି ଇଚ୍ଛା ।

ଯୂଥିକା କହିଲେ, ଆଉ ଶୋଭା ପାଉନାହିଁ, ସମ୍ମୁଦୁଣୀ ! ଦଶରା ଦିନ ମହାପ୍ରସାଦ ନିର୍ବନ୍ଧ କରିବାକୁ ସ୍ଥିର ହୋଇଥିଲା । ମାର୍ଗଶିରରେ ନିମିତ୍ୟ

କରି ହୋଇଥାନ୍ତା । ସେତକ ହେଲା ନାହିଁ । ମାସମାସରେ କରିବାକୁ ସ୍ଥିର କର । ତମ ସମୁଦି ଓ ମୋ ସମୁଦି ରାଜି ହେଲେଣି । କଥା ରହିଛି ତମଠେଇଁ ।

ମୁଁ ଅରାଜି ନୁହେଁ, ସମୁଦୁଣୀ ! ଅନୁପାକୁ ବୁଝାଇ ଆଗ ତାର ପାଠ-ଝିଅଙ୍କ ଘରେଁ, ତାକୁ ରାଜି କରାଏଁ ।

ଇନ୍ଦିରା ଅନୁପାକୁ ବୁଝାଇବାକୁ ଚେଷ୍ଟା କରିଥିଲେ । ସେ ସବୁ ଶୁଣି ଧୀରସ୍ଥିର ଭାବରେ ଉତ୍ତର ଦେଲା ପ୍ରଶ୍ନରେ—ମାଉସୀଙ୍କୁ କ'ଣ ତାଙ୍କ ପୁଅ ପାଇଁ ଆଉ କେଉଁଠି ଝିଅଟିଏ ମିଳୁନାହିଁ ?

ବାଉରିବନ୍ଧୁ ଆଉ କେଉଁଠି ବାହା ହେବାକୁ ମନା କରିଦେଲା, ମା !

ସେଇଥିପାଇଁ ମାଉସୀଙ୍କର ଝିଅଙ୍କ, ନା ? ବାଉରିଭାଇଙ୍କର ବହୁତ ଧନ ଅଛି । ମୁଁ ଜାଣେ, ତାଙ୍କୁ ବହୁତ ଝିଅ ମିଳୁଛନ୍ତି । ମାଉସୀ ସେଇଥିରୁ ଗୋଟିକୁ ବୋହୂ କରନ୍ତୁ । ତାଙ୍କ ପୁଅଙ୍କଠାରୁ ଆଗ ବୁଝନ୍ତୁ ।

ଅନୂପା !

କାହିଁକି ତୁ ମତେ ହଇରାଣ କରୁଛୁ, ବୋଉ ? ତୁ ଧନକୁ ବଡ଼ ମଣିଛୁ । ତୁ ମଦୁଆ, କଳାବଜାରୀ ବୃକୋଦରକୁ ପସନ୍ଦ କରୁଛୁ ।

ଇନ୍ଦିରା ଥକ୍କା ହୋଇ ଅନୂପାର ସଜଳ ଆଖିକୁ ଚାହିଁ ରହିଥିଲେ । କହିଲେ, ଧନ ନଥିଲା ଲୋକର କି ଅବସ୍ଥା ହୁଏ, ଆମେ ଅଙ୍ଗେ ନଭାଇଛୁଁ । ତୁ ବି ଏବେ ଦେଖୁଥିବୁ । ଧନ ପିତା ନୁହେଁ । ସଉକରେ ବଡ଼ଘର ଲୋକେ କେତେବେଳେ କେମିତି ଟିକିଏ ଫୁର୍ତ୍ତି ଆନନ୍ଦରେ ପିଇଦିଅନ୍ତି । ସେଇଟା ଧରିବାଏ ନାହିଁ ।

ପିଅନ୍ତୁ ବୋଉ, ମନଇଚ୍ଛା ପିଅନ୍ତୁ । ମୁଁ କାହାକୁ ବାହା ହେବି ନାହିଁ । ମୁଁ ପଢ଼ିବି । ବହୁତ ପଢ଼ିବି ।

ଇନ୍ଦିରା ବୁଝିଥିଲେ ଅନୁପା ବାଉରିବନ୍ଧୁକୁ ଘୃଣା କରେ । ବହୁଦିନର ପ୍ରସ୍ତାବଟିକୁ ତାଙ୍କଆଡ଼ୁ ଠକ୍ କରି ଛିଣ୍ଡାଇ ଦେଇ ହେବନାହିଁ । ଏହି

ପ୍ରସ୍ତାବ ଉପରେ ଦୁଇଟି କୁଟୁମ୍ବର ଘନିଷ୍ଠ ସମ୍ପର୍କ । ସେହି ସମ୍ପର୍କ ଉପରେ କେତେ ବେପାର ଏବଂ ଧନାଗମ ନିର୍ଭର କରୁଛି । ହିଁଅଟା ଅବାଧ ହେଉଛି । ବାଧବାଧକତାର ଫଳ ଆଜି କଣ ବିଷମ ଘଟିପାରେ । ଭୁଲ ରହିବା ଉଚିତ ।

ଇନ୍ଦିରା ଜାଣନ୍ତି, ଅନୁପାର ଗୋଲାପ ଅଞ୍ଜନାର ଭାଇ ସଞ୍ଜୟ ଅନୁପାକୁ ସ୍ନେହ କରିଛି । ଆକୃଷ୍ଟ ହୋଇଛି । ସଞ୍ଜୟ ଭଲ ପିଲାଟିଏ । ଭଦ୍ର ଓ ସଂଯତ । ସୁନ୍ଦର ଓ ସ୍ୱାସ୍ଥ୍ୟବାନ । ଧନୀର ଦୁଲାଳ । ବ୍ୟବସାୟରେ ମୁଣ୍ଡ ଖେଳାଏ ନାହିଁ । କିନ୍ତୁ ସେ ହାକିମ ହେବ । ଗୋଲାପର ଭାଇ ରୂପରେ ସେ ଅନୁପା ଓ ନିରୁପାଙ୍କର ଭାଇଲେଖା । ସେମାନଙ୍କୁ ସ୍ୱାଧୀନ ଭାବରେ ମିଶିବାକୁ, ଚଳପ୍ରଚଳ ହେବାକୁ ଜାଣିଜାଣି ସେ ଛାଡ଼ିଦେଇଛନ୍ତି । ସଞ୍ଜୟ ଓ ଅନୁପା ଯଦି ପରସ୍ପରକୁ ପସନ୍ଦ କରନ୍ତି, ସ୍ନେହ କରନ୍ତି, ହାଣ୍ଡିହାଣ୍ଡିରେ ସୁନା ଷୁଳଣି କଲାପରି ହେବ ।

ରଞ୍ଜିତା କହୁଥିଲେ, ଅଞ୍ଜନାର ବାହାଘର ପରେ ମୁଁ ଏ ଘରେ ପଶି ପାରୁନାହିଁ, ଇନ୍ଦିରା ! ତାର ଗୋଲାପ ଅନୁପା ଯଦି ମୋ ପାଖରେ ରହନ୍ତା !

ରଖିନ ଅପା, ତମର ସେହ ବଳିଛି ।

ବିଲାତଫେରନ୍ତା ଇଂଜିନିୟରଙ୍କର ମୁଁ ଘରଣୀଟି ! ଆମ ଦୁହିଁଙ୍କର ଜାତିଆଣ ବାଛବିଚାର ନାହିଁ । ଅନୁପାଟି ସଞ୍ଜୟକୁ ଭଲ ମାନନ୍ତା ଯେ ।

ସତେ, ଭଲ ମାନନ୍ତା ଯେ, ତମେ ତ ଜାଣିଛ ଅପା—

ଜାଣିଛି । କଥାକଥାକେ ରାହୁବନ୍ଧୁବାବୁ ଓ ତାଙ୍କର ସ୍ତ୍ରୀ ଅନୁପାର ପ୍ରସଙ୍ଗ ପଡ଼ିଲେ ଖାଲି ମୋ ବୋହୂ, ମୋ ବୋହୂ ହେଉଛନ୍ତି । ହେଲେ, ବାଞ୍ଛାବନ୍ଧୁ କଅଣ ଅନୁପାର ଲାଗି ?

ଯାହା ହାଣ୍ଡିରେ ଯିଏ ଚାଉଳ ପକାଇବାକୁ ଜନ୍ମ ହୋଇଛି, ବଳେ ସେ ତାହାର ହେବ ।

ତଥାପି ଆଜି ସେ ପ୍ରସଙ୍ଗ କେବେ ଉଠାଇନାହାନ୍ତି । କିନ୍ତୁ ଅନୁପା ଓ ନିରୁପାଙ୍କୁ ସେ ଅଧିକରୁ ଅଧିକ ସ୍ନେହ କରୁଛନ୍ତି ।

ପିଲା ଦୁଇଟି ତାଙ୍କ ଘରେ ସ୍ୱାଧୀନ ହୋଇ ଚଳନ୍ତି । ଅନୁପା ଯଦି ସଞ୍ଜୟକୁ ସ୍ନେହ କରିପାରନ୍ତା, ଯୂଥିକାଙ୍କ ଆଗରେ ବାହାର ଦେଖାଣକୁ ତା ଉପରକୁ ଦୋଷ ଠେଲିଦେଇ ସେ ମିଛିଚ୍ୟ ଉଠାନ୍ତେ । ହାଡ଼ବନ୍ଧୁ ଓ ଯୂଥିକାଙ୍କର ଆଜି କିଛି କହିବାର ନ ଥାନ୍ତା । ସେମାନେ ଅନ୍ୟଠାରେ ତାଙ୍କର ସମ୍ବନ୍ଧ କରନ୍ତେ ।

ଝିଅମାନଙ୍କୁ ପୁଅମାନଙ୍କ ପରି ସ୍ୱାଧୀନତା ଦେବାର ପ୍ରଶ୍ନ ଉଠୁନାହିଁ । ସହର ବଜାରରେ ବଢ଼ିଲା ଝିଅ, ପାଠୁଆ ଝିଅ ତାଙ୍କ ମନକୁ ସ୍ୱାଧୀନ ହେଉଛନ୍ତି । କିଏ ଜଗିବ, କିଏ ବାରଣ କରିବ ? ସ୍କୁଲ କଲେଜରେ, ସିନେମା ଥିଏଟରରେ, ସଭା ସମିତି, ମେଳା ମଉଛବ, ସାଂସ୍କୃତିକ ଉତ୍ସବରେ, ବଡ଼ବଡ଼ଆଙ୍କର ସମ୍ବର୍ଦ୍ଧନା ପାଇଁ ହେଉଥିବା ଭେରାଇଟି ସୋ ଓ ଅଭିନୟରେ, ପିକ୍‌ନିକ୍ ପାଇଁ ଯାଇ ଦୂର ସ୍ଥାନମାନଙ୍କରେ, ପୁଣି ଭୁବନେଶ୍ୱର, କୋଣାର୍କ ଓ ବଡ଼ଠାକୁରଙ୍କ ବେଡ଼ାରେ ପୁଏ ଝିଏ ଏକାଠି ହେଉଛନ୍ତି । ଚାହାଁପଚାରି, ରଙ୍ଗରସ, କୌତୁକ । ମନ୍ଦିରମାନଙ୍କରେ ଯେଉଁ ଚଉଷଠି ପ୍ରକାର ଅଭିଲ-ଭଙ୍ଗୀର ଯୁଗଳ ମୂର୍ତ୍ତିଗୁଡ଼ିକ ଠିଆ ହୋଇଛନ୍ତି, ସେସବୁ ଆଖିରେ ପଡ଼ୁଛି । ମନରେ ଭେଦୁଛି । ଶିରାପ୍ରଶିରାରେ ଉଷ୍ମ ଉତ୍ତେଜନା ଚରୁଛି ।

ଉତ୍ତେଜନା ଆସିବାର କଥା । ଦେଖିବାକୁ ଲାଜ ଓ କହିବାକୁ ସିନା ଆଡୁରି ଲାଜ, ଭାବିବାକୁ ଲାଜ ମାଡ଼େ ନାହିଁ । ଦାରବୁଢ଼ୀ ବୟସରେ ଯେତେଥର ସେ ଧର୍ମ କରିବାକୁ ଶୁଦ୍ଧପୂତ ମନରେ ଦର୍ଶନ କରି, ପାପ କ୍ଷୟ କରି, ଧର୍ମ ଅର୍ଜିବାକୁ ଯାଇଛନ୍ତି, ମନ ନାହିଁ ନାହିଁ କରୁଥିଲେ ବି ଆଖି ଦୁଇଟା ବାଆଁରେଇ ହୋଇ କିଛି ନ ଜାଣିଲା ଢଙ୍ଗରେ ସେହି ଯୁଗଳ ମୂର୍ତ୍ତିଗୁଡ଼ିକୁ କଣେଇଁ ଚାହିଁଦେଇଛି ।

ସଂସାର ଚକ୍ର । ସେଥିରେ ପାପ ନାହିଁ । ଖାଲି ବୁଝିବାକୁ ଲାଜ, କହିବାକୁ ଲାଜ । ଭାବିବାକୁ, ମନରେ ଦେହରେ ତାତି ଚଗାଇବାକୁ ଲାଜ ନାହିଁ । ସଂସାରୀ ଯେଉଁମାନେ, ତାଙ୍କ ପକ୍ଷରେ ସେହି ଗଣ୍ଡ-ମାଧୋଇ ଗୀତ ଜାଣିବାରେ, ଦେଖିବାରେ ଆପତ୍ତି ନାହିଁ । କିନ୍ତୁ ଯେଉଁମାନେ ସାମାଜିକ ରୀତିରେ ସଂସାରୀ ହୋଇନାହାନ୍ତି, ଯାହାଙ୍କର ନବ ଯୌବନ, ଛନ୍‌ଛନ ମନ, ବୁଝିଦେଲେ ତାଙ୍କର ଧୃତି ଉଚ୍ଛନ୍ନ ହେବାର କଥା । ସ୍ୱାଧୀନ ଚଳନରେ ବାଧା ଦେଇହେବ ନାହିଁ । ବାଧା ଦେଲେ ଅଡ଼ିବେ । ଝୁଙ୍କ ବଢ଼ିବ । ଆଉ କଅଣ ଅଘଟଣ କରି ବସିବେ । ମନ ଯୋଗା ସଙ୍ଗୀ ଯଦି ଉପଯୁକ୍ତ, ବେଳହୁଁ ଛାଡ଼ିଦେବା ଭଲ । ନିଜ କର୍ମଫଳ ନିଜେ ସେମାନେ ଭୁଞ୍ଜିବେ ।

ସଞ୍ଜୟ କଣ ଅନୁପାର ମନଯୋଗା ସଙ୍ଗୀ ହୋଇପାରିଛି ? ଅବା—?

ଇନ୍ଦିରାଙ୍କର ଗୁନ୍ଥିଥିବ ଆଉ ଗୋଟିଏ ପ୍ରଶ୍ନ, ଯାହା ତାଙ୍କର ସନ୍ଦେହର ପ୍ରତିବିମ୍ବ, ଅବା ବିକ୍ରମ ?

ଇନ୍ଦିରା ବିଚଳିତ ହେଲେ । ଦରିଦ୍ର ବିକ୍ରମ ଉପରେ ତାଙ୍କର ବିଶ୍ୱାସ ତାଙ୍କୁ ଆଶ୍ୱାସନା ଦେଲା । ଅନୁପା ପିଲାବୁଦ୍ଧିରେ ଅବ୍ୟବସ୍ଥିତ ହୋଇପାରେ, ଅପରିଣାମଦର୍ଶୀ ହୋଇପାରେ; କିନ୍ତୁ ବିକ୍ରମର ବୁଦ୍ଧି ସ୍ଥିର । ତାର ସାମାଜିକ କର୍ତ୍ତବ୍ୟଜ୍ଞାନ ଅଛି । ସେ ଅବଶ୍ୟ ଭଲମନ୍ଦର ପରିଣାମ ବୁଝେ ।

ସେ ଦୂରେଇଯାଉଛି । ଯାଉ ସେ ଦୂରେଇ । ସଞ୍ଜୟକୁ ଆହୁରି ଆପଣାର କରିବାକୁ ହେବ । ବାଉଁରିବନ୍ଧୁକୁ କରଛଡ଼ା ଦେଇ ରହିହେବ ନାହିଁ । ବିକ୍ରମ ଯେ ଭଣଜା, ତାକୁ ତ୍ରୁଟି କଲେ କିଏ କଅଣ ଭାବିବ । ସେ ତ ନିଜେ ସାବଧାନ । ରୀତିପଥରେ ସମ୍ବନ୍ଧ ରଖିଲେ, ଗଲେ, ଆଇଲେ, କିଏ କଅଣ କହିବ ? ପିଲାଙ୍କ ମନରେ କିମ୍ବା କିନ୍ତୁ ଆସିବ ନାହିଁ ।

ରାତି ଦୁଇଖଣ୍ଡି ଧରି ଇନ୍ଦିରା ଅନୁପା ପାଖକୁ ଉପର ମହାଲକୁ ଗଲେ । ପଢ଼ାଘରେ ସେ ବହି ସଜାଡ଼ୁଥିଲା । ହସହସ ହୋଇ କହିଲେ, ଆଜି ପରି କ'ଣ ଭଲ ସିନେମା ଖେଳ ଅଛି ମା, ଯିବାକୁ ତୁ ମନ କରୁଛୁ, ନିରୁପାକୁ ସଙ୍ଗରେ ନେଇ ଯାଉନୁ ?

ସେ ଯିବାକୁ ହମ ହମ ହେଉଛୁ ସିନା !

ସଞ୍ଜୟକୁ ଫୋନ୍ କଲେ ସେ ମୋ କଥା ରଖିବ ଯେ ।

ଇନ୍ଦିରା ଅନୁପାର ସରମିଲା ମୁହଁକୁ ଚାହିଁ ହସହସ ହେଲେ । ସେଇ ହସିଲା ଇଙ୍ଗିତର ଅର୍ଥ ଅନୁପାକୁ ଅବୁଝା ରହିଲା ନାହିଁ । ସେ ଦୃଷ୍ଟି ନୁଆଁଇ ବହି ସଜାଡ଼ୁ ଣୁ କହିଲା, ତୁ ସାଙ୍ଗରେ ଯିବୁ ।

ଗଲେ ଯିବ । ମୁଁ ଗଲେ ସାନ ଦୁ'ଟା ବାହାରିବେ । ତୋ ବାପା କାଳେ ମୋ ନଥିବା ବେଳେ କେଉଁମାନଙ୍କୁ ସଙ୍ଗରେ ନେଇ ପହଞ୍ଚିଯିବେ । ହଇରାଣ ହେବେ । ହଉ, ତୁ ପ୍ରସ୍ତୁତ ହ । ନେ ମା, ବହମର ଏଇ ଚିଠି ଦୁ-ଖଣ୍ଡି । ଅହା, କେଡ଼େ ସ୍ନେହ ଆଗ୍ରହରେ ଲେଖିଛୁ । ତୋ'ଓର ଘାଇ ତ ! ଜବାବ ଖଣ୍ଡେ ଲେଖିଦେବୁ । ମୋର ସୁନାଟା ପରା ! ଆସିବାକୁ ଲେଖିବୁ ମା !

ରଗିଲା ସାପ ଫଣା ଟେକିଲା ପରି ଅନୁପା ମୁହଁ ଟେକି କହିଲା, ମୋର କି ଗରଜ ? ତରେ ଚିଠି ଲେଖି ଆପେ ନାହିଁ କି ? ପ୍ରକାଶବାବୁଙ୍କର ଦୟା ହେଲା, ବଳଭାଇଙ୍କର ଦୁର୍ଦ୍ଦଶାର ଖବର ବୁଝି ସେ ତାଙ୍କୁ ଚାକିରି ଦେଲେ । କହିବାର କଥା, ମୁଁ କହିଦେଇଥିଲି । ସେଥିପାଇଁ କେଡ଼େ ନଜିନ ହୋଇ ଚିଠି ଖଣ୍ଡେ ଲେଖିଛନ୍ତି ! କୁଆଡ଼େ ଗଲା ତାଙ୍କର ତେଜ ? ତାଙ୍କର ମନ ହେଲେ କେବେ ସେ ଚୂଡ଼ା ଗୁଡ଼ଜ କାନରେ ବାନ୍ଧି ଆସିଲେ ଆସିବେ, ନ ଆସିଲେ ନ ଆସିବେ । ମୁଁ କାହିଁକି ଉପରେ ପଡ଼ି ତାଙ୍କୁ ଆସିବାକୁ ଲେଖିବି ?

ହଉ ହେଲା । ମୁଁ ଲେଖିବି । ଏ ଚିଠି ଏଇଠି ଥାଉ । ତୁ ରାଗୁଛୁ କାହିଁକି ? ଚାରିଟା ବାଜିଗଲାଣି । ଆ, ତୋର ମୁଣ୍ଡ କୁଣ୍ଡାଇଦିଏଁ । ଯାଏଁ, ଆଗ ସଞ୍ଜୟକୁ ଫୋନ କରି କହେଁ ।

ଇନ୍ଦିରା ତଳକୁ ଓହ୍ଲାଇଲେ । ଚିଠି ଦୁ'ଖଣ୍ଡି ଅନୁପା ଟେବୁଲର ଉପରରେ ରଖି ମନକୁ ମନ ହସିଲା । ସେ ଜାଣେ, ସଞ୍ଜୟବାବୁଙ୍କ ସଙ୍ଗେ ଘନିଷ୍ଠତା ବଢ଼ାଇବାର ସୁଯୋଗ ଦେବାକୁ ତାର ବୋଉ ବ୍ୟଗ୍ର । କିନ୍

ସମୟରେ କୌଣସି କାମର ଆଳ ଦେଖାଇ ତାର ବୋଉ ସିନେମା ନ ଯାଇ ଘରେ ଅଟକିଯିବେ, ଅବା 'ନାରୀ ପ୍ରଗତି ସଂଘ'ର ଜରୁରୀ ବୈଠକରେ ଯୋଗଦେବାକୁ ବନହଂସୀ ଦେବୀଙ୍କ ଘରକୁ ଚାଲିଯିବେ ।

ଲୋକସମ୍ପର୍କ ବିଭାଗ ଅଫିସରେ ଚାକିରି ଖଣ୍ଡେ ପାଇ କାର୍ଯ୍ୟରେ ଯୋଗ ଦେଇଛି ଓ କେଉଁ ମେସ୍‌ରେ ରହୁଛି ବୋଲି ବିକ୍ରମ ଭୁବନେଶ୍ୱରରୁ ପୋଷ୍ଟକାର୍ଡ଼ ଖଣ୍ଡେ ଲେଖିଥିଲା । କଅଣ ସେ ଚାକିରି, କେତେ ଟଙ୍କା ଦରମା, ଉପରୁ ଚାରିପଇସା ମିଳେ କି ନାହିଁ, ସେ ସମ୍ବନ୍ଧରେ ସେ କିଛି ଲେଖି ନ ଥିଲା । ତଥାପି ଠାକୁରାଣୀ ମାର୍ଜନା, କାଳିଆବୋଦା ବଳି ଓ ରଥିଆ କେଉଟଙ୍କ କାଳିସି-ଲଗାର ପଣାପାଣି ସରଞ୍ଜାମରେ ଟଙ୍କା ପଚିଶଟି ଖରଚ ହୋଇଥିଲା ।

ଶାରକେଶରୀଙ୍କର ଏଥି ଅନର୍ଥକ ବ୍ୟୟରେ ମତ ନ ଥିଲା ; କିନ୍ତୁ ରୋଗଣୀ ଚନ୍ଦନା ବାରମ୍ବାର ଅଶୁଭ ସ୍ୱପ୍ନ ଦେଖି ରାତିରେ ବିଲବିଲେଇବାକୁ ଲାଗିଲେ । ନିଜେ ଠାକୁରାଣୀ ତାଙ୍କୁ ସ୍ୱପ୍ନ ଦେଖାଉଥିଲେ ।

—କିଲୋ, ମାନସିକ କଥା ଭୁଲିଗଲୁ କି ? ଦେଖିବୁ ଦେଖିବୁ, ମୁଁ କଅଣ କରିବି !

ଶାରକେଶରୀ ବାଧ୍ୟ ହୋଇ ମଙ୍ଗିଲେ ।

ହାତରେ ଧନ ନ ଥିଲା ; କିନ୍ତୁ ଶାରକେଶରୀଙ୍କ ପାଖରେ ପୋଷ୍ଟାଲ ମୋହରମାରା ବିକ୍ରମର ସ୍ୱହସ୍ତଲିଖିତ ପୋଷ୍ଟକାର୍ଡ ଥିଲା । ଗ୍ରାମରେ ବିକ୍ରମର ଅର୍ଜିତ ସୁନାମରେ ସେଇ କାଗଜ ଖଣ୍ଡିକର ମୂଲ୍ୟ କେତେଗୁଣ ଓଜନର ସୁବର୍ଣ୍ଣ ସଙ୍ଗେ ସମାନ । କଥା କହି ପାଣିରେ ସର ପକାଇ ଯୋଗ୍ୟ ପୁତ୍ର ବିକ୍ରମର ସେଇ ଚିଠିଖଣ୍ଡିକ ଦେଖାଇ ଶାରକେଶରୀ ଅନେକଙ୍କଠାରୁ ପାଞ୍ଚ ଦଶ କରି ହାତ ଉଧାର ସଂଗ୍ରହ କରିପାରିଥିଲେ । ଟଙ୍କାରେ ମାସକୁ ପାଞ୍ଚ ପଇସା ସୁଧ ଦେବାକୁ ନିଜ ମନକୁ ସେ ପ୍ରତିଶ୍ରୁତି ଦେଇଥିଲେ—ମାସ ପୂରିଲେ ପୁଅ

ଟଙ୍କା ପଠାଇବ । ଅନ୍ତତଃ ଟଙ୍କା ତିନିଶହ ଦରମା ପାଉଥିବ ତ ! ବି. ଏ. ପାସ୍ ଗ୍ରାଜୁଏଟ୍ । ସାମାନ୍ୟ କେଇଟା ଟଙ୍କା ମୁଁ ସଙ୍ଗେ ସଙ୍ଗେ ସୁଧମୂଳ ମିଶାଇ ଶୁଝିଦେବି । ତମେ ନିଶ୍ଚିନ୍ତ ରହ । ନୂଆ ଗ୍ରାଜୁଏଟ୍, ଦରମା ମିଳିବାକୁ ସାମାନ୍ୟ ଡେରି ବି ହୋଇପାରେ । ସେଥିକି ଭାବନା କରିବ ନାହିଁ ।

ଘରୋଇ ଉଧାର । ଗୁପ୍ତ କାରବାର । ଲେଖାପଢ଼ି ନାହିଁ । ମୁହଁର ଜବାବରୁ ଲେଖାପଢ଼ି କଣ ବଡ଼ କଥା ? ନୋଟ୍‌ବୁକ୍‌ରେ ନାମ, ପରିମାଣ ଓ ତାରିଖ ଟିପିରଖିଲେ ଯଥେଷ୍ଟ । ଯେଉଁମାନେ ନିଜର ଅଭାବ ଓ ଅଦକ୍ଷତା ଦେଖାଇ ଦୁଃଖ ପ୍ରକାଶ କଲେ, ତାଙ୍କ ପାଖରେ ଖୀରକେଶରୀ ନିଜେ ସମ୍ବେଦନଶୀଳ ହୋଇପଡ଼ୁଥିଲେ,—ମୁଁ ନିଜେ ଟିକିଏ ଅଭାବରେ ପଡ଼ିଯାଇଛି । ଛୁଟିରେ ଅଛି, ଦରମା ପାଉନାହିଁ । ପିଲାଟାର ନୂଆ ଚାକିରି । ମୋ ପାଖରେ ଥିଲେ ତମର ଅଭାବବେଳେ ମୁଁ ବିନେ ସାହାଯ୍ୟ କରିଥାନ୍ତି । ହଉ, କିଛିମ ଟଙ୍କା ପଠାଉ ।

ଧୂଆଁ ବାଣ ମାରି ଖୀରକେଶରୀ ସୁବିଧାରେ ଚଳିଲେ । କେତେ କେତେ ଟଙ୍କା କାହାଠାରୁ ଉଧାର ଆଣିଲେ, ଅବଶ୍ୟ ସେ ତାର ଟିପା ରଖିଥିଲେ; କିନ୍ତୁ ଗ୍ରାଣ୍ଡ ଟୋଟାଲ୍ କେତେ ହେଲା ତାର ହିସାବ କରିବାକୁ ସେ ପସନ୍ଦ କଲେ ନାହିଁ । ଯେତେବେଳେ ଶୁଝାହେବ ଦେଖାଯିବ ।

ଚନ୍ଦନା ଏ ବେପାରର ଅନ୍ତ ପାଇଲେ ନାହିଁ । ମାମଲତ କରି ସ୍ୱାମୀ ଟଙ୍କା ରୋଜଗାରନ୍ତି । ଅଭାବ ରହୁନାହିଁ । ଛୁଆ ମାଛ ଖାଇ ସୁଖରେ ବେଳ କଟୁଛି । ସେ ମୁଣ୍ଡ ଖେଳାଇବେ କାହିଁକି ? ସବୁ ତ ଠାକୁରାଣୀଙ୍କର ଦୟା ।

କେବଳାନନ୍ଦ ଦିନ ଦୁଇଟା ପାଇଁ ଘରକୁ ଆସିଥିଲା । ସ୍ୱାସ୍ଥ୍ୟ ଭଲ ହୋଇଛି । ଢଙ୍ଗ ବଦଳିଲା ପରି ଲାଗିଲା । ଫଟୋ ଉଠାଇବାରେ ତା ବେଳ କଟିଲା । ନୂଆ କ୍ୟାମେରା ଖଣ୍ଡେ ସେ ଯୋଗାଡ଼ କରିଛି । କେବଳ ମଣିଷ ନୁହେଁ, କୁକୁର, ବିଲେଇ, ମାଙ୍କଡ଼ଙ୍କର ବି ଫଟୋ ଉଠାଇଲା । ସଙ୍ଗରେ

ଏତେ ଫଟୋ ସେ ଆଣିଥିଲା ଯେ, ଯିଏ ଚାହିଁଲା ତାକୁ ସେ ଦେଖାଉଥିଲା । ନିଜେ ଉଠାଇଛି ବୋଲି ପ୍ରଚାର କରୁଥିଲା । ସେ କହୁଥିଲା, ଆଉ ବର୍ଷେ ଦୁଇଟାରେ ସେ ବି ବି. ଏ. ପାସ୍ କରିବ । ସେ ହରିଜନ ପିଲା । ନିଶ୍ଚୟ ବଡ଼ ଚାକିରି ପାଇବ । ଚାକିରି ଜାଣ ତା ପାଇଁ ଥୁଆ ହୋଇଛି ।

ଖାରକେଶରୀ ଓ ଚନ୍ଦନାଙ୍କ ଆଗରେ ସେ ବଢ଼େଇ କରି କହୁଥିଲା, ଦୁଇଜଣ ମନ୍ତ୍ରୀ ଓ ଜଣେ ଉପମନ୍ତ୍ରୀଙ୍କ ସଙ୍ଗେ ତାର ବନ୍ଧୁତା । ସେମାନଙ୍କ ଘରକୁ ତାର ଅବାଧ ଗତି । ଘଡିଅଧରେ ଦରକାର ବେଳେ ସେ ସେମାନଙ୍କର ଧାଁ-ଧପଡ଼ କାମ କରେ । ସେମାନଙ୍କର ସ୍ନେହ ଅର୍ଜନ କରି-ପାରିଛି । ତା' କଥା ସେମାନେ ପାଣିରେ ପକାଇବେ ନାହିଁ ।

ଶୁଣିବ ପିଉସା, ବକଭାଇ ସାଇକେଲ ଚଢ଼ି କଟକରୁ ଯାଇଁ ଭୁବନେଶ୍ୱରରେ ପହଞ୍ଚିଲେ । ଅଖିଆ ଅପିଆ । ଯାହାହେଉ, ଖୋଜି ଖୋଜି ସେ ଆମ ହରିଜନ ମେସ୍ ଠାବ କରିପାରିଲେ । ଭାଗ୍ୟକୁ ମୁଁ କଲେଜରୁ ଫେରିଥାଏଁ । ବସାରେ ଥାଏଁ । ବକଭାଇଙ୍କୁ ଦେଖି ମୁଁ ଚୁନିଆଁ ହେଲି ।

ଚନ୍ଦନା ପଚାରିଲେ, କାହିଁକି ରେ ପୁଅ ?

ଉଡ଼ା ଧୂଳିରେ ଦେହମୁଣ୍ଡ ବୁଡ଼ିଛି । ମୁହଁ ଶୁଖି କଳାକାଠ । ଟଳଟଳ ହେଉଛନ୍ତି । ତାଙ୍କୁ ମୁଁ କୁଣ୍ଢାଇ ଧରିଲି । ମୋ କୋଠରିକି ନେଲି ।

ଦେହ ଭଲ ଅଛି ତ ?

ତୁ କାନ୍ଦୁଛୁ କାହିଁକି ? ଦେହ ଖୁବ୍ ଭଲ ଅଛି । ଫୁଲନଖରା ପାଖରେ ତାଙ୍କ ଆଗରେ ଦୁଇଟା ଟାକ୍ସି ଲଢ଼େଇ ହୋଇଗଲା । ମୁହାଁମୁହିଁ । ପାସେଞ୍ଜରଗୁଡ଼ାକ ଲହୁଲୁହାଣ ହେଲେ । ଭାଗ୍ୟ ଭଲ, କେହି ମରିନାହାନ୍ତି । ତେବେ ଅନେକଙ୍କ ଅବସ୍ଥା ସାଂଘାତିକ ହୋଇଥିଲା । ସେହି ଦୃଶ୍ୟ ଦେଖି ବକଭାଇ ବ୍ୟାକୁଳ ହୋଇପଡ଼ିଥିଲେ । ରାତି ପାହିଲେ ତାଙ୍କର ଚାକିରି ପାଇଁ ଇଣ୍ଟରଭ୍ୟୁ ।

ଖାରକେଶରୀ ପଚାରିଲେ, କଅଣ ହେଲା ?

ଶୁକର ତ ହେଲା, ପିଉସା ! ନ ହୋଇ ଯିବ କୁଆଡ଼େ ? ବକ-ଭାଇଙ୍କୁ ନେଇ ରାତିରେ ମୁଁ ମନ୍ତ୍ରୀଙ୍କ କୋଠିକୁ ଯାଇଥିଲି । ଦୁହେଁ ଆମେ ତାଙ୍କର ପାଦ ଛୁଇଁ ପ୍ରଣାମ କଲୁଁ । କହିଲି, ମୋ ଭାଇଙ୍କୁ ଶୁକର ଦେବାକୁ ହେବ । ସବୁ ଶୁଣିଲେ । ସଙ୍ଗେ ସଙ୍ଗେ ଟେଲିଫୋନ୍ ଉଠାଇଲେ ।

ବୀରକେଶରୀ କହିଲେ, ବାଃ, ସାବାଇସ୍ ! ବୁଝିଲ ଚନ୍ଦନା, ପୁଅ ହେବ ଆମର କେବଳାନନ୍ଦ ପରି । ସବୁ କାମରେ ପାରଙ୍ଗମ । ମୁଁ କହୁଛି, ଦେଖିବ ରହ, ଆମ କେବଳାନନ୍ଦ ଖାଲି ପାସ୍ କରିପକାଉ, ନିଶ୍ଚୟ ଡେପୋଟି ହେବ । ତମେ ତ ଜାଣ, ତାର ନାମ ମୁଁ ଦେଇଛି ?

ସ୍ତା ଜାଣିନାହିଁ ?

ଆଚ୍ଛା, ବଙ୍କମ ରହୁଛି କେଉଁଠି ?

ମୋ ପାଖରେ ଆମ ମେସ୍‌ରେ ପନ୍ଦର ଦିନ ରହିଲେ । ସେଇଠୁ ଆଉ ଗୋଟିଏ ମେସ୍‌କୁ ଗଲେ । ବକଭାଇଙ୍କୁ ମିଶାଇ ତିନିଜଣ ବାବୁ ସେଠି ରହନ୍ତି ।

କେବଳାନନ୍ଦ ପାଖରୁ ବଙ୍କମର ବସା ଠିକଣା ବୀରକେଶରୀ ବୁଝି-ଥିଲେ । ଲେଖି ରଖିଲେ ।

ବଙ୍କମ ଟଙ୍କା ପଠାଇନି ନାହିଁ । ଥରେ ହେଲେ ଗ୍ରାମକୁ ଆସି ହାଲଚାଲ ବୁଝିନି ନାହିଁ । ଟଙ୍କାଗୁଡ଼ାକ ଅବ୍ୟାଜରେ ଖରଚ କରିଦେଉଛି ! ଘରେ ବାପ ମା କପରି ଚଳୁଛନ୍ତି ତାକୁ ଅଜଣା ନାହିଁ । ତାର ମାମୁଁ ଆନନ୍ଦଚନ୍ଦ୍ରଙ୍କ ଘରକୁ ଅବଶ୍ୟ ସେ ଆସୁଥିବ, ଅବା ପତ୍ର ଲେଖୁଥିବ । ଥରେ ଯାଇ ବୁଝିଆସିଲେ ଜଣାପଡ଼ିବ । ତାର ମାମୁଁମାଇଁଙ୍କ ସଙ୍ଗେ ଆହୁରି ଗୋଟିଏ ଗୁରୁତର ବିଷୟରେ ପରାମର୍ଶ ବି କରିବାକୁ ହେବ ।

ବୀରକେଶରୀ ଏହିପରି ଚିନ୍ତା କରୁଥିଲେ । ସେ ପୁଣି ଭାବୁଥିଲେ, ଦେବନାଥ ତାଙ୍କ ଗ୍ରାମରୁ ପତ୍ର ଦେଇଛନ୍ତି । ସେ ଜଣାଇଛନ୍ତି ଯେ, ସେ

ଉପର ସ୍ତରରେ ଲଢ଼େଇ କଲେ । ତାଙ୍କର ସ୍ଥାନୀୟ ମେମ୍ବରଙ୍କୁ ଆପ୍ୟାୟିତ କଲେ । ସେହି ଶକ୍ତିମାନ୍ ପୁରୁଷଙ୍କ ସୁପାରିସ୍ ଓ ଚେଷ୍ଟାରେ ତାଙ୍କୁ ଦିଆ-ହୋଇଥିବା ଅନ୍ୟାୟ ଆଦେଶକୁ ଦେବନାଥ ଟଳାଇଦେଲେ । ଚାକିରି କରିବାରେ ତାଙ୍କର ବାଧା ରହିବ ନାହିଁ । ଏ ଆଦେଶ ସେ ହସ୍ତଗତ କରିଛନ୍ତି । ପୁଣି ସେ କୋରାପୁଟ ସେଟଲମେଣ୍ଟରେ, ଅମିନ ନୁହେଁ, ତାଙ୍କର ଦକ୍ଷତା ଓ ସିନିଆରିଟି ପାଇଁ ଇନ୍‌ସ୍‌ପେକ୍ଟରର ଚାକିରି ପାଇ-ସାରିଛନ୍ତି । ପନ୍ଦର କୋଡ଼ିଏ ଦିନ ମଧ୍ୟରେ ସେ ଏକା ଜୟପୁର ଯାତ୍ରା କରିବେ ।

ସେ ଲେଖିଛନ୍ତି—ଆପଣଙ୍କ ପରି ସାଧୁ, ସତ୍ୟବାନ୍ ଓ ସ୍ନେହଶୀଳ ଧନ୍ୟଧନ୍ୟ ବ୍ୟକ୍ତିଙ୍କର ଜବାବ୍ ପଥରର ଗାର । ଆପଣଙ୍କ ପତ୍ରରୁ ବୁଝିଲି, ବିକ୍ରମ ସରକାରୀ ଚାକିରିରେ ଯୋଗ ଦେଲେଣି । ଆଉ ଡେରି କରିବା ଉଚିତ ନୁହେଁ । ଜାତକ ଶୁଝିଛି । ଉଲ୍ଲୁପୀର ରୂପଗୁଣ ଦେଖି ଆପଣ ସନ୍ତୁଷ୍ଟ ହୋଇଛନ୍ତି ।

—ଝିଅ ଦେଇ ମୁଁ ପୁଅ ପାଇବି । ଦେବାନେବାରେ କୁଣ୍ଠିତ ହେବି-ନାହିଁ । ଆପଣଙ୍କ ସମ୍ଭୁଦୁଣୀ ସ୍ୱର୍ଗୀୟା ତାଙ୍କ ନାମରେ ଥିବା ସମ୍ପତ୍ତିରୁ ଦୁଇମାଣ ଜମି ଉଲୁପୀ ନାମରେ ରେଜେଷ୍ଟ୍ରି କରିଦେବାକୁ ରାଜି ଅଛନ୍ତି । ମୋ ସମ୍ଭୁଦୁଣୀ ଯଦି ଚାହିଁବେ, ଜମି ଦୁ'ମାଣ ଉଲୁପୀ ନାମରେ ରେଜେଷ୍ଟ୍ରି ନ କରି ବିକ୍ରମ ନାମରେ ଦାନପତ୍ର କରାହେବ । ଆପଣ ଚାହିଁଲେ ସେ ଜମି ଏଠାରୁ ବିକିରି କରି ଘର ପାଖରେ କିଣିନେବେ ।

—ଫଗୁଣ ମାସରେ ଅନେକ ତିଥି ଅଛି । ସ୍ୱର୍ଗୀୟାଙ୍କର ଇଚ୍ଛା, ସେଥି-ମଧ୍ୟରୁ ଯେଉଁ ତିଥିରେ ଆପଣଙ୍କର ସୁବିଧା, ସେହି ତିଥିରେ ବାହାଘର ହେବ । ଆମେ ସେଥିରେ ସମ୍ମତ । ଆଉ କିଛି ଅସୁବିଧା ଥିଲେ ଆପଣ ମୋତେ ଶୀଘ୍ର ଜଣାଇବେ । ମୁଁ ପ୍ରସ୍ତୁତ । ଛୁଟି କେବେ ସରିବ ? କେବେ ଜୟପୁର ଯିବେ ?

ଦେବନାଥବାବୁ ଜଲ୍‌ପାଇର ଗ୍ରେଟ ଫଟୋ ଖଣ୍ଡିଏ ପଠାଇଥିଲେ । ଚନ୍ଦନା ଫଟୋକୁ ନିରେଖି କହିଲେ, ଧନଦରବରୁ ମତେ କି ମିଳିବ ଗୋ, ମୁଁ ଏଇଆକୁ ବୋହୂ କରିବ । କେଡ଼େ ସୁନ୍ଦର କୁଲୁକୁଲିଆ ମୁହଁଟି ! ଦେଖ ତା ଭ୍ରୂଲତା, ଆଖି, ନାକ ଓ ଓଠକୁ । ଲଜଲଜ ଠାଣି । ମୋ ଆଖିକୁ ଲକ୍ଷ୍ମୀଠାକୁରାଣୀ ପରି ଦିଶୁଛି ।

ଖାରବେଳସିଂ ଖୁସି ହେଲେ । ଭାବିଲେ, ଆନନ୍ଦ ଓ ଇନ୍ଦିରା ନିଶ୍ଚୟ ପସନ୍ଦ କରିବେ । ବିଷମ ବଳେଇଯିବ ନାହିଁ । ଦେବନାଥଙ୍କୁ ଆଗ ପକ୍‌କା ଜବାବ ଦେଇ ନିଜର ଆର୍ଥିକ ଅସୁବିଧା କଥା ଜଣାଇବେ । ବାହାଖର୍ଚ୍ଚ ବାବଦକୁ ସେ ଆଗରୁ ପାଞ୍ଚଶ ଦେଇସାରିଛନ୍ତି । ଆଉ ପାଞ୍ଚଶ ମାଗିଲେ ସେ କୁଣ୍ଠିତ ହେବେ ନାହିଁ । ତା ସାଙ୍ଗକୁ ଦୁଇମାଣ ଅସଲ ଜମି । ଅନ୍ତତଃ ପାଞ୍ଚ ହଜାର ଟଙ୍କାର ସମ୍ପତ୍ତି ।

ଆନନ୍ଦଙ୍କର ବାସଭବନରେ ଖାରବେଳସିଂ ସୁସ୍ଥରେ ଅଛନ୍ତି । ତାଙ୍କର ରହଣି ଖଞ୍ଜା ବାହାରେ ଦାଣ୍ଡ କୋଠାର ସେହି କୋଠରିରେ, ଯେଉଁଠି ଦିନେ ବିଷମ ମଶାବଣରେ ଦିଓଟି ରାତି ଛଟପଟ ହୋଇ କଟାଇଥିଲେ । ନିଜର ସୁବିଧା ନିଜେ କରାଇପାରିଲେ ନାହିଁ । ବୁଦ୍ଧିମାନ ଖାରବେଳସିଂଙ୍କୁ ହେଳା କରିବା କାହାରି ପକ୍ଷରେ ସମ୍ଭବ ନୁହେଁ । ତାଙ୍କର ଚଳଣରେ ଓ ବଚନରେ ଜମିଆ ଅଛି । ଆପେ ଆପେ ତାଙ୍କର ସବୁ ସୁବିଧା ହୋଇଯାଏ ।

ଆସବାବପତ୍ର ସଜଡ଼ା ହେଲା । ତକ୍ତପୋଷ ଉପରେ ଶେଯ ଓ ପରିଷ୍କାର ବିଛଣା ଚଦର ପରାହେଲା । ମଶାରି ଟଙ୍ଗାହେଲା । କାଚ ଜାର୍‌ରେ ପାଣି ଓ କାଚ ଗ୍ଲାସ, ଟେବୁଲ ଉପରେ ରଖା ହେଲା । ମାଲିକଙ୍କର ବଡ଼ ଭଣେଇ ! ପିଲାଗୁଡ଼ିକ ସେମାନଙ୍କ ପିଉସାଙ୍କ ପାଖରେ କାରବାର । ହସଖୁସିରେ, ବିନାସଙ୍କୋଚରେ ଗପସପ । ଚାକର ଓ ମୂଲିଆମାନେ ଆଜ୍ଞାକୁ ଅବଧାନ ।

ନ ହେବେ କେମିତ ? ନଜେ ଗୃହକର୍ତ୍ରୀ ଇନ୍ଦିରା ଖାରକେଶଗ୍ଙ୍କ ପାଖକୁ ଆସି ଚକ୍ରପୋଷ ଉପରେ ବସୁଛନ୍ତି । ହସିହସି କଥାଭାଷା ହେଉଛନ୍ତି । ଆନନ୍ଦ ଥରେ ଦୁଇଥର ଆସି କଥାଭାଷା ହୋଇଥିଲେ । କୋଉପୃଷ୍ଠ ଅରଣ୍ୟର ବଣୁଆ ମଣିଷ, ବାଘଭାଲୁ, ମୟୂର, ସାପ, ବର୍ଷା, କୁହୁଡ଼ି, ଶିକାରଗପ ଶୁଣିବାକୁ ସାନନ୍ଦ ଓ ସୁରୂପା ତାଙ୍କର ପାଖ ଛାଡ଼ୁନାହାନ୍ତି । ନରୁପା ଓ ଅନୂପା ବ ପାଖକୁ ଆସି ବସୁଛନ୍ତି ।

ପରକୁ ଆପଣାର କରିବାର ବାଗ ଖାରକେଶଗ୍ଙ୍କୁ ଜଣା । ଆଗ ସେ ମଣିଷର ପ୍ରକୃତ ଠଉରାଇନଅନ୍ତି । ତା'ର ଚନ୍ତାଧାରା, କର୍ମ ଓ ଚଳଣକୁ ସୁହାଇଲା ପରି କଥା କହି ତାକୁ ସେ ବାହାବା କରନ୍ତି । ପସନ୍ଦ କରନ୍ତି ।

ଆନନ୍ଦଙ୍କର ବ୍ୟସ୍ତତାରେ ସହାନୁଭୂତି ଦେଖାଇ ସେ ଶୁଣାଇ ଶୁଣାଇ ସ୍ୱଗତୋକ୍ତି କଲେ—ମଣିଷ ମୁଣ୍ଡ ଖେଳାଇ ଫନ୍ଦିଫିକର କରି ଆପଦ ବିପଦ ମୁଣ୍ଡାଇ ଯାହା ରୋଜଗାର କଲା, ସେଥିରୁ ସରକାର ଆୟକର, ବିକ୍ରିକର ଜବରଦସ୍ତ ନେବ କାହିଁକି ? ଓକିଲ ଡାକ୍ତରଙ୍କଠାରୁ କେଉଁ ଗୁଣରେ ସେମାନେ କମ୍ ? ମଣିଷ ଲୋକ ଉପାସରେ ପଡ଼ିଲାବେଳେ ସରକାର କଣ ତା ଘରେ ଆଣି ଅଜାଡ଼ି ଦେଇଯାଉଛନ୍ତି ?

—ନିଜର ବୁଦ୍ଧିବଳରେ ଯେ ଦୁଇ ପଇସା ଅର୍ଜନ କଲା, ତାକୁ କହିଲେ କଳାବଜାରି, ଲାଞ୍ଚଖୋର । ମୁଁ କହୁଛି, ଯାହାର ଦରକାର, ଯାହା ପାଖରେ ଧନ ଅଛି, ସେ ପାଞ୍ଚ ଜାଗାରେ ଦଶ ଥୋଇ ମାଲ୍ ଉଠାଇଲା । ଏଥିରେ କଳାବଜାର ଧଳାବଜାର କଣ ? ଜଣକର କାମ ନ କଲେ ସେ ଦୁଇପଇସା ଦେବ କାହିଁକି ? ମନଖୁସିରେ ସେ ଦେଲା । ତାକୁ କାହିଁକି ଲାଞ୍ଚ କହିବ ? ଅତି ଅନ୍ୟାୟ । ଅନ୍ୟାୟ ବିରୁଦ୍ଧରେ କୋର୍ଟ କଚେରୀରେ ନିଶ୍ଚୟ ଲଢ଼ିବାକୁ ପଡ଼ିବ । ମୁଁ ହୋଇଥିଲେ ବ୍ରହ୍ମାସ୍ତ୍ର ପେଷନ୍ତି, ଆନନ୍ଦ ! ସେମାନଙ୍କର ଆସନ ଟଳାଇଦିଅନ୍ତି । ଆମରଣ ଅନଶନ ।

ଝିଅମାନଙ୍କୁ ଲକ୍ଷ୍ମୀ, ସରସ୍ୱତୀ ଓ ପାର୍ବତୀଙ୍କ ସଙ୍ଗେ ତୁଳନା କରନ୍ତୁ । ସେମାନଙ୍କର ରୂପ, ଗୁଣ, ବେଶଭୂଷା ଓ ସ୍ୱାଧୀନ ଚଳନକୁ ସେ ପ୍ରଶଂସା କରନ୍ତି । କହନ୍ତି, ସେମାନେ ଘରକୋଣରେ ଲୁଚି ରହିବାର ଝିଅବୋହୂ ନ ଥିଲେ । ସାରା ସଂସାରକୁ ମନ ହେଲେ ବୁଲିଆସୁଥିଲେ, ଅନୁ ! ମନ ଦୃଢ଼ ଥିଲେ, ଆମର ସୀତା ସାବିତ୍ରୀଙ୍କର ଆଦର୍ଶକୁ ମନରେ ସଜାଗ ରଖି-ଥିଲେ, ଦେହରେ ଓ ମନରେ କଳଙ୍କ ଲାଗିବ ନାହିଁ । ଯୁଗ ବଦଳିଛି । ସମସ୍ତେ ଅଳ୍ପ ବହୁତେ ନିଶ୍ଚୟ ବଦଳୁଛନ୍ତି । ଯୁଗକୁ ଦେଖି ଆମର ଓ ବ୍ୟବହାର ।

ଇନ୍ଦିରଙ୍କୁ ତ ଆହୁରି ଅଧିକ ପ୍ରଶଂସା । ତମର କାନ୍ଧରେ ଲକ୍ଷ୍ମୀ ବିଜେ କରିଛନ୍ତି । କାହୁଁ କାହୁଁ ଆସି ଧନ ଏ ଘରେ ଅଜାଡ଼ି ହୋଇପଡ଼ିବ । ତମର କଣ କପୂର ବଢ଼ିବ ନାହିଁ ? ତମେ ନୂଆବୋହୂ ହୋଇ ଆସିଲା-ବେଳେ ତମକୁ ଯେମିତି ଦେଖିଥିଲି, ତା'ଠୁ ଅଧିକ ଦେଖୁଛି । ସେତେବେଳେ ନିପଟ ମୋଫସଲିଆଣୀ ଥିଲ, ଏବେ ତ ଏ ଯୁଗ ସଙ୍ଗେ ନିଜକୁ ମିଶାଇ ଦେଇଛ ! ସେଇଆ ଲୋଡ଼ା । ଆମ ଦେଶର ମାଇପେ ଏବେ କାହିଁ କେଉଁଠି ଉଠିଲେଣି । ଶୁଣିଲେ ଖୁସି ଲାଗେ, ଇନ୍ଦିର !

ବୀରକେଶରୀଙ୍କର ପ୍ରଶଂସାବାଣୀ ବେଳେବେଳେ ଅଧିକ ହୋଇ-ପଡ଼େ । ଇନ୍ଦିର ବୁଝନ୍ତି । ମନରେ ଯାହା ଥାଉ, ସେ ଖୁସାମୋଦ କରି ମନ କିଣିବାକୁ ବ୍ୟଗ୍ର । ଆସିଛନ୍ତି, ଦୁଇ ଦିନ ରହି ଫେରିଯିବେ । ନିଜର ଓ ଚନ୍ଦନାଙ୍କର ଦେହର ହାଲ ଏବଂ ଦାରିଦ୍ର୍ୟ ଅବସ୍ଥାର ଯେଉଁ ବର୍ଣ୍ଣନା ସେ କଥାଛଳରେ କରିଛନ୍ତି, ସାହାଯ୍ୟ ନ ମାଗି, ସାହାଯ୍ୟ ପାଇବାକୁ ସେ ଆଶା କରି ବସିଛନ୍ତି । ନେବେ ତ ନେବେ ଦଶ ପଚିଶ ଟଙ୍କା । ଫେରିଯିବାର ନାମ ଧରୁନାହାନ୍ତି କାହିଁକି ? ଆସନ ଜମାଇ କେତେ ଦିନ ଆଉ ବସିବେ ?

ଶୁକ୍ରବାର କହିବାର ଦୁଇମାସ ପରେ ଗୋଟିଏ ରବିବାର ସକାଳେ ବସନ୍ତ ପ୍ରଥମ ଥର ଆସିଥିଲା । ସଞ୍ଜ ଆଗରୁ ସେ ଫେରିଯାଇଥିଲା । ସେତେ ଅଟକାଇଲେ ସେ ରାତିରେ ରହି ନ ଥିଲା । ବିନମ୍ର ହୋଇ କହିଥିଲା ଯେ, ସୋମବାର ସକାଳେ ତାର ଅଫିସ କାମ ।

ଆହୁରି ମାସେ କଟିଗଲାଣି । ଏ ମଧ୍ୟରେ କ'ଣ ଛୁଟି ପଡ଼ିଥିଲା ଯେ ସେ ଦୁଇଥର ଆସି ବି ବି ଦିନ ରହି ଫେରିଗଲାଣି ।

ଖାଲି ହାତରେ ସେ କେବେ ଆସେ ନାହିଁ । ସବୁ ପିଲାଙ୍କ ପାଇଁ ଏଣୁତେଣୁ ଜିନଷ କିଣିଆଣିଥାଏ । ଇନ୍ଦିରା ବ୍ୟସ୍ତ ହୋଇ ପ୍ରତିବାଦ କଲେ ସେ କହେ, କଅଣ ବା ମୁଁ ଆଣିଛି ? ମୋ ଭାଇ ଭଉଣୀମାନଙ୍କୁ ମୁଁ ଯାହା ଦେଲି ସେଥିରେ ତମର କ ଥାଏ, ମାଇଁ ?

ପିଲାମାନେ ତାର ଆସିଲା ବାଟକୁ ଅନାଇଁ ରହିଥାନ୍ତି । ସୁରୂପା ପଚାରୁଥିଲା, ବସନ୍ତଭାଇ ଆସୁନାହାନ୍ତି କାହିଁକି ? ସାନନ୍ଦ କହୁଥିଲା, ତା'ର କଳ ମଟରଗାଡ଼ି ଭାଙ୍ଗିଲେ ଭାଙ୍ଗୁ, ବସନ୍ତଭାଇ ଆସିଲେ ଉଡ଼ାଜାହାଜ କିଣି-ଦେବେ ।

ବସନ୍ତ ପୁଣି ଘରପିଲାଙ୍କଠାରୁ ବଳିଲାଣି । ଅନୁପା, ନିରୂପା ତାକୁ ସଙ୍ଗରେ ନେଇ ବଜାରସଉଦା କରିବାକୁ ଯାଇଥିଲେ ।

ଗତ ଥର ଆସି ଦୁଇ ଦିନ କାଳ ସେ ତା'ର ମାମୁଁଙ୍କର କାମରେ ଦଉଡ଼ ଧାପଡ଼ କରିଥିଲା । ଖିଆପିଆ ଭୁଲି ତାଙ୍କର ରୋଗଶଯ୍ୟା ପାଖରେ ରାତିସାରା ଜଗିବସିଥିଲା । କଅଣ ବା ରୋଗ ? ସାମାନ୍ୟ ଟିକିଏ ଜର, ମୁଣ୍ଡବ୍ୟଥା, ପେଟର ବେଦନା ।

ପିଲା ପରି ପିଲା ଖଣ୍ଡେ ତ ବସନ୍ତ ! ସ୍ୱାସ୍ଥ୍ୟ ବଦଳିଛି । ଭଦ୍ରଘରର ପିଲାଙ୍କ ପରି ପୋଷାକପତ୍ର କରିଛି । ପରିଷ୍କାର ପରିଚ୍ଛନ୍ନ । ପୂର୍ବପରି ଧୀର ସ୍ଥିର ଅଖିଳା ମଣିଷ । ଅଳ୍ପଭାଷୀ । ସଂଯତ ବ୍ୟବହାର । ହାତେ ମାପି ସ୍ୱଖଣ୍ଡରେ ସ୍ୱଳେ ।

ନିଜର ବ୍ୟବହାରରେ ଆପଣାର ଗୌରବ ସେ ଫେରିପାଇଛି । ସମସ୍ତଙ୍କର ସ୍ନେହ ବି ।

ଇନ୍ଦିରା ଗୁପ୍ତରେ ପଚାରିଥିଲେ, ବଡ ଅଡୁଆରେ ମୁଁ ପଡ଼ିଛି ରେ ବିକ ! ହଁ କହିପାରୁନାହିଁ, ନା ନାହିଁ କରିପାରୁନାହିଁ । ତମର ମାମୁଁ କହୁଛନ୍ତି, ପିଲାଯାକରେ ବାଉରିଆ ସାର । ତାର ବେପାର ବୁଦ୍ଧି ଏତେ ତୀକ୍ଷ୍ଣ ଯେ, ନିଜେ ତମ ମାମୁଁ ଓ ହାଡ଼ବନ୍ଧୁ ତାଜୁବ୍ ହୁଅନ୍ତି । ସେ କହନ୍ତି, ତା' କଥା ମାନିଥିଲେ ଅମୁକର ବଳିକର ମକଦ୍ଦମାରେ ଏତେ ଦହଗଞ୍ଜ ହେବାକୁ ପଡ଼ି ନ ଥାନ୍ତା । ତମ ମାମୁଁ ରାଜି ହେଲେଣି । ଫଗୁଣ ମାସରେ ନିମିଚ୍ୟ କରିବା ।

ଅସୁବିଧା କ'ଣ, ମାଈଁ ?

ବାଉରିଆଟା ଘର ମୋଟା ହୋଇଯାଇଛି ।

ବିକ୍ରମ ସାମାନ୍ୟ ହସିଲା ।

ହସୁଛ କାହିଁକି ? ହଁ, ବାହାପାଣି ପଡ଼ିଲେ ଧଡ଼ିଆ ପିଲା ବି ଫାପସା ମୋଟା ହୋଇଯାଆନ୍ତି । ମୁଁ ମାନୁଛି । ବାଉରିଆକୁ ଜୋଇଁ ନ କରି ଆଉ କାହାକୁ ଜୋଇଁ କଲେ ସେ ଯଦି ସେପରି ହୁଏ, ଝିଅକୁ ତ ଫେରାଇ ଆଣିହେବ ନାହିଁ ? ତମେର ମାମୁଁ ଏବେ କଣ ବାଉରିଆଠାରୁ ଊଣା ?

ବିକ୍ରମ ଲାଜରେ ଆଖି ନୋଇଁଥିଲା । ନିଜ କଥାରେ ଇନ୍ଦିରା ନିଜେ ହସି ହସି ନସ୍ୟାନ୍ତ ହୋଇଥିଲେ । ସେ ନିଜେ ଅନୁଭବ କରୁଥିଲେ ଯେ, ତାଙ୍କର ସାରା ଶରୀରରେ ବହଳ ମାଂସ ଓ ଚର୍ବି ଲାଗିଛି । ବିକ୍ରମଟା କୋଡ଼ିଏ ଏକୋଇଶ ବର୍ଷ ତଳର ଆନନ୍ଦଚନ୍ଦ୍ରଙ୍କ ପରି ଦିଶୁଛି । ଆହୁରି ଗୋରା, ଆହୁରି ବଳୁଆ, ଛନଛନିଆ ।

ବିହ୍ୱଳ ହୋଇ ଘୋର ଅନୁରାଗରେ ନିଜକୁ ଭୁଲି ସେହି ବୈଠକ-ଘରର କଅଁଳ ସୋଫା ଉପରେ ପାଖରେ ଅଳପ ଘୁଞ୍ଚି ବସିଥିବା ବିକ୍ରମର ଚିକ୍କଣ ଗାଲରେ ଇନ୍ଦିରା ସରୁ ଚୁମୁଡ଼ା ମାରୁଣ୍ଡ ଆଉଁସିଦେଲେ । ଭାବ-ବିହ୍ୱଳତା ମନରୁ ଝଡ଼ିପଡ଼ିବାରୁ ଲାଜରେ ମୁହଁ ରଙ୍ଗ କରି କହିଲେ, ତମ

ମାମୁଁଙ୍କୁ ଖୁଣିଲି ବୋଲି ଅସ୍ୱସ୍ତି ମଣିଲ କି ? ମୋ କଥା ମୁଁ ଫେରାଇନେଉଛି । ବାଉରିଆ ମୋଟା ହେଉ, ଚିନ୍ତା ନାହିଁ; କିନ୍ତୁ ବେଳେବେଳେ ସେ ବେଶି ପିଇଦେଉଛି ।

ବିଜୟ କହିଲା, ବଡ଼ଲୋକମାନଙ୍କର ସେଇଟା ସଉକ, ମାଈଁ ! ଅଳପ ଖାଉଣୁ କେବେ କେମିତି ଅଧିକ ହୋଇଯାଉଥିବ । ଭୁବନେଶ୍ୱରରେ ମୁଁ ଶୁଣିଲି, ବଡ଼ବଡ଼ଆଙ୍କଠାରୁ ଛୋଟଛୋଟିଆଙ୍କ ଯାଏ ସଉକରେ ବେଳେ-ବେଳ ପିଇଦିଅନ୍ତି । ଏଣେ ମହାତ୍ମାଗାନ୍ଧିଙ୍କର ମତ ଅନୁସରଣ କରିବାକୁ ଲମ୍ବା ଲମ୍ବା ଲେକ୍‌ଚର ଦିଅନ୍ତି । ଆମ ହାକିମ ବିକାଶବାବୁ ତାଙ୍କ କ୍ଲବରେ ଦିନେ ଏତେ ପିଇଦେଲେ ଯେ—

ବିକାଶ ମଦ ଖାଏ ?

କେବେ କେମିତି ଚାଖିଦିଅନ୍ତି । ଅଞ୍ଜନା ମତେ ସେଦିନ ରାତିରେ କୈଫିୟତ୍ ଦେଲା ପରି କହୁଥିଲେ; ମାଈଁ ! ସେ ମୋତେ ଭାଇଲେଖା କରନ୍ତି । ଆମ ଅନୁପାର ଗୋଲାପ, ସେହି ହିସାବରେ ବିକାଶବାବୁ ମତେ ଶ୍ରଦ୍ଧା ବି କରନ୍ତି । ମୋର ଭଉଣୀ ହିସାବରେ । ମୋ ଚାକିରିରେ ଯୋଗ ଦେଲା ପରେ କୃତଜ୍ଞତା ଜଣାଇବାକୁ ଯେଉଁଦିନ ଯାଇଥିଲି, ଅଞ୍ଜନା ଆଗ ବଳିପଡ଼ି ମୋତେ ନମସ୍କାର କଲେ । ବିକାଶବାବୁ ମୋତେ ପାଖରେ ବସାଇ ପଚାରିଲେ—

ଇନ୍ଦିରା ବିଜୟର ବାକ୍ୟର ଶେଷ ଅଂଶ ଶୁଣିବାକୁ ଅପେକ୍ଷା ନ କରି ପଚାରିଲେ, ବାଉରି ସମ୍ବନ୍ଧରେ ପକ୍‌କା ଜବାବ୍ ଦେବାକୁ ମତେ କହୁଛ ?

ଅନୁପା ଛୋଟ ପିଲା ନୁହେଁ, ମାଈଁ !

ସେ ବାହା ହେବାକୁ ମନା କରିଦେଉଛି । କହୁଛି, ଅଧିକ ପାଠ ପଢ଼ିବ । ମୁଁ ଦେଖୁଛି, ପାଠ ପ୍ରତି ତା'ର ଆଗ୍ରହ ବିଶେଷ ନାହିଁ । କ'ଣ କହିବ ଏବକାର ପିଲାଙ୍କର ଢଙ୍ଗ ? ଦିନାକେତେ ଆମିଷ ଛାଡ଼ିଲା । ଭଲ ଲୁଗା ଭଲ ଜାମା ପିନ୍ଧିଲା ନାହିଁ । ଦେହରେ ଗହଣା ନାଇଲା ନାହିଁ । ମୁଣ୍ଡ ବାନ୍ଧିଲା ନାହିଁ । ସିନେମା ଥିଏଟର ଦେଖିବାକୁ ଗଲା ନାହିଁ । ଧୀରେ ଧୀରେ ପୁଣି

ତାର ସେ ଢଙ୍ଗ ବଦଳିଗଲା । ବାଇଆଣୀଟାଏ । ତାକୁ କିଏ ବୁଝାଇ ମଙ୍ଗାଇବ ? ହଁ, ବୁଝାଇ ପାରିଥାଆନ୍ତେ ମୋତିମାଳା ମାଈଁ । ଚାରିମାସ ତଳେ ସେ ସ୍ୱର୍ଗପୁରକୁ ଚାଲିଗଲେ । ଇତନେ ଲେଖିଥିଲେ ।

ଶୁଣିଛୁ । ଭାରି ସ୍ନେହୀ ଥିଲେ ।

ସଞ୍ଜୟଟି ଭଲପିଲା ନୁହେଁ ?

ସୁନ୍ଦର ରୂପ, ସ୍ୱାସ୍ଥ୍ୟ । ଭଦ୍ର । ପରୋପକାରୀ ।

ତାର ସବୁଗୁଣ ଭଲ । ଟିକିଏ ଖର୍ଚ୍ଚୀ । କହୁଥିଲା, ସେ ନିଶ୍ଚୟ ଡେପୋଟି ହେବ । ତାର ମା ଭଲ । ମୋ ମନକୁ ପାଇଛି । ତମର ମତ କ'ଣ ?

କଥା ରହିଛି ଅନୁପାର ମତାମତ ଉପରେ, ମାଈଁ !

ଅସଲ ବିପଦ ତମର ମାମୁଁ । ସେ ବାଉରିଆକୁ ବେଶି ପସନ୍ଦ କରିବେ । ମୋର ଧାରଣା, ସଞ୍ଜୟ ଅନୁପାକୁ ସ୍ନେହ କରେ । ଅନୁପା ବି—

ଆଉ ଯାହା କହିବାକୁ ଯାଉଥିଲେ ଇନ୍ଦିରା, କହିପାରିଲେ ନାହିଁ । ସେ ଅନୁଭବ କଲେ, ବସନ୍ତର ସୁନ୍ଦର ପ୍ରଫୁଲ୍ଲ ମୁହଁରେ କେଉଁ ଅବ୍ୟକ୍ତ ଯନ୍ତ୍ରଣାର ପାଣ୍ଡୁରିମା ଫୋଟିଗଲା । ଚଳନ୍ତା ବଉଦ ପରି ସେ ଭାବ କ୍ଷଣକରେ ଭାସିଗଲା । ବସନ୍ତର ମୁଖମଣ୍ଡଳ ପୁଣି ହେଲା ସ୍ୱାଭାବିକ ।

ଇନ୍ଦିରା କଥାନିଝରରେ ନିଜକୁ ଭସାଇ ଦେଉଥିଲେ । ଭାବ-ବିହ୍ୱଳତାରେ ଅନ୍ୟମନସ୍କ ନାଉରି ସ୍ରୋତ ମଝିରେ ମୁଣ୍ଡ ଟେକିଥିବା ଜଣା ପଥରକୁ ପାଖରେ ଦେଖି ସହସା ଚମକି ସଚେତନ ହେଲା ପରି ଇନ୍ଦିରା ବସନ୍ତର ବଦଳାଭାବ ଦେଖି ସଚେତନ ହେଲେ । କିଏ ଜାଣେ କିଏ କଅଣ, ମଣିଷ ମାତ୍ରେ ଚିତ୍ରପ୍ରତିମା ପ୍ରାୟ ସୁନ୍ଦର ଦିଶନ୍ତି । କେବଳ ଦେହକୁ ନୁହେଁ, ମନକୁ ଚିରିଲେ କି ନାରଖାର ଦିଶେ !

ବସନ୍ତର ଢଙ୍ଗ ବଦଳିଛି ; କିନ୍ତୁ କିଏ ଜାଣେ ତାର ପରିବର୍ତ୍ତନ ପ୍ରକୃତରେ ଢଙ୍ଗରେ, ଅବା ବାହାରର ରଙ୍ଗରେ । ତାର ଚଳନରେ ଆଜି ସେ ଅସହଜ ଭାବ ଦେଖିନାହାନ୍ତି । ବରୁ ସ୍ନେହର ଜହାଡ଼ରେ ଆଜି କ'ଣ

ଛପିଥାଇପାରେ । ନିଜ ଘରର ଅନ୍ତ ଗୋପନୀୟ କଥା ତା ଆଗରେ ପ୍ରକାଶ କରି ସେ ଭୁଲ କରିନାହାନ୍ତି ତ ?

ସେତିକି ହେଲା ସେତିକି । ସେକଥା ତାଙ୍କ ଆଁରେଇ ଏଣୁତେଣୁ ପଶୁର କାମର ବାହାନାରେ ସେ ଉଠିଯାଇଥିଲେ ।

ରାତି ଦଶଟା ପାଖେଇଲାଣି ।

ନିରୁପା ଓ ସୁରୂପା କଳାବିକାଶ କେନ୍ଦ୍ରରୁ ଫେରିନାହାନ୍ତି । ଅନୁପା ଭଉଜିଙ୍କ ସଙ୍ଗରେ ଭୁବନେଶ୍ୱର ଯାଇଛି । ସଞ୍ଜୟ ସାନନ୍ଦକୁ ବି ସଙ୍ଗରେ ନେଇଯାଇଛି । ରବୀନ୍ଦ୍ରମଣ୍ଡପରେ ବିଶ୍ୱବିଖ୍ୟାତ ଶ୍ରୀମତୀ ସଂଯୁକ୍ତା ପାଣିଗ୍ରାହୀଙ୍କର ଓଡ଼ିଶୀ ନୃତ୍ୟ ଦେଖିବେ । ସେଇଠୁ ଅଞ୍ଜନାର ନିମନ୍ତ୍ରଣ ସାରି ଫେରିବେ । କେତେବେଳେ ହେବ କେଜାଣି !

ରାମକୁମାର ଓ ହାଡ଼ବନ୍ଧୁବାବୁଙ୍କୁ ସଙ୍ଗରେ ନେଇ ଆନନ୍ଦ କୋବପୁଟ ଜଙ୍ଗଲରେ ସୀସାଖଣିର ଅନୁସନ୍ଧାନ କରିବାକୁ ଚାଲିଯାଇଛନ୍ତି । ସାତଦିନର ପ୍ରୋଗ୍ରାମ୍ ।

ସ୍ନେହକୋମଳ ଭାଷାରେ ଇନ୍ଦିରା କହିଲେ, ପିଲାଗୁଡ଼ାକ କେତେ-ବେଳେ ଫେରିବେ କେଜାଣି ! ନିରୁପା ସୁରୂପାଙ୍କୁ କଳାବିକାଶ କେନ୍ଦ୍ରରୁ ବନହଂସୀ ତାଙ୍କ ଗାଡ଼ିରେ ବାହୁଡ଼ାଇ ଆଣିବେ । ନୂଆ ଡ୍ରାମା ଶିଖୁଛନ୍ତି । ଆମର 'ନାରୀ ପ୍ରଗତି ସଂଘ' ତରଫରୁ ଆମେ ଅଭିନୟ କରିବୁ । ତମେ ଗଣ୍ଡିଏ ଖାଇନିଅ ବଡ, ଭାରି କ୍ଳାନ୍ତ ହୋଇଥିବ ।

ସେମାନେ ଫେରନ୍ତୁ, ମାଈଁ !

ନାହିଁ, ତମର ଅପେକ୍ଷା କରିବା ଦରକାର ନାହିଁ । ମୋର ବି ଖାଇବାର ବେଳ ହେଲାଣି । ଦେହ ଅବଶ ଲାଗୁଛି । ଆଗ ଔଷଧ ଖାଇବି । ତା ପରେ—

ଇନ୍ଦିରା ବୈଠକଘରୁ ଉଠିଆସିଲେ । ନିଜର ଶୋଇବା ଘରକୁ ଗଲେ । ସେ ଜାଣନ୍ତି, ଆପଣା ଛୁଏଁ ବିନୟ ତାର ରହଣିଘରକୁ ଚାଲିଯିବ । ଯେଉଁଠି ସେ ଆଗେ ରହୁଥିଲା, ସେଇଠି ସେ ରହୁଛି । ତାକୁ ପଦାରେ

ରଖିବାକୁ ସେ ନିର୍ଦ୍ଦେଶ ଦେଇ ନ ଥିଲେ, କାଳେ ପିଲାମାନଙ୍କ ମନରେ ଦୁଃଖ ହେବ ।

ବୀରକେଶରୀଙ୍କୁ ସେପରି ସୁଯୋଗ ସେ ଦେଇ ନ ଥିଲେ । ବାହାପିଆ ଗପୁଡ଼ି ମଣିଷ । ସେ ଯେତେ ଭଲେଇ ହେଲେ ବି ଇନ୍ଦିରାଙ୍କର ଧାରଣା ଯେ, ସେ କପଟୀ ଲୋକ । ଘରର ମର୍ମ ଜାଣିବେ କାହିଁକି ? ବାହାର ଘରେ ତାଙ୍କର କୌଣସି ଅସୁବିଧା ହେଉନାହିଁ । ସେ ଖୁସିରେ ଅଛନ୍ତି ।

ସପ୍ତାହେଟି ବିତି ଗଲାଣି ।

ବୀରକେଶରୀଙ୍କର ମନ ଛଟପଟ ହେଉଛି । ଶଶୁରଘରେ ମଉଜରେ ବେଳ କଟାଇବାକୁ ସେ ସୁଦୂର ଗ୍ରାମରୁ କଟକ ଆସି ନ ଥିଲେ । ତାଙ୍କର ପୁଅର ବଦଳିଲା ଢଙ୍ଗର ଅନୁସନ୍ଧାନ କରିବାକୁ ସେ ଆସିଥିଲେ ।

ସେ ଯୁବକର କଣ, ଶହ ଶହ ଟଙ୍କା ରୋଜଗାର କଲା, କାହିଁକି ଆଉ ଘର ମୁହଁ ଦେଖିଲା ନାହିଁ ? ବାପମାଆଙ୍କର ଚଳିବାପାଇଁ ଟଙ୍କା ପଠାଇଲା ନାହିଁ ! ସେ ଜାଣେ, ଦୁହିଁଙ୍କର ଦେହ ଅସୁସ୍ଥ । ଦୁଇଖଣ୍ଡ ଚିଠି ଲେଖିଲା ପରେ ଉତ୍ତର ଦେଇଥିଲା, ଭୁବନେଶ୍ୱରର ଭଦ୍ର ସମାଜରେ ଚଳିବାକୁ ହେଲେ ଆଗ ଆଧୁନିକ ଧରଣର ପୋଷାକପତ୍ର, ଜୋତାମୋଜା ଓ ଅନ୍ୟାନ୍ୟ ଉପକରଣ ଲୋଡ଼ା । ଭେକ ନ ଥିଲେ ଭିକ ମିଳେନାହିଁ, ବାପା ! ବଡ଼ବଡ଼ଆଙ୍କ ପାଖକୁ ଅଭେକାଙ୍କ ପରି ଗଲେ ସେମାନେ ଘୃଣା କରିବେ । ପାଖ ପୂରାଇବେ ନାହିଁ । ଟଳମଳିଆ ଅସ୍ଥାୟୀ ଯୁବକର ଖଣ୍ଡି ହାତରୁ ଖସିଯିବ । ଆସନଟି ଆଗ ଦୃଢ଼ କରିନିଏଁ, ସେଇଠୁ ବେଧଡ଼କ ହେବ ।

ଚନ୍ଦନା କହୁଥିଲେ, ପୁଅ ନାକର କଥା ଲେଖିନାହିଁ ।

ଆମର ଅବସ୍ଥା ଯେ ୦-୦।-୦ !

ସେଥିକୁ ସେ ଲଗା ନୁହେ । ନିଜର ଭବିଷ୍ୟତ ପ୍ରତି ଦୃଷ୍ଟି ଦେଇ ସେ ଯାହା କରିବାର କରୁଛି । ଘରେ ସେ ବେକାର ହୋଇ ବସିଥିଲେ

କେଉଁଠୁ ଆଣି ଧନ ଅଜାଡ଼ିଦଉଥିଲା ? ମାଷ୍ଟରଙ୍କ ଗୃହକର ଖଣ୍ଡି ସ୍ଥଳିଗଲା । ତମ ସଂସାର ଯେମିତି ଚଳାଉଥିଲ, ଏବେ ସେମିତି ଚଳାଅ । ବାର ଲୋକଙ୍କ ଆଗରେ ତାକୁ ନିନ୍ଦୁଛ କାହିଁକି ?

ସାରକେଶଙ୍କ ବସନ୍ତକୁ ନିଧ ଅପଦାର୍ଥ, ଦାୟିତ୍ୱ ଜ୍ଞାନ ନାହିଁ, କୁପୁତ୍ର ଇତ୍ୟାଦି କହି ବିରକ୍ତ ହୋଇଥିଲେ । ଯେଉଁମାନଙ୍କ ପାଖରୁ ସେ ବଡ଼ ବଡ଼ କଥା କହି ହାତଉଧାର ସଂଗ୍ରହ କରିଥିଲେ, ସେମାନଙ୍କୁ ସୁଧ ଦେଇ ପାରି ନ ଥିଲେ । ମୂଳ କରଜ କଥା ପଚାରେ କିଏ । ସେମାନେ କାଉକାଉ ହେଲେ ।

ପୁଅର ନିନ୍ଦା ଗାଇବା ଆତ୍ମରକ୍ଷାର ଏକମାତ୍ର ଅସ୍ତ୍ର ହୋଇଥିଲା । ସେମାନଙ୍କୁ ସେ ବୋଧଶୋଧ ଦେଇଥିଲେ ଯେ, ଜମି ପାଞ୍ଚଗୁଣ୍ଠ ଅଲେଖାକୁ ଫଳବନ୍ଧକ ଦେଇ ସେ ଟଙ୍କା ଆଣି କରଜ ଶୁଝିବେ । ତା ପରେ ତାଙ୍କ କାମରେ ଯୋଗ ଦେବାକୁ ଜୟପୁର ଯିବେ । ଏପରି ପ୍ରଚାର କରାଇ ଆଗ ସେ ତାଙ୍କର ଧର୍ମର ଝିଅ ପାବମାକୁ ପ୍ରଭାବିତ କଲେ । ତାହାଦ୍ୱାରା ଅଲେଖ ପାତ୍ର ପରି ପାଖର ଲୋକର ମନ ତରଳାଇ ତା ପାଖରୁ ସେ ପଚିଶ ଟଙ୍କା ବିନା ଲେଖାରେ ଆଣିପାରିଥିଲେ ।

ଆନନ୍ଦଙ୍କ ଘରେ ରହିବାର ଦିନେ ଦୁଇ ଦିନ ପରେ ସବୁ ଘଟଣା ଶୁଣି ଓ ଆନନ୍ଦଙ୍କ ଘରର ବେମହତ ଚଳନ ଦେଖି ସେ କାବୁଛ ହେଲେ । ବସନ୍ତଟା ଏଠାକୁ ବାରମ୍ବାର ଆସୁଛି । ବଦଖରଚ କରି ଜିନିଷପତ୍ର କିଣି ଉପହାର ଦେଉଛି । ନାଟକ ସିନେମା ଥିଏଟର ଦେଖୁଛି । ବଡ଼ିଲା ଝିଅଙ୍କୁ ସାଙ୍ଗରେ ଧରି ହାତରୁ ପଇସା ଖର୍ଚ୍ଚ କରି ଦେଖାଉଛି । ଇନ୍ଦିରା ତାକୁ ଶାସନ କରିବା ପରିବର୍ତ୍ତେ ଉତ୍ସାହିତ କରୁଛନ୍ତି ।

କଥା କ'ଣ ? ବସନ୍ତ ତାଙ୍କର ପୁଅ । ତାକୁ ଉପେକ୍ଷା କରି ମାମୁଁ-ମାଇଁଙ୍କ ପାଖରେ ରହି, ମୁଠିଏ ଖାଇ, ବୋଲହାକ କରି ପାଠ ପଢ଼ିଥିଲା । ସେଥିପାଇଁ ସେ ଗୋଟାପୁରା ତାଙ୍କର ହୋଇଯିବ ? ବାପମାଆଙ୍କୁ ଏମିତି ପର କରିଦେବ ?

ସେଥିପାଇଁ କ'ଣ ଇନ୍ଦିରା ଦାୟୀ ? ବିଉନଙ୍ଗୁଳୀ, ରୂପର ତେଜରେ ବାଜି ଦାଜି ଝଟକୁଥିବା ଯୁବଗଣ ଝିଅ ଦୁଇଟା ଦାୟୀ ? ଭଉଣୀ ହଁ, ଏକାଠି ବଢ଼ିଛନ୍ତି, କିନ୍ତୁ ମାମୁଁ ଝିଅ ଭଉଣୀ ! ବସନ୍ତ ଯୁବକ, ଆଜି ସେମାନେ ନାଟ୍ୟାମସାରେ ଯୋଗଦିଆ ଯୁବଗଣ ଝିଅ । ବିଶେଷତଃ ଅନୁପା । ସେମାନେ ଗୋଷ୍ଠିପିଲା ପରି ସହସ୍ର ଲୋକଙ୍କ ଆଗରେ ନିତମ୍ବ ହଲାଇ, ଦେହ ଦୋହଲାଇ, ଅଙ୍ଗଭଙ୍ଗୀ କରି, ଚେଉଁଛ ରଜାଣୀ ହ.ଣୀ ନାଚ କରନ୍ତି । ସେମାନଙ୍କ ମୁହଁରୁ ଲାଜପାଣି ଛାଡ଼ିଯାଇଥିବ । ଅଣ-ଆକଟ ଘର । ନିଜେ ବଉବୁଢ଼ୀ ଇନ୍ଦିରା କେମିତି ନିଜକୁ ସଜାନ୍ତି ! ମାଆ ଗଲେ ତାଙ୍କ ସଙ୍ଗକୁ, ଝିଏ ଗଲେ ଆଜି କାହା ସଙ୍ଗେ ନାଚ କରିବାକୁ, ଡ୍ରାମା କରିବାକୁ, ନୋହିଲେ ଛବି ଦେଖିବାକୁ ।

ସବୁ ବିଶୃଙ୍ଖଳ ।

ଦୁଏକ ସହର ବଜାରରେ ଧନୀ, ମାନୀ, ପାଠୁଆଙ୍କ ଘରେ ଏପରି ଚଳନ ସ୍ୱାଭାବିକ ହୋଇପଡ଼ୁଛି । କେତେ ବିଡ଼ମ୍ବନା ଘଟୁଛି । ନିନ୍ଦା ରଟୁଛି । କେତେ ଆଶା ମାଟିରେ ମିଶୁଛି । ପାଠ ସରିଲା । ଚାକିରି ମିଳିଲା । ବସନ୍ତ ଆଜି କାହିଁକି ଏଠି ଏ ବେମହଣିଆ ଧନକୁବେରଙ୍କ ଘରେ ପୋଷା-କୁକୁର ପରି ନହର ପହର ହେବ ? ବୁଢାବୁଢ଼ୀ ବାପମାଆଙ୍କୁ ତୁଛ କରିବ ?

କଅଣ ତା'ର ମନରେ ଅଛି ?

ବୀରକେଶରୀ ନିରୋଳା ବେଳରେ ଏହିପରି କେତେ କ'ଣ ଭୟଙ୍କର ଚିନ୍ତା କରି ମାନସିକ ଅଶାନ୍ତି ଅନୁଭବ କରିଥିଲେ । ଦାଣ୍ଡଘରେ ଛଟପଟ ହୋଇ ଉନ୍ନିଦ୍ର ରଜନୀ ଯାପନ କରିଥିଲେ । ବସନ୍ତର ଆଗମନକୁ ଚାହିଁ ରହିଥିଲେ ।

ଶନିବାର ରାତି କଟିଲା । ରବିବାର ଦିନ ରାତି ବିତିଲା । ବସନ୍ତ ଆସିଲା ନାହିଁ ।

ଆଜ ସୋମବାର । ଆଉ ସପ୍ତାହେ ସେ ଅପେକ୍ଷା କରି ରହିପାରିବେ ନାହିଁ । ଭାବିଲେ, ସେ ନିଜେ ଭୁବନେଶ୍ୱର ଯିବେ । ବିକ୍ରମକୁ ଦେଖିବେ । ହାଲଚାଲ ବୁଝିବେ ।

ଆଉରି ଗୋଟିଏ ଗୁରୁତର ବିଷୟ ତାଙ୍କ ମନରେ ଖେଳିଲା— ପିଲାର ବୟସ ହେଲା । ତାର ହାତକୁ ଦି'ହାତ କରିଦେବା ନିରାପଦ । ତାର ପେଟ ପୋଷିବାର ଶକ୍ତି ହୋଇଛି । ବାହାପାଣି ଦେହରେ ପଡ଼ିଲେ ଅମଡ଼ା ବାଟରେ ପାଦ ପକାଇବାର ଉପାୟ ନ ଥିବ । ଦେବନାଥ ଝିଅ ବାହାଘର କରିବାକୁ ଆତୁର ହେଲେଣି । ଡେରି କରିବା ଉଚିତ ନୁହେଁ ।

ସବୁ ପୁଏ ବାହାହୋଇ ମୁଣ୍ଡକୁ ଦାୟିତ୍ୱ ନେବାକୁ ଅମଙ୍ଗ ହୁଅନ୍ତି; କିନ୍ତୁ ଦାୟିତ୍ୱ ଆସିଲେ ବୋଝ ମୁଣ୍ଡାଇ ସୁଧାର ହୁଅନ୍ତି । ବେକରେ ପଡ଼ିଲେ ବଜାଇ ଶିଖନ୍ତି ।

ସେହି ସୋମବାର ରାତିରେ ଘରକେଣରେ ଆନନ୍ଦ ଓ ଇନ୍ଦିରାଙ୍କ ଆଗରେ ଦେବନାଥଙ୍କ କନ୍ୟା ଉଲ୍ଲୁପୀର ପ୍ରସଙ୍ଗ ଉଠାଇଲେ । ଦେବନାଥ କ'ଣ ଦେବେ ତାର ମୋଟାମୋଟି ହିସାବ ଦେଲେ । ଫଟୋଖଣ୍ଡି କାଢ଼ି ସେମାନଙ୍କୁ ଦେଖାଇଲେ ।

ଆନନ୍ଦ କହିଲେ, ସବୁ ଭଲ ଯେ, ବିକ୍ରମର ମତାମତ ନେଇ ପ୍ରସ୍ତାବ ପକ୍କା କରିବା ଉଚିତ । ଆଜକାଲିକା ପିଲା, ସେମାନଙ୍କ ଧାରଣା ଭିନ୍ନ । ଶେଷ ମୁହୂର୍ତ୍ତରେ ଅଡ଼ିବସିଲେ ଘଟଣା ସୁନ୍ଦର ହେବ ନାହିଁ ।

ତାଙ୍କ କଥାରେ ଇନ୍ଦିରା ଅପ୍ରୀତ ହେଲେ । ପ୍ରତିବାଦ କରି କହିଲେ, ବିକ୍ରମର ଗୋଟାଏ ମତାମତ କ'ଣ ? ସେ କାହିଁକି ଅଡ଼ିବସିବ ? ଉଲ୍ଲୁପୀ ପରି ଝିଅ, ଦେବନାଥଙ୍କ ପରି ଶଶୁର ତାଙ୍କୁ କେଉଁଠୁ ମିଳିବ ? ତାଙ୍କ କୁଟୁମ୍ବକୁ ଦରକାର କାମିକା ବୋହୂ । ତାଙ୍କର ଲୋଡ଼ା ସମାସ୍ଥନ୍ଧ ବନ୍ଧୁ । ଦେହର ଉଣାଅଧିକ ରଙ୍ଗ କାହାରି ଅଙ୍ଗରେ ବୋଳା ହୋଇଯାଏ ନାହିଁ । ଅଭାବ ଅସୁବିଧାକୁ ଆପଣାର କରି ଯିଏ ଚଳିପାରିବ, ସେହି ଯେ ବୋହୂ । ତାଙ୍କ ଘରକୁ ଉଲ୍ଲୁପୀ ଠିକ୍ ହେବ ।

ବୀରକେଶରୀଙ୍କୁ ଚାହିଁ ଇନ୍ଦର କହିଲେ, ତାଙ୍କ କଥାରୁ ତମେ କ'ଣ ପାଇବ, ଭାଇ ? ଏ ତ ପୁରୁଣା ପ୍ରସ୍ତାବ। ତମ ଦୁହିଁଙ୍କ ମନ ମାନୁଛି। ଝିଅଟି ମନ୍ଦ ନୁହେଁ। ତମେ ବାହାଘର କରିଯାଅ। ଜବାବ୍ ଦିଅ। ବିକ୍ରମକୁ ମୁଁ ମନାଇଦେବି।

ବୀରକେଶରୀ ଖୁସି ହୋଇ କହିଲେ, ତେବେ ହେଲା। ବିକ୍ରମକୁ ପଚାରିବି କାହିଁକି ? ସେ ତମର ଅବାଧ୍ୟ ହେବ ନାହିଁ।

ଜଲପରୀର ଫଟୋଖଣ୍ଡି ନେଇ ଆଲୁଅ ପାଖରେ ଅନୁପା ଓ ନିରୁପା ମନୋନିବେଶ କରି ଦେଖୁଥିଲେ।

ନିରୁପା ମୁହଁ ମୋଡ଼ିଲା। କହିଲା, ଛି, ଅଳପ ପାଠୁଆ ମୋଫସଲି ଝିଅ ! କପାଳ ଚଉଡ଼ା, ଫାଲୁକା ମୁହଁ। ଏଇଟା କି ସୁନ୍ଦରୀ ବା ?

ନିରୁପା ହସିଲା। ତା ହସ ଦେଖି ଆନନ୍ଦ ଓ ଇନ୍ଦର ସାମାନ୍ୟ ହସିଲେ। ଫଟୋଟିକୁ ତଥାପି ଅନୁପା ତନଖି ଦେଖୁଥିଲା। ସତେ କି ସେ ତାଆରି ଭିତରେ ନିଜକୁ ହଜାଇଦେଇଥିଲା। ଦୀର୍ଘଶ୍ୱାସ ଛାଡ଼ୁଥିଲା।

ଇନ୍ଦର ତାକୁ କେତେ ମୁହୂର୍ତ୍ତ ଚାହିଁରହିଲେ। ମୁହଁ ଫେରାଇ ବୀରକେଶରୀଙ୍କୁ କହିଲେ, ନିରୁପା ଛୁଆଟା। ତା' କଥାରୁ କି ପାଇବ, ଭାଇ ? ଜଲପରୀ ତାର ଭାଉଜ ହେବ। ସେଇଥିପାଇଁ ସେ ଆଗତୁରା ଥଟ୍ଟା କରୁଛି।

ବୀରକେଶରୀ ଅନୁପାକୁ ପଚାରିଲେ, ତୋ ମନକୁ କେମିତି ପାଉଛି, ମା ଅନୁପା ?

ଅନୁପା ଆଲୁଅ ପାଖରୁ ବୀରକେଶରୀଙ୍କ ନିକଟକୁ ଆସିଲା। ଫଟୋଟିକୁ ହାତରେ ଧରିଥିଲା। କହିଲା, ଯେତେ ଭଲକରି ଦେଖିଲେ ସତଟାରେ ଉଜ୍ଜ୍ୱଳ ଆଲୁଅରେ ପୂରା ବାରିହେଉ ନାହିଁ, ପିଉସା ! ଆଜଯାଏ କାହିଁକି ଆପଣ ଏଖଣ୍ଡିକ ଲୁଚାଇ ରଖିଥିଲେ ?

ବୀରକେଶରୀ ହତବୁଦ୍ଧି ହେଲେ। ଅନୁପାର ପ୍ରଶ୍ନର କି ଉତ୍ତର ଦେବେ ଚିନ୍ତା କରିବାକୁ ଲାଗିଲେ। ସେ ଭାବୁଥିଲେ, ଉର୍ବଶୀ ଓ ମେନକାଙ୍କ ଆଖିରେ ପୁରୁଣାକାଳିଆ ଗାଉଁଲି ଝିଅଟିର ମୂଲ୍ୟ ଦି'କଡ଼ା ହେବ। ଜଲପରୀ

ସମାଲୋଚନାର ଖୋରାକ ହେବ । ସେ ଆଗରୁ ଜାଣି ନ ଥିଲେ ଯେ ଧନ, ଆଧୁନିକ ଶିକ୍ଷା, ଇଂରେଜ ସରିକଣ୍ଠଦ୍ଧା ସ୍ୱାଧୀନ ଚଳଣ ଆନନ୍ଦଚନ୍ଦ୍ରଙ୍କ ଘରର ଘରଣୀ ଓ ତାଙ୍କ ଝିଅଟିମାନଙ୍କୁ ଏକକାଳ କହ୍ନିମକଟ ଉପରର ଛବି, ବିବିଧ ବିଜ୍ଞାପନର ଚିତ୍ର, କ୍ୟାଲେଣ୍ଡରଗୁଡ଼ିକରେ ଛପା ହେଉଥିବା ଦେବୀ-ମାନଙ୍କର ମୂର୍ତ୍ତି କରିସାରିଛି । ଝିନ ବସନ ଭିତରୁ ପୁରୁଣା ଅମଳରେ ଆଖି ନ ଦେଖିଲା ନିଷିଦ୍ଧ ଅଙ୍ଗଗୁଡ଼ିକୁ ପରିସ୍ଫୁଟ କରୁଛି । ଉଲ୍ଲଙ୍ଘୀ ବିଦୃଷୀ ଆଧୁନିକା ହୋଇପାରିନାହିଁ । କାହିଁକି ତାଙ୍କୁ ଦୁର୍ବୁଦ୍ଧି ଘୋଟିଲା ଯେ ସେ ଫଟୋଟି କାଢ଼ିଲେ ?

ଚନ୍ଦନାଙ୍କର ଆଧୁନିକ ସଂସ୍କରଣ ଅନୁପାର ମୁହଁକୁ ଚାହିଁ ଖାଉ-କେଶଶ୍ୱ ଉତ୍ତର ଦେଲେ, ମୁଁ ଭୁଲିଯାଇଥିଲି, ମା !

ଅନୁପା କହିଲା, ମୁଁ ଜାଣେ ଆପଣ ସେଇଆ କହିବେ ।

ତୋର ମତାମତ କହିଲୁ ନାହିଁ ତ ମା ?

ଅନୁପା କହିଲା, ମୋ ବୋଉ ଯାହା କହିଲା, ସେଥିରେ ଦ୍ୱିମତ ହେବାର କାରଣ କିଛି ନାହିଁ, ପିଉସା ! ସବୁ ବିଷୟ ଭାବି ବିଚାରି ବୋଉ ଠିକଣା କଥା କହେ । ଉଲ୍ଲଙ୍ଘୀ ଭାଉଜଙ୍କର ସ୍ୱାସ୍ଥ୍ୟ ଭଲ, ରୂପ ସୁନ୍ଦର । ବିଦେଶରେ ଆପଣଙ୍କର ସେ ସେବାଶୁଶ୍ରୂଷା କରିଥିଲେ ।

ହଁ, ମା !

ତାଙ୍କର ଢଙ୍ଗ ମହତ ହୋଇଥିବ । ସେ ନିଶ୍ଚେ କାମିକା ହୋଇଥିବେ ।

ହଁ, କାମିକା । ଧୀରସ୍ଥିର ପିଲା ।

ଉଲ୍ଲଙ୍ଘୀ ଭାଉଜଙ୍କର ଭ୍ରୂଲତା ଓ ଆଖି ଦିଓଟି ଚମତ୍କାର । ସରଳ ଚାହାଣି । ମୋ ମନକୁ ପାଇଛି ।

ତୁ ନିଶ୍ଚୟ ବିଜେମାକୁ ମନାଇ ମଙ୍ଗାଇପାରିବୁ !

ବୋଉ ସେ ଦାୟିତ୍ୱ ନେଇଛି, ପିଉସା ! ତେବେ ଫଟୋଟି ଆମ ପାଖରେ ଥାଉ । ବିକଭାଇ ଦେଖିବେ ।

ଇନ୍ଦ୍ର ପ୍ରତିବାଦ କଲେ । ନାହିଁ, ସେ ଫଟୋ ଏଠି କାହିଁକି ରହିବ ?

ବୀରକେଶରୀ କହିଲେ, ଥାଉ, ଅନୁପା ପାଖରେ ଥାଉ ।

ବାହାରେ ମଟର ହର୍ଣ୍ଣର ଗର୍ଜନରେ ଆନନ୍ଦଚନ୍ଦ୍ରଙ୍କର କ୍ଳାନ୍ତ ଅବା ସୁରା ପ୍ରଭାବରେ ଘୁମନ୍ତ ପୃଥୁଳ ଦେହ ଚମକିଉଠିଲା । ସେ ତେରିହୋଇ ବସି ଆଖି ଖୋଲିଲେ । ନିଜକୁ ନିଜେ ପଚାରିଲେ, କିଏ ? ସଙ୍ଗେ ସଙ୍ଗେ ନିଜ ପ୍ରଶ୍ନର ଉତ୍ତର ସେ ଦେଲେ, ସମୃଦ୍ଧ ଆସିଗଲେ ପରା ! ବ୍ୟବସାୟୀ ସଙ୍ଘର ଗୋଟିଏ ଅଧିବେଶନ ଆଜି ସନ୍ଧ୍ୟା ନଅଟାରେ ରାମକୁମାରବାବୁଙ୍କ ଘରେ ହେବାର ଅଛି । ଦେହ ଅବଶ ଲାଗୁଛି, କିନ୍ତୁ ଯିବାକୁ ତ ପଡ଼ିବ । ଜରୁରୀ ଗୁପ୍ତ ବୈଠକ ।

ଇନ୍ଦ୍ର ପଚାରିଲେ, କଅଣ ଏମିତି ଗୁପ୍ତ ?

ଏ ସରକାରଙ୍କର କାଳ ପୂରିଆସିଲା, ଇନ୍ଦ୍ର ! ଇଲେକ୍‌ସନ ପାଖେଇ ଆସିଲାଣି । ପୁଣି ଏଇମାନେ ଆସନକୁ ଫେରିବେ ଅବା ଆଉ କେଉଁ ଦଳ ଗାଦି ମାଡ଼ିବସିବେ, ତାଆରି ଆଲୋଚନା ହେବ ।

ଯିଏ ଗାଦି ମାଡ଼ିବସିଲେ ବସୁ, ସେଥିରେ ତମର କ'ଣ ଥାଏ ?

ଚାନ୍ଦା କାହାକୁ କେତେ ଦିଆଯିବ ତାର ପରିମାଣ ସ୍ଥିର କରାହେବ । ଏସବୁ ବିଷୟରେ ଆମ ବାଉରିବନ୍ଧୁର ବଗୁର ଅତି ସରସ ।

ବୈଠକଘରର କବାଟରେ ବାହାର ପାଖରୁ କରାଘାତ କରି କିଏ ଡାକିଲା, ମାଉସୀ, ମାଉସୀ—

ଇନ୍ଦ୍ର ଧଡ଼ପଡ଼ ହୋଇ ଉଠୁଣୁ କହିଉଠିଲେ, ଆରେ, ସଞ୍ଜୟ ଆସିଛି !

ସେ କବାଟ ଖୋଲିଲେ । ସେବକା ଶାସକ ବଳିଷ୍ଠ ସାହେବଙ୍କର ନକଲି ଅବତାର ସଞ୍ଜୟ ଘର ଭିତରକୁ ପ୍ରବେଶ କଲା । ହାତ ଯୋଡ଼ି ମଣି

ନୁଆଁଇ ଆନନ୍ଦ ଓ ଇନ୍ଦିରାଙ୍କୁ ପ୍ରଣାମ କଲା । ଅର୍ଦ୍ଧ ପରିଷ୍କାର ବୀରକେଶରୀଙ୍କୁ କଣେଇଁ ଚାହିଁଲା । ସେ ଚେକା ପକାଇ ଖୋଲା ପାଦରେ ସୋଫା ଉପରେ ବସିଥିଲେ । ତାଙ୍କୁ ପ୍ରଣାମ କରିବାକୁ ସେ ଉଚିତ ମଣିଲା ନାହିଁ ।

ଆନନ୍ଦଚନ୍ଦ୍ରଙ୍କ ନିର୍ଦ୍ଦେଶରେ ସେ ଆଉ ଖଣ୍ଡିଏ ଚଉକିରେ ବସି କହିଲା, ବାପା ଆପଣଙ୍କୁ ଫୋନ୍ କରିଥିଲେ, ମଉସା ! ଜବାବ୍ ମିଳିଲା ନାହିଁ ।

ଫୋନ୍ ଅଚଳ ହୋଇଛି, ବାବୁ !

ବାପା ରାମକୁମାରବାବୁଙ୍କ ଘରକୁ ଅଜିଜ୍ ଖାଁଙ୍କ ସଙ୍ଗରେ ଚାଲି-ଗଲେଣି ।

ବୁଝିଲି । ମୁଁ ହାଡ଼ବନ୍ଧୁବାବୁଙ୍କୁ ଅପେକ୍ଷା କରି ବସିଛି । ବଡ଼ ଇଞ୍ଜିନିୟର ସାହାବଙ୍କର କେଉଁ ବନ୍ଧୁଙ୍କର ଝିଅ ବାହାଘର । ସେ ମୋର କାର୍ଖଣ୍ଡିକ ମଗାଇ ପଠାଇଥିଲେ । ଗାଡ଼ି ଫେରିନାହିଁ । ଜିପ୍ ବି ନାହିଁ ।

ଇନ୍ଦିରା କହିଲେ, ପିଲାଏ ତୋତେ ଅପେକ୍ଷା କରି ବସିଛନ୍ତି । ଫୋନ୍ ତ ଅଚଳ !

ମୁଁ ଭାରି ଦୁଃଖିତ, ମାଉସୀ ! ଅଧଘଣ୍ଟାଏ ହେବ ଭୁବନେଶ୍ୱରରୁ ବିକାଶର ବସାରୁ ଫେରିଲି । ସେ ଆଜି ଚାର୍ଜ ଦେଲା । କାଲି ସକାଳ ଦଶଟା-ବେଳେ ସେ ଅଞ୍ଜନାକୁ ନେଇ ଢେଙ୍କାନାଳ ଯିବ । କାଲି ଅପରାହ୍ଣରେ ସେଠାକାର ଜିଲ୍ଲାପାଳଙ୍କୁ ରିଲିଭ୍ କରିବ । ଆଜି କେତେ ଜିନିଷ ସେ ଟ୍ରକ୍‌ରେ ପଠାଇଦେଇଛି ।

ଅନୁପା କହିଲା, ବାଃ, ମୋ ଗୋଲାପ ଢେଙ୍କାନାଳରେ ରହିବ ! ଏଣିକି କପିଳାସ ଦେଖିବାର ସୁଯୋଗ ମିଳିବ । ସଞ୍ଜୟଭାଇ, ତମେ ଏତେ ଡେରି କଲ ଯେ ଗ୍ରାଣ୍ଡ ସିନେମାରେ ଚାଲିଥିବା କ୍ଲିଓପେଟ୍ରା ଫିଲ୍ମ ଆଉ ଦେଖିହେଲା ନାହିଁ । ଆଜି ତାର ଶେଷରାତି । ବିକାଶଭାଇ ଶନିବାର ଦିନ ଆସିବେ କହିଥିଲେ । ଆସିଲେ ନାହିଁ । ସେ ଆସିଥିଲେ ତମକୁ କହି ନ ଥାନ୍ତି । ତମେ ପ୍ରମିଜ୍ କରିଥିଲ, ନୋହିଲେ ମୁଁ ବିମଳବାବୁଙ୍କୁ କାଲି ଫୋନ୍ କରିଥାନ୍ତି ।

ଆନନ୍ଦ କହିଲେ, ତାହାର କେତେ ପ୍ରକାର କାମ ରହିଛି । ତାହାର ଉପରେ ଦୋଷାରୋପ କରିବା ଠିକ୍ ନୁହେଁ । ତୁ ଓ ନିରୁ ନିଜେ ଯାଇ-ପାରିଥାନ୍ତ । ବାଳିର ଅବଶ୍ୟ କାର୍ଯ୍ୟବ୍ୟସ୍ତ । ତେବେ ଗୋପକୁ ଫୋନ୍ କରିଥିଲେ ସେ ଟିକେଟ୍ ରିଜର୍ଭ କରିପାରିଥାନ୍ତା ।

ସଞ୍ଜୟ କହିଲା, ବିକ୍ରମବାବୁ ବିକାଶର ଜନ୍ମଦିନର ବନ୍ଦୋବସ୍ତ କରିବାରେ ଅଞ୍ଜନାକୁ ସାହାଯ୍ୟ କରୁଥିଲେ, ମୁଁ ଦେଖିଆସିଲି । ତେବେ ଚିନ୍ତା ନାହିଁ । ମୁଁ ପାଞ୍ଚଟି ସ୍ଥାନ ବାଲ୍‌କନି ଉପରେ ରିଜର୍ଭ କରି ଟିକେଟ ଆଣିଛି । ଟିକିଏ ଡେରି ହେଲେ କ୍ଷତି କଣ ? ଆପଣ ବି ଚାଲନ୍ତୁ, ମାଉସୀ !

ଇନ୍ଦିରା କହିଲେ, ଡେରି ଆଜି କ'ଣ, ସେମିତି ତ ଆମର ରାତି ବାର ଟପୁଛି । ଇଂରେଜି ଛବି ମୁଁ କିଛି ବୁଝିପାରିବି ନାହିଁ । ମତେ ଛାଡ଼ ମାଉଁ । ମୋ ଦେହ ବି ଭଲ ଲାଗୁନାହିଁ । ତମେସବୁ ଯାଅ ।

ସଞ୍ଜୟ ସଙ୍ଗରେ କେବଳ ଅନୁପା ଓ ନିରୁପା ତରତର ହୋଇ ବାହାରିଗଲେ । ସେମାନଙ୍କୁ ବଳେଇଦେବାକୁ ଇନ୍ଦିରା ଗାଡ଼ିପାଖକୁ ଗଲେ ।

ସାରକେଶରୀ ଡବଡବ କରି ଚାହିଁରହିଥିଲେ । ଭାବୁଥିଲେ, ଧନ୍ୟ ରେ କାଳ ! ନିକଳି ସାହାବ ଟୋକାଟା ଦୁଇଟି ବଡ଼ିଲି ଝିଅଙ୍କୁ ସାଙ୍ଗରେ ନେଇଗଲା ! ରାତି ଅଧରେ ଫେରିବେ । ନିଜେ ମା ଛାଡ଼ି-ଦେଉଛନ୍ତି ।

ଉଲୁପୀ ସେପରି ଝିଅ ନୁହେଁ ।

ଏବକା ସ୍ୱାଧୀନ ପୁଅଝିଅଙ୍କର ଚଳଣି ଓ ସେ ଚଳଣିରେ ତାଙ୍କର ଯୋଗ୍ୟପୁତ୍ର ବିକ୍ରମର ସ୍ଥାନ ଏବଂ ସ୍ୱାଧୀନ, ଲଙ୍ଗଳା, ମହତହସ ଢଙ୍ଗକୁ ତାଙ୍କର ପୁତ୍ରମଣିଙ୍କର କେତେ ଅବଦାନ, ସେହି ବିଷୟରେ ସାରକେଶରୀ ବାହାରଘରର ବାରଣ୍ଡା ଉପରେ ଠିଆହୋଇ ଭାବିବାକୁ ଲାଗିଲେ ।

ପିଲାଟିଦିନରୁ କେତେ ନୀତିଶିକ୍ଷା ସେ ବିନୋଦକୁ ଦେଇଥିଲେ । ନୀତିବାଣୀ ମୁଖସ୍ଥ କରାଇଥିଲେ । ସେ ଭାବିଲେ, ତାଙ୍କର ସବୁ ଉଦ୍ୟମ ବ୍ୟର୍ଥ ହୋଇଛି । ପିଲାଟାର ପାଦତଳୁ ଚଳନ୍ତା-ସୁଅରେ ବାଲି ଖସିଖସି ଯାଉଛି । ସେ ଜାଣି-ପାରୁ ନାହିଁ ।

ଅନୁପା ନିରୁପା ସଜବାଜ ହୋଇ ମନଖୁସିରେ ନରକ ଆଡ଼କୁ ଧାଇଁଛନ୍ତି । ଜାଣିଜାଣିକା ତାଙ୍କର ବାପମା ସେମାନଙ୍କୁ ଉତ୍ସାହିତ କରୁଛନ୍ତି । କିଏ ରକ୍ଷା କରିପାରିବ ? ସେମାନଙ୍କର ଯାହା ହେବାର ହେଉଥାଉ । ଆନନ୍ଦଙ୍କର ବିପୁଳ ସମ୍ପତ୍ତି ସେମାନଙ୍କ ପାଇଁ ନରକ ଭିତରେ ସରଗ ସର୍ଜନା କରିପାରିବ । ସଞ୍ଜୀବ ବି ଲକ୍ଷପତିର ପୁଅ । ଆଉମାନେ ବି । ଇନ୍ଦିରାଙ୍କ ଜାଲରେ ସେହି ପଡ଼ିଲେ ଭଲ, ଖାକୁଡ଼ ମନ୍ଦ ନୁହେ । ମିରିକାଲି, ଚିତଳ, ବାଲିଆ ବି ଚଳିବ ।

ବିନୋଦ ଘୁର ଦଣ୍ଡକରିଟିଏ । ଫରଫର, ଛଟପଟ । ଗୀବନ ଯିବ, କେହି ପଚ୍ଛରିବେ ନାହିଁ । ଔଧଙ୍କ ପାଲରେ ବଣଭୁଆ ବାଇ । ତାକୁ ରକ୍ଷା କରିବାକୁ ହେବ । କିପରି ? କାହା କଥାରୁ ତାଙ୍କୁ କଅଣ ମିଳିବ ? ଦେବନାଥଙ୍କ ଝିଅ ଉଲୁପୀ ସମ୍ବନ୍ଧରେ ଅବଶ୍ୟ ସେ ପକ୍‌କା ଜବାବ ଦେବେ । ଫଗୁଣ ମାସରେ ନିମିତ୍ୟ କରିବେ ।

ପରଦିନ ସକାଳୁ ସେ ଭୁବନେଶ୍ୱର ଯିବାକୁ ମନସ୍ଥ କଲେ ।

ୱାରକେଶରୀ ମନକଥା ମନରେ ରଖି ଇନ୍ଦିରାଙ୍କୁ ଜଣାଇଲେ—ଚନ୍ଦନାଙ୍କର ଦେହ ଭଲ ରହୁନାହିଁ । ତାଙ୍କ ପାଇଁ ଔଷଧ ଓ ପଥ୍ୟ ଲୋଡ଼ା । ସେ ନିଜେ ବି ଅସୁସ୍ଥ । ଅଭାବର କଳନା ନାହିଁ । ବିନୋଦର ନୂଆ ଚାକିରି । ନିଜେ ଆଗ ତାର ଅବସ୍ଥା ନିଜେ ସଜାଡ଼ିବ । ପାଞ୍ଚ ପଚଶ ଭଦ୍ରଲୋକଙ୍କ ସଙ୍ଗେ ଜଣେ ହୋଇ ମିଶିବାର ଉପଯୁକ୍ତ କରି ନିଜକୁ ଠିଆ କରିବ । ତା ପାଖରୁ ସାହାଯ୍ୟ ଆଶା କରିବା ଅନୁଚିତ । ତାଙ୍କୁ ପୁଣି ଚାକିରି ସ୍ଥାନକୁ ଫେରିଯିବାକୁ ହେବ । ନୋହିଲେ ସଂସାର ଚଳିବ ନାହିଁ । ମାସ

କେତୋଟି ପରେ ପୁଅବାହାଘରର ଦାୟିତ୍ୱ ମୁଣ୍ଡରେ ଲଦା ହୋଇଛି । କମିଟ୍ୟଟି ସବୁଲେ ତାଙ୍କର ଛୁଟି ।

ଇନ୍ଦର ଅନ୍ୟମନସ୍କ ହୋଇ ସବୁ ଶୁଣିଲେ । ୱାରକେଶ୍ୱଙ୍କ ପରି ଚତୁର ଲୋକ ପକ୍ଷରେ ବୁଝିବାକୁ ବାକି ରହିଲା ନାହିଁ ଯେ ଇନ୍ଦର କୌଣସି କଷ୍ଟରେ ମୁହଁ ଖୋଲି ନିଜକୁ ବାନ୍ଧି ରଖିବାକୁ ଚାହିବେ ନାହିଁ ।

ଗୃହେଦିନ କାଳ ତାଙ୍କ ଘରେ କାରବାର ସେ ଲକ୍ଷ୍ୟ କରିଛନ୍ତି । ଇନ୍ଦର ନିଜର ଓ ତାଙ୍କର ପୁଅଝିଅଙ୍କର ଆନନ୍ଦ ଓ ଫେସନ୍ ପାଇଁ ଏବଂ ସମାନସ୍କନ୍ଧ ବନ୍ଧୁବାନ୍ଧବଙ୍କର ଚର୍ଚ୍ଚା ପାଇଁ ଖୋଲା ହାତରେ ଶହଶହ ଟଙ୍କା ଖରଚ କରୁଛନ୍ତି । ପରକୁ ହାତ ଟେକି ଦେବାକୁ ସେ ଅତି କୁଣ୍ଠିତ । ଶାଗ-ବକାଳି ପରିବାବକାଳିଙ୍କ ସଙ୍ଗେ ପାଞ୍ଚ ପଇସା ଦଶ ପଇସା ପାଇଁ ଘଣ୍ଟାଏ ଧିକ୍ ଚକ୍ ହୁଅନ୍ତି । କିନ୍ତୁ ଭିକାରି ପଲଙ୍କୁ ଭିକବାର ବନ ମୁଟିଏ ମୁଠିଏ ଗୃହଳି ଦେବାରେ ହେଳା କରନ୍ତି ନାହିଁ । ଲୋକଦେଖାଣ ବଡ଼ଲୋକିଆ ଧର୍ମ ହୋଇପାରେ । ଏ ଜନ୍ମରେ କରଣ୍ଡି ଗୁନ୍ଧି ଆର ଜନ୍ମରେ ବାଳିଆ ଧରିବାର ପ୍ରୟାସ ବି ହୋଇପାରେ ।

ତାଙ୍କୁ ଇନ୍ଦର ଜଣେ ଭିକାରି ବୋଲି ଗ୍ରହଣ କରିଥିଲେ ପରା ! ମାତ୍ର ଦଶଟି ଟଙ୍କା ତାଙ୍କ ହାତକୁ ବଢ଼ାଇଦେଲେ । ହସହସ ହୋଇ ସ୍ୱର କଅଁଳେଇ ଅତି ଆପଣାର ହୋଇ କହିଲେ, କେଉଁକଥା କାହାର ଅଟକି-ଯାଉଛି କି ଭାଇ ? ସମୟ ଆସିଲେ ସବୁ ସମସ୍ୟାର ସମାଧାନ ଆପେଆପେ ହୋଇଯାଏ । ଦେଖୁଛ ତ ଏ ଘରର ସାହାଣମେଲା ଖରଚ ! କାହିଁରୁ ଟିକିଏ ଊଣା ହେଲେ କଳି ବଜିଉଠିବ । ଧନ ଆସୁଛି, କୁଆଡ଼େ ଭାସିଯାଉଛି । କାହାକୁ ନାହିଁ କରିବ ? ହାତ ଶୂନ । ହଁ, ଚଳିଯାଉଛି !

ୱାରକେଶ୍ୱ ଦଶ ଟଙ୍କାର ନୋଟ ଖଣ୍ଡି ଛାତିପକେଟରେ ରଖିଲେ । ଅଳପ ହସି କୃତକୃତ୍ୟ ହୋଇ କହିଲେ, ମତେ କ'ଣ ଜଣା ନାହିଁ କି ଇନ୍ଦର ? ଯେଉଁ ବାଉଁଶ ତେଉଁ ପୋଲ । ଦଶ ଟଙ୍କା ବଡ଼ କୁହେ, ସ୍ନେହ

ବଢ଼ । ଏଇ ମୋର ଲକ୍ଷେ ଟଙ୍କା ସଙ୍ଗେ ସମାନ । କୁଡ଼କୁଡ଼ ଖେଗ ଉପରର ପବତ୍ର ତୁଳସୀପତ୍ର ପାଦୁକ ।

ଇନ୍ଦର ତାଙ୍କର ପୃଥକ୍ ତନୁ ନୁଆଇଁ ନମସ୍କାର କଲେ । ଲାଜେଇ ହସିଲେ । ଭାବିଲେ, ଟଙ୍କା ପଚିଶଟି ନଦେଇଥିଲେ ଭଲ ହୋଇଥାନ୍ତା । ଅଳପ ହେଲା । କହିଲେ, ଅପାଙ୍କୁ ଆମର ନମସ୍କାର ଜଣାଇବ । କହିବ ଭାଇ, ବୋହୂଟି ଆମ ସମସ୍ତଙ୍କ ମନକୁ ପାଇଛି । ବନ୍ଧମକୁ ଭଲ ମାନିବ । ଦେବାନେବା ତ ଭଲ କରିବେ । ମୋର ଶକ୍ତି ଅନୁରୂପେ ସାହାଯ୍ୟ ଦେବାକୁ ମୁଁ କେବେ ପଛାଇବି ନାହିଁ, ଭାଇ !

ସାରକେଶରୀ ପ୍ରୀତ ହୋଇ କହିଲେ, ମୋତେ କ'ଣ ଜଣା ନାହିଁ କି ? ଗୋଟିଏ ବୋଲି ଭଣଜା । ତାକୁ ପୁଅଠୁଁ ଅଧିକ କରି ପାଳିଥିଲି । ବନ୍ଧମର ମାମୁଁମାଙ୍କ ଆଗ, ବାପମା ପଛ ।

ଉଲୁପୀର ଫଟୋ ଖଣ୍ଡି ପୁଣି ହସ୍ତଗତ କରିବାକୁ ସାରକେଶରୀ ଅନୁପାର ଚଢ଼ାଘରକୁ ଗଲେ । ଦୋତାଲାର କଣକିଆ କୋଠରିରେ ସେମାନଙ୍କର ସରଗରମ ଆଲୋଚନା ଚାଲିଥିଲା ।

ଅନୁପା, ନିରୁପା, ସଞ୍ଜୟ ଓ ବିମଳ । ଝିଅ ଦିହେଁ ପଲଙ୍କ ଉପରେ ବସିଥିଲେ ଗୋଡ଼ ଲମ୍ବାଇ । ବେକାଇଦା ଢଙ୍ଗ । ଟେବୁଲ୍ ଉପରେ ପ୍ଲେଟଗୁଡ଼ିଏ ଓ ଖାଲି କପ୍ ସସର୍ ଥୁଆ ହୋଇଥିଲା । ସେମାନେ ବ୍ରେ' ଫାଷ୍ଟ ଶେଷ କରିଥିଲେ । ପ୍ଲେଟ୍‌ରେ ତଥାପି କେତେଖଣ୍ଡ ବିସ୍କୁଟ୍, କାଜୁ ବାଦାମ୍, କମଳାଲେମ୍ବୁ କୋଲା ଓ କଦଳୀ ଚୋପା ଜମା ହୋଇଥିଲା ।

ଟେବୁଲର ଆର ପାଖରେ ନେଲନ୍ ବୁଣା ଚଉକିରେ ସାହେବୀ ପୋଷାକପିନ୍ଧା ସୁଦୃଶ୍ୟ ସ୍ୱାସ୍ଥ୍ୟବାନ ଯୁବକ ଦିହେଁ ବସି ସିଗାରେଟ ଟାଣୁଥିଲେ ।

ବୀରକେଶରୀଙ୍କୁ ଦେଖି ସମସ୍ତେ ନୀରବ ହେଲେ । ପଲଙ୍କ ଉପରୁ ଉଠି ଅନୁପା ଆଗେଇ ଆସିଲା । ହସହସ ହୋଇ କହିଲା, ଆପଣ କଣ ପ୍ରସ୍ତୁତ ହୋଇଗଲେଣି, ପିଉସା ! ଆଜ ଦୁଇଦିନ ରହିଥିଲେ କଣ କ୍ଷତି ହୋଇଥାନ୍ତା ?

ବୀରକେଶରୀ କହିଲେ, ଅନେକ ଦିନ ରହିଗଲିଣି, ମା ! ତମ-ମାନଙ୍କର ସ୍ନେହର ଡୋର ଛିଣ୍ଡାଇ ଯିବାକୁ କ'ଣ ମନ ହେଉଛି ? ତୋ'ର ପିଉସୀଙ୍କର ଦେହ ଭଲ ନାହିଁ ।

ବସନ୍ତୁ, ପିଉସା ! ସଞ୍ଜୟଭାଇଙ୍କୁ ଆପଣ ଚିହ୍ନନ୍ତି । ସେ ହେଉଛନ୍ତି ବନହଂସୀ ମାଉସୀଙ୍କ ପୁଅ ବିମଳବାବୁ ।

ସେ ଦିହେଁ ନିପଟ ମଲମୁଣ୍ଡିଆ, ମୋଫସଲିଆ ଦୁର୍ବଳ ବୁଢ଼ାଟିକୁ ହାତ ଯୋଡ଼ି ପ୍ରଣାମ କଲେ ।

ବୀରକେଶରୀ ଅଳ୍ପ ଝଣ୍ଡିଏ ଚଉକିରେ ବସିଲେ । ଅସମ୍ପୃକ୍ତ ଗୀତରେ କହିଲେ, ପିଲାଦୁହିଁଙ୍କୁ ଦେଖି ମୁଁ ଭାରି ଖୁସି ହେଲି । ରୂପ ଓ ଢଙ୍ଗ ଯେମିତି ସୁନ୍ଦର, ଆଖିର ଜ୍ୟୋତି ସେମିତି ତେଜସ୍ୱାନ୍ । ମୁଁ ଆଗରୁ କହିରଖୁଛି, ସଞ୍ଜୟବାବୁ ଓ ବିମଳବାବୁ ନିଶ୍ଚୟ ବଡ଼ ବଡ଼ ହାକିମ ହେବେ ।

ନରୁପା କହିଲା, ସଞ୍ଜୟଭାଇ ଏଥର ଡେପୋଟି ହେବେ, ପିଉସା ! ବିମଳବାବୁ ଆଇ.ଏ.ଏସ. ପରୀକ୍ଷା ଦେବାକୁ ଏବର୍ଷ ପ୍ରସ୍ତୁତ ହେଉଛନ୍ତି ।

ବୀରକେଶରୀ ମୁଣ୍ଡ ହଲାଇ କହିଲେ, ସେ ତ ହେବେ । ମୋର ଏଥିରେ ସନ୍ଦେହ ନାହିଁ । ମୁଁ ଆଶୀର୍ବାଦ କରୁଛି । ସମସ୍ତେ ଧନ ଅର୍ଜନ କରୁଛନ୍ତି, ସମସ୍ତେ ମା, କିନ୍ତୁ କିଏ ବଡ଼ ପାହ୍ୟା, ବଡ଼ ପାର୍ଶ୍ୱର ପାଇ ମଣିଷ ଚଳାଇବାକୁ ଜନ୍ମ ହୋଇଛି, କପାଳ ଓ ଆଖିର ତେଜକୁ ଚାହିଁଲେ ଜଣା ପଡ଼େ ।

ଅନୁପା ପଚାରିଲା, ବିକଭାଇଙ୍କ କପାଳ ଓ ଆଖି କ'ଣ ଅଳ୍ପ ତେଜସ୍ୱାନ୍, ପିଉସା ?

ନ ହୋଇଥିଲେ ସେ କସମ୍ମ ହୁଅନ୍ତା କାହିଁକି ? ଛାଡ଼ ତା କଥା । ସେ ଗୋଟିଏ ହତଭାଗ୍ୟ । ସମସ୍ତେ ଆକାଶରେ ଘୁଡ଼ି ଉଡ଼ାଉଛନ୍ତି । ଯାହାର ସୂତା ଯେତିକି ଲମ୍ବା, ତା ଘୁଡ଼ି ସେତିକି ଉଚ୍ଚକୁ ଉଠେ । ଆରେ, ତମର ଆଲୋଚନାରେ ମୁଁ ବାଧା ଦେଲି । ଗ୍ରାମକୁ ଫେରିଯାଉଛୁ । ଡେରି ହେବ । ସେଇ ଫଟୋଖଣ୍ଡି ତୋ ପାଖରୁ ନେବାକୁ ଆସିଥିଲି ।

ସେଟଖଣ୍ଡିକ ମୁଁ ଯତ୍ନରେ ରଖିଛୁ । ଜଲ୍ପୀ ଭାରି ସୁନ୍ଦର ଲାଜକୁଳୀ ଝିଅଟିଏ ! ଏକା ମୋ ମନକୁ ନୁହେଁ, ସଞ୍ଜୟଭାଇ, ବିମଳବାବୁ ବି ତା'ର ଚେହେରାକୁ ପସନ୍ଦ କରିଛନ୍ତି । ସେମାନେ ମୋ ସଙ୍ଗେ ଏକମତ ଯେ ଜଲ୍ପୀର ମୁହଁର ଗଢ଼ଣ ସେକାଳର ମିଶର ଦେଶର ରାଣୀ କ୍ଲିଓପେଟ୍ରାଙ୍କ ଗଢ଼ଣ ପରି । ସେଇ ବିଷୟରେ ଆମର ଆଲୋଚନା ହେଉଥିଲା ।

ସଞ୍ଜୟ ହସି କହିଲା, ହଁ, ପିଉସୀ ! ବିମଳର ମତ ଭିନ୍ନ ପ୍ରକାର ।

ଅନୁପମା କହିଲା, ମୋ'ର ବି ।

ଅନୁପମା କହିଲା, ମୁଁ ସେ ଫଟୋକୁ ବିକାଶଭାଇଙ୍କୁ ଦେଖାଇବି । ସେ ପସନ୍ଦ କରିବେ ଏଥିରେ ମୋର ସନ୍ଦେହ ନାହିଁ । ବନହଂସୀ ମାଉସୀଙ୍କ ଗାଡ଼ିରେ ବିମଳବାବୁ ଆମକୁ ଏବେ ଭୁବନେଶ୍ୱର ନେଇଯିବାକୁ ରାଜି ହୋଇଛନ୍ତି । ଗୋଲାପକୁ ମୁଁ ଦେଖିଆସିବି । ବିକାଶଭାଇ ସେଇଠି ଥିବେ, ନୋହିଲେ ତାଙ୍କ ବସାରେ ଥିବେ—

ସଞ୍ଜୟ କହିଲା, ବିକାଶ ଓ ଅଞ୍ଜନା ସଞ୍ଜ ଆଗରୁ ଆମ ଘରକୁ ଆସିବେ । ତାଙ୍କର ପ୍ରୋଗ୍ରାମ ବଦଳିଛି । କାହିଁକି କଷ୍ଟ କରି ତମେ ଆଜି ଭୁବନେଶ୍ୱର ଯିବ ? ଆମର ଗାଡ଼ି ତ ନାହିଁ ।

ଅନୁପମା କହିଲା, ତମେ ନ ଗଲେ ନାହିଁ । ଗୋଲାପକୁ ମୁଁ ଯିବି ବୋଲି ଫୋନ୍ କରିଛି । ସେ ଅପେକ୍ଷା କରିଥିବ । ନ ଗଲେ, ଫୋନ୍ କରି ମନା କଲେ ସେ କଅଣ ଭାବିବ ?

ନିରୁପା କହିଲା, ଅଞ୍ଜନା ଅପା ଯଦି ସଞ୍ଜରେ ଆସିବେ, ବଳେ ଦେଖା ହେବ । ମୁଁ ଏବେ ଯିବି ନାହିଁ ।

ଅନୁପା ସାମାନ୍ୟ ଉତ୍ତେଜିତ ହୋଇ କହିଲା, ତେବେ ମୁଁ ଏକା ଯିବି । ଚାଲନ୍ତୁ ବିମଳବାବୁ !

ବୀରକେଶରୀ କହିଲେ, ମୁଁ ତୋ ସଙ୍ଗରେ ଗଲେ ହେବ, ଅନୁପା ! ବିକ୍ରମକୁ ଓ ତାର ବସାକୁ ଦେଖିଆସିବି ।

ସଞ୍ଜୟ କହିଲା, ବିକ୍ରମବାବୁ ମତେ କହୁଥିଲେ ଯେ ସେ ବସା ବଦଳାଉଛନ୍ତି । ତାଙ୍କ ସଙ୍ଗରେ ଯେଉଁ ଦୁଇଜଣ ବନ୍ଧୁ ତାଙ୍କର ଥିଲେ, ତା ଭିତରୁ ଜଣେ ବିବାହିତ । ବସାଟି ତାଙ୍କର । ସେ ପିଲାକୁଟୁମ୍ବ ଆଣୁଛନ୍ତି । ବିକାଶର ଚେଷ୍ଟାରେ ବିକ୍ରମବାବୁଙ୍କୁ ଆଠ ନମ୍ବର ଇଉନିଟ୍‌ରେ ଗୋଟିଏ ଦି'ବଖୁରିଆ ଘର ମିଳିଛି । କେଉଁଠି ସେ ବସା ମୋତେ ଜଣାନାହିଁ ।

ବୀରକେଶରୀ କହିଲେ, ବିକ୍ରମ ସଙ୍ଗେ ଦେଖାହେଲେ ବଳେ ସେ କହିବ । ମୁଁ ତା ବସାକୁ ଚାଲିଯିବି ।

ସବୁ ବିଷୟର ସମାଧାନ କଲା ଅନୁପା । ସେ ହାତ ଯୋଡ଼ି ବିମଳକୁ ଚାହିଁ କହିଲା, କ୍ଷମା କରିବେ ବିମଳବାବୁ ! ଆପଣଙ୍କୁ ଅଯଥା ଅସୁବିଧାରେ ପକାଇଲି । ମୁଁ ପୁଣି ଭାବି ଦେଖିଲି, ଭୁବନେଶ୍ୱର ଧାଇଁ ମୋ ଗୋଲାପକୁ ଅସୁବିଧାରେ ପକାଇବା ଉଚିତ ନୁହେଁ । ସେ ତ ବଳେ କଟକ ଆସିବ ।

ହାତ ମୁକୁଳାଇ ଅନୁପା ବୀରକେଶରୀଙ୍କୁ କହିଲା, ଗ୍ରାମରେ ଅପାଙ୍କର ଦେହ ଭଲ ନାହିଁ । ଆପଣଙ୍କର ଗ୍ରାମକୁ ଫେରିବାର କଥା । ଫେରି ଯାଉନ୍ତୁ । ଉଲୁପୀଙ୍କର ସେ ଫଟୋଟି ଫେରାଇନିଅନ୍ତୁ, ଦେଉଛି ।

ଅନୁପା ତାର ଦୋତାଘରୁ ବାରଣ୍ଡାକୁ ଆସିଲା । ତା ପରେ ସେ ଅଦୃଶ୍ୟ ହେଲା ।

ବୀରକେଶରୀ ଓ ଅନ୍ୟମାନେ ତାକୁ ଅପେକ୍ଷା କରି ବସିଲେ । ନୀରବତା ଭଙ୍ଗ କରିବାକୁ ବୀରକେଶରୀ ସଞ୍ଜୟକୁ ପଚାରିଲେ, କ'ଣ ବାବା ସେ କଲେଜଫେଟର ଛବି ?

ସଞ୍ଜୟ କହିଲା, ଦୁଇ ହଜାର ବର୍ଷ ପୂର୍ବେ ସେ ମିଶର ଦେଶର ରାଣୀ ଥିଲେ । ତାଙ୍କର ନାମ କ୍ଲିଓପେଟ୍ରା । ସେ କାଳରେ ତାଙ୍କ ଦେଶର ରାଜପରିବାରର ପ୍ରଥା ଅନୁରୂପେ ସେ ତାଙ୍କର ଭାଇ ରାଜା ଟଲେମିଙ୍କୁ ବିବାହ କରିଥିଲେ ।

ସହୋଦର ଭାଇ ?

ହୋଇଥିବେ । କ୍ଲିଓପେଟ୍ରା ଅତି ସୁନ୍ଦରୀ ଥିଲେ । ଇଟାଲି ଦେଶର ରୋମାନ ଲୋକମାନଙ୍କ ସଙ୍ଗେ ଯୁଦ୍ଧରେ ତରୁଣ ରାଜା ଟଲେମି ନିହତ ହେଲେ । କ୍ଲିଓପେଟା ରୋମର ରାଜା ଜୁଲିଅସ ସିଜାରଙ୍କୁ ପୁଣି ବିବାହ କଲେ । ସିଜାର ମିଶର ଦେଶର ବି ରାଜା ହେଲେ ।

ବିମଳ କହିଲା, କ୍ଲିଓପେଟ୍ରା ସିଜାରଙ୍କୁ ବିବାହ କରି ନ ଥିଲେ, ମଉସା, ସେ ସିଜାରଙ୍କର ପ୍ରେୟସୀ ହୋଇ ରହିଲେ ।

ବିମଳର ପ୍ରତିବାଦକୁ ଭ୍ରୂକ୍ଷେପ ନ କରି ସଞ୍ଜୟ କହିବାକୁ ଲାଗିଲା, ରୋମ୍ ସହରକୁ ଫେରିଲାପରେ ସିଜାରଙ୍କ୍ ତାଙ୍କର ଜଣେ ସେନାପତି ଛୁରୀ ଭୂଷି ମାରିଦେଲା । କିଏ ରାଜା ହେବ, ସେଥିପାଇଁ କନ୍ଦଳ ଲାଗିଲା । ପ୍ରତିଦ୍ୱନ୍ଦୀ ହେଲେ ତାଙ୍କର ନାତି ଅକ୍‌ଟାଭିଏନ୍ ଓ ନାତୁଣୀଜୋଇଁ ଆଣ୍ଟୋନି ।

ବିମଳ କହିଲା, ଆଣ୍ଟୋନି ଅକ୍‌ଟାଭିଏନ୍‌ର ଭିଣୋଇଁ ।

ନିରୁପା ପଚାରିଲା, ଆଣ୍ଟୋନିର ଭିଣୋଇଁଙ୍କ ନାମ ପରା ଅଗଷ୍ଟସ ?

ସଞ୍ଜୟ କହିଲା, ସେ ଏକା ଲୋକ । ଅକ୍‌ଟାଭିଏନ୍ ତାଙ୍କର ପ୍ରଥମ ନାମ । ପରେ ସେ ଅଗଷ୍ଟସ୍ ନାମରେ ପରିଚିତ ହେଲେ । ତୁ ନିଜେ ଦେଖିବାକୁ ଯାଇଥିଲୁ, ପଚାରୁଛୁ କ'ଣ ?

ମୁଁ ବୁଝିପାରିଲି ନାହିଁ । ଖାଲି ସେ ନଙ୍ଗଳୀ ଛବି, ନଙ୍ଗଳୀ ନାଚ, ନଙ୍ଗଳୀ ଢଙ୍ଗ ଦେଖି ମତେ ଲାଜ ମାଡ଼ିଲା, ଚିଡ଼ ମାଡ଼ିଲା । ମୋ ଆଖିକୁ ନିଦ ଘୋଟିଆସିଲା । ଭାରି ଅସନା ଛବି ।

ସଞ୍ଜୟ କହିଲା, ସେକାଳର ସେ ଦେଶର ରୀତି ଯାହା, ଛବିରେ ସେଇଆ ଦେଖାହୋଇଛି ।

ତମେ କହିଲ, ତମର ସେ ଛବି ଦେଖିବାକୁ ଯିବା ଉଚିତ ହୋଇ-ନାହିଁ । ବିଜ୍ଞାପନରେ ସଫା ଲେଖାହୋଇଥିଲା ଯେ ସେ ଛବି କେବଳ ବୟସ୍କଙ୍କ ପାଇଁ ।

ସଞ୍ଜୟ ଅପ୍ରସ୍ତୁତ ହେଲାପରି କହିଲା, ସେମିତି ଲେଖା ହୁଏ । ନୋହିଲେ ଟିକେଟ୍ ବିକ୍ରି ହେବ କପରି ? ବୟସରେ ତୋ ଠାରୁ ଢେର୍ ସାନ ସାନ ପୁଅ ଝିଅ ସେମାନଙ୍କର ଅଭିଭାବକମାନଙ୍କ ସଙ୍ଗେ ଭିଡ଼ ଜମାଇ-ଥିଲେ । ମୋଟେ ଅସନା ଛବି ନୁହେଁ ।

କ୍ଲିଓପେଟ୍ରା କଅଣ କଲେ, ପୁଅ ?

ସଞ୍ଜୟ କହିଲା, ଅକ୍ଟାଭିଆନ ଓ ଆଣ୍ଟୋନିଙ୍କ ଭିତରେ ରୋମ ସାମ୍ରାଜ୍ୟ ବଣ୍ଟା ହେଲା । ମିଶର ଦେଶ ଅଗଷ୍ଟସ ଅକ୍ଟାଭିଆନଙ୍କ ଭାଗରେ ପଡ଼ିଲା । ପରମାସୁନ୍ଦରୀ କ୍ଲିଓପେଟ୍ରାଙ୍କର ରୂପରେ ମୁଗ୍ଧ ହୋଇ ଆଣ୍ଟୋନି ତାଙ୍କର ପତ୍ନୀ, ଯିଏ ଅକ୍ଟାଭିଆନଙ୍କର ଭଉଣୀ, ତାଙ୍କୁ ପରିତ୍ୟାଗ କରି କ୍ଲିଓପେଟ୍ରା ରାଣୀଙ୍କୁ ବିବାହ କଲେ । ଗୋଟିଏ ବର୍ଷ ପରେ ପୁଣି ଶଳା ଭିଣୋଇଙ୍କ ଭିତରେ ଯୁଦ୍ଧ ହେଲା । ଅକ୍ଟାଭିଆନଙ୍କର ଖଣ୍ଡାରେ ଆଣ୍ଟୋନି ମଲେ । ଏ ସମ୍ବାଦ ପାଇ ରାଣୀ କ୍ଲିଓପେଟ୍ରା ଗୋଟିଏ ବିଷଧର ସର୍ପକୁ ହାତରେ ଧରି ତାର ଦଂଶନରେ ଆତ୍ମହତ୍ୟା କଲେ ।

ନିରୁପା କହିଲା, ତା ଆଗରୁ ମୋ ନିଦ ଭାଙ୍ଗିଥିଲା, ପିଉସା ! ଗ୍ଲେଟ ସାପଟିକୁ ତାଙ୍କ ହାତରେ ଦେଖି ଆଉ ସେ ରାଣୀ ଯେତେବେଳେ ଟଳି-ପଡ଼ିଲେ, ମୁଁ ଡରିକରି ଅପାକୁ ଜୁଣ୍ଟାଇ ଧରିଲି । ଅପା କାନ୍ଦୁଥିଲା ।

ଗୀରୁକେଶରୀ କହିଲେ, କଏ ନ କାନ୍ଦିବ ଯେ !

ନିରୁପା କହିଲା, ସଞ୍ଜୟଭାଇ ହସୁଥିଲେ । ଅପାର କାନ୍ଧକୁ ହଲାଇ-ଦେଇ କହିଲେ, ତମେ ଭାରି ଦୁର୍ବଳ !

ସଞ୍ଜୟ କହିଲା, ନୁହେଁ କି ?

ଗୀରୁକେଶରୀ କହିଲେ, ଅନୁପାର ମନ ଅତି କୋମଳ । ଆଖିରେ ଲୁହ ଆସିବା ସ୍ୱାଭାବିକ । ହେଉ କେବକାଳର ଘଟଣା, ଆଖି

ଆଗରେ ଘଟିଲା ତ ! କୃଷ୍ଣ ଯେତେବେଳେ ମଥୁରାକୁ ଯାଆନ୍ତି, ଲକ୍ଷ୍ମଣ ଯେତେବେଳେ ସୀତାଙ୍କୁ ନିର୍ବାସନ କରନ୍ତି, ସତୀ ଯେତେବେଳେ ଦକ୍ଷ-ରାଜାଙ୍କର ଯଜ୍ଞକୁଣ୍ଡରେ ଝାସ ଦିଅନ୍ତି, ପୁରାଣ ପଢ଼ିଲାଲୋକେ, ଶୁଣିଲାଲୋକେ, ନାଟତାମସା ଦେଖିଲାଲୋକେ ସମସ୍ତେ କାନ୍ଦନ୍ତି ।

ଅନୁପା ଫେରିଆସିଲା । ତାର ମୁହଁଟି କାର୍ତ୍ତିକ ବିଷଣ୍ଣ ଦିଶୁଥିଲା । ଦ୍ୱାରବନ୍ଧର ଆରପାଖେ ବାରଣ୍ଡା ଉପରେ ଠିଆହୋଇ ସେ ଡାକ କହିଲା, ପିଉସା, ଶୁଣିବେ କି ?

ମତେ ଡାକୁଛୁ, ମା ?

ହଁ କହି ଅନୁପା ମୁହଁ ଫେରାଇ ବାରଣ୍ଡା ଆଡ଼କୁ ଆଗେଇଗଲା । ଅଦୃଶ୍ୟ ହେଲା ।

ବୀରକେଶରୀ ତାର ପଢ଼ାଘରଭିତରୁ ପଦାକୁ ଆସି ଦେଖିଲେ, ଅନୁପା ଦିଓଟି ପାହାଚ ଓହ୍ଲାଇ ପଛକୁ ମୁହଁ ବୁଲାଇ ଠିଆ ହୋଇଛି ।

ବୀରକେଶରୀ ପାହାଚ ଓହ୍ଲାଇଲେ । ଅନୁପାର ପାଖରେ ହେଲାରୁ ଅନୁପା ଛୋଟ ଲଫାପାଟିଏ ତାଙ୍କ ହାତକୁ ବଢ଼ାଇଦେଲା । କହିଲା, ଯୁଆର ଭିତରେ ସେ ଫଟୋଟି ଅଛି । ଅପାଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଥିଲି । ସେଥିପାଇଁ ଡେରି ହେଲା । ସେ ଚିଠି ବି ଏଥିରେ ଅଛି । ଅପାଙ୍କୁ ଦେବେ, ପିଉସା ! ଆପଣ ଖୋଲିବେ ନାହିଁ । ପକେଟରେ ରଖିଦିଅନ୍ତୁ ।

ଅନୁପା ପାହାଚ ଓହ୍ଲାଇବାକୁ ଲାଗିଲା ।

ବୀରକେଶରୀ ମୁଦା ହୋଇଥିବା ଲଫାପାଟିକୁ ଛାତି ପକେଟରେ ରଖିଲେ । ଲଫାପା ଉପରେ ଠିକଣା ଲେଖା ହୋଇ ନ ଥିଲା । କଅଣ ସେ ଚିଠି ଲେଖିଛି, ସେ ବିଷୟରେ ଚିନ୍ତା କରିବାକୁ ସେ ବେଳ ପାଇଲେ ନାହିଁ । ଅନୁପାକୁ ପଚାରିବାର ସୁଯୋଗ ବି ମିଳିଲା ନାହିଁ । ସେ ତରତର ହୋଇ ତଳକୁ ଓହ୍ଲାଇ ଯାଇଥିଲା ।

ବୀରକେଶରୀଙ୍କ ପଛେ ପଛେ ନିରୁପା, ସଞ୍ଜୟ ଓ କମଳ ପାହାଚରେ ଓହ୍ଲାଉଥିଲେ ।

ସେ ଦେଖିଲେ, ଇନ୍ଦ୍ରର ବୈଠକଘରେ ବସି ବାଜରିବନ୍ଧୁ ସଙ୍ଗେ ହସଖୁସିରେ ଗପ କରୁଛନ୍ତି । ସୁରୂପା ଓ ସାନନ୍ଦ ସେଇଠି ଅଛନ୍ତି । ଅନୁପା ଇନ୍ଦ୍ରଙ୍କର ତଳମହଲାର ଶୋଇବାଘରକୁ ଗଲା । ସଞ୍ଜୟ, ଦମନ ଓ ନିରୁପା ପଛରୁ ଆସି ସେଠି ବୈଠକଘରେ ପଶିଲେ ।

ସବୁ କାରବାର ତାଙ୍କୁ ଅବୋଧ ଲାଗିଲା । ଲଫାପା ଭିତରେ ଅନୁପା ଆଜି କଅଣ ରଖିଛି ଜାଣିବାକୁ ମନ ଛକପକ ହେଲା । ଭିତରର ମନ ପରି ପୁଣି ତାଙ୍କର ମନ ସନ୍ଦେହ ଓ ଉଦ୍‌ବିଗ୍ନତାରେ ଛଟପଟ ହେଲା ।

ସେ ପଦାକୁ ଆସିଲେ ।

ଦମନ ଓ ବାଜରିବନ୍ଧୁର ଦୁଇଟି କାର୍ ମଝିରେ ଥିବା ସାମାନ୍ୟ ଫାଙ୍କରେ ଗଳି ସେ ଆର ପାଖକୁ ଗଲେ । ତାଙ୍କର ରହଣି କୋଠରିର ବାରଣ୍ଡା ଉପରେ ପାଦ ରଖି ସେ ନିଜକୁ ନିଜେ ପଚାରିଲେ, ଗ୍ରାମକୁ ଯିବେ, ନା ଆଗ ଭୁବନେଶ୍ୱର ହରମ ପାଖକୁ ଯିବେ ?

ସମୟ ଦଶଟା ହେବ । ସମସ୍ତଙ୍କ ପାଖରୁ ସେ ବିଦା ହୋଇ ଆସିଛନ୍ତି । ଯୁଆଡ଼କୁ ହେଲେ ଏଠାରୁ ତାଙ୍କୁ ଯିବାକୁ ପଡ଼ିବ ।

ହରମକେଶରର ପୁରୁଣା ବସା, ଅବା ନୂଆ ବସା ଠାବ କରିବା ଶାର-କେଶରଙ୍କ ପକ୍ଷରେ କାଠିକର ପାଠ ହେଲା । ତାର ଅଫିସଟା କେଉଁଠି, ତାହା ବି ସେ ଠଉର କରିପାରିଲେ ନାହିଁ । ସାରା ଦ୍ୱିପ୍ରହର ସେ ନୂଆ ରାଜଧାନୀର କେତେ ରାସ୍ତା, କେତେ ଉପରାସ୍ତାରେ ବୁଲି ବୁଲି ହାଲିଆ ହୋଇପଡ଼ିଲେ ।

କେତେ ମାର୍ଗ, କେତେ ଇଉନିଟ୍, କେତେ ନଗର, ବିଭିନ୍ନ ଟାଇପ୍‌ର ଘରଗୁଡ଼ିକ ସବୁ ଏକାପରି । ହରମ କେଉଁ ଟାଇପର ଘରେ ରହେ, ତାର ନମ୍ବର କେତେ, ସେ ଭୁଲି ଯାଇଥିଲେ । କ୍ଲାନ୍ତ ହୋଇ, ସାମାନ୍ୟ ଜଳଯୋଗ କରି ସେ ପୁଣି ବାହାରିପଡ଼ିଲେ ।

ପାଦ ଆଉ ଚଳିବାକୁ ଚାହୁଁନାହିଁ । ଦୁର୍ବଳ ଦେହ ଥରିଉଠୁଛି । ଯାହାକୁ ପଚାରିଲେ ସେ ମୁହଁ ମୋଡ଼ି ଚାଲିଯାଉଛି । କେହି ବସନ୍ତକୁ ଚିହ୍ନନ୍ତି ନାହିଁ । ହାକିମ ପ୍ରକାଶବାବୁଙ୍କୁ ବି ଜାଣନ୍ତି ନାହିଁ । ଶ୍ରେଷ୍ଠ ସହରର ବଡ଼ ବସ୍ତି । ବଡ଼ ବଡ଼ କୋଠା । ତା' ଭିତରେ ସେମାନେ ନଗଣ୍ୟ । ହୋଇଥାନ୍ତେ ଯଦି ଦେବନାଥଙ୍କ ପରି ଜଣେ ଅମିନ ବାବୁ, କିଏ ବା ନ ଚିହ୍ନିଥାନ୍ତା ?

ସ୍ଥିରକଲେ, ଆଉ ସେ ଚେଷ୍ଟା କରିବେ ନାହିଁ । କୁଳାଙ୍ଗାର ପୁଅର ଯେମିତି ପର ଲାଗିଲା, ସେ ଉଡ଼ିଯାଇ ଏ ଡାଳ ସେ ଡାଳ ହେଲା । ଯେଉଁ ବାପ ମା ଆଧାର ଦେଇ ବଞ୍ଚାଇଲେ, ତାଙ୍କୁ ସେ ପର କରିବାକୁ ବସିଲାଣି । ତାକୁ କୌଶଳରେ ପିଞ୍ଜରା ଭିତରକୁ ନ ଆଣିଲେ ସେ ଦଗାଦେବ ।

ଭାବିଲେ, ସେ ବସ୍ ଚଢ଼ି ଫୁଲନଖରା ଫେରିବେ । ସେଇଠୁ ଚାଲି ଚାଲି ଗ୍ରାମକୁ ଯିବେ ।

ମାର୍କେଟ ବିଲ୍ଡିଂ ଆଗ ରାସ୍ତାରେ ଦେହକୁ ଠେଲି ଠେଲି ନେଉଁଣୁ ଛକ ପାଖରେ କ୍ଲାନ୍ତ ହୋଇ ଅଟକିଗଲେ । କାର୍, ଜିପ୍, ରିକ୍ସା ଗୋଟିକ ପରେ ଗୋଟିଏ ଆସୁଛି, ଯାଉଛି । ଟିକିଏ ଫାଙ୍କ ହେଲେ ସେ ରାସ୍ତାର ଆର ପାଖକୁ ଯିବେ ଏହାହିଁ ଚାହୁଁଛନ୍ତି ।

ଆଗରେ ଦୁଇଟି ରିକ୍ସାର ମୁହାଁମୁହିଁ ସଂଘର୍ଷ । କାର୍‌ଗୁଡ଼ିକ ଦୁଇ ପାଖରେ ଅଟକିଗଲା । ଗୋଟିଏ କାର୍‌ର ଖୋଲା ଝରକା ବାଟେ ତାଙ୍କର ଦୃଷ୍ଟିରେ ପଡ଼ିଲା ଅନୁପା । ତା' ପାଖରେ ସେହି ତରୁଣଟି, ଯାହାର ନାମ ଅମଳ । ଗାଡ଼ିର ଷ୍ଟିୟରିଂ ଧରି ଜଣେ ପ୍ରୌଢ଼ା ବସିଛନ୍ତି । ସେ ଇତର ନୁହନ୍ତି । ସ୍ୱାସ୍ଥ୍ୟବତୀ ସୁନ୍ଦରୀ ତରୁଣୀ । ମୁଣ୍ଡରୁ ବସନ ଖସିପଡ଼ୁଛି ।

ଅନୁପାର ସୁନ୍ଦର ମୁହଁରେ ଲଜଲଜ ହସ ଲାଗିରହିଛି । ସେ ଜଳଜଳ କରି ଝରକା ବାଟେ ପଦାକୁ ତାଙ୍କର ଆଡ଼କୁ ଚାହିଁରହିଛି । ଚିହ୍ନିପାରୁନାହିଁ, ଅବା ଚିହ୍ନି ମଧ୍ୟ ନ ଚିହ୍ନିଲାର ଢଙ୍ଗ ପ୍ରକାଶୁଛି ।

ସେ ଅନୁପା ନୁହେଁ କ ? ସେ ଭୁଲ ଦେଖିଲେ ? ରିକ୍ସା ଢଉଟି-ସିଗ୍ରାର ଦୁଇକଡ଼କୁ ଆଡ଼େଇଗଲା । କାର୍ଗୁଡ଼ିକ ହର୍ଣ୍ଣ ବଜାଇ ପୁଣି ଯିବା-ଆସିବା କଲେ ।

ଧୀରେ ଧୀରେ ଆଗେଇ ଯାଉଣୁ ପୁଣି ଭାବିଲେ, ତାଙ୍କର ଧାରଣା ଭୁଲ ହୋଇପାରେ । ଏବକା ଆଧୁନିକା ଝିଏ ସମସ୍ତେ ଏକାପରି ତାଙ୍କ ଆଖିକୁ ଦିଶନ୍ତି । ଆଧୁନିକ ପୁଅମାନେ ବି । ସାହେବମାନେ ଏ ଦେଶରୁ ଗଲେଣି ଛାଡ଼ି ଚାଲିଯାଇଛନ୍ତି । ଦେଶର ଶାସନ ପାଇଁ ତାଙ୍କର ଚିନ୍ତାଧାରାର ଆଇନକାନୁନ ଥୋଇଦେଇ ଯାଇଛନ୍ତି । ଶାସନ ଚଳାଇବାକୁ ତାଙ୍କ ଭୂଇଁର ଭାଷା, ତାଙ୍କ ଚିନ୍ତାପ୍ରଣାଳୀର ଶିକ୍ଷା ବାନ୍ଧିଦେଇ ଯାଇଛନ୍ତି । ତାଙ୍କର ଆଦବକାଇଦାର ଧରଣ, ପୋଷାକ ପିନ୍ଧାର ରୀତି ରହିଛି । ସେମାନେ ଆଜି କଏ ହୋଇଥିବେ ।

ଆଗରେ ବସ୍ ଷ୍ଟାଣ୍ଡ । ତାଙ୍କର ଭୁବନେଶ୍ୱର ଅଭିଯାନ ବ୍ୟର୍ଥ ହେଲା । ବେଳ ନଇଁଲାଣି । ଯାତ୍ରୀ ଭିଡ଼ । ଜଳ ଲାଗିଛି । ଟିକେଟ ଖଣ୍ଡେ ପାଇବାକୁ କେତେ ଡେରି ହେବ କେଜାଣି ! ବସ୍ ଭିତରେ ଚାପିଚୁପି ଠିଆ ହେବା ତାଙ୍କ ଭାଗ୍ୟରେ ଅଛି । କାହାର ଅଜାଣତ ଖୁନ୍ଦା, କହୁଣିଆ ତାଙ୍କର କପାଳରେ ଥିବ । କାହାର ଜୋତାର ଆଘାତ ତାଙ୍କର ଚପଲ ପିନ୍ଧା ପାଦରେ ଲାଗିବ । ବସ୍ ଭିତରେ ମୋହବତ୍ ନାହିଁ । ଦୁର୍ବଳ ବୁଢ଼ାଟିଏ ବୋଲି କାହାର ଦୟାମାୟା, ସହାନୁଭୂତି ହେବ ନାହିଁ ।

ବଡ଼ କଲବଲ । ପୁଅଙ୍କର ଦର୍ଶନ ପାଇବାକୁ ଏତେ ହଇରାଣ ! ଯାହା ହେବାର ହୋଇଛି । କାହା ଉପରେ ଆଉ ସେ ନିର୍ଭର କରିବେ ନାହିଁ । ଜମି ବନ୍ଧା ଦେବେ । ଦେବନାଥଙ୍କର ସବୁ ଟଙ୍କା ଓ ଗ୍ରାମର ଖୁଚୁରା ଦେଣା ସେ ପରିଶୋଧ କରିବେ । ଚନ୍ଦନାଙ୍କ ହାତରେ ଦୁଇତିନ ମାସ ଚଳିବାକୁ ଟଙ୍କା ଦେଇ, ସେ ଜୟପୁର ଚାଲିଯିବେ । ହାତ ଚଳୁଥିବା ଯାଏ କାମ କରି ଦୁହିଁଙ୍କର ପେଟ ପୋଷିବେ ।

କଉ ଲାଇନରେ ସେ ଠେଲିହୋଇ ଆଗକୁ ଘୁଞ୍ଚୁଛନ୍ତି । ମନ୍ଥର ଗତି । ଲୋକଉପାସ ସହିଲା ପେଟ ଆତୁର ହୋଇ କୋବାଳ ଛାଡ଼ିଲଣି । ତାଙ୍କ କଡ଼ରୁ ଗହଳ ଭିତରୁ କିଏ ଡାକ ଛାଡ଼ିଲା, ବାପା !

ବସନ୍ତର ତୁଣ୍ଡ । ସତେ ତ, ବସନ୍ତ ! ପୂରାପ୍ୟାଣ୍ଟ ଓ ଚକ ଚକ ନୂଆ ହାଓ୍ବାଇନ ପିନ୍ଧିଛି । ମୁଣ୍ଡରେ ବାଳ କାଟିଛି । ନିର୍ମଳ ନରୁଡ଼ିଆ ସୁନ୍ଦର ମୁହଁ । ସ୍ୱାସ୍ଥ୍ୟ ବଦଳିଛି ।

ବସନ୍ତ ନମସ୍କାର କଲା ।

ଆନନ୍ଦ ଓ ଗର୍ବରେ ବୀରକେଶରୀଙ୍କର ଛାତି ପୁଲକିଉଠିଲା । ସେ କଉ ଲାଇନ ଛାଡ଼ି ବସନ୍ତର ପାଖକୁ ଆସିଲେ । ଦୁଇ ଆଖି ଛଳ ଛଳ ହେଲା । ତୁଣ୍ଡରୁ କଥା ଫୁଟିଲା ନାହିଁ ।

ବସନ୍ତ ବ୍ୟଥିତ ହୋଇ କହିଲା, ଆମ ସାହେବଙ୍କ କୋଠିରୁ ଏବେ ଅଫିସକୁ ଫେରିଲି । ପିଅନ ଜଣେ କହିଲା, ଆପଣ ମତେ ଖୋଜୁଥିଲେ । ଆଜି ସକାଳେ ଆମେ ବସା ବଦଳାଇଲୁଁ ଯେ —

ଆଉ ଜଣେ ଯୁବକ ବୀରକେଶରୀଙ୍କୁ ପ୍ରଣାମ କଲା । ସେ ବି ବସନ୍ତ ପରି ପୋଷାକ ପିନ୍ଧିଛି । ତଫାତ୍ ଏତିକି ଯେ ସେ ବେକରେ ଗୋଟାଏ ଟାଇ ଭିଡ଼ିଛି । ତାର ପୂରାହାତ ହାଓ୍ବାଇନ୍ । ରଙ୍ଗ ଶ୍ୟାମଳ । ଉଚ୍ଚ କମ୍ । ମୁହଁର ହନୁହାଡ଼ ବଡ଼ । ମୋଟା ସୋଟା ଗେଟମଟିଏ ।

ମୋର ସ୍କୁଲ ଅମଳର ବନ୍ଧୁ ପ୍ରଦ୍ୟୁମ୍ନ । ସେକ୍ରେଟେରିଆଟ୍‌ର ଆସିଷ୍ଟାଣ୍ଟ୍ । ଆମେ ଏକାଠି ରହୁଁ, ବାପା !

ବୀରକେଶରୀ ପ୍ରଦ୍ୟୁମ୍ନକୁ ଛୁଇଁ ମୁଣ୍ଡ଼ୁକେଇଲେ । କହିଲେ, ଭାରି ଖୁସି ହେଲି, ବାପା !

ଲୋକଭିଡ଼ ଭିତରୁ ବାହାରି ବସନ୍ତ କହିଲା, ଆପଣ ପ୍ରଦ୍ୟୁମ୍ନ ସଙ୍ଗରେ ରିକ୍ସାରେ ଆମର ନୂଆବସାକୁ ଯାଉନ୍ତୁ । ମୁଁ ଟିକିଏ ହାକିମଙ୍କ କୋଠି ବାଟଦେଇ ଯାଉଛି ।

ହଉ, ବାପା !

ପ୍ରଦ୍ୟୁମ୍ନ କହିଲା, ଆସନ୍ତୁ ମଞ୍ଜୁଷା ! ଆପଣ କ୍ଳାନ୍ତ ଦିଶୁଛନ୍ତି । ବସା ବେଶୀ ଦୂର ନୁହେଁ ।

ପୌଷ କୃଷ୍ଣପକ୍ଷ ଦ୍ୱାଦଶୀ । ଡିସେମ୍ବର ସତର ତାରିଖ । ସେଦିନ ମଙ୍ଗଳବାର । ସନ୍ଧ୍ୟା ସାତଟା ନ ହେଉଣୁ ଦେହ ଶୀତେଇ ଉଠିଲାଣି । ବାହାରର ଘନଅନ୍ଧାର ଅର୍ଦ୍ଧରାତ୍ରିର ଭ୍ରମ ଆଣୁଛି । ତେବେ ରାସ୍ତା ଉପରର ଆଲୁଅ କେତେଦୂରଯାଏ ଆଲୋକିତ କରୁଛି । ଲାଗି ଲାଗି ଛୋଟ ଛୋଟ ଅନେକ ସରକାରୀ ଘର । ସବୁ ଘରେ ଲୋକ ଅଛନ୍ତି । ପାଟିତୁଣ୍ଡ ଶୁଭୁଛି । ହିଙ୍ଗମଲୁ ମିଳିଥିବା ଘରେ କୋଳାହଳ ନାହିଁ । ଗାରକେଶରୀ ଏକା ରହୁଛନ୍ତି ।

ତାଙ୍କୁ ସଙ୍ଗରେ ଧରି ପ୍ରଦ୍ୟୁମ୍ନ ଏଠାକୁ ଆସିଥିଲା । ଦିଓଟି ବଖରା । ତହିଁରୁ ଗୋଟିଏ ଦାଣ୍ଡଘର । ତାଆରି ଆଗରେ ଛୋଟ ବାରଣ୍ଡା । ଭିତର ପାଖ ବାରଣ୍ଡାଟି ଚଉଡ଼ା । ସେହି ବାରଣ୍ଡାର ଗୋଟିଏ ପାଖରେ ଛୋଟ ବଖରାଟି, ଷ୍ଟୋର ଘର । ତାକୁ ଲାଗି ରୋଷ ଘର । କଡ଼ରେ ଆବୋରି ହୋଇଛି । ସିମେଣ୍ଟ ଚଟାଣ । ସେହିଟି ଗାଧୁଆ ଘର । ସଂକୀର୍ଣ୍ଣ ଅଗଣାର ଗୋଟିଏ କଣରେ ଦୁଇ ବଖରା ପାଇଖାନା । ପାଣିକଳ ଲାଗିଛି । ଉଚ୍ଚ ପାଚେରିରେ କବାଟ । ବାଡ଼ିଆଡ଼କୁ ବାଟ ।

ଘରଟି ଛୋଟ ହେଲେ ବି ସ୍ୱୟଂ-ସଂପୂର୍ଣ୍ଣ । ସବୁ ଘରେ, ପାଇଖାନା ଓ ବାରଣ୍ଡାରେ ବିଜୁଳିଆଲୁଅ ପାଇଁ ପଏଣ୍ଟ ଅଛି । ସବୁଥିରେ ବଲ୍‌ବ ନାହିଁ । କେବଳ ଘର ଦି' ବଖରା ଓ ଭିତର ବାରଣ୍ଡାରେ ତିନୋଟି ବଲ୍‌ବ ଲାଗିଛି । କୌଣସି ଘରେ ବିଜୁଳି ପଙ୍ଖା ଲାଗିନାହିଁ ।

ଗାରକେଶରୀ ଛୋଟ ଘରଟିକୁ ପସନ୍ଦ କରିଥିଲେ । ପ୍ରଦ୍ୟୁମ୍ନ ସ୍ୱୀକାର କରି ଉତ୍ତର ଦେଲା ସେ ହିଙ୍ଗମ ଭାଗ୍ୟବାନ୍ । ଚାକିରି ଆରମ୍ଭ କରୁଣୁ ହିକାଣବାବୁଙ୍କ ଦୟା, ସୁପାରିସ୍ ଓ ଚେଷ୍ଟାରେ ପାଇଗଲା । ଅଥଚ, ଏତେ

ବର୍ଷ ସ୍ୱକର କର ବାରମ୍ବାର ଦରଖାସ୍ତ ଦେଇ ତା'ର ସ୍ୱର୍ଗୀ ଅଦ୍ୟାବଧି ଘର ମିଳିଲା ନାହିଁ ।

ବୀରକେଶରୀ ପ୍ରଦ୍ୟୁମ୍ନର ଆକ୍ଷେପିଲା କଥାରେ ଅଭିମାନ ଓ ଈର୍ଷାର ସ୍ପର୍ଶ ଥିବା ଅନୁଭବ କଲେ । ମନରେ ଛପିଲା ଅବମିକା ଆସିଲା ଯେ, ତାଙ୍କର ପୁଅ ସ୍ୱୟମ ଜଣେ ବଡ଼ ହାକମଙ୍କର ସହାନୁଭୂତି ଲାଭ କରିବାକୁ କ୍ଷମ ହୋଇପାରିଛି । ତେଣୁ, ଭବିଷ୍ୟତରେ ସ୍ୱକର ଜୀବନରେ ତାର ଉନ୍ନତି ହେବାର ସମ୍ଭାବନା ଅଛି ।

ସାନ୍ତ୍ୱନା ଦେବା ଛଳରେ ସେ କହିଲେ, ବସାଟିରେ ତମେ ଦୁଇଜଣ ଆନନ୍ଦରେ ରହିବ । ତମ ପାଇଁ ସ୍ୱତନ୍ତ୍ର ଘର ମିଳିବାରେ ସାମାନ୍ୟ ବିଳମ୍ବ ହେଲେ କାହାର ଅସୁବିଧା ହେବ ନାହିଁ । ତମେ କ'ଣ ବିବାହିତ ?

ପ୍ରଦ୍ୟୁମ୍ନ, ଉତ୍ତର ଦେଲା, ଘରେ ବୋଉ, ବିବାହଯୋଗ୍ୟା ଭଉଣୀ, ତା ତଳେ ଆଉ ଦି ଭାଇ ଓ ସବା ସାନଟି ନଅ ବର୍ଷର ଭଉଣୀ । ନମାପଡ଼ା ପାଖ ଗୋଟିଏ ଛୋଟ ପଲ୍ଲୀରେ ଆମର ଘର । ସାତ ବର୍ଷ ତଳେ ବାପା ସେପୁରକୁ ଗ୍ଲଲିଗଲେ । ସମ୍ପତ୍ତିବାଡ଼ି ବିଶେଷ କିଛି ନାହିଁ । ସାମାନ୍ୟ ଯାହା ଅଛି, ସେଥିରୁ କିଛି କୌଣସି ଉପାୟରେ ମାରିନେବାକୁ, ଭିନେ ହେଲା ବଡ଼ବାପା ଓ ଦାଦି ବୁଥାରେ କନ୍ଦଳ ଉଆଣ କରୁଛନ୍ତି । ମତେ ସବୁବେଳେ ସଜାଗ ଓ ସତର୍କ ରହିବାକୁ ପଡ଼ୁଛି ।

ରହିବାର କଥା ରେ ପୁଅ ! ଅଜିକା ଦୁନିଆରେ କାହାକୁ ପରତେ ? ସତ୍ୟ ଓ ସ୍ନେହ ଲୁଚିଲେଣି । ସ୍ୱାର୍ଥ ଘୋଟିଆସିଲାଣି ।

ହଁ, ମଉସା ! ଭଉଣୀର ବାହାଘର ହେବ । ପିଲା ଦୁଇଟି ପାଠ ପଢ଼ୁଛନ୍ତି । ସେମାନେ ମଣିଷ ହେବେ । ଘର ଖରଚ ତୁଲାଇବାକୁ ପଡ଼ିବ । ଦରମା ଟଙ୍କା ଗଣାଟଣି । କୁଟୁମ୍ବର ଲୋକସଂଖ୍ୟା ବଢ଼ାଇବାକୁ, ଯିଏ ଯେତେ ଉପର ଠାଉରିଆ କରି କହିଲେ, ମୁଁ ରାଜି ହେବି କାହିଁକି ? ମୋ ଦାୟିତ୍ୱର ବୋଝ ଆଉ କେହି ମୁଣ୍ଡାଇବେ ନାହିଁ ।

ପ୍ରଦ୍ୟୁମ୍ନର ଘରର ଟିକନଖି ଖବର ବୁଝିବାକୁ ସେ ଆଗ୍ରହୀ ହେଲେ ନାହିଁ। ସେ ନିଜେ ବ୍ୟସ୍ତ ଥିଲା ପରି ଜଣାପଡ଼ିଲା । ଦାଣ୍ଡଘରେ ରହିବା ପାଇଁ ବୋଧହୁଏ ସେ ନିଜେ ପସନ୍ଦ କରିଥିଲା । ସେ ଘରେ ଖଣ୍ଡିଏ ଛୋଟ ଟେବୁଲ୍, ଦୁଇଟି ଟିଣ ଚଉକି ଓ ଗୋଟିଏ ଅଳ୍ପ ଓସାରିଆ ପଟା ଖଟ ପଡ଼ିଥିଲା । କାନ୍ଥ କଡ଼ରେ କାଠର ଆଲନା । ଖଟ ଉପରେ ଟ୍ରଙ୍କ୍ ଓ ଟିଣର ସୁଟ୍‌କେସ୍ । ଟେବୁଲ ଉପରେ କଂସାବାସନ ଓ ଆଲୁମିନା ପ୍ଲେଟ । ଗୋଟିଏ କୋଣରେ ବନ୍ଧା ବେଡ଼ିଂ । ଆଲନା ଉପରେ ଲୁଙ୍ଗି, ପତ୍‌ଲୋନ୍, ଗେଞ୍ଜି ଇତ୍ୟାଦି ମିଶାମିଶି ହୋଇ ଗଦା ହୋଇଥିଲା ।

ସଂଲଗ୍ନ କୋଠରିଟି ଵିକ୍ରମ ପାଇଁ ଉଦ୍ଦିଷ୍ଟ । ସେ ଘରେ ଖଟ ନାହିଁ । ଟେବୁଲ, ଚଉକି, ଆଲନା, ଅବା କାଠର ଆସବାବ ନାହିଁ । କାନ୍ଥ କଡ଼ରେ ନୂଆ ଟ୍ରଙ୍କ । ତା' ଉପରେ ବିକ୍ରମର ଛୋଟ ସୁଟ୍‌କେସ୍ । ତାଆରି ଉପରେ ବିକ୍ରମର ପଢ଼ାସାମାନ୍ୟ ଲୁଗାପଟା, ଚଉଳିଆ ଗଦା ହୋଇଛି । କାନ୍ଥ କଡ଼ରେ ଗୁଡ଼ା ହୋଇ ଅଧା ଖୋଲା ଅବସ୍ଥାରେ ଖଣ୍ଡିଏ ସପ ରଖା ହୋଇଛି । ତା' ଉପରେ ଭଙ୍ଗା ହୋଇ ରହିଛି ସତରଞ୍ଜି, ଖଣ୍ଡେ ବିଛଣା ଚଦର ଓ ଗୋଟିଏ ଖୋଳପିନ୍ଧା ତକିଆ । ଥାଳ, ଗିନିଆ, ପ୍ଲେଟ, ଗ୍ଲାସ ଘରର ଗୋଟିଏ ପାଖରେ ଥୁଆ ହୋଇଛି ।

ପ୍ରଦ୍ୟୁମ୍ନ କହିଲା, ଆଜ ଆମେ ବସା ବଦଳାଇଲୁଁ । ଜିନିଷପତ୍ର ସଜଡ଼ା ହୋଇନାହିଁ । ସାମାନ୍ୟ ପଦାର୍ଥ, ସଜାଡ଼ିବାକୁ ବେଶି ବେଳ ଲାଗିବ ନାହିଁ । ବିକ୍ରମ ଫେରୁ । ଅଗଣାରେ ପାଣିକଳ ଅଛି । ଆପଣ ଧୂଆଧୋଇ ହୋଇ ଟିକଏ ବିଶ୍ରାମ ନିଅନ୍ତୁ । ପାଖରେ ଛୋଟ ହୋଟେଲ ଅଛି । ମୁଁ ଯାଇ ସଙ୍ଗେ ସଙ୍ଗେ ଫେରିଆସିବି । କିଛି ଜଳଖିଆ ନେଇଆସେଁ ।

ତମେ ସବୁ କେଉଁଠି ଖାଇବ, ପୁଅ ?

ରାତିର ଭୂଖାଣ୍ଟି ନାହାନ୍ତି । ହୋଟେଲରେ ତିନି ଜଣଙ୍କ ପାଇଁ ଆଜ ବରାଦ କରିଦେଇ ଆସେଁ ।

ପୁଣି କାଲି ?

ସେଇ ହୋଟେଲ । ସ୍କୁଲର ମିତ୍ରମାନଙ୍କ । ମିଳିଲେ ତା' ଉପରେ କି ବିଶ୍ୱାସ ? ଦିନେ ସେ ଘରେ କଳାକନା ବୁଲାଇ ବୁଲିଯିବ ।

ସତ କଥା ଯେ, ହୋଟେଲ ଖାନା ଭଲ ନୁହେଁ । ପଇସା ବେଶି, ବାଜେ ତେଲ, ଲଙ୍କାମରିଚ ପ୍ରବଳ ।

ହଁ, ମଉସା ! ଅନ୍ୟ ପନ୍ଥା ନାହିଁ । ଦେଖାଯାଉ କ'ଣ ହେଉଛି । ବେଶି ଅସୁବିଧା ହେଲେ ଦିହେଁ ମିଶି ହାତରେ ରାନ୍ଧିବୁ ।

ବରଂ ସେଇଆ ଭଲ ।

ପ୍ରଦ୍ୟୁମ୍ନ ଯଥାସାଧ୍ୟ ତାଙ୍କର ଯତ୍ନ ନେଇଥିଲା । ବୀରକେଶରୀଙ୍କ ପାଇଁ ଦାଣ୍ଡଘରେ ଖଟଉପରେ ନିଜର ବିଛଣା ପାରିଦେଇଥିଲା । ଘୋଡ଼ି-ହେବାକୁ ପରିଷ୍କାର ବିଛଣା ଚଦର ଦେଲା । କହିଲା, ଆପଣ କ୍ଳାନ୍ତ ହୋଇ-ଛନ୍ତି । ଭିତର କବାଟ କିଳି ବିଶ୍ରାମ ନିଅନ୍ତୁ । ବିଜୟ ହୁଏତ ଡେରିରେ ଫେରିବ, ଅବା ଫେରୁଥିବ । ମୋର ଟିକିଏ କାମ ଅଛି । ଘଣ୍ଟାକ ଭିତରେ ମୁଁ ଫେରିଆସିବି ।

ଏକାକୀ ବୀରକେଶରୀ ଶୋଇ ଶୋଇ ଭାବିବାକୁ ଲାଗିଲେ, ପିଲାଟା ଉପରେ ମନେ ମନେ ବିରକ୍ତ ହୋଇ ସେ ଠିକ୍ କରିନାହାଁନ୍ତି । ତା'ର ବହୁତ ଅଭାବ ଅଛି । ନୂଆ ଚାକିରି, ଅଟଭଳାଙ୍କ ପରି ରହୁଛି । ନିଜର ଚଳିବାପାଇଁ ସେ ବିଶେଷ କିଛି କରିପାରିନାହିଁ । ଶୋଇବାକୁ ଖଟ ଖଣ୍ଡେ ବି ସେ କିଣିନାହିଁ । ବାହାର ଦେଖାଣିକୁ ସେ ଫିଟ୍‌ଫାଟ୍ । ଘର ଭିତରେ ଅତି ଦରିଦ୍ର ।

ଦରମା ପାଉଛି, ଟଙ୍କାଗୁଡ଼ାକ କଅଣ କରୁଛି ? ବାପମାଆଙ୍କୁ ସାହାଯ୍ୟ ନ କରି ନିଜେ ରଖୁଛି କି ? ତା ମାଈଁ ଓ ତାଙ୍କର ପିଲାମାନଙ୍କୁ ଖୁସି କରିବାକୁ ଉଡ଼ାଉଛି ପରା ।

ଇଢର ମହାଜନେ । ପିଲାଟାକୁ କମିଆଁ କରିଛି । କଅଣ ତା'ର ମତଲବ କିଏ ଜାଣେ ? ଛି ଛି, କ'ଣ ଗୁଡ଼ାଏ ସେ ମନକୁ ଆଣୁଛନ୍ତି ! ଇଢର ରାଜରାଣୀ । ସେମାନେ ଘିଅରେ ଖାଇ ଦୁଧରେ ହାତ ଧୋଉଛନ୍ତି । ଗରିବ ଭଣଜା ପାଖରୁ ସେ କଣ ଆଶା କରିବେ ? ଏଇ ନିର୍ଲଜ୍ଜ ବିଜୟଟା—

ଆଖିପତା ନିଶ୍ଚଳ ହେଲା । ଅବସନ୍ନତା ପାଇଁ ନିଦ୍ରା ଘୋଟି-ଆସିଲା । ବିଜୁଳି ଆଲୁଅ ଜଳୁଥାଏ । ଘରେ ନିସ୍ତବ୍ଧତା ରାଜତ୍ୱ କରୁଥାଏ ।

ସେହି ଶ୍ରାନ୍ତିହର ଶାନ୍ତିପ୍ରଦ ନିସ୍ତବ୍ଧତାକୁ ଦୋହଲାଇ ବାହାରୁ କିଏ କଡ଼ା ଖଡ଼ଖଡ଼ କଲା । ବୀରକେଶରୀଙ୍କର ତନ୍ଦ୍ରା ଟଳମଳ ହେଲା । ଆଖି ପତା ନ ଖୋଲି ସେ କାନେଇଁଲେ । ପୁଣି ଖଡ଼ଖଡ଼ । କିଏ ଜଣେ ବିଷମର ନାମ ଧରି ଡାକୁଛି ।

ପ୍ରଦ୍ୟୁମ୍ନ ହୋଇପାରେ ।

ବୀରକେଶରୀ ବାହାର ବାରଣ୍ଡାର ବିଜୁଳି ଆଲୁଅର ସ୍ୱିଚ୍ ଟିପିଲେ । କବାଟ ଖୋଲିଲେ । ଘର ଭିତରର ପଡୁଆଣି ଆଲୁଅ ଆଗନ୍ତୁକର ମୁହଁରେ ପଡ଼ିଲା । ନିଜ ମୁହଁଟି ତ ଅନ୍ଧାର । ବାରଣ୍ଡାର ଆଲୁଅ ରାସ୍ତା କଡ଼ ଯାଏ ଆଲୋକିତ କରୁଛି । ରାସ୍ତା ଉପରେ କାର୍ ଖଣ୍ଡେ ରଖା ହୋଇଛି ।

ବୟସ ଅଳପ । ସୁନ୍ଦର ସ୍ୱାସ୍ଥ୍ୟବାନ୍ ନିକିଳି ସାହେବ । ନିଦ-ମଳମଳ ପରଳଚ୍ଛୁଆଁ ଆଖିରେ ସେହି ସାହେବାନିଆ ଟୋକାଟି ଦୋ-ଦୋ ଚିହ୍ନା ପରି ଲାଗୁଛି । ଚିହ୍ନି ହେଉନାହିଁ । ବିଷମର ହାକିମ ବିକାଶବାବୁ ସେ ହୋଇପାରନ୍ତି ।

ହୋଇଥିବେ । ଆଜି ତାଙ୍କର କଟକ ଯିବାର ପ୍ରୋଗ୍ରାମ୍ ଥିଲା । ରାତିରେ ଶଶୁରଘରେ ରହିଣି । ଢେଙ୍କାନାଳର ଜିଲ୍ଲା ହାକିମ ହୋଇ ଯାଉଛନ୍ତି । ଶଶୁରଘରୁ ମଙ୍ଗଳବାର ବୁଧ ପାହାନ୍ତି ଶୁଭବେଳରେ ନୂଆ ଜାଗାକୁ ସେ ଅନୁକୂଳ କରିବେ । ହେଇଟି, ଝିଅଟିଏ କାର୍ ପାଖରୁ ଆଗେଇ ଆସୁଛି । ଅନୁପାର ଗୋଲାପ ହୋଇଥିବ । ହାକିମଙ୍କର ଗୃହିଣୀ । କାର୍ ପାଖରେ ଆଉ ଜଣେ ଭଦ୍ରମହିଳା ଠିଆ ହେଲା ପରି ମନେ ହେଉଛି ।

ବିଷମବାବୁ ଅଛନ୍ତି ?

ବିଚଳିତ ବୀରକେଶରୀ ମୁଣ୍ଡ ନୋଇଁ ନମସ୍କାର କଲେ । ଆଗନ୍ତୁକ ହାକିମ ବୀତସ୍ପୃହ ଭାବେ, ମୁଣ୍ଡ ଟୁଙ୍ଗାଇ ସ୍ୱଗତୋକ୍ତି କଲେ, ଏଇ ତେବେ ତାଙ୍କର ନୂଆ ବସା । ଭାରି ଗ୍ରେଟ ହର ।

ସେତିକି ବି ଆପଣଙ୍କ ଦସ୍ତୁରୁ ସେ ପାଇପାରିଛନ୍ତି ବୋଲି ଖବର ପାଇଲି । ବିକ୍ରମ ଅଫିସରୁ ଘରକୁ ନ ଫେରି ବୋଧହୁଏ କୋଠିକୁ ଯାଇଛନ୍ତି । ଏତେବେଳଯାଏ ଫେରିନାହାଁନ୍ତି । ଭିତରକୁ ଆସିବା ହେଉନ୍ତୁ ।

ବୀରକେଶରୀ ମୁହଁ ବୁଲାଇ ଘର ଭିତରକୁ ପଶିଲେ । ସେ ଅନୁଭବ କଲେ ଯେ ଆଗନ୍ତୁକା ଯୁବତୀଟି ବାରଣ୍ଡା ଉପରକୁ ପାଦ ବଢ଼ାଇଲେଣି ।

ଘରଭିତରକୁ ପଶିଆସୁଣୁ ଯୁବକ ପଚାରିଲେ, ତମେ କ'ଣ ତାଙ୍କର ଚାକର ?

ବୀରକେଶରୀଙ୍କର ମୁଣ୍ଡ ଭ୍ରମିଗଲା । ସତେ, ସେ ବଡ଼ ଅଭେକା ପରି ଦିଶୁଥିବେ । ଦେହରେ ମଇଳାଫୁଟା ଅଧାହାତ ଗେଞ୍ଜି । ଅଳ୍ପ ଦାମର ମିଲଲୁଗା ଖଣ୍ଡେ, ଚଉଡ଼ା ଛୋଟ ଯେ ନଳୀଗୋଡ଼ ଲୁଚୁ ନାହିଁ, ସେଇଆକୁ ପିନ୍ଧିଛନ୍ତି । ସେଇଟି ମଧ୍ୟ ଦରମଇଳା । ଜଣେ ଶିକ୍ଷିତ ଆଧୁନିକ, ସରକାରୀ କର୍ମଚାରୀ ବିକ୍ରମକେଶରୀ ଯେ ଏପରି ଜଣେ ମଳମୁଣ୍ଡିଆ ମୋଫସଲିଆ ବ୍ୟକ୍ତିର ପୁଅ ହୋଇପାରେ ଏ ଧାରଣା ହାକିମଙ୍କ ମନରେ ଆଣିଲେ ବିକ୍ରମ ତାଙ୍କର ସ୍ନେହ ସହାନୁଭୂତି ହରାଇପାରେ । ଏହି ଆଶଙ୍କାରେ ବୀରକେଶରୀ ମୌନ ରହିବା ଉଚିତ ମନେ କଲେ ।

ତରୁଣୀଟି ଘର ଭିତରକୁ ପଶି ଆସିଥିଲେ । ଚପଲର ଠୋକର ଶବ୍ଦରୁ ବୀରକେଶରୀ ଅନୁମାନ କଲେ ଯେ, ସାହେବାଣୀ ଭିତରକୁ ଆସୁଛନ୍ତି । ସେ ପ୍ରଣାମ କରିବାକୁ ସଜ ହୋଇ ମୁହଁ ବୁଲାଇଲେ ।

ସେ ଚକିତ ହେଲେ । ନିଜକୁ ବଜ୍ରାହତ ପରି ମଣିଲେ । ତାଙ୍କର ବିସ୍ମିତ ଚକ୍ଷୁ ଆଗନ୍ତୁକାର ମୁଖମଣ୍ଡଳରେ ସ୍ଥିର ହେଲା ।

ଅନୁପା !

ସନ୍ଦେହର ଅବକାଶ ନାହିଁ । ତା'ର ସୁନ୍ଦର ସତେଜ ପ୍ରଫୁଲ୍ଲ ମୁହଁ ମଳିନ ପଡ଼ିଗଲା ।

ନିଜର ବିସ୍ମୟଭାବକୁ ଆବୃତ୍ତ କରି ବୀରକେଶରୀ ହସହସ ହୋଇ କହିଲେ, ମା, ଅନୁପା ! ବିକ୍ରମ ଏବଯାଏ ସାହେବଙ୍କ କୋଠିରୁ ଫେରି- ନାହିଁ ।

ବୀରକେଶରୀ ଯେଉଁ ତରୁଣୀଟିକୁ ନମସ୍କାର କରିଥିଲେ, ତାକୁ ଏବେ ସେ ଚିହ୍ନିଲେ । ନାଁ ମନେ ନାହିଁ, ତାକୁ କଟକରେ ଅନୁପାର ପଢ଼ାଘରେ ଦେଖିଥିଲେ ।

ଲଜରେ ତା'ର ମୁହଁ ରଙ୍ଗ ପଡ଼ିଲା । ସେ ଦୁଇହାତ ଯୋଡ଼ି ନମସ୍କାର କଲା । କହିଲା, କ୍ଷମା କରିବେ ମଉସା, ମୁଁ ହଠାତ୍ ଚିହ୍ନିପାରିଲି ନାହିଁ । ଆପଣଙ୍କର ଗ୍ରାମକୁ ଫେରିବାର କଥା ଥିଲା । ଭୁବନେଶ୍ୱରରେ ଦେଖି ଚିହ୍ନନ୍ତି କପରି ?

କିଛି ଚିନ୍ତା ନାହିଁ, ବାବୁ ! ପ୍ରୋଗ୍ରାମ୍ ବଦଳେ । ସମସ୍ତଙ୍କର ଏମିତି ଭୁଲ ହୁଏ । ତମର ସବୁ ଭୁବନେଶ୍ୱର ଆସିବା ନ ଥିଲା । ମୁଁ ବା କପରି ଚିହ୍ନନ୍ତି ? ତମ ସଙ୍ଗରେ ଅନୁପାକୁ ଦେଖି ତାକୁ ଆଉ କିଏ ବୋଲି ମଣିଲି । ଭାଗ୍ୟକୁ ମୁଁ ଚିହ୍ନିପାରିଲି ।

ଲଜରେ ଅନୁପାର ମୁହଁ ଜଳିଗଲା । ବଳବଳେଇଲା ପରି ସେ କହିଲା, ମାଉସୀ ଭୁବନେଶ୍ୱର ଆସିଥିଲେ । ଗୋଲାପ ଓ କୋଣବାବୁଙ୍କର କଟକ ଯିବାକୁ ଡେରି ହେଲା । ମାଉସୀ ମତେ ଡାକିଲେ । ମୁଁ ମନା କରିପାରିଲି ନାହିଁ । ସେମାନେ ସବୁ ଏବେ ତାଙ୍କ ଗାଡ଼ିରେ କଟକ ଗଲେ ।

ହଁ, ମଉସା ! ବୋଉ ଗାଡ଼ିରେ ବସିଛନ୍ତି । ଆମେ କଟକ ଫେରୁଛୁ । ବିକ୍ରମବାବୁଙ୍କୁ ସଙ୍ଗରେ ନେଇଯିବାକୁ ଆସିଥିଲୁଁ ।

ହଁ, ପିଉସା ! ଉଲୁପୀ କଥା ବକବାଇକୁ କହିଥାନ୍ତି । ତାଙ୍କୁ ନିଷ୍ଟସ୍ତ ଭାଜ କରାଇଥାନ୍ତି ।

ଏାରକେଶଣ୍ଣ କହୁଲେ, ମୁଁ ଭଲକର ଜାଣେ, ମା ! ତୁ ସେତକ କରପାରବୁ । ମୁଁ ଭୁବନେଶ୍ବରକୁ ସେହ୍ବ ଉଦ୍ଦେଶ୍ୟରେ ଆସିଛୁ । ନୂଆ ବସା । ଅସୁବଧା ଅନେକ । ମୋତେ ଏକା ଛାଡ଼ ସେ କ'ଣ କଟକ ଯାଇପାରବ ନା ମା ?

ତା'ର ଉତ୍ତର ବମଳ ଦେଲା, ଅସୁବଧା ନଶ୍ଚୟ ହେବ । ବକ୍ରମ-ବାବୁଙ୍କୁ ସଙ୍ଗରେ ନେବାକୁ ଆମେ ଅନୁରୋଧ କରବୁଁ କପର ? କୁଆଡ଼େ ଯାଇଛନ୍ତ, କେତେବେଳେ ଫେରବେ ଜଣାନାହିଁ ।

ସତକଥା, ବାବୁ ! ତମର ଡେର ହେଉଛୁ । ଇନ୍ଦବ ଅନୁପାକୁ ନ ଦେଖି ଦକଦକ ହେଉଥିବେ । କେତେବେଳୁ ଆସିବଣି । ବକ୍ରମ ଆସିଲେ ମୁଁ ତାକୁ ଜଣାଇଦେବ ।

ଅନୁପା କହ୍ଲା, ସଞ୍ଜ ହୋଇଆସୁଥିଲା, ଆମେ ବାହାରଲୁଁ । ବୋଉକୁ ଜଣା ।

ରାସ୍ତା ଉପରୁ ମଟର-ହର୍ଣ୍ଣର ଶବଦ ଶୁଭଲା । ଅନୁପାର ମୁହଁକୁ ସହସା ଚୁକ୍ଷଭାବ ଘୋଟିଆସିଲା । ତା'ର ନାସାପୁଡ଼ା ଥରବାକୁ ଲାଗିଲା । ମନର ଅପ୍ରସନ୍ନତା ଗୋପନ କରବାର ଚେଷ୍ଟାରେ ସେ ତା'ର ଲଜଲଜ ମୁହଁକୁ ଅସ୍ବାଭବକ ହସ ଓଟାର ପୁଣି କହ୍ଲା, ସତେ, ଆମର ଡେର ହେଉଛୁ । ମାଉସୀ ଅସ୍ଥର ହୋଇ ହର୍ଣ୍ଣ ବଜାଇ ଡାକଲେଣି । ବକଭାଇଙ୍କୁ ସବୁ କହ୍ବଦେବେ, ପିଉସା ! ଆସ ବମଳବାବୁ !

ଦେହରୁ ଅଞ୍ଚଳ ଖସିପଡ଼ୁଥାଏ, ଅନୁପା ନମସ୍କାର କରବାକୁ ଭୁଲ୍ଲା, ମୁହଁ ବୁଲାଇ ଘରଭତରୁ ପଦାକୁ ବାହାରଗଲା । ବମଳ ନମସ୍କାର କର ତାର ଅନୁଗମନ କଲା ।

ଏାରକେଶଣ୍ଣ ସ୍ତବ୍‌ଧ ହୋଇ ଠିଆହୋଇ ରହ୍ବଲେ । ଭାବୁଥିଲେ, କାହିଁକ ଅନୁପା ମିଛ କହ୍ଲା ? ସନ୍ଧ୍ୟା ହେବାର ଅନେକ ଆଗରୁ ସେ ଅନୁପାକୁ ବମଳ ପାଖରେ କାର୍ ଭତରେ ଦେଖିଥିଲେ ।

ଏବକାଳର ପୁଅଝିଅ, ଯେଉଁମାନେ ଶିକ୍ଷିତ, ସହରରେ ଧନର ପ୍ରାଚୁର୍ଯ୍ୟ ଭିତରେ ବଢ଼ି ଆଧୁନିକ ହୋଇଛନ୍ତି, ସେମାନଙ୍କର ସୁନ୍ଦରପଣିଆ ଶିଖିଆ ଆସିଲେଣି ପରି ମୋଫସଲିଆ ମଳମୁଣ୍ଡିଆ ଗଢ଼ିବେ ବୁଝିପାରିବେ ନାହିଁ । ବୁଝୁଥିବେ ସେମାନଙ୍କର ଅଭିଭାବକେ ଓ ତାଙ୍କର ସମାନସ୍କନ୍ଧ ଲୋକେ । ବାମନ ହୋଇ ସେ ଚନ୍ଦ୍ରର କଥା ବିଚାରୁଛନ୍ତି କାହିଁକି ?

ବିକ୍ରମଙ୍କୁ ତାଙ୍କର ରୁଚି ଓ ଧାରଣା ଅନୁରୂପେ, ଆଧୁନିକତାର ନଷ୍ଟପଥରୁ ସେ ଉଦ୍ଧାରିବେ କିପରି ସେଇଟା ହେଲା ଅସଲ କଥା । ସତେ କ'ଣ ବିକ୍ରମ ବହୁ ପ୍ରଲୋଭନରୁ ଆତ୍ମରକ୍ଷା କରି ଜଳୁପରିକୁ ବିବାହ କରିବାକୁ ରାଜି ହେବ ? ଏକାଳରେ ଜନ୍ମ ହୋଇ ବଢ଼ି ଯୁବତୀ ହେଲେ ବି ଜଳୁପରୀ ସେ-କାଳର ଝିଅ । ବୋହୂପଣିଆକୁ, ତାଙ୍କ କୁଟୁମ୍ବରେ ସେହିି ଏକା ସାଜିବ ।

ସାଇକେଲ୍ ଚଢ଼ାଇ ଗ୍ଭଲିଗ୍ଭଲି ବିକ୍ରମ ଆସି ପହଞ୍ଚିଲା । ଆଗରେ ପଛରେ କେତେ କଅଣ ଜିନିଷ ବନ୍ଧା ହୋଇଛି । ତା ସଙ୍ଗରେ ପ୍ରଦ୍ୟୁମ୍ନ ଓ କେବଳାନନ୍ଦ । ପ୍ରଦ୍ୟୁମ୍ନର ହାତରେ ଟିଫିନ୍ କ୍ୟାରିଅର । କେବଳାନନ୍ଦର ଦୁଇ ହାତରେ ଜିନିଷଭର୍ତ୍ତି ଦିଓଟି କନାର ବ୍ୟାଗ୍ ।

କାର୍‌ଟି ବିପରୀତ ଦିଗରେ ଗ୍ଭଲିଯାଇଥିଲା । ସିଧା ରାସ୍ତାର ମୋଡ଼ରେ ଅଳ୍ପ ଦୂରରେ ତା'ର ପଛଆଲୁଅ ଦିଶିଯାଉଥାଏ । ବୀରକେଶରୀ ଭାବୁଥିଲେ, ଗୋଟାଏ ଅନାବଶ୍ୟକ ଅସ୍ୱସ୍ତିକର ପରିସ୍ଥିତିରୁ ଉଦ୍ଧାର ମିଳିଲା । କିନ୍ତୁ କେବଳାନନ୍ଦ ପଚାରିଲା, କେଉଁମାନେ ସବୁ ଏ ଘରେ କାହାକୁ ଖୋଜୁଥିଲେ କି ପିଉସା, ଠାବ କରି ନ ପାରି ଗ୍ଭଲିଗଲେ ?

ପ୍ରଦ୍ୟୁମ୍ନ କହିଲା, ସ୍ତ୍ରୀଲୋକଟିର ପଛେ ପଛେ ପୁରୁଷଟିଏ ବି ଆମ ଘରର ବାରଣ୍ଡା ଉପରୁ ଓହ୍ଲାଇ କାର୍ ପାଖକୁ ଗଲେ । ନୁହେଁ କି, ବିକ୍ରମ ?

ହଁ, କାହାର ବସା ତଲାସ କରୁଥିବେ ।

ତିନିହେଁ ବାରଣ୍ଡା ଉପରକୁ ଉଠିସାରିଥିଲେ । ବୀରକେଶରୀ ଭାବିଲେ, ଘଟଣାଟି ଆଉ ଲୁଚାଇ ରଖିବା ଉଚିତ ନୁହେଁ । ସେ କହିଲେ,

ଅନୁପା ଆସିଥିଲା, ବାବା ! ତା ସଙ୍ଗରେ ଯେଉଁ ଟୋକାଟି ଆସିଥିଲା ତା' ନାମ ବିମଳ ବୋଲି ଅନୁପା କହିଲା ।

ଅନୁପା ?

ବିକ୍ରମର ମୁହଁରେ ଓ ପ୍ରଶ୍ନରେ ବିସ୍ମୟର ସଂକେତ !

ହଁ, ସେମାନେ କଟକ ଫେରିଯାଇଛନ୍ତି । ତୋତେ ସଙ୍ଗରେ ନେବାକୁ ଆସିଥିଲେ । ତୋ'ର ଫେରିବାକୁ ବିଳମ୍ବ ହେବ ଜାଣି ସେମାନେ ଅପେକ୍ଷା କରିପାରିଲେ ନାହିଁ ।

ବିକ୍ରମ କହିଲା, ଅପେକ୍ଷା କରିଥିଲେ ବି ମୁଁ ଯାଇ ନ ଥାନ୍ତି । କେବଳାନନ୍ଦ ପାଖରୁ କିଛି ଟଙ୍କା ଧାର କରି ତାକୁ ସଙ୍ଗରେ ନେଇ ଆପଣଙ୍କ ପାଇଁ ଶୀତଲୁଗା କିଣିବାକୁ ମୁଁ ବଜାରକୁ ଯାଇଥିଲି । ମଶାରିଟିଏ ନ ହେଲେ ଆପଣ ମୋଟେ ଶୋଇପାରିବେ ନାହିଁ ।

ହାକିମଙ୍କ ଘରକୁ ଯାଇନୁ ?

ସଞ୍ଜ ଆଗରୁ ଯାଇଥିଲି । ସେ କଟକ ଗଲେ । ସେଇଠାରୁ ମୁଁ କେବଳାନନ୍ଦର ହଷ୍ଟେଲକୁ ଯାଇଥିଲି ।

ଆଲୋଚନାର ଅନ୍ତ ହେଲା । ଶୀତ ମାଡ଼ିଆସୁଥାଏ । କେବଳାନନ୍ଦ ହଷ୍ଟେଲକୁ ଫେରିଯିବ । ବୀରକେଶରୀ ତା' ପାଖରୁ ବୁଝିଲେ ଯେ, ସେ ଶନିବାର ଉପରବେଳା ଗ୍ରାମକୁ ଯାଇ ସୋମବାର ସକାଳେ ଭୁବନେଶ୍ୱର ଫେରିଲା । ବିକ୍ରମ ତା' ହାତରେ ପଠାଇଥିବା ପଚିଶଟି ଟଙ୍କା ସେ ଚନ୍ଦନାଙ୍କୁ ଦେଇଆସିଛି । କଟକ ଆସି କାହିଁକି ଏବଯାଏ ବୀରକେଶରୀ ଗ୍ରାମକୁ ଫେରି-ନାହାନ୍ତି, ଚିଠି ଖଣ୍ଡିଏ ଲେଖିନାହାନ୍ତି, ସେଥିପାଇଁ ଚନ୍ଦନା ବ୍ୟସ୍ତ ଅଛନ୍ତି । ତାଙ୍କର ଦେହ ବିଶେଷ ସୁସ୍ଥ ନାହିଁ ।

ସବୁ ଖବର ପାଇ ବୀରକେଶରୀ ଆଶ୍ୱସ୍ତ ହେଲେ । ହେବଲେ, ବୟସ ହେଲା, ଅଭାବରେ ଥିଲେ, ବାର ଚିନ୍ତାରେ ଧନ୍ଦ ହେଉଥିଲେ, ଦେହ ଟିକିଏ ଖରାପ ହେବାର କଥା । ମାଇପି ଜନମ, ଘରର ସବୁ କାମ କରିବାକୁ ତାଙ୍କର ଜନ୍ମ । ସେ କରୁଛନ୍ତି । ଘରର ଘରଣୀ । ଏକାକୁ ଏକା ।

ଦେହ ବିଗିଡ଼ିବାର କଥା । ଔଷଧ ଓ ପଥ୍ୟ ଖାଇଲେ ବଳେ ଭଲ ହୋଇ-ଯିବ । ଅସଲ ଦେହ ହେଲା ଧନ । ଭଲମନ୍ଦ ସେଇଠି ଅଟକେ ।

ପୁଅ ପାରଲର ହେଲଣି । ଧନର ଅଭାବ ରହିବ ନାହିଁ । ଘର ସୁନ୍ଦର କରି ବୋହୂଟିଏ ଆସିଲେ ଚନ୍ଦନାଙ୍କର ମନ ଖୁସି ହେବ । ସୁସ୍ଥରେ ନିଶ୍ୱାସ ମାରିବାକୁ ବେଳ ମିଳିବ । ଆପେ ଆପେ ଦେହର ଅବସ୍ଥା ସୁଧୁରିବ ।

ପୁଅ ପାଖରେ ଦୁଇଦିନ କଟାଇ ମନଖୁସିରେ ବୀରକେଶରୀ ଗ୍ରାମକୁ ଫେରିଲେ । ପ୍ରଥମେ ସେ ଦେବନାଥଙ୍କ ପାଖକୁ ପତ୍ର ଖଣ୍ଡିଏ ଲେଖିଲେ । ସମସ୍ତେ ସମ୍ମତ । ବିକ୍ରମ ସମ୍ମତି ଜଣାଇଛି । ଫାଲ୍‌ଗୁନ ଶେଷଆଡ଼କୁ, ଅର୍ଥାତ୍ ମାର୍ଚ୍ଚ ମାସ ପ୍ରଥମ ହିଁ ଖପ୍ତ ତିଥିରେ ଶୁଭକାର୍ଯ୍ୟ ସମ୍ପାଦନ କଲେ ସମସ୍ତଙ୍କୁ ସୁବିଧା । ପ୍ରସ୍ତୁତ ହେବାକୁ ବେଳ ମିଳିବ । ଆପଣ ବୋଧହୁଏ ଦିନେ ଦୁଇଦିନ ମଧ୍ୟରେ ଜୟପୁର ଯିବେ । ମୋର ଯିବାକୁ ଛଅ ସାତ ଦିନ ବିଳମ୍ବ ହୋଇପାରେ । ଆଉ ସବୁ ବିଷୟ ଜୟପୁରରେ ସାକ୍ଷାତ୍ କାଳରେ କଥାଭାଷା ହେବା ।

ଏହି ମର୍ମରେ ଇନ୍ଦ୍ରଙ୍କୁ ମଧ୍ୟ ସେ ଚିଠି ଲେଖିଲେ—ତମର ଓ ପିଲାମାନଙ୍କର, ବିଶେଷତଃ ଅନୁପର ସ୍ୱାସ୍ଥ୍ୟ କାଏମ ରହିଲା । ତମଠାରୁ ଶିକ୍ଷା ଓ ସଦୁପଦେଶ ପାଇ ଯେଉଁ ପୁଅ ମଣିଷ ହୋଇଛି, ସେ ଯେ କଥାରୁ ବାହାର ହେବ ନାହିଁ ଏହା ମୋତେ ଜଣା ଥିଲା । ଥରେ ପଚାରିଦେବା ଭଲ ବିଚାରି ବିକ୍ରମକୁ ପଚାରିଲି ସିନା, ଆବଶ୍ୟକ ନ ଥିଲା ।

ପୁଣି ସେ ଲେଖିଲେ—ହାଡ଼ିବନ୍ଧୁବାବୁ ମୋର ପିଲାଦିନର ସାଙ୍ଗ । ଭାଗ୍ୟକୁ ସେ ଆଜି ଧନକୁବେର । ତାଙ୍କର ପୁଅ ବାଉରିବନ୍ଧୁ ମୋର ପୁଅ ପରି । ଆନନ୍ଦ କହୁଥିଲେ, ସେ ଅତି ବିଚକ୍ଷଣ ପିଲା ।

—ସଞ୍ଜୟ ପିଲାଟିର ବିଦ୍ୟା, ବୁଦ୍ଧି, ବ୍ୟବହାର, କେଉଁ ବିଷୟରେ କେହି ବାଛିପାରିବେ ନାହିଁ । ଶୁଣିଲି, ସେ ଉପୋଷି ହେବେ । ଖୋଜିଲେ

ନ ପାଇ । ଆଉ ପିଲାଟି, ତା ନାମ ବିମଳ । ତାକୁ ଦେଖିଲି । ତାର ରୂପ, ଢଙ୍ଗ, ବ୍ୟବହାରରେ କିଏ କିଣି ନ ହେବ ?

—ତିନିହେଁ କେହି କାହାକୁ ଊଣା ନୁହନ୍ତି । ଆମେ ଅଳ୍ପକ ସ୍ୱଳ୍ପକ ଲୋକ । ନିଘୁଣ୍ଟ ଚଢ଼େଇ । ଆମର ଚିନ୍ତା କେତେ ଉପରକୁ ବା ଉଡ଼ିବ ? ତମର ବିଚାର, ତମର ପସନ୍ଦରେ କିଏ ତ୍ରୁଟି କାଢ଼ିପାରିବ ? ଯେଉଁଠି ସ୍ଥିର କର, ଅନୁପାର ଦୋଳମୁକୁଟ ଦେଖିବାକୁ ଜୟପୁର ଠିକଣାରେ ମୋ ପାଖକୁ ଆଗରୁ ଲେଖିବ । ମୋ ଅନୁର ବାହାଘର ଶୀଘ୍ର ଦେଖିବାକୁ ବାଞ୍ଛିଥିଲେ ମୁଁ ନିଶ୍ଚୟ ଆସିବି । ତା' ବାହାଘର ଆଉ ଡେରି କରିବି ନାହିଁ ।

ଏଠି ଶୁଣି ଚନ୍ଦନା ଦୁଇଟି ବିଷୟରେ ପ୍ରତିବାଦ କରି କହିଲେ— ପୁଅ ଚାକିରି କଲାଣି । ଅଳ୍ପ ବହୁତ ତା କପାଳରେ ଯାହା ଅଛି ସେ ରୋଜଗାର କରୁଛି । ଆଗ ତା'ର ଅଭାବ ପୂରଣ କରି ଯାହା ସେ ପାଇବ ଘରକୁ ପଠାଇବ । ତମେ ଏ ବୟସରେ ଭଙ୍ଗା ସ୍ୱାସ୍ଥ୍ୟ, ଦୁର୍ବଳ ଦେହ ଧରି ଦୂର ବିଦେଶକୁ ଯାଅ ନାହିଁ ।

ଚାରକେଶରୀ ଚନ୍ଦନାଙ୍କୁ ବୁଝାଇ କହିଲେ, ମୋର ଦେହ ଭଲ ଅଛି । ନିଜର ଯତ୍ନ ମୁଁ ନିଜେ ନେଇପାରିବି । ଟ୍ରେନ୍ ବସ୍ ଯୁଗରେ କୌଣସି ସ୍ଥାନ ଦୂର ନୁହେଁ । କରଜରେ ବୁଡ଼ିଗଲିଣି । ପିଲାର ଅବସ୍ଥା ଭୁବନେଶ୍ୱରରେ ଦେଖିଆସିଲି । ଲୁଗାପଟା, ଶୀତ ଘୋଡ଼ିହେଲା ଯାହା ସେ ଦେଇଛି ଟଙ୍କା ଉଧାର ଆଣି କିଣିଛି । ତା ନିଜ ପାଇଁ ସେମିତି କିଛି ନାହିଁ । ଖଟ ଖଣ୍ଡେ ନାହିଁ ଯେ ତଳେ ସପ ପାରି ଶୋଉଛି । ମୁଁ ନିଜେ ଚାରିପଇସା ରୋଜଗାର ନ କଲେ, ସେ କୁଆଡ଼ୁ ହେବ ?

ତମର ସ୍ୱାସ୍ଥ୍ୟ କଥା ମୁଁ ବିଚାରୁଥିଲି ।

ବେଶ୍ ଭଲ ଅଛି । ନିଜର ଦେହପ୍ରତି ବରଂ ତମେ ସାବଧାନ ହୁଅ ଚନ୍ଦନା ! ଡାକ୍ତରଙ୍କ ସଙ୍ଗେ ପରାମର୍ଶ କରି ପୁଅ ଯେଉଁ ଟନିକ୍ ଔଷଧ କିଣି ପଠାଇଛି, ତାକୁ ରୀତିମତ ଖାଅ ।

ଚନ୍ଦନା ଦୀର୍ଘଶ୍ୱାସ ଛାଡ଼ିଲେ । ବିଜ୍ଞାପନ ପତ୍ରର ଶେଷ ଅଂଶ ଶୁଣି ଚନ୍ଦନା କହିଲେ, ଝିଅ ଥିଲେ, ପୁଅ ଥିଲେ କେତେଆଡ଼୍ ସମ୍ବନ୍ଧ ଆସେ । ଇନ୍ଦିରା ଅନୁପା ପାଇଁ ବାଛି ବାଛି କେଉଁଠି ଭଲ ପାତ୍ର ଠିକଣା କରିବ । ଉପରେ ପଡ଼ି ତମେ ଏଣୁତେଣୁ ଲେଖୁଛ । ଉପଦେଶ ଦେଉଛ । ତମ ମତାମତ କିଏ ଲୋଡ଼ୁଛି ? ସେମାନେ ହସିବେ ।

ବୀରକେଶରୀ ବିରକ୍ତ ହେଲେ । କହିଲେ, ତମେ ସ୍ତ୍ରୀଲୋକ । ତମର ବୁଦ୍ଧି କେତେ ଯେ ମତେ ବୁଦ୍ଧି ଶିଖାଉଛ ? ଚିଠିର ମରମ ଇନ୍ଦିରା ବନେ ବୁଝିବେ । ଆନନ୍ଦ ବି ବୁଝିବେ । ହସିବେ ନାହିଁ ଯେ, କାନ୍ଦିବେ ।

ଇନ୍ଦିରା ବି ସ୍ତ୍ରୀଲୋକ ଯେ !

ତାଙ୍କର ସାତଟା ମରଦର ଅକଲ !

ଜାଣିଛନ୍ତି ? ଅନୁପାର ବାହାଘର ଆଉ ଡେରି ନ କରିବାକୁ ଉପରେ ପଡ଼ି ଉପଦେଶ ବାଢ଼ୁଛ କାହିଁକି ? କାଲିକାର ନଙ୍ଗଳା ଛୁଆଟା ଅନୁପା !

ସେଇଟିକ କହୁଥା । ସବୁ ପୁଅ, ସବୁ ଝିଅ ନଙ୍ଗଳା ହୋଇ ଜନମିଥାନ୍ତି । ସେମାନଙ୍କର ପୁଣି ପୁଅଝିଅ ନାତିନାତୁଣୀ ହୁଅନ୍ତି । ଅନୁପା ବଡ଼ ହୋଇଛି । ଆଖିଦୁରୁଣିଆ ହେଲାଣି । ଲେଖିବାର କଥା, ଲେଖିଲି । ଇନ୍ଦିରା ବନେ ଚିଠିର ମରମ ବୁଝିବେ ।

କଅଣ ଆଉ ବୁଝିବେ ?

ବୁଝିବେ, ଗରିବ ବୀରକେଶରୀଭାଇ ନବୋଧ ନୁହନ୍ତି । ଛାଡ଼ ସେ କଥା । ଅନୁପା ଲଫାପାରେ ବନ୍ଦ କରି ଉଲୁପୀର ଫଟୋ ପେଖାଇ ଦେଇ-ଥିଲା । ଚିଠି ଖଣ୍ଡେ ଲେଖିଥିଲା । କଅଣ ସେ ଲେଖିଥିଲା କି ?

ଚନ୍ଦନା ହସିଲେ । ବାକ୍ସ ଭିତରୁ ଲଫାପାଟି ଆଣି ବୀରକେଶରୀଙ୍କ ହାତକୁ ବଢ଼ାଇଦେଲେ । କହିଲେ, ତମେ ନିଜେ ପଢ଼ । ମୋ ଆଖିକୁ ଅନୁପା ସେହି ଆଠ ନଅବର୍ଷର ଫ୍ରକପିନ୍ଧା ଝିଅଟି ପରି ଦିଶୁଛି । ପିଲାକଆ ବୁଦ୍ଧି ତା'ର ଏବଯାଏ ଯାଇନାହିଁ ମ !

ବୀରକେଶରୀ ଲଫାପା ଭିତରୁ ଖଣ୍ଡିଏ ସ୍ଲେଟ ଫଟୋ ଓ ଖଣ୍ଡିଏ ଚିଠି କାଢ଼ିଲେ । ଆଗ ସେ ଫଟୋଖଣ୍ଡିକ ଦେଖିଲେ । ପୁରୁଣା । ତେର ଚଉଦ ବର୍ଷର ପିଲା ବସନ୍ତ ଠିଆ ହୋଇଛି ।' ତା ପାଖରେ ଆଠ ନଅବର୍ଷର ଝିଅ ଅନୁପା । ପଛରେ ଚନ୍ଦନା ଓ ଇନ୍ଦିରା । ବସନ୍ତର କାଖରେ ତିନି ବର୍ଷର ଝିଅ । ଅନୁପାର କୋଳରେ କଅଁଳା ପିଲା । ସେମାନଙ୍କ ଆଗରେ ନରୁପା । ହାତରେ ଗାଁଟାପାର୍ଟାର କଣ୍ଢେଇ ।

ଲିଲ୍ଲିପୀର ଫଟୋ ?

ପଢ଼, ଚିଠି ପଢ଼ ।

ବୀରକେଶରୀ ମନେ ମନେ ପଢ଼ିଲେ—ଫଟୋଖଣ୍ଡି ମୁଁ ରଖିଲି, ଅପା ! ନ ନେଲେ ପିଉସା ଛାଡ଼ନ୍ତେ ନାହିଁ । ସେଥିପାଇଁ ବାଳାସାହା ପଡ଼ିଆରେ ତୁରନ୍ତ-ଉଠାଯାଇଥିବା ପୁରୁଣା ଫଟୋଖଣ୍ଡେ ମୁଁ ପଠାଉଛି । ସେକାଳର କଥା ତୋର ମନେ ପଡ଼ିବ । ଏ ଖଣ୍ଡିକ ନେବାକୁ ସେତେ-ବେଳେ ତୁ ଆଗ୍ରହ ପ୍ରକାଶ କରିଥିଲୁ । ମୁଁ ତତେ ନ ଦେଇ ଲୁଚାଇ-ଦେଇଥିଲି । ତୋ'ର ଲକ୍ଷ୍ମୀ-ନୃସିଂହ ଫଟୋଟି ! ସେଇଆ ତୁ କହୁଥିଲୁ । ଏ ଫଟୋ କେଉଁ ଅଳିଆଗଦାରେ ପଶିଲା ତା'ର ଖବର ମୁଁ ରଖି ନ ଥିଲି । ଶହ ଶହ ଫଟୋ ଆମର ଅଛି । ଏଇ ପୁରୁଣା ପିଲାକାଳ ଫଟୋ ଖଣ୍ଡିକରେ ହିନେ ତୋର ଶରଧା ବଳିଥିଲା ବୋଲି ଖୋଜ ବାହାର କରି ଲିଲ୍ଲିପୀରାଣୀଙ୍କ ଫଟୋ ବଦଳରେ ସ୍ଲାକୁ ତୋ ପାଖକୁ ପଠାଉଛି ।

—ସେଇଟି ମୁଁ ରଖିଛି, ଅପା ! ସେ ବୋହୂ ହୋଇ ଆସିଲେ ତାଙ୍କ ସଙ୍ଗେ ମୋର ଯେବେ ଦେଖାହେବ ମୁଁ ନିଜେ ତାଙ୍କୁ ଫେରାଇଦେବି । ତାଙ୍କର ମୁହଁଟି ସୁନ୍ଦର । ବିଶେଷତଃ ଭ୍ରୂଲତା ଓ ଆଖି ଦିଓଟି । କେଡ଼େ ନିରୀହ ଚାହାଣି । ପିଉସା ଏଠାକୁ ଆସିଲେ, ଆମେ କେତେ ଖୁସି ହେଲୁଁ । ଥରେ କଟକ ଆସି ଆମକୁ ସବୁ ଦେଖିବାକୁ ତୋର ମନ ହୁଏ ନାହିଁ ? ତୋର ଦେହ ଭଲ ନାହିଁ । କଟକ ଆସିଲେ ସବୁ ଭଲ ହୋଇଯିବ । ତୋର ସେବା କ'ଣ ମୁଁ କରିପାରିବ ନାହିଁ ମଣୁଛୁ ?

ଗୌରକେଶରୀ ଦୀର୍ଘଶ୍ୱାସ ଛାଡ଼ି କହିଲେ, ବୁଝିଲି । ନଅ, ତମର ଚିଠି ଓ ଫଟୋ ନଅ ।

ଚନ୍ଦନା ସେତକ ସାଇତି ରଖିଲେ । କହିଲେ, ଉଲୁପୀକୁ ଅନୁ ପ୍ରଶଂସା କରୁଛି । ଫଟୋଖଣ୍ଡିକ ସେ ରଖିଥାଉ । ସମସ୍ତଙ୍କର ପସନ୍ଦ ହୋଇଛି । ମୋର ଆଉ ସେଥିରେ ଲୋଡ଼ା ନାହିଁ । ଅନୁ ମୋର କେଡ଼େ ସ୍ନେହୀ !

ଗୌରକେଶରୀ ମୃଦୁ ହସି କହିଲେ, ତମେ ଥରେ ଯାଇ ତାକୁ ଦେଖିଆସ । ଇନ୍ଦର କିପରି ଅଭିନ୍ନ ବେମହନ୍ତିଆ କରି ଝିଅଗୁଡ଼ାଙ୍କୁ ବଢ଼ାଇଛି, ତବେ ବୁଝିବ । ଛି, ଛି ! ପିଲାଙ୍କର ଦୋଷ ଦେଇହେବ ନାହିଁ । ଆନନ୍ଦ ଓ ଇନ୍ଦିରା କେବଳ ଧନ ପଛରେ ବାଇଆ ବାଲୁକ ପରି ଧାଇଁଛନ୍ତି । ଶାସନ ହୁଗାଳ ଯୁବତୀ ଝିଅଙ୍କର ମୁହଁ ବଢ଼ାଇଛନ୍ତି । ସେମାନଙ୍କୁ ବାର ଲୋକଙ୍କ ସଙ୍ଗେ ସ୍ୱାଧୀନ ଭାବରେ ମିଶିବାକୁ ଛାଡ଼ିଦେଇଛନ୍ତି । ଏହାର ବିଷମ ପରିଣାମ କଥା ବିଚାର କର ।

ଚନ୍ଦନାଙ୍କ ଆଖିରେ ଲୁହ ଛଳଛଳ ହେଲା । ଅନୁପା ପରି ସ୍ନେହୀ ଓ ଉଦାର ସୁବର୍ଣ୍ଣପ୍ରତିମା ଝିଅ, ସେ ପୁଣି ଧନକୁବେରର ଦୁଲାଳୀ; ତା'ର ପୁଣି କ'ଣ ପରିଣାମ ହେବ ?

ଚିଠି ସଙ୍ଗେ ଲଫାଫା ଭିତରେ ଅନୁପା ପଚିଶ ଟଙ୍କା ପଠାଇଛି । ଚିଠିରେ ତାର ଉଲ୍ଲେଖ ନାହିଁ । ଚନ୍ଦନା ସେ ଟଙ୍କାକୁ ଲୁଚାଇ ରଖିଛନ୍ତି ।

କି ଢଙ୍ଗ ଅନୁପାର ସେ ଦେଖିଲେ ଯେ ପିଉସୀ ହୋଇ ଏପରି ଅସ୍ନେହ କଥା କହୁଛନ୍ତି !

ଚନ୍ଦନାଙ୍କୁ ନିଶ୍ଚଳ ଚିନ୍ତାମଗ୍ନ ଦେଖି, ଚିଠି ଦୁଇଖଣ୍ଡି ପୋଷ୍ଟ-ଅଫିସରେ ପକାଇବାକୁ ଗୌରକେଶରୀ ପଦାକୁ ବାହାରିଗଲେ ।

ବୀରକେଶରୀ କାହାର ପ୍ରତିବାଦ ମାନିଲେ ନାହିଁ । ଦୁର୍ବଳ ଦେହ ଓ ଭଙ୍ଗା ସ୍ୱାସ୍ଥ୍ୟ ଘେନି ଗୋଟିଏ ନୂଆ ଉତ୍ସାହରେ ବୁଢ଼ାବୟସରେ ଚାକିରି କରି ଅର୍ଥ ଉପାର୍ଜନ କରିବାକୁ ଜୟପୁର ବାହାରିଲେ । ନିଜ କୁଟୁମ୍ବ ଛଡ଼ା ଏକଥା ଖବର ଗ୍ରାମରେ ସେ ଅନ୍ୟ କାହାରିକୁ ଜଣାଇଲେ ନାହିଁ ।

ଚନ୍ଦନାଙ୍କ ଆଖିରେ ଲୁହ ଅଟକି ରହୁ ନ ଥିଲା । ଦୁଃଖରେ ମଳିନ ତାଙ୍କର ମୁହଁକୁ ଭଲକରି ଥରେ ଚାହିଁବାକୁ ବୀରକେଶରୀଙ୍କର ଛାତିରେ ଦମ୍ଭ ନ ଥିଲା । ତଥାପି, ସାନ୍ତ୍ୱନା ଦେବାକୁ ସେ କହିଲେ, କାହିଁକି ଦୁଃଖ କରୁଛ ? ଘରର ଅବସ୍ଥା ଅସମ୍ଭାଳ । ପିଲାଟି କେଉଁଆଡ଼କୁ ହେବ ? ନିମିତ୍ୟ ଉଠିବ କିପରି ? ହାତଉଧାରି ଗଦାଏ ଟଙ୍କା ପରିଶୋଧ ହେବ କିପରି ? ମୋର ଦେହ ଭଲ ଅଛି । ତମେ ଚିନ୍ତା କର ନାହିଁ ।

ବିଦାୟ ନେଇ ବିକ୍ରମ ସଙ୍ଗରେ କଟକ ଆସୁଥିଲାବେଳେ ଚନ୍ଦନା ଦାଣ୍ଡପିଣ୍ଡାରେ ଠିଆ ହୋଇଥିଲେ । ଶୁଣୁକା ଶେଥାଳିଆ ମୁହଁ । ମଥାର ଓଢ଼ଣା ବେକ ଉପରକୁ ଖସିଆସିଥାଏ । ସୀମନ୍ତର ସିନ୍ଦୂରଗାର ଧଳାକଳା କେଶର ମିଶ୍ରଣ ମୁଣ୍ଡରେ ଅଗ୍ନିଶିଖା ପରି ଜଳୁଥାଏ । କପାଳ ମଝିରେ ପଇସା ଆକାରର ବାଳସୂର୍ଯ୍ୟପ୍ରଭ ସିନ୍ଦୂର ଟୋପା । ଆଖିର ବହଳ କଜଳ ପତା ଉପରକୁ ଚହଲି ଆସିଥାଏ । ଆଖି ଛଳଛଳ । ଓଠପତା ଥରୁଥାଏ ।

ସେ ଓଠ ନୀରବ ଭାଷାରେ ମନର ଗହନ କନ୍ଦରରେ ଅତି କରୁଣ ସ୍ୱରରେ ଯେପରି କହୁଉଠୁଥାଏ, ଦେଖିଯାଇଥାଅ ମୋର ଅହିଅଗଣୀ ବେଶ; ଖଇକଉଡ଼ି ବାନ୍ଧି ଆଗେ ଆଗେ ଯିବାକୁ ହୁଏତ ତମେ ପାଖରେ ନ ଥିବ ।

ବୀରକେଶରୀଙ୍କର ଛାତି ସାମାନ୍ୟ ଥରିଉଠିଥିଲା । ଦିନଆର ଦୁଃଖ ତାଙ୍କର ଭାବପ୍ରବଣତାକୁ କଇଁଥା କରିସାରିଥିଲା । ସେ ପଛକୁ ନ ଚାହିଁ ଛନ୍ଦିବାନ୍ଧି ହେଲା ପରି ଅଟକି ଅଟକି ଯାଉଥିବା ଦୁର୍ବଳିଆ ପାଦକୁ ଠେଲି ଠେଲି ଆଗେ ଆଗେ ଚାଲିଥିଲେ । ପଛେ ପଛେ ବିକ୍ରମ ।

ବିମଳାଙ୍କ ବାଟରେ ବିକ୍ରମଙ୍କୁ ସେ କେବଳ ଉପଦେଶ ହିଁ ଦେଉ-
ଥିଲେ । ଯାହାର ମର୍ମ ହେଉଛି—ଅଭିଜ୍ଞତାରୁ ସେ ବୁଝିଛନ୍ତି ଯେ ଏ
ସଂସାରରେ ନିଜକୁ ନିଜେ ରକ୍ଷାକରି ନ ପାରିଲା ଆଉ କେହି ତାକୁ ରକ୍ଷା କରି-
ପାରିବେ ନାହିଁ । ସବୁବେଳେ ତରକି ରହିଥିବ । ସାମାନ୍ୟ ଟିକିଏ ହୁଡ଼ିଲେ
ବୁଡ଼ିବା ସୁନିଶ୍ଚିତ । ଆଗକା ଦୁନିଆର କଥା ଥିଲା—ନେବା ଲୋକ ବଡ଼
ନୁହେଁ, ଦେବା ଲୋକ ବଡ଼ । ରାଜା ହରିଶ୍ଚନ୍ଦ୍ର ଓ କର୍ଣ୍ଣ ମହାରାଜାଙ୍କ ଅମଳର
ଚଳଣି କେବଠାରୁ ଗଲାଣି । ଏବକା ଦୁନିଆର ରୀତି ହେଲା, ନେବା ଲୋକ
ହିଁ ବଡ଼ । ଆଖି ବୁଲାଇଲେ ଦେଖାଯିବ ରେ ପୁଅ, ଏହି ନୀତି ସବୁଠାରେ
କାମ କରୁଛି । କହିଜାଣିଲେ କଥା ସୁନ୍ଦର ରେ ବାବୁ, ସେଥିରେ କାର୍ପଣ୍ୟ
ଲୋଡ଼ା ନାହିଁ । କାମ ହେଲେ ଭଲ, ନ ହେଲେ ନାହିଁ । କେଉଁ ଏବେ
ସେଥିକି ପଇସା ଖରଚ ପଡ଼ୁଛି ?

ବିକ୍ରମର ମନ ଝଗଡ଼ା ଉଠିଥିଲା । ତର୍କ କରି ଅପ୍ରିୟତା
ସୃଷ୍ଟି କରିବାକୁ ସେ ଇଚ୍ଛା କରି ନ ଥିଲା । ବୁଝିବାର ଲୋକ ସେ ନୁହନ୍ତି ।
ଯାହା ସେ ଭଲ ମଣୁଛନ୍ତି, କହନ୍ତୁ । ତାଙ୍କର ଅନ୍ତରାତ୍ମା ଶାନ୍ତ ହେଉ ।
ବିଦେଶ ନ ଯାଇ ଗ୍ରାମରେ ରହି ଛୋଟ ଦୋକାନ ଖଣ୍ଡେ କରିଥିଲେ, ଅବା
ଛୋଟ ଛୋଟ ପିଲାଙ୍କୁ ଡକାଇ ପାଠ ପଢ଼ାଇଥିଲେ, ଆନନ୍ଦରେ ସମୟ
କଟିଯାଇଥାନ୍ତା । ନିଜର ସ୍ୱାସ୍ଥ୍ୟ ଓ ବୋଉଙ୍କର ସ୍ୱାସ୍ଥ୍ୟ ପ୍ରତି ସେ ନଜର
ଦେଇପାରିଥାନ୍ତେ । ଘର ଓ ଜମିବାଡ଼ିର ତତ୍ତ୍ୱ ନେଇପାରିଥାନ୍ତେ ।

ପ୍ରକାରାନ୍ତରେ ବୋଉଙ୍କ ଆଗରେ ବିକ୍ରମ ଏହି ପ୍ରସ୍ତାବ
ବାଢ଼ିଥିଲା ।

ବୀରକେଶରୀ ଚନ୍ଦନାଙ୍କୁ ଉତ୍ତର ଦେଇଥିଲେ, କେଶରୀ ଶବ୍ଦର ଅର୍ଥ
ତମକୁ ଜଣା ନ ଥିଲା ପରି ଏ ପ୍ରସ୍ତାବ ଆଣୁଛ । ସିଂହପିଲା କେବେ ହାତରେ
ତରାଜୁ ଧରି ଓଜନ କରେ ନାହିଁ । ଦୁଇପଇସା ଲାଭ ପାଇଁ ଗରାକଙ୍କ ସଙ୍ଗେ
ଧିକ୍‌ଚିକ୍ ହୁଏ ନାହିଁ । କଳା କାରବାର କରେ ନାହିଁ । ଦଣ୍ଡି ମାରେ ନାହିଁ ।
ଖାଇଆଳ ପିଲା ପାଞ୍ଚଣ ଧରି ଗୋରୁ ଶାସିଲା ପରି ସିଂହପିଲା କେବେ ହାତରେ

ବେଡ ଧରି ଇଉଆଣୀ ପିଲାଙ୍କୁ ଉସଭଇ ହସେଇ ଅ-ଆ ଶିଖାଏ ନାହିଁ । ସେଇଟା ମାଟିବଂଶିଆ ନାହାକ ଦଳଙ୍କ କାମ । କେଶରାତୁଆ ଜଗି ଜଗି, ବାଘ ଭଳି ଝାମ୍ପ ମାରେ । ଶିକାର ଧରେ । ବୁଝିଲ ?

ବହମ ବାରଣ୍ଡାରେ ଥାଇ ଶୁଣୁଥାଏ ।

ଚନ୍ଦନା କହିଲେ, ମତେ ଠକ ଭୁଲେଇବାକୁ ସେମିତି ଗୁଡ଼ାଏ ତମେ ଗପିବ ତ ଆଉ କଣ ? ତମର ବଳବୟସ ଆଉ କାହିଁ ଯେ ଝାମ୍ପମାରି ଶିକାର ଧରିବ ? ଭୁଲାଇବେଳେ ଠକୁଛ । ଦେହରେ ଶିରା ଗଣିହେଉଛି ।

ମୁଣ୍ଡରେ ବୁଦ୍ଧି ଥିଲେ ସବୁ ହେବ । ଜାଣିଛ ତ, କପରି ଆମରଣ ଅନଶନ କରି ବେକରେ ଗଦାଏ ଫୁଲମାଳ ସଙ୍ଗେ ନୋଟ୍‌ର ମାଳା ପିନ୍ଧି ମୁଁ ସରକାରକୁ ଜିଣିଲି ?

ଆଉ କଅଣ ବାପମାଆଙ୍କ ମଧ୍ୟରେ ଆଲୋଚନା ହେବ, ଶୁଣିବାକୁ ବହମ ବାରଣ୍ଡାରେ ରହିଲା ନାହିଁ । ଜୟପୁର ଓ ଦେବନାଥ ତାଙ୍କୁ ଡାକ ଛାଡ଼ୁଛନ୍ତି, ଅବା ଗ୍ରାମଲୋକଙ୍କ ପାଖରେ ଜବାବଦିହି ହୋଇ ନିଜର ଲାଜ ଓ ଭୟ ତାଙ୍କୁ ସେମାନଙ୍କ ପାଖରୁ ଦୂରେଇ ଦେଉଛି । ସେ ନିଶ୍ଚୟ ଯିବେ ।

ପଥରେ ସେ ଯାଉଛନ୍ତି । ଖାଲି ତାଙ୍କର ଛଟପଟ ଅତୃପ୍ତ କାମନାର ବେଦନକୁ ଉପଦେଶ ଛଳରେ ସେ ପ୍ରକାଶ କରିଯାଉଛନ୍ତି ।

ରାତି ଦେଢ଼ଟାରେ ହାବଡ଼ା ମାଡ୍ରାସ ଏକ୍‌ସପ୍ରେସ ଗାଡ଼ି କଟକ ରେଲଷ୍ଟେସନ୍ ଛାଡ଼ୁଛି । ସେ ଗାଡ଼ି ବିଜୟନଗରମ୍‌ରେ ପହଞ୍ଚୁଛି ତହିଁଆରଦିନ ବାରଟା ବେଳରେ । ସଙ୍ଗେ ସଙ୍ଗେ ଜୟପୁରକୁ ବସ୍ ମିଳିବ । ସଞ୍ଜବେଳକୁ ଜୟପୁର । ବୀରକେଶରୀ ଏହି ପ୍ରୋଗ୍ରାମ୍ କରିଥିଲେ । ଜୟପୁରର କେଉଁ ବନ୍ଧୁଙ୍କୁ ଆଗରୁ ଚିଠି ଲେଖିଥିଲେ ।

ସଞ୍ଜ ଆଗରୁ ସେମାନେ ଆନନ୍ଦଙ୍କ ବସାରେ ପହଞ୍ଚିଥିଲେ । ଆନନ୍ଦ ନ ଥିଲେ ।

ଇନ୍ଦିରା ସେମାନଙ୍କୁ ସ୍ୱାଗତ ଜଣାଇଲେ । ହସ୍ପିଟାଲକୁ ଯିବାକୁ ସେ ତରତର ହେଉଥିଲେ । ବାଉରିବନ୍ଧୁ କେଉଁଠି ସ୍କୁଟର ଆକ୍ସିଡେଣ୍ଟ କରି ସତୁରି ବର୍ଷର ବୁଢ଼ୀଟିକୁ ରକ୍ତାକ୍ତ ଓ ଦରମରା କରି ନିଜେ ହାତ-ଗୋଡ଼ ଭାଙ୍ଗି ସଂଜ୍ଞାହୀନ ହୋଇ ରାସ୍ତାକଡ଼ରେ ପଡ଼ିଥିଲା । ହସ୍ପିଟାଲ୍‌ରେ ତାର ଜ୍ଞାନ ଫେରିଛି । ସେ ଯନ୍ତ୍ରଣାରେ ଛଟପଟ ହେଉଛି । ବୁଢ଼ୀର ଜ୍ଞାନ ଫେରିନାହିଁ । କେତେବେଳେ ପ୍ରାଣବାୟୁ ବାହାରିଯାଇପାରେ । ମାଜିଷ୍ଟ୍ରେଟ୍ ଓ ପୋଲିସ୍‌ବାଲା ଜଗି ବସିଛନ୍ତି ।

ଖବର ଯେତେବେଳେ ପାଇଲେ, ଇନ୍ଦିରାଙ୍କୁ ଯିବାକୁ ପଡ଼ିବ । ପିଲାମାନେ ବି ଯିବେ । ବଡ଼ଦିନର ଘନଷ୍ଟୁତା । ହାଡ଼ିବନ୍ଧୁ ରାମକୁମାରବାବୁଙ୍କ ସଙ୍ଗେ କେନ୍ଦୁଝରର ଜଙ୍ଗଲର ବଣଜଙ୍ଗଲରେ ବୁଲି କେଉଁ ଖଣିର ଅନୁସନ୍ଧାନ କରୁଥିବେ । ଦୁର୍ଘଟଣାର ଖବର ପହଞ୍ଚିବା ସମ୍ଭବ ନୁହେଁ । ଆନନ୍ଦ ଓ କମଳକୃଷ୍ଣବାବୁ ସେହି ଉଦ୍ଦେଶ୍ୟରେ ସୁନ୍ଦରଗଡ଼ ଜଙ୍ଗଲକୁ ଯାଇଛନ୍ତି । କମଳବାବୁଙ୍କର ପୁଅ ସଞ୍ଜୟ ଡପୋଟି ବ୍ଲକର ପାଇବାର ଆଦେଶ ପାଇ ସେମାନଙ୍କ ସଙ୍ଗରେ ଯାଇଛି । ଇନ୍ଦିରାଙ୍କର ଦାୟିତ୍ୱ ଅଛି । କର୍ତ୍ତବ୍ୟବୋଧ ପାଇଁ ତାଙ୍କୁ ଯିବାକୁ ପଡ଼ିବ ।

ଇନ୍ଦିରାଙ୍କ ସଙ୍ଗେ ନିରୁପା ଓ ସୁରୁପା ବୁଲିଯାଇଥିଲେ । ବଡ଼ଦିନ ପରେ ସାନନ୍ଦ ବିନ୍ଦମାକୁ ଦେଖି ଯିବାକୁ ମନା କରିଦେଲା । ଅନୁପା ପାଖରେ ରହିଲା ।

ବୀରକେଶରୀଙ୍କର ଯତ୍ନ ନେବାରେ ଅନୁପା ତତ୍ପର ହୋଇ-ଉଠିଥିଲା । ଖଞ୍ଜାଭିତରର କଣଘରେ ବିଶ୍ରାମ ନେବାପାଇଁ ସେ ଆୟୋଜନ କରିଦେଲା । ଘଣ୍ଟା କେଇଟି ତ ରହଣି !

ବୀରକେଶରୀ ପଚାରିଲେ, ବାଉରିବନ୍ଧୁକୁ ଦେଖିବାକୁ ତୁ ଆମର ପାଇଁ ଯାଇପାରିଲୁ ନାହିଁ, ମା ?

ନାଇଁ, ପିଉସା ! ଆପଣମାନେ ନ ଆସିଥିଲେ ବି ମୁଁ ଯାଇ ନ ଥାନ୍ତି। ବୋଉ ମତେ ମନା କଲା । କାହିଁକି ମନା କଲା, ସେକଥା ଆପଣ ବୋଉଠାରୁ ବୁଝିବେ ।

ସାନନ୍ଦର ହାତ ଧରି ବିକ୍ରମ ପଦାକୁ ବାହାରିଗଲା । ବାରଣ୍ଡାରେ ଟିକିଏ ଅପେକ୍ଷା କଲା । ଅନୁପା ସାମାନ୍ୟ ଉଚ୍ଚ ସ୍ୱରରେ କହୁଥିବାର ସେ ଶୁଣିଲା ।

ସାରକେଶଙ୍କୁ ପଚାରିଲେ, ଭୁ କହନ୍ତୁ ?

କହିବାକୁ ମୋର ଆପତ୍ତି ନାହିଁ ଯେ ମୋ ମୁହଁରୁ ଶୁଣିଲେ ଆପଣ ଭାବିବେ ମୁଁ ନିର୍ଲଜ୍ଜୀ । ଝିଅମାନଙ୍କ ମୁହଁରୁ ସେମାନଙ୍କର ବାହାଘର ସମ୍ବନ୍ଧରେ କିଛି ଶୁଣି ବରଦାସ୍ତ କରିବା ଅଭ୍ୟାସ ଆପଣମାନଙ୍କ ଅମଳର ଲୋକମାନଙ୍କର ହୋଇନାହିଁ ।

ବିକ୍ରମର ଛାତି ଦାଉଁଦାଉଁ ପଡ଼ୁଥିଲା । ସହସା ତାର ଚିନ୍ତା ଫେରିଗଲା କେଉଁ ଅତୀତକୁ ।

ସାନନ୍ଦ ଅଳି କରୁଛି, ଉଡ଼ାଜାହାଜ କିଣିଦେବ ବୋଲି ତମେ କହିଥିଲ, ବିକଭାଇ !

କାଲି କିଣିଦେବି ।

ମୁଁ ସେଥିରେ ବସିବି, ଗ୍ରେଟ ଉଡ଼ାଜାହାଜ ।

ହଉ ହଉ, କହି ବିକ୍ରମ ସାନନ୍ଦକୁ ଛାତି ଉପରକୁ ଟେକିଲା ।

ସେଦିନ ପୂର୍ଣ୍ଣିମା । ଜାନୁଆରୀ ତିନି ତାରିଖ । ଶୁକ୍ରବାର । ଶୀତୁଆ ଜହ୍ନ ଆମ୍ବଗଛର ପତ୍ରଗହଳ ସେପାଖେ ଉଇଁସାରିଥାଏ । ବିକ୍ରମର ମନେ ହେଉଥାଏ ଯେପରି ଲମ୍ବ ଦାଉଡ଼ାଟା ଆକାଶରୁ କେଉଁ ଡାଳରୁ ତଳକୁ ଲମ୍ବି ହଲି ହଲି ତାକୁ ନିମନ୍ତ୍ରଣ କରୁଛି ।

ତାର କାନରେ ପଡ଼ିଲା, ଆପଣଙ୍କ ପାଇଁ ଗୁ' ବନ୍ଦୋବସ୍ତ କରିଦେଇଛି, ପିଉସା ! ମୋ ପଡ଼ାଘରେ ବିକଭାଇ ଗୁ' ଖାଇବେ । ତାଙ୍କ ସଙ୍ଗେ ଟିକିଏ ବୁଝାମଣା ଅଛି ।

କ ବୁଝାମଣା ?

ଜ୍ଲୁପୀ-ରାଜନର କଥା । ତାଙ୍କୁ ମୁଁ ଫଟୋଟି ଦେଖାଇବ । ଅନେକ ଦିନରୁ ତାଙ୍କ ସଙ୍ଗରେ ମୋର ଦେଖା ହୋଇନାହିଁ ।

ମୁଁ ପରେ ଜାଣିଲି ଅନୁ, ସେ ଫଟୋଖଣ୍ଡି ତୁ ରଖି ଆଉ ଖଣ୍ଡିଏ ଫଟୋ ତୋ ଅପାଙ୍କ ପାଖକୁ ପଠାଇଥିଲୁ । ସେ ମୋତେ ଦେଖାଇଥିଲେ । ଜ୍ଲୁପୀର ଫଟୋ ବସନ୍ତର ଆଉ ଲୋଡ଼ା ହେବ ନାହିଁ । ସେ ତାର ସମ୍ମତି ଦେଇସାରିଛି ।

ଭାରି ଖୁସିର ଖବର । ମୋର ବି ଆଉ ସେଇଟା ଲୋଡ଼ା ନାହିଁ । ଆପଣଙ୍କୁ ଫେରାଇଦେବି, ପିଉସା !

ବସନ୍ତ ଅନୁଭବ କଲା, କୌଣସି କାରଣ ପାଇଁ ଅନୁପା ସାମାନ୍ୟ ଉତ୍ତେଜିତ ହୋଇଛି । ଜାଣିବାକୁ ବେଶି ବେଳ ତାକୁ ଅପେକ୍ଷା କରିବାକୁ ପଡ଼ିଲା ନାହିଁ । ଅନୁପାର ତଡ଼ାଦରେ ତାର ପ୍ରଶ୍ନର ଉତ୍ତର ସେ ଦେଲା ।

ବସନ୍ତ ଜାଣିଲା, ତା'ର ମାମୁଁ ଓ ହାଡ଼ବନ୍ଧୁବାବୁ ବାଉରିବନ୍ଧୁ ଓ ଅନୁପାର ବାହାଘର ଫାଲ୍‌ଗୁନ ମାସରେ କରିବାକୁ ସ୍ଥିର କରୁଛନ୍ତି । ସେଥିରେ ତା'ର ମାଈଁ ରାଜି ହୋଇଛନ୍ତି । ଅନୁପାର ପାଠପଢ଼ା ବନ୍ଦ ହେବ । ଏଥିରେ ଅନୁପା ରାଜି ହେଉନାହିଁ । ପୂର୍ବମତ କଲେଜକୁ ଯାଉଛି ।

ସବୁ ଶୁଣି ବସନ୍ତ କହିଲା, ସଞ୍ଜୟବାବୁ ଡେପୁଟି ହୋଇଛନ୍ତି । ଖବରକାଗଜରୁ ମୁଁ ଏହା ଦେଖିଲି ।

ଅନୁପା କହିଲା, ତମର ଇଙ୍ଗିତ ମୁଁ ବୁଝିଲି, ବଡଭାଇ ! ବୋଉ ଉପଯୁକ୍ତ ଶିକ୍ଷା ପାଇ ରଞ୍ଜିତା ମାଉସୀଙ୍କ ପାଖରୁ ଫେରିଛି । ଦୁଇଦିନ କାଳ ସେ କାହାକୁ କିଛି କହିଲା ନାହିଁ । ଅଧାଉପାସ ରହିଲା । ମୋତେ ଦିନେ ପାଖକୁ ଡାକି ନିରୋଳାରେ କହିଲା, ସଞ୍ଜୟଟା ଛତରଟାଏ ଲୋ ମା ! ସେ ନିଜେ ତା ପାଇଁ କେଉଁଠି କାହାକୁ ଟିକ୍ କରିଛି । ରଞ୍ଜିତା କାନ୍ଦକାନ୍ଦ ହୋଇ ବୋଉକୁ କହିଲେ, କିଛିଦିନ ଯାଉ, ବେଳେ ସଞ୍ଜୟର ମନ ବଦଳିବ । ସେ

କୁଆଡ଼େ ମୋ ନାମରେ କେଉଁଠୁ କ'ଣ ବାଜେ କଥା ଶୁଣିଥିବ ! ଦିନେ ତା'ର ଭୁଲ ବୁଝିବ, ବାଟକୁ ଆସିବ ଯେ—

ବିଷମ ପଗ୍ଭରିଲା, କ'ଣ ଶୁଣିଥିବ ?

ଅନୁପ। କହିଲା, ସେଥିରୁ ମତେ କ'ଣ ମିଳିବ ? ମୁଁ ଭାରି ଖୁସି ହେଲି । ସଞ୍ଜୟଭାଇଙ୍କ ବାହାର ରୂପ, ଢଙ୍ଗ, ଭଦ୍ରତା ଦେଖି ସେ ଗଦ୍‌ଗଦ ହେଉଥିଲା । ଲୋକଟାର ପ୍ରକୃତ ରୂପ ସେ ଦେଖନ୍ତା କିପରି ? ଯାହାହେଉ, ପାନେ ପାଇଲା !

ତା'ର ପ୍ରକୃତ ରୂପଟି ପୁଣି କ'ଣ, ଅନୁ ?

ସେ ତମର ସହପାଠୀ ଥିଲେ । ତମକୁ ଅଜଣା ନ ଥିବ । ବଡ଼ଦିନ ଛୁଟି ଭିତରେ ତାଙ୍କ ସଙ୍ଗେ ପିକ୍‌ନିକ୍‌ରେ ମହାବାଣୀ ଯାଇଥିଲୁଁ । ତମକୁ ଚିଠି ଲେଖିଥିଲି, ତମେ ଆସିଲ ନାହିଁ ।

ମୋର ବନ୍ଧୁ ପ୍ରଦ୍ୟୁମ୍ନବାବୁ ନିତାନ୍ତ ଜଗର କଲାରୁ ଦିନକ ପାଇଁ ତାଙ୍କ ଗ୍ରାମକୁ ମୁଁ ଗ୍ଭଲିଯାଇଥିଲି । ତିନିଦିନ ରହିଗଲି ।

ମୁଁ ଜାଣେ ବିକଭାଇ ! ଆମ କଲେଜରୁ କାହାରି ମୁଁ ସେଦିନ ଏକା ଟାକ୍‌ସିରେ ଭୁବନେଶ୍ୱର ଯାଇଥିଲି । ସେଇଠୁ ରିକ୍‌ସା ଚଢ଼ି ତମ ବସାକୁ ଗଲି । ତମର ତେଲେଙ୍ଗା ପିଲା ଗ୍ଭକରଟି ତାଲା ପକାଇ କୁଆଡ଼େ ଯିବାକୁ ବାହାରିଥିଲା । ମୁଁ ତମର ଭଉଣୀ, ଏ ଖବର ପାଇ ସେ ପୁଣି ତାଲା ଖୋଲିଲା । ତମର ରହିବା କୋଠରିରେ ତାଲା ପଡ଼ିଥିଲା । ଖଞ୍ଜା ଭିତରେ ଦୁଇ ତିନ ମିନିଟ୍ ବୁଲିଲି । ସେଇଠୁ ପୁଣି କଲେଜକୁ ଫେରିଆସିଲି । ସେଇ ଟୋକା କହୁଥିଲା ଯେ ତମେସବୁ ଗ୍ରାମକୁ ଯାଇଛ ।

ତୁ ଯାଇଥିଲୁ ମୋ ବସାକୁ ?

ଆଶ୍ଚର୍ଯ୍ୟ ହୁଅନା । ଦିନେ ସଞ୍ଜରେ ବନହଂସୀମାଉସୀ ଓ ବିମଳ-ବାବୁଙ୍କ ସଙ୍ଗେ ଯାଇ ତମର ନୂଆ ବସା ଦେଖିଆସିଥିଲି । ଘରର ନମ୍ବର ମତେ ଜଣାଥିଲା । ତମ ଘରେ ସେଦିନ ପିଜସା କଟକରୁ ଯାଇ ପହଞ୍ଚିଥିଲେ ।

ମୁଁ ଜାଣେ । ବାପା ମତେ କହୁଥିଲେ ।

ଆଜ ଥରେ ଡପୋଟି ଗ୍ରୁକର ପାଇଁ ପରୀକ୍ଷା ଦେବାକୁ ତମକୁ ଅନୁରୋଧ କରିବାକୁ ଯାଇଥିଲି ।

ଆଗ ପେଟପିଠିର ଅବସ୍ଥା ବଦଳୁ, ଅନୁ, ତା'ପରେ ବଡ଼ କଥାର ଭାବନା । ସେହି ପେଟ ପାଇଁ ଏ ବୟସରେ ରୋଗଣା ଦେହ ଧରି ଆଜ ବାପା ଜୟପୁର ଯାଉଛନ୍ତି । ସଞ୍ଜୟବାବୁଙ୍କ କଥା କ'ଣ କହୁଥିଲୁ, ଅଧା ରଖି-ଦେଲୁ ଯେ !

ଅନୁପାର ମୁହଁ ଆରକ୍ତ ହେଲା । ସେ ସାନନ୍ଦକୁ ଚାହିଁଲା । ବନସାବା ଖେଳଖେଳ ପିଲାଟା କ୍ଲାନ୍ତ ହୋଇଥିଲା । ପଲଙ୍କ ଉପରେ ଶୋଇ ତାକୁ ନିଦ ଘୋଟିଗଲାଣି । ତା'ର ମୁଣ୍ଡ ଟେକ ନିଜର ଜଙ୍ଘ ଉପରେ ଥାପି ପିଠି ଥାପୁଡ଼ୁଣୁ ଅନୁପା କହିଲା, ପାହାଡ଼ର ଗଡ଼ାଣି ବାଟରେ ମୁଁ ଟଳଟଳ ହେଲାରୁ ସେ ମୋର ହାତ ଧରି ଓହ୍ଲାଇବାରେ ସାହାଯ୍ୟ କରୁଥିଲେ । ହସ, ଖୁସି, ଉତ୍ତେଜନା ସବୁ ଠିକ୍ ଥିଲା । ଟୋକାଟୋକୀଙ୍କର ସ୍ୱାଧୀନ ଚଳଣରେ ଭଦ୍ରତାର ଫାନ୍ଦରେ ହାସପରିହାସ, ବ୍ୟଙ୍ଗ, ଉପଲକ୍ଷ ଭରା କଥାଭାଷା ଚାଲିଥିଲା ।

ଅନୁପା ବାହାର ବାରଣ୍ଡାକୁ ଚାହିଁଲା । ତାର ମନେହେଲା ଯେପରି କିଏ ସିଡ଼ିରେ ଉଠି ଉପରକୁ ଆସୁଛି । ସେ ତରତର କରି କହିଲା, ଟିକିଏ ନିରୋଳା ସମତଳ ସ୍ଥାନରେ, ଗଛଲଟାର ଦେହ ସେପାଖେ, ସେ ତାଙ୍କର ଭାଷା ଅସଂଯତ କଲେ । ସେଥିରେ ମିଳନ-ଇଙ୍ଗିତ ଦେଲେ । ମୁଁ ତାଙ୍କୁ ଉତ୍ତର ଦେବା ଆଗରୁ ସେ ପାଗଳଙ୍କ ପରି ତାଙ୍କର ଦୁଇ ବାହୁରେ ମୋତେ ଆଶ୍ଲେଷି ଧରିଲେ—

ଅନୁପାର କଥା ଅଧା ରହିଲେ । ବୀରକେଶରୀ ପାଖକୁ ଆସିଲେ । ଅନୁପା ବିଷୟ ପରିବର୍ତ୍ତନ କରି କହିବାକୁ ଲାଗିଲା, ଶେଷ ଚାନ୍‌ସ ହରାଇବା ମୋଟେ ଉଚିତ ନୁହେଁ, ଭାଇନା ! ପରୀକ୍ଷା ଦେବାକୁ ପଡ଼ିବ । ସେଥିପାଇଁ ତ ଆଉ କୁଆଡ଼କୁ ଯିବାକୁ ପଡ଼ୁନାହିଁ ! ଘରେ ଥାଇ ତମେ ପାଠ ପଢ଼ି ପ୍ରସ୍ତୁତ ହୋଇପାରିବ । ବହିପତ୍ର କିଣି ପଢ଼ିବାକୁ ଟଙ୍କାର ତ ଅଭାବ ନାହିଁ !

ତା ପରେ ଏଣୁତେଣୁ କେତେ ଗପ । ବୀରକେଶରୀ ଯୋଗ ଦେଇ-ଥିଲେ ।

ଉଦ୍ଧବ ଓ ଝିଅ ଦୁହେଁ ଡାକ୍ତରଖାନାରୁ ଫେରିଲେ । ଉଦ୍ଧବ ସମ୍ବାଦ ଦେଲେ ଯେ ବାଙ୍ଗରିବନ୍ଧୁର ଜ୍ଞାନ ଫେରିଛି । ଡାହାଣ ହାତ ଓ ଡାହାଣ ଗୋଡ଼ରେ ଫ୍ରାକ୍‌ଚର । ଲୁହାକଣ୍ଟା ଦେଇ ପ୍ଲାଷ୍ଟର ଭିଡ଼ା ହୋଇଛି । କପାଳରେ ଗହ୍ୱାଡ଼ା କ୍ଷତ । ହାଡ଼ ଚଡ଼କିଯାଇଛି । ବ୍ୟାଣ୍ଡେଜ୍ ଭିଡ଼ା ହୋଇଛି । ନିଦ ଔଷଧ ଦେଇ ତାକୁ ଶୁଆଇପକାଇଛନ୍ତି ।

ବୀରକେଶରୀ ବ୍ୟସ୍ତ ହୋଇ, ଦୁଃଖ ପ୍ରକାଶ କରି କହିଲେ, ପିଲାଟାର ପାଖେ ପାଖେ ଥାଇ ତାର ଯତ୍ନ ନେବାକୁ ମୋର ମନ ବିକଳ ହେଉଛି । ହାଡ଼ିବନ୍ଧୁ ଆଜି ଯେଡ଼େବଡ଼ ଧନୀ ହେଲେ କି ହେଲା, ସେ ମୋର ପିଲାଦିନର ସାଙ୍ଗ । ବାଙ୍ଗରିବନ୍ଧୁ ମୋର ପୁଅ ସମାନ । କଅଣ ମୁଁ କରିବି, ଉଦ୍ଧବ ! ପେଟପାଟଣା ପାଇଁ ଆଜି ରାତିରେ ମୋତେ ଜୟପୁର ଯିବାକୁ ପଡ଼ୁଛି ।

ଉଦ୍ଧବ କହିଲେ, ତାଙ୍କର ସେବାଯତ୍ନ କରିବାକୁ ଲୋକର ଅଭାବ ନାହିଁ, ଭାଇ ! ଗଣ୍ଡା ଗଣ୍ଡା ଡାକ୍ତର ଏକଯାଏ ତାକୁ ବେଢ଼ି ରହିଛନ୍ତି । ତମେ ଠାକୁରଙ୍କୁ ଡାକ, କେମିତି ହେଲେ ହେଉ ପଛେ, ବାଙ୍ଗରିଆ ବଞ୍ଚିଯାଉ । ବୁଢ଼ୀଟି ତ ମରିଗଲା ।

ସଙ୍ଗିନ୍ କେସ୍ !

ସେ କଥା ନୁହେଁ । ନିଜ ଦୋଷରୁ ସେ ମଲା । ବୁଢ଼ୀର ଦୁଇ ପୁଅଙ୍କୁ ଋଷି ଦୁଇ ହଜାର ଟଙ୍କା ଦେଇଛି । ତା ବୋଲି ଯୁଥିକା ମତେ ଗୁପ୍ତରେ କହିଥିଲେ । ପିଲାଟା କପରି ଆରୋଗ୍ୟ ହେଉ, କେସ୍ ଫେସ୍ ସବୁ ଉଡ଼ିଯିବ ।

ବୀରକେଶରୀ ସମର୍ଥନ କରି କହିଲେ, ଯାହା କହିଲ ଉଦ୍ଧବ ! ଜାଣିଜାଣି କେହି କିନା ଅହଲ୍ୟା ଓ ଆକ୍ରୋଶରେ ମଣିଷ ମାରେ ନାହିଁ ।

ପାଗଳର କଥା ଅଲଗା । ସନ୍ତୁର ବର୍ଷର ଅଜଣା ବୁଢ଼ୀଟି ଉପରେ ଆମ ବାଉଳର କ'ଣ ବା ଆକ୍ରୋଶ ଥାଇପାରେ ? ସେ ପାଗଳ ନୁହେ । ବୁଢ଼ୀଟା ନିଷ୍ଟୟ ଆସି ଆଗରେ ପଡ଼ିଥିବ ।

ହଁ, ଭାଇ ! ଠେଙ୍ଗା ହାତକଲା ପରେ ତାର ପୁଅ ଦର୍ପ ଏବେ ସେହି-କଥା ମାନିଲେଣି । କହିଲେଣି, ତାର ଆଖିକୁ ଭଲ ଦିଶୁ ନ ଥିଲା । ସେ ବଡ଼ବୋଲା ଥିଲା । ଅଧା-ବାଇଆଣୀ । ମନକୁ ମନ ଭୁଣ୍ଟ୍‌ଭୁଣ୍ଟ୍ ହୁଏ ।

ତେବେ ତ ଇନ୍ଦୁଗ୍ର, ସେ ମଲା ନାହିଁ, ତରିଗଲା । ତାଆରି କଲ୍ୟାଣରୁ ଆମ ବାଉରିଆ ଶୀଘ୍ର ଭଲ ହୋଇଯିବ । ଦେଖିବ ରହ । ମୁଁ କଲ୍ୟାଣ କରୁଛୁ ।

ଏତେବେଳେ ନିରୁପା ମୁହଁ ଖୋଲିଲା, ଭଲ ହେଲା ବକଭାଇ ! ବୁଢ଼ୀ ମଲେ ମରୁ, ବାଙ୍କରଭାଇ ଆଜ ଭବିଷ୍ୟତରେ ମଦ ଖାଇବେ ନାହିଁ ।

ସୁରୁପା କହିଲା, ହାତ ଯୋଡ଼ ନ ହେଲେ କହୁଣି ଉପରୁ କଟାହେବ । କଏସବୁ କହୁଥିଲେ ମ, ଅପା !

ଇନ୍ଦୁଗ୍ର ନିଜ କୋଠରିକୁ ଚାଲିଯାଇଥିଲେ ।

ଅନୁପା କହିଲା, କଟା ହେଉ । ପ୍ଲାଷ୍ଟିକ୍‌ର ହାତ ଲାଗିବ । ଜାଣିହେବ ନାହିଁ । ଖାଲି ଏତିକି ଯେ ସେ ଆଉ ସେହି ପ୍ଲାଷ୍ଟିକ୍ ହାତରେ ଷ୍ଟିୟରିଂ ଧରି-ପାରିବେ ନାହିଁ । ସ୍କୁଟର ଚଳାଇପାରିବେ ନାହିଁ । ମଦଗ୍ଲାସ୍ ଟେକି-ପାରିବେ ନାହିଁ । ଲେଖିବା ତ ଅସମ୍ଭବ । ତେବେ ତାଙ୍କର ମଗଜ୍ ତ କାମିକା । ଭୁଣ୍ଡ କଥା କହିବ । ଆଖି ସବୁ ଦେଖିବ । ସବୁ କାମ କରିବାକୁ ତାଙ୍କୁ ଲୋକ ମିଳିବେ । ଠଙ୍କା ପାଇଲେ ସମସ୍ତେ କାମ କରିବେ ।

ଅନୁପାର ପିଠିରେ ଲଦିହୋଇ ସୁରୁପା କହିଲା, ଛି ! ତମେ କହ, ବକଭାଇ ! ବାହାଘରବେଳେ ହାତଗଣ୍ଠି କେମିତି ପଡ଼ିବ ?

ବଙ୍କିମ କହିଲା, ସତେ, ସେଇଟା ଗୋଟାଏ କଷ୍ଟ କାମ ! ଦୁଇ ହାତ ଓ ଦୁଇ ଗୋଡ଼ ସବୁ କଟିବ ନାହିଁ । ଯେଉଁଟା ବଞ୍ଚିଯିବ, ସେଇଥିରେ ପୁରୋହିତେ କାମ ଚଳାଇଦେବେ ।

ନିରୁପା ଓ ସୁରୁପା ହସିଉଠିଲେ ।

ଅନୁପା ମୂଣ୍ଡକେଇ ହସୁଥିଲା । ବସନ୍ତର ଗମ୍ଭୀର ମୁହଁକୁ ଚାହିଁ-ରହିଥିଲା । ତାର ସେହି ଚାହାଣି ବସନ୍ତର ଆଖିବାଟେ ଅନ୍ତର ଭିତରେ ପ୍ରବେଶ କରି ହଜିଯାଇଥିବା କେତେ ସ୍ମୃତି ଧୀରେ ଧୀରେ ଅଣ୍ଡାଳୁଥିଲା । ମୁଗ୍ଧ ବସନ୍ତକୁ ବିବ୍ରତ, ଚକିତ ଓ ଖିନ୍ନ କରୁଥିଲା ।

ବୀରକେଶରୀ ବାହାର ପାଖରୁ ଆସି ପହଞ୍ଚିଲେ । କହିଲେ, ଟେକ୍ସୀରେ ମୋର ଜିନିଷ ଲଦିସାରିଛି, ବାଃ ! ବେଶ୍ ଥଣ୍ଡା ପଡ଼ିଲାଣି । ଆ, ଆମେ ଟିକଏ ଆଗରୁ ଷ୍ଟେସନ୍‌କୁ ଚାଲିଯିବା । ସେଇଠି ଅପେକ୍ଷା କରିବା । ଗାଡ଼ି ଛାଡ଼ିଲେ—

ମୁଁ ବି ଆପଣଙ୍କ ସଙ୍ଗରେ ଯିବି । ଭୁବନେଶ୍ବରରେ ଓହ୍ଲାଇପଡ଼ିବି ।

ଇନ୍ଦିରା ପହଞ୍ଚିଲେ । ଦୁଃଖ ପ୍ରକାଶ କରି କହିଲେ, ଡ୍ରାଇଭର ଚାଲି-ଗଲାଣି । ନୋହିଲେ ଆମ ଗାଡ଼ିରେ ତମକୁ ସେ ଷ୍ଟେସନରେ ଛାଡ଼ିଦେଇ-ଆସିଥାନ୍ତା ।

ବୀରକେଶରୀ ଇନ୍ଦିରାଙ୍କ ପାଖରୁ ବାଟଖର୍ଚ୍ଚ ଦଶଟଙ୍କା ଅନିଚ୍ଛାସତ୍ତ୍ୱେ, କାଳେ ଇନ୍ଦିରାଙ୍କର ସ୍ନେହ ପ୍ରତ୍ୟାଖ୍ୟାନ କଲେ ତାଙ୍କର ମନରେ ଦୁଃଖ ହେବ, ସେଥିପାଇଁ ବାଧ୍ୟ ହୋଇ ଗ୍ରହଣ କରି, କୃତକୃତ୍ୟ ହେଉଥିଲେ । ସେ କହିଲେ, ସମସ୍ତ ବନ୍ଦୋବସ୍ତ ଅଛି । ଟେକ୍ସୀରେ ବେଶ୍ ଚଳିବ ।

ଇନ୍ଦିରା କହିଲେ, ତମ ବାପାଙ୍କୁ ଗାଡ଼ିରେ ବସାଇ ସଙ୍ଗେ ସଙ୍ଗେ ତମେ ଫେରିଆସିବ ! ବାଃ ! କାଲି ସକାଳେ ବାଉରିଆକୁ ଦେଖି ସହଳ ସହଳ ଭୁବନେଶ୍ୱର ଯିବ । ଆହା ବିଚରା !

ନିରୁପା ଓ ସୁରୂପା ବସନ୍ତର ଦୁଇ ହାତ ଧରି ସେହି ଅନୁରୋଧ କଲେ । ଅନୁପା ମୁହଁ ଖୋଲିଲା ନାହିଁ । ବସନ୍ତର ସମ୍ମତିକୁ ସେ ଅପେକ୍ଷା କରିଥିଲା ।

ରାତି ଦୁଇଟା କି ଅଢ଼େଇଟା ହେବ, ମାଉ଼ଁ !

ହେଉ । ରଥିଆ, ଅବା ପୂଝାରୀ କାହାରି ହେଲେ ନିଦ ଭାଙ୍ଗିବ ଯେ । କଲିଂ ବେଲ୍ ଟିପିବ ।

ମୁଣ୍ଡ ନୁଆଁଇ ବିକ୍ରମ ଈଶ୍ୱରଙ୍କୁ ପ୍ରଣାମ କଲା ।

**ଦେ**ବନାଥବାବୁ ବିଷମକଣ୍ଟକ ଅଞ୍ଚଳର କେଉଁ ଗ୍ରାମରେ ମାପଚୂପ କାମ କରୁଛନ୍ତି । ଜୟପୁରର ମୁକାମକୁ ଜୁନ୍‌ମାସର ମଝିଆମଝି ଫେରିବେ ।

ପର୍‌ଵାନା ନେଇ କ୍ୟାମ୍ପକୁ ବିଦା ହୋଇଯିବା ଆଗରୁ ସେ ବୀରକେଶରୀଙ୍କୁ କହିପାଇଥିଲେ, ଫଗୁଣ ମାସରେ ଝିଅର ବାହାଘର ନିଶ୍ଚୟ କରିବି । ସର୍ବେ ବ୍ୟସ୍ତ ହୋଇପଡ଼ିଲେଣି । ସବୁ ଆୟୋଜନ କରାସରିଛି । ଦିନ ଦଶଟା ଛୁଟି ନେଇଗଲେ କାମ ଶେଷ କରି ପୁଣି ଆସି କାର୍ଯ୍ୟରେ ଯୋଗଦେବି ।

ବୀରକେଶରୀ ଜାଣନ୍ତି, ଛୁଟି ନେଇ ଚାଲିଯିବା କଷ୍ଟ କଥା ନୁହେ । ଗ୍ରାମକୁ ଲେଖିଲେ କେହି ବିଶ୍ୱାସୀ ଲୋକ ମିଛ ଟେଲିଗ୍ରାମ୍ କରିଦେବ— ଆଈ, ମାଉସୀ, ଅଜା, ମାମୁଁ ଏପରି କେହି ଜଣଙ୍କର ଅବସ୍ଥା ସଙ୍କଟାପନ୍ନ । ଦେଖିବାକୁ ଇଚ୍ଛା ଥିଲେ ତମେ ବସିଲାଠାରୁ ଉଠିଆସ ।

ବିକ୍ରମ ଉଡ଼ପୋଟି ଅବା ସବ୍‌ଉଡ଼ପୋଟି ହୋଇପାରିଲା ନାହିଁ । ରାସ୍ତାଖର୍ଚ୍ଚର ପରିମାଣ ପାଞ୍ଚ ଶହରୁ ହଜାରେ ଦୁଇ ହଜାରକୁ ସେ ଟେକି-ପାରିଲେ ନାହିଁ ।

ପ୍ରକାରାନ୍ତରେ ସେ ଦେବନାଥଙ୍କୁ ଜଣାଇଥିଲେ—ବଡ଼ବଡ଼ଆମାନେ ତାଙ୍କର ପୁଅ ପୁତୁରା ଭଣଜା ସ୍ୱ-ଜାତିଆ ନିଜଦଳିଆ ଇତ୍ୟାଦିଙ୍କ ପାଇଁ ଚନ୍ଦନ କଲେ । ଫଳପୁଷ୍ପ ଦେଇ ଅର୍ଚ୍ଚନା କଲେ । ଧୂପ ଜଳାଇଲେ । ବିବେକବୁଦ୍ଧିରେ ପରିଚାଳିତ, ସତ୍‌ପଥରେ ନ୍ୟାୟରେ ଚାଲିବା ପିଲା ବିକ୍ରମ ପଛକୁ ଖସିଗଲା ।

ଦେବନାଥ ଉତ୍ତର ଦେଇଥିଲେ, ସତର୍କତାର ସହିତ ସବୁ କୌଶଳ ପ୍ରୟୋଗ କରି ଆଗ ନିଜର କାମ ହାସଲ କରିସାରିଲେ ସେଇଠୁ ସତ୍‌ପଥରେ ନ୍ୟାୟପଥରେ ପାଦ ପକାଇବାର କଥା, ସମୃଦ୍ଧ ! ନୋହିଲେ ସଂସାର ତମକୁ ଠକିଦେବ ।

ହଁ ସମୃଦ୍ଧ, ସେଇ୍ଟ କଥା ମୁଁ ବନ୍ଧମକୁ ଏଥର ଭଲକରି ବୁଝାଇ-ଦେଇଛି । ଆଙ୍ଗୁଠି ଦେଖାଇ ଜଣ ଜଣ କରି ତାକୁ ଚିହ୍ନାଇଦେଇଛି — କିଏ ସେମାନେ କାଲି ଥିଲେ, କିଏ ଏବେ ସେମାନେ ହୋଇଯାଉଛନ୍ତି । ବନ୍ଧମ ପୁଣି ପରୀକ୍ଷା ଦେବାକୁ ପଡ଼ୁଛି, ସମୃଦ୍ଧ ! ଏଥର ସେ ନିଶ୍ଚୟ ଉପୋଷି ହେବ ।

ଅସଲ କଥାରେ ଦେବନାଥ ନୀରବ ରହୁଥିଲେ । ଯଥାସମୟରେ ସେ କ୍ୟାମ୍ପକୁ ଚାଲିଯାଇଥିଲେ ।

ଦଉଟି ମାସ କଟିବାକୁ ବସିଲାଣି । ଆଉ ତାଙ୍କ ସଙ୍ଗରେ ଦେଖା-ସାକ୍ଷାତ ହୋଇନାହିଁ । ପତ୍ର ଲାପ ମଧ୍ୟ ହୋଇପାରିନାହିଁ । ଅଫିସରେ ଖଟି ଖଟି ସମୟ ଯାଉଛି । ବସାକୁ ଫେରିଲେ ନିତ୍ୟକର୍ମ ସାରି ହୋଟେଲର ବ୍ୟବସ୍ଥା ।

ଚାକିରିର ବଡ଼ ବଖରାଟିରେ ଚାରିଜଣ ସହକର୍ମୀ ରହନ୍ତି । ଭିତର ପାଖର ଚଉଡ଼ା ବାରଣ୍ଡାର ଗୋଟିଏ ପାଖ ଆଡୁବାଉ କରି କବାଟ ଲଗା ଲାଗିଛି । ସେଇଠି ଦୁଇ ହୋଟେଲ । ବାଟଘରଟି ଅଣଓସାରିଆ । ଛୋଟ ଖଞ୍ଜା ଭିତରେ କୂଅ ଓ ପାଇଖାନା ଅଛି । ଘରର ଚଟାଣ ସିମେଣ୍ଟକରା ।

ବସାଟି ମନ୍ଦ ନୁହେଁ । ଭଡ଼ା ମାସକୁ ତିରିଶ । ବୀରକେଶରୀଙ୍କ ଦେୟ ସାତଟଙ୍କା ଆଠଣା । ଅଧିକ ଲୋକ ରହିପାରିଲେ ମୁଣ୍ଡପିଛା ଭଡ଼ା କମନ୍ତା । ମେସ୍ ଖରଚ କମିବା ବଢ଼ିବା ନିଜ ଖଇବା ବ୍ୟବସ୍ଥା ଉପରେ ନିର୍ଭର କରେ । ଛୋଟ ଛୋଟ ଚାରୋଟି ଦରଜା ଖଟିଆରେ ଘର ଭରତି । ଅଧିକ ଲୋକଙ୍କ ପାଇଁ ସ୍ଥାନ ନାହିଁ ।

ରୋଜଗାରକୁ ଚାହିଁ ଖରଚ ଅଧିକ ପଡ଼ୁଛି ବୋଲି ବୀରକେଶରୀ ମନେ ମନେ ଦୁଃଖିତ । ଯେତେ ଖଟିଲେ ନିରୂପିତ ପରିମାଣର କାମ ଦେଇପାରୁ ନ ଥିବାରୁ ଦରମା କଟୁଛି । ସେ ଯାହାହେଉ, ଦଉଟି ମାସ ମଧ୍ୟରେ ସେ ଟଙ୍କା ଶହେଟି ଘରକୁ ପଠାଇପାରିଛନ୍ତି । ସେଥିପାଇଁ ସେ ମନେ ମନେ ଗର୍ବିତ ଓ ଆନନ୍ଦିତ । ଚନ୍ଦନା ବୁଝନ୍ତୁ ଯେ ସେ କାର୍ଯ୍ୟକ୍ଷମ

ଅଛନ୍ତି । ରୋଜଗାର କରି ନିଜକୁ ପୋଷି ଘର ଚଳାଇବାର ଶକ୍ତି ଏବଯାଏ ତାଙ୍କର ଅଛି ।

ଚନ୍ଦନାଙ୍କର ଗତ ଚିଠିରୁ ସେ ବୁଝି ଦୁଃଖିତ ହେଲେ ଯେ, ବସନ୍ତ ଦରମା ପାଇ ମାତ୍ର ଥରଟିଏ ରବିବାର ଦିନ ଗ୍ରାମକୁ ଆସିଥିଲା । ତା ସଙ୍ଗରେ ତାର ବନ୍ଧୁ ପ୍ରଦ୍ୟୁମ୍ନ ମଧ୍ୟ ଆସିଥିଲା । ଯାହା ଟଙ୍କା ସେ ଆଣିଥିଲା, ସେତକ ବୀରକେଶରୀଙ୍କର ହାତଉଧାରିରୁ କେତେ ଶୁଝିଦେଇ ସୋମବାର ଦିନ ସକାଳୁ ପୁଣି ଭୁବନେଶ୍ୱର ଫେରିଗଲା । ଯିଏ ଯାହା କହିଲା, ସୁଧମୂଳ ସହିତରେ ଶୁଝିଲା ।

ଓଲମା କଅଣ ଗଛରେ ଫଳନ୍ତି ? ବାପାଙ୍କୁ ପଇସ ଶୁଝିବାକୁ ଚନ୍ଦନା ଉପଦେଶ ଦେବାରୁ ବସନ୍ତ କୁଆଡ଼େ ଜବାବ୍ ଦେଲା ଯେ ଲୋକେ ମିଛ କହିବେ ନାହିଁ ।

ବୀରକେଶରୀ ଭାବିଲେ, ବସନ୍ତ ପରି ଆଜି ନର୍ବୁଦ୍ଧିଆ କେହି ନାହିଁ । ସେ ଭାବୁଛନ୍ତି, କଳିକାଳ ଶେଷ ହୋଇ ପୁଣି ସତ୍ୟଯୁଗ ଆରମ୍ଭ ହୋଇଗଲାଣି । ଟଙ୍କା ଏପରି ଅପବ୍ୟୟ କଲେ ସେ କି ମଣିଷ ହେବ ? ସେ କି ଘର କରିବ ? ସମସ୍ତେ ତାକୁ ଠଟାକାଟି ଫତୁର କରିବେ । ଉଧାର ଚାଲକାର ନକଲ ଖଣ୍ଡିଏ ତା ପାଖରେ ନ ଥିଲେ, ସେ ଯଦି ଶିରପଲ୍ଲିର ସିହାଣା ଲୋକଙ୍କ କଥାରେ ବିଶ୍ୱାସ କରି ଟଙ୍କା ଦେବାକୁ ଲାଗେ, ତା ଦରମା ସେଇ ଟୁବରେ ବୁଡ଼ିଯିବ ।

ମନେ ମନେ ଚକ୍ରଗୃଢ଼ଳ ଗୈବାଇ ମଳାମଳ ହୋଇ ସେ ବସନ୍ତ ପାଖକୁ ଚାଳକାଟିଏ ପଠାଇଲେ । ଭାବିଚନ୍ତି ସାବଧାନ ହୋଇ ଯେଉଁ ପତ୍ର-ଖଣ୍ଡି ସେ ଲେଖିଲେ, ସେଥିରେ କେବଳ ଉପଦେଶ ପୂର୍ଣ୍ଣ ଥିଲା ।

ସେ ସବୁ ସୁଚିନ୍ତିତ ଉପଦେଶର ଅସଲ ମର୍ମ ହେଲା—ରୋଜଗାର କରିବା ବଡ଼ କଥା ନୁହେଁ । ସମସ୍ତେ ନିଜ ଉପାୟରେ ରୋଜଗାର କରନ୍ତି । କିଏ ଅଧିକ, କିଏ ଅଳପ । ଯିଏ ସଞ୍ଚେ ସିଏ ବଞ୍ଚେ । ଯିଏ ଆଖିବୁଜା ଖରଚରେ ଖାଲି ଉଡ଼ାଏ ରେ ବାପ, ସିଏ ଘର ବୁଡ଼ାଏ । ଦେବା ଲୋକ

ଛୁଟେଡ଼ ରେ ହନୁମ, ନେବା ଲୋକ ହିଁ ବଡ଼େ ।  ଏ ତ କଳିକାଳର ଗତି । ଆମେ ସମସ୍ତେ ସେହି କଳିକାଳରେ ଚଳୁଛୁଁ । କାଳକୁ ହିଁ ଚଳଣି । ଦେଖୁନୁ ଗୃହଆଡ଼କୁ, କଅଣ ସବୁ ଘଟୁଛି ! ସତ୍ୟଯୁଗ ଯେବେ ଘୋଟିଆସିବ, ସେ କାହାକୁ ଛାଡ଼ିବ ନାହିଁ । କେବେ ଆସୁଛି ଆସୁ ।

—ଆରେ ବାପ ହନୁମ ! କାହାକୁ ବିଶ୍ୱାସ କରିବୁ ନାହିଁ । ସେତିକି କଲେ କେତେବେଳେ କିଏ ଖାଲକୁ ଠେଲିବ, ଜାଣିପାରିବୁ ନାହିଁ । ବିଶ୍ୱାସ ନାହିଁ ବୋଲି ଜଣାଇଦେଲେ ରେ ପୁଅ, ଆହୁରି ବିପଦ । ଏତିକି ହେଲକଥା । ସବୁବେଳେ ତରକିଥିବୁ । ହଁ ନାହିଁ ନ କରି ଟାଳଟୁଳ କରିବା ସବୁଠାରୁ ସୁବିଧା । ଠକେ ଗଲେ ବାରହାତ । କାହିଁକି ତୁ ମୋ ଆଣିଥିବା ହାତଉଧାର ଶୁଝିଲୁ ? ସେ କଥା ମୁଁ ବୁଝିଥାନ୍ତି । ଯେତିକି ହେଲା ସେତିକି । ସେ ସବୁଥିରେ ତୋର ମୁଣ୍ଡ ଖେଳେଇବା ଲୋଡ଼ା ନାହିଁ । ତଥାପି ତାଳକାଠିଏ ପଠାଇଲି ।

—ଯଥାସମ୍ଭବ ସଞ୍ଚୟ କର । ଋଣଧର କେତେଦିନ ଗଡ଼ାଇ ଦିଆ-ଯାଇପାରେ । କିନ୍ତୁ ଅଧିକ କାଳ ବିଳମ୍ବ କରାଯାଇ ପାରିବ ନାହିଁ । ଦେବନାଥ ଓ ତାଙ୍କର ସ୍ତ୍ରୀ ଉଚ୍ଛନ୍ନ ହେଲେଣି । ଜଗର କରୁଛନ୍ତି । ଝିଅର ବାପମା ସେମାନେ । ବ୍ୟସ୍ତ ହେବାର କଥା । ତୋ ବୋଉଙ୍କର ସ୍ୱାସ୍ଥ୍ୟ ଯାହା, ସେ କହୁଛନ୍ତି ବୋହୁଟିଏ ଶୀଘ୍ର ତାଙ୍କ ପାଖକୁ ଆସୁ । ମୁଁ ପାଚିଲା ପତର । କେତେବେଳେ ଝଡ଼ିପଡ଼ିବି କିଏ ଜାଣେ ? ଦେବାନେବାରେ ସେମାନେ ହେଳା କରିବେ ନାହିଁ, ତୁ ଏହା ଜାଣିଥୁ ।

ନିଜ ପତ୍ରକୁ ନିଜେ ଦୁଇଥର ପଢ଼ି ବୀରକେଶରୀ ସନ୍ତୋଷ ଲାଭ-କଲେ । ସେ ଜାଣନ୍ତି, କେବଳ ସୁଯୋଗ ଅଭାବରୁ, ତାଙ୍କର ଭାଗ୍ୟରେ ନ ଥିବାରୁ, ଅସହଯୋଗ ଅମଳରେ ବାନରସେନାରୁ ଜଣେ ସିଏ, ଦେହରେ ଯଥେଷ୍ଟ ଶକ୍ତି ଥିଲା, ତୁଣ୍ଡରେ ଭାଷା, ମୁଣ୍ଡରେ ବୁଦ୍ଧି, ସେ କିଛି କରିପାରିଲେ ନାହିଁ । ତାଙ୍କର ସହକର୍ମୀ ବାନରସୈନିକେ କୁଦା ମାରି ମାରି କେତେ ଉପରକୁ ଉଠିଗଲେ । କେହି କେହି ଏ ଗଛରୁ ସେ ଗଛକୁ, ପୁଣି ସେ ଗଛରୁ

ଏ ଗଛକୁ ଡେଇଁ ପୁରୁଣା ବରଜଗଲେ, ନୂଆ ନୂଆ ଡାଳ ସରଜଗଲେ । ନୂଆ ନୂଆ ଫଳ ଖାଇଲେ । ମଣିଷ ପରି ମଣିଷ ହେଲେ । ସେମାନେ ଧନ, ଜନ, ଗୋପ, ଲକ୍ଷ୍ମୀର ଅଧିକାରୀ ହୋଇଛନ୍ତି । ସନ୍ମାନ ସେମାନଙ୍କ ମୁଣ୍ଡରେ ଅଜାଡ଼ିହୋଇପଡ଼ୁଛି । ସେମାନେ ଜନତାକୁ ଭାଷାରେ ଆଶା ଦେଇଦେଇ ନିଜପାଇଁ ଖାସା ଉପାୟ କରିନେଲେ ।

ସେ କେଶରୀ ରକ୍ତର ପିଲା । ସବୁ ବୁଦ୍ଧି, ସାହସ, ଭାଷା ହାସଲ କରି ଶେଷକୁ ହେଲେ ବନ୍ଦୋବସ୍ତ ମହକୁମାର ଛୋଟ ଗୁମାସ୍ତା । ଖଙ୍କାପେଟିଆ । ଠେଲଠେଲ ଦେହକୁ ଘୋଷାରି ଘୋଷାରି ଚାଲୁଛନ୍ତି ।

କପାଳ । ହଁ, କପାଳ !

**ସେ**ଦିନ ବୀରକେଶରୀ ବଡ଼ମ ପାଖରୁ ଚିଠି ପାଇଲେ । ଚିଠିଖଣ୍ଡି ଦୁଇଦିନ ଆଗରୁ ଜୟପୁର ଅଫିସରେ ପହଞ୍ଚିଥିଲା । ଅନ୍ୟାନ୍ୟ କର୍ମଚାରୀଙ୍କର ଚିଠି ଗଦା ଭିତରେ ନାଜରଙ୍କ ଟେବୁଲ ଉପରେ ଥିବା ଚିଠି-ଟ୍ରେ ଭିତରେ ପୋତିହୋଇ ପଡ଼ିଥିଲା । କେତେଦିନ ହେଲା ସେ ଟ୍ରେ ଘାଣ୍ଟି ନ ଥିଲେ ।

ଠିକ୍ ସମୟରେ ପାଇଥିଲେ ବଡ଼ମ ପାଖକୁ ଅନ୍ୟପ୍ରକାର ଲେଖି-ଥାଆନ୍ତେ । ବଡ଼ମର ପଦ ପଢ଼ୁଣୁ ତାଙ୍କର ମନ ବାହୁନି ଉଠିଲା । ଆଖି ଛଳଛଳ ହେଲା । ଲୁହ ଦି'ଟୋପା ନଥି ଉପରେ ଗଳିପଡ଼ିଥିଲା ।

କାମରେ ମନ ଲାଗୁଛି କେଉଁଠି ? ଯୋଗ୍ୟ ପୁଅର ମାଡ଼ ମାରିଲା-ପରି ସେହି ଚିଠିଖଣ୍ଡିକ ଛାତିରେ ବାଧା ଗୋଇଠା କୋଳୁଛି । ନଥିରେ ଯେପରି ଲେଖାହୋଇଛି—ସବୁ ଶିକ୍ଷା, ସବୁ ଉପଦେଶ ତାଙ୍କର ପାଣିରେ ପଡ଼ିଛି । ବଡ଼ମ ଅବାଧ ହୋଇଛି । ବିଦ୍ରୋହ କରିଛି । ସେ କୁଳାଙ୍ଗାର । ପୂର୍ବ ପଶ୍ଚିମର ଭେଟ ନ ହେଲାପରି ସେକାଳିଆ ବୁଢ଼ା ଓ ଏକାଳିଆ ଟୋକାଙ୍କର ଚିନ୍ତାଧାରାର ଭେଟ ହେବ ନାହିଁ । ଏବକା ଟୋକାଏ ଦିନୁଦିନ ଅଧିକରୁ

ଅଧିକ ଅମାନିଆ ହେଉଛନ୍ତି । ଗୁରୁଜନମାନଙ୍କର ଉପଦେଶକୁ ଫୁଟ୍କି ମାରି ଉଡ଼ାଇଦେଉଛନ୍ତି । ତାଙ୍କର ଯାହା ମନ ତାହା କରୁଛନ୍ତି ।

କିପରି ସେମାନଙ୍କୁ ଶାସନ କରି ବାଟକୁ ଅଡ଼ାଇ ଆଣିହେବ ? କିପରି ସେମାନଙ୍କୁ ମଣିଷ କରିହେବ ?

ସାରକେଶସ୍ୱ ଭାବିଲେ, ଏ ଜଗରେ ସେ ଫେଲ୍ ହୋଇଛନ୍ତି । ଯୋଗ୍ୟ ପୁଅ ତାଙ୍କୁ ଅପଦସ୍ଥ କରାଇବ । ଜାଣେ, ତାଙ୍କର ସନ୍ମାନକୁ ଭୂଇଁରେ ଲୋଟାଇବ ।

ପତ୍ରଖଣ୍ଡି କାଢ଼ି ସାରକେଶସ୍ୱ ପୁଣି ମନେ ମନେ ପଢ଼ିଲେ ।

—ଗ୍ରାମରେ ଗରିବ, ଅନାଥା ଓ ବିଧବାଙ୍କୁ ମସୁଧା ଦେଇ କ କ କାମ କରାଇଦେବାକୁ ଆପଣ ସେମାନଙ୍କ ମନରେ ଆଶା ଜଗାଇଥିଲେ । କାହାଠାରୁ ଦ' ଟଙ୍କା, କାହାଠାରୁ ତିନ ଟଙ୍କା ହାତଉଧାରି ଆଣିଥିଲେ । ଶୁଝିବାକୁ ମନ କଲେ ନାହିଁ । ସେମାନଙ୍କର କଟାସମ୍ପା ଓ ଆଖିର ଲୁହ ସହିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ଯିଏ ଯାହା କହିଲା, ମୁଁ ଶୁଝି-ଦେଇଛି । ଏଥିସହ ତାଲିକା ପଠାଇଲି ।

—ଦେବନାଥବାବୁଙ୍କ ପାଖରୁ ଟଙ୍କା ଗ୍ରହଣ ଆଣିଛନ୍ତି ବୋଲି ଲେଖିଥିଲେ । ଏ ମଧ୍ୟରେ ଆଉ କେତେ ତାଙ୍କଠାରୁ ଆଣିଛନ୍ତି କ ନାହିଁ ମତେ ଅଜଣା । ମୋତେ ଯେତିକ ଜଣା ଅଛି, ସେତିକ ଆଠଶ ଟଙ୍କାକୁ ଟପିଗଲାଣି । ପିତୃଋଣ ପରିଶୋଧ କରିବା ପୁଅର କର୍ତ୍ତବ୍ୟ ।

—ମୁଁ ନିଶ୍ଚୟ ମୋର ଏହି ଲଜ୍ଜାକର କର୍ତ୍ତବ୍ୟ ପାଳନ କରିବି । କାହାରି ସଦୁପଦେଶ ଓ ଅନୁମତି ମୋର ଲୋଡ଼ା ହେବ ନାହିଁ । ଏହା କରିବାକୁ ମତେ ଦୁଇଟି ବର୍ଷ ଲାଗିବ । ଘର ଚଳାଇବା, ଭଦ୍ରଲୋକ ହୋଇ ଆତଯାତ ହେବା, ବୋଉର ସ୍ୱାସ୍ଥ୍ୟ ଓ ଔଷଧର ବ୍ୟବସ୍ଥା କରି ତାକୁ ବଞ୍ଚାଇ ରଖିବା, ଏସବୁ ପୁଣି କରିବାକୁ ହେବ ।

—ଜବାବରେ ପ୍ରଶ୍ନ ଉଠୁନାହିଁ । ଦେବନାଥବାବୁଙ୍କୁ ମନା କରି-ଦେଇଛି । କନ୍ୟାଦାୟରୁ ମୁକ୍ତ ହେବାପାଇଁ ତାଙ୍କୁ ମୋ ଅପେକ୍ଷା

ଯୋଗ୍ୟତର ପାତ୍ର ମିଳିବେ । କାହିଁକି ସେ ବାଟଖର୍ଚ୍ଚ ଛଳରେ ଆପଣଙ୍କୁ ଲାଞ୍ଚ ଦେଇ ମୋ ପରି ଗୋଟିଏ ଅପାତ୍ରର ହାତରେ ତାଙ୍କର ଅଳିଅଳି ଗୁଣବନ୍ତୀ କନ୍ୟାକୁ ଅର୍ପଣ କରିବେ ? ଚିରଦିନ ଅନୁତାପ କରିବେ ? ନିଜେ ଲୋକହସା ହେବେ ? ଆମ ସମସ୍ତଙ୍କୁ ଉପହସିତ କରିବେ ? ଉଲୁପୀକୁ ସେ ଏତେ ଭଲପାଆନ୍ତି, କାହିଁକି ତାକୁ ଦାରିଦ୍ର୍ୟର ଜ୍ୱଳନ ଭିତରେ ଛଟପଟ କରିବେ ?

ଯଥାସମୟରେ ବୀରକେଶରୀ ବସାକୁ ଫେରି ପତ୍ରଖଣ୍ଡି ଟ୍ରଙ୍କ ଭିତରେ ଲୁଚାଇ ରଖିଲେ । ଭାବିଲେ, ଏ ବିଷୟରେ ଏଣୁତେଣୁ ଚିନ୍ତା କରି ମୁଣ୍ଡ ଖରାପ କରିବା ଉଚିତ ନୁହେଁ । ବିକ୍ରମ ଯାହା ଭାବୁଛି, କରୁ । ପୁତ୍ର ଅବାଧ ହେଲେ ତାକୁ ତଡ଼ାଇବା ଉଚିତ ନୁହେଁ । ମା ଓ ପୁଅ ମିଶିଯିବେ । ଏକାପରି ଭାବିବେ । ଏକାକଥା କରିବେ । ତାଙ୍କର ସୁଚିନ୍ତିତ ଉପଦେଶ କେହି ମାନିବେ ନାହିଁ ।

**ମା**ସକ ପରେ ଚନ୍ଦନାଙ୍କ ପାଖରୁ ସେ ଖଣ୍ଡେ ପତ୍ର ପାଇଲେ । ମାଇପି ଚିଠି । ଏଣୁତେଣୁ କେତେ କଥା ଗାରେଇଛନ୍ତି । ସେ ଚିଠିରୁ ବୀରକେଶରୀ ବୁଝିଲେ ଯେ ଚନ୍ଦନା ଏ ମଧ୍ୟରେ ଭୁବନେଶ୍ୱର ଯାଇ ପୁଅର ଷ୍ଟେଟ ବସାରେ ସ୍ୱଳ୍ପ ଦିନ ରହି କଟକବାଟେ ଗ୍ରାମକୁ ଫେରିଛନ୍ତି ।

ବିକ୍ରମର ସାଙ୍ଗ ଅନ୍ୟ ବସାକୁ ଚାଲିଯାଇଛି । ବିକ୍ରମ ନିଜ ହାତରେ ଗଣ୍ଡାଏ ଫୁଟାଇ ଖାଉଛି । କାର୍ଯ୍ୟଭିଡ଼ରୁ ଯେଉଁଦିନ ସେ ସେତିକି କରିପାରୁନାହିଁ, ବଜାରର କେଉଁ ହୋଟେଲରେ କାମ ଚଳାଇନେଉଛି ।

କଟକରେ ଆନନ୍ଦଙ୍କ ବସାରେ ସବୁ ଭଲ । ଅନୁପାର ବାହାଘର ବିଷୟରେ ଆନନ୍ଦ ଓ ଇନ୍ଦିରାଙ୍କର ମତ ମିଳୁନାହିଁ । ଅନୁପା ବାହା ହେବାକୁ ମନା କରିଦେଉଛି । କହୁଛି, ସେ ପାଠ ପଢ଼ିବ ।

—ମୁହଁ ଖୋଲି ମୋ ଆଗରେ ସେ କହିଲା, ଅପା ମ ! ଯେତେ ବଜାଗି, ଛତରା, ମଦୁଆ ଅଛନ୍ତି, ସେମାନେ ବାପାବୋଉଙ୍କ ଆଖିକୁ ବଶୁଛନ୍ତି ।

—ଅନୁପା ଆଖିରୁ ଲୁହ ଗଡ଼ାଇ ମନଦୁଃଖରେ ମୋ ଆଗରେ ପୁଣି କହିଲା, ଅପା ଲୋ, ବାପାଙ୍କର ପ୍ରିୟପାତ୍ର ସେ ବାଉରିଆଇ । ମଦ ଖାଇ ସ୍କୁଟର ମଡ଼ାଇ ଗରିବ ବୁଢ଼ୀର ସେ ପ୍ରାଣ ନେଲା । ଡାକ୍ତରଖାନାରୁ ଫେରିଲାଣି । ହାତଟିଏ ଅଚଳ । କୁଆଡ଼େ ଶୀଘ୍ର ଭଲ ହୋଇଯିବ । ମତେ ବାହା ହେଲେ ତାର ମଦଖିଆ ଖୋଇ ଛାଡ଼ିଯିବ । ଯଦି ତା'ର କଅଣ ତଗଲା ପ୍ରକୃତି ଥାଏ, ତାହା ଆଉ ରହିବ ନାହିଁ । ମୁଁ ତାକୁ ଘୃଣା କରେ ଲୋ ଅପା ! ମୁଁ ଖବର ପାଇଛି, ସେଇଟା ଗୋଟାଏ ପଶୁ । ସେ ଟଙ୍କା ଅର୍ଜିବାକୁ ସବୁ କରିପାରେ । ଅପା ଲୋ, ମୋର ଧନ ଲୋଡ଼ା ନାହିଁ । ମୁଁ ଗୋଟାଏ ବୃକୋଦର, ରାକ୍ଷସ, ଖୁଣୀ, ମଦୁଆ, ଚରିତ୍ରହୀନ, ଅଭଦ୍ର, ଘୁଷୁଟା, କେମ୍ପା, କଳାବଜାରିଟାକୁ କେବେ ବାହା ହେବି ନାହିଁ ।

ଚନ୍ଦନା ପୁଣି ଲେଖିଛନ୍ତି, ଶୁଣିବ ଇନ୍ଦ୍ରର ଢଙ୍ଗ ! ସର୍ପରେ ଜନ୍ମ ଦେଲି ମୋତେ, ସ୍ୱଭାବ ଛାଡ଼ିବ କେମନ୍ତେ ? ଜାଣି ସେଇଆ । ଆନନ୍ଦର ବାହାଘର ପରେ ଯେଉଁସବୁ ଦୁର୍ନାମ ସେହି ଶୁକମୁନି ବାବାଜୀଟା ନାମରେ ରଟିଥିଲା, କାଳି ପରି ଲାଗୁଛି କେବକାଳର କଥା, ସବୁଗୁଡ଼ାକ ସତେ କି ସତ ଫଳଯାଉଛି ମ ! ଦରବୁଢ଼ୀ ହେଲାଣି, କେମିତି ତାର ବେମହତ ଚଳଣ । ଲୁଚେଇ ଲୁଚେଇ ସେ କ ଔଷଧ ନାମରେ ମଦ ଖୁଆଉଛି । ଟଳଟଳ ହୋଇ ରାତିଅଧରେ କୁଆଡ଼ୁ ସବୁରୁ କାହା ଗାଡ଼ିରେ ଫେରୁଛି । ମୁଁ ନିଜେ ଦେଖିଲି । ପିଲାଗୁଡ଼ାକ ମନଇଚ୍ଛା ସିନାମା ଥିଏଟର ଦେଖୁଛନ୍ତି । ଭେଣ୍ଡା ଭେଣ୍ଡା ଟୋକା ସାଙ୍ଗମାନଙ୍କ ସଙ୍ଗରେ ଯା-ଆସ । ଛି ଛି !

— ବୁଝ, କେଡ଼େ ପ୍ରମାଦ ! ଇନ୍ଦ୍ରର ଆକଟ ନାହିଁ । ଓଲଟି ଟେହି-ଦେଉଛି । ଏ କି ଢଙ୍ଗ ? ସେହି ଇନ୍ଦ୍ର ପୁଣି କଚାଉଛି ବଢ଼ିଲା ଝିଅକୁ ।

ସତେ କ ଝିଅଟା ତା ସାଙ୍ଗସରିସା । ଆମ ପୁଅର କେଉଁ ସାଙ୍ଗ ଡପୋଠି ହୋଇଛୁ । ଏବେ କଟକରେ କାମରେ ଯୋଗଦେଇଛୁ । କହୁଛୁ ସେ ମୋ ଆଗରେ, ଆଲେ ଅନୁ, କାହିଁକି ତୁ ତା ଉପରେ ଅଭିମାନ କରିଚୁ ? ଯାଉନୁ ଦେଖି ସିନେମା, ସେ ଡାକୁଛୁ ! ଅନୁପାର ଏକା ନାହିଁ । ଭୁନ ଭୁନ ଅନୁପା ମତେ କହିଲା, ଅପା ଲୋ, ବୋଉ ତାକୁ ଜୋରିଁ କରିବାକୁ ମନ କରିଛୁ ।

—ସେ କୁଆଡ଼େ ମଙ୍ଗିଲଣି । ସେ ମଙ୍ଗିଲେ ତା ବାପ ମା ବଳେଇ-ଯିବେ ନାହିଁ । ଜାଣିକରି ତ ସେ ଟୋକା ଅନୁପାର ଗୋଲପର ବଢ଼ୁଛି ।

—ଅନୁପା ଚେତୁଛୁ । ମତେ ପୁଣି କହିଲା, ଅପା ଲୋ, ସଞ୍ଜୁପୁଷ୍ଟଇ କେଇଟା ଝିଅଙ୍କୁ ବାହା ହେବ କ ? କେତେ ସାଙ୍ଗକୁ ମୋର ସେ ସ୍ନେହ କରେ । ଆମେ ସବୁ ବୁଝାଶୁଝା ହେଲୁଣି । ସେଇଟା ବଜାଷ୍ଟି, ଛଚରା, ଅଭଦ୍ର । ବୋଉ କହୁଛୁ, ବାହାପାଣି ପଡ଼ିଲେ କୁଆଡ଼େ ତାର ଚଞ୍ଚଳ ପ୍ରକୃତି ଛୁଡ଼ିଯିବ । ତା'ର କୁଆଡ଼େ ରୂପ, ଗୁଣ, ଗ୍ଣକରି ଅଛୁ । ସେ ଏକୋଇରବଳା ବଶିକେସନ । ଧନର ପାହାଡ଼ ଚୋଳଛୁ ତା'ର ବାପା ! ବୋଉ କହୁଛୁ, ତା ମନ ଊଣା କରନା । ମୁଁ ସଫା ସଫା ତାକୁ ଶୁଣାଇଦେଲି ଲୋ ଅପା ! ମୁଁ ତାକୁ ବାହା ହେବନାହିଁ, ପାଠ ପଢ଼ିବି ।

—ଗ୍ରାମକୁ ଫେରିଆସିଲି । କାହାକୁ କଅଣ କହନ୍ତ ? ଆନନ୍ଦର ଘରେ ସବୁ ଯେମିତି ଗଣ୍ଡଗୋଳ ହୋଇଯାଇଛୁ । ଏବକା ଦୁନଆର ପୁଏ-ଝିଏ ବେଶୀ ପାଠ ପଢ଼ି, ବୁଲାଚଲା ମିଳାମିଶା କରିବାରୁ କେମିତି ଅଲଗା ଢଙ୍ଗର ହୋଇଯାଉଛନ୍ତି । କେତେ ତ ମୁହଁରୁ ଲାଜପାଣି ପୋଛୁଦେଲେଣି । କେହି କେହି ରାଜକୁଜାରେ ଛନ୍ଦହୋଇପଡ଼ୁଛନ୍ତି । ଝିଅର ବାପ ମା ଆଗ ଟିକିଏ ଲାଜରା ହେଲେ ହେଉନୁ ପଛେ, ଯାନଯୌତୁକ, ହରିବେଶର, ବାଟ ଖରଚ ଦେବାର କଟକଣାରୁ ବଞ୍ଚି ଯାଉଛନ୍ତି ।

—ଆମ ଘରର ଦୁରବସ୍ଥା ନ ସୁଧୁରିଲେ ହିଙ୍ଗମ ବାହା ହେବାକୁ ମନା କରିଦେଉଛି । ବହୁତ ଭବିଚିନ୍ତି ମୁଁ ଲେଖୁଛି । ଦେବନାଥବାବୁଙ୍କୁ କହ ସେ ଆଉ ଗୋଟିଏ ବର୍ଷ ସବୁର କରନ୍ତୁ । ଆମ ପୁଅ ବୁଢ଼ା ହୋଇ ଯାଉନାହିଁ । ତାଙ୍କ ଝିଅ ବି ବୁଢ଼ୀ ହୋଇ ଯାଉନାହିଁ । ମୋ ଉଲୁପୀ ରାଣୀକୁ ମୁଁ ଜାଣି ବୋହୂ କରି ସାରିଛି । ମୋ ଛାତି ତଳେ ତାକୁ ମୁଁ ସାଇତି ରଖିଛି ।—

ହୁଁ ଃ, ରଖିଥା ସାଇତି ! ଗୁଣବନ୍ତ ପୁଅଙ୍କୁ ପତ୍ରର ତମେ ଏ ଚିଠି ଲେଖିଛ ଟି, ନା ମନେ ମନେ କାଣୀ ପିଠା ଖାଉଛ ?

ସାରକେଶରୀ ଚନ୍ଦନାଙ୍କୁ ନିଜ ଭିତରେ ଏତିକି ଟୁଗୁଲେଇ କହିଲେ । ପଦଖଣ୍ଡି ଟ୍ରଙ୍କ୍ ତଳେ ରଖିଲେ । ଦୀର୍ଘଶ୍ୱାସ ଛାଡ଼ି ମୁଣ୍ଡ ଟୁଙ୍ଗାରି ସେ ନିଜକୁ ନିଜେ ପୁଣି କହିଲେ, ଯାହାକୁ ଯାହା ଭଲ ଦିଶୁଛି କର ରେ ବାବା ! ଆମରି ସାର ବଚନ ତମର ଲୋଡ଼ା ନାହିଁ । ଆମେ ତମ ଲେଖାରେ ଘସରା ଅଚଳ ପଇସାଠାରୁ ହୀନ ହେଲୁଣି ।

ଇନ୍ଦିରାଙ୍କ ପାଖରୁ ପକ୍କା ଜବାବ ନେବାକୁ ଯୂଥିକା ଆସିଥିଲେ । ବାଞ୍ଛାବନ୍ଧୁ ଓ ଆନନ୍ଦ ସମ୍ମତ ହୋଇଛନ୍ତି । ଦିନ ବାର ସ୍ଥିର ହୋଇନାହିଁ । କିନ୍ତୁ ଯୂଥିକାଙ୍କର ଆଗ୍ରହ ଓ ଯୌତୁକର ପ୍ରସ୍ତାବରେ ଆନନ୍ଦ ରାଜି ହୋଇଛନ୍ତି ।

ପ୍ରଥମା କନ୍ୟାର ନିମିତ୍ୟ । ବାଞ୍ଛାବନ୍ଧୁର ଗର୍ଭଧାରଣୀଙ୍କର ଭୂଣ୍ଡ-କଥାର ସମ୍ମାନ ରକ୍ଷା କରିବାକୁ ଆନନ୍ଦ ତାଙ୍କୁ ମାତ୍ର କୋଡ଼ିଏ ହଜାର ଟଙ୍କା ନଗଦ ଦେବାକୁ ସ୍ୱୀକୃତି ଜଣାଇଛନ୍ତି । ଖଣ୍ଡେ ଆମ୍ବାସାଡ଼ର କାର୍ ତ ଜୋଇଁକୁ ନିଶ୍ଚୟ ଦେବେ । ତା' ଛଡ଼ା ଦୁଇ କୁଟୁମ୍ବର ମର୍ଯ୍ୟାଦାକୁ ଜଗି ଅନ୍ୟାନ୍ୟ ଉପକରଣ ।

ଗହଣା ଓ ଅନ୍ୟାନ୍ୟ ଘରକରଣା ଜିନିଷର ବ୍ୟବସ୍ଥା ଇନ୍ଦିରା ଅବଶ୍ୟ କରିବେ । ସୁବର୍ଣ୍ଣ ପ୍ରତିମା ଝିଅ ଅନୁପାକୁ ସୁବର୍ଣ୍ଣସଙ୍ଗରେ

ମଣିମୁକ୍ତା ଖଞ୍ଜି, ଝିଅର ଦେହରେ ମଣ୍ଡି ସେ ଯୂଥିକାଙ୍କ କୋଳକୁ ଠେଲି-ଦେବେ ।

ଧାନହେଁସରୁ ଝୁମ୍ପାଏ ମ ସମୁଦୁଣୀ ! କେଉଁ ଏବେ ଊଣା ହୋଇ-ଯିବ ?

ତ୍ରୟୋଦଶୀର ଉଜ୍ଜ୍ୱଳ ଜହ୍ନ ଆକାଶକୋଣରେ ହସୁଥାଏ । ଶୀତଳ ସଞ୍ଜ । ପୋର୍ଟିକୋ ଆଗରେ ମୁକ୍ତ ଆକାଶ ତଳେ ଦଉଟି ଚଉକିରେ ମୁହାଁମୁହିଁ ବସିଥାନ୍ତି ଇନ୍ଦର ଓ ଯୂଥିକା । ଦୁହିଁଙ୍କ ମଝିରେ ଗ୍ଲେଟ ଟେବୁଲଟିଏ ରଖାହୋଇଥାଏ । ପାଖରେ ଆଉ ଦୁ'ଖଣ୍ଡି ଚଉକି ଶୂନ୍ୟ ପଡ଼ିଥାଏ । ଧୀର ପବନରେ ଗଙ୍ଗା ନଡ଼ିଆଗଛର ପତ୍ର ମର୍ମର ଉଠୁଥାଏ ।

ପିଲାମାନେ ଦୁ'ତାଲା କୋଠାରେ ରେଡିଓ ବଜାଉଥାନ୍ତି । ଅନୁପା ଫେରି ନ ଥାଏ । ତାଙ୍କ କଲେଜରେ କ'ଣ ମନୋରଞ୍ଜନ କାର୍ଯ୍ୟକ୍ରମ ହେବ । ଆଗରୁ ପ୍ରସ୍ତୁତ ଲୋଡ଼ା । ସେ ତାର ଝିଅ ସାଙ୍ଗମାନଙ୍କ ସଙ୍ଗେ କଲେଜକୁ ଯାଇଥିଲା ।

ନୂଆ କଥା ନୁହେ । ପାଠୋଇ ଝିଅ । ବୁଦ୍ଧିସୁଦ୍ଧି ହେଲାଣି । ଜାଣି ତ ଚାଲାଖ ଚତୁର । ଏବକା ଝିଅମାନଙ୍କ ପରି ସେ ସ୍ୱାଧୀନ ହେଲାଣି । ମୁହେଁ ମୁହେଁ ଜବାବ ଦେବାକୁ ହେଳା କରୁନାହିଁ । ଟାଣକଥା କହି ଆକଟି ହେବନାହିଁ । ତାକୁ ଘରଦରେ ନ ଥୋଇବାଯାଏ ଦକ ଯିବ ନାହିଁ ।

ଇନ୍ଦର ଯୂଥିକାଙ୍କ କଥାର ଉତ୍ତର ନ ଦେଇ ଏହିପରି ଭାବିବାକୁ ଲାଗିଲେ ।

ଯୂଥିକା ପଚାରିଲେ, ତୁନି ରହିଲ କାହିଁକି ? ଡରିଗଲ କି ? ନାଇଁ ମ, ମୁଁ ଯାନଯୌତୁକ କିଛି ମାଗୁନାହିଁ । ମୋର ଲୋଡ଼ା ଅନୁପା ।

ଇନ୍ଦର କହିଲେ, ଜାଣ ତ ସମୁଦୁଣୀ, ଏବକା ଝିଅଙ୍କର ନଜର ମତାମତ ଅଛି । ବାହାଘର ନାମ ପଡ଼ିଲେ ଅନୁପା ଚିଡ଼ିଉଠୁଛି । କୌଣସି ପ୍ରସ୍ତାବ ସେ କାନକୁ ନେଉନାହିଁ ।

ତା' କଥାରୁ ମିଳିବ କ'ଣ ? ସବୁ ଝିଅ ସେମିତି କରିଛନ୍ତି ବଡ଼ଅନ୍ତି ।

ଇନ୍ଦିରା କହିଲେ, ସଂସାରରେ ଚହଟିବଳ ଚହଟିବଳ ସୁନ୍ଦର ଝିଅ ଅଛନ୍ତି । ବାପମାନେ ଧନକୁବେର । ପାଠରେ ଗୁଣୀ ନୁହନ୍ତି । ଆମ ବାଉରିଆକୁ କ'ଣ ପାଇବାର ଅଭାବ ହେବ ଯେ ଅନୁପାକୁ ମୁଁ ବାଧ କରିବି ? ବାଧ କଲେ ସେ ଯନ୍ତ ଆଉ କ'ଣ କାଣ୍ଡ ଘଟାଏ ? ମୁଁ କହୁଛି, ତମେ ଆଉ ଅପେକ୍ଷା କରନା ।

ପୃଥିକା ମୁହଁ ଟୁଆଁଡ଼ି କହିଲେ, କିଏ କାହାକୁ ଚିରଦିନ ଅପେକ୍ଷା କରି ବସେ କି ଗୋ ? ଅନୁପାକୁ ବୋହୂ କରିବେ ବୋଲି ତାର ପିଲାଦିନରୁ ବାଉରିବାପା ସ୍ନେହ କରିଥିଲେ । ସମସ୍ତେ ଆମେ ଆଗ୍ରହ କରିଥିଲୁଁ । ତମେ କେବେ ମନା କରିନାହିଁ । ଦୁର୍ଘଟଣାରେ ବାଉରିଆର ହାତଟିଏ ଭଲ ହେଉ-ନାହିଁ । ଟିକିଏ ତ ଖୋଟେଇଛି । ସେସବୁ କ'ଣ ଭଲ ହୋଇଯିବ ନାହିଁ ? ଆଉ କେଉଁଥିରେ ବାଉରିଆର ଗୁଣ ଅଛି, କହିଲ ?

ପୃଥିକାଙ୍କ ଆଖିରୁ ଲୁହ ଝରିଆସିଲା ।

ଦୁଃଖିତ ହୋଇ ଇନ୍ଦିରା କହିଲେ, ବାଉରିଆର ହାତଗୋଡ଼ ନିଶ୍ଚୟ ଠାକୁରଙ୍କ କୃପାରୁ ଭଲ ହୋଇଯିବ । ସେଥିକି ଚିନ୍ତା ନାହିଁ । ତା'ପରି ଗୁଣବାନ୍ ପୁଅକୁ ଜୋଇଁ କରିବାକୁ କେଉଁ ମା ମନ ନ କରିବ ? ଅନୁପା ଟା ତ ବାଇଆଣୀ !

ଆଖିରୁ ଲୁହ ପୋଛି ପୃଥିକା କହିଲେ, ଜାଣିଛି, ସବୁ ଜାଣିଛି । ମତେ ଭୁଲାଉଛ କାହିଁକି ? ବାହାଘର ହୋଇଥିଲେ କେବଠାରୁ ହୋଇ-ସାରନ୍ତାଣି । ଠାକୁରେ ମନ କରିଥିଲେ ସେହି ଅନୁପାର ପେଟର ଛୁଆ, ନାତି କି ନାତୁଣୀ, କେବଠାରୁ ମୁଁ କୋଳରେ ଖେଳାନ୍ତିଣି । ଉପରମନରେ ହୋଇ ହୋଇ କହି, ତମେ ଏକା ଟାଳଟୁଳ କରୁଛ । ଝିଅର ମୁଣ୍ଡକୁ ଦୋଷ ଟାଳିଦେଉଛ ।

ଇନ୍ଦିରା କହିଲେ, ଆଉ କେଉଁଠି ତମେ ସମ୍ବନ୍ଧ କରିଥିଲେ ମୁଁ ବାଧା ଦେଇ ନ ଥାନ୍ତି ମ ! ଅନୁପାର ବାପା ନିର୍ମାୟା ପୁରୁଷ । ଯିଏ ଯାହା

କହିଲେ ହିଁ ଭଙ୍ଗିବେ । ଝିଅର ମନ ଜାଣିବାକୁ ସେ କାହିଁକି ଚେଷ୍ଟା କରିବେ ? ମୋ କଥାରେ ତମର ପରତେ ହେଉନାହିଁ ତ ତମେ ନିଜେ ଅନୁପାକୁ ପଚାରି ବୁଝ । ସେଥିରେ ମୋର ଆପତ୍ତି ନାହିଁ ।

ମୁଁ ପଚାରିବି ? କ'ଣ ପଚାରିବି ?

ତମରି ଯାହା ମନ, ପଚାର । ମୁଁ ମୁହଁ ଖୋଲିବି ନାହିଁ । ତମ ପାଖକୁ ମୁଁ ଯିବି ନାହିଁ । ସେ ଯଦି ରାଜି ହୁଏ, ମୋର ରାଜି ।

ସେ କ'ଣ ମନଖୋଲି ମତେ କହିବ ? କେଡ଼େ ଅଲଜୁକ କଥା ! କି କାଳ ହେଲାଣି ଲୋ ମା ! ଝିଅଙ୍କର ପୁଣି ମତାମତ ଲୋଡ଼ା ହେବ ! ସେ ଯଦି ସତକୁ ସତ ମୋ ମୁହଁ ଉପରେ ମନା କରିଦିଏ, କେଉଁ ଯୋଚିଘର ବାଟେ ମୁଁ ପଳାଇବି ? କେଉଁଠି ମୁହଁଛପା ଦେଇ ରହିବି ? କାହାକୁ ଯାଇ କଅଣ କହିବି ?

ମୋ ଉପରକୁ ଦୋଷ ଫୋପାଡ଼ିଦେବ । ସେତକ ମୁଁ ହଜମ କରି-ପାରିବି ।

ନାନ୍ଦୁରିଗିରି କରିବ ମୁଁ ?

ତୁନି ରହିବ, ନୋହିଲେ ଟିପଣା ସୁଝିଲା ନାହିଁ କହି ଅନ୍ୟଠେଇଁ ସମ୍ବନ୍ଧ କରିଦିଏ । ନୋହିଲେ କହିବ, ବାଜିରିଆର ପସନ୍ଦ ହେଲା ନାହିଁ । କିନ୍ତୁ ଏତେ ବର୍ଷର କାହିଁକି ଏବହି ପଡ଼ୁଛି, ଭଉଣୀ ! ହୁଏତ ତମପରି ଶାଶୁ ଓ ହାଡ଼ିବନ୍ଧୁବାବୁଙ୍କ ପରି ସ୍ନେହୀ ଶଶୁର, ତମ ଘରର କୁବେର ସମ୍ପତ୍ତି ପାଇ ସେ ସୁଖୀ ହେବ ବରଂ ତମର ବୋହୂ ହେବାକୁ ରାଜି ହୋଇଯିବ । ସେଇଠୁ ବିନବାର ଧାର୍ଯ୍ୟ କରିବା । ଦେବାନେବାରେ ମୁଁ ହେଳା କରିବି ନାହିଁ ମ, ଠାକୁରେ ଧନ ଦେଇଛନ୍ତି ସେହି ପିଲାଙ୍କ ପାଇଁ । ତମର ଯେତେ ଥିଲେ ଥାଉ, ମୋ କର୍ତ୍ତବ୍ୟରେ ମୁଁ ହାନି କରିବି ନାହିଁ ।

ସୁଧିକା ଅଡ଼ୁଆରେ ପଡ଼ିଲେ । ତୁଣ୍ଡରୁ କଥା ବାହାରିଲା ନାହିଁ । ଦିନୁଦିନ ସେ ଏ ଘରର ଚଳଣି ଉପରେ ବିରକ୍ତ ହୋଇଉଠୁଛନ୍ତି । ଲୋକଙ୍କର ଦୁର୍ନାମ ତାଙ୍କର କାନରେ ବାରମ୍ବାର ପଡ଼ୁଛି । ଡିଲ୍ଲି

ଚଳଣ । ବରବୁଢ଼ୀ ବୟସରେ ସେ ମୋହିନୀ କନ୍ୟା ହୋଇ ବଡ଼ବଡ଼ଆଙ୍କ ପାଖରେ ଓ୦ ଗୋଳଆ କରି, ଗେହ୍ଲେଇ ଗେହ୍ଲେଇ, ସ୍ୱରକୁ କେତେ ଭଙ୍ଗୀରେ ସାତସ୍ୱର କରି ଲମ୍ବାଇ, ଟେକ ପକାଇ, ଭଲ ବାଗରେ କଥା କହି ମନ ମୋହିପାରନ୍ତି । ଏହା ସେ ନିଜେ ଦେଖିଛନ୍ତି । କେତେ ଗ୍ଲେଟ-ଗ୍ଲେଟିଆ ଧନ ଜନ ସନମାନ ଉଙ୍କୁଣୀ ଗାଦି ଉପରକୁ ଉଠୁଛନ୍ତି । ଓହ୍ଲାଉଛନ୍ତି । ଲଙ୍ଗୁଡ଼ ଜାକ କଏ କୁଆଡ଼େ ଯାଇଁ ଲୁଚୁଛନ୍ତି । ହେଲେ, ଏଇ ଇନ୍ଦରଙ୍କର ଭ୍ରୂଲତା ନାଚ, ଅଧଲଙ୍ଗଳା ଦେହ ଦୋହଲା, କଥା ଓ ଉପହାରରେ ଅସାଧ କାମ ସାଧ କରିଦେଇ ଯାଉଛନ୍ତି ।

ଅନୁପା ସେହି ଶିକ୍ଷା ପାଇଛି । ବାଉରିଆର ବାପ ସେଇଥିସକାଶେ ପରି ତାକୁ ବୋହୂ କରିବାକୁ ସକସକ ! ନୋହିଲେ ଛଟକା, ଉହସ୍ତି, ବେମହଣ୍ଡ, ଉପରମୁହାଁ, ଅଲଜୁକା ଝିଅଖଣ୍ଡିକୁ କଏ କୁଳର ବୋହୂ କରିବାକୁ ମଙ୍ଗିବ ?

ହାଡ଼ବନ୍ଧୁଙ୍କ ଆଗ୍ରହକୁ ଆଡ଼େଇ କେବଠାରୁ ସୂଥିକା ଆଜି କେଉଁଠି ଠିକଣା କରିସାରଲେଣି । ଝିଅ କ'ଣ ଅଛିବ ? ସତର ପନ୍ଦର ! ଝିଅମାନେ ଧରାପରା । ସେହି ବାଉରିଆଟା ଅଡ଼ୁଆ କରୁଛି । କହିପଠାଉଛି, ବାହା ହେବ ତ ହେବ ସେହି ଅନୁପାକୁ, ନୋହିଲେ ନାହିଁ । ଟୋକାଟା ଅନୁପାର ବାହାର ରୂପ ଦେଖିଛି । ଭିତର ରୂପ ଦେଖି ନାହିଁ ।

ମନେ ପଡ଼ିଗଲା ପୁଅ ସଙ୍ଗରେ ଆଲୋଚନା—

ହଇ ରେ ପୁଅ, ସେଇଟା ଉହସ୍ତି ।

ଏବକା ଝିଏ ଫଳୁଆଡ଼୍, ବୋଉ ! ହେବା ଉଚିତ । ସେମିତିକା ବୋହୂଟିର ମୂଲ୍ୟ ଦଶଲକ୍ଷ ଟଙ୍କା । ଦେଖିବୁ ରହ, ତା ପଛେ ପଛେ ଲକ୍ଷ୍ମୀ ଗୋଡ଼ାଇଆସିବେ ।

ତୁ ଆଜି ମଦ ଖାଆନା, ପୁଅ !

କ୍ଲବ୍‌ରେ ସମସ୍ତେ ଟିକଏ ଚାଖନ୍ତି । ସେଥିରେ ଦୋଷ ନାହିଁ । ନ ଖାଇଲେ ବଡ଼ ବଡ଼ ଲୋକେ ନିନ୍ଦିବେ । ତାଙ୍କର ଘରଣୀମାନେ ଟହଟହ

ହସିବେ । କହିଲୁ ବୋଉ, ମୋ ଟଙ୍କାରେ ସମସ୍ତେ ସେମାନେ ନାକ ଆଖି ବୁଡ଼ାଇ ପିଇବେ, ମୁଁ ଟିକଏ ନ ଚାଖିଲେ ମୋ ମନ ଦୁଃଖ ହେବ ନାହିଁ ?

ଅନୁପା ମଦ ଓ ମଦୁଆଙ୍କୁ ଘୃଣା କରେ ।

ତା ବାପା ଓ ମା ଘୃଣା କରନ୍ତି ନାହିଁ ! ଅନୁପା ମନାକଲେ ମୁଁ ଆଜି ପିଇବ ନାହିଁ । ମୁଁ ଖବର ପାଇଛି, ନାଟ ଡାମସା, ଭେଗଇଟି ସୋ'ରେ ସେ ବି ଟିକଏ ପିଇବାକୁ ପସନ୍ଦ କରେ । ମୁଁ ନଜେ ଟଙ୍କା ଦେଇ ଦାମିକା ମାଲ୍ କଳଙ୍ଗ ହୋଟେଲରୁ କିଣି ଯେସ୍‌ମିନ ମାଉସୀଙ୍କ ଜରିଆରେ ସପ୍ଲାଇ କରିଛି ।

ହଇରେ ପୁଅ, ଅନୁପା ଯଦି କଲବକୁ ଯିବ, ଘରେ ଥାଇ ମୁଁ ଖାଲି କଲବଲ ହେଉଥିବ । ବୋହୁ ହେଲା ପରେ ସେ ଯଦି ମଦ ଛୁଇଁବ, ଆମର ବଡ଼ବଡ଼ୁଆଙ୍କୁ ପାଣି କିଏ ଟେକିବ ?

— ସତ କହୁଛି, ଅନୁପା ମୋର ବୋହୁ ହୋଇ ଆସିଲେ ପଞ୍ଚାମୃତ ଖୋଇ ଆଗ ତା କାୟା ପ୍ରତିଷ୍ଠା କରିବ । ଘରୁ ମୋ ଆଖି ଆଗରୁ ତାକୁ ଦଣ୍ଡେ ଛାଡ଼ିବ ନାହିଁ । ତତେ ବି ମଦପାଣି ଛୁଆଁଇଦେବ ନାହିଁ ।

ବାଉରିଆ କହିଲା, ତେଣିକି ତୋ'ର ଯାହା ଇଚ୍ଛା ସେଇଆ ହେବ ।

ଯୂଥିକା ଜାଣନ୍ତି, ବାଉରିଆ ଘରକଥାରେ ତାଙ୍କର ଅବାଧ ହେବ ନାହିଁ । ମରଦପୁଏ ମନଖୁସିରେ ବାହାରେ ଯେଉଁ କୌତୁକ କରିବାର କରନ୍ତୁ, ଘରର ବଡ଼ବଡ଼ୁଆ ଓ ଠାକୁର ଠାକୁରାଣୀ ସେ ସବୁ ଦେଖିବେ ନାହିଁ । ଜାଣିବେ ନାହିଁ । ଘର ବାହାରେ ନର୍ଦ୍ଦମା ବହିଯାଉଛି । ସେଇଠି ସବୁ ମଇଳା, ସବୁ ଅସନା । ଘର ଭିତର ପରିଷ୍କାର ପରିଚ୍ଛନ୍ନ ଥିଲେ ଯାଇ ଲକ୍ଷ୍ମୀଠାକୁରାଣୀ ପଶିବେ ।

ହତାଶ ହୋଇ, ନୀରବ ହୋଇ ଏହାପରି କେତେ କଥା ଯୂଥିକା ଭାବୁଥିଲେ । କଅଣ କହି ଇନ୍ଦ୍ରଙ୍କୁ ଉତ୍ତର ଦେବେ ସ୍ଥିର କରିପାରୁ ନ ଥିଲେ ।

ଇନ୍ଦିରା ପଚାରିଲେ, କଣ୍ଟ୍ର କନ୍ଦୁନାହଁ କାହିଁକି ? ଅନୁପାର କଲେଜରୁ ଫେରିବାକୁ ଡେରି ହୋଇପାରେ । ଅପେକ୍ଷା କର । ଚାଲ ଉପରକୁ । ତମେ ତାକୁ ନିଜେ ପଚାର । ବିଷୟୁଟିର ସମାଧାନ ଆଜି ହୋଇଯାଉ ।

ଯୂଥିକା କହିଲେ, ମୁଁ ସେଇଆ ଚାହେଁ । କେତେ ସମୟ ଅପେକ୍ଷା କରିବି ? ସତରେ ଅନୁପା କଲେଜରେ ଡ୍ରାମା ଶିଖୁଛି, ଅବା କେଉଁ ସିନେମା ଥିଏଟର୍ କି ଆଉ କୁଆଡ଼େ କେଉଁ ସାଙ୍ଗମାନଙ୍କ ସଙ୍ଗରେ ଯାଇଛି ? ସେ କେତେବେଳେ ଫେରିବ, ତମେ ନିଜେ ତ ଜାଣି ନ ଥିବ ଗୋ ! ମୁଁ ଯାଉଛି । ଆଉ କେବେ ଆସିବି । ନୋହିଲେ ବାଉରିଆ ଅବା ତା ବାପାଙ୍କୁ କହିବି, ସେମାନେ ଅନୁପାକୁ ଠାବ କରି ପଚାରିବେ, ବୁଝିବେ ।

ମାଡ଼ ମାରିଲାପରି କଥାଗୁଡ଼ାକ କହି ଯୂଥିକା ଉଠି ଠିଆ ହେଲେ ।

ଇନ୍ଦିରା ମନେ ମନେ ହସିବାକୁ ଲାଗିଲେ । ଭାବିଲେ, ପୁରୁଣା ଚାଙ୍ଗକୁ ଆଶ୍ରା କରି ନୂଆ ସମାଜରେ ଆଡଯାତ ହେଉଥିବା ମାଇପିଙ୍କି ସ୍ତ୍ରୀ-ସ୍ୱାଧୀନତାର ଅର୍ଥ ବୁଝିପାରିବେ ନାହିଁ । ଏବାକା ଝିଏ ଖଣ୍ଡାଧାରରେ ଚାଲନ୍ତି । ନିଜେ ଖେଳ ଅନ୍ୟମାନଙ୍କୁ ଖେଳାଇପାରନ୍ତି । ନିଜର ମାନମହତ କିପରି ରକ୍ଷା କରିବାକୁ ହୁଏ, ସେମାନେ ଭଲକରି ଜାଣନ୍ତି ।

ଯୂଥିକା ମନେମନେ ଯୁଦ୍ଧ ଘୋଷଣା କରି ରାଗରେ ଫିଁ ଫିଁ ହୋଇ ଚାଲିଗଲେ । ଇନ୍ଦିରା ହସିହସିକ ବୈଠକଘରକୁ ଫେରିଆସିଲେ । ପଙ୍ଖା ଖୋଲି ସୋଫା ଉପରେ ବସିଲେ । କାନ୍ଥରେ ଏବେ ନୂଆକରି ଟଙ୍ଗାହୋଇ-ଥିବା ପ୍ରଧାନମନ୍ତ୍ରୀ ଇନ୍ଦିରାଙ୍କର ଛବିକୁ ଚାହିଁଲେ । ମନେ ମନେ କହିଲେ, ତମେ ଆକାଶର କଇଁଆଁ, ମୁଁ ତଳକାର ମାଛ । ତଥାପି ତମ ସଙ୍ଗେ ମୁଁ ମିତଣୀ ବସିଛି । ଘୁର ଯୂଥିକାଟା ମତେ ଠକଦେଇ ବେପାର କରିବାକୁ ଆସିଥିଲା । ଛେଳିଟା କେମିତା, ମଣିଷମାରୁ ପୁଅଟାକୁ ଦେଇ ମୋ ସୁବର୍ଣ୍ଣପ୍ରତିମା

ଝିଅକୁ ମଣିମୁକ୍ତାରେ ମଣ୍ଡି ଆହୁରି ପୁଣି କୋଡ଼ିଏ ହଜାରେ ଧନ, କାର୍, ଯାନଯୌତୁକ ଠକିନେବାକୁ ସାକୁଲାଉଥିଲା । ନିର୍ଲଜ୍ଜୀ ପାନେ ପାଇ ଫେରିଛି । ଝିଅଟା ନାମରେ ଅପବାଦ ରଟାଇବ । ଦେଖିବ ତା'ର କେତେ କରାମତି !

କଅଣ ହୋଇଛି ସେ ପାଗଳୀ ଝିଅ ଅନୁପାର ? ସଞ୍ଜୟ ନାମ ପଡ଼ିଲେ ସେ ନାକ ଟେକି ଚାଲିଯାଉଛି । ଅଥଚ ସଞ୍ଜୟକୁ ଘରେ ଦେଖିଲେ ଆଦର ଅଭ୍ୟର୍ଥନାର ଊଣା କରୁନାହିଁ । ହସଖୁସିରେ ଆଳାପ । ମନ ଖୋଲି ଆଲୋଚନା କଲାପରି ଜଣାପଡ଼ୁଛି । ଟିକିଏ ଫୁର୍ତ୍ତି କରିବାକୁ, ସଙ୍ଗରେ କାହିଁ ବୁଲିଯିବାକୁ ଡାକିଲେ କୌଣସି ନା କୌଣସି ଆଳରେ ସେ ମନା କରିଦେଉଛି । ବିକାଶ ଓ ଅଞ୍ଜନା କଟକ ଆସିଥିଲେ । ରଞ୍ଜିତା ଗାଡ଼ି ପଠାଇଥିଲେ । ମୁଣ୍ଡ ବିନ୍ଧୁଛି କହି ସେ ପଲଙ୍କରେ ଶୋଇରହିଲା । ସେମାନେ ସମସ୍ତେ ଧାଇଁ ଆସିଥିଲେ ।

କେତେ ସ୍ନେହ !

ଅନୁପା ତା'ର ବାପାଙ୍କ ଉପରେ ଅଭିମାନ କରି ନିଶ୍ଚୟ ଏପରି ଢଙ୍ଗ କାଢ଼ୁଛି । ତାଙ୍କ ମୁଣ୍ଡରେ ଓ ତୁଣ୍ଡରେ ବାଉରିଆ କଥା ବାନ୍ଧୁଛି । ଝିଅଟା ଲାଜରେ ବାପାଙ୍କୁ କିଛି କହିପାରୁନାହିଁ । ବାହା ହେବ ନାହିଁ ବୋଲି ଏକାଥରେ ମନା କରିଦେଉଛି । ନୋହିଲେ, ସଞ୍ଜୟ ପ୍ରତି ତା'ର ଅସ୍ନେହ ନାହିଁ । ଏଥର ସୁନ୍ଦରଗଡ଼ରୁ ଫେରିଆସିଲେ ତା ବାପାଙ୍କ ମୁଣ୍ଡରୁ ବାଉରିଆର ଭୂତକୁ ଓହ୍ଲାଇ ନ ଦେଲେ ସବୁ ବିଶୃଙ୍ଖଳ ହୋଇଯିବ । ସେଥିପାଇଁ ହାଡ଼ିବନ୍ଧୁବାବୁଙ୍କ ସଙ୍ଗେ ଅପଡ଼ ହେବ ତ ହେଉ ।

କାନ୍ଥଘଣ୍ଟାରେ ନଅଟା ବାଜିଲା । ଅନୁପା ଫେରିଲା ନାହିଁ । ଇନ୍ଦିରା ଟେଲିଫୋନ୍ ପାଖକୁ ଗଲେ । କଲେଜ ଅଫିସକୁ ଫୋନ୍ କଲେ । ଉତ୍ତର ମିଳିଲା ନାହିଁ । ଯେସମିନ୍, ବନହଂସୀ, ରଞ୍ଜିତା ଓ ଆଉ କେତେଜଣ ବନ୍ଧୁଙ୍କ ଘରକୁ ଫୋନ୍ କରି ଅନୁପାର ଖବର ବୁଝିବାକୁ ମନସ୍ଥ କଲେ । ବିବେକ

ନାହିଁ ନାହିଁ କହୁଛନ୍ତି । ସେମାନେ ସମସ୍ତେ ଭଲ, ପୁଣି ସମସ୍ତେ ମନ୍ଦ । ସ୍ପଷ୍ଟ କରିବେ । ପଚାରିବେ, ସେ କେଉଁଠି ଥିଲା ?

ଆସୁଥିବ । ସିନେମା ଦେଖିବାକୁ ସଙ୍ଗୀମାନଙ୍କ ସଙ୍ଗରେ ଯାଇଥିବ ।

ଇନ୍ଦର ଚଉକିରୁ ଉଠି ବୈଠକଘରର ଦାଣ୍ଡପାଖ କବାଟ ଖୋଲିଲେ । ଏକୁଟିଆ ବସି ଏଣୁତେଣୁ ଭାବିଲେ ବିରକ୍ତ ଲାଗୁଛି । କାହା ଘରକୁ ବୁଲି-ଯାଇଥିଲେ, କେଉଁ ମନ୍ଦିରକୁ ବା ଦର୍ଶନ କରିବାକୁ ଯାଇଥିଲେ ସମୟ କଟି-ଯାଇଥାନ୍ତା । ସାନନ୍ଦ ନରୁପା ପାଖରେ ଶୋଇପଡ଼ିଲାଣି ପରା ! ଦୋଚାଲି ଉପରୁ ସେଇ ବାଜେଣିଘଣ୍ଟା ଟୋକାର ପାଟି ଶୁଭୁ ନାହିଁ । ସୁରୁପା ଗୁଣୁଗୁଣୁ ହୋଇ କ'ଣ ମୁଖସ୍ଥ କରୁଛି ।

ଇନ୍ଦର ପଦାକୁ ଆସିଲେ । ଆକାଶକୁ ଚାହିଁଲେ । ଧୋବଫରଫର ଜାଲଜାଲିଆ ପାତଳ ବାଦଲର ପର ଧୀରେ ଧୀରେ ଭାସିଯାଉଥିବା ବାଦଲର ଅନ୍ତରାଳରେ ହସ ହସ ଜହ୍ନ ଲୁଚକାଳି ଖେଳୁଛି । ମନରେ ଉଚ୍ଛାଟ ଆନନ୍ଦ ଆଣୁଛି । ସେ ଆନନ୍ଦରେ ମୂର୍ଚ୍ଛନା ଦେବାପାଇଁ ସାମାନ୍ୟ ଟିକଏ ଔଷଧ ଢୋକିବାକୁ ଆଗ୍ରହ ବଢୁଛି ।

ଅଛି, ଅଛି ସେ ଦରବ । ଅତିଥି ଅଭ୍ୟାଗତଙ୍କର ଚର୍ଚ୍ଚା କରିବା-ସକାଶେ ରଖା ହୋଇଛି । ତାଙ୍କର ଆଲମାରିରେ । ମନରେ ଉତ୍ତେଜନା ଓ କ୍ଳାନ୍ତ ଅବଶ ମାଂସଳ ଦେହରେ ତେଜ ଆଣିବାକୁ ଅନୁପାର ବାପା ସେଇ ପଦାର୍ଥରୁ ପାନେ ଖୋଜନ୍ତି ।

ଦେହ ଅବଶ ଲାଗୁଛି । ଗୋଡ଼ହାତ ଯୋଡାବନ୍ଧା କରୁଛି । ତଣ୍ଟି ଅଠା ଅଠା । ଯୂଥିକା ନ ଆସିଥିଲେ ସେ ବନହଂସୀ, ଯେସ୍‌ମିନ୍ ଅବା ଆଉ କେଉଁ ବାନ୍ଧବୀଙ୍କ ଘରକୁ ବୁଲିଯାଇଥାନ୍ତେ । ମନ ଖୁସି ହୋଇଥାନ୍ତା । ଦେହ ସୁସ୍ଥ ରହିଥାନ୍ତା । ହସଖୁସିର ଗଳ୍ପ । ଦୁନିଆ ଗୋଟାକର ଖବର ଆଦାନ ପ୍ରଦାନ । ରସରସିଆ ମନସରସିଆ କଥା । କାହାର ଢଙ୍ଗ କେମିତି, କିଏ କେତେ ପରିମାଣରେ ବଳେଇ ବୈଷ୍ଣବ, ଭୁଲାମୁହାଁ ବକ, ସେଇ ସବୁର ଚର୍ଚ୍ଚା ।

ସେଷଘରେ ସୁଦର୍ଶନ ପୃଷ୍ଠାଙ୍ଗ ତାଙ୍କର ସେକ୍ରେଟାରୀକାମରେ ବ୍ୟସ୍ତ । ରଥିଆ କାନ୍ଥକୁ ଆଉଜି ଝୁଲାଉଛି । ଖଞ୍ଜା ଆଜି ଶୂନ୍‌ଶାନ୍ ଲାଗୁଛି । ବାବୁ ଥିଲେ ବାରଲୋକ ଯା ଆସ କରନ୍ତି । ଗହଳ ଚହଳ ଲାଗେ । ଅନୁପା ଥିଲେ ପିଲାଙ୍କ ଉପରେ ପାଟି କରୁଥାଏ ।

ଫେରିଲା ନାହିଁ ! ସିନେମାର ସୋ ଭାଙ୍ଗିବାର ବେଳ ହୋଇନାହିଁ ? ଆଉ କେଉଁ ସାଙ୍ଗଘରେ ଅଟକି ରହିଛି ? ହୋଇପାରେ । ସେ ଫେରୁଥିବ । ପହଞ୍ଚିଯିବ ।

ଇନ୍ଦ୍ର ଚଳଖଞ୍ଜାର ଶୋଇବାଘରକୁ ଆସିଲେ । ପଲଙ୍କ ଉପରେ ବସିଲେ । ଚାରିଆଡ଼କୁ ଚାହିଁଲେ । ଉଜ୍ଜ୍ୱଳ ଆଲୋକରେ ସୁସଜ୍ଜିତ ଘର ଚମକଉଠୁଛି । ସବୁ ମୂଲ୍ୟବାନ୍ ପ୍ରାଚୁର୍ଯ୍ୟର ନିଦର୍ଶନ । ଦେହଘସା ମନସହା ହେଲାଣି । ବହୁମୂଲ୍ୟର ଗର୍ବ, ନୂତନତ୍ୱର ଆନନ୍ଦ ମନକୁ ଆସୁନାହିଁ ।

ସମସ୍ତେ ସତେକି ଉପହାସ କରିଉଠୁଛନ୍ତି । ଗୋଟି ଗୋଟି ହୋଇ ଏକା କଥା କହୁଛନ୍ତି; ଦେହକୁ ବେଷ୍ଟନ କରିଥିବା ମୂଲ୍ୟବାନ ବସନ, ଅଙ୍ଗରେ ଖଞ୍ଜା ହୋଇଥିବା ଚକଚକ ଭୂଷଣ, ଚମରେ ପ୍ରଲେପ ସ୍ନୋ କ୍ରିମ୍ ଓ ପାଉଡରର ସବୁ ପର ପାଇଁ । ନିଜ ପାଇଁ ଖାଲି ଦେହ, ଦେହ ଭିତରର ସବୁଗ । ମନର ଉତ୍ତେଜନା ।

ବୟସ ବଢ଼ିଛି । ଦେହରେ ମାଂସ ଓ ବସ ଲାଗିଛି । ଚଳନକୁ ମନ୍ଥର କରିଛି । ଏଇ ଦେହରୁ ଉତ୍ପନ୍ନ ହୋଇଥିବା ପିଲାଟିମାନେ ବଡ଼ ହୋଇଆସୁଛନ୍ତି । ଯେଉଁ ବୟସରେ ଶୁକମୁନି ତାଙ୍କର ନବଉନ୍ମେଷିତ ତାରୁଣ୍ୟରେ ହେଳକ ଲଗାଇଥିଲେ, ଏ ଦେହରେ ସବୁଗ ଥିବାର ଧାରଣା ମନରେ ଜନମାଇଥିଲେ, ଅନୁପା ସେ ବୟସ ଅତିକ୍ରମ କରି-ଆସିଲାଣି । ନିରୁପା ସେହି ବୟସର ପାହାଚରେ ପାଦ ଥୋଇଲାଣି । ପରିବେଶ ବଦଳିପାରେ । ସ୍ଥିତି, ସଂଗତି ଓ ସହତି ବଦଳିପାରେ । ଯୁଗକୁ ଦେଖି ସମୟ । ସେହି ସମୟର ଚଳଣି ସିନା ବଦଳିଯାଏ, ମଣିଷ ଦେହର କାମନା, ସେହି କାମନାକୁ ଜଳାଇବାର ପ୍ରଲୋଭନ ବଦଳେ ନାହିଁ ।

ଅନୁପା ଗଲା କୁଆଡ଼େ ସତେ ?

ତାକୁ ଶାସନ କରିହେବ ନାହିଁ । ବଡ଼ ଝିଅର ଆଖିରେ ସବୁ ପଡ଼େ । ପଦେ କହିଲେ, ସେ ଦୁଇପଦ ଉତ୍ତର ଦିଏ । ଆଠଦିନ ତଳେ ତା ସଙ୍ଗେ ହୋଇଥିବା ଆଳାପ ମନେ ପଡ଼ୁଛି —

ଏତେ ଡେରି କଲୁ, ମା ?

ସେ କୈଫତ୍‌ ସଞ୍ଜୟବାବୁଙ୍କୁ ମାଗୁନୁ ? ଯିବାକୁ ମୁଁ ମନା-କରୁଥିଲି । ତୁ ବାଧ୍ୟ କଲୁରୁ ଗଲି ।

ହଉ ଯା, ଖାଇବୁ । ରାତି ଏଗାରଟା ହେଲାଣି ।

ସଞ୍ଜୟବାବୁ କଲଙ୍ଗ ହୋଟେଲରେ ଆମ ସମସ୍ତଙ୍କୁ ଖୁଆଇଛନ୍ତି । ଭାରି ବଡ଼୍‌ଖର୍ଚ୍ଚୀ । ଯାଉଛି ଶୋଇପଡ଼ିବି । ମୁଣ୍ଡ ଝାଙ୍କୁଛି ।

ମୁଣ୍ଡ ଝାଙ୍କୁଛି, ମା ?

କୋଲ୍‌ଡ୍‌ ଡ୍ରିଙ୍କ୍‌ରେ ମିଶାଇ କ'ଣ ପେଇବାକୁ ସେ ଜିଦ୍‌ କରିଥିଲେ । ମୁଁ ମନାକଲି । ସେ ମୋ'ର ଉପଲକ୍ଷ ଦେଲେ ।

ମୋ'ର ଉପଲକ୍ଷ ?

ଏକା ତୋ'ର କାହିଁ । କେତେ ବଡ଼ବଡ଼ଆଙ୍କର ଗୃହିଣୀଙ୍କ ନାମ କହିଲେ । ତାଙ୍କ ଭଉଣୀ ମୋ ଗୋଲାପର ନାମ ବି ସେ ବାଦ୍‌ ଦେଲେ ନାହିଁ । ସାଙ୍ଗମାନଙ୍କର ହସ, ଥଟ୍ଟା ଶୁଣି, ମୋହବଶରେ ପଡ଼ି ମୁଁ ସେଥିରୁ ଆଖି ବୁଜି ଅଧେ ପିଇଦେଲି ।

ସଞ୍ଜୟ ତୋତେ ଛାଡ଼ିଦେଇଗଲା ?

ହଁ, ତାଙ୍କରି ଗାଡ଼ିରେ ।

ହଉ, ତୁ ଶୋଇବୁ ଯା ।—

ସାତ ଆଠଦିନ ତଳର ଘଟଣା ।

ରଞ୍ଜିତାଙ୍କ ସଙ୍ଗେ ଇନ୍ଦିରାଙ୍କର କଥାଭାଷା ହୋଇଥିଲା । ଅନୁପାକୁ ବାହା ହେବାକୁ ପୁଅର ଆଗ୍ରହ ବଳିଛି । ଝିଅ ଜୋଇଁ ରାଜି ହେଲେଣି । କମଳକୃଷ୍ଣ-ବାବୁ ରଞ୍ଜିତାଙ୍କ କଥାରୁ ବାହାର ହେବେ ନାହିଁ । ଆନନ୍ଦଙ୍କ ମୁଣ୍ଡରୁ ବାଚ୍ଚରିଆର ଭୂତ ଓହ୍ଲାଇବାକୁ ଇନ୍ଦିରାଙ୍କୁ ବେଶି ବେଳ ଲାଗିବ ନାହିଁ । ଅନୁପାକୁ ମନାଇପାରିଲେ ନିମିତ୍ୟ ଉଠିବ ।

ଅନୁପାର ନାହିଁ ନାହିଁ ସତ୍ତ୍ୱେ, ସିନେମା ଦେଖିବାକୁ ସଞ୍ଜୟ ସଙ୍ଗରେ ସେ ତାକୁ ବାଧ୍ୟ କରି ଆଜି ପଠାଇଦେଇଥିଲେ । ବର୍ତ୍ତେ ଏକାଠି କାରବାର ହେଲେ ତାଙ୍କଭିତରେ ବୁଝାମଣା ହୋଇପାରିବ ।

ଅନୁପା ରାଗରେ ଫଁ ଫଁ ହେଉଥିଲା । ଶୋଇବାକୁ ଯିବା ଆଗରୁ ସେ କହିଗଲା, କାହିଁକି ଔଷଧ ଛଳରେ ତୁ ସେଗୁଡ଼ା ଖାଉଛୁ, ବୋଉ ! ତୋର ନାଁ ବାଣ୍ଡରେ ପଡ଼ୁଛି । ଘରର ଲକ୍ଷ୍ମୀ ତୁ, ସେଗୁଡ଼ାକ ଛୁଇଁନା । ବନହଂସୀ ମାଉସୀ, ଯେସ୍‌ମିନ୍ ମାଉସୀଙ୍କ ସଙ୍ଗ ନ ଛାଡ଼ିଲେ, ତୋର ବଦ୍ ଅଭ୍ୟାସ କେବେ କମିବ ନାହିଁ ।

ଆଖିରୁ ଲୁହ ପୋଛି ଅନୁପା ଚାଲିଯାଇଥିଲା ।

ପେଟରୁ ଜନ୍ମିଲା ଝିଅଟାର ଆକଟବାଣୀ ଶୁଣି ସେ ସ୍ତବ୍ଧ ହୋଇଥିଲେ । ପ୍ରକୃତିସ୍ଥ ହୋଇ ସେ ଭାବିଥିଲେ, ଅନୁପା ଯାହା କହିଲା, ସତ । ଆଜି ସେ ଉତ୍ତେଜକ ପାଣି ଛୁଇଁବେ ନାହିଁ । ଆନନ୍ଦଙ୍କୁ ନିବୃତ୍ତ କରାଇବେ । ଡାକ୍ତର ବାରମ୍ବାର ସତର୍କ କରୁଛନ୍ତି । କିନ୍ତୁ ଆନନ୍ଦଙ୍କର ବିକଳ ଅନୁରୋଧକୁ ଏଡ଼ାଇ ଦେଇ ହେଉ ନାହିଁ । ପରିମାଣ ଅବଶ୍ୟ କମାଇ ଦିଆ-ହୋଇଛି । ଆଜିଠାରୁ ଶୂନ୍ ହେବ । ଯେଉଁ ବନ୍ଧୁମାନେ ଆସିବେ, ସେମାନେ ଚା, କଫି, କୋଲଡ ଡ୍ରିଙ୍କ୍ ପିଇବେ । ଯାହା ଭାବିଲେ ଭାବନ୍ତୁ ସେମାନେ ଭାବନ୍ତୁ ।

ଅତି କଷ୍ଟରେ ପ୍ରଲୋଭନ ପାଖରୁ ସେ ଦୂରେଇ ରହିଥିଲେ । ଅନୁପାର ଉପଦେଶ ତା'ରି ରୂପ ଧରି ସତେକି ଆଗରେ ଠିଆ ହେଉଥିଲା ।

ସେ ଆଜି ପାଖରେ ନାହିଁ । ପିଲାମାନେ ହୋଟାଲ ଉପରେ । ଦେହ କସ୍‌ମସ୍ ହେଉଛି । ଆଠଦିନ ହେଲା ସେ ଔଷଧ ଛୁଇଁନାହାନ୍ତି । ଟୋକେ, ମାତ୍ର ଟୋକେ ପିଇଦେଲେ କିଛି କ୍ଷତି ହେବ ନାହିଁ । କେହି ଜାଣିପାରିବେ ନାହିଁ । କଣରେ ଫ୍ରିଜ୍ ଭିତରେ କେତେ ବୋତଲ ଥଣ୍ଡା ହେଉଛି ।

ତଣ୍ଟି ଅଠାଅଠା ହେଉଛି ।

ଇନ୍ଦିରା କବାଟ ଆଉଜାଇଲେ । କବାଟ କିଲିଲେ । ମନରେ ଅସ୍ୱାଭାବିକ ଆନନ୍ଦ । ଅଙ୍ଗରେ ଆକାଙ୍କ୍ଷାର ଜନ୍ମଦିନର ଫୁର୍ତ୍ତି । ଦେହର ବସନ ଖସିପଡ଼ୁଛି । ଓଠରେ ହସ ଚହଟିଯାଉଛି । ପାଖଘରକୁ ନୃତ୍ୟ-

ଭର୍ତ୍ତିରେ ପ୍ରବେଶ କରୁଣୁ ଇନ୍ଦିରା ଉଷତ ମନରେ ବକ୍ତୃତାଥିଲେ, ସମସ୍ତ ବସ୍ତୁର ବଢ଼ାଏ । ବସ୍ତୁର ବାଦ ସାଙ୍ଗ୍ଥାଏ । ତା ପାଖରେ ଶରଣ ଯେ ମରଣ ସଙ୍ଗେ ସମାନ !

ଫାଟକର ଗ୍ରିଲ୍‌ଲଗା ଦରଜା ଦ'ଫାଳ ବନ୍ଦ ଥିଲା । ଫାଟକ ବାହାର ରାସ୍ତା ଉପରେ ସାଇକଲ୍ ରେକ୍‌ସା ଠିଆହେଲା । ଆରୋହୀ ଦୁଇଜଣ ସଙ୍ଗେ ସଙ୍ଗେ ଓହ୍ଲାଇପାରିଲେ ନାହିଁ । ସେମାନଙ୍କର ହର୍ଷୋତ୍‌ଫୁଲ୍ଲ ମଧୁରାଳାପ ସହସା ସ୍ଥଗିତ ହେଲା ।

ହତା ଭିତରେ ବଜୁଳି ଆଲୁଅ ଜୋଛନାକୁ ପରାଜିତ କରିଛି । ଗଜା ନଡ଼ିଆ ଗଛଗୁଡ଼ିକର ପତ୍ର ଚକଚକ ଦିଶୁଛି । ଧୀର ପବନରେ ମର୍ମର-ଉଠୁଛି । ନୂଆ ଧାଞ୍ଚ ଘରର କୋଠରୀଗୁଡ଼ିକରୁ ଆଲୁଅ ଦିଶୁନାହିଁ । ଦୋ'ତାଲା ଉପରର ଘରଗୁଡ଼ିକ ଓ ବାରଣ୍ଡା ଆଲୋକିତ ଦିଶୁଛି । କେହି ଚଳପ୍ରଚଳ ହେଉନାହାନ୍ତି । ନେପାଳୀ ଦରବାନ୍ ବୋଧହୁଏ ଫାଟକରେ ତାଲା ପକାଇ କେଉଁଠି ଘୁମାଇଁପଡ଼ିଛି । ରାତି ଅଧିକ ହୋଇନାହିଁ, ତଥାପି ସବୁ ଶୂନ୍‌ଶାନ୍ ଲାଗୁଛି ।

ଅନୁପାର ତରଙ୍ଗାୟିତ ଆନନ୍ଦ ସହସା ନିଶ୍ଚଳ ହେଲା । ତାର ମନକୁ ଘୋଟିଗଲା ଅଜଣା ଆଶଙ୍କାର କଳାବାଦଲ ବଉଦ । ସେ ଅନୁଭବ କଲା, ଯେପରି ସେ ଏ ଘରର କେହି ନୁହେ । ସେ ଅତିଥି ବି ନୁହେ । ସେ ଜଣେ ଅପରିଚିତ ପର । ଏ ଘରର ପ୍ରାଚୁର୍ଯ୍ୟ ସଙ୍ଗେ ତାର ସମ୍ବନ୍ଧ ନାହିଁ । ଯେଉଁ ମୂଲ୍ୟବାନ୍ ଶାଢ଼ି ବ୍ଲାଉଜ ସେ ପରିଧାନ କରିଛି, ଅଳଙ୍କାର କାନରେ, ହାତରେ ଓ ବେକରେ ମଣ୍ଡିଛି, ସବୁ ଯେପରି ଆଉ କାହାର । ପରଲୁଗା ପିନ୍ଧି ଯାତକୁ ଯିବାର ବେଶର ।

କାହକାହର କୋହ ଗୁଣ୍ଡିତଳେ ଅଦମନୀୟ ହୋଇଉଠିଲା । ଗୁପିଲା ଓଠ ପାଖୁଡ଼ା ଥରିବାକୁ ଲାଗିଲା । ଆପେ ଆପେ ଆଖି ହୁଓଟିରେ

ଲୋଚକ ଭରିଉଠିଲା । ସନ୍ଧ୍ୟାକାଶର ବଜ୍ରଲି ଆଲୋକରେ ଗଢ଼ିଆସୁଥିବା ଲୁହ ଦ' ଧାର ଝଲସିଉଠୁଲା ।

ବସନ୍ତ କଣେଇଁ ଚାହିଁଲା । ତୀବ୍ର ଅନୁଶୋଚନା ଓ ଗଭୀର ବ୍ୟଥାରେ ତାର ମନ ହାହାକାର କରିଉଠିଲା । ମନରେ ପୁଣି ଗୁରେଇ ଭୁରେଇ ଭାବନା ଲହଡ଼ ଭାଙ୍ଗିଲା । ହାସ୍ୟମୟୀ ଅନୁପାର ଉଲ୍ଲାସ ଭାଙ୍ଗିଛି । ତା'ର ଉତ୍ତେଜନା ପ୍ରଶମିତ ହୋଇଛି । ସେ ଅନୁତାପ କରୁଛି ।

ବସନ୍ତ କଛି ନ କହି ରିକ୍ସାରୁ ଓହ୍ଲାଇଲା । ଘଣ୍ଟାକୁ ଚାହିଁଲା । ରାତି ଦଶଟା ବାଜିବ । କ୍ୟାପିଟାଲ ସିନେମାରେ ସେକେଣ୍ଡ୍ ସୋ ଆରମ୍ଭ ହୋଇ-ଗଲାଣି । ହିନ୍ଦ୍ ସିନେମାରେ ବି ଆରମ୍ଭ ହୋଇସାରିଥିଲା । କଲେଜଛକରେ ଟ୍ୟାକ୍ସିରୁ ଓହ୍ଲାଇ ଆସିଲାବେଳେ ସେମାନେ ଦେଖିଆସିଛନ୍ତି । ପୁରୀରୁ କଟକ ଆସିବାକୁ ଦୁଇଘଣ୍ଟା ଲାଗିଥାନ୍ତା । କାଠଯୋଡ଼ି ନମାପଡ଼ା ପାର ହେଲା ପରେ ଟ୍ୟାକ୍ସିର କଳ ବିଗିଡ଼ିଲା । ସଜାଡ଼ିବାକୁ ଆଉରି ଘଣ୍ଟାକରୁ ଅଧିକ ସମୟ ଲାଗିଲା । ଦୁର୍ଭାଗ୍ୟର କଥା । ହିନ୍ଦ୍ ସିନେମାରୁ ଫେରିବାର କୈଫିୟତ କେହି ଗ୍ରହଣ କରିବେ ନାହିଁ । ସେହି କଥା ବିଚାରି ଅନୁପା ବିଚଳିତ ହୋଇପଡ଼ିଛି ପରା !

ବସନ୍ତ ରିକ୍ସାବାଲାକୁ ପଇସା ଦେଲା । ସେ ଦେଖିଲା, ଅନୁପା ତାର ଅଞ୍ଚଳରେ ମୁହଁ ପୋଛି ରିକ୍ସାରୁ ଓହ୍ଲାଉଛି । ରିକ୍ସା ବାହୁଡ଼ିଲାରୁ ବସନ୍ତ କହିଲା, ଏବେ ବି ସମୟ ଅଛି, ମୁଁ ଭୁବନେଶ୍ୱର ଫେରିଯାଇପାରିବି । ତୁ ନିର୍ଭୟରେ ନିଶ୍ଚିନ୍ତରେ ଘରକୁ ଯାଇପାରିବୁ ।

ଅନୁପା କହିଲା, ଏ କି କଥା କହୁଛ ? ତମେ ମୋ ପାଖରେ ଥିଲେ ମୋର ଚିନ୍ତା କଣ, ଭୟ ବା କ'ଣ ? ଆମେ ସିଧେ ବିଚାରି କରିଥିଲୁଁ ଯେ, ହିନ୍ଦ୍ ସିନେମାରେ ତମ ସଙ୍ଗେ ଦେଖା ହେଲା, ସିନେମା ଖେଳ ଭାଙ୍ଗିଲା ପରେ ତମେ ବସରେ ଭୁବନେଶ୍ୱର ଫେରିଯାଉଥିଲ, ମୁଁ ତମକୁ ଧରି-ଆଣିଛି, ଏହି କଇଫତ ମୁଁ ଦେବି ।

ଏ କଇଫତ୍ ମାଈ ବିଶ୍ୱାସ କରିବେ ?

ନ କଲେ ନାହିଁ । ସେ ସନ୍ଦେହ କରିବ । ମୁଁ ଜାଣେ, ବୋଧହୁଏ ତମେ ବି ଜାଣ, ବହୁଦିନ ହେଲା ତମକୁ ସେ ଅବିଶ୍ୱାସ କରୁଛି । ମତେ ସନ୍ଦେହ କରୁଛି । ତାର ସନ୍ଦେହ ଦୃଢ଼ୀଭୂତ ହେବ । ହେଲେ ହେଉ । ମୁଁ ସେଥିକି ଖାତିର୍ କରିନାହିଁ । ନିଜର ମାନମହତ ତଳେ ପଡ଼ିବା ଉପରେ ସେ ପାଟିଭୁଣ୍ଡ କରିବାକୁ ସାହସ କରିବ ନାହିଁ । ଆସ ।

ବସନ୍ତର ହାତ ଧରି ଅନୁପା ତାର ମୁହଁକୁ ଚାହିଁ ହସହସ ହେଲା । ହାତ ଛାଡ଼ି ଦୃଷ୍ଟି ନୁଆଇଁ ଫାଟକପାଖକୁ ଯାଇ ବାହାଦୁର୍‌ର ନାମ ଧରି ଡାକିଲା ।

ଦରବାନ୍ ଜବାବ୍ ଦେଇ ଅସ୍ତବ୍ୟସ୍ତ ହୋଇ ଫାଟକ ପାଖକୁ ଧାଇଁ-ଆସିଲା । କୋଲପ ଫିଟାଇ ଫାଟକ ମେଲାଇଲା । ବସନ୍ତକୁ ଦେଖି ସେ ସଲାମ୍ କରି ଆଡ଼େଇ ଠିଆ ହେଲା ।

ଅନୁପାର ପଛେ ପଛେ ଯନ୍ତ୍ରଚାଳିତ ପରି ବସନ୍ତ ତାର ଅନୁଗମନ କଲା । ପଛରେ ଥାଇ ସେ ଥରିଥରି ପଚାରିଲା, ସେମାନଙ୍କର ସମ୍ମୁଖୀନ ହେବା ଆଗରୁ ଗୋଟିଏ ପ୍ରଶ୍ନର ଉତ୍ତର ତୋ ପାଖରୁ ମୁଁ ଆଶା କରିପାରିବି କି ?

ଅନୁପାର ପାଦ ଅଟକିଲା । ସେ ମୁଣ୍ଡ ବୁଲାଇ ପଛକୁ ଚାହିଁ କହିଲା, ସର୍ବମଙ୍ଗଳ ଜଗନ୍ନାଥଙ୍କ ବେଢ଼ା ଭିତରେ ଦୁହିଁଙ୍କ ମନରେ ଜାଗିଥିବା ସବୁ ପ୍ରଶ୍ନର ଆଲୋଚନା ହୋଇସାରିଛି । ସେଠି ବଡ଼ଠାକୁରଙ୍କ ଆଗରେ ମୋର ମନ ଓ ଜୀବନକୁ ତମ ହାତକୁ ଟେକିଦେଇ ଆସିଛି । ଆଉ କେଉଁ ପ୍ରଶ୍ନଟି ବାକି ରହିଥିଲା ?

ତୋ ଆଖିରେ ଲୁହ ଦେଖିଲି କାହିଁକି ?

ଏଇ କଥା ? ମୋ ମୁହଁରୁ ତାର ଉତ୍ତର ନ ଶୁଣିଲେ ତମେ କଣ ମୋତେ ଫେରାଇଦେଇପାରିବ ? ସବୁ ଲୁହର କାରଣ କହିହୁଏ ନାହିଁ । ବେଳେବେଳେ ଆଖିରୁ ଆପେ ଆପେ ଲୁହ ଗଳିପଡ଼େ । ଆସ ।

ଅନୁପା ବସନ୍ତର ହାତ ଧରି ଆଗେଇଗଲା । ପୋର୍ଟିକୋ ପାଖରେ ହେଉଣୁ ସେ ଦେଖିଲା, ବୈଠକଘର ଭିତରେ ଆଲୁଅ ଜଳୁଛି । ଘର ଭିତରୁ ନରୁପାର ପାଟି ଶୁଭୁଛି । ସେ ଟେଲିଫୋନ୍ ଧରିଛି । ହଲୋ, ହଲୋ ହୋଇ କାହା ସଙ୍ଗେ କଥାଭାଷା କରୁଛି । ଅନୁପା ସାମାନ୍ୟ କ୍ଷିପ୍ରପଦରେ ବାରଣ୍ଡା ଉପରକୁ ଉଠିଲା । ଖୋଲା ଝରକାର ପରଦା ଫାଙ୍କରେ ମୁହଁ ଦେଖାଇ ଡାକିଲା, ନରୁ, ନରୁ—

କିଏ ? ଅପା !

ରିସିଭରକୁ ଟେବୁଲ ଉପରେ ରଖି ନରୁପା ଘରଭିତରୁ ସ୍ୱିଚ୍ ଟିପି ବାରଣ୍ଡାର ଆଲୁଅ ଜାଳିଲା । କବାଟ ଖୋଲିଲା । ଅନୁପା ପାଖରେ ବସନ୍ତକୁ ଦେଖି ସେ ହସହସ ହୋଇ କହିଲା, ମୁଁ ଜାଣେ ସବୁ ଅପା ! ନିଶ୍ଚୟ ତୁ ଭିନାଭାଇଙ୍କୁ ଧରିଆଣିଥିବୁ । ମନେପକାଇଲ ଭିନାଭାଇ, କେତେ ମାସ କି ବର୍ଷ ହେଲା ତମେ ଆମ ଘରକୁ ଆସି ନାହଁ ! ଆମେ ତମର କ'ଣ ଦୋଷ କରିଛୁଁ ?

ବସନ୍ତ କହିଲା, ତୁ ତ ବେଶ୍ କଥା କହି ଜାଣିଲୁଣି ! କାହା ସଙ୍ଗେ କଥାଭାଷା ହେଉଥିଲୁ ? ରିସିଭରଟା ଟେବୁଲ ଉପରେ ରଖିଆସିଛୁ । ସେ କାମ ଆଗ ସରୁ ।

କଥାଭାଷା ସରିଲାଣି । ସଞ୍ଜୟଭାଇ ଅପାକୁ ଡାକୁଥିଲେ । ସୁଦର୍ଶନ ପୂଜାରୀ ମୋତେ ଖବର ଦେଲେ । ବୋଉର ଦେହ ବୋଧହୁଏ ଭଲ ନାହିଁ । ସୂଥିକା ମାଉସୀ ଗଲା ପରେ ସେ ଯାଇ ତା'ର ତଳଘରେ କବାଟ କିଳି ଶୋଇପଡ଼ିଛି । ସୁଦର୍ଶନ ତାଙ୍କୁ ଡାକିଲେ ସେ ବିରକ୍ତ ହେବ ଜାଣି ମତେ ଖବର ଦେବା ଉଚିତ ମଣିଲେ । ସାନନ୍ଦ, ସୁରୁପା ଖାଇପିଇ ଶୋଇପଡ଼ିଲେଣି ।

ଅନୁପା ପଚାରିଲା, ଆଉ ତୁ ?

ତମ ଦୁହିଁଙ୍କୁ ଅପେକ୍ଷା କରି ରହିଛି । ଟିକିଏ ରହ ।

ନରୁପା ରିସିଭର ଟେକିଲା—ହଲୋ, ହଲୋ—

ଆରେ, ସଞ୍ଜୟ ଭାଇ ! ତମେ ଫୋନ୍ ଧରି ବସିଛ ? × × ×
ଆପା ସିନେମା ଦେଖି ଫେରିଲେ ଯେ × × ନା, ଏକା ନୁହେ । ବିଷମଭାଇ ତାଙ୍କ ସାଙ୍ଗମାନଙ୍କ ସଙ୍ଗେ ଭୁବନେଶ୍ୱରରୁ ସିନେମା ଦେଖିବାକୁ କଟକ ଆସିଥିଲେ । ଶେଷ ବସ୍‌ରେ ଫେରେଇଥାନ୍ତେ । ସେମିତି ସେ କରନ୍ତୁ ମ ସଞ୍ଜୟ ଭାଇ ! ଭାରି ସ୍ୱାର୍ଥପର । ଆଜ ଅପାର ହାବୁଡ଼ରେ ପଡ଼ିଲେ । ଝଣା ହୋଇ ଆସିଛନ୍ତି— × × ମୁଁ ଦେଖିନାହିଁ । ହ୍ୟାଣ୍ଡବିଲ୍ ରଖିଛୁ । × × ପ୍ୟାର୍ ଆଉର୍ ପ୍ୟାସ × × ସତେ, ଭାରି ମଜାର ଗପ ? ତମେ ଦେଖିନା, ଖାଲି ଶୁଣିଛ ? × × ହଁ, ନିଶ୍ଚେ ଯିବ । ଫାଷ୍ଟ ସୋ । ତମେ ନିଶ୍ଚେ ଆସିବ । କାଲି ସଞ୍ଜରେ ।

ଅନୁପାର ଧୈର୍ଯ୍ୟ ଭାଙ୍ଗିଥିଲା । ସେ ନିରୁପାର ହାତରୁ ରିସିଭର ଛଡ଼ାଇ କାନରେ ଲଗାଇଲା । ସଞ୍ଜୟର କଥା ଶୁଣି ହସି ହସି କହିଲା, ମୁଁ ନିରୁପା ନୁହେଁ, ଅନୁପା । ବାଃ, ଏତେ ମଜା ଅଛି ସେ ଛବିରେ ? ଗ୍ରାଣ୍ଡରେ ଚାଲିଛି, ନା ? ମୋତେ ବି ସାଙ୍ଗରେ ନେଇଯିବ । ଆମେ ତିନିହେଁ ଫେରୁଛୁଁ । × × ତମକୁ ଜଣା ନାହିଁ ? ଓଡ଼ିଆ ଛବି । ଏକାଦଶ ସପ୍ତାହ ଚାଲିଛି । କେବଳ ବିବାହିତ ଦେଖିପାରିବେ । × × ହଁ, "ବାସର ବାସି" । × × ବୋଉ ତା ସାଙ୍ଗମାନଙ୍କ ସଙ୍ଗେ ପାଞ୍ଚଥର ଦେଖିଲାଣି । ମାଉସୀ ଥରେ ବାଧ କରିଥିଲେ । ସେ ମାଉସୀଙ୍କୁ ଦୁଇଥର ବାଧ କଲା । ବୋଉ ପାଞ୍ଚଥର ଉପଦେଶ ଦେଲାଣି, ଛି, ଅସନା ଛବି । ଦେଖିବାକୁ ଯିବ ନାହିଁ ରେ ପିଲାଏ ! × × ନା, ବୋଉର ଅନୁମତି ନେଇନାହିଁ । ତମକୁ ଗଣ ଅଛି, ତମେ କେବେ କହିବ ନାହିଁ । × × ତମମାନଙ୍କ ପାଇଁ ଆଉ ବସୁସଖୀ ଦରବୁଢ଼ୀଙ୍କ ପାଇଁ କେଣ୍ ଉପଭୋଗ୍ୟ । ମତେ ଖାଲି କୌତୁକିଆ ଲାଗିଲା । × × କାହିଁକି ? ସେ ସବୁ କଥା କ'ଣ ଫୋନ୍‌ରେ କୁହାଯାଏ ? ପୁଣି ଦି' ଦି' ଜଣ ମୋ ପାଖରେ ବସିଛନ୍ତି । × × କହିବି, କ'ଣ କହିବି ? ଆମରି ତାଳୁରୁ ତଳପାଯାଏ କେଉଁଠି କଅଣ ଅଛି, କ'ଣ ଆମକୁ ଅଜଣା ?

ସେପାଖରୁ ସଞ୍ଜୟ କ'ଣ କହିଲା । ସହସା ଅନୁପାର ମୁହଁ ଶେଥାଳିଆ ଦିଶିଲା । ମୁହଁ ଉପରକୁ ସ୍ୱାଭାବିକ ଢଙ୍ଗ ଫେରାଇବାକୁ ଚେଷ୍ଟା-କରି ସେ କହିଲା, ଦଶ ପନ୍ଦର ମିନିଟ୍ ଭିତରେ ଆମେ ଟାକ୍ସିରେ ପଳାଇ-ଆସିଲୁଁ । ଦେଖିଲ ତ, ଡାକିଲ ନାହିଁ ? ମୋ ଗୋଲାପ ଓ ବିକାଶବାବୁ ତ ଥିଲେ, ଜାଗାର ଅଭାବ ହୋଇ ନ ଥାନ୍ତା । × × ପ୍ରେଷ୍ଟିଜ୍ ? ବିକଭାଇ ପାଖରେ ବସିଥିଲେ ତମମାନଙ୍କର ସେଇ ମୂଲ୍ୟବାନ୍ ଟଜରେ କାଳିମା ବୋଳି-ହୋଇ ଯାଇଥାନ୍ତା ? ହଉ—

ସାମାନ୍ୟ ଟଳଟଳ ହୋଇ ଟିକିଏ ଅପ୍ରକୃତିସ୍ଥ ଅବସ୍ଥାରେ ଇନ୍ଦିରା ଘରଭିତରେ ପଶିଲେ । ତାଙ୍କୁ ଦେଖି ବିକ୍ରମ ଠିଆହେଲା । ନଇଁପଡ଼ି ପାଦରେ ହାତ ସ୍ପର୍ଶ କରି ପୁଣି ଠିଆହୋଇ ନିଜ ମୁଣ୍ଡରେ ହାତ ମାରିଲା ।

ଇନ୍ଦିରା ପ୍ରୀତ ହୋଇ ହସ ହସ ହେଲେ । ପଚାରିଲେ, କିଏ ଫୋନ୍ କରୁଥିଲା କି ଅନୁ ?

ଅନୁପା ତାର ଉତ୍ତର ଦେଲା, ଆଉ କିଏ ? ତୋ'ର ହାକିମ ଜୋଇଁ ! ତତେ ଡାକୁଥିଲେ । ମୁଁ ଫୋନ୍ ଧରିଲି । ଫୁଲେଣ୍ଡି ଅପାଟା ମୋ ହାତରୁ ଫୋନ୍ ଟାଣିନେଇ ଗପୁଛି ଯେ ଗପୁଛି ।

ଚେପିଲ ତ ବେଶ କଲା । ଏତେ କ'ଣ କାମ ପଡ଼ୁଛି ଯେ ଆମ ଘରକୁ ଆସିବାକୁ ତାଙ୍କୁ ବେଳ ମିଳୁନାହିଁ ? ତାଙ୍କୁ ତୁ ପଚାରିଲୁ ନାହିଁ, ଅନୁ ?

ତାଙ୍କର କେତେ ସାଙ୍ଗ । ଚିଠି ଲେଖିବାକୁ ସେମାନଙ୍କ ସଙ୍ଗେ ଯାଇ ପିକ୍‌ନିକ୍ କରିବାକୁ ତାଙ୍କୁ ବେଳ ଅଣ୍ଟୁନାହିଁ ! ମୋର କି ଗରଜ ବଳେଇଛି ଯେ ତାଙ୍କୁ ଆସିବାକୁ ନେହୁରା କରିବି ? ତେବେ, ସେ କାଲି ସଞ୍ଜରେ ନିଜେ ଆସିବେ । ନିରୁକୁ କହିଛନ୍ତି । ତାଙ୍କୁ ସିନେମା ଦେଖାଇ-ନେବେ ।

ଦେଖୁଛ, ବିକ୍ରମ ! ଅବୁଝା ଅନୁଟା ଆମ ସଞ୍ଜୟ ଉପରେ ଅଭିମାନ କରିଛି । ନିରୁ କ'ଣ ଏକା ଯିବ ? ତୁ ବି ତା ସଙ୍ଗରେ ଯିବୁ ।

ଏକା ଗଲେ କ୍ଷତି କ'ଣ ? ସଞ୍ଜୟ ଭାଇଙ୍କ ଉପରେ କ'ଣ ତୋର ପତିଆରା ନାହିଁ ଯେ, ଜଗିବାକୁ—

ବାକ୍ୟଟି ଅଧା ରଖି ସେ ବୈଠକଘର ଭିତରୁ ଖଞ୍ଜାକୁ ବାହାରିଗଲା । ଦମଦମ ଚାଲି । ସେ ଚାଲିରେ ବିଦ୍ରୋହର ଲକ୍ଷଣ ।

ଇନ୍ଦିରା ବ୍ୟଥିତ ହେଲେ । କ୍ଷଣେ ନୀରବ ରହିଲେ । ଦେହର ଅବସନ୍ନତା ଦୂର କରିବାକୁ ସେ ତାଙ୍କର ଔଷଧରୁ ସାମାନ୍ୟ ଖାଇ ଶୋଇ-ପଡ଼ିଥିଲେ । ଭଲ ଲାଗୁଛି । କିନ୍ତୁ ମୁଣ୍ଡଟି ସାମାନ୍ୟ ଝୁଙ୍କିଲା ପରି ଲାଗୁଛି । ସେ ଆଖି ବୁଜି ସୋଫାର ପିଠିକୁ ଆଉଜିଲେ ।

ବୋଉଙ୍କର ଢଙ୍ଗରୁ ନିରୁପା ବୁଝିଲା ଯେ, ସେ ଆଜି ଅଳ୍ପ ଔଷଧ ନେଇଛନ୍ତି । ଔଷଧକୁ ସେ ଡରେ । ମନହୁଏ, ଦିନେ ଦ'ଚାମଚ ଖାଇ କେମିତି କଅଣ ଲାଗେ ଜାଣିବ । ନାଟତାମସା ସୋ'ରେ କେହି ଯାଚିଲେ ସେ ରାଗିଯାଏ । ବଳାନ୍ତି ନାହିଁ ।

ସଞ୍ଜୟ ଭାଇଙ୍କୁ ଗୁପ୍ତରେ ଦିନେ କହିଥିଲା । ହିଁ ହୋଇ ହେବେ ତ, ଆଜି ନ ହେଲେ କାଲି । ସେ ଅଦ୍ଭୁତ ମଣିଷ । ସେ ଜବାବ ଦେଲେ, ଦିନେ ତୋତେ ଚଖାଇବି । କେହି ଜାଣିବେ ନାହିଁ ।

କାଲି ସେ ଆସିବେ । ଅପା ଖାଲି ଫଁ ଫଁ ହେଉଛି । ଝିଅ ସାଙ୍ଗ ।

ନିରୁପା ଏହିପରି ଭାବି ଧୀରେ ଧୀରେ ଝପି ଚାଲିଗଲା ।

ସିନେମାର ଖେଳ ସେ ଦେଖିନାହିଁ । କିନ୍ତୁ ତାର ଆଖି ଆଗରେ ଗୋଟିଏ ବିଚିତ୍ର ଆଧୁନିକ ଜୀବନ-ଡ୍ରାମାର ସୁଦୂରପ୍ରସାରୀ ସିନ୍‌ଟିଏ ଅଭିନୀତ ହୋଇଛି । ସେ ଜଣେ ନୀରବ ଦର୍ଶକ । ସେ ପୁଣି ଜଣେ ନିର୍ବୋଧ ଅଭିନେତା ।

ଅନୁପା ଓ ନିରୁପା ସେମାନଙ୍କର ପାର୍ଟ ଶେଷ କରି ଚାଲିଗଲେଣି । ଇନ୍ଦିରା ସଳଖି ବସିଲେଣି । ଆଖି ଖୋଲିଲେଣି । ତଳେ ଲୋଟୁଥିବା ପଣତ ଠେକ କାନରେ ସେ ମୁହଁ ପୋଛୁଲେଣି ।

ଆଗରେ ବସିଥିବା ସୁଦୃଶ୍ୟ ସ୍ୱାସ୍ଥ୍ୟବାନ ଭଣଜା ବିକ୍ରମଙ୍କୁ ଚାହିଁ ହସହସ ହୋଇ ଇନ୍ଦିରା କହିଲେ, ସଞ୍ଜରେ ବାଙ୍ଗଲୋର ବୋଲି ଯିବାକୁ ମୁଁ ମନାକରିଦେଲି, ବିକ ! ମୋର ସ୍ୱର୍ଣ୍ଣପ୍ରତିମା ଅନୁପା ବଜ୍ନଲତାକୁ ଗୋଟାଏ କାଳିଆ-ପୋଡ଼, ଗ୍ରେଟା କେମ୍ପା, ବୃକୋଦରଙ୍କୁ ଟେକଦଅନ୍ତି କେମିତି ? ତା'ର ମଗଜକୁ ସେ ତା'ର ଘୁମଭିତରେ ସାଇତି ରଖିଥାଇ । ତମର ଅଙ୍କଳକ ମାମୁଁ, ଯାହାଙ୍କ ମୁଣ୍ଡରେ କାଣିଚାଏ ଅକଲ ନାହିଁ, ସେ ତାକୁ ଓଟହରି, ତା' ଢୋଲ ବଜାଉଥାନ୍ତି ।

ଇନ୍ଦିରା ସ୍ୱଗତୋକ୍ତି କଲେ । ନିଜର ବଚନରେ ନିଜେ ପ୍ରୀତ ହେଲେ । ସଶବ୍ଦରେ ହସିହସି ନସ୍ୟାନ୍ତ ହେଲେ । ହସ ଥମାଇଁ ନିଜକୁ ନିଜେ ଶାସନ କରି କହିଲେ, ଗୁଡ଼ାଏ ହସିଲି । ଏତେ ହସିବା ଭଲ ନୁହେଁ । ପିଲା ଦୁଇଟା ନାହାନ୍ତି । ଥିଲେ କ'ଣ ଭାବିଥାନ୍ତେ ? ତମକୁ ମୁଁ ପିଲା ତଳେ ଗଣେନାହିଁ ମ ବିକ ! ତମର ପ୍ରଖର ବୁଦ୍ଧି । ମୋ ଅନୁପା ପାଇଁ ମୁଁ ସଞ୍ଜୟକୁ ଠିକ୍ କରି-ସାରିଛି । ହେମାନେ ସମସ୍ତେ ଚଳ । ପିଲାଯାକରେ ସେ ସାର ନୁହେଁ କି ?

ବିକ୍ରମଠାରୁ ସେ ଉତ୍ତର ଅପେକ୍ଷା କରୁଛନ୍ତି । ସେ ଉତ୍ତର ଦେଲା, ଧର୍ମାଧରର ପଅ । ପାଠୁଆ । ହାକିମ ହୋଇଛୁ । ସୁନ୍ଦର, ସ୍ୱାସ୍ଥ୍ୟବାନ ।

ଚରିତ୍ର ସ୍ୱଭାବ ?

ମଣିଷ ଗୋଟିକେ ପ୍ରକୃତି ଗୋଟିଏ, ମାଇଁ ! କାହା ଭିତରେ କେତେ ଆଲୁଅ କେତେ ଅନ୍ଧାର ଲୁଚିରହିଛି, କିଏ କେମିତି ଜାଣିବ ? ନାନାଦି କାରଣରୁ ସ୍ୱାର୍ଥପର ଲୋକେ ଭଲ ବନ୍ଦର ଲଙ୍ଗଡ଼ଖଣ୍ଡିଆ ବୋଲି ଦୂର ଛୁଡ଼ନ୍ତି । ନିକୁଟି ଦେଖିଲେ ସମସ୍ତଙ୍କଠେଇଁ ଖୁଣ ବାହାରିବ । କାହା ପଛରେ କାହାର ଯୁଇଟା ନ ଟୋଡ଼ାଏ, କହିଲ ? ତାକୁ ସମସ୍ତେ ଦେଖନ୍ତି । ପୁଣି, ଦେଖିବାକୁ ସମସ୍ତେ ଭୁଲନ୍ତି, ମାଇଁ !

ଖୁସି ହୋଇ ଇନ୍ଦିରା କହିଲେ, ସାର କଥା ତମେ କହିଲ, ବିକ ! ଅନୁପାକୁ ବୁଝାଇଦେଲେ ସେ ବୁଝିବ । ସଞ୍ଜୟ ନାମରେ କେଉଁଠୁ କ'ଣ ଶୁଣି, ତା' ନାମ ପଡ଼ିଲେ ସେ ଫାଉଁ ଫାଉଁ ହେଉଛି । ରାତି ଡେରି ହେଉଛି ।

ଆସ ତମେ ଖାଇବ । ଏତେ ଡେରିରେ ଆସିଲ କେମିତି ? କେଉଁଠି ଥିଲ କି ?

ପ୍ରଶ୍ନ ପରେ ପ୍ରଶ୍ନ । ଇନ୍ଦିରା ଉଠି ଠିଆହେଲେ । ମୁଣ୍ଡ ଝାଙ୍କିଦେଉଛି । ତାଙ୍କ ପ୍ରଶ୍ନର ଉତ୍ତରକୁ ଏଡ଼େଇଦେବାକୁ ବସନ୍ତ ଠିଆହୋଇ କହିଲା, ତମର ଦେହ ଭଲ ନାହିଁ, ମାଈଁ ! ତମେ ଯାଇ ବିଶ୍ରାମ ନିଅ । ମୋ କଥା ମୁଁ ବୁଝିବି ।

ଅନୁପାକୁ ଅପେକ୍ଷା କରି ଡେରି ହେଉଛି ମୁଁ ଯାଇ ବିଶ୍ରାମ ନେଇଥିଲି । ବୋଧହୁଏ ସେ ତା'ର କିଛି ସାଙ୍ଗମାନଙ୍କ ସାଙ୍ଗରେ ସିନେମା ଯାଇଥିଲା । ତମେ ତା ଆଗରୁ ଆସିଥିବ ।

ନାଇଁ, ମାଈଁ ! ମୋ ସାଙ୍ଗମାନଙ୍କ ସଙ୍ଗେ ମୁଁ ଭୁବନେଶ୍ୱରରୁ ଏଠାକୁ ସିନେମା ଦେଖିବାକୁ ଆସିଥିଲି । ଫେରିଯାଇଥାନ୍ତି । ଅନୁ ସଙ୍ଗେ ଭେଟ ହେଲା ।

ବୁଝିଲି । ସେ ତମକୁ ତା ସଙ୍ଗରେ ଆସିବାକୁ କହିଥିବ । କେଉଁ ସିନେମା ? ହିନ୍ଦି ? ଓଡ଼ିଆ ଛବିଟା ?

ହଁ, ମାଈଁ ! ଜାଣି ନ ଥିଲି ସେଇଟା ଗୋଟାଏ ଅସନା ଛବି । ସାଙ୍ଗମାନେ ଡାକିଲେ—

ଅସନା କାହିଁକି ହେବ ? ଏତେ ଲୋକ ଦେଖୁଛନ୍ତି, ପ୍ରଶଂସା କରୁଛନ୍ତି । ଯୁଗୋପଯୋଗୀ ହୋଇଛି । ସେଥିରେ ଏକକାଳରେ ଭଲଭଲିକା ଫେସନ ରହିଛି । ଏକକାଳର ଚଳଚଳଣ, ଗୀତ, ନୃତ୍ୟ, ଗୋପନ ପ୍ରଣୟ, ଲୋକଦେଖାଣ ବିଳେଇବୈଷ୍ଣବପଣ ସବୁ ରହିଛି । ଆଖି ବୁଜି କ୍ଷୀର ପିଇବା ପ୍ରାଣୀ ସମାଜରେ ବହୁତ ଅଛନ୍ତି । ଲୁଚିଛି ନା ଗୋଡ଼ ଦିଓଟି ଦିଶୁଛି, ଏଇ-ଜାତିଆ ସ୍ତ୍ରୀ ପୁରୁଷ । ବୁଝିପାରିଲ ନାହିଁ ?

ଇନ୍ଦିରା ହିଁ ହିଁ ହୋଇ ହସିଉଠିଲେ । କେବଳ ମୁହଁରେ ନୁହେଁ, ତାଙ୍କର ସାରା ଶରୀରରେ ସେହି ଉନ୍ମାଦକର ହସ ଚହଟିଗଲା । ଦେହରୁ

ହିନ ଯାତନ ଲେଖିତ ବସନ ଭଲୁରିଆସିଲା । ସେ ପୁଣି ସୋଫା ଉପରେ ବସିପଡ଼ିଲେ ।

ବିକ୍ରମ ବିବ୍ରତ ହେଲା । କାଲୁଷ ହେଲା । ଚଞ୍ଚଳ ହେଲା । ତାର ସ୍ମୃତିଭିତରେ ଥରିବାକୁ ଲାଗିଲା । ଲାଜରେ ମୁଣ୍ଡ ନୋଇଁ ସେ ଠିଆ ହୋଇ ରହିଲା, ତା'ର ଜନନୀସଦୃଶା ମାଇଁ ଆଜ ପୁଣି ସୁରାର କବଳରେ ପଡ଼ିଛନ୍ତି । ଉତ୍ତେଜନାରେ ତାଙ୍କର ଦେହ ଓ ମନରେ ଅନଳ ଲାଗିଲାଣି । ସେ ହିତାହିତ ଜ୍ଞାନ ହରାଇବାକୁ ବସିଲେଣି । ତାଙ୍କ ସମୀପରୁ ପଳାଇଯିବାକୁ ମନ ବଳୁଁଛି । କିନ୍ତୁ, ଯାଇହେବ ନାହିଁ ।

ବସ ବିକ ! ମୋ ପାଖରେ ବସ । ମୁଁ ତମକୁ ବୁଝାଇଦେଉଛି ।

ବିକ୍ରମ ତାଙ୍କ ଆଗରେ ବସିଲା । କହିଲା, ମୁଁ ସେ ଛବିରୁ କିଛି ବୁଝିପାରିଲି ନାହିଁ, ମାଇଁ ! ତେଣୁ ଅନ୍ୟମନସ୍କ ହୋଇ ବସିରହିଥିଲି । ମୁଁ ମୋଫସଲର ଗରିବଘରର ପୁଅ । ବଡ଼ଲୋକୀ ଚଳଣି, ସହରର ଆଧୁନିକ ଜୀବନ ମତେ ଅପ୍ରାକୃତିକ, ଅସଙ୍ଗତ ଲାଗେ, ମାଇଁ !

ସତ କହିଲ । ମୁଁ ପାଞ୍ଚଥର ଦେଖିଆସିଲିଣି । ଦେଖିବାକୁ ପିଲାଙ୍କୁ ମନା କରିଥିଲି । ଅନୁପା ଦେଖିଲା ଭଲ କଲା । ମଉନମୁହାଁଙ୍କର ଢଙ୍ଗ ସେ ବୁଝିଲା । ଜାଣିଲା । ନିର୍ବୋଧ, ଅସାବଧାନ ହେଲେ ବିପଦରେ ପଡ଼ିବ । ଦୁର୍ନାମ ମୁଣ୍ଡେଇବ । ଜୀବନ ଯିବ । ଫୁର୍ତ୍ତି ଆନନ୍ଦ କର, କିନ୍ତୁ ହାତେ ମାପି ସ୍ଥିତିଖଣ୍ଡରେ ରହିଲ । ସବୁଥିରେ ଥାଇ କାହିଁରେ ନ ଥାଅ । ଅନୁପା ନିଶ୍ଚୟ ବୁଝିଥିବ ।

ପୁଣି ଅନୁପା ଘରଭିତରେ ପଶିଲା । ଇନ୍ଦିରାଙ୍କର ହାତ ଧରି ନରମ ସ୍ୱରରେ କହିଲା, ତୋ ଦେହ ଭଲ ନାହିଁ । କେତେବେଳେଯାଏ ଆଜ ଏଣୁତେଣୁ ଗପୁଥିବୁ ? ଗଣ୍ଡାଏ କ'ଣ ଖାଇ ତୁ ଶୋଇପଡ଼ ଯା । ମୁଁ ବି ତୋ ପାଖରେ ଶୋଇବି । ବିକଭାଇ, ତମେ ଦାଣ୍ଡପାଖର ଗେଷ୍ଟ୍‌ରୁମ୍‌ରେ ରହିଲେ କିଛି ଅସୁବିଧା ହେବ ନାହିଁ । ଆସ ଖାଇବ ।

ଇନ୍ଦିରା ଅନୁପା'ର ହାତ ଧରି ଉଠିଲେ । ପଦାକୁ ଆସୁଣୁ କହିଦେଲେ, ନିରୁପା ସ୍ୱରୂପା ଡରିବେ । ସାନନ୍ଦକୁ ମୋ ପାଖରେ ଚଳେ ଛାଡ଼ିଦେଇଯା ଅନୁ ! ରାତିଅଧରେ ମତେ ସେ ଖୋଜିବ, କାନ୍ଦିବ ।

ସେଇଆ କରିବି, ଅନୁପା କହିଲା ।

ପାହାଚ ଓହ୍ଲାଇ ଅଗଣାକୁ ଆସି ଇନ୍ଦିରା ପଛକୁ ଚାହିଁଲେ । ଅନୁପାର ପଛେ ପଛେ ବନମ ଆସୁଛି । ସେ ଅଟକିଲେ । କହିଲେ, ବୈଠକଘରର ଆଲୁଅ ଲିଭାଇ କବାଟ ବନ୍ଦକରି ଆସ, ବନ ! ତାଲା ପକାଇ ଚାବି ମୋତେ ଆଣି ଦିଅ । ତାଲାରେ ଚାବିପେନ୍ଥା ଝୁଲୁଛି । ସେହି ପେନ୍ଥାରେ ବାହାର ଗେଷ୍ଟ୍‌ରୁମ୍‌ର ଚାବି ଗୁନ୍ଥା ହୋଇଛି ।

ଅନୁପା ଇନ୍ଦିରାଙ୍କୁ ତାଙ୍କର ଶୋଇବା କୋଠରିରେ ଛାଡ଼ି କହିଲା, ତୁ ପଲଙ୍କ ଉପରେ ବସିଥା । ସୁଦର୍ଶନ ପୂଝାରୀଙ୍କୁ ମୁଁ କହୁଛି, ସେ ତୋ ପାଇଁ ଟ୍ରେରେ ଏଇଟିକି ଖାଇବାକୁ ଆଣିଦେବେ । ପୁଣି ତୁ ସେଇଥିରୁ ଖାଇଛୁ, ବୋଉ !

ଇନ୍ଦିରା ପଲଙ୍କ ଉପରେ ବସିଲେ । କହିଲେ, ଦେହ ଭଲ ଲାଗିଲା ନାହିଁ ଯେ ଔଷଧ ପ୍ରମାଣେ—

ଔଷଧ, ଔଷଧ ! ସେହି ଗୋଟାଏ ଆଗ । କହିଲୁ, ଏ ସଂସାର ରହିବ, ନା ବୁଡ଼ିବ ? ଆଜ ତୁ ସେ ବିଷ ଛୁଇଁନା, ବୋଉ ଯଦି ପୁଣି ତୁ ଛୁଇଁବୁ—

ମତେ ତୁ ଧମକାଉଛୁ, ମୋର ପେଟର ଛୁଆଟା ? ମୋର କ'ଣ ତୁ କରିବୁ ? ଯେଉଁ ବୋପା ମୋତେ ଶିଖାଇଲା ତାକୁ ତୁ ପଚାର, କାହିଁକି ଶିଖାଇଲା ! ଛାଡ଼ିଥିଲି ତ, ଆଜ ମନ ହେଲାରୁ—

ତୋ ଗୋଡ଼ ଧରୁଛି, ତୁ ତୁନ ହ । ମୋର ଦୋଷ ହୋଇଛି । ତତେ ଆକଟିବାକୁ ମୁଁ ଛାର କିଏ ?

ଅନୁପାର ଆଖିରେ ଲୁହ ଛଳଛଳ ହେଲା ।

ଚାବିମୁଠା ଧରି ବସନ୍ତ ପହଞ୍ଚିଲା । ଭଉଣୀଙ୍କୁ ଚାବି ବଢ଼ାଇବାରୁ ସେ କହିଲେ, ଗେଷ୍ଟ୍ ରୁମ୍‌ର ଚାବି କାଢ଼ିନିଅ । ସେଇଟା ଲମ୍ବ ଚାବିଟା ।

ଅନୁପାର ଆଖିର ଲୁହ ତା'ର ଦୃଷ୍ଟିରେ ପଡ଼ିଲା । କି ଘଟଣା ଏ ମଧ୍ୟରେ ଘଟିଗଲା, ଅନୁମାନ କରିବା ତା ପକ୍ଷରେ ସମ୍ଭବ ହେଲା ନାହିଁ । ବିଳମ୍ବ ନିମନ୍ତେ ସେ ଓ ଅନୁପା ମିଥ୍ୟାର ଆଶ୍ରୟ ନେଇଥିଲେ । ଆତ୍ମରକ୍ଷା ପାଇଁ ତାହାହିଁ ଥିଲା ଏକମାତ୍ର ପଥ । ତାର ମାଉସୀ କ'ଣ ଅନୁପା ତୁଣ୍ଡରୁ ସତ୍ୟ ଘଟଣାଟି କାଢ଼ି ନେଇପାରିଲେ, ଅବା ଅନୁପା ଅନୁତପ୍ତ ହୋଇ ନିଜେ ପ୍ରକାଶ କଲା ?

ବସନ୍ତ କହିଲା, ଥାଉ ମାଉସୀ ! ମୁଁ ଯାଉଛି, ମୁଠିଏ ଖାଇଦେଇ, ଟ୍ରେନ୍‌ରେ ଭୁବନେଶ୍ୱର ଚାଲିଯିବି । ଚାକରପିଲାଟା ଅପେକ୍ଷା କରି ରହିଥିବ । ରହିବାକୁ ମୁଁ ପ୍ରସ୍ତୁତ ହୋଇ ଆସି ନ ଥିଲି । ଢହେ ଢହେ ଚାଲିଆସିଥିଲି । ମୋ ପାଇଁ ତମେ ଚିନ୍ତା କରନା ।

ଭଉଣୀ ଚିଡ଼ିଉଠିଲେ । ମୁହଁ ବିକୃତ କରି ଉଚ୍ଚ ସ୍ୱରରେ କହିଲେ, ସତେ ! ଏତେ ବଡ଼େଇ ତମର ! ଆମ୍ଭକୁ ଅପମାନ ଦେଲା ପରି ରାତିଅଧରେ ଫେରିଯିବ ? ଆମେ କ'ଣ ଏତେ ଅଭାବରେ ପଡ଼ିଲୁଣି ଯେ, ତମର ବ୍ୟବହାର ପାଇଁ କିଛି ଯୋଗାଇପାରିବୁ ନାହିଁ ? ଶୁଣିଲୁ ଅନୁପା ! ସ୍ନେହ ବଳେଇ ପଡ଼ୁଥିଲା ତୋର ଯେ ତୁ ତାଙ୍କୁ ସଙ୍ଗରେ ଧରି ଆଣିଥିଲୁ ।

ତୁ ବିରକ୍ତ ହ'ନା ବୋଉ ! ତାଙ୍କର ଅସୁବିଧା ହେବ ବୋଲି ଯଦି ସେ ମଣୁଛନ୍ତି, ଖାଇଦେଇ ଚାଲିଯାଉନ୍ତୁ ।

କାହିଁକି ଯିବେ ? ଅସୁବିଧା ହେବ କାହିଁକି ? ଆମର କେଉଁ କଥାର ଅଭାବ ? ଶୁଣ ବାବୁ, ତମକୁ ସେ ଗେଷ୍ଟ୍ ରୁମ୍‌ରେ ରହିବାକୁ ପଡ଼ିବ ନାହିଁ । ତଳଖଞ୍ଜାର ତଳଘରେ, ଆଗେ ତମେ ଯେଉଁଠି ରହୁଥିଲ, ସେଇଠି ରହିବ । ମୋର ଦେହ ତ ଭଲ ଲାଗୁନାହିଁ । ସୁଦର୍ଶନଙ୍କୁ କହ, ଅନୁ ! ସେ ସବୁ ବ୍ୟବସ୍ଥା କରାଇଦେବେ । ତୁ ବି ଟିକିଏ ଦେଖ୍ ।

ପ୍ରତିବାଦ କରିବାକୁ ବିକ୍ରମ ଓ ଅନୁପା ସାହସ କଲେ ନାହିଁ ।

ସୁଦକ୍ଷ ଗୃହିଣୀ ପରି ଇନ୍ଦିରାଙ୍କ ନିର୍ଦ୍ଦେଶ ପ୍ରକାରେ ଅନୁପା ସବୁ କରିଥିଲା । ନରମ ନିଶାରେ ଅବସନ୍ନ ଇନ୍ଦିରାଙ୍କ ପାଖରେ ସାନଝିଅକୁ ଶୁଆଇଲା । ପୃଥ୍ୱୀଶ, ଶ୍ରୀକର ଓ ନବାଗତା ବୁଢ଼ୀ ବ୍ରଜରାଣୀ ଘରଣୀଦାକୁ କାମର ବରାଦ ଦେଇ ସେ ଦୋତାଲା ଉପରକୁ ଚାଲିଗଲା । କିଛି ସମୟ ପରେ ପୁଣି ସେ ତଳକୁ ଓହ୍ଲାଇଲା । ଇନ୍ଦିରା ତାଙ୍କ କୋଠରିର କବାଟ ବନ୍ଦ କରି ଶୋଇସାରିଥିଲେ । ଶ୍ରୀକର, ପୃଥ୍ୱୀଶ ଓ ବ୍ରଜରାଣୀ ଖଞ୍ଜାଭିତରେ କାର୍ଯ୍ୟବ୍ୟସ୍ତ ଥିଲେ ।

ଅଗଣାରେ ଉଜ୍ଜ୍ୱଳ ଆଲୁଅ ଜଳୁଥାଏ । ବିକ୍ରମର କୋଠରିଟି ତଥାପି ଆଲୋକିତ ଦିଶୁଥାଏ । ଝରକା ଖୋଲା । କବାଟ ଦୁଇଫାଳ ଆଉଜା ହୋଇଥାଏ ପରା । ମଝି ଫାଙ୍କ ବାଟେ ଆଲୁଅ ଆସି ବାରଣ୍ଡାରେ ପଡ଼ୁଥାଏ । ନିର୍ବିକାର ଭାବରେ ଅନୁପା ଧୀରେ ଧୀରେ କବାଟ ଦୁଇଫାଳ ଭିତରକୁ ଠେଲିଲା ।

ଟେବୁଲ ପାଖରେ ବସି ବିକ୍ରମ ତନ୍ମୟ ହୋଇ ବହିଖଣ୍ଡେ ଓଲଟାଉଥିଲା । ଅନୁପାକୁ ଦେଖି ସେ ଚମକିଉଠିଲା । ବହିଟି ଓଲଟାଇଦେଇ ସେ ଟିକିଏ ବିଚଳିତ ହୋଇ ପଚାରିଲା, ଶୋଇନାହଁ ?

ବହି ଉପରେ ଦୃଷ୍ଟି ପକାଇ ଅନୁପା ଲଜ୍ଜିତ ହେଲା । କହିଲା, ଶୋଇବାକୁ ଯାଉଥିଲି, ହଠାତ୍ ସେହି ଇଂରାଜୀ ଉପନ୍ୟାସ କଥା ମନେ-ପଡ଼ିଗଲା । ତାକୁ ମୁଁ ନିରୁପାର ପାଠବହି ଭିତରୁ ଆବିଷ୍କାର କରି କେତେଦିନ ତଳେ ନେଇଆସି ଏହି ଟେବୁଲ ଡ୍ରୟର୍ ଭିତରେ ଲୁଚାଇଦେଇଥିଲି । ସେ ଜାଣେ ନାହିଁ । ଖୋଜୁହେଉଛି । ସାହସ କରି ପଚାରିପାରୁନାହିଁ । ପଢ଼ିଲେ କଅଣ ବା ସେ ବୁଝିବ ? ତଥାପି ତମର ବନ୍ଧୁ ସଞ୍ଜୟବାବୁଙ୍କ ପାଖରୁ ସେ ବହିଖଣ୍ଡି କେବେ ମାଗିଆଣିଛି । ଅବା ସେହି ନିର୍ଲଜ୍ଜ ଲୋକଟି ତାକୁ ପଢ଼ିବାକୁ ଦେଇଛି । ସେଇଟି ତମର ହାବୁଡ଼େ ପଡ଼ିଯିବ ଭବି—

ତୁ ପଢ଼ିନୁ, ଅନୁପା ?

ଓଲଟାଇଛୁ । ଅସନା ଅଶ୍ଳୀଳ ବହି । ତମକୁ ମୋ ରାଣ, ତମେ ତାକୁ ପଢ଼ନା । ମୋତେ ଦେଇଦିଅ । ତାକୁ ମୁଁ କେଉଁଠି ଫୋପାଡ଼ିଦେବି । ଭିତର ମଲାଟ ଉପରେ ସଞ୍ଜୟଭାଇଙ୍କର ନାମ ଲେଖା ହୋଇଛି ।

ସେ ଗୋଟାଏ ସଇତାନ୍, ଅନୁ ! କେତେ ନିରୀହାଙ୍କର ସର୍ବନାଶ କରିଛି । ତେବେ ବହିଟା ମୋ ପାଖରେ ଥାଉ ।

ଏତେ ଅସନା ବହିଟା ତମେ ପଢ଼ିବ ?

ତୁ ପଢ଼ିଛୁ ଯେ—

ଅନୁପାର ଆଖିରେ ଲୁହ ଟଳଟଳ ହେଲା । ସେ କହିଲା, ଜାଣିଜାଣି ମୁଁ ପଢ଼ିନାହିଁ । କି ବହି, ସେଇଆ ଜାଣିବାକୁ ମୁଁ ପତ୍ର ଓଲଟାଉଥିଲି । ଅସନା, ଅଭଦ୍ର, ଅଶ୍ଳୀଳ ବୋଲି ଜାଣିଲେ ବି ଗୋଟାଏ ଅଦମ୍ୟ ଉତ୍ତେଜନାରେ ଉଦ୍‌ବେଳିତ, ରାତି ଅନିଦ୍ରା ହୋଇ ମୁଁ ତାକୁ କୌଣସିମତେ ଶେଷ କଲି, ବିକାଭାଇ ! ତମେ ମତେ ବରଂ ଶାସନ କର, ମତେ ଭୁଲ୍ ବୁଝ ନା । ତମେ କିନ୍ତୁ ସେ ବହି ପଢ଼ ନା ।

ବିକ୍ରମ ଟିକଏ ଚିନ୍ତା କଲା । ଅନୁପାର ଲୁହ ଢଳଢଳ ଆଖିକୁ ଚୁମ୍ବିଲା । ମୁହଁଟି ଲାଜରେ ରଙ୍ଗ ପଡ଼ିଛି । ସେ ମୁହଁ ଆଜି ତାର ଉତ୍ତେଜିତ ମନକୁ ବିବ୍ରତ କରୁଛି ।

ହତା ବାହାରେ ସେହି ଆମ୍ବଗଛର ପତ୍ରଗୁଡ଼ିକ ନିଶୀଥ ବାୟୁରେ ମର୍ମରିଉଠୁଛି । ମନେ ପକାଉଛି ଆଉ ଗୋଟିଏ ରାତିର ଘଟଣା । କେତେ ସାନ୍ନିଧ୍ୟ, କେତେ ନିଭୃତ ବେଳର ଉତ୍ତେଜନାକୁ ସେହି ଭଉଣୀଙ୍କର ରଙ୍ଗିର ଘଟଣାବଳୀ ଆପ୍ଳୁତ କରିଛି । ଏହି ଟିକି ମୁହଁର ନୀରବ ନିମନ୍ତ୍ରଣକୁ ସେ ଗ୍ରହଣ କରିନାହିଁ । ଆଜି କିନ୍ତୁ ତା ମନରେ ସଂକୋଚ ନାହିଁ ।

ବଡ଼ଠାକୁରଙ୍କ ଆଗରେ ସେ ଅନୁପାକୁ ଜୀବନର ସଙ୍ଗିନୀରୂପେ ଗ୍ରହଣ କରିସାରିଛି । ପରିଣାମ ଯାହା ହେବାର ହେଉଥାଉ । ସେହି ଟିକି

ମୁହଁର ପ୍ରଲୋଭନକୁ ସେ ଉପେକ୍ଷା କରି ପାରିବନାହିଁ । ବନ୍ଧୁର ଆଗରେ ଟିକଏ ଆହ୍ଲାଦ ପାଇଁ ସେ ଆସିଛି ।

କଅଣ ଏମିତି ଘୃର୍ଣ୍ଣିରହିଛ ମ ! ଅନୁପା ଓଠରେ ହସ ଝଲକାଇ କହିଲା । ସେ ବହିଟା ରଖିବ ଯଦି ରଖିଥାଅ । ପଢ଼ିବ ତ ପଢ଼ । ସୁବିଧା ହେଲେ କେବେ ସଞ୍ଜିବୁଭାଇଙ୍କୁ ନଜେ ଦେଇଦେବ । କହିବ, ମୁଁ ତମକୁ ଦେଇଛି । ସେ ବୁଝିବେ, ବଳେ ବୁଝିବେ ।

ପଲଙ୍କ ଉପରେ ଓନ୍‌ଲପ୍‌ ଗଦି । ପରିଷ୍କାର ନେଟ୍‌ ମଶାରି ଟଣା ହୋଇଛି । ଦେହରେ ଚହଟିଲା ଉତ୍ତେଜନାକୁ ସେହି ପରିବେଶ ପ୍ରଶମିତ କରିବାକୁ ଆହ୍ୱାନ କରୁଛି ।

ଆଗରେ ପ୍ରେମର ଲକଣିପିଳୁକା । ଆଖିରେ ଅଭିମାନର ଅଶ୍ରୁକଣା । ଓଠରେ ଲାଜଲାଜ ହସର ମୃଦୁ ସ୍ପନ୍ଦନ । ନାକପୁଡ଼ା ଥରାଇ ଅମାନିଆ ଉଦ୍‌ବେଗ ରହିରହି ଖରଶ୍ୱାସ ଛୁଟାଇ ଦେହଲତା ଦୋହଲାଇଦେଉଛି । ସେ ଖୋଜୁଛି ଟିକଏ ଆଶ୍ରା, ନିଜଭୁଲା ଆଶ୍ଳେଷ ।

ଖୋଜୁଛି ତ ବହୁବାର, କିନ୍ତୁ ବିଷମର ଘୃଣା ଥରିଉଠିଛି । ଅନିଶ୍ଚିତ ଭବିଷ୍ୟତକୁ ଆଗରେ ଜଳଜଳ କରି ଦେଖି ସେ ହସଖୁସିରେ ଆଡ଼େଇହୋଇ ଦୂରେଇ ଯାଇଛି । ଏବେ ବି ତା'ର ଭବିଷ୍ୟତ ଅନିଶ୍ଚିତ । ସେହି ଅନିଶ୍ଚିତତାକୁ ଉଭୟେ ଶେଷ ପରିଣତି ବୋଲି ଗ୍ରହଣ କରି, ପରସ୍ପରର ସମ୍ବନ୍ଧକୁ ନିଶ୍ଚିତ କରିସାରିଛନ୍ତି । ଆଗ୍ରହ ଓ ଆଗ୍ରହର ନିଗ୍ରହ ଆଉ ଲୋଡ଼ା ନାହିଁ ।

ବିଷମ ପୁସ୍ତକଟି ଟେବୁଲ ଉପରୁ ଟେକି ନିଜେ ତଳକୁ ଥୁଡ଼ି ଉଠିଲା । ହସହସ ହୋଇ କହିଲା, ହେଇଟି ଏ ବହି ବନ୍ଦ ହେଲା । ଆଉ ସେ ଖୋଲା ହେବ ନାହିଁ । ଅନୁ, ମୁଁ ତାକୁ ସାଙ୍ଗରେ ନେଇଯିବି । ପାଖରେ ରଖିବି । ଦିନେ ଆମେ ଦହେଁ ତାକୁ ଏକାଠି ପଢ଼ିବା । ହସି ହସି ଗଡ଼ିପିବା । ଏମିତି ଭୁ ଠିଆହୋଇ ରହିଥିବୁ, ବସିବୁ ନାହିଁ ?

ବଙ୍କମର ଆଖିରେ ଯେଉଁ କାମନାଦୀପ୍ତ ଆଲୋକର ଆଭାସ ଜାଗିଲା, ସେ ଆଲୋକରେ ଅନୁପମା ପ୍ରଜ୍ୱଳିତ ହେଲା । ମୁହଁ ବୁଲାଇ ସେ ଚାହିଁଲା ଅଗଣାକୁ । ସାମାନ୍ୟ ଶିହରିତ ନମ୍ର କଣ୍ଠରେ ଅନୁନୟ ଭରି କହିଲା, ତମର ସ୍ନେହର ଅବାଧ ହେବ କ ବଙ୍କଭାଇ ! କିନ୍ତୁ ଦେଖିଲା, ଅଗଣା ଆଲୋକିତ ହେଉଥିଲେ ବି ନିର୍ମଳ ଆକାଶର ମଝାମଝି କେତେ ତଳକୁ ତ୍ରୟୋଦଶୀର ହସିଲା ଜହ୍ନ ଖସିଗଲାଣି ! ହେଉଥିଲା ତ ଡେରିଛି ହୋଇ, ଆଉ କୋଠାର ଛାତ ଉପରେ । ନିସ୍ତବ୍ଧ ରାତି ବାରଟା ଟପିଲାଣି । ସେମାନେ ଜାମ ସାରି ବାରଣ୍ଡାରେ ବସି ଗପ କରୁଛନ୍ତି । ତମେ କ୍ଲାନ୍ତ ହୋଇଛ । ଆଲୁଅ ଲିଭାଇ ଶୋଇପଡ଼ ।

ବଙ୍କମ ଅନୁପାର ହାତଟିଏ ଧରିସାରିଥିଲା । ଧୀରେ ଧୀରେ ଥରିଲା ହାତ ଦୁଇଟି ଅନୁପମା କବାଟ ଦି'ଫାକ ଆଉଜାଇ ଆଣିଲା । ଥରିଲା ପାଦରେ ଅଗଣାକୁ ଆସି ମୁଣ୍ଡ ଟେକି ଥରେ ଆକାଶକୁ ଚାହିଁଲା । ଚିବୁକ ଉପରେ ଗଡ଼ିଆସୁଥିବା ଲୁହ ଦି'ଧାରକୁ ହାତ ପାପୁଲିରେ ପୋଛିବାକୁ ଭରସା ନ କରି, ସେ ପୁଣି ବାରଣ୍ଡାକୁ ଉଠିଲା ।

ଶିଢ଼ିରେ ପାଦ ଥୋଇ ଅଗଣାର ଆଲୁଅ ଲିଭାଇ ପଛକୁ ଚାହିଁଲା । ଦେଖିଲା, ଇନ୍ଦିରାଙ୍କର ଶୋଇଲା ଘରର ଖୋଲା ଝରକାର ଗୋଲାପୀ ପାତଳ ପରଦା ଦି'ଫାକର ମଝି ଫାଙ୍କରେ କୋଠରି ଭିତରୁ ଅତି କ୍ଷୀଣ ନୀଳ ଆଲୁଅର ଧାରା ତାକୁ ଅନୁସରଣ କରୁଛି । ସେହି ଆଲୁଅ ସାଥିରେ ତା'ର ପଛେ ପଛେ ଗୋଡ଼ାଇ ଆସୁଛି ବର୍ଷଟି ତଳକ ଆଖିର ଅଜସ୍ର ପ୍ରଶ୍ନ !

ଅନୁମା ଟଳଟଳ ହୋଇ ପାହାଚ ଉଠିଲା । ସ୍ମୃତି ଦାଉଁ ଦାଉଁ । ମନଭିତରେ ସବୁ ପ୍ରଶ୍ନର ସେ ଭୁଲାଇ ଭୁଲାଇ ଉତ୍ତର ଦେଉଛି, ମୁଁ କିଛି ଅପରାଧ କରିନାହିଁ, ବୋଉ ! ଚୋର କରିବା ପ୍ରକାରେ ମୁଁ ତାଙ୍କର ତତ୍ତ୍ୱ ନେଉଥିଲି ।

ଗଭୀର ନିଦ୍ରା ଧୀରେ ଧୀରେ ପାତଳ ହୋଇଆସୁଥିଲା ।

ସେ ସପନ ଦେଖୁଥିଲେ । ସୁନେଲି ସପନ । ମଧୁର ସପନ— ସେ ରାଧାବାଈଆଣୀ ହୋଇଛନ୍ତି । ପ୍ରେମପାଗଳିନୀ । ନିକୁଞ୍ଜ ବନକୁ

ଧାଇଁଛନ୍ତି । ଏଇ ସେହି ମାଳତୀ କୁଞ୍ଜ । ଅସ୍ପଷ୍ଟ ଦିଶୁଛି ଫିକା ଜ୍ୟୋତ୍ସ୍ନାର ବର୍ଣ୍ଣରଞ୍ଜି-ଆସୁଥିବା ଆଲୋକରେ । ନଟବର ନାଗରଙ୍କର କୋଳରେ ଆଜି କେଉଁ କୁତ୍ସକମ୍ପ ନାଗରୀ ! ନିଶ୍ଚେ ବୃନ୍ଦା ହୋଇଥିବ ।

ଦୁଇଟି ମୁହଁ ଏକାଠି ହେଲା ।

କୁଞ୍ଜ ବାହାରେ, ଲତାପତ୍ରର ଅନ୍ତରାଳରେ ଅଭିସାରିକାର ନେତ୍ର ସଜଳ ହେଲା । ଏତିକି ଆତ୍ମାର ମିଳନ ସେ ସହିପାରିଲା ନାହିଁ । ନେତ୍ର ନିମୀଳିତ କଲା । ବସ୍ତ୍ରାଞ୍ଚଳରେ ଲୋତକ ପୋଛିଲା । ସେହି ହତାଶ ପ୍ରେମିକା ଭାବିଲା, ସେ ଫେରିଯିବ । ସେମାନେ ସୁଖୀ ହୁଅନ୍ତୁ ।

ନଟନାଗର ମୁହଁ ଟେକିଲେ ।

କିଏ ସେ ?

ବିଷମକେଶରୀ !

ବୃନ୍ଦା ଗେହ୍ଲେଇହେଲେ । ସେ ଯେ ତାଙ୍କର ଚନ୍ଦ୍ରଜା ଅନୁପା !

ଲଜ, ଭୟ, ସଙ୍କୋଚରେ ପଳେଇଆସିଲେ ଅଭିସାରିକା । ଅନ୍ଧକାର ଏବେ ବି ଟିକିଏ ବାକି ଅଛି । କେହି ଉଠି ନ ଥିବେ । ଅପବାଦର ନାଗରୀ ବାଜିବ ନାହିଁ । ପୃଷ୍ଠଭଙ୍ଗ । ପଳାୟନ ।

ଆଗରେ ଅରଣ୍ୟ । ସେ ଅରଣ୍ୟ ପୁଣି କୁଆଡ଼େ ଉଭେଇଯାଉଛି । ଦୁଇ କୂଳ ଖାଉଛି ନଈ । ଟୋକିଏ କାଠୁଆ ଦୂରରେ ଦିଶୁଛି । କାଠୁଆ ନୁହେଁ, କୁମ୍ଭୀର ପରା ! କୁମ୍ଭୀର ନୁହେଁ, ମଣିଷଟିଏ । ପାଖେଇ ଆସୁଛି । ନଈ ନୁହେଁ, ରାଜପଥ । ଆନନ୍ଦଚନ୍ଦ୍ର । ମଦ ଖାଇ ମାତାଲ ହୋଇଛନ୍ତି । ଡାକ ଛାଡ଼ୁଛନ୍ତି, ଇନ୍ଦିରା, ଇନ୍ଦିରା !

ନିଜକୁ ସେ ପଚାରୁଛନ୍ତି । କାହିଁ ଇନ୍ଦିରା ! ସେ ଅଭିସାରିକା । ମାତାଲ ଟଳିଟଳି ଗୋଡ଼ାଉଛି । ସେ ଆନନ୍ଦ ନୁହନ୍ତି, ଆଉ ଗୋଟାଏ କିଏ । ହାତ ଧରିଲାଣି । ସେ ଅଭିସାରିକା ନୁହନ୍ତି, ଇନ୍ଦିରା !

ଆଗରେ 'ଇନ୍ଦିରା ଭବନର' ବଡ଼ ଫାଟକ । ଚମନ୍ ସିଂ ଟହଲୁଛି । ତାର ନାମ ଧରି ସେ ଡାକ ଛାଡ଼ୁଛନ୍ତି । ମଦୁଆ ମାତାଲଟା ଭଦ୍ରଲୋକ ପରି

ଫେରିଆସୁଛି ଖଣ୍ଡେ ଦୂରରୁ । ଚମନ୍ ସିଂ ଗେଟ୍ ଖୋଲି ସଲାମ୍ କରୁଛି । ଭଦ୍ରଲୋକଟି ମୁଣ୍ଡ ନୁଆଁଇଁ ପ୍ରଣାମ କରୁଛି ।

କିଏ, ବଟ ! ଆସ, ଭିତରକୁ ଆସ ।

ପାଚିଲା ନଡ ଭାଙ୍ଗିଯାଉଛି । ବେଢ଼ ଅଟୁଛି । ଗୁଣ୍ଡ ଧାଡ଼ିଁ ଧାଡ଼ିଁ ପଡୁଛି ଉଠୁଛି । ଅବଶ ଲାଗୁଛି । ଆଖିପତା ଖୋଲିହେଉନାହିଁ । ପାଖ ପଲଙ୍କରେ ସାନନ୍ଦର ନଡ ଭାଙ୍ଗିଲାଣି । ସେ ଗୋଡ଼ହାତ ବାଡ଼ଉଛି । କେତେବେଳୁ ରାତି ପାହିଲାଣି ପରା ! ଖଞ୍ଜା ଭିତରେ ଚାକର ପୂଝାରୀଙ୍କର ପାଟି ଶୁଭୁଛି ।

କେଡ଼େ ଅସନା, ଅସମ୍ଭବ, ଭୟଙ୍କର ସ୍ୱପ୍ନଟାଏ ସେ ସକାଳ ପହରେ ଦେଖିଲେ । ଭୁଲିଭୁଲି ଯାଉଛନ୍ତି । ଯେତିକ ମନେପଡୁଛି, ସେତିକ ବି ଭୁଲିଯିବା ଭଲ । କଅଣ ତାର ଅର୍ଥ ? ଯାହା ହୋଇଥାଉ, କାହା ଆଗରେ ସେ ଅକରଜିଆ କଥାଗୁଡ଼ା ଫିଟାଇହେବ ନାହିଁ । କିଏ କେତେ ଅର୍ଥ ବାହାର କରିବେ । ଛି, କହିବାକୁ ଲାଜ । ମନରେ ସାଇତା ପାପ । ଠାକୁରାଣୀ-ମାନଙ୍କ ପାଖରେ ଆଜ ସଞ୍ଜରେ ଭୋଗରାଗ କଲେ ଋଷ୍ଟ ଖଣ୍ଡନ ହେବ ।

ଇନ୍ଦିରା ଆଖି ଖୋଲିଲେ । ଅଳସ ଭାଙ୍ଗି ପଲଙ୍କ ଉପରେ ଉଠି ବସିଲେ । ମୁଣ୍ଡଟା ସାମାନ୍ୟ ଭ୍ରମୁଥାଏ । ଉଠିଲେ । ଆଲୁଅ ଲିଭାଇ, ବିଜୁଳିପଙ୍ଖା ବନ୍ଦ କଲେ । ମଶାରି ଟେକିଲେ । ଆଉ ପଲଙ୍କରେ ମଶାରି ତଳେ ସାନନ୍ଦ ଶୋଇଛି । ଭାବିଲେ, ଶୋଇଥାଉ । ପିଲାଟା ମନକୁ ଉଠୁ ।

ଦେହର ବସନ ସଜାଡ଼ି କବାଟ ଖୋଲିଲେ । ବାରଣ୍ଡାକୁ ଆସିଲେ । ଦୃଷ୍ଟି ପଡ଼ିଲା କଣଘର ଉପରେ । କବାଟ ଖୋଲିନାହିଁ । ବଡ଼ମ କ'ଣ ଉଠିନାହାନ୍ତି ? ସମସ୍ତଙ୍କ ଆଗରୁ ପାହାନ୍ତାରୁ ଉଠି ସେ ନିତ୍ୟକର୍ମ ଶେଷ କରନ୍ତି । ଏବେ ତାଙ୍କର ଅଭ୍ୟାସ ବଦଳିଛି କି, ଅବା ସେ କାହାର ଘରେ ଶୋଇଲେ ? ନ ପରୁର ସେ ଭୁବନେଶ୍ୱର ଚାଲିଗଲେ କି ?

ଇନ୍ଦିରା ଅଗଣାକୁ ଓହ୍ଲାଇଲେ ।

ଏଣୁତେଣୁ ବାରକଥା ଭାବି ସାଗୁଆନପଲଙ୍କର ଗୋଟିଏ କଡ଼ରେ ଅନୁପା ଛଟପଟ ହେଉଥିଲା । ବଡ଼ ମଶାରି ଦୁଇଟି ପଲଙ୍କ ଆବୋରି ଟଙ୍ଗା ହୋଇଥିଲା । ତା' ପାଖରେ ନିଘୋଡ଼ ନିଦରେ ନିରୁପା ଶୋଇଥିଲା । ନିରୁପାର ଆରପାଖରେ ସ୍ୱରୂପା ।

ମେଇଟା ଗଧ । ଥରେ ନିଦ ହେଲେ ମଲାଙ୍କ ପରି ପଡ଼ିଯାଏ । ଯେତେ ଟଣାଓଟରା କଲେ ଆଖି ନ ଉଠେ । ଇନ୍ଦିରାଙ୍କର ଗେହ୍ଲା ଝିଅ । ଏବଯାଏ ନିଜ ହାତରେ ତାକୁ ଖୋଇପେଇ ଦିଅନ୍ତି । ସେ ନ ଥିଲେ ବଡ଼ଅପା ଅନୁପା ତାର ସବୁ କରେ । ଆଜି ସେ ନିରୁପାକୁ କୋଳାଇ ଶୋଇଛି । ଗୋଟିଏ ପଲଙ୍କରେ ଅନୁପା ଏକଡ଼ ସେକଡ଼ ହେଉଛି ।

ଅନୁପା ଭାବୁଥିଲା, ଯାହା ହେବାର ହୋଇସାରିଛି । କଥା ପ୍ରଘଟ ହେଲେ ସେ କି ବୁଦ୍ଧି କରିବ ? ପୂର୍ବରୁ ସେମାନଙ୍କୁ କେହି ଦେଖିଥିବେ । ସଞ୍ଜପୂର୍ବରୁ କେଉଁ ବନ୍ଧୁମାନଙ୍କ ସଙ୍ଗେ ପୂର୍ବରୁ ଯାଇଥିଲେ । ଫୋନ୍‌ରେ ଆଗ ନିରୁପାକୁ କହିଲେ । ସେତିକି ନିରୁପା ଲୁଚିଇଥିଲା । ଶୋଇବା ଆଗରୁ ସେ କହୁଥିଲା ଓ ପ୍ରଚୁର ହସୁଥିଲା ।

କି ଲୋ ନିରୁ, ଏତେ ତୁ ହସୁଛୁ କାହିଁକି ? ତୋର କ'ଣ ହୋଇଛି ?

ଏ ପ୍ରଶ୍ନର ଉତ୍ତର ସେ ଗମ୍ଭୀର ହୋଇ ଦେଇଥିଲା, ହସିବି ନାହିଁ କ'ଣ ମୁଁ କାନ୍ଦିବି, ଅପା ? ହଉ ହେଲା, ଯା । ମୁଁ ହସିବି ନାହିଁ । ଶୋଇବି । ଏମିତି ଶୋଇବି ଯେ, ସଂସାର ପ୍ରଳୟ ହେଲେ ବି ମୁଁ ଉଠିବି ନାହିଁ । ଆଖି ଖୋଲିବି ନାହିଁ । ହେଲା ?

ତାର ଅଦମ୍ୟ ହସର ତୋଡ଼କୁ ସେ ଚାପିଚାପି ରଖୁଥିଲା । ଅନୁପାର ଧୈର୍ଯ୍ୟର ପାହାଡ଼ ଟଳଟଳ ହେଉଥିଲା । ସେ ଅନ୍ଧାରଘରେ ହାତ ବଢ଼ାଇ ନିରୁପାର ମୁହଁ ଆଉଁସି ଗେହ୍ଲେଇ ପଚାରିଲା, କହିବୁ ନାହିଁ ନିରୁ, କାହିଁକି ହସୁଛୁ ?

ତୁ କାଳେ ରାଗିବୁ ?

ରାଗିବି ନାହିଁ, କହ ।

ନିରୁପା କହିଲା, ତମେ ବହେଁ ପୁରୀ ସମୁଦ୍ରକୂଳର ବାଲି ଉପରେ ବସି କଥାଭାଷା ହେଉଥିଲ । ସେଇଠୁ ଉଠି ପାଣି କୂଳେକୂଳେ ଗଲ । ସଞ୍ଜୟଭାଇ ତାଙ୍କର କେଉଁ ସାଙ୍ଗମାନଙ୍କ ସଙ୍ଗେ ଦେଖିଛନ୍ତି । ଅନ୍ୟମାନେ ତରତର ହେଉଥିଲେ । ଡ୍ରାଇଭର ହର୍ଣ୍ଣ ବଜାଇଲା । ତମେ ବହେଁ ଟିକିଏ ଦୂରକୁ ଚାଲିଯାଉଥିଲ । ସେ ତମ ପାଖକୁ ଯିବାକୁ ମନ କରିଥିଲେ, ଗଲେ ନାହିଁ । ରାସ୍ତା ଉପରକୁ ଫେରି ଗାଡ଼ିରେବସି ଚାଲିଆସିଲେ ।

ଥକ୍କା ହୋଇ ଅନୁପା ଶୁଣିଲା । ଆଉ କିଛି ସେ ପଚାରିପାରିଲା ନାହିଁ । ଭାବିଲା, ଯେଉଁ ମିଥ୍ୟାର ଆଶ୍ରୟ ସେମାନେ ନେଇଥିଲେ, ତାହା ଧରାପଡ଼ିଯାଇଛି । କଥା ନିଶ୍ଚୟ ପ୍ରକଟ ହେବ । ବଡ଼ମଭାଇଙ୍କୁ ଘର ମନା ହେବ । ଏହା ହିଁ ହେବ ତା'ର ପରିଣତି । ବୋଉ ତାକୁ ଝିଙ୍ଗାସିବାକୁ ସାହସ କରିବେ ନାହିଁ । ସେ ଜାଣନ୍ତି, ତାଙ୍କର ଚାଣକଥାର ଜବାବ ଅନୁପା ସହଜରେ ଦେଇପାରିବ ।

ଅନୁପାକୁ ନୀରବ ଦେଖି ନିରୁପା କହିଲା, ତୁ ରାଗ ନା ଅପା ! ତମେ ବହେଁ ପହଞ୍ଚିବା ଆଗରୁ ସଞ୍ଜୟଭାଇ ଫୋନ୍‌ରେ ମତେ ସବୁକଥା କହୁଥିଲେ । ସେ ମତେ ଡାକୁ ନ ଥିଲେ ମ, ତତେ ଡାକୁଥିଲେ । ଏବେ ବୁଝିଲି, ଅପା, ତମେ ବହେଁ ପୁରୀରୁ ଟାକ୍‌ସିରେ ଆସି ସିଧା ଗଲ ଓଡ଼ିଆ ଛବି ଦେଖିବାକୁ ।

ତୋର ଅନୁମାନ ଭୁଲ ନୁହେଁ, ନିରୁ !

ମତେ କାହିଁକି ତୁ ତୋ ସଙ୍ଗରେ ପୁରୀ ନେଲୁ ନାହିଁ, ଅପା ? ସିନେମା ଦେଖାଇ ନେଲୁ ନାହିଁ ? ସମସ୍ତେ ଦେଖୁଛନ୍ତି, ମୁଁ କାହିଁକି ନ ଦେଖିବି ?

ଅସନା ଅଶ୍ଳୀଳ ଛବି । ଦେଖିବାକୁ ବୋଉ ମନା କରିଛି, ନିରୁ ! ନ ଦେଖିବା ଭଲ ।

ତମେ ବହେଁ ଦେଖିଆସିଲ । ତୁ କହୁଥିଲୁ, ବୋଉ ପାଞ୍ଚଥର ଦେଖିଲାଣି । ମୁଁ ବି ଦେଖିବି । ସଞ୍ଜୟଭାଇଙ୍କୁ କହିଲେ ସେ ମୋତେ ଦେଖାଇଆଣିବେ ।

ନନ୍ଦୁ, ସତ କହିବ, ଶୁଣ । ବୋଉ କେତେଥର ଦେଖିଛି ମୁଁ କହି-ପାରିବ ନାହିଁ । ସେ ବଡ଼ ମଣିଷ । ଦରବୁଢ଼ୀ ହେଲଣି । ତା ସଙ୍ଗେ କ'ଣ ଆମେ ସମାନ ? ସେ ମୁରବି ଲୋକ । ଆମର ମା । ତାର କଥା ମାନିବା ଉଚିତ । ଆମେ ଦୁହେଁ ଟାକ୍‌ସିରେ ସିଧାସଳଖ ପୁରୀରୁ ଫେରିଲୁଁ ନାହିଁ, ଜଗନ୍ନାଥଙ୍କର ଆରତି ଦେଖି ଫେରିଲୁଁ । ବୋଉ କାଳେ କ'ଣ ଭାବିବ, ସେଥିପାଇଁ ଦୁହେଁ ଶିଖାଶିଖି ହୋଇ ମିଛର ଆଶ୍ରା ନେଇଥିଲୁଁ । "ବାସର ବାସି" ସିନେମା ସମ୍ବନ୍ଧରେ ମୁଁ ଅନ୍ୟମାନଙ୍କଠାରୁ ଯାହା ଶୁଣିଥିଲି, ସଞ୍ଜୟଭାଇଙ୍କୁ ଫୋନ୍‌ରେ ସେଇଥିରୁ ଟିକିଏ କହିଲି ।

ଅପା !

ହଁ ଲୋ ନନ୍ଦୁ, ମୋ ସୁନା ଭଉଣୀଟା ! ତୁ ପିଲା ଥିଲୁ, ଏବେ ବଡ଼ ହେଲୁଣି । ବହୁତ କିଛି ଦେଖୁଛୁ ଶୁଣୁଛୁ । ଅନ୍ୟମାନଙ୍କ ସଙ୍ଗେ ନାଚ-ତାମସା, ହସଖୁସିରେ ମିଶିବାର ସୁଯୋଗ ପାଇଛୁ । ତୋ ମନରେ କେତେ ଉତ୍ତେଜନା, କେତେ ସ୍ୱପ୍ନ ଜାଗିଛି । ମୋର ବି ଜାଗିଥିଲା । ଆଇଲୁ, ତୁ ଆଇଲୁ ଟିକିଏ ମୋ କୋଳକୁ । ତତେ ମୁଁ ଆଉଁସିଦିଏଁ । ଟିକିଏ ଗେହ୍ଲା କରେଁ !

ଅନୁପାର ଆଖିରେ ଲୁହ ଧରୁନାହିଁ । ତୁଣ୍ଡରୁ ବାକ୍ୟ ଫୁଟୁ-ନାହିଁ । ସେ ହାତ ଲମ୍ବାଇ ନନ୍ଦୁପାକୁ ତା କୋଳକୁ ଟାଣିନେଲା । ନିଜେ ବି ଘୁଞ୍ଚିଆସିଲା । ତାକୁ ତାର ବୁକୁରେ ଲଗାଇ ତାର ଗଣ୍ଡ ଚୁମ୍ବନ କଲା । ସେହି ଅନ୍ଧାର ଭିତରେ ନନ୍ଦୁପା ତାର ଅପାର ମୁହଁରେ ହାତ ବୁଲାଇ ମୁଣ୍ଡ ଟେକି ପଚାରିଲା, ତୁ କାନ୍ଦୁଛୁ, ଅପା ?

ଅନୁପା କହିଲା, ହଁ, କାନ୍ଦୁଛି । ଅନେକ ଦିନରୁ ମୁଁ ମୋର ହସ-ଖୁସିର ଆବରଣ ତଳେ କାନ୍ଦୁଥିଲି । ମୋର ଲୁହ ଛାତିତଳେ ଝରୁଥିଲା । ସେହି ଛାତିଉପରେ ତତେ ପାଇବାରୁ ସେ ଲୁହ ଆଖିକୁ ଆସିଲା । ତୁ ପୁଣି ପଚାରିବୁ, କାହିଁକି କାନ୍ଦୁଥିଲି ? ତାର ଜବାବ ମୁଁ ତତେ ଦେଇପାରିବି ନାହିଁ । ତେବେ ଜାଣିଥା, ତୁ ଆଉ ମୋର କାନ୍ଦ ଦେଖିବୁ ନାହିଁ ।

ତୋର କ'ଣ ହୋଇଛି, ଅପା ?

କିଛି ନାହିଁ । ତୁ ଜାଣୁ, ଔଷଧ ଛଳରେ ଆଜ ବୋଉ ପୁଣି ସେଗୁଡ଼ା ଖାଇଛି ?

ଆଜକାଲି ସମସ୍ତେ ତ ଭୁଖୁଛନ୍ତି ।

ହଁ, ତୁ ବୁଝିଚୁ । ମୁଁ ବ ଭୁଖିଛି । ଭାରି ମଉଜ ଲାଗେ, ନାଇଁ ଲୋ ପାଗଳୀ ! ଫୁର୍ତ୍ତି କରିବାକୁ ମନ ଡାକେ । ଡ୍ରାମା, ନାଚ, କେଉଁ ଫଙ୍କସନ୍‌ରେ, ବଣଭୋଜ, ଏକ୍‌ସକରସନ; ସେଇଠି । ଯେଉଁମାନେ ପିଅନ୍ତି, ଯେଉଁମାନେ ନାହିଁ ନାହିଁ ହୋଇ ଚୋକେ ଦ'ଚୋକ ପିଇଦଅନ୍ତି, ସେମାନେ ଫୁର୍ତ୍ତି କରି ନାଚନ୍ତି । କ'ଣ କରନ୍ତି, ସେମାନଙ୍କର ଭୁବ ରହେ ନାହିଁ ।

କାହିଁକି ଏ ସବୁ ମତେ କହୁଚୁ, ଅପା ?

ତୁ ନଶ୍ଚେ ବୁଝିପାରୁଥିବୁ । ଯେତିକି ନତାନ୍ତ ଆବଶ୍ୟକ, ତା'ଠାରୁ ଅଧିକ ଧନ ପାଖକୁ ଆସିଲେ ମଣିଷ ଏମିତି ମତିଛଡ଼ା ହୁଏ । ପଶୁଠାରୁ ହୀନ ହୁଏ । ସେଇଆ ହେବାକୁ ସେ ଆହୁରି ଆହୁରି ଧନ ଲୋଡ଼େ । ସେତିକ ପାଇବାକୁ ସେ ବବେକ ବୁଡ଼ାଏ । ପାପପୁଣ୍ୟ ଭୁଲେ । ସଂସାରକୁ ଅମଡ଼ା ମଡ଼ାଏ । ଆମର ଏ ସଂସାର ସେମିତି ହେବାକୁ ଯାଉଛି ।

କେମିତି, ଅପା ?

ଏତେ ଗପରେ ସବୁକଥା କ'ଣ ତତେ ବୁଝାଇହେବ ? ତୋର ପିଲା ମନ । ତୋର ଭଲପାଇଁ ତତେ ଟିକଏ ସତର୍କ କରାଦେବାକୁ ମୁଁ ଚାହୁଁଛି । ମୋର ସାନକୁହା ମାନିବୁ ?

କ'ଣ କହ ।

ସଞ୍ଜୟବାବୁଙ୍କ ସଙ୍ଗେ ତୁ ଛବ ଦେଖିବାକୁ ଆଉ ଯିବୁ ନାହିଁ । ସେ ତୋତେ କୌଣସି ବହି ପଢ଼ିବାକୁ ଦେଲେ ତୁ ରଖିବୁ ନାହିଁ । ତୋତେ ସେ ଯେଉଁ ଇଂରେଜୀ ବହିଖଣ୍ଡି ଦେଇଥିଲେ, ସେଇଟି ଭାରି ଅସନା । ତୁ ବୁଝିଲୁ କ'ଣ ? ମୁଁ ତାକୁ ନେଇ ପୋଡ଼ିଦେଇଛି ।

ସେ ଯଦ କାଲି ଡାକବେ ?

କହିବୁ, ତତେ ଯିବାକୁ ମୁଁ ମନା କରୁଛୁ ।

ତାଙ୍କ ବନ୍ଧୁ ମାଗିଲେ ?

କହିବୁ, ମୁଁ ନେଇ ପଡୁଛୁ ।

ତାଙ୍କ ସଙ୍ଗେ ସିନେମା ଛବି ଦେଖି ଯିବାକୁ ବୋଉ ଯଦି ମନେ କରେ ?

ବୋଉକୁ ତୋ ଘଙ୍ଗରେ ଯିବାକୁ କହିବୁ ।

କରୁ ସମ୍ପୂର୍ଣ୍ଣ ଭୁଲ ହୋଇ ନିରୁପା ପଚାରିଲା, ତୁ କଣ ତାଙ୍କୁ ଘୃଣା କରୁ, ଅପା ? ତାଙ୍କ ଉପରେ କ'ଣ ତୋର ବିଶ୍ୱାସ ନାହିଁ ?

ହସିହସି ଅନୁପା ନିରୁପାକୁ କୋଳ କରିଥିଲା । ପୁଣି ତାକୁ ଗେଲକରି କହିଲା, ପାଗଳୀ, ତାଙ୍କୁ ତୋର ଭଉଣୀଇଁ କରିବାକୁ ବୋଉ ସ୍ଥିର କରି-ସାରିଛୁ । ତୁ ତାଙ୍କର କ ସମ୍ବନ୍ଧ ହେବୁ; ଭାବିଲୁ ! ଆଜି ତାଙ୍କ ସଙ୍ଗରେ ବେଶୀ ମିଳାମିଶା କରିବା କ'ଣ ତୋର ଉଚିତ ?

ବୁଝିଲି, ଅପା !

ସୁନା ଭଉଣୀଟି, ଏଥର ଶୋଇପଡ଼ । ମତେ ନିଦ ଆକ୍ରାନ୍ତ କଲାଣି ।

କେତେବେଳଯାଏ ସେ ଆତୁର ଅନିଦ୍ରା ରହି ଛଟପଟ ହେଉଥିଲା । ବାର କଥା ଭାବୁଥିଲା । ସେ ଅନୁଭବ କରୁଥିଲା ଯେ, ନିରୁପା ନିଦର ଛଳନା କରି ଗାଲେଇ ପଡ଼ୁଥିଲା । ପିଲାଟା ରହିରହି ବେଳବେଳ ଖରଶ୍ୱାସ ଛାଡ଼ୁଥିଲା । ଶୋଇଲେ ସେ ଝୁଟ୍ କରି ଶୋଇପଡ଼େ । ସଙ୍ଗେ ସଙ୍ଗେ ଘୁଙ୍ଗୁଡ଼ି ମାରେ । ଆଜି ସେ ଘୁଙ୍ଗୁଡ଼ି ମାରୁନାହିଁ । ଭୁଲ ଭୁଲ ନିରୁପା କାନ୍ଦିଲା ପରି ସେ ମଣିଲା । ସଞ୍ଜୟବାବୁ ତାଙ୍କର ରୂପ, ଆଖି, ହସ, ଭଦ୍ର ବ୍ୟବହାର, ଖୋଲାହାତିଆ ଖରଚ ଓ ବଶମ୍ବଦପଣିଆର ମୋହିନୀ ଶକ୍ତି ଏହି ନିରୀହ ସରଳ ପିଲାଟିର ମନରେ ପ୍ରୟୋଗ କରିସାରିଛନ୍ତି । ଠିକ୍ ବେଳରେ ଅନୁପା ଝିଅଟାକୁ

ସତର୍କ କରୁଛି । ବାଧା ଦେଉଛି । କିନ୍ତୁ ସେ ନିଜକୁ ନିଜେ ବୁଝାଇପାରୁ-
ନାହିଁ । କେଜାଣି, ସେ ଉତ୍ତେଜନାର ହଳାହଳ ପାନ କରିସାରିଛି କି ? ଝୁରି-
ହେଉଛି ? ଅନୁତାପ କରୁଛି ? ଅନୁପା ବିଛଣାରେ ମନେ ମନେ ରକ୍ତାକ୍ତ
ହେଉଛି ?

କାନ୍ଦ୍ ସେ, ମନଇଚ୍ଛା କାନ୍ଦ୍ । ଅନୁପା ଜାଣୁଛି ବୋଲି ତାକୁ
ଜଣାଇଦେବ ନାହିଁ । ନରାଧମ ସଞ୍ଜୟର କବଳରୁ ସେ ତାକୁ ରକ୍ଷା କରିବ ।

ଆତ୍ମହତ୍ୟା କରି ମରିବା ଆଗରୁ ଅନ୍ତଃସତ୍ତ୍ୱା ପୁଷ୍ପା ଯେଉଁ ବେନାମୀ
ଚିଠିଟି ତା ପାଖକୁ ହଷ୍ଟେଲରୁ ଲେଖିଥିଲା, ଯେଉଁଟି ଅଦ୍ୟାବଧି ସେ ସାଇତି
ରଖିଛି ।

—× × ନିବୁଦ୍ଧି ଆପଣରୁ ତାଙ୍କ ଆଗରେ କହିଦେଲି । ଆଉ
ତାଙ୍କର ଦେଖା ନ ପାଏଁ । ବିବେକ ନିର୍ମଳ ଥାଇ କ'ଣ ମୁଁ ଜହର ଖାଇଥିଲି
କି ? ତାଙ୍କ ଆଖି ଦର୍ପଣରେ କୁହୁକ ଥିଲା । ହସରେ କମିଶା, ଭାଷାରେ
ଭବିଷ୍ୟତର ଆଶା ଥିଲା । ତାଙ୍କ ପରଶରେ ଅମୃତ ଥିଲା, ବଉଳ ! ସେ ନିଜେ
ତ ବିଷ-ପୁରୁଷ, ତାଙ୍କର ଦୋଷ ନାହିଁ । ମୋର ରୁଚି ନାହିଁ । ଯାଉଛି ଲୋ,
ତତେ ସାବଧାନ କରି ବିଦାୟ ନେଉଛି— ।

ସେ ପୋଖରୀରେ ଗୋଡ଼ ଖସାଇ ବୁଡ଼ି ମରିଥିଲା ।

ବିପଦରୁ ଉଦ୍ଧାର ପାଇବାର ଉପାୟ ତାର ଅଶୋକା ସୁମନ୍ତ ଭଲ-
କରି ଜାଣିଥିଲା । ସୁଖରେ ସଂସାର କରୁଛି । ସମସ୍ତେ ତାକୁ ଭଲ ପାଉଛନ୍ତି ।
ଲେଖିଥିଲା— ଅଗ୍ନି-ପୁରୁଷକୁ ମୁଁ ମୋର ଖେଳଣା କରିଥିଲି । ପୁଷ୍ପାକୁ ବି
କହିଥିଲି । ଉତ୍ତେଜନାରେ ସେ ହୁଡ଼ିଲା, ତେଣୁ ବୁଡ଼ିଲା । ସେମାନଙ୍କୁ ଖେଳନା
କରାଯାଇପାରେ । ଖେଳ ହୁଏ । ଗୋଡ଼ରେ ଆଡ଼େଇ ଅଗଣାକୁ ଫିଙ୍ଗା-
ଯାଇପାରେ—

ଆହା ବିଚରା ପୁଷ୍ପା ! ତାର ସରଳ ସୁନ୍ଦର ନିଷ୍ପାପ ମୁହଁ ଦିଶି-
ଯାଉଛି । ସେ କହୁଛି, ମୋତେ ସେ ବିବାହ କରିବାକୁ ତିନିଥର ସତ୍ୟ
କରିଥିଲେ, ଜାଣୁ ତ ବଉଳ ! କହିଥିଲେ, ତାଙ୍କର ବାପା ମା ତାଙ୍କ
କଥାରୁ ବାହାର ହେବେ ନାହିଁ ।

ବିଜଳ ଧୃଷ୍ଟବଣୀର ଅଟଳ ବିଶ୍ୱାସ ତାର କାଳ ହୋଇଥିଲା । ଆହା ବିଶ୍ୱାସ !

ଇନ୍ଦ୍ରଭାଇ ଅନ୍ୟ ଧାତୁରେ ଗଢ଼ା । ହାତଟିଏ ଧରି ବହୁବର୍ଷ ପରେ ଆଖିରେ ଆଣିଏ ମମତା ଭରି ସେ ଅଟକାଇ ରଖିଥିଲେ ।

ଅନୁପାର ଚନ୍ଦ୍ରାଧାର ବୁଲିଗଲା । ବୋଉଟା ସତେ କେଡ଼େ ନିର୍ଲଜ୍ଜା ! ସେ ପୁଅ ସମାନ ହେଲେ କି ହେଲା, କେତେ ବଡ଼ ମଣିଷଟାଏ ହେଲେଣି । ବୋଉର ଚଳଣି ଓ ଢଙ୍ଗ ଦେଖି କ'ଣ ସେ ମନେକରୁଥିବେ ?

ଛି ଛି, ଏ କି କଥା ତା ମନକୁ ଆସୁଛି ?

ନିରୁପା ଶୋଇପଡ଼ିଲାଣି । ଘୁଙ୍ଗୁଡ଼ି ମାରୁଛି । ଯେତେ ଟଣାଓଟରା କଲେ ସେ ଆଜି ନ ଉଠେ । ମୁଣ୍ଡଟା ବୁଲେଇଦେଉଛି । ଟିକିଏ ବାରଣ୍ଡାକୁ ଯାଇ ଆକାଶକୁ ଅନାଇଁ ଆସିଲେ ମନ ସ୍ଥିର ହୁଅନ୍ତା ପରି !

ଅନୁପା କବାଟ ଖୋଲି ବାରଣ୍ଡାକୁ ଆସିଲା । ଆକାଶକୁ ଚାହିଁଲା । ସହରର କୋଠାମାନ ପଛରେ ଜହ୍ନ ଲୁଚିଗଲାଣି । ଆକାଶ ଓ ଧରଣୀ ଅନ୍ଧାରିଆ ଦିଶୁଛି । ନିଶୂନ ରାତି ମନରେ ଆଶଙ୍କା ଭରୁଛି । ଇନ୍ଦ୍ରଙ୍କର ତଳ କୋଠରିର ଝରକା ପରଦା ଆଲୋକିତ ଦିଶୁଛି ।

ସମ୍ଭବତ, ତାର ବୋଉ ଚେତନାହତ ପରି ଶୋଇପଡ଼ିଥିବେ । ନିଦ ଭାଙ୍ଗିବ ନାହିଁ । ରାତି ଯେତେ ହେଲେ ହୋଇଥାଉ । କାହିଁକି ଇନ୍ଦ୍ରଭାଇ ତାର ହାତଟି ଧରି ନିକଟେ ବସିବାକୁ ନେହୁରା କରୁଥିଲେ ? ତଳକୁ ଯାଇ ଥରେ ପଚାରିଆସିବ କି ? ତାଙ୍କର ଆଖିରେ କେତେ ଅନୁନୟ, ଭାଷାରେ ମିନତି, ଚରଣରେ ଆବେଗ ପୂର୍ଣ୍ଣ ଥିଲା ।

ଟଳଟଳ ଅଧାପାଗଳୀ ପରି ସେ ପାହାଚ ଓହ୍ଲାଇବାକୁ ଲାଗିଲା । ମନରେ ଡର । ଛାତିରେ ଉଦ୍‌ବେଗ । ପାଦରେ ଥରହର କମ୍ପ । ମନେ ହେଲା, ଉପର ପାହାଚ ଉପରେ ନିରୁପା ଠିଆ ହୋଇ ତାକୁ ଚାହିଁଛି । ସେ ଅଟକିଲା । ପାଦ ଚିପିଚିପି ପାହାଚ ଉଠିବାକୁ ଲାଗିଲା । ସମ୍ଭବତ, ନିରୁପା କୋଠରି ଭିତରକୁ ପଶିଯାଉଛି ।

ଖୋଲି କବାଟ ବାଟେ ଅନୁପା କୋଠରି ଭିତରେ ପଶିଲା । ମଶାରି ଟେକି ମୁଣ୍ଡ ଗଳାଇ ଦେଖିଲା । ନିରୁପା ଶୋଇ ଘୁଙ୍ଗୁଡ଼ି ମାରୁଛି । ଭାବିଲା, ସେ କେଡ଼େ ନିର୍ବୋଧ ! ବଡ଼ଠାକୁରଙ୍କ ଆଗରେ ଦୁଇଟି ହାତ ସେମାନେ ଏକାଠି ଛନ୍ଦିଛନ୍ତି । ସ୍ୱଇଚ୍ଛାରେ, ଆତ୍ମାର ନିର୍ଦ୍ଦେଶରେ । ସେମାନଙ୍କର ମନ ଓ ବିବେକ ନିର୍ମଳ । ଡର କାହାକୁ ? ନିରୁପା ଶୋଇଛି । ଉଠିଲେ ଉଠୁ ।

ପଲଙ୍କ ଉପରେ ହାତଭରା ଦେଇ ଅନୁପା ମଶାରି ଭିତରୁ ପ୍ରକୋଷ୍ଠର ଅନ୍ଧାରକୁ ଚାହିଁଲା । ପ୍ରବଳ ଉତ୍ତେଜନାରେ ଦେହ ବରଡ଼ାପତ୍ର ପରି ଥରୁଛି । ମୁଣ୍ଡଟି ଭ୍ରମୁଛି । ଅନ୍ଧାର ଭିତରେ ବିଜୁଳି ପୁଷ୍ପବେଣୀର ସଜଳ ମୂର୍ତ୍ତିଟି ସତେ କି ଦିଶିଯାଉଛି । ସେହି ଅଶରୀରୀ ଆତ୍ମା ସତେ ଯେପରି ତାର କାନ ଝାଁ ଝାଁ କରି କହୁଛି, ସେମାନେ ସ୍ନେହ କରନ୍ତୁ, ଶପଥ କରନ୍ତୁ । ଭବିଷ୍ୟତର ସୁନେଲି ସ୍ୱପ୍ନ ଦେଖାନ୍ତୁ ନେ ବିଜୁଳି ! ଶିରପ୍ରଶିରରେ ଉତ୍ତେଜନା ଢାଳି ବଶ କରନ୍ତୁ । ସେମାନେ ଅବଶ କରନ୍ତୁ, ସର୍ବସ୍ୱ ଲୁଟି-ନିଅନ୍ତୁ । ସେଇଠୁ ଦୂରେଇ ଯାଇ ହେହେ ହସନ୍ତୁ । ହାତ ନ ପାଏ । ସେମାନେ ସମସ୍ତେ ସମାନ । ଜାଣିଥା ବିଜୁଳି, ଆଗ ବନ୍ଧନ, ସେଇଠୁ ମିଳନ । ନୋହିଲେ, ଦେଖ୍ ମୋର ଅବସ୍ଥା ।

ମୁଣ୍ଡ ଦୋହଲାଇ ଅନୁପା ମଶାରି ଭିତରେ ପଶିଲା । ତକିଆ ଉପରେ ମୁଣ୍ଡ ଚାପି, କୋମଳ ଶଯ୍ୟାରେ ଦେହ ଲମ୍ବାଇ ସେ ଆଖି ବୁଜିଲା । ମନ ଭିତରେ ନାହିଁ ନାହିଁ କହି ଅଶରୀରୀ ପୁଷ୍ପାର ସ୍ମୃତିକୁ ସେ ଉତ୍ତର ଦେଲା, ସମସ୍ତେ ସମାନ ନୁହନ୍ତି ବିଜୁଳି, ବିକଶଇ ତାଙ୍କ ଭିତରୁ ଅଲଗା । ସେ ପଥର । ଆଜି ସେ ତରଳିଥିଲେ ।

ନିଜର ଉକ୍ତିକୁ ଦୃଢ଼ କରି ସେ ସମର୍ଥନ କରିବାକୁ ସାହସୀ ହୋଇ ପାରୁ ନ ଥିଲା । ସେ ଶୁଣିଥିଲା, ଯାହାସବୁ ଯେବେ ଘଟିଯାଇଛି ସେସବୁ ଘଟଣା, ଘଟଣା ପଛର ଲୁଚି ରହିଥିବା କେତେ ଅଜଣା ଉତ୍ତେଜନା, ତାହାର ଅଦମ୍ୟ ପ୍ରେରଣା ସବୁ କୁଆଡ଼େ ଅଲିଭା ଅକ୍ଷରରେ ଅନନ୍ତ କାଳର ବକ୍ଷରେ ଲିପିବଦ୍ଧ ହୋଇ ରହିଛି । ପୁଷ୍ପବେଣୀ ଆଜି ଅଶରୀରୀ । ସବୁ ସେ ଦେଖୁଥିବ, ଜାଣୁଥିବ କିଏ କଣ । କେଉଁଥିପାଇଁ କିଏ କେତେଦୂର ଦାୟୀ, ତାକୁ ଅଛପା ନ ଥିବ ।

ବଞ୍ଚିଳ ସୃଷ୍ଟାର ଆତ୍ମା ବସୁଥିବ ।

ସ୍ୱାମୀ-ସୋହାଗିନୀ ତା'ର ଅଶୋକା ସୁମତି ଦେବୋପମ ଅଧ୍ୟାପକ ପତିଦେବତାଙ୍କ ପାଖରେ ହସିହସି ତାଙ୍କର ବିଶାଳ ବପୁ ଉପରେ ଲୋଟି-ପାଉଥିବ । କହୁଥିବ ଗେଡ୍ଲେଇ ଗେଡ୍ଲେଇ, ଶୁଣିଲ ସେ ମଞ୍ଜନମୁହାଁ ଉହରୀ କୁବେରକନ୍ୟାର କଥା, ସେ ବୁଡ଼ ବୁଡ଼ ପାଣି ପିଏ—

କବାଟକୁ ସାମାନ୍ୟ ଠେଲିଣୁ ସେ ଧୀରେ ଧୀରେ ଖୋଲିଗଲା । ଦୁଇ ପାଟକୁ ଦୁଇ ଆଡ଼କୁ ଆଉଜାଇ ଇନ୍ଦ୍ରନାଥ ଭିତରକୁ ଚାହିଁଲେ । ମଶାରି ଟଙ୍ଗା ହୋଇଛି । ଚଳନ୍ତି ପଙ୍ଖାର ପବନରେ ଦୋହଲୁଛି । ବିକ୍ରମଙ୍କର ନିଦ ଭାଙ୍ଗିନାହିଁ ।

ପ୍ରକୋଷ୍ଠର ଚାରିଆଡ଼କୁ ଚାହିଁଲେ । ଟେବୁଲ ଉପରେ ବହି ଖଣ୍ଡିଏ ଓଲଟା ହୋଇ ରଖାହୋଇଛି । କି ବହି ? ରାତିସାରା ଅନିଦ୍ରା ହୋଇ ପଢୁଥିଲେ ? ଦେହ କ'ଣ ଅସୁସ୍ଥ ହେଲା ?

ଇନ୍ଦ୍ରନାଥ କୋଠରି ଭିତରେ ପଶିଲେ । ପଙ୍ଖା ବନ୍ଦ କଲେ । ଆଲୁଅ ଜାଳି ବହିଟି ଠିକ ଦେଖିଲେ । ଇଂରେଜୀ ବହି । ସେ ଅନିଦ୍ରା ହୋଇ ପଢୁଥିବେ । କବାଟ ଖୋଲା ରଖିଥିଲେ କାହିଁକି ? ଡୋଲ ଭିତରେ ଚୂଟିଆ ମୂଷା ?

କେଡ଼େ ଅବରଜଆ ସ୍ୱପ୍ନଟାଏ ସେ ପାହାନ୍ତାପହରେ ଦେଖିଲେ । କଣ ତାର ଅର୍ଥ ? କାହାକୁ ବିଶ୍ୱାସ ଏ ଦୁନିଆରେ ? ଆଲୁଅ ଜଳିଲା, ତଥାପି ତାଙ୍କର ନିଦ ଭାଙ୍ଗିଲା ନାହିଁ । ସତେ ସେ ଅସୁସ୍ଥ ହେଲେ ?

ମଶାରି ଟେକି ଇନ୍ଦ୍ରନାଥ ମୁହଁ ଗଳାଇଲେ । ବିକ୍ରମ ଚିତ୍ତହୋଇ ଶୋଇଛି । ତକିଆ ଉପରେ ମୁଣ୍ଡ । ଦୁଇକଡ଼ରେ ହାତ । ସ୍ୱାଭାବିକ ଗତିରେ ସେ ନିଶ୍ୱାସ ଛାଡ଼ୁଛି ।

ଇନ୍ଦ୍ର ଧୀରେ ଧୀରେ ତାଙ୍କର କୋମଳ କୁସୁମ ହାତପାପୁଲିଟି ବସନ୍ତର କପାଳ ଉପରକୁ ନେଲେ । ଦେହରେ ତାତ ନାହିଁ ? ଅବିକଳ ସେହି ମୁହଁଟି, ଟୋକା ବୟସରେ ଅନୁପାର ବାପାଙ୍କର ମୁହଁ । ଆହୁରି ସୁନ୍ଦର, ବଳିଷ୍ଠ, ଢଳଢଳିଆ । ପ୍ରଭେଦ ଏତିକି ଯେ ସେ ବଡ଼ବଡ଼ ନିଶ ରଖିଥିଲେ । ବସନ୍ତ ଚିତ୍‌ଲଣ ହୋଇ ଶୋଇରହିଛନ୍ତି । ଶୋଇ ଶୋଇ କେଉଁ ସୁଖର ସପନ ଦେଖୁଛନ୍ତି କି ବସନ୍ତ, ଓଠରେ ଟିକିଏ ହସ ଲାଗି ରହିଛି ପରି ମନେ ହେଉଛି ।

ହସଖୁସିର ସପନ ! କ'ଣ ହୋଇପାରେ ? ସେ ବି ଗୋଟାଏ ଅସମ୍ଭବ ଅବଉଜିଆ ସ୍ୱପ୍ନ ଦେଖିଥିଲେ । କାଳ ସାପଟାଏ । ଘରର କବାଟ ଖୋଲା ଥିଲା କାହିଁକି ? ଏତେବେଳଯାଏ ଟୋକାଟା ଶୋଇବ କାହିଁକି ? ଅନୁପା କାଲି ରାତିରେ କେତେବେଳଯାଏ ଥିଲା ? କି ଗପ କରୁଥିଲେ ?

ବହୁଦିନ ତଳର ଝାପ୍‌ସା ଦୃଶ୍ୟଟିଏ ଆଖି ଆଗରେ ଭାସିଯାଉଣୁ କେଉଁ ଅଜଣା ଭୟରେ ଦେହ ଥରଉଠିଲା । ସେ ହାତ ସଙ୍କୁଚିତ କରି ମଶାରି ଭିତରୁ ମୁଣ୍ଡ କାଢ଼ିଆଣିଲେ । ଟେବୁଲରେ ହାତଭରା ଦେଇ ସେହି ଅକୃତଜ୍ଞ ଟୋକା ଆଡ଼କୁ ଚାହିଁ ରହିଲେ । ମନେ ମନେ ନିଜକୁ ଝିଙ୍ଗାସିଲେ । ମୁଁ ଚଣ୍ଡାଳୁଣୀ କି ଜ୍ଞାନବୁଦ୍ଧି ନ ଥିଲା, କାହିଁକି ସେଥିରୁ ପୁଣି ରଖିଲି ? ମତିହରା ହୋଇ ଗୋଟାଏ ଅସ୍ପୃଶ୍ୟା ବାହାରର ଲୋକ ପାଖକୁ ପିଲାଟାକୁ ପଠାଇ-ଦେଲି ?

ଦୀର୍ଘଶ୍ୱାସ ଛାଡ଼ି ବସନ୍ତ କଡ଼ ଲେଉଟାଇଲା । ଆଖି ଖୋଲିଲା । କୋଠରି ଭିତରେ ଆଲୁଅ ଜଳୁଛି । ନେଟ୍-ମଶାରି ବାହାରେ ଅନୁପା ଠିଆ ହୋଇଛି ପରା ! ରାତି କ'ଣ ତେବେ ଶେଷ ହୋଇନାହିଁ ? ଏତେ ପାହାନ୍ତାରୁ ଅନୁପା ପୁଣି ଆସିଲା କାହିଁକି ? ଭାବିଲା, ସେ ନିଦର ଛଳନା କରି ଆଖି ବୁଜି ପଡ଼ିରହିବ । ଟିକିଏ ଅପେକ୍ଷା କରି ଅନୁପାର ଧୈର୍ଯ୍ୟ ତୁଟିଲେ ସେ ବଳେ ମଶାରି ଟେକି ମୁହଁ ଗଳାଇବ । ରାତିଅଧରେ ସେ ଠକିଦେଇ ଖସିଯାଇଥିଲା ।

ବସନ୍ତ ଆଖି ବୁଜିଲା ।

ଅଗଣାରେ ସୁଦର୍ଶନ ପୃଷ୍ଟାଗ୍ର ରଥିଆ ଚାକରକୁ କଣ କହୁଛନ୍ତି । ବୁଢ଼ୀ ଚାକରାଣୀ ପାଟି କରୁଛି । ହଠାତ୍ ଉପରତାଳାରେ କିଏ ରେଡିଓ ଖୋଲିଲା । କଟକ ରେଡିଓର ଆଞ୍ଚଳିକ ସମ୍ବାଦ । ଏତେ ଡେରି ହେଲାଣି ? ସେ ନିତ୍ୟକର୍ମ ଶେଷ କରିନି । ତଥାପି ତାର ମର୍ଣ୍ଣ ଯଦି ଉଠିସାରିଥିବେ, ସେ ଭାବିବେ କ'ଣ ?

ଆଖି ଖୋଲି ବସନ୍ତ ଧଡ଼ପଡ଼ ହୋଇ ବିଛଣା ଉପରେ ବସିଲା । ଅନୂପା ହେବ ପରା, ଟେବୁଲର ଆରପାଖ କାନ୍ଥରେ ଥିବା ସ୍ୱିଚ ଟିପି ସେ ଆଲୁଅ ଲିଭାଇଲା । ଘରୁ ପଦାକୁ ବାହାରିଯିବାକୁ ସେ ଦ୍ୱାରବନ୍ଧ ଆଡ଼େ ମୋଡ଼ୁଛି । ସହସା ଆଲୁଅ ନିର୍ବାପନରେ ଆଖି ମିଟିମିଟି କରି, ଦୁଇ ହାତର ନେଡ଼ରେ ଆଖିପତା ଆଉଁସୁଣୁ ବସନ୍ତ କଅଁ ନେଇ କହିଲା, ତୁ ଚାଲିଯାଉଛୁ, ଅନୁ ! ଟିକିଏ ରହ, ଶୁଣ୍ ।

ଏଡୁଣ୍ଡି ପାଖରୁ ଝଟ୍ଟା ନାଗୁଣୀ ପରି ଫଣା ଟେକି ଉଦ୍ଧତ ମୁହଁ ଫେରାଇଲେ । ଟେବୁଲ ଆଡ଼କୁ ଦୃଢ଼ପଦରେ ଆଗେଇ ଆସିଲେ । ମଶାରି-ତଳୁ ପଦକୁ ବାହାରି ପଲଙ୍କ ପାଖରେ ଜାକୁଥୁ ହୋଇ ବସନ୍ତ ଠିଆ ହେଲା । ତୁଣ୍ଡରେ ତାର ଭାଷା ନାହିଁ । ଦେଖିଲା, ଆଗରେ ତାର ଉଗ୍ର ଜଣେ କୁପିତା ନାରୀ । କେଶବାସ ଉଲ୍ଟିପଡ଼ୁଛି । ଦୁଇ ଆଖିରେ ସତେ କି ନିଆଁ ଜଳୁଛି । ସେ ଘନଘନ ନିଶ୍ୱାସ ଛାଡ଼ୁଛନ୍ତି । ତା'ର ଗୋଡ଼ରୁ ମୁଣ୍ଡଯାଏ ତାଙ୍କର ଅଗ୍ନିଦୃଷ୍ଟିରେ ବାରମ୍ବାର ଚାହୁଁଛନ୍ତି ।

ଦେହର ବାସ ସଜାଡ଼ି ସେ ଅଞ୍ଚଳରେ ଆଖି ପୋଛିଲେ । ଧୀର ନରମ ସ୍ୱରରେ ସେ କହିଲେ, ବୁଝିଲି, ମୁଁ ସବୁ ବୁଝିଲି, ବକ ! ତମର ଡେରି ହେଉଛି । ଶୀଘ୍ର ଭୁବନେଶ୍ୱର ଯିବ ପରା ଯାଅ । ଶୀଘ୍ର ଚାଲିଯାଅ । ଅନୂପାର ବାହାଘର ସ୍ଥିର ହୋଇସାରିଛି । ନିମନ୍ତ୍ରଣ ଚିଠି ପାଇଲେ, ମନ ହେଲେ ଆସିବ, ନୋହିଲେ ନାହିଁ ।

ଇନ୍ଦିରା ଧୀରେ ଧୀରେ ପଦାକୁ ବାହାରିଲେ । ଦେଖିଲେ, ଅନୁପା ଟଳଟଳ ହୋଇ ଶିଡ଼ିରେ ଓହ୍ଲାଇ ଶେଷ ପାହାଚରେ ବେହୋଷ । ଚନ୍ଦ୍ରଭଦଆ ମୁହଁଟି ତାର ମଳିନ ଦିଶୁଛି । ଆଖିର ତନ୍ଦ୍ରା ଏବେଯାଏ ଛାଡ଼ିନାହିଁ । ବିଛଣାରୁ ଉଠିଆସିଲା ପରି ମନେହେଉଛି ।

ଅନନ୍ତା ?

କାହାକୁ କ'ଣ କହିବେ ? କାହାକୁ କ'ଣ ପଚାରିବେ ? ଏ ଘରର ସମ୍ମାନ ରହିବ କିପରି, ତାହାହିଁ ଅସଲ ପ୍ରଶ୍ନ । ପରଘର ହେଲେ ସବୁ ଗୋଡ଼ଖସା ଖେଳରେ ଖେଳରେ ଯିବ ।

ଖେଳ ନୁହେଁ ଆଉ କ'ଣ ? ଏତେଦିନ ପରେ ମନେପଡ଼ୁଛନ୍ତି ଲୀଳାବତୀ ଭାଉଜ । ରାଗି ନ ଥିଲେ । ଘୃଣା କରି ନ ଥିଲେ । ସ୍ନେହରେ କୋଳ କରିଥିଲେ । ଭଲମନ୍ଦ ବୁଝାଇଦେଇଥିଲେ ।

ହସିହସି କୃଷ୍ଣମୂର୍ତ୍ତିକୁ ବାହୁଆଡ଼ରେ ଛାଡ଼ି ଦେଇଥିଲେ ।

ଅଧିଆ ମୁହଁ ଅପନା ଦିଶୁଛି । ଆଖିର କଜଳ ପଚାଡ଼କୁ ମାଡ଼ିଆସିଛି । ଆଖି ମିଞ୍ଜି ମିଞ୍ଜି । କପାଳ ଉପରେ ଟୁଟି ସିନ୍ଦୂର ଟୋପାଟି ଲେପିହୋଇଛି । ବନ୍ଧା କେଶ ମୁକୁଳିଆସିଛି । ବସନ ଖସିଛି । ପ୍ରଥମ ସନ୍ତାନ ହୋଇ ତିନିବର୍ଷକାଳ ଯେଉଁ ଉନ୍ନତ ଛାତିକୁ ରେକଟି ରେକଟି ନୂଆ ଦାନ୍ତରେ କ୍ଷତବିକ୍ଷତ କରି ସେ କ୍ଷୀର ସଙ୍ଗେ ଲହୁ ଶୋଷିଥିଲା, ସେ ଛାତି ଅର୍ଦ୍ଧ ଉନ୍ମୁକ୍ତ । ସେହି ତାର ଦୟାମୟୀ ଜନନୀ । କେଜାଣି କାହିଁକି ତାଟକା ହୋଇ ଚାହିଁ- ରହିଛନ୍ତି ତାଆରି ମୁହଁକୁ । ନିଶ୍ଚଳ ମୂର୍ତ୍ତି । ମନରେ କି ଭାବନା ଖେଳି- ଯାଉଛି କେଜାଣି ! ଓଠ ଓ ଗାଲ ଥରଥର ଉଠୁଛି । ନାକପୁଡ଼ା କମ୍ପୁଛି ।

ତଳପାହାଚରେ ଅନୁପା ପାଗପେଟିକୁ ଆଉଜି କାଠ ହୋଇ ଠିଆ- ହୋଇଛି । ଛାତି ଥରଥର । ଭାବୁଛି, ସକାଳର ଭଉଣୀଙ୍କର ସ୍ୱପ୍ନଟାର କଥା ।

ଗର୍ଭଧାରିଣୀଙ୍କ ସମ୍ବନ୍ଧରେ ତ'ର ବନ୍ଧୁମାନେ ପ୍ରକାରାନ୍ତରେ ତାକୁ ଶୁଣାଇ ଶୁଣାଇ କେତେ ପ୍ରକାରର ଅସନା ସମାଲୋଚନା କରନ୍ତି । ଗଙ୍ଗାରୁ

ଗଲାଣି । କାହା ସଙ୍ଗେ ସେ କଳହ କରିନାହିଁ । ବାଆଁରେଇ ହୋଇ ଆଡ଼େଇ ଯାଇଛି । କେବେ କେବେ ଲୁଚି ଲୁଚି କାନ୍ଦିଛି ।

ସେ ଜାଣେ, ସେସବୁ ଅସତ, ଅଶ୍ଳୀଳ, ଅସାମାଜିକ, କଳ୍ପନା-ଗଢ଼ା ଆଲୋଚନା କାହାରି ଆଗରେ ପ୍ରକାଶ କରିହେବ ନାହିଁ । ଯେଉଁମାନେ ଚଟୁଳ ଭାଷାରେ ବିଷ ଉଦ୍‌ଗାର କରିଥାନ୍ତି, ସେମାନଙ୍କୁ ଶାସନ କରିହେବ ନାହିଁ । ସେମାନଙ୍କ ତୁଣ୍ଡରେ ହାତ ଦେଇହେବ ନାହିଁ ।

ସେମାନେ ବଡ଼ଲୋକର ଶତ୍ରୁ । ବୟସ ବଢ଼ିଲେ ବଡ଼ୁ, ସୁଖଶାନ୍ତିରେ, ଭୋଗଭାଗ୍ୟରେ ଚଳନ୍ତି ଲୋକ, ଆନନ୍ଦରେ ରହିଲେ ଏ ଯୁଗର ବଳାସର ସୁଯୋଗ ନେଇ ଫୁର୍ତ୍ତି କଲେ, ଯେଉଁମାନଙ୍କର ସେ ସୁଯୋଗ ନାହିଁ, ତାଙ୍କୁ ଦେଖି ଈର୍ଷାରେ ଜଳିପୋଡ଼ି ହୁଅନ୍ତି । ତାରି କ ଥାଏ ? ଭୁକୁଥାଆନ୍ତୁ କୁକୁର ଦଳ ।

ନିଜକୁ ଏହିପରି ବାରମ୍ବାର ସାନ୍ତ୍ୱନା ଦେଉଥିଲା ଅନୁପା । କୁକୁର ବୋଲି ସମାଲୋଚକ ଦଳଙ୍କୁ ଭ୍ରୂକ୍ଷେପ ନ କଲେ ବି ତାଙ୍କର ଭୁକିଲା କଥା କାନରେ ବାଜୁଥିଲା ।

ପୁଣି ତା'ର ବୋଲ ସୁରା ପାନ କରିଥିଲା । ଅସଂଯତ ମତ୍ତହତ ହେଲା ପରି ଜଣାପଡ଼ୁଥିଲା । ବିବେକ ବୁଡ଼ିଲେ, ମନରେ ଉତ୍ତେଜନା ଖେଳିଲେ, ଦାୟିତ୍ୱ ଭୁଲିଲେ ମଣିଷ କ'ଣ ନ କରିପାରେ, ଏପରି ଭାବନା ଅନୁପାର ମନକୁ ଗ୍ରାସିଥିଲା । ମନର ଛି-ଛି ପୁଣି ତାକୁ ଶାସନ କରିଥିଲା ।

ସ୍ୱପ୍ନଟା ଭୟଙ୍କର । କାହା ଆଗରେ କହିବା ଅସମ୍ଭବ । ମନେ-ପକାଇବା ଲାଜ । ସେ ଚିତ୍କାର କରିଉଠିଥିଲା । ନିରୁପା ତାକୁ ହଲାଇ ହଲାଇ ଉଠାଇ ଦେଇଥିଲା ।

କ ସ୍ୱପ୍ନ ତୁ ଦେଖିଲୁ, ଅପା ?

ନାହିଁ ତ !

ମନେପକା, ସକାଳର ସ୍ୱପ୍ନ ସତ ହୋଇଯାଏ ।

ମନେ ପଡ଼ୁନାହିଁ, ନନ୍ଦୁ !

ଆଗରେ ତାର ଜନନୀ । ନାଟକ ଶେଷରେ ଅବଶ ନାୟିକା ଷ୍ଟେଜ୍ ଭିତରୁ ବାହାର ପଦାରେ ଠିଆ ହୋଇ ଅନ୍ତିମ ଦୃଶ୍ୟଟି ମନେ ପକାଇଲା ପରି ସେ ଦେଖାଯାଉଛି । ସେହି ଦୃଶ୍ୟର ଉତ୍ତେଜନାର ଆଭାସ ଯେପରି ତଥାପି ଲାଗିରହିଛି ତାର ମୂର୍ତ୍ତିରେ ।

କଅଣ ସେ ଦୃଶ୍ୟ ? କଅଣ ସେ ଉତ୍ତେଜନା ?

କହିବାକୁ ଲାଜ ।

ସପନ ଭାସିଯାଉ । ଭାବନା ଅମାତ । ଭାବନା ପାପ । ପଶୁଠାରେ କେବଳ ସମ୍ଭବ । ସୁରାର ପ୍ରଭାବରେ ଅପ୍ରକୃତିସ୍ଥ, ଜ୍ଞାନହରା, ବିବେକବୁଡ଼ା ମଣିଷ ପଶୁଠାରୁ ହୀନ । ହେ ଠାକୁରେ, ସପନ ବରଂ ତାର କେତେକେତେ ଅଣାୟତ୍ତ ଆବିଳ ଚିନ୍ତାର ପ୍ରତିଫଳନ ହୋଇଥାଉ ।

ଆବେଗକୁ ଆୟତ୍ତ କରି ଇନ୍ଦିରା ପ୍ରଫୁଲ୍ଲତାର ଢଙ୍ଗ ଦେଖାଇ କଅଁ ନେଇ କହିଲେ, ଉଠୁ ଉଠୁ ଆଜି ସମସ୍ତଙ୍କର ଉଚ୍ଛୁର ହେଲା, ମା ! ବିକ୍ରମକୁ ଉଠାଇଦେଇ ଆସିଲି । ତମକୁ ସବୁ ଉଠାଇବାକୁ ଯାଉଥିଲି ।

ଅନୁପା ତଳକୁ ଓହ୍ଲାଇ କହିଲା, ସେ ବହେଁ ବି ଉଠି ସାରିଲେଣି ସେ । ସୁରୂପା ରେଡିଓ ଖୋଲିଛି । ତୁ ତ ଉଠିସାରିଲୁଣି, ମୁଁ ସାନନ୍ଦକୁ ଆଣିବାକୁ ଯାଉଛି । ହେଇ, ସେ ଆଖି ମଳମଳ ଆସୁଛି ।

ତଳେ ଲେଉଟିଥିବା ଅଞ୍ଚଳକୁ ଟେକି ଦେହରେ ପକାଇ ଇନ୍ଦିରା ମୁହଁ ବୁଲାଇ ଚାହିଁଲେ । ସାନନ୍ଦ ଆଖି ମଳମଳ ଆସୁଛି । କହିଲେ, ସେ ଚଗଲା କେତେବେଳୁ ଉଠି ପଲଙ୍କ ଉପରେ ଛଟା ଗାଳି ପଡ଼ିଥିଲା । ଗୋଡ଼ ବାଡ଼ଉଥିଲା ।

ବିକ୍ରମ ହାତରେ ବହିଖଣ୍ଡେ ଧରି ପଦାକୁ ଆସିଲା । ଇନ୍ଦିରାଙ୍କୁ ଓଳଗି ହେଲା । ଇନ୍ଦିରା କହିଲେ, ତମେ ଏବେ ଭାରି ଅଳସୁଆ ହେଲଣି,

ବାବୁ ! ନିତ୍ୟକର୍ମ ଶେଷ ନ କରି, ଟୋପାଏ ଚା ନ ପିଇ, ବିଛଣାରୁ ଉଠି ସଜବାଜ ହୋଇ ଚାଲିଯିବାକୁ ବସିଛ ଯେ !

ଛଦମ କହିଲା, ତୁମେ ଉଠିବା ଆଗରୁ ମୁଁ ସବୁ କାମ ସାରିଥିଲି, ମାଈଁ ! ଶୋଇ ପାରିଲି ନାହିଁ । ବସି ପଢ଼ିଥିଲି । ବତି ବନ୍ଦ କରି ସକାଳର ଆଲୁଅକୁ ଅପେକ୍ଷା କରି ପୁଣି ବିଛଣାରେ ଗଡ଼ିଲି । କେତେବେଳେ ଆଖି ଲାଗିଗଲା ଜାଣିପାରିଲି ନାହିଁ ।

ହସହସ ହୋଇ ମୁଣ୍ଡ ସାମାନ୍ୟ ହଲାଇ ଇନ୍ଦ୍ର କହିଲେ, ବୁଝିଲି ! ତମେ ଚା ଜଳଖିଆ ନ ଖାଇ ଉପାସ ପେଟରେ ଯାଇପାରିବ ନାହିଁ । ମା ଅନୁ, ମୋ ତକିଆତଳେ ଚାବିପେନ୍ଥା ଅଛି । ଆଗ ତୁ ବୈଠକଘର ଖୋଲିଦେ । ବାବୁ ସେଇଠି ବସି ପଢୁଥାଆନ୍ତୁ । ପୂଝାରୀଙ୍କୁ ଚା ଦେବାକୁ କହ ।

ଇନ୍ଦ୍ର ଛଦମର ମୁହଁକୁ ଚାହିଁ ସାମାନ୍ୟ ହସିଲେ । କହିଲେ, ଯାଅ— ।

ମୋର ଡେରି ହେବ, ମାଈଁ !

ସାନନ୍ଦ ପାଖକୁ ଆସିସାରିଥିଲା । ଅନୁପା ତାର ହାତ ଧରି ଛଦମକୁ ଚାହିଁ କହିଲା, ଡେରି ଟିକିଏ ହେଲେ ହେବ; ତା ବୋଲି କ'ଣ ବୋଉର ଆଦେଶ ତମେ ଅମାନ୍ୟ କରିବ ? ଆସ ।

ଇନ୍ଦ୍ର ବାରିଆଡ଼କୁ ଚାଲିଯାଉଥିଲେ । ସେ ମୁହଁ ଫେରାଇଲେ ନାହିଁ । ଛଦମ ବୈଠକଘର ଆଡ଼କୁ ଯାଉଣୁ ତାର ମାଈଁଙ୍କ ମୁହଁର ଢଉଟି ଧରଣ, ଭାଷାର ଢଉଟି ଲକ୍ଷଣ, ଭଙ୍ଗୀର ଢଉଟି ଚଳନ ଏବଂ ଏ ସବୁର ଉହାଡ଼ରେ ଲୁଚିରହିଥିବା ଉଦ୍ଦେଶ୍ୟକୁ କଳନା କରିବାକୁ ମନ ଘାଣ୍ଟୁଥିଲା ।

ଯୂଥିକାଙ୍କ ମନରେ ଧାରଣା ହୋଇଥିଲା ଯେ ଅନୁପାର ଆଗ୍ରହରେ ଇନ୍ଦ୍ର ହିଁ ଏତେଦିନର ପ୍ରସ୍ତାବଟାକୁ ଭାଙ୍ଗିଦେଲେ । ଆନନ୍ଦ ହାଡ଼ବନ୍ଧୁଙ୍କୁ ମଧ୍ୟ ସେହି-

ସବୁ ଜବାବ ଦେଇଥିଲେ । ବୁଦ୍ଧିମାନ ହାଡ଼ବନ୍ଧୁ କଥାଟାର ମର୍ମ ବୁଝିଗଲେ । ସେ ଓଲଟି ଆନନ୍ଦଙ୍କୁ ସାନ୍ତ୍ୱନା ଦେଇ କହିଲେ, ଈଶ୍ୱର ଇଚ୍ଛା ବିରୁଦ୍ଧରେ କିଛି କରିବା ମୋଟେ ଉଚିତ ନୁହେଁ, ସମୁଦ ! ସେଥିରେ ପ୍ରମାଦ ଅଛି । ଷାଠୋଙ୍କ ଈଶ୍ୱର । ନିଜର ଭବିଷ୍ୟତର ଭଲମନ୍ଦ ସେ ବୁଝନ୍ତି ।

ଦିନୁଦିନ ଦୁଇଟି କୁଟୁମ୍ବ ମଧ୍ୟରେ ଘନିଷ୍ଠତାର ବ୍ୟବଧାନ ବଢ଼ିବାକୁ ଲାଗିଲା । ତା'ର ପ୍ରଭାବ କ୍ରମଶଃ ବ୍ୟବସାୟ ଉପରେ ବ୍ୟାପିଲା । ଆନନ୍ଦଚନ୍ଦ୍ରଙ୍କୁ ପଦେ ପଦେ ସାବଧାନ ହେବାକୁ ପଡ଼ିଲା । ଆଗରୁ କେତେ ବ୍ୟବସାୟ ଅଲଗା ହୋଇସାରିଥିଲା । ବାକି ଯାହା ଥିଲା, ସେତକ ଧୀରେ ଧୀରେ ଅଲଗା କରିନେଲେ ଭଲ । ସେ ଜାଣନ୍ତି, ହାଡ଼ବନ୍ଧୁଙ୍କ କୂଟବୁଦ୍ଧି ଆଗରେ ସେ ନଗଣ୍ୟ । ଗତ ନିର୍ବାଚନରେ ମାଇଲି ଶିବଚରଣ କଳେବଳେ କୌଶଳେ ଏମ୍. ଏଲ୍. ଏ. ନିର୍ବାଚିତ ହେଲା ପରେ ହାଡ଼ବନ୍ଧୁଙ୍କର ପ୍ରତିପତ୍ତି ବଢ଼ିଯାଇଛି ।

ଶିବଚରଣ ସ୍ୱାଧୀନ ପ୍ରାର୍ଥୀରୂପେ ଭୋଟଯୁଦ୍ଧରେ ଲଢ଼ିଥିଲେ । ସେଥି ହାଡ଼ବନ୍ଧୁଙ୍କ ପାଖରେ ତାଙ୍କର ବହୁ ସମ୍ପତ୍ତି ବନ୍ଧକ ଦେଇ ସେ ଟଙ୍କା ନେଇ ଖରଚ କରିଥିଲେ । ହାଡ଼ବନ୍ଧୁ ଯଥାସାଧ୍ୟ ମଦତ୍ ଦେଇଥିଲେ । ତାଙ୍କର ଦୂରଦୃଷ୍ଟି ପ୍ରଖର, ଏଥିରେ ସନ୍ଦେହ ନାହିଁ ।

ଶିବଚରଣଙ୍କ ସଙ୍ଗରେ ଏବେ ତାଙ୍କର କ୍ଷୀର-ନୀର ସମ୍ପର୍କ ହେଲାଣି । କେବକା ବୈରିତା ଦୁହେଁ ପଛକୁ ଫୋପାଡ଼ି ବ୍ୟବସାୟରେ କାନ୍ଧକୁ କାନ୍ଧ ଯୋଡ଼ି ଚାଲିଲେଣି । ବଡ଼ବଡ଼ଆଙ୍କୁ ହାତ କରି କାମ ହାସଲ କରିବାରେ ଶିବଚରଣ ଧୁରନ୍ଧର ହେଲେଣି । ଇନ୍ଦ୍ର ଓ ଅନୁପାଙ୍କର ସାହାଯ୍ୟ ଲୋଡ଼ା ପଡ଼ୁନାହିଁ । ସେମାନଙ୍କ ପରି ଅନେକଙ୍କ ସଙ୍ଗେ ଶିବଚରଣଙ୍କର ଚିହ୍ନା । ସେ ହଟିଲେ ତାଙ୍କୁ ଅଣ୍ଡେଇଦେବାକୁ ତାଙ୍କର ଘରଣୀ ନାୟିକେଶୀ ଜେମାମଣି ତ ଅଛନ୍ତି !

ଅନୁପାକୁ ବୋହୂ କରିବାକୁ କମଳବାବୁ ଓ ତାଙ୍କର ସ୍ତ୍ରୀ ରଞ୍ଜିତା ମାଗିଥିଲେ। ନିଜେ ସଞ୍ଜୟର ଆଗ୍ରହ ଥିଲା। କିନ୍ତୁ କଅଣ ହେଲା କେଜାଣି, ସେମାନେ ଏବେ ଟାଳଟୁଳ କରିବାକୁ ଲାଗିଲେଣି। ରଞ୍ଜିତା ଖାଲି କହୁଛନ୍ତି, ଠାକୁର କଲେ ନିଶ୍ଚୟ ହେବ। କିଏ ମନା କରିବ, ଭଉଣୀ ? ଅନୁପାର ରୂପଗୁଣରେ ବାଛିବାର କିଛି ନାହିଁ। ଯେମିତି ଧୀର ସ୍ଥିର ନରମ ପିଲା, ତାକୁ ବୋହୂ କରିବାକୁ କିଏ ମନ ନ କରିବ ?

କମଳବାବୁଙ୍କ ଘରେ ଆଲୋଚନା। ସଙ୍ଗରେ ଏକା ଅନୁପା ଯାଇଥାଏ। ଡ୍ରଇଂରୁମ୍‌ରେ ସେ ସଞ୍ଜୟ ଆଗରେ ବସି ଗପ କରୁଥାଏ। ବାରଣ୍ଡାର ଦୁଇଟି ଚଉକିରେ ମୁହାଁମୁହିଁ ବସି ଗପ କରୁଥିଲେ ରଞ୍ଜିତା ଓ ଉଦ୍ଧବ।

ସଞ୍ଜ ଅସ୍ତମିଥାଏ। ଘର ଆଗର ସୁରକ୍ଷିତ ଫୁଲବଗିଚାରେ ପାତଳ ଜ୍ୟୋତ୍ସ୍ନାର ଶୀତଳ ପରଶ। ଧୀର ପବନର ଝିରିଝିରିକା ପ୍ରବାହ। ବାରଣ୍ଡା ଉପରେ ବିଜୁଳି ଆଲୁଅ ଜଳୁଥାଏ।

ଉଦ୍ଧବ କହିଲେ, ଝିଅ ଜିଦ୍‌ କରିଥିଲା ଯେ ବି. ଏ. ପାସ୍‌ ନ କଲେ କେହି ତା ବାହାଘରର ପ୍ରଶ୍ନ ଉଠାଇବେ ନାହିଁ। ସେ ବି. ଏ. ପାସ୍ କଲା। ଏମ୍‌. ଏ. ପଢ଼ିବାକୁ ଜିଦ୍ କରିଥିଲା। ମୁଁ ତାକୁ ବୁଝାଇଦେଲି ଯେ, ବଡ଼-ଘରର ବୋହୂ ହୋଇ, ବଡ଼ ହାକିମର ହାତ ଧରି, ବୋହୂ ଚାକିରି କରେ ନାହିଁ। ଅଧିକ ପାଠ ଲୋଡ଼ା ନାହିଁ। ସେ ବୁଝିଗଲା। ତମ ଘରର ବୋହୂ ହୋଇ ଆସିଲେ, ତମର ମନହେଲେ ତାକୁ ପଢ଼ାଇବ, ନୋହିଲେ ନାହିଁ।

ସତ ଯେ ଭଉଣୀ, ସଞ୍ଜୟ ଏବେ ବାହା ହେବାକୁ ମନା କରୁଛି। ସେମିତିକା ମନୁଆ ପିଲା ସେ। ଆଗ ସେଇ ଟୋକାଟା ଅନ୍ୟଙ୍କ ସଙ୍ଗରେ ଘନିଷ୍ଠତା କରାଇଦିଏ। ପ୍ରସ୍ତାବ ପକାଇବାକୁ ବାଧା ଦିଏ ନାହିଁ। କେଜାଣି କଅଣ ଶୁଣେ, ଦିନେ ଆସି ମନା କରିଦିଏ। ଅଞ୍ଜନାକୁ ପରଘରକୁ ପଠାଇଲା ଦିନରୁ ବୋହୂଟିଏ କରିବାକୁ ମୁଁ ବ୍ୟାକୁଳ ହେଲଣି। ଦେଖୁଛ ତ

ଏ ଘର କେମିତି ଖାଁ ଖାଁ ଗୋଡ଼ାଉଛି । ମୁଁ ନାଚାର, ଭଉଣୀ ! ବାହା ହେବାକୁ ସେ ଏବେ ମନା କରିଦେଲେ । କହିଲେ, ଯାଉ ଆଉ ଦୁଇବର୍ଷ ।

ଇନ୍ଦିରା ଦୀର୍ଘଶ୍ୱାସ ଛାଡ଼ିଲେ ।

ରଞ୍ଜିତା କହିଲେ, ସେଇଆ ହେଉ । ଅନୁପା ପାଇଁ ମୁଁ ଭଲ ପାତ୍ରଟିଏ ଖୋଜିଦେଉଛି । ସେ କ'ଣ ମୋର ଝିଅ ନୁହେଁ କି? ବରଂ ନିରୁପାଟିକୁ ମୋ ପାଇଁ ରଖିଥାଅ । ସେ ମାଟ୍ରିକ ପାସ୍ କଲା, ଆଉ ଦି'ବର୍ଷ ପଢ଼ୁ । ପିଲାଟା ତ ! ଦେଖ, କେମିତି ହସଖୁସିରେ ପିଲା ଦିଓଟି ଗଳ୍ପ କରୁଛନ୍ତି । ଏକକା ପିଲାଏ, ଏମିତି ପରସ୍ପର ସଙ୍ଗେ ମିଶିବା ଭଲ । ପରସ୍ପରକୁ ଭଲ କରି ଚିହ୍ନିବା ଲୋଡ଼ା । ସେମାନଙ୍କର ମନ ମିଳୁ । ଯଦି ଉଭୟେ ରାଜି ହୁଅନ୍ତି, ବାହାଘର ହେଲେ ସେମାନଙ୍କର ଜୀବନ ସୁଖମୟ ହେବ । କଣ୍ଢେଇ ବାହାଘର କି ବାହାଘର ମ !

ତମ ମନ ଭିତରର କଥା କହୁଛ, ନା ତମ ସ୍ୱାମୀଙ୍କଠାରୁ ବିଦେଶର କଥା ଶୁଣି ଶୁଆ ପରି ଆବୃତ୍ତି କରୁଛ ? ତମ ଝିଅକୁ ତମେ ଏତେ ସ୍ୱାଧୀନତା ଦେଇଥିଲ ?

ରଞ୍ଜିତା ହସିବାକୁ ଲାଗିଲେ । ହସ ଥମିବାରୁ କହିଲେ, ମୁଁ ପୁରୁଣା-କାଳିଆ ମଣିଷଟା ! ଖାଲି ଏତିକି ଯେ ମୋ ସ୍ୱାମୀ ବହୁବର୍ଷ ବିଦେଶରେ କଟାଇ ଫେରିଛନ୍ତି । ମୋ ଭାଇ ଓ ଭାଉଜ ବି । ତାଙ୍କଠାରୁ ସବୁ ଶୁଣିଛି । ସେମାନେ କେହି ମଣିଷ ହୋଇପାରିଲେ ନାହିଁ । ଯେମିତି ଅଶିକ୍ଷିତ ଥିଲେ, ସେମିତି ରହିଗଲେ । ମୋ ପୁଅଟା ଖାଲି ସଭ୍ୟ ସମାଜରେ ମିଶି ସଭ୍ୟ ହେଉଛି । ତା' ଢଙ୍ଗ ଆମକୁ ଭଲ ଲାଗିଲେ କେତେ, ନ ଲାଗିଲେ କେତେ ? ଯେଉଁମାନେ ତାକୁ ଜୋଇଁ କରିବାକୁ ହମହମ, ସେମାନଙ୍କୁ ତ ଭଲ ଲାଗୁଛି, ସେମାନେ ତାକୁ ପ୍ରଶ୍ରୟ ଦେଉଛନ୍ତି ।

ଇନ୍ଦିରାଙ୍କର ବୁଝିବାକୁ କଷ୍ଟ ହେଲା ନାହିଁ ଯେ, ରଞ୍ଜିତା ତାଙ୍କୁ ଛଳାଇ କହୁଥିଲେ । ଲାଜରେ ତାଙ୍କର ମୁହଁ ଜଳିଯାଉଥିଲା । କ୍ରୋଧରେ ମନେ

ମନେ ସେ ଉକ୍ତିଗୁଡ଼ିକ ଦୋହରାଉଥିଲେ । କିନ୍ତୁ ସେ କଅଣ କହିବାକୁ ମୁହଁ ଖୋଲିବେ ?

ଅତୀତର କଥା ସେ ଭୁଲିନାହାନ୍ତି । ତାଙ୍କର ସ୍ୱାମୀଙ୍କୁ କାମ ଖଣ୍ଡିଏ ଦେବେ ବୋଲି ଦିନେ ଏହି ପୁଣ୍ୟମୟୀ ହାକିମାଣୀଙ୍କ ପାଖରେ ପୂଜାର ଡାଲି ଧରି, ଅନ୍ୟ କେତେ ନିଷ୍ଠାପର ଭକ୍ତଙ୍କ ପରି ଗୋଡ଼ ଭାଙ୍ଗି ଠିଆ ହୋଇଥିଲେ । ଉତ୍କଣ୍ଠାରେ ସେହି ଗୋଡ଼ ଦିଓଟି ତାଙ୍କର ଥରୁଥିଲା । ଏହି ଠାକୁରାଣୀଙ୍କର ଦୟାର କଣିକା ଲାଭ କରିବାପାଇଁ କେତେ ଅନୁସରଣ, ମିଷ୍ଟବଚନ, ସେବା ଓ ଉପଢୌକନ !

ବେଳ ବଦଳିଛି । ସେହି ସର୍ବୋଚ୍ଚ ହାକିମ କମଳକୃଷ୍ଣ କେଉଁ ନିର୍ମଳ-ଶାସନମାନଙ୍କୁ ପୂଜା କରିପାରିଲେ ନାହିଁ ! ଜେଲ୍ ନ ଯାଇ ଚାକିରିରୁ ଖସିଲେ । ବେପାରରେ ପଶିଲେ । ଦେବାନେବାର କୌଶଳ ଆୟତ୍ତ କଲେଣି ବୋଲି ଅନୁପାର ବାପା କହୁଥିଲେ । ବେନାମୀ ଯେତେ ସମ୍ପତ୍ତି ଆଗରୁ କରିଥିଲେ, ନଗଦନାରାୟଣ ଯେଉଁ ପ୍ରିୟ ବନ୍ଧୁମାନଙ୍କ ପାଖରେ ବିଶ୍ୱାସରେ ରଖିଥିଲେ, ସବୁ କୁଆଡ଼େ ବୁଡ଼ିଲା । ସେଥିପାଇଁ ସମ୍ବଲପୁରରେ ନ ରହି କଟକରେ ନୂଆ ଘର କରି ରହିଲେ । ଅବିଶ୍ୱାସୀ ଆତ୍ମୀୟଙ୍କ ପାଖରୁ ଘୃଣାରେ ଦୂରେଇଆସିଲେ । ଦିନେ ସେ କହୁଥିଲେ, ଧର୍ମ ବୁଝିବ ନାହିଁ, ଭଉଣୀ ! ଦେଖିବ ରହ, ଯେଉଁମାନେ ବିଶ୍ୱାସରେ ବିଷ ଦେଲେ, ସେମାନଙ୍କର ଅବସ୍ଥା କାରଣ୍ଡା ଦି'କଡ଼ା ହେବ ।

ଅନୁପାର ବାପା କମଳବାବୁଙ୍କୁ ବେପାରର ମନ୍ତ୍ର ଶିଖାଇଥିଲେ । ହାଡ଼ବନ୍ଧୁ ବି । ସେମାନଙ୍କର ଗୁପ୍ତ କେତେ ? ଯେଉଁଠି ଅଖଣ୍ଡ ହୁଏ, ଅକଳଆ ପଡ଼େ, ଡାକ ଇନ୍ଦିରଙ୍କୁ । ଅନୁପାଠି ସଙ୍ଗରେ ଥାଉ !

ରଞ୍ଜିତାଙ୍କୁ ସବୁ ଜଣା । ସେ ଆଜି ଦେଖେଇ ଦେଖେଇ ଉପହାସ କରୁଛନ୍ତି । ତାଙ୍କୁ ବୋଧହୁଏ ଜଣାନାହିଁ ଯେ କମଳବାବୁଙ୍କର ସବୁ ସମ୍ପତ୍ତିକୁ କିଣିନେବାକୁ ଧନ ଅନୁପା ବାପାଙ୍କର ଏବେ ବି ଅଛି !

ଅଜ୍ଞାତ ହଜଯାଇଛି । ଅଜ୍ଞାତକୁ ମନକୁ ଆଣି ନିଜର ଆତ୍ମମର୍ଯ୍ୟାଦାକୁ ରଞ୍ଜିତାଙ୍କର ଗୋଡ଼ତଳେ ଗୁଡ଼ିଦେଇଗଲେ ସେ ଜୀବନରେ ଶାନ୍ତି ପାଇବେ ନାହିଁ । କହିବା ଲୋକର ବଡ଼ପଣ, ଝାଣପଣ ରହିଯିବ । ସେ ନିଶ୍ଚୟ ଜବାବ ଦେବେ । ବନ୍ଧୁପଣ ଛୁଟିଲେ ଛୁଟୁ ।

କିନ୍ତୁ, ଇନ୍ଦିରଙ୍କର ମୁହଁ ଖୋଲିଲା ନାହିଁ । ସେ ଉଠି ଠିଆ ହେଲେ । ବାଣ୍ଡଘରକୁ ଚାହିଁଲେ । ନିରୁପା କାହିଁକି ତା'ର ଚଉକି ଉପରେ ହସିହସି ଲେଟିଯାଉଛି । ତାର ପଛପାଖଟି ଦେଖାଯାଉଛି । ଟେବୁଲର ସେପାଖ ଚଉକି ଉପରେ ବସି ହସହସ ମୁହଁରେ ତାକୁ ଏକଦୃଷ୍ଟିରେ ସଞ୍ଜୟ ଚାହିଁରହିଛି ।

ଇନ୍ଦର ଦ୍ୱାରବନ୍ଧ ପାଖକୁ ଯାଇ ଡାକିଲେ, ନିରୁ !

ନିରୁପା ହସ ବନ୍ଦ କରି ଚଉକି ଘୁଞ୍ଚାଇ ଉଠିଲା । ତା' ପଛେ ପଛେ ସଞ୍ଜୟ ମଧ୍ୟ ପଦାକୁ ବାହାରିଲା ।

ରଞ୍ଜିତା ଇନ୍ଦରଙ୍କର ହାତଟିଏ ଧରି ଘରଭିତରକୁ ଟାଣିନେଲେ । କହିଲେ, ଦେଖିଲ ଭଉଣୀ, ବୁଝିଲ ତ, ମୋ କଥା ମିଛ କି ସତ ? ସଞ୍ଜୟ ନିରୁପାକୁ ଭଲପାଏ । ଅଧିକ ପସନ୍ଦ କରେ । ନିରୁପା ତାକୁ ସ୍ନେହ କରେ । ମୁଁ ଜାଣେ ସବୁ ! ଆମେ ବାପ ମା କଣ କରିପାରିବା ? ଏ ଯୁଗ ଏମିତି ହେଲଣି । ପୁଅଝିଅଙ୍କୁ ଆକଟି ହେବନାହିଁ । ଭଲରେ ଆକଟିଲେ ସେମାନେ ମାନିବେ ନାହିଁ । ଟାଣ କରି ଆକଟିଲେ ସେମାନେ କଅଣ ନାହିଁ କଅଣ କରିବେ । ମୋର ତ ସେଇ ଗୋଟିଏ ।

ଇନ୍ଦର ପଚାରିଲେ, ମୋର ଧାରଣା, ସଞ୍ଜୟ ଅନୁପାକୁ ଭଲପାଏ । ମୋର ଧାରଣା ଭୁଲ ହୋଇଥିବ । ତେବେ, ଆଜି କାହିଁକି ସେ ବସୁର ? ପଚାରିବାର କଥା, ମୁଁ ଝିଅର ମା, ପଚାରିଦେଲି । ସେଥିକି ମୋର ଲାଜ ନାହିଁ । ଜୀବନ ସଞ୍ଜବା ଦେବାର । ଯିଏ ଯାହାକୁ ଭଲ ନ ପାଏ, ତାକୁ ନେଇ ନାକଟେକାର ମୁଣ୍ଡରେ ଲଦିଦେଲେ ପରିଣାମ ଭଲ ହୁଏ ନାହିଁ,

ଭଉଣୀ ! ଆମ ଅମଳ ନାହିଁ ଯେ, ଯିଏ ଆସିଲା ସେଇ ହେଲା ଲକ୍ଷ୍ମୀ । ଭଲ ପାଇବାକୁ ହିଁ ହେବ । ଅନ୍ୟ ଗତି ନାହିଁ । ସଞ୍ଜୟର ଯଦି ଆଗ୍ରହ ନାହିଁ, ଆମେ କାହିଁକି ବଳାଇବା ?

ବାଧା ଦେଇ ରଞ୍ଜିତା କହିଲେ, ସେ କଥା ସେ କାହାକୁ କହିନାହିଁ । ମୁଁ ଅନ୍ୟମାନଙ୍କ ମୁହଁରୁ ଶୁଣିଛି । ସେମାନେ ସଞ୍ଜୟଠାରୁ ଯାହା ଶୁଣିଥିଲେ, କହୁଥିଲେ, ଅନୁପା ଅନ୍ୟ କାହାକୁ ବାହା ହେବାକୁ ସ୍ଥିର କରିଛି । ସେ ଜଣକ କୁଆଡ଼େ ତା'ର ସେହି ମାଷ୍ଟର ଟୋକା । ତମକୁ ସେ ମାଉଁ ବୋଲି ଡାକେ ।

ଇନ୍ଦିରାଙ୍କ ମୁଣ୍ଡରେ ସତେ କି ବଜ୍ରପାତ ହେଲା । ଉତ୍ତେଜନାକୁ ଦମନ କରି ସେ ଟିକିଏ ଉଚ୍ଚ ସ୍ୱରରେ ଚିତ୍କାର କରିଉଠିଲେ, କିଏ, ମୋର ଭଣଜା ବିକ୍ରମକେଶରୀ !

ହଁ, ସେହି ନାମଟା ଶୁଣିଥିଲି । ଅନୁପା ସଙ୍ଗରେ ତାକୁ ସେମାନେ ବହୁ ସ୍ଥାନରେ ଦେଖିଛନ୍ତି—ଭୁବନେଶ୍ୱର, କେନ୍ଦୁବିଲ୍ୱ, କୋଣାର୍କ, ପୁଷ-ସବୁଠାରେ । ସିନେମା ଥିଏଟରରେ ତ ଜାଣି ।

ତମେ ଜାଣ କି ଭଉଣୀ, ବିକ୍ରମ ଅନୁପାର ନିଜ ପିଉସୀର ପୁଅ ଭାଇ ? ପିଲାଟିଦିନରୁ ସେ ମୋ'ର ପୁଅଠାରୁ ଅଧିକ ହୋଇ ପାଖରେ ଚଳିଛି । କୋଳରେ ଶୋଇଛି । ଲଙ୍ଗଳା ପିଲା ଅନୁପା, ନିରୁପାକୁ ସେହି ବିକ୍ରମ କୋଳକାଖ କରି, ସେମାନଙ୍କର ଯତ୍ନ ନେଇ ବଢ଼ାଇଛି । ମା ପେଟରୁ ଜନମିଲା ଭାଇଠାରୁ ସେ ଅଧିକ । ତା' ସଙ୍ଗରେ ବୁଲିବାକୁ, ପାଞ୍ଚ ଜାଗା ଦେଖିବାକୁ ଅନୁପା ଯିବ ନାହିଁ ତ ଯିବ ଆଉ କାହା ସଙ୍ଗରେ ? ତମ ଝିଅ ଅଞ୍ଜନାଟି ତା' ଭାଇ ସଞ୍ଜୟ ସଙ୍ଗରେ ବୁଲାଚଲା କରିବାକୁ ଗଲେ, ସେମାନେ ଭାଇ ଭଉଣୀ, ଏହା ନ ଜାଣିଥିବା ଲୋକେ ଯଦି ପାଣିରେ ସର ପକାଇ ତାଙ୍କ ନାମରେ ଦୁର୍ନାମ ରଟାନ୍ତି, ସେଥିକି କାହାର ଦୋଷ ?

ଚାପୁଡ଼ା ଖାଇ ସ୍ତବ୍ଧ ହେଲାପରି ରଞ୍ଜିତା ମୂକ ପାଲଟିଲେ ।

ଆଖିରୁ ଗଡ଼ିପଡ଼ୁଥିବା ଲୁହ ଦ' ଧାର ଅଞ୍ଚଳରେ ପୋଛି ଇନ୍ଦିରା ପଦାକୁ ବାହାରିଲେ। ତାଙ୍କର ଦୃଷ୍ଟିରେ ପଡ଼ିଲା, ଦ୍ୱାର ବାହାରେ ସଞ୍ଜୟ ଓ ନିରୁପା ଅଟକା ହୋଇ ଠିଆ ହୋଇଛନ୍ତି। ସେ ବୁଝିପାରିଲେ ଯେ, ସେ ଦୁହେଁ ଘର ଭିତରର ଆଲୋଚନା ଶୁଣିଛନ୍ତି।

ସେ ନିରୁପାର ହାତ ଟାଣି ରୁକ୍ଷ କଣ୍ଠରେ କହିଲେ, ଆ ଯିବା।

ପୋର୍ଟିକୋ ପାଖକୁ ଆଗେଇଗଲେ। ନିରୁପା କହିଲା, ଆମର ଗାଡ଼ି ଫେରିନାହିଁ। ବାପାଙ୍କ ଅଫିସକୁ ଫୋନ କଲେ ସେ ଏଠାକୁ ପଠାଇ-ଦିଅନ୍ତେ, ବୋଉ!

ଲୋଡ଼ା ନାହିଁ, ମା! ରାସ୍ତା ଉପରେ ରିକ୍ସା ମିଳିବ।

ରଞ୍ଜିତା ଦ' ଖେପାରେ ଘରଭିତରୁ ପଦାକୁ ଆସିଲେ। ସେ ନିଜକୁ ଦୋଷୀ ମଣୁଥିଲେ। ଇନ୍ଦିରାଙ୍କ ପାଖକୁ ଧାଇଁଆସି କହିଲେ, ଟିକିଏ ରହ ଭଉଣୀ! ଆମର ଗାଡ଼ିରେ ସଞ୍ଜୟ ଛାଡ଼ିଦେଇ ଆସିବ।

ସଞ୍ଜୟ କହିଲା, ଆମର ଗାଡ଼ି ଗ୍ୟାରେଜରେ ନାହିଁ, ବୋଉ! ବାପା ନେଇଯାଇଛନ୍ତି।

ରାମକୁମାରବାବୁଙ୍କ ସଙ୍ଗରେ ଗଲେ ପରା!

ଗଲେ ଏକ ସଙ୍ଗରେ ଯେ, ନିଜ ନିଜ ଗାଡ଼ିରେ ଗଲେ। ଏମ.ଏଲ.ଏ. ଶିବଚରଣବାବୁଙ୍କୁ ନେଇ ବାପା ଭୁବନେଶ୍ୱର ଯାଇଥିବେ। ରହ, ମୁଁ ମଉସାଙ୍କୁ ଫୋନ୍ କରୁଛି। ମାଉସୀ ତ ଚାଲିଯାଉଛନ୍ତି!

ଇନ୍ଦିରା ଓ ନିରୁପା ଗେଟ୍ ପାଖରେ ହୋଇସାରିଥିଲେ। ସେମାନେ ଗେଟ୍ ଖୋଲି ରାସ୍ତା ବାହାରକୁ ଚାଲିଗଲେ।

ଟିକିଏ ନୀରବତା ପରେ ସଞ୍ଜୟ କହିଲା, ମାଉସୀଙ୍କ ମନରେ ଦୁଃଖ ଦେଲା ପରି ତାଙ୍କୁ କିଛି କହି ନ ଥିଲେ ଭଲ ହୋଇଥାନ୍ତା। ଅନୁପା ବିକ୍ରମବାବୁଙ୍କୁ ଭଲ ପାଏ ଓ ସେ ତାଙ୍କୁ ବାହା ହେବ, ଏ କଥା ମୋର କେଉଁ ବନ୍ଧୁ ତୋ ଆଗରେ କହିଥିଲା, ବୋଉ ?

କେହି ନାହିଁ । ଅଞ୍ଜନା ଆଗରେ କେବେ ତୁ କହିଥିଲୁ ଯଦି ଅଞ୍ଜନା ମୋତେ କହିଥିଲା । ଅନୁପାକୁ ତୁ ପସନ୍ଦ କରୁନାହୁଁ ବୋଲି ମୁଁ ଜାଣିଲି । ମୁଁ ଜାଣେ, ତାଙ୍କ ଘରକୁ ତୁ ବହୁଦିନ ହେଲା ଯାଉନାହୁଁ । ମୁଁ ବି ଯାଉନାହିଁ । ଇନ୍ଦ୍ରସ ବାରମ୍ବାର ଆସି ମୋତେ ବିରକ୍ତ କରୁଛନ୍ତି । ମୋର ପକ୍‌କା ଜବାବ ମାଗୁଛନ୍ତି । ତୋ'ର ବାପା ଆନନ୍ଦବାବୁଙ୍କୁ ହିଁ କହି ଦାୟିତ୍ୱଟା ମୋ ଉପରକୁ ଠେଲିଦେଇଥିଲେ ।

ତୁ ମୋତେ ପଚାରିଲୁ ନାହିଁ ? ଅନୁପାକୁ ତୁ ବୋହୁ କର ଅବା ନ କର ସେ ତୋର ଇଚ୍ଛା । ମୋ ଉପରକୁ ତୁ ଦୋଷ ଠେଲିଦେଇ ଭଲ କରିନାହୁଁ । ଅଞ୍ଜନା ତା'ର ଗୋଲାପର ରୂପଗୁଣ ମୋ ଆଗରେ ସବୁ-ବେଳେ ବାଖ୍ୟାନକରିଥିଲା । କହିଲା, ସେଣ୍ଟଅଂକୁ ତୁ ବାହା ହ । ବିକ୍ରମବାବୁଙ୍କୁ ସେ ଓ ବିକାଶ ସ୍ନେହ କରନ୍ତି । ଅଞ୍ଜନା ତାଙ୍କୁ ପ୍ରଶଂସା କରେ । ତାଙ୍କୁ ଚିଢ଼େଇବାକୁ, ତା ମୁହଁକୁ ବନ୍ଦ କରିବାକୁ ମୁଁ ଏଣୁତେଣୁ ଗପିଦେଇଥିଲି ।

ତୁ ଭଲ କରିନୁ, ବାପ !

ମୁଁ କ'ଣ ଜାଣିଥିଲି ସେ ପ୍ରସ୍ତାବ କରିବ ? ତୁ କହିଲୁ ବୋଉ, ଅନୁପାର ମନଭିତରେ ପଶି ମୁଁ ତା'ର ମନର କଥା କିପରି ବା ଜାଣନ୍ତି ଯେ ସେ ବିକ୍ରମବାବୁଙ୍କୁ ବାହା ହେବ ? ସେ କ'ଣ କେବେ କାହା ଆଗରେ ତା'ର ମନର କଥା ଖୋଲିପାରନ୍ତା ? ବିକ୍ରମବାବୁ ଗରିବ ଘରର ପିଲା । କିନ୍ତୁ ବୋଉ, ସେ ମନେକରନ୍ତି ଯେ ସେ କେଶରୀ-ରାଜବଂଶର ସନ୍ତାନ । ତାଙ୍କର ମନ ଦରିଦ୍ର ନୁହେ । ସେ ମୋର ସହପାଠୀ । ସେ ମେଧାବୀ, ଭଦ୍ର ଓ ନିର୍ଭୀକ । ସେ ଚରିତ୍ରବାନ୍ । ଅଞ୍ଜନା ଏହା ଜାଣେ । ଉପର ମହଲରେ ତାଙ୍କର କେହି ମୁରବି ଥିଲେ, ମୁଁ ନ ହୋଇ ସେ ଡେପୁଟି ହୋଇଥାନ୍ତେ । ହେଲେ ନାହିଁ । ସେଥିକି ସେ ଚିନ୍ତା କଲେ ନାହିଁ । ଦୁଃଖ ସହିଲେ । ତେବେ, ଏଥର ସେ ଜଷ୍ଟିସ୍ ହେଉଛନ୍ତି ।

ସତେ ?

ପରୀକ୍ଷାରେ ସେ ପ୍ରଥମ ହୋଇଛନ୍ତି । ଗରିବ ଭଣଜା ବୋଲି ମାଉସୀ ଓ ଆନନ୍ଦବାବୁ ତାଙ୍କୁ ଭଣଜାର ସମ୍ମାନ ନ ଦେଇ ଚାକର ପରି ବ୍ୟବହାର କରୁଥିଲେ । ଏହା ମୁଁ ଜାଣେ । ଦେଖିଛି, ଅନୁଭବ କରିଛି । କିନ୍ତୁ ସେ ଛଳ କରୁ ନ ଥିଲେ । ଆଜି ନିରୁପା କହୁଥିଲା, ସେ ଆଉ କଟକ ଆସୁ-ନାହାନ୍ତି । ଚିଠିଖଣ୍ଡେ ବି ଦିଅନ୍ତି ନାହିଁ । ଅନୁପା ଓ ତାର ପାସ୍ ଖବର ସେ ତାଙ୍କୁ ଜଣାଇଦେଇଥିଲା । ତାର ଉତ୍ତର ସେ ଦେଲେ ନାହିଁ । ଏଇଥିରୁ ବୁଝିବୁ ସେ କିପରି ଲୋକ ।

ରଞ୍ଜିତା ନିଜର ଭୁଲ ବୁଝିପାରିଲେ । ମନେମନେ ସେ ଅନୁତପ୍ତ ହେଲେ । ପୁଅ ପାଖରେ କୈଫିୟତ ଦେଲାପରି ସେ କହିଲେ, ହାଡ଼ବନ୍ଧୁବାବୁ ତାଙ୍କର ଜ୍ୟେଷ୍ଠା ଓ ହାତକେମ୍ପା ପୁଅ ବାଉରିବନ୍ଧୁକୁ ବାଙ୍କୀରେ ବାହାଘରେ ବାହା କରାଇ ଦିବ୍ୟସୁନ୍ଦର ବୋହୂ ଘରକୁ ଆଣିଲେ । ତାଙ୍କ ସ୍ତ୍ରୀ ଏବେ ଇନ୍ଦିରା ଓ ତାଙ୍କ ଝିଅମାନଙ୍କର କେତେ କେତେ ଦୁର୍ଗୁଣ ସଭିଙ୍କ ଆଗରେ ଗାଇବୁଲୁଛନ୍ତି । ସେଗୁଡ଼ା ଶୁଣିହେବ ନାହିଁ । ଇନ୍ଦିରାଙ୍କ କାନରେ ନିଶ୍ଚୟ ବାଜୁଥିବ । ଯେତେ ଶୀଘ୍ର ପାରନ୍ତି, ଅନୁପାର ବାହାଘର କରିବାକୁ ସେ ବ୍ୟାକୁଳ ହେଲେଣି । ମୋତେ ବାରମ୍ବାର ବିରକ୍ତ କଲେ । ମୋର ତ ମନା କରିବାର କଥା; ଏଣୁତେଣୁ କହି ମନା କରିଦେଲି ।

ସିଧାସଳଖ ମନା କରିଥିଲେ ଭଲ ହୋଇଥାନ୍ତା, ବୋଉ ! ଯାହା ହେବାର ହୋଇସାରିଛି । ଅନୁପା ଯଦି କୌଣସି କାରଣରୁ ତୋ ମନକୁ ନ ଆସୁଛି, ତୁ ମନା କରି ଭଲ କରିଛୁ । ସେଥିପାଇଁ ପଶ୍ଚାତ୍ତାପ କରି ଦୁଃଖ କରିବା ଉଚିତ ନୁହେଁ । ମୋର ଗୋଟିଏ ଶ୍ରେଷ୍ଠ ଅନୁରୋଧ ରଖିବୁ, ବୋଉ ?

କ'ଣ ରେ ବାପ ?

ତୋର ଯେଉଁଠି ଆଗ୍ରହ ହେଉଛି ତୁ ସେଇଠି ସମ୍ବନ୍ଧ କର । ଯିଏ ତୋ ମନକୁ ପାଉଛି ତାକୁ ତୁ ବୋହୂ କର । ମୋର ମତ ଲୋଡ଼ିବୁ ନାହିଁ ।

ସଞ୍ଜୟର ଆଖିର ଅନ୍ତରାଳରେ ମନର ପରଦାରେ ଉଭା ହୋଇଥିଲା ପୁଷ୍ପା । ସତେ କି ସେ ମନଭିତରେ କହୁଛି, ତମଲାଗି ସବୁ ସହି ମୁଁ ଏ ଦେଶକୁ ଚାଲିଆସିଛି । ତମକୁ ମୁଁ ଅପେକ୍ଷା କରି ବସିଛି । ଏଇଠି ହେବ ବାସର ।

ସୁମନ୍ତ ଓ ଅନ୍ୟର କେତେ, ସେମାନେ କିଏ କେଉଁଠି । ଆନନ୍ଦ ଉତ୍ତେଜନାର ଦେଇଣ ନେଇଣ ଦୁନିଆରେ କେହି କାହାର ଧାରୁଆ ନୁହନ୍ତି ।

ପାହାଡ଼ ଗଡ଼ାଣିର ନିର୍ଜନ ଉପତ୍ୟକାରେ, ଗଛଲତାର ଉହାଡ଼ରେ, ନିଆଁ ପରି ଜଳଜଳ ହେଉଛି ଦୁଇଟି ଆଖି । କାନରେ ବାଜୁଛି— ମନେ ରଖିଥା, ଇଏ ଦଣ୍ଡକାରଣ୍ୟ ନୁହେଁ, ଶୂଦ୍ରମୁନିଙ୍କର ଆଶ୍ରମ ନୁହେଁ; ତମେ ପ୍ରବଳପ୍ରତାପୀ ଦଣ୍ଡରାଜ ନୁହଁ କି ମୁଁ ସେକାଳର ନିଃସହାୟା ଅବଳା ଶୂଦ୍ରକନ୍ୟା ଅରଜା ନୁହେଁ । ମୁଁ ଏକାଳର ଝିଅ ବହ୍ନିମୂର୍ତ୍ତି ଅନୁପା !

ଆଖିରେ ଜଳୁଥିଲା ବହ୍ନି । ସେ, ସଞ୍ଜୟ ପରାଜିତ ହୋଇଥିଲା । ସୀମାଲଙ୍ଘନ କରିବାକୁ ଅନୁପା କେବେ ତାକୁ ସୁଯୋଗ ଦେଇ ନ ଥିଲା । ପରାଜୟର ପ୍ରତିଶୋଧ ନେବାକୁ ସେ ନିଜେ ଅନୁପାର ଦୁର୍ନାମ ରଟାଇଥିଲା ।

ଆଜି ତାଆରି କଥା ଗପି ହସିହସି ନିରୁପା ନସ୍ୟାତ୍ ହେଉଥିଲା । କହୁଥିଲା, ସେ ଯେଉଁ ଇଂରାଜୀ ବହିଟି ତାକୁ ପଢ଼ିବାକୁ ଦେଇଥିଲା, ସେ ପଢ଼ିନାହିଁ । ତାକୁ ଅନୁପା ଫେରାଇନେଇଛି । ଅନୁପା ତାକୁ ଆକଟି କହିଛି, ବିଭାଘର ହେବା ଆଗରୁ ନିରୁପା ତା' ସଙ୍ଗେ ବେଶି ମିଳାମିଶା କରିବ ନାହିଁ ।

ଏପରି ଉପଦେଶର ପଛରେ କି ଉଦ୍ଦେଶ୍ୟ ଲୁଚି ରହିଥିଲା ?

ଅନୁପା ତାକୁ ସନ୍ଦେହ କରେ ? ଅବିଶ୍ୱାସ କରେ ? ଅନୁପା ତାକୁ କ୍ଷମା କରିଛି ? ତା'ର ସବୁ ଅଭଦ୍ରତାକୁ ଖେଳୁଆଳପଣରେ କୌତୁକ ବୋଲି ଗ୍ରହଣ କରିଛି ? ତାକୁ ବିବାହ କରିବାକୁ ସମ୍ମତ ହୋଇଛି ?

ପୁଷ୍ପା ତା'ର ସହପାଠିନୀ ଥିଲା । ସୁମନ୍ତ ବି ।

ରଞ୍ଜିତା କହିଲେ, କ'ଣ ତୁ ଏତେ ଭାବୁଛୁ, ପୁଅ ? ଅନୁପାକୁ ମୁଁ ଅତି ସ୍ନେହ କରେ । କହୁକହୁ ମୁଁ ଇନ୍ଦ୍ରଙ୍କୁ କ'ଣ କହିଦେଇଛି । ସେଥିପାଇଁ ତୁ ମୋଟେ ଚିନ୍ତା କର ନା । ତାଙ୍କ ପାଖରୁ ମୁଁ କ୍ଷମା ମାଗିନେବି ।

ରଞ୍ଜିତାଙ୍କର ଆଖି ଛଳଛଳ ହେଲା ।

ସଞ୍ଜୟ ତା'ର ବୋଉଙ୍କ ମୁହଁକୁ ଚାହିଁ କହିଲା, ତତେ ମୋ ରାଣ ବୋଉ, ତୁ ସେପରି କିଛି କରିବୁ ନାହିଁ । ଆଜି ସଞ୍ଜରେ ଯାହା ଘଟିଗଲା, ତା'ର କାଣିଚାଏ ବି ବାପାଙ୍କୁ ଅବା ଅଞ୍ଜନାଙ୍କୁ ଜାଣିବାକୁ ଦେବୁ ନାହିଁ । ମୋ ବିବେଚନାରେ ଅନୁପାଠାରୁ ଆଉରି ଭଲ ବୋହୂ ତତେ ମିଳିବେ ।

ପୁଅର ହାତ ଧରି ସ୍ନେହବୋଳା କୋମଳ କଣ୍ଠରେ ରଞ୍ଜିତା କହିଲେ, ତୋର ମନକଥା ସବୁ ମୁଁ ବୁଝିପାରୁଛି ବାପ ! ତୁ ଯାହା ଚାହୁଁଛୁ ତାହାହିଁ ହେବ । ତୋର ମତାମତ ମୁଁ ଲଙ୍ଘିବି ନାହିଁ । ମୁଁ ଜାଣେ, ତୁ ମୋର ଅବାଧ ହେବୁ ନାହିଁ ।

ରଞ୍ଜିତା ମଧୁର ହସ ହସିଲେ । ସଞ୍ଜୟର ହାତ ଧରି କହିଲେ, କେତେବେଳଯାଏ ଉପାସରେ ବସିଥିବୁ ? ଆ ବାପା, ସାମାନ୍ୟ କିଛି ଖାଇବେ ।

ସଞ୍ଜୟ ପ୍ରତିବାଦ କଲା ନାହିଁ ।

---

ଗୃହିଣୀ ଅସୁସ୍ଥ । ଏହି କାରଣ ଦର୍ଶାଇ ବୀରକେଶରୀ ଘରକୁ ଯିବାକୁ ଏକମାସ ଛୁଟି ନେଇଥିଲେ । ଅନ୍ୟ କର୍ମଚାରୀମାନଙ୍କୁ କାର୍ଯ୍ୟର ଜରୁରୀ ପରିସ୍ଥିତି ଦୃଷ୍ଟିରୁ ହାକିମମାନେ ଛୁଟି ନାମଞ୍ଜୁର କରୁଛନ୍ତି । ମେଲଆ ବୀର-କେଶରୀଙ୍କୁ ନାହିଁ କରିବା ସମ୍ଭବ ନୁହେଁ । କାମ ନ କଲେ ନାହିଁ, ସବୁ ଆଇନ ତାଙ୍କୁ ଜଣା । କେଉଁଠି କିଏ କେଉଁ କାରଣରୁ ହରବର ହେଉଛି, ତାକୁ ବୁଦ୍ଧି ବତାଇ, ମସୁଧା ଦେଇ, କଇଫତ୍ ଲେଖାଇବାରେ ସେ ଧୂରନ୍ଧର । ହାକିମମାନେ ଏହା ଜାଣନ୍ତି ।

ତାଙ୍କର ସ୍ୱୟଂ ଉପୋଷ୍ଟି ହୋଇ କାର୍ଯ୍ୟରେ କେଉଁଠି ଯୋଗଦେଇ-ସାରିଲେଣି । ଦଶ ପନ୍ଦର ବର୍ଷ ବନ୍ଦୋବସ୍ତରେ ଜୀବନମୂର୍ଚ୍ଛା ଖଟଣି ଖଟି, ହାକିମଙ୍କଠାରୁ ଅଧିକ ପାଠ ପଢ଼ି, ବଡ଼ବଡ଼ଆଙ୍କର ନାଲି ଆଖି, ଧମକଚମକ ସହି, ଅନେକଙ୍କ ଭାଗ୍ୟରେ ସେତିକ ହୋଇପାରିନାହିଁ । କହିବାକୁ ହେବ, ବୀରକେଶରୀ ଭାଗ୍ୟବାନ । ସେହି ଭାଗ୍ୟ ତାଙ୍କର ସମ୍ମାନ ବଢ଼ାଇଛି ।

କିଏ ତାଙ୍କର ଛୁଟି ଦରଖାସ୍ତ ମଞ୍ଜୁର ନ କରିବ ?

ସେ ଫେରିଆସିବେ, ଏହି ଆଶ୍ୱାସନା ଗୁଣମୁଗ୍ଧ ସହକର୍ମୀମାନଙ୍କୁ ଦେଇ ସେ କଟକ ଯାତ୍ରା କଲେ । ଭଜପୁନଗ୍ରାମ୍ ବସ୍‌ଷ୍ଟାଣ୍ଡରେ ଦୂରରୁ ସେ ଦେଖିପାରିଲେ, ରାସ୍ତା ଆରପାଖର ଗୋଟିଏ ହୋଟେଲଭିତରୁ ଦେବନାଥ ପଣ୍ଡାକୁ ବାହାରିଆସୁଛନ୍ତି । ତରତର ଥିଲା ପରି ମନେହେଉଛନ୍ତି । ହୁଏତ ସେ ଆଗ ବସ୍‌ରେ ଆସିଛନ୍ତି, କଟକ ଯିବେ; ଅବା କଟକରୁ ଫେରୁଛନ୍ତି, ଯିବେ ଜୟପୁର ।

ବୀରକେଶରୀଙ୍କର ହାଲ୍‌କ ଶୁଖିଲା । ଆତ୍ମଗୋପନ କରିବାର ଉପାୟ ନାହିଁ । ଉଜ୍ଜ୍ୱଳ ଦିବାଲୋକ । ବସ୍‌ରୁ ଓହ୍ଲାହୋଇ ଟ୍ରଙ୍କ, ବେଡିଂ, ଦୁଇଟି ବଡ଼ ପୁଡ଼ା, ନଲଟଣ ଓ ଛତା ରାସ୍ତା ଉପରେ ରଖା ହୋଇଛି ।

ଚିଠି ବାହାଘର ପାଇଁ ଜୟପୁର ବାଟେ ସେ କେତେମାସ ତଳେ କଟକ ଯାଉଥିଲେ । ତାଙ୍କର ପରିଚିତ ବନ୍ଧୁମାନଙ୍କୁ କହିଥିଲେ, କଟକର

ଜଣେ ବିଖ୍ୟାତ ବ୍ୟବସାୟୀ ହାଡ଼ିବନ୍ଧୁ ଓ ତାଙ୍କର ସ୍ତ୍ରୀ ବାର୍କୀର ଚର୍ଚ୍ଚିକା ଠାକୁରାଣୀଙ୍କ ପାଖରେ ଭଲୁପୀକୁ ଦେଖି ବୋହୂ କରିବାକୁ ଆଗ୍ରହ ପ୍ରକାଶିଲେ। ହର୍ଗିବୀ ନିଜେ ଯାଇ ଘରବର ଦେଖିଆସିଲେ । ହାଡ଼ିବନ୍ଧୁ ଧନକୁବେର । ବଡ଼ପୁଅ ବାଉରିବନ୍ଧୁ ନିଜେ ହଜାର ହଜାର ରୋଜଗାର କରୁଛି ।

ଦେବନାଥ ବିକ୍ରମର ନାମ ଧରି ନ ଥିଲେ। ବୀରକେଶରୀଙ୍କୁ ଦେଖା କରିବାକୁ ଆସିଲେ ନାହିଁ । ଖବର ପଠାଇଲେ ନାହିଁ । ଭଲ ହୋଇଛି । ବୀରକେଶରୀ ଭାବିଥିଲେ, ସାକ୍ଷାତ ହୋଇଥିଲେ ଟଙ୍କା କଥା ଉଠାଇଥାଆନ୍ତେ ।

ଦେବନାଥଙ୍କର ନଜରରେ ସେ ପଡ଼ିସାରିଲେଣି । ଏବେ ପଳାୟନର ଉପାୟ ନାହିଁ । ଭଲୁପୀକୁ ବାହା ହେବାକୁ ବିକ୍ରମ ମନା କରି-ଦେଲା । ଦେବନାଥଙ୍କର ପାଞ୍ଚଶ ଟଙ୍କା ବାଏଁ ବାଏଁ ଉଡ଼ିଯିବ ନାହିଁ । ଟାଳଟୁଳ କରି ସମସ୍ତ କ୍ଷେପଣ କରାଯାଇପାରେ । ତକେ ଗଲେ ବାରହାତ । ମାଗିବାର ଅଧିକାର ଅଛି । ସ୍ଥାନ, ସମୟ, କେଉଁମାନେ ଅଛନ୍ତି ନ ଅଛନ୍ତି, ସେ କାହିଁକି ବିଚାରିବେ ?

ଦେବନାଥ ତାଙ୍କୁ ଦେଖିସାରିଲେଣି । ହସହସ ହୋଇ ଆଗେଇ-ଆସୁଛନ୍ତି ।

ବୀରକେଶରୀ ଭାବିଲେ, ଆଗ ସେ ଅଭିନନ୍ଦନ ଜଣାଇବେ । ଦୁଇପାଦ ଆଗେଇଯାଇ ସେ ହସହସ ହୋଇ, ନରମ ସ୍ୱରରେ କହିଲେ, ନମସ୍କାର ସମୁଦି ! କଟକରୁ, ନା କଟକକୁ ?

ସମୁଦି ! କାହିଁକି ଉପହାସ କରୁଛ, ବୀରବାବୁ ?

ଉପହାସ କରୁଛି ?

ନୁହେଁ ତ ଆଉ କ'ଣ ? ତମେ କ'ଣ ଜାଣ ନାହିଁ···

ଜାଣେ ନାହିଁ ? ସବୁ ଜାଣେ । ତମେ ନିମନ୍ତ୍ରଣ କଲନାହିଁ । ହାଡ଼ିବନ୍ଧୁ ମୋର ଯୁବାବୟସରୁ ସାଙ୍ଗ । କ୍ଷୀର-ନୀର ସମ୍ପର୍କ । ଜାଣ, ଆମର ଗୋଟାଏ ଘର । ଠାକୁରେ କଲେ, ସେ କୁବେର ସମ୍ପତ୍ତି ଭୋଗିଲା । ତଗଜର ମାପ ଏପାଖ ସେପାଖ ହେଲା । ସେ ଯାହାହେଉ, ବାଉରିଆ ମୋର ଆଗ, ବିକ୍ରମ

ପଡୁ । ମତେ ମଞ୍ଜୁଷା ଡାକେ । ଏଇ କାଖରେ କେତେ ଲଦିହୋଇଛୁ । କଟକ ଯାଉଛୁ । ଆଜ ମୋ ଭଲୁପୀରାଣୀକୁ ଗଜରାଣୀ ବେଶରେ ଦେଖିବ । ସେଇଠୁ ଯାହା—

ବୀରକେଶରୀଙ୍କର ଆଖି ଛଳଛଳ ହେଲା ।

ଦେବନାଥ ବିହ୍ୱଳ ହେଲେ । ତାଙ୍କର ଆଖି ଛଳଛଳ ହେଲା । କହିଲେ, କ୍ଷମା ମାଗୁଛି, ସମ୍ବନ୍ଧ ! ଏତେ କଥା ମୁଁ ଜାଣି ନ ଥିଲି । ମୁଁ ଗ୍ରାମରୁ କଟକ ବାଟେ ଆସୁଛି । ବାହାଘରରେ ବଡ଼ଲୋକଆ ବନ୍ଧୁଙ୍କର ଚର୍ଚ୍ଚା କରି ମୋ କଥା ଠ-ଠା-ଠି ହେଲା । ସେଥିପାଇଁ ମୁଁ ପୁଣି ଆସିଲି ।

ଭଲ କଲ । ମାସଟିଏ ରହି ମୁଁ ବି ଫେରିବି । ଯାହା କପାଳରେ ଯେଉଁଠି ଥାଏ, ହୁଏ । ଦଇବ ଦଉଡ଼ି, ମଣିଷ ଗାଈ । ହେଲେ ସମ୍ବନ୍ଧ, ମତେ ଥରେ ତମେ ପଚାରିଲ ନାହିଁ ! ଜାଣିଥିବ ତ, ବସନ୍ତ ଡେପୁଟି ହୋଇ କାର୍ଯ୍ୟରେ ଯୋଗଦେଲାଣି ?

ଜାଣିଛି । ତମକୁ କହିଲା ପଚାରିବାର ବାଟ ବସନ୍ତ ବନ୍ଦ କରିଦେଇ-ଥିଲା । ସେ ଯେଉଁ ଚିଠି ଲେଖିଥିଲା—

ବସନ୍ତ ଚିଠି ଲେଖିଥିଲା ? ମତେ ଲେଖିନ ?

ଇନ୍‌ସିଓର୍ଡ଼ ଲଫାପା ଭିତରେ ଚିଠି ଓ ଛଅ ଶହ ଟଙ୍କା ସେ ଭାର୍ଗବୀଙ୍କ ଠିକଣାରେ ବହୁ ମାସ ତଳେ ପଠାଇଥିଲା । ମାଉସୀ ସମ୍ବୋଧନ କରି ତମ ଘରର ଟିକିନିଖି ଅବସ୍ଥା ବର୍ଣ୍ଣନା କରିଥିଲା । ଶେଷକୁ ଲେଖିଥିଲା, ଅବସ୍ଥା ନ ସୁଧୁରିବା ଯାଏ, ଅନ୍ତତଃ ଦୁଇବେଳା ଦୁଇମୁଠି ଭାତ ଓ ଦେହ ଘୋଡ଼ାଇବାକୁ ଲୁଗା ଶାଢ଼ି ବି ଖଣ୍ଡିର ବ୍ୟବସ୍ଥା ନ ହେବାଯାଏ, କେହି ତାକୁ ସଂସାରୀ ହେବାକୁ ବାଧ୍ୟ କରିପାରିବେ ନାହିଁ । ବସନ୍ତବାବୁ ହାକିମ ହୋଇ ଯୋଗ ଦେଲେଣି, ସେ ଖବର ସେ ଜଣାଇ ନ ଥିଲେ । ଆମେ ପରେ ଜାଣିଲାବେଳକୁ ହାଡ଼ିବନ୍ଧୁବାବୁଙ୍କ ଘରେ ସ୍ୱୀକାର ଚାଲିସାରିଥିଲା ।

ବୀରକେଶରୀ ତାଟକା ହୋଇସାରିଥିଲେ । ନିର୍ବାକ୍ ହୋଇ ସେ ବସିଥିଲେ, ବସନ୍ତ କେଡ଼େ ନବୁଝିଆ କାମ କଲା ! ବାହାଘର ନ ହେଲା

ନାହିଁ, ଟଙ୍କା ଫେରାଇନ୍ତ କାହିଁକି ? ହଉ, ସତ୍ତାଆପଣ ଦେଖାଇବାକୁ ଟଙ୍କା ଯଦି ଫେରସ୍ତ ଦେଇଥାନ୍ତ, ଶହେ ଟଙ୍କା ଅଧିକା ଦେବା ଉଚିତ ନ ଥିଲା ।

ତାଙ୍କର ମୁହଁକୁ ଚାହିଁ, ତାଙ୍କ ମନର ଭାବନା କଳନା କରି ପରି ଦେବନାଥ କହିଲେ, ଯାହା ହେଉ, ଉଲୁପୀ ଗୋଟିଏ ହିସାବରେ ତମର ବୋହୂ ହୋଇସାରିଛି । କଲ୍ୟାଣ କର, ସେ ସୁଖୀ ହେଉ । ଏଥର କେତେ ବଡ଼ବଡ଼ିଆ ବନ୍ଧମକୁ ଜୋଇଁ କରିବାକୁ ଧରାପରା ହେବେ । ତମର କି ଚିନ୍ତା ? ଜୟପୁର ବସ୍ ଡେରି ଅଛି । ତମର ଗାଡ଼ି ଆସିଯିବ ପରା ! ମୁଁ ଟିକଟ କରି-ଆଣେଁ ।

ଟିକଟ ପାଇଁ ଦେବନାଥ ବୁକିଂଅଫିସ ଆଡ଼େ ଚାଲିଗଲେ ।

ବୀରକେଶରୀ ଡକାଡ଼ୁଥିଲେ, କୁଲି, କୁଲି—

ଦେବନାଥ ଟିକଟ କରାଇଦେଲେ । ସ୍ୱହସ୍ତରେ ହାତ ଧରି ଗାଡ଼ିରେ ଚଢ଼ାଇଦେଲେ । ନିଜ ହାତରୁ ପଇସା ଖର୍ଚ୍ଚ କରି କୁଲି ଜଣକୁ ବିଦା କଲେ । ଟ୍ରେନ୍ ଛାଡ଼ିବା ଯାଏ ପ୍ଲାଟଫର୍ମରେ ଠିଆହେଲେ ।

ଗାଡ଼ି ଧୀରେ ଧୀରେ ଚାଲିଲା । ଦେବନାଥ ଝରକା ପାଖକୁ ଆସି ଫେଣାଏ ପାକଳ କଦଳୀ ବଢ଼ାଇଦେଇ କହିଲେ, ମାସକ ପରେ ଅବଶ୍ୟ ଦେଖା ହେବ, ସମୁଧି ! ମୁଁ ରହୁଛି, ନମସ୍କାର । ଉଲୁପୀକୁ ନିଶ୍ଚୟ ଦେଖି-ବାକୁ ଯିବ ।

ଗାଡ଼ିର ଗତି ବଢ଼ୁଥିଲା । ଦେବନାଥ ପଛରେ ପଡ଼ିଯାଉଥିଲେ । ବୀରକେଶରୀ ତଥାପି ପ୍ରତିନମସ୍କାର କରି ଉତ୍ତର ଦେଲେ, ଏକଥା ଫେର୍ କହୁଛ ?

ଦେବନାଥ ଗାଡ଼ିର ଘର୍ଘର ଶବ୍ଦ ଭିତରେ ତାଙ୍କର ଭୁଣ୍ଡିର କଥା ଶୁଣିଲେ କି ନାହିଁ ତାଙ୍କୁ ଜଣା ।

ବୀରକେଶରୀ ମୁଣ୍ଡକୁ ଭିତରକୁ ଆଣିଲେ । ନିଜର ସିଟ୍‌ରେ ବସି ମନେ ମନେ ଯାହା କହିଲେ, କେହି ତାକୁ ଶୁଣିବାର ପ୍ରଶ୍ନ ଉଠୁନାହିଁ—

ନଷ୍ଟସ୍ପ ଯିବ, ଷାନ୍ଧର ଛଣ୍ଡ ଗଣିବାକୁ ଯିବ, ବୋଦ୍ଧୁଦେଖା ? ନିଜ ମନକୁ ଖରଚ କରି ଯାହା ପରିଶୋଧ ନେଲ, ସେତକ ଶହେ ଟଙ୍କାର ସୁଧ !

ମନେ ମନେ ସେ ବହମ ଉପରେ ବିରକ୍ତ ହୋଇଉଠିଲେ । ସେଇଟା ନିର୍ବୋଧ । କିଛି ହେବ ନାହିଁ । ସଚ୍ଚୋଟପଣ ଦେଖାଇ ଭିକ ମାଗିବ । ଗୋଦର କୋଡ଼େ ଯେତେ ମାଡ଼େ ସେତେ ।

ଟଙ୍କା ସେ ପାଇଲା କେଉଁଠୁ ?

ମନ କହିଲା, ପୂର୍ବ ଚାକିରିରେ ନଷ୍ଟସ୍ପ ଚାରି ପଇସା ଉପୁରି ଥିଲା । ଭଲ ରୋଜଗାର ହେଉଥିଲା । ଛାଡ଼ିଦେଇ ହାକିମ ହେଲା ସିନା, ବୁଦ୍ଧି ନ ଖଟାଇଲେ ଘର କରିପାରିବ ନାହିଁ । ହାକିମେ ସନମାନ ପାଆନ୍ତି । ଯାଉଁଣି ଆସୁଣି ତାଙ୍କ ପାଖରେ ପ୍ରଣାମ, ସଲାମ ବୃଷ୍ଟି ହୁଏ । ସେ ବୃଷ୍ଟିରେ ଜଳ ନ ଥାଏ । ପବନ ଥାଏ ।

ଢ' ପଦ ଉପଦେଶ ତା'ର ଲୋଡ଼ା ।

ଟ୍ରେନ୍‌ର ଗତି ବଢ଼ିଥିଲା । କ୍ଳାନ୍ତ ଖାରିକେଶରଙ୍କର ଆଖି ମାଡ଼ି ମାଡ଼ି ପଡ଼ୁଥିଲା । ଦୁଇ କଡ଼କୁ ଓ ଆଗକୁ ମୁଣ୍ଡ ଝୁଙ୍କି ପଡ଼ୁଥିଲା । ସେ ଚାହୁଁଥିଲେ । ସଳଖ ହୋଇ ବସିବାକୁ ଚେଷ୍ଟା କରୁଥିଲେ, ପୁଣି ଢୁଳାଇ ପଡ଼ୁଥିଲେ । ସ୍ୱପ୍ନ ଦେଖୁଥିଲେ । ବଡ଼ ବଡ଼ କୋଠା, ଗହଣାପତ୍ର, ଧାନ ଗଦା, ଦୁହାଁଳୀ ଗାଈ, ଚାକରବାକର—

ହେ ବୁଢ଼ା, ସିଧା ହୋଇ ବସ ।

କହୁଣି କେଆରେ ଚନ୍ଦ୍ରା ଭୁଟୁଛି । କୋଠାବାଡ଼ି, ଧନସମ୍ପତ୍ତି ଉଭେଇ ଯାଉଛି । ପାଖଲୋକଠାରୁ କ୍ଷମା ମାଗି, ଆଖି ମଳି ଖାରିକେଶର ନିଜ ଭିତରେ ଚିଡ଼ିଉଠୁଥିଲେ । କୁଳାଙ୍ଗାର, କାହୁଁ ପାଇଲା ଏତେ ଟଙ୍କା ? ଅଲେଖା, ଘୋଡ଼ାଦନ, ଅବା ଆଜି କାହାକୁ ଜମି ବନ୍ଧା ଦେଲା ? ଚଣ୍ଡାଳ, ଗୁଣ୍ଡେ ଛଣ୍ଟାଏ କରିବାର ଜାଡ଼ ନାହିଁ । ପୈତୃକ ସମ୍ପତ୍ତି ବିନବ୍ୟୟ କରିବ ? କପୂର ଯାଇ କନା ଖଣ୍ଡିକରୁ ଚରୁଢ଼ାଏ ଅଛି । କୁଳାଙ୍ଗାର ଟୋକା ସେତକ ପର ହାତକୁ ଟେକିଦେଇଛି ?

ଏଥିରେ ସେହି ଅବୋଧ ଅବୁଝିଆ ଚିନ୍ଦନା ଅସ୍ତ୍ରଶସ୍ତ୍ର ସଜ ହୋଇ-ଛନ୍ତି । ଏବେ ହେଲା ଭାଇ ପଡ଼ୋଶୀ ପଣକୁ ସରି ନୁହେଁ । ତୁଣ୍ଡରେ ଅମୃତ ପେଟରେ ବିଷ । ଦେଖିଲେ ଭକ୍ତି ଗଦଗଦ । ଚୁପ୍‌ସଇତାନ ଧୀରକେଶରୀ ପିଲାଟାକୁ ମତାଇଦେଇଥିବ ।

ମଜା ଦେଖୁଛି, ଭାଇ ! ସବୁ ଅକଲ ଶିଖିନେଇଛୁ, ମଣିଛୁ । ଆରେ ଧୀରା, ଗଛଚଢ଼ା ବିଦ୍ୟା ଭାରି ଗହନ; ଶିଖିଲୁ, ଶିଖିପାରିବୁ ନାହିଁ ।

କାଠମାସ୍ତ ଧୀରକେଶରୀଙ୍କର ଏହିପରି ପରକୁ ଦୋଷଦିଆ କେତେ ଭାବନା । ଆନନ୍ଦ, ଇନ୍ଦିରା, ତାଙ୍କର ପିଲାମାନେ, ବିଷମର ବଂଧୁଗୁଡ଼ିକ—ସଞ୍ଜୟ, ପ୍ରକାଶ, ବିମଳ, ପ୍ରଦ୍ୟୁମ୍ନ, ଏପରି କି ବାଉରିଟୋକା କେବଳାନନ୍ଦ, ଯିଏ ଏବର୍ଷ ବି.ଏ. ପାସ୍ କରିଛି, କେହି ଧୀରକେଶରୀଙ୍କର କଠୋର ସମାଲୋଚନା ଓ କୋପଦୃଷ୍ଟିରୁ ପରିତ୍ରାଣ ପାଇଲେ ନାହିଁ ।

ତାଙ୍କର ସ୍ୱର୍ଗତ ପିତାଙ୍କର ଅମର ଆତ୍ମା ଉପରେ ବି ଅଭିମାନ ଆସିଥିଲା । ଅସହଯୋଗ ଆନ୍ଦୋଳନ ଆଗରୁ ସେହି ବାପେ ଧୀରକେଶରୀଙ୍କର ହାତ ଧରି ପଛକୁ ଟାଣିଆଣିଥିଲେ । ସେତିକ ଯଦି ସେ କରି ନ ଥାନ୍ତେ, ବିଧାଗୋଇଠା, ଥରେ ଅଧେ ବେତମାଡ଼ ଖାଇଥିଲେ, ଦି'ତିନଥର ଜେଲ୍ ଭିତରେ ପଶିଥିଲେ ତାଙ୍କପରିକା ସାହସୀ, ବିଚକ୍ଷଣ, କୁହାଳିଆ, ବୁଦ୍ଧିଆ ଲୋକ ଆଜ ଯାଏଁ କେତେ ଉପରେ ବସିଥାନ୍ତେ !

ହେଲା ନାହିଁ ।

ବାପାଙ୍କର ଦୂରଦୃଷ୍ଟି ନ ଥିଲା ।

ଦୁର୍ବଳ ଅକ୍ଷମ ଧୀରକେଶରୀଙ୍କର ରେଲଯାତ୍ରାର ବାରବୁଢ଼ିଆ ଅଳସ ଅବାନ୍ତର ଭାବନା ଶିରପଲ୍ଲିରେ ପାଦ ଥୋଇବା ଆଗରୁ ଅନ୍ତର୍ହିତ ହୋଇଥିଲା । ସେ ଦେଖିଲେ, ଉପଲବ୍ଧି କଲେ, ସବୁ ଦ୍ରୁତଗତିରେ ବଦଳୁଛି । ଗ୍ରାମର ରୂପ କେତେକ ପରିମାଣରେ ବଦଳିଯାଇଛି । ନୂଆ ନୂଆ କୋଠା, ଗ୍ରାମ ରାସ୍ତାଗୁଡ଼ିକର ଉନ୍ନତି, ଆହୁରି କେତେ ଦୋକାନ ।

ଗ୍ରାମର ଲୋକେ ସର୍ବଦା କାର୍ଯ୍ୟବ୍ୟସ୍ତ ରହୁଛନ୍ତି । ପିଲାମାନଙ୍କ ଦେହରେ ପରିଷ୍କାର ଜାମା । ସମସ୍ତେ ପ୍ରାୟ ପାଠ ପଢ଼ିବାକୁ ଆଗ୍ରହୀ । ଅଧିକାଂଶ ଲୋକ ପଦାକୁ ବାହାରିଲେ, ପରିଷ୍କାର ଲୁଗା ଜାମା, କେହି କେହି ଟେରିଲିନ୍ ପ୍ୟାଣ୍ଟ ପିନ୍ଧି, ଗୋଡ଼ରେ ଚପଲ ଗଳାଇ, ହାତରେ ଘଣ୍ଟା ନାଇ ବାହାରୁଛନ୍ତି । ଝିଅବୋହୂଏ ଭିନ୍ନ ଧରଣର ଦିଶିଲେଣି । ବେଶ୍ ସୁନ୍ଦର, ଫୁର୍ତ୍ତି । ସେମାନେ କିଛି ନା କିଛି କରିବାକୁ ବ୍ୟଗ୍ର । ଗାଁ ଦାଣ୍ଡରେ ମାଇପି କଳିର ଅଭଦ୍ର ଅଶ୍ଳୀଳ ଭାଷାର ଚଡ଼ାଉତୁରା କଳକଳା ଉଡ଼ କାନରେ ବାଜୁନାହିଁ । ଆକାଶବାଣୀର ଗୀତ ଓ ବିଭିନ୍ନ କାର୍ଯ୍ୟକ୍ରମ ଶୁଣିବାରେ ପୁରୁଷ ସ୍ତ୍ରୀ ମେଳ ହେଉଛନ୍ତି, ମନ ଦେଉଛନ୍ତି ।

ବୀରକେଶରୀ ସମ୍ମାନ ପାଇଲେ ।

ତାଙ୍କର ବୀରତ୍ୱର କାହାଣୀ, ସୁଚିନ୍ତିତ ଉପଦେଶମାନ ଶୁଣି ମୁଗ୍ଧ ହେବାକୁ, ବାହାବାହା କରିବାକୁ ଭକ୍ତ ପାଇଲେ ନାହିଁ । ସେ ବୁଝିପାରିଲେ, ଲୋକେ ଅନ୍ୟର ମିଛସଚ କରାମତିରେ ମନଯୋଗୀ ହେବାକୁ ଚାହାନ୍ତି ନାହିଁ । ନିଜ ନିଜର କାର୍ଯ୍ୟକ୍ଷେତ୍ରରେ କରାମତି ଦେଖାଇବାକୁ ଆଗ୍ରହୀ ଓ ଚେଷ୍ଟିତ । ସେମାନେ ଅଲଣା ଉପଦେଶକୁ ଆଡ଼େଇ ଚାଲିଛନ୍ତି । ଯେଉଁ ଉପଦେଶକୁ କାମରେ ଲଗାଇ ନିଜର ଅବସ୍ଥାକୁ ସୁଧାରିପାରିବେ, ତାକୁ ସେମାନେ ବାଛି ନେଉଛନ୍ତି ।

ଗ୍ରାମର ବାହାର ରୂପ ବଦଳିବା ସଙ୍ଗେ ସଙ୍ଗେ ସମାଜର ଚଳଣି, ବ୍ୟକ୍ତିର ବାହାର ଓ ଭିତର ରୂପ, ଚିନ୍ତାଧାରା ଶୀଘ୍ର ଶୀଘ୍ର ବଦଳିଯାଉଛି ।

ବୀରକେଶରୀ ହତାଶ ହେଲେ । ଯେତେ ଯାହା ସେ ଭାବିଥିଲେ, ସବୁ ଭୁଲ । ବିକ୍ରମ ସବୁ ଋଣ ପରିଶୋଧ କରିଦେଇଛି । ଭୂମିତକ ବିକଳ ହୋଇ ଚାଷ-କରୁଛନ୍ତି । ବ୍ୟାପାଜତରେ ରହିଛନ୍ତି । ବାରିଖଣ୍ଡି ମୂକୁଳା ପଡ଼ିନାହିଁ । ସେଥିରେ ଶାଗସବଜି ବିକଳ ହୋଇଙ୍କ ବରାଦରେ ହେଉଛି । ଘରର ଅବସ୍ଥା

ପୂର୍ବପରି । କୌଣସି ଉନ୍ନତି ହୋଇନାହିଁ । ଚନ୍ଦନାଙ୍କ ପରି ସେ ଘର ଦିନକୁ ଦିନ ଅଧିକ ପୁରୁଣା, ଜରାଜୀର୍ଣ୍ଣ, ଦୁର୍ବଳ ହୋଇପଡ଼ୁଛି ।

ଚନ୍ଦନାଙ୍କର ଗୋଡ଼ ତଳେ ଲାଗୁନାହିଁ । ନିଜର ଅଜଣା ବେଦନା, ଦୁର୍ବଳ ଦେହ ସତ୍ତ୍ୱେ ସ୍ୱାମୀଙ୍କର ସେବାଯତ୍ନ ନେବାକୁ ତତ୍ପର ହେଉଛନ୍ତି । ମନକର୍ଣ୍ଣ ଦେଇ ତାଙ୍କର ବିଦେଶ ରହଣି କାଳର ସବୁ କାହାଣୀ ଶୁଣୁଛନ୍ତି । ବୋଲେ–ହୁଁ ଟି ସେ । ସର୍ବଶେଷରେ ତାଙ୍କର ଗୋଟିଏ ଅନୁରୋଧ, ତମେ ଆଉ ଦୂର ବିଦେଶକୁ ଯାଅନା । ପିଲାଟି ଆମର ପାଢ଼ିଗଲଣି । ଭଲରେ ମୁଠିଏ ଖାଇବାକୁ, ଖଣ୍ଡେ ପିନ୍ଧିବାକୁ ମିଳିବ ।

ସେ ବିଷୟ ସ୍ଥିର କରିବାକୁ ମାସେ ସମୟ ଅଛି, ଚନ୍ଦନା ! ମୁଁ ଥରେ କଟକ ଓ ଢେଙ୍କାନାଳଆଡ଼ୁ ବୁଲିଆସେ । ଆନନ୍ଦଙ୍କ ଘରୁ କେହି କ'ଣ ଚିଠି ଦେଉନାହାନ୍ତି ? ପୁରୀରୁ ବିନନ୍ଦଙ୍କ ଘରୁ ? ବିକ୍ରମ କେବେ ଲେଖିଥିଲା ? କେବେ ଆସିବ ?

ଚିଠିଗୁଡ଼ିକ ତମର ଚିଠି ସଙ୍ଗରେ ଟିଣବାକସରେ ରଖିଦେଇଛି । ତମର ବେଳ ହେଲେ ପଢ଼ିବ । ଆନନ୍ଦଙ୍କ ଘରୁ ଚିଠି ଦେଲେ ବିଏ ସେହି ଅନୁପା । ବି'ମ.ସରେ ତିନିମାସରେ କେବେ ଖଣ୍ଡେ । ବି'ଘର ଧାଡ଼ି । ନିଜେ ବି.ଏ. ପାସ୍ କଲି ବୋଲି ଲେଖିଥିଲା । ବିକ୍ରମ ଡେପୋଟି ହେଲା ବୋଲି ଖୁସି ହୋଇ ଖଣ୍ଡେ ଦେଇଥିଲା । ଶେଷଚିଠିରେ ଲେଖିଥିଲା ଛୁଟିନେଇକରି ସେ ଲୁଆଙ୍କେ ମୋ ବୋହୂ ଜୁଲୁପୀକୁ ଦେଖିବାକୁ ସମସ୍ତେ ହାଡ଼ିବନ୍ଧୁଙ୍କ ଘରକୁ ଯାଇଥିଲେ । ବୋହୂକୁ ପାଟଶାଢ଼ି ପିନ୍ଧାଇ ଗାଡ଼ିଏ ସୁନାଗହଣାରେ ବୋଝେଇ କରିଥିଲେ । ଓଢ଼ଣା ଟେକି ବୋହୂ ମୁହଁ ଦେଖାଉଥିଲେ । ତାର ମୁଦିଲା ଆଖିରୁ ଦି'ଧାର ଲୁହ ଝରିପଡୁଥିଲା ।

କାନ୍ଦୁଥିଲା ?

ବାପଘର ମନେପଡ଼ୁଥିବ । ଯାହା କପାଳେ ରାଜରାଣୀ ଯୋଗ ବିଧି ଲେଖିଛି, ସେ କାହିଁକି ଏଣୁ ଭଙ୍ଗାଦଦରା କୁଡ଼ିଆ ଘରକୁ ଆସିବ ? ବିନନ୍ଦ କଥା ପଚାରୁଥିଲ, ସେ କାହିଁକି କେବେ ଚିଠି ଦେବ ? ସେ ଘର

କରିଦେଇଛୁ । ଶୁଣିଛି, ସ୍କୁଲର ଗଲା ପରେ ବେପାର ବଣିଜ କରି ସେ ବେଶ୍ ଭଲରେ ଚଳୁଛି । ପିଲାଗୁଡ଼ାକ କୁଆଡ଼େ ଚଗଲା ଛତରା ହେଲେ ।

ତମେ ଦେଖିବ ରହ, ଚନ୍ଦନା ! ସେଇମାନେ ଚଲାଖ ଚତୁର ହେବେ । ନାନା ଉପାୟରେ ପଇସା କମେଇ ଧନୀ ହେବେ । ଘର କରିବେ । ଏକାଳକୁ ଜାଣିବେ ସେଇମାନେ—ଯିଏ ଖାଇପିଇ ହାକୁଟି ମାରି ମୁହଁ ପୋଛି ସଫା ହେବାର ବାଟ ଜାଣନ୍ତି, ଯିଏ ନିଜେ ସାପ ମାରି ପରଗଳାରେ ପକାଇ ପାରନ୍ତି । ଭାବୁଛି, ଥରେ ପୁରୀ ଯିବି । କାଳିଆକୁ ଦର୍ଶନ କରିବି । ଚନ୍ଦନ ଘରେ ଦିନେଓଳିଏ ରହିଆସିବି ।

ମୋତେ ବି ସଙ୍ଗରେ ନେଇଯିବ । କୁଅବେଙ୍ଗ ପରି ଏଇଠି ଘାଣ୍ଟି ହେଉଛି । ନିଜ ପାଇଁ ମୁଠିଏ ଫୁଟାଇ ନିଜେ ଖାଇ ଏପାଖ ସେପାଖ ହେବା ଛଡ଼ା ଆଉ ମୋର କି କାମ ? ପିଲାଟା ଭୁବନେଶ୍ୱରରେ ଥିଲା ଯେ, ସାତ ଦିନରେ ପନ୍ଦର ଦିନରେ ଥରେ ଆସିପାରୁଥିଲା । ତା' ସେବାରେ ବେଳ କଟୁଥିଲା । ସେ ପାଞ୍ଚ ଛଅ ମାସ ହେଲା ଢେଙ୍କାନାଳ ଗଲାଣି । ଘରକୁ ଆସିବାକୁ ବେଶି ବେଳ ପାଉନାହିଁ ।

ଆସିପାରେନାହିଁ ?

ମାସକୁ କେବେ ଦିନେ ଥରେ ଥରେ । ଶନିବାର ସଞ୍ଜରେ ଆସି ରବିବାର ସଞ୍ଜରେ ଛୁ । ଆଖିରେ ଦିଶିଲାପରି ଲାଗେ ନାହିଁ । ଟଙ୍କା ଦେଇଯାଏ । ସଉଦାପତ୍ର କିଣି ରଖିଦେଇଯାଏ । ତାର ବେଳ କଟେ ଗାଁ ଭିତରେ । ହାତକୁ ଦି'ହାତ ଯଦି ହୋଇପାରିଥାନ୍ତା !

କିପରି ହୁଅନ୍ତା ? ମା ପୁଅ ଦିହେଁ ଶିଖାଶିଖି ହୋଇ ଦେବନାଥ-ବାବୁଙ୍କ ଘର ସମ୍ବନ୍ଧ ଭାଙ୍ଗିଦେଲେ । କେଡ଼େ ନିର୍ଲଜ୍ଜ ସେ ଟୋକାଟା ! ତାଙ୍କ ସ୍ତ୍ରୀଙ୍କ ପାଖକୁ ଚିଠି ଲେଖି ଘରର ଗୁମର ଖୋଲିଦେଲା । ମତେ ନ ପଚାରି ଛଅଶହ ଟଙ୍କା ଫେରାଇଦେଲା ।

ଆଜି ତୁଇଁ କହୁଛୁ ଗୋ, ମୁଁ ଏ ବିଷୟ କିଛି ଜାଣି ନ ଥିଲି । ମାସକ ତଳେ ତା' ମନକୁ ସେ କହିଲା । ତମେ ଜାଣିଲ କିପରି ? ତମକୁ ସେ ଲେଖିଥିଲା କି ?

ମତେ ଲେଖିବ, ତାର ଏତେ ବହପ ? କୌଣସି ଘଟଣା ମତେ ଅଛପା ରହେ ନାହିଁ । ପୁଅ ହୋଇ ଯେଉଁ ଅପମାନ ସେ ମତେ ଦିଆଇଲା, ମରିବାଯାଏ ମୁଁ ଭୁଲିପାରିବି ନାହିଁ । ତେବେ, ତାକୁ ମୁଁ ଥରେ ଏ ବିଷୟରେ ଅବଶ୍ୟ ପଚାରିବି ।

ତମର ଗୋଡ଼ ଧରୁଛି, ମୋ ପୁଅକୁ ତମେ କିଛି ପଚାରିବ ନାହିଁ । ଭଲ ହେଲା ସେ ମନାକଲା । ତମେ ଶିକ୍ଷା ପାଇଲ । ପୁଅ ବଡ଼ ହେଲା, ଗଦାଏ ପାଠ ପଢ଼ି ଏବେ ହାକମ ହେଲା । ତା' ବୁଦ୍ଧି ତମ ବୁଦ୍ଧିରୁ ସରସ ।

କ'ଣ କହିଲ ?

ସରସ ନୁହେଁ ଆଉ କ'ଣ ? ବାହାଘର ଠିକ୍ ନ ହେଉଣୁ ଆଗତୁରା କାହାରି ପାଖରୁ ବାଟଖରଚ ଆଣିବା କେଉଁଠି ଜଣାଶୁଣା ନ ଥିଲା । ଉଚବାଚ କଲେ କଥା ପ୍ରଘଟ ହେବ । ଆମେ ଲୋକହସା ହେବା । ଏ ଗାଁରେ କାନ୍ଥ-ବାଡ଼ର କାନ ଅଛି ।

ବାରକେଶରୀ ଭକୁଆଙ୍କ ପରି ଚନ୍ଦନାଙ୍କର ଦୁର୍ବଳ ଶୋଥାଳିଆ ମୁହଁକୁ ଚାହିଁରହିଲେ । ସେହି ମୁହଁର ପାଟିରୁ ବେଶ୍ ଟାଣୁଆ କଥା ବାହାରି-ପାରୁଛି । ମା ପୁଅ ମିଶି ନିଶ୍ଚୟ ଗୋଟାଏ ଷଡ଼ଯନ୍ତ୍ର କରିଛନ୍ତି । ଓପୋଟିର ମା ସେ, ସଙ୍ଗେ ସଙ୍ଗେ ମୁଣ୍ଡଭିତରେ ଗୁଡ଼ାଏ ବୁଦ୍ଧି ଖୁନ୍ଦି ହୋଇଗଲାଣି । କଜିଆ କଲେ ଅଶାନ୍ତି ବଢ଼ିବ । କଜିଆ କରିବାକୁ ପଏଣ୍ଟ୍ ବି ମିଳୁନାହିଁ ।

ନରମିଯାଇ ସେ କହିଲେ, ଛାଡ଼ । ଗତସ୍ୟ ଶୋଚନା ନାସ୍ତି । ତା'ପାଇଁ ପୁଣି କେତେ ସମ୍ବନ୍ଧ ଆସିବ ।

ଆସିବ ତ । ହୁ କରି କେଉଁଠି ଜବାବ ଦେବ ନାହିଁ । ତମେ ଯେମିତି ସରଳିଆ ଲୋକ, ସହଜରେ ଭୁଲିଯିବ । ଦେଖିବା, ବୁଝିବା, ତାକୁ ପଚାରିବା । ମନ ମାନିଲେ ଯାହା କରିବା । ସେ ରାଜି ନ ହେଲେ ମୁଁ କାହିଁକି ବୋହୁ କରିବି ?

ଓହୋ, ବୁଝିଲି । ତା ମନ ମାନିବ, ସେ ରାଜି ହେବ !

ଯୁଗ ସେଇଆ ହୋଇଛି । ଆମ ଅମଳର ଚଳଣି ବଦଳିଲାଣି ।

ତା' ହେଲେ ସେ ଜବାବ୍ ଦେବ।

ସେଇଆ ଯେ, ତମ ମୁହଁରେ ସେ କୁହାଇବ ।

ଗୀରକେଶରୀ ଭାବେଣିରେ ପଡ଼ିଲେ । ତାଙ୍କର ମନେହେଲା ଯେପରି ଚନ୍ଦନା ପେଟଭିତରେ କେତେକଥା ଲୁଚାଇ ରଖିଛନ୍ତି । ନାରୀମାୟା ନାରାୟଣଙ୍କୁ ଅଗୋଚର । ନାରୀମାୟା ଜାଣି ସର୍ବଜ୍ଞାତା ଧାତାଙ୍କ ଧାରଣା ବାହାରେ । ଗୀରକେଶରୀ ମୁଣ୍ଡ ହଲାଇ ନିଜକୁ ନିଜେ କହୁଥିଲେ, ପୁଅଙ୍କ ମନ ମାନିବ, ସେ ରାଜା ହେବେ, ଆମେ ତାଙ୍କର ବୋଲକରା ଗୁମାସ୍ତା ହୋଇ ହୁକୁମ୍ ତାମିଲ୍ କରିବା ! ତେଣେ ଝିଅଙ୍କ ମନ ବି ମାନିଥିବ । ସେ ରାଜା ହୋଇଥିବେ । ରାଜଦୁଆରେ ବାହାଘର । ବାପମାନେ ବେଠିଆ । ବେଦୀ ଉପରେ ଲୋକଦେଖା ଫାରସ୍ କରିବେ । ହଉ, ଦେଖିବା ରହ ।

କଥା କଟାକଟି କରି ସ୍ୱାମୀଙ୍କର ଅଲଣା କ୍ରୋଧକୁ ଜଳାଇବାକୁ ଚନ୍ଦନା ମନ କଲେ ନାହିଁ । ସେ ଯଦି ବିରକ୍ତ ହେବେ, ବିକ୍ରମକୁ ଏଣୁତେଣୁ ବାରିକଥା ପଚାରିବେ । ବାପପୁଅଙ୍କ ମଧ୍ୟରେ ଅଶାନ୍ତି ଜନ୍ମିବ । ପୁଣି ସେ ବୁଢ଼ାବୟସରେ ଝିଅକରି ଗାଁକୁ ବାହାରିଯିବେ । ଏ କାଳର ଗୀତ ବଳେ ସେ ବୁଝିବେ । ଏବକା ପିଲାଙ୍କ ଢଙ୍ଗ ଜାଣିବେ । ଘରଆଡ଼େ ଆଖି ପକାନ୍ତୁ । ଦେଖନ୍ତୁ, ଶିଖନ୍ତୁ, ବୁଝନ୍ତୁ ।

କଟକ ଯିବେ ଯିବେ ହୋଇ ଗୀରକେଶରୀ ଗ୍ରାମରେ ନଅ ଦଶ ଦିନ ରହିଗଲେ । କେହି ତାଙ୍କର ଗୋଡ଼ହାତ ଧରି ବଳପ୍ରୟୋଗ କରି ଅଟକାଇ ରଖିନାହିଁ । ପୁରୁଣା ଲୋକଟି ଅତି ପୁରାତନ ଶିରପଲ୍ଲି ଗ୍ରାମରେ ନିଜକୁ ଜଣେ ନବାଗତ ପଦବ୍ରଜୀ ଅତିଥି ରୂପରେ ଦେଖୁଥିଲେ ।

ପୁତୁରା ଶୁଭକେଶରୀ, ବାର ତେର ବର୍ଷର ପୁଅ, ଏବେ ତାଙ୍କର ସଙ୍ଗୀ ହୋଇଛି । ଶାବନା ରଙ୍ଗର ପିଲାଟି, ମଧ୍ୟଭଲିଆ ସ୍ୱାସ୍ଥ୍ୟ । କୁଲୁକୁଲିଆ ଛିଷିତ୍ ଲମ୍ବାଳିଆ ମୁହଁ । ଫଜଲପୁର ଉଚ୍ଚ ବିଦ୍ୟାଳୟର ଅଷ୍ଟମ ଶ୍ରେଣୀର ଛାତ୍ର ।

ଭଲ ପଢ଼େ । ବିଚକ୍ଷଣ ପିଲା । ଗ୍ରାମର ପ୍ରତି ଘରର ହାଲଚାଲ ସେ ଜାଣେ । ସଂସାରଯାକର ଖବର ସେ ରଖିଛି । ପଚାରିଲେ କହେ । ଶାନ୍ତିକେଶରୀଙ୍କ ଜୀବନର ସବୁ ଅଦ୍ଭୁତ କାହାଣୀ ମନଦେଇ ଶୁଣେ । ବିଶ୍ୱାସ କରେ ।

ଶାନ୍ତିକେଶରୀ ଏବେ ତାକୁ ଭଲ ପାଇଲେଣି । ତାକୁ ଓ ଛଅ ସାତ ବର୍ଷର ସାନ ପୁତୁରା ମୋହନକୁ ସଙ୍ଗରେ ନ ବସାଇଲେ ସେ ଭୋଜନ କରନ୍ତି ନାହିଁ । ମନରେ ଯାହା ଥାଉ, ତାଆ ଦେଢ଼ଶୁରଙ୍କୁ ଭକ୍ତି ଦେଖାଇ-ବାରେ, ଶାଗମୁଗ ଯାହା ରାନ୍ଧିଥିଲେ ପଠାଇ ପରଷିବାରେ ବାସନ୍ତୀ ହେଳା କରନ୍ତି ନାହିଁ ।

ବିକ୍ରମ ଉପୋଟି ହେବାର ଖବର ପାଇଲା ଦିନରୁ ମନେ ମନେ ସେ ଉଡ଼ିଯାଇଛନ୍ତି । ଚନ୍ଦନାଙ୍କ ସଙ୍ଗରେ ମିଳାମିଶା କରିବାକୁ ସେ ଉପରେ ପଡ଼ି ଆସି ଗୋଳେଇ ହେଉଛନ୍ତି । ବୋହୂବେଳ ପରି ଗୋଡ଼ରେ ହାତ ଦେଉଛନ୍ତି । ମନରେ ଈର୍ଷା, କେବେ ମୁହଁରେ ଅଭଦ୍ର ବ୍ୟଙ୍ଗସୂଚକ କଥା ।

ଚନ୍ଦନା ସେଥିରେ ଅବଗୁଣ ପାଆନ୍ତି ନାହିଁ । ବାସନ୍ତୀ ନଜେ ସିନା ଆଡ଼େଇ ରହୁଥିଲେ, ସେ ତାଙ୍କୁ କେବେହେଲେ ହେଳା କରିନାହାନ୍ତି । ସାନ ପିଲା ମୋହନକୁ ସେ କୋଳକାଖ କରୁଛନ୍ତି । କହନ୍ତି, ହ ମ ! ବାପ ଦାଦ ଦୁଇ ଭାଇ, ମା ଝିଅ ଦୁଇ ଜାଆଙ୍କର ବୁଢ଼େଟି ତ ଛୁଆ । ଠାକୁରେ ଆଇଷ ନହତ ଦଅନ୍ତୁ । ଧନ ସିନା ନାହିଁ, ମନ ଊଣା ନ ହେଉ । ଘର ଭିନ୍ନ ହୁଏ, ଅବସ୍ଥା ସେତକ କରାଏ । ରକ୍ତ ଯେ ଗୋଟିଏ ଧାର ।

ଏତେଦିନକେ କଥାର ମର୍ମ ବୁଝିଲି, ଚନ୍ଦନା ! ତମର ଜ୍ଞାନଚକ୍ଷୁ ଖୋଲିଲା । ଦେଖିବ ରହ, ଆମର ଏଇ ଶୁଭକେଶରୀ ବିକ୍ରମକୁ ଝପିଯିବ । ପିଲଟିଦିନରୁ ସେ ଦୁନିଆକୁ ଚହ୍ନିବାକୁ ଚେଷ୍ଟା କଲାଣି । ଭାବ ବିସ୍ତର, ସ୍ଥାନ କାଳ ପାତ୍ର ଦେଖି କାମ କରିବାକୁ ହୁଏ, ଏହା ଜାଣିଲାଣି । ବିକ୍ରମକୁ ବେଶି ଗେହ୍ଲା କର—

ମୁଁ ତାକୁ କେବେ ଗେହ୍ଲାକଲି ମ ? ସେ ଯଦି ଗେହ୍ଲା ହୋଇଥିବ, ତା ମାମୁଁ ମାଇଁ କରିଥିବେ । ସେ କି ଅନ୍ୟାୟ କାମ କରିପକାଇଛି ଯେ ତାକୁ

କାନ୍ଦୁଛ ? ତମରି ଅଭାବ ଅସୁବିଧା ବେଳେ କାହାଠୁ କ'ଣ ଆଣି, ମୋ ପୁଅକୁ ବନ୍ଧା ଦଉଥିଲ । ସେଥିରେ ସେ ରାଜି ନ ହେଲା, ନିଜେ ବନ୍ଧାରୁ ମୁକୁଳିଲା, ସେଥିକି ତା'ର ଦୋଷ ଦେଉଛ ? କାଳୀ ଝିଅଟାକୁ ସେ କାହିଁକି ବାହା ହୁଅନ୍ତା ? କାହିଁକି ତାକୁ ମୁଁ ବୋହୂ କରନ୍ତି ?

ତମରି କୁ-ଶିକ୍ଷା !

ଘର ଝିଙ୍କିଲେକି ତୁମେ ! ସଂସାରରେ ଆଉ କିଛି କଥା ନାହିଁ, କେବଳ ସେଇ ଗୋଟିଏ ବିଷୟକୁ ଘୋରଟେଇ ହେଉଛ ! ମୋର କୁଶିକ୍ଷା ହେଲା ତ ହେଲା । ଭଲ ହେଲା । ମୋ ପୁଅ ପାଇଁ ମୁଁ ସୁବର୍ଣ୍ଣ-ପ୍ରତିମା ବୋହୂ କରିବି । ଧନଦରବ କିଛି ମୋର ଲୋଡ଼ା ହେବ ନାହିଁ । ସେ ବୋହୂ ହୋଇଥିବ ଏମିତିକା । ଦେଖିବ !

ଚନ୍ଦନା ଉତ୍ତ୍ୟକ୍ତ ହେଲେ । ତାଙ୍କର ଉତ୍ତ୍ୟକ୍ତତା ପାଇଁ ସେ ସାମାନ୍ୟ ଅପ୍ରେଯାଉଥିଲେ । ଦୁର୍ବଳତା ପାଇଁ ସେ ଘନଘନ ନିଶ୍ୱାସ ଛାଡ଼ୁଥିଲେ । ଭିତର-ପିଣ୍ଡା ଉପରୁ ପରିବାକଟା ପାଖରୁ ସେ ଘରଭିତରକୁ ଉଠିଗଲେ ।

ସପମସିଣା ଉପରେ ଟେକାପକାଇ ଖାଲିଦେହରେ ସେଇ ପିଣ୍ଡା-ଉପରେ ବୀରକେଶରୀ ବସିଥିଲେ । ଆଖିରେ ଚଷମା । ଆଗରେ ରଖାହୋଇଛି ବିଡ଼ାଏ ପୁରୁଣା ଖବରକାଗଜ । ସେଗୁଡ଼ିକ ଓଲଟାଇ ଓଲଟାଇ ସେ ଆଖି ବୁଲାଉଥିଲେ । ଦେଶର ହାଲଚାଲ ସମ୍ବନ୍ଧରେ ସାମାନ୍ୟ ଧାରଣା ନ ଥିବାରୁ ଗ୍ରାମର ସାଧାରଣ ଲୋକ ଏପରି କି ବୁଢ଼ୀ ମାଇପିଙ୍କ ପାଖରେ ସେ ଭଳୁଆ ହେଉଛନ୍ତି । ଆକାଶରୁ ଚୋଳ ବନେଇଁ ଚନ୍ଦ୍ରନେଇଁ ଅଦ୍ଭୁତ ଘଟଣାମାନ କହିଲେ କିଏ ବିଶ୍ୱାସ କରିବ ?

ଚନ୍ଦନା ଘରଭିତରେ ଟିଣବାକ୍ସ ଖୁଡ଼୍‌ଖାଡ଼ କରୁଥିଲେ । ପଦାକୁ ବାହାରି ହସହସ ହୋଇ ବୀରକେଶରୀଙ୍କ ହାତକୁ, ଛିଟିରେ ଗୁଡ଼ା ହୋଇଥିବା ଖଣ୍ଡିଏ ଫ୍ଲୋଟ ଫଟୋ ବଢ଼ାଇଦେଲେ ।

ବୀରକେଶରୀ ଫଟୋ ଦେଖି, ଗଠି ପଢ଼ି କହିଲେ, ମୋର ମନେ ପଡ଼ୁଛି । ଜୟନ୍ତୀର ଯିବା ଆଗରୁ ଏ ଗଠି ପଢ଼ିଛି । ଅନୁପା ଜଲ୍ପୀର ଫଟୋ ନିଜେ ରଖି ଏଇଟିକୁ ତମ ପାଖକୁ ପଠାଇଥିଲା ।

ଏଇଟିକୁ ଦେଖ ।

ଚନ୍ଦନା ଆଉ ଖଣ୍ଡିଏ ଫଟୋ ବୀରକେଶରୀଙ୍କ ହାତକୁ ବଢ଼ାଇ-ଦେଲେ ।

ଚଷମା ସଜାଡ଼ି ବୀରକେଶରୀ ବାରମ୍ବାର ଓଲଟ ପାଲଟ କରି ଦେଖିଲେ । କେବେ ଉଠିଛି ଜାଣିପାରିଲେ ନା'ହିଁ । ପଛରେ କାରୁକାର୍ଯ୍ୟ-ଭରା ଶ୍ରେଷ୍ଠ ମନ୍ଦିରର କାନ୍ଥ । ଆଗରେ ଗୁଡ଼ି ଗୁଡ଼ି ଠିଆ ହୋଇଛନ୍ତି ହସହସ ତରୁଣ ତରୁଣୀ । ଆନନ୍ଦ ଓ ଚନ୍ଦନାଙ୍କର ଯୁବାବୟସର ରୂପ ! ପ୍ରଭେଦ କେବଳ ଆଧୁନିକତାରେ ।

ଚିହ୍ନିଲେ । ବିକ୍ରମ ପାଖରେ ଅନୁପା । ଫଟୋତଳେ ଲେଖାହୋଇଛି—
ସତ୍ୟପଥେ ଧର୍ମପଥେ ନେଇଯାଅ ମୋତେ—

ତାଙ୍କର ମୁହଁ ବିବର୍ଣ୍ଣ ହୋଇଆସିଲା । ଫଟୋଖଣ୍ଡି କୋଳରେ ପକାଇ ସେ ଆଖିରୁ ଚଷମା କାଢ଼ି ତଳେ ରଖିଲେ । କପାଳ ଶପୂଣୁ ଦୃଷ୍ଟି ତଳକୁ କରି ମୁଣ୍ଡ ଝୁଙ୍କାଇଲେ । ମନରେ କେତେ ଭାବନା ଖେଳିଗଲା, ଯାହା ଭାଷାରେ ପ୍ରକାଶି ହେବ ନାହିଁ ।

ଚନ୍ଦନା ଫଟୋ ଦୁ'ଖଣ୍ଡି ଓ ପୁରୁଣା ଗଠିଟି ଉଠାଇନେଲେ । କୋଳରେ ପୁରାଇ ପୁଣି ପଢ଼ିବାକଥାରେ ମନ ଦେଲେ । କହିଲେ, ସେ ଭାଇଭଉଣୀ ପିଲାଦିନରୁ ଏକାଠି ବଢ଼ିଛନ୍ତି, ପରସ୍ପରକୁ ସ୍ନେହ କରନ୍ତି । ମୋ ଅନୁ ପରିକା ଝିଅଟିଏ ଯଦି ମୁଁ ବୋହୂ କରିପାରନ୍ତି !

କାହୁଁ ପାଇଲ ?

ବିକ୍ରମ ଗତଥର ଆସି ତା ମନିବ୍ୟାଗ୍‌ରୁ ଟଙ୍କା କାଢ଼ି ମତେ ଦେବାବେଳେ ଏଇ ଶ୍ରେଷ୍ଠ ଫଟୋଖଣ୍ଡି ଗଳିପଡ଼ିଲା । ମୁଁ ତାକୁ ଉଠାଇଲି । ସେ କହିଲା, ତୁ

ତାକୁ ରଖିଥା, ବୋଉ ! ତୁ ଖୁସିପାଉ ବୋଲି ଏ ଫଟୋ ତୋ’ପାଇଁ ଉଠାଇ-ବାକୁ ଅନୁପା ମୋତେ ବାଧ୍ୟ କଲା । ତୋତେ ଦେବାକୁ ସେ କହିଥିଲା ।

କେବଳ ଫଟୋ, ଚନ୍ଦନା ?

ସେକଥା ମୁଁ ପଚାରିନାହିଁ । ବସନ୍ତ ମୋତେ କହିନାହିଁ । ସେଥିରୁ କ’ଣ ମିଳିବ ?

ବୁଝିଲି । ଅନୁପାର ଉପଦେଶରେ ବସନ୍ତ ସର୍ବାଙ୍କ ପାଖକୁ ଚିଠି ଲେଖି ଉର୍ବଶୀର ସମ୍ବନ୍ଧ ଭଙ୍ଗାଇଦେଲା ।

ଚନ୍ଦନା କହିଲେ, ଅନୁପାର ଉପଦେଶ ବସନ୍ତ ନେବାର ପିଲା ନୁହେଁ । ଏଇ ବୁଦ୍ଧି ହେଲା ତମର ? ଅନୁପାକୁ ତମେ ଭୁଲ ବୁଝିଛ । ପଢ଼ିଲଟି ସେଇ ପୁରୁଣା ଚିଠିଟି, ଉର୍ବଶୀକୁ କେତେ ପ୍ରଶଂସା କରି ସେ ଲେଖିଛି ?

ହୋଇଥିବ ।

ସାରକେଶରୀ ଖବରକାଗଜ ପଢ଼ାରେ ମନ ନବେଶିଲେ । ମନ ଧାଇଁ-ଯାଉଥିଲା ସେଇ ଯୁଗଳ-ଫଟୋ ଉପରକୁ । ଖବର ଉପରେ ଆଖି ନବଦ୍ଧ ରହିଣୁ ମନ ଅସଂଖ୍ୟ ପ୍ରଶ୍ନର ଉତ୍ତର ଖୋଜି ବୁଲୁଥିଲା । ସେସବୁ ପ୍ରଶ୍ନ କାହାରିକୁ ପଚାରିହେବ ନାହିଁ । ନିଜ ପାଖରେ ଉତ୍ତର ମାତ୍ର ଗୋଟିଏ । ସେ ଉତ୍ତର ହତାଶାପ୍ରଦ । ଛି-ଛିକର । ଲଜ୍ଜାଦାୟକ । ଅନ୍ୟ ଏକ ଦୃଷ୍ଟିରେ ସେ ଉତ୍ତର ଶୁଭକାରକ । ଦୁଃଖହାରକ । ଏବକା ବେହିଆ ଯୁଗରେ ଚଳୁଛୁ ତ !

ଷଡ଼ଯନ୍ତ୍ର ପାଇଁ କେଉଁମାନେ ଦାୟୀ ? ଚନ୍ଦନାଙ୍କର କେତେଦୂର ହା’ତ ଅଛି ? ବୁଝିବାକୁ ହେବ । ସିଧା ଆଙ୍ଗୁଠିରେ ଘିଅ ଉଠେନାହିଁ । ଭଲ ବେଳରେ କଅଁ କେଇ ପଚାରି କଥାଟି ତାଙ୍କ ପେଟରୁ କାଢ଼ିବାକୁ ହେବ । ଛନ୍ଦ କପଟ ତାଙ୍କୁ ଜଣାନାହିଁ । ସେ ନିଜେ ଗୋଟିଏ ଚିଠିରେ ଜୟପୁରକୁ ଲେଖିଥିଲେ—ଅନୁପା ବାଉରିଆକୁ ଘୃଣାକରେ । ସଞ୍ଜସୁନ୍ଦରା ବଜାଣୀ, ଛତରୀ, ଅଭଦ୍ର । ଲେଖିଥିଲେ—ପୁଅଝିଏ ମୁହଁରୁ ଲାଜପାଣି ପୋଛି ସଙ୍କରୁଜାରେ ବାହା ହୋଇପଡ଼ୁଛନ୍ତି ।

କାହା କଥା ମନରେ ରଖି ସେ ଲେଖିଥିଲେ ?

କହିବେ, ବନେ କହିବେ ।

ଘଣ୍ଟଅଧରେ ସେ ସେହି ପ୍ରସଙ୍ଗ ଉଠାଇବା ଆଗରୁ ଦକ୍ଷିଣେ ମାତୁଳକନ୍ୟା ଝଷପୁରରେ ସତମିଛ କେତେ ଘଟଣା ବର୍ଣ୍ଣନା କଲେ । ଚନ୍ଦନା ପଦ ମଞ୍ଜାଡୁଥିଲେ । ମନକର୍ଣ୍ଣ ଦେଇ ଶୁଣୁଥିଲେ । କୌଣସି ଆଗ୍ରହ ପ୍ରକାଶ କରୁ ନ ଥିଲେ । ଉତ୍ତର ଦେଉ ନ ଥିଲେ ।

ବୀରକେଶରୀ କହିଲେ, ଆମର ଇଆଡ଼େ ବ କେଉଁଠି କେଉଁଠି ଚଳିଲାଣି ।

ଚନ୍ଦନା କହିଲେ, କୁଳଚୁଡ଼ା, ଅମାନ୍ତ, ଅସନା ବେଭାର । ଶୁଣୁଛି । ଜାଣି ଜାଣି ବାପ ଓ ମାମୁଁ, ମା ଓ ମାଈଁ ସେପରି ବେଭାରରେ ହାତ ଦେଉ ନ ଥିବେ । ଘରକୁଜାରେ କେଉଁଠି କଅଣ ଅସୁବିଧା ଘଟୁଥିବ । ନ କଲେ ନ ଚଳେ ପାଇଁ ବେଳ ନାଶ ହେଲା ପରି କରି ମହତ ରଖୁଥିବେ ।

ପୁଅ ଆମର ବଡ଼ ମଣିଷ ହେଲାଣି । ଅନୁପା ଓ ହୃଦମ ପାଖାପାଖି ଠିଆ ହେଲେ, ତମ କହିବା ମତେ ଲକ୍ଷ୍ମୀନୃସିଂହ ପରି ଦିଶନ୍ତି । ପିଲାଟିଦିନୁ ଗେଲରେ ଗେଲରେ ଅନୁପାକୁ ଦେଖି କୋଳକରି ତମେ କହ ଚନ୍ଦନା, ଏଇଟିକୁ ମୁଁ ବୋହୂ କରିବ । ଆନନ୍ଦ ଓ ଇନ୍ଦିରା କ'ଣ ଅରାଜି ହେବେ ?

ବୀରକେଶରୀଙ୍କର ପାଦ ଉପରେ ଚନ୍ଦନାଙ୍କର ହାତପାପୁଲି ନିଶ୍ଚଳ ହେଲା । ଘରଭିତର ଅନ୍ଧାର । ମଶାରି ବାହାରେ ଷଣକର ମାରବତାକୁ ମଶାପଲର ଭଉଁଭଉଁ ଦୋହଲାଉଥିଲା । କେଉଁ ଅଜଣା ଭୟରେ ତାଙ୍କର ଦୁର୍ବଳ ଦେହ ଥରି ଥରି ଉଠୁଥିଲା । କି ଉତ୍ତର ଦେବେ ସେ ଠିକ୍ କରି ପାରୁ ନ ଥିଲେ ।

ବୀରକେଶରୀ ପୁଣି ପଚାରିଲେ, ତୁନ ରହିଲ ଯେ ?

ପାଦ ପାଖରୁ ସାମାନ୍ୟ ଘୁଞ୍ଚିଆସି ଖିନ୍ତଭରା ସ୍ୱରରେ ଚନ୍ଦନା କହିଲେ, ଛି ଛି, କେଡ଼େ ଲଜ୍ଜାକର କଥା ତମ ମନକୁ ଆସୁଛି ! ଗେଲରେ ଗେଲରେ ମାଆମାନେ ସେପରି କହନ୍ତି । ଅନୁପା ପରି ସୁନ୍ଦର ବୋହୂଟିଏ

ମୁଁ ଖୋଜୁଥିଲି । ସ୍ନେହରେ ମୁଁ ସେପରି କହୁଦେଉଥିଲି । ମୋର କ'ଣ ଭୁଲ ହେଲା ?

ସାଇକେଶଣ ହସିବାକୁ ଲାଗିଲେ । କହିଲେ, ତମେ ସେପରି କାହିଁକି ଭାବୁଛ ? ଯେଉଁ ଫଟୋଟି ପାଖରେ ରଖିଛ, ଫୁଟିଲଇହୋଇ ପାଞ୍ଚଜଣଙ୍କୁ ଦେଖାଉଥିବ । ସେମାନେ କ'ଣ ମନେକରୁଥିବେ ?

ବାସନ୍ତୀକୁ ଦେଖାଇଛି । ସେ ଖାଲି ହସିଲା । ରଙ୍ଗୁଲିକୁ ଦେଖାଇଛି । ମୋ ଝିଆରି ବୋଲି ଆଗରୁ କହିଦେଇଥିଲେ ସେ ଭୁଲରେ କହି ନ ଥାନ୍ତା —ଅଲେଖା ଝାରସା ପାଦମା କୁଆଡ଼େ ବୋହୂଯାକରେ ଏ ଗାଁରେ ସବୁଠୁ ବେଶି ସୁନ୍ଦର, ହେଲେ ଏ ବୋହୂ ଗାଆଁରେ ଗୋଡ଼ ଦେଲେ ତା' ଗରବ ବୁଡ଼ିବ । ଯେମିତି ମୁଁ କହିଲି ସେ ମୋ ଝିଆରି, ରଙ୍ଗୁଲି ହାତେ ଜଭ କାଢ଼ି କାନ ମୋଡ଼ିଦେଲା । ତମ ମନକୁ ବି ଅସଣ୍ଣା ଚିନ୍ତା ଆସୁଛି ?

ଆରେ ନାଇଁ, ନାଇଁ, ଚନ୍ଦନା ! ମୁଁ ଭାବିଲି, ଲୋକଙ୍କ ସମାଲୋଚନାକୁ ପରୁରେ କଏ ? ଯାହା ଚଳୁଛି, ସେତକ ଠାଣ ମନରେ ଚଳାଇପାରିଲେ ସବୁ ବଗରୁ ଭଲ । ମୋର ଧାରଣା ହେଲା, ସେ ବହେଁ ପରସ୍ପରକୁ ସ୍ନେହ କରନ୍ତି ।

କାହିଁକି ସ୍ନେହ ନ କରିବେ ? ମୋ ପେଟରୁ ଆଉ ଗୋଟାଏ ଝିଅ ଜନମିନାହିଁ ଯେ ସ୍ନେହକଙ୍ଗାଳ ବହେମ ତାକୁ ସ୍ନେହ ଦେବ, ତା'ଠାରୁ ସେ ସ୍ନେହ ପାଇବ । ଏକାଠି ବଢ଼ିଲେ, ଏକାଠି ପଢ଼ିଲେ । ଆତଯାତ, ହସଖେଳ । ସେମାନେ ବାଦଚ୍ଛେଦ, ଭେଦଭାବ ଜାଣନ୍ତି ନାହିଁ ।

ବୁଝିଲି, ସବୁ ବୁଝିଲି । ରାତି ବେଶୀ ହେଉଛି । ଶୋଇପଡ଼ । ହେଇଟି, ମୁଁ ଆଖି ବୁଜିଲି । ଆନନ୍ଦ ଓ ଉଦ୍‌ବେଗଙ୍କୁ ବେଳ ଭଣ୍ଡି ପରିଲେ ହୁଅନ୍ତା ।

ହଁ, ଶୋଉଛୁ । ଆନନ୍ଦ ଇନ୍ଦିରଙ୍କୁ ପଚାରିବ, କ'ଣ ଅପମାନ ପାଇ, ଚଣ୍ଟିଆ ଖାଇ ସେ ଘରୁ ଚିରଦିନ ଲାଗି ବିଦା ହୋଇ ଆସିବାକୁ ? ମୋ ପୁଅଟାକୁ ସେ ଘରୁ ବାସନ୍ଦ କରିବାକୁ ? ଆନନ୍ଦ ମାରୁଆଡ଼ିର ଗୁମାସ୍ତା ନୁହେଁ ମ, ନିଜ ବୁଦ୍ଧିବଳରେ ସେ କୋଟିପତି ହୋଇଛି ।

ହଉ, ଶୋଇପଡ଼ !

ଶୋଉଛି । ସବୁଠୁ ବେଶି ବୁଦ୍ଧିଆ ବୋଲି ନିଜକୁ ସ୍ୱୀକାର କରୁଛ । ନିଜେ ବିଚାର କର, କ'ଣ ହୋଇପାରୁଛ । ଭଙ୍ଗା ଦେହ ଘେନି ଏ ବୟସରେ ପୁଣି ଜୟପୁର ଯିବାକୁ ଗୋଡ଼ ଟେକି ରହିଛ । ଘରେ ରହି ଘରର ତତ୍ତ୍ୱ ନେଲେ କେତେ କଥା ହୁଅନ୍ତା । ଏ ଘର ହସିଉଠନ୍ତା । ବେଳ ନ କଟିଲେ ଭାଗବତ ପଢ଼ନ୍ତ । ମୁଁ ଶୁଣନ୍ତି । ସେଇଥିରେ ମନ ମଜିଗଲେ ବାରବୁଲିଆ ଭାବନା ମନରେ ପଶନ୍ତା ନାହିଁ ।

ହୁଁ । ଭଲ ଉପଦେଶଗୁଡ଼ାଏ ଦେଉଛ ।

ମୋ ଉପଦେଶ ମୂଳରୁ ମାନିଥିଲେ ଆମର ଅବସ୍ଥା ଏମିତି ବାରଣ୍ଡା ଢ଼'କଣା ହୋଇ ନ ଥାନ୍ତା । ଲୋକେ ତୁଳସୀ ଚଉରା ପରି ତମକୁ ପବିତ୍ର ମଣନ୍ତେ । ସମ୍ମାନ ଦେଖାନ୍ତେ ।

ତମ ଉପଦେଶ ମାନି ଖବରକାଗଜ ଓ ରାଜନୀତି ଚର୍ଚ୍ଚା ଛାଡ଼ି, ଭାଗବତ ଓ ଧର୍ମଚର୍ଚ୍ଚାରେ ମନ ଦେଲେ, ଲୋକେ ମତେ ସତେ ପବିତ୍ର ତୁଳସୀ-ଚଉରା ମଣିବେ, ଚନ୍ଦନା ! ମୁଁ ସେ କଥା ମାନୁଛି । ଲୋକଙ୍କର ପ୍ରକୃତି ଏବେ କୁକୁରିଆ ହୋଇଗଲାଣି । କେଉଁ କଥାର ଆଲୋଚନାକୁ କେଉଁ ଆଡ଼କୁ ଓଟାରିନେଉଛ ! ପୁଅ ବାହାଘର ବିଷୟ ପଡ଼ିଥିଲା । ମୁଁ ଆଜି ସେଥିରେ ମୁଣ୍ଡ ଖେଳାଇବାକୁ ଚାହେଁ ନାହିଁ । ତମେ ଜାଣ, ତମ ପୁଅ ଜାଣନ୍ତୁ । କର୍ତ୍ତା ହେବାକୁ କହିବ, କର୍ତ୍ତା ହେବ ।

ସେଇଆ ହେଲା ।

ଭୂଣ୍ଡର ଆଲୋଚନା ସରିଲା ।

ଅନ୍ଧାର ରାତିର ନୀରବତା ଘୋଟିଗଲା । ସେଇ ନୀରବତାକୁ ସାମାନ୍ୟ ମୁଖର କରୁଥିଲା ମଶାରି ବାହାରେ ଅଗଣନ ମଶଙ୍କର ମିଳିତ ଅବସାଦ ଶବ୍ଦ । ସେଇ ଶବ୍ଦ ସତେକି ମଶାରି ଭେଦ, ଦୁଇଟି ପ୍ରୌଢ଼ତ୍ୱ-ବନ୍ଦନା ମୁଣ୍ଡ ଭିତରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ଯେଉଁ ଉତ୍ତର ସେ ଦେଲେ, ତାଙ୍କର ସ୍ୱାମୀ ସେଥିରେ ସନ୍ତୁଷ୍ଟ ହୋଇଛନ୍ତି । ଶାନ୍ତିରେ ଶୋଇପଡ଼ିଲେଣି । ଚନ୍ଦନା ବୁଝୁଥିଲେ, ସେ ନିଜେ ସନ୍ତୁଷ୍ଟ ହୋଇପାରୁ ନାହାନ୍ତି ।

ସତେ, ତାଙ୍କୁ ନ ପଚାରି ଲୁଲୁପୀ ପରି ସୁନ୍ଦରୀ ଗୁଣବତୀ ଝିଅକୁ ବାହା ହେବାକୁ କାହିଁକି ବସନ୍ତ ମନା କରିଦେଲା ? କେଉଁଠୁ ସେ ଟଙ୍କା ପାଇଲା ଯେ ତା'ର ମା'ଙ୍କ ପାଖକୁ ପଠାଇଥିଲା ? ତାଙ୍କ ପାଖରୁ ଘଟଣା ଗୋପନ ରଖିଥିଲା ? ଲୁଲୁପୀର ଫଟୋ ଲୁଚାଇ ନିଜେ ଥିବା କେବକାର ପୁରୁଣା ଫଟୋ, ତା' ସଙ୍ଗରେ ଉପରେ ପଡ଼ ଅନୁପା ଟଙ୍କା ପଠାଇ ଦେଇ-ଥିଲା କାହିଁକି ? ଏ ଫଟୋରେ ଆଜି ଦୁଇ ଭଉଣୀ ଓ ସାନନ୍ଦ ଠିଆ ହୋଇ ନାହାନ୍ତି କାହିଁକି ? କେଉଁ ମନ୍ଦିର ଆଗରେ କାହା ପରି ସେମାନେ ଠିଆ ହୋଇଛନ୍ତି ?

ଆଖିରେ ଲୁହ । କୋହ ଉଠୁଛି ।

ଚନ୍ଦନା ସେଇ କୋହକୁ ଚୁପି ଚୁପି ରଖି, ଧୀରେ ଧୀରେ ମୁଣ୍ଡ ଏପାଖ ସେପାଖ କରୁଛନ୍ତି । ଇନ୍ଦିରଙ୍କୁ ଦୋଷ ଦେବାକୁ ମନ ହେଉଛି । କିନ୍ତୁ, କାହିଁକି ଦୋଷ ଦେବେ ? କଅଣ ହୋଇଛି କି ? ସତେ ଯଦି କିଛି ମନ୍ଦତସର ଘଟଣା ଘଟେ, ତାଙ୍କର କି ଥାଏ ?

ସେ ପୁଅର ମା !

କଟକ ଆସିଲା ପରେ ତାଙ୍କର ମନର ଧାରଣା ବଦଳିଗଲା । ଦୁଇଦିନ-କାଳ ପୁରୁଣା ଓ ନୂଆ କଟକର ବଡ଼ ବଡ଼ ରାସ୍ତା, ଗଳି, ଉପଗଳି ଭିତରେ ଉଦ୍ଦେଶ୍ୟହୀନ ହୋଇ ବୁଲି ସେ ବୁଝିପାରିଲେ, ସେ କେତେ ନଗଣ୍ୟ । ତାଙ୍କ ଅମଳର ଛୋଟ ନାଳାଧୂଳିଭରା କଟକ ନୂଆ କଟକ ଭିତରେ କେଉଁଠି ହଜି-ଯାଇଛି ।

ଚିହ୍ନି ହେଉନାହିଁ । ଯେଉଁଠା ସନ୍‌ସନ୍ଆ ଅପନ୍ତରା ହୋଇ ପଡ଼ିଥିଲା, ଯେଉଁଠି ଗଦାଗଦା ବାଲି, ନାଗଅଇର ବଣ, ଗୁଷଜମି, ଅସୁମାର ପଙ୍କ ପୋଖରୀ ଥିଲା, ସେଠାରେ ନୂଆ ନୂଆ ଇନ୍ଦ୍ରଭବନ ତୋଳାହୋଇଛି । ଗଲା ଆଇଲା ନତିଦିନଆଙ୍କୁ ମିଶାଇଲେ କୁଆଡ଼େ ଲୋକଗହଳି ଦୁଇଲକ୍ଷକୁ ଟପିଲାଣି । ତାଙ୍କ ପିଲା ଅମଳରେ ଥିଲା ପଚାଶ ହଜାର ।

ଆନନ୍ଦଙ୍କ ଘର କବା ଘରଟାଏ ଯେ ? ହାଡ଼ିବନ୍ଧୁଙ୍କ ଘର ଟିକଏ ଆଖିଦୁରୁଶିଆ ହୋଇଛି । ସେ ଧନକୁବେର ହୋଇଛନ୍ତି । ତାଙ୍କର ବଡ଼-ଲୋକ ଢଙ୍ଗ ନାହିଁ । ମଣିଷକୁ ସେ ନାକ ଟେକନ୍ତି ନାହିଁ । ଆଦର କରନ୍ତି । ସମ୍ମାନ ଦିଅନ୍ତି ।

ପିଲାଦିନର ବନ୍ଧୁ ବୋଲି ଚିହ୍ନିଲେ । ଦୁଃଖସୁଖ ହେଲେ । ପୃଥିକାକୁ ଡାକି ଚିହ୍ନାଇଦେଲେ । ତାଙ୍କର ଚର୍ଚ୍ଚା କରିବାର ଦାୟିତ୍ୱ ପୃଥିକାଙ୍କ ଉପରେ ନ୍ୟସ୍ତ କରି, ଜନୈକ ବଚନ କନ୍ଧ କାର୍ଯ୍ୟ ଉପଲକ୍ଷରେ ହାଡ଼ିବନ୍ଧୁ ବିଦାୟ ନେଲେ ।

ପୁଅ ତିନିହେଁ ବିଭିନ୍ନ ବେପାରର ଦାୟିତ୍ୱରେ ନିଯୁକ୍ତ ହୋଇଛନ୍ତି । ପୃଥିକାଙ୍କ କଥାରେ, କେହି କାହାକୁ ଊଣା ନୁହନ୍ତି ।

ମୋ ବାଉଶିଆର ବୁଦ୍ଧି ସବୁଠୁ ସରସ । ଭଗବାନ ତାକୁ ଦୁର୍ଘଟନାରେ ପକାଇଲେ, ଭାଇ ! ଗୋଟିଏ ହାତ ଏବଯାଏ ଅଚଳ ରହିଛି । ଏବେ ଅଳ୍ପ ଅଳ୍ପ ଉଠିଲାଣି । ଗୋଟିଏ ଗୋଡ଼ ସାମାନ୍ୟ ଚଳୁଥିଲା । ଏବେ ତଳେ ଭରା ଦେଇ ବାଡ଼ି ଧରି ବାଉଶିଆ ଚାଲିଲାଣି ।

ଭଗବାନଙ୍କ କୃପାରୁ ସେ ଶୀଘ୍ର ଆରୋଗ୍ୟ ହୋଇଯିବ, ଭଉଣୀ ! ତମକୁ ସମୁଦୁଣୀ ଡାକିବାକୁ ମୋର ମନ କହୁଛି ।

ସମୁଦୁଣୀ କ'ଣ ହୋଇ ନ ଥାନ୍ତି କି ? ପିଲାଟିଦିନରୁ ଅନୁପାକୁ ବୋହୂ କରିବ ବୋଲି ସଂକଳ୍ପ କରିଥିଲି । ଦୁଇବର୍ଷ ହେଲା ଜିଦ ଧରିବସିଲା । ସେମାନେ ରାଜି ହୋଇଥିଲେ । ଜବାବ ହଁଆ ହୋଇଥାନ୍ତା । ଯାହାସବୁ ଶୁଣିଲି, ବାର ଦୁର୍ନାମ, ମୋ ଆଖି ଖୋସିହୋଇଗଲା । ଛି, ଛି ! ବେମହତ ଘର । ବୟସ ଯେତିକି ବଢ଼ୁଛି, ତମ ଶଳାଭାଉଜ ଇନ୍ଦିରା ସେତିକି ପିଲା ହେଉଛନ୍ତି । ପାଠ ପଢ଼ାଇଲା ଭଲ କଲା ଗୋ, ତା ବୋଲି ଝିଅ ଦି'ଟାଙ୍କୁ ଆକଟ କରିବ ନାହିଁ ? ଅଧନଙ୍ଗୁଳୀ ବେଶରେ ଯାହାପାରି ତା' ସାଙ୍ଗରେ, ନାଟତାମସା କରିବାକୁ, ସିନେମା ଥିଏଟର ଦେଖିବାକୁ, ମନ୍ତ୍ରୀ ଉପମନ୍ତ୍ରୀ, ହାକିମହୁକୁମାଙ୍କ ବେକରେ ଫୁଲମାଳ ଦେବାକୁ, ତାଙ୍କ କୋଠିରେ ନାଚିବାକୁ ଛାଡ଼ିଦେବ ? କହିଲ ଭାଇ, ତମେ ଜାଣିବା ଶୁଣିବା ଲୋକ, ତମେ କହିଲ, ବାପ ମା ହୋଇ ତମ ପିଲାଙ୍କର ଭଲମନ୍ଦ ଦୃଷ୍ଟିରୁ ଯଦି ତମେ ନ ବିଚାରିବ, ଆଉମାନେ ବିଚାର ନ କଲେ ତାଙ୍କର ଦୋଷ ହେବ ? ସତ ହେଉ, ମିଛ ହେଉ, ଏ ମୁହଁରୁ ସେ ମୁହଁ, ବାର ଦୁର୍ନାମ ରଟିଲା । କାନରେ ବାଜିଲା । ମୋ ପିଲାଏ ଶୁଣିଲେ । ମୁଁ ସେ ସମ୍ବନ୍ଧ ଭାଙ୍ଗିଦେଲି ।

ଏ ବିଷୟରେ ଅଧିକ ଆଲୋଚନା ଏଡ଼ାଇବାକୁ ବିଷୟ ବଦଳାଇ ବୀରକେଶରୀ କହିଲେ, ଯୁଗକୁ ନେଇ ଚଳନ । ଆମେ ଯେଉଁ ପୁରୁଣାକୁ ସେହି ପୁରୁଣା । କେଉଁଠି ହେବ କେଉଁଠି ନ ହେବ, ପ୍ରଜାପତିର ଘଟସୂତ୍ର । କେହି ଅନ୍ୟଥା କରିପାରିବ ନାହିଁ । ମଣିଷ ନିଜର ରୁଚିପ୍ରକାରେ ଭଲମନ୍ଦ ବିଚାରେ, ସମୁଦୁଣୀ ! ବିଚାରପ୍ରକାରେ କ'ଣ ହୁଏ ? ଯାହାର ଯେଉଁଠି ହେବାର ଥାଏ, ହୁଏ । କେହି ଖଣ୍ଡନ କରିପାରେ ନାହିଁ ।

ବୀରକେଶରୀ ଜାଣିସାରିଥିଲେ, ଯେଉଁ କୋଠରିର ଆଗ ବାରଣ୍ଡା ଉପରେ ମୋଜାଇକ୍ କରା ସୁନ୍ଦର ଚଟାଣରେ ଦାମିକା ଆସନରେ ସେ

ବସି, କାନ୍ହୁଙ୍କୁ ଆଙ୍ଗଣ ଦ୍ୱାରବନ୍ଧ ପାଖରେ ମୁଣ୍ଡରେ ଖଣ୍ଡେ ଓଢ଼ଣା ଦେଇ ଠିଆ ହୋଇଥିବା ଯୂଥିକାଙ୍କ ସଙ୍ଗେ କଥାଭାଷା ହେଉଥିଲେ, ସେଇ କୋଠରିରେ ଉଲୂପୀ ଅଛି । ସେ ସବୁ ଶୁଣୁଥିବ । ତାକୁ ଶୁଣାଇବାକୁ ସେ କହୁଥିଲେ ।

ବେଳ ଅପରାହ୍ଣ ଗଡ଼ିଗଲାଣି ।

ଯୂଥିକା ବାଇଗଣୀ ରଙ୍ଗର ବନାରସୀ ପାଟଶାଢ଼ି ପିନ୍ଧିଥିଲେ । ସେଥିରେ ସୁନେଲି ଜରିର କମ୍‌କୁଟ ଚଉଡ଼ା ଧଡ଼ି । ଦେହରେ କେଉଁ ଅଜଣା ଫୁଲପତ୍ରର ବଡ଼ବଡ଼ ବୁଟି । ନିଜର ସୌଭାଗ୍ୟର ନିଶ୍ଚିତ ପରିଚୟ ଦେବାକୁ ଶାଢ଼ି ଉପରେ ଲମ୍ବାଇଥିଲେ ଓଜନିଆ ତିନିସରିଆ ପଥରବସା ସୁବର୍ଣ୍ଣହାର । ତହିଁରୁ ଝୁଲୁଛି ଚକଚକିଆ ସୁଦର୍ଶନଚକ୍ର ପଦକ । କହୁଣିର ଅଧାଯାଏ ହାତରେ ଖଡ଼ୁ, ଚୁଡ଼ି, ଚୁଡ଼ି, ଆଉ କେତେ କ'ଣ, ଯାହାର ନାମ ତାଙ୍କୁ ଜଣାନାହିଁ । ଦୁବଳିଆ ଶଙ୍ଖମଲମଲ ବାହୁରେ ବାହୁଟି ।

ମନେ ମନେ ସେ ହସୁଥିଲେ । ମନଭିତରେ ଚନ୍ଦନାଙ୍କୁ ଆଗକୁ ଡାକ ବାହାପିଆପଣରେ ସେ କହୁଥିଲେ, ଦେଖ, ହସ, ତମେ କେଶରୀ-ଘରର ବୋହୂ ! ଗଙ୍ଗାରୁ ଗୋଦାବରୀ ରାଜ୍ୟ ବ୍ୟାପିଥିଲା । ତମର ଦାସୀ ପରିବାରୀ ଏସବୁ ଦେହରେ ମଣ୍ଡୁଥିଲେ । ଏ ପୁରୁଷରେ ଏସବୁ ତମେ ଛୁଇଁ ଛାଡ଼ିଦେଇଛ ।

— ଶ୍ରଦ୍ଧାରେ ଆମେ ଫୁଲପତ୍ର ମୁଣ୍ଡରେ ମଣ୍ଡିବା ଚନ୍ଦନା ! ହଳଦୀପାଣି ଭୁଣ୍ଡରେ ଧୋଇବା । ସେଥିରେ ସିଝିଥିବ ହପୂଞ୍ଜା ସାରୁ, ହଓଟି ବାଇଗଣ, ପୁଞ୍ଜିଏ ସଜନାଛୁଇଁ । ହଗଣ୍ଡା ଫୁଲବଡ଼ି ଭଜା, କେରିଏ ସଜନାସାଗ ଓ ମୁଠିଏ ଚନା ଚଙ୍କୁଡ଼ି ପଡ଼ିଲେ ଆହୁରି ମଜା । ଛୁଙ୍କଟା ଭଲ ଉଭୁରିଥିବ ଏକା । ବାରିରୁ ଗୋଟାଏ କଞ୍ଚାମରିଚ ଆଣି, ସେଇ ପାଣିରେ ଛୁଇଁଦେବାକୁ ହେବ ।

—ଏ ପୁରୁଷରେ କେଶରୀଙ୍କର ଏଇଥିରେ ଶରଧା । ତମର ଶରଧା ସବୁବେଳେ ହେବ ଅରୁଚିନାଶିକା କାଞ୍ଜିକାରେ । କେବଳ ଏଇ ପୁରୁଷରେ ଗୋ କେଶରୀଘର ବୋହୂ !

ବୀରକେଶରୀଙ୍କ ଗୌରବ ଓ ଟିକିଏ ଚନ୍ଦ୍ରାବଳୀଙ୍କର ଅନ୍ୟମନସ୍କ ଦେଖି ଯୂଥିକା କହିଲେ, ତମର ଡେରି ହେଉଛି କି ଭାଇ ! ମୋତେ ଆଜି ସମୁଦୁଣୀ ଡାକନା । ମନରେ ଦୁଃଖ ହେଉଛି । ମୋର ଲକ୍ଷ୍ମୀ-ବୋହୂକୁ ନ ଦେଖି କ'ଣ ତମେ ଚାଲିଯିବ ? ଚଉଠିଦିନ ଏକା ଇନ୍ଦିରା ଆସିଥିଲେ । ଆନନ୍ଦବାବୁ ଆସି ଆୟୋଜନରେ ସାହାଯ୍ୟ କରୁଥିଲେ । ମୁଁ ତାଙ୍କୁ ଚିହ୍ନିବି ନାହିଁ । ତମର ସେଇ ଶଳାଭାଉଜ ଇନ୍ଦିରା ଝିଅଟିକ, ଭିତରେ ଭିତରେ ହିଂସାରେ ଖାଲି ଜଳି-ଯାଉଥାଏ । କେଡ଼େ ହିଂସୁକୀ, ଦେଖ ଭାଇ ! ତା' ପିଲାମାନଙ୍କୁ ସଙ୍ଗରେ ଆଣିଲା ନାହିଁ । ଗାଡ଼ି ଦେଇ ରବିକୁ ପଠାଇଲି, ଛାଡ଼ିଲା ନାହିଁ । ବୋହୂକୁ ଦେଖିଲା, ଷୋଳଭରିର ଖୁବ୍ ସୁନ୍ଦର ହାରଟିଏ ତା ବେକରେ ପିନ୍ଧାଇଦେଲା ।

ବୀରକେଶରୀ କହିଲେ, ବଡ଼ଲୋକଙ୍କର ବଡ଼ ଗହଣା । ସେଥିରେ ସ୍ନେହ ଅପେକ୍ଷା ଲୋକଦେଖାଣ ଚକଚକ କରେ । ଗରିବଙ୍କର ସ୍ନେହ ମନ-ତଳେ ଥାଏ । ଜାଣିବାର ଲୋକ ଜାଣନ୍ତି । ନଜାଣିଲା ଲୋକେ କ'ଣ ବା ଦେଖିବେ ? ରୂପଶ୍ରୀକୁ ପିଲାଟିଦିନରୁ ମୁଁ ଜାଣିଛି । ମୋର ଝିଅଠାରୁ ବଳି ତାକୁ ମୁଁ ସ୍ନେହ କରୁଥିଲି । ସବୁ ସଦ୍‌ଗୁଣ ପାଇବ ତାଆରିଠେଇଁ । ସମସ୍ତେ ତାର ବୁଦ୍ଧି ଓ ଗୁଣର ନମୁନା ଦେଖିଛନ୍ତି । ଅତି ଅଳ୍ପ ପିତୃଭୁଲି ଲୋକ ତାର ଭୁଲ ଦେଖିଥିବେ । ରୂପଶ୍ରୀ ମୋର ଝିଅପରିକା, ସେଇ ହିସାବରେ ତମକୁ ସମୁଦୁଣୀ ଡାକିବା ମୋର ଫାବିଲା ।

ଖୁସି ହୋଇ ଯୂଥିକା କହିଲେ, ହେଲା, ହେଲା । ସେଇ ହିସାବରେ ତମେ ମୋର ସମୁଦି ହେଲ ସତେ ! କିନ୍ତୁ ସମୁଦି, ମୁଁ ଆଗରୁ ଶୁଣିଥିଲି, ଅନୁପମା ନିରୁପମାଙ୍କ ପାଖରେ ରୂପଶ୍ରୀରାଣୀର ଫଟୋ ବି ଦେଖିଥିଲି, ତମେ ତାକୁ ବୋହୂ କରିବାକୁ ସ୍ଥିର କରିଥିଲ ।

ରୂପଶ୍ରୀ ମୋର ବୋହୂ ହେଲା ନାହିଁ କି ? ହାଡ଼ବନ୍ଧୁ ମୋର ବାଲ୍ୟବନ୍ଧୁ ହିସାବରେ ବାଉରିବନ୍ଧୁ କଣ ମୋର ପୁତ୍ରପ୍ରତିମ ନୁହେଁ ?

ସମ୍ବନ୍ଧ ଭାଙ୍ଗିଲା କାହିଁକି ?

ବଣମ ଏବେ ସିନା ଡିପୋଟି ହେଲା, ଆଗରୁ ତାର କ'ଣ ବା ରୋଜଗାର ଥିଲା ? ଉଲୁପୀର ବାପା ମୋର ସାଙ୍ଗ । ଦେବନାଥଙ୍କର ମୌକା ପଡ଼ିଲେ ମାସକର ରୋଜଗାର ସଙ୍ଗେ ବଣମର ବର୍ଷକର ରୋଜଗାର ସମାନ ନୁହେଁ । କି ରୋଜଗାର ଆମେ କରିବୁଁ ? ହାଣ୍ଡିବନ୍ଧୁର ଦିନକର ରୋଜଗାର ସଙ୍ଗେ ସମାନ ନୁହେଁ । ତମେ ଆସିଥିଲ, ତମ କାନ୍ଧରେ ଲକ୍ଷ୍ମୀ । ଉଲୁପୀର ହାତ ମୁଁ ଦେଖିଛି । ତା' ହାତରେ ଲକ୍ଷ୍ମୀ । ସେ ଏ ଘରର ବୋହୂ ହେବାକୁ ଜନ୍ମ ହୋଇଥିଲା, ସମୁଦୁଣୀ !

ବୀରକେଶରୀ କଥାଟାକୁ ଗୋଳେଇଦେଲେ । ପୃଥିକାଙ୍କର ମନ କୁଣ୍ଢେ ମୋଟ ହେଲା ।

ବୀରକେଶରୀ ଉଲୁପୀକୁ ଦେଖିଲେ । ସେ ସୁନାର ଖୋଳରେ ପଶିଛି । ସର୍ବାଙ୍ଗରେ ଆଖିଝଲସା ସୁବର୍ଣ୍ଣର ଅଳଙ୍କାର । ମୁହଁରେ ବିଷାଦର କାଳିମା ଲେପା ହୋଇଛି । ଆଖିରେ ମୁକ୍ତାବିନ୍ଦୁ ପରି ଲୋତକ ଝଟକିଉଠୁଛି । ସେ ମୁହଁକୁ ଝୁହୁଁନାହିଁ । ପଦଟିଏ କଥା କହୁନାହିଁ ।

ସଞ୍ଜ ଆଗରୁ ସେ ଆନନ୍ଦଙ୍କ ବସାକୁ ଫେରିବାବେଳେ ବାଟରେ ବିଚାର କରୁଥିଲେ, ଉଲୁପୀ ତାଙ୍କର ମଉସାପଣକୁ ଦୁଇ ବିନ୍ଦୁ ଲୋତକ-ପାତରେ ବିଦାୟ ଦେଇଛି । ଆଖିର କରୁଣ ଚାହାଁଣିରେ ସେ ପ୍ରକାଶ କରିଛି, ତମର ସ୍ନେହ, ତମର ପ୍ରଶଂସା ମୋର ଲୋଡ଼ା ହେବ ନାହିଁ । ମୁଁ କୋଟିପତିର ବୋହୂ ହୋଇସାରିଛି ।

ହାଣ୍ଡିପାଖର ଅତିଥିଶାଳାରେ ତାଙ୍କର ରହଣି । ପୃଥ୍ୱୀଶଙ୍କର ଯଥା-ସମୟରେ ସବୁ ଯୋଗାଇଦେଉଛନ୍ତି । ଅନ୍ୟ ସମୟରେ ତାଙ୍କର ବୋଲ-ହାକ ଶୁଣିବାକୁ ଶାରଙ୍ଗ ଓ ବାହାରେ କାମ କରୁଥିବା ଅନ୍ୟ ଲୋକେ ଅଛନ୍ତି । ଅସୁବିଧାର ପ୍ରଶ୍ନ ଉଠୁନାହିଁ । କିନ୍ତୁ ଏଥର ଆନନ୍ଦଙ୍କ ଘରେ ସେ

ନିଜକୁ ଅବହେଳିତ ଅତିଥି ପରି ମନେକରୁଛନ୍ତି । ଆସିଲାବେଳେ ସେ ଖାଲି ହାତରେ ଆସି ନ ଥିଲେ । ଚନ୍ଦନା ନିଜେ ଚମତ୍କାର ଫେଣୀ ଖଜା ତିଆରି କରି ପିଲାମାନଙ୍କ ପାଇଁ ପଠାଇଥିଲେ । ତା' ସଙ୍ଗରେ ଜାତିଜାତିକା ବଡ଼ି, କେତକୀ ଖଇର, ଗୋଟା ଆମ୍ବର ଆମ୍ବୁର । ଇନ୍ଦିରା ଆଗ୍ରହରେ ଗ୍ରହଣ କରିଥିଲେ । ସେ ଓ ପିଲାମାନେ ଉଲଗି ହୋଇଥିଲେ ।

ସମ୍ମାନ ଦେଖାଇବାରେ କେହି ଊଣା କରିନାହାନ୍ତି । ଦୁଇଦିନ ରହି ସେ ଉପଲବ୍ଧି କରିସାରିଛନ୍ତି ଯେ ଆନ୍ତରିକତା ଉଭେଇଯାଇଛି । ଘନିଷ୍ଠତା ଦୂରେଇଯାଇଛି । ଭଦ୍ରତା ରକ୍ଷା କରିବାକୁ ଯେତିକି ସମ୍ବନ୍ଧ ଓ ଆଳାପ ଲୋଡ଼ା, ସେତିକି । ତାଙ୍କ ପାଖରୁ ଗଳ୍ପ ଶୁଣିବାକୁ ପିଲାମାନେ ଆଗ୍ରହୀ ନୁହନ୍ତି । ନିଜ ମନକୁ ସେମାନେ ପାଖକୁ ଆସୁନାହାନ୍ତି । ଡାକିଲେ ଯଦି କେହି ପାଖକୁ ଆସୁଛି, ଠିଆ ଠିଆ ପଦେ ଅଧେ ଉତ୍ତର ଦେଇ କୌଣସି ଆଗ୍ର ଦେଖାଇ ବାହୁଡ଼ିଯାଉଛି ।

ପଦାକୁ କାହା ପାଖକୁ ଆସିବାକୁ କ'ଣ ଇନ୍ଦିରା ବାରଣ କରିଛନ୍ତି ? ଏ ପ୍ରଶ୍ନ ପଚାରି ହେବ ନାହିଁ । ଇନ୍ଦିରା ଓ ଆନନ୍ଦଙ୍କ ସଙ୍ଗେ ଆଲୋଚନା କରିବାର ସୁଯୋଗ ମିଳୁନାହିଁ ।

ଆରଥର ପରି ଆନନ୍ଦ ଅଧିକ ସମୟ କାର୍ଯ୍ୟବ୍ୟସ୍ତ ରହୁଛନ୍ତି । ବୈଠକଘରେ ସେ ଥିବା ସମୟରେ ଲୋକଭିଡ଼ ହେଉଛି । କେତେ ଲୋକ କାଗଜପତ୍ର ଧରି ଆସୁଛନ୍ତି—ଓଡ଼ିଆ, ମାରୁଆଡ଼ୀ, ପଞ୍ଜାବୀ ତେଲେଙ୍ଗା ଓ ବଙ୍ଗାଳୀ ଲୋକ ।

ଏ ସହରରେ ସମସ୍ତେ ଅଛନ୍ତି । ବେପାରୀ, ଦଲାଲ, ଆଉ କିଏ କିଅଣ ଲୋକ । ଆନନ୍ଦ, ହାଡ଼ବନ୍ଧୁଙ୍କୁ ମିଶାଇ ସମସ୍ତେ ସେମାନେ ଏକା-ଜାତିଆ ବେପାରୀ ଭାଇ ।

ଆନନ୍ଦ ମୁହଁକୁ ଅନାଉନାହାନ୍ତି । ଅନାଇଲେ, ଖାଲି ଟିକିଏ ହସ ଓ ମୁଣ୍ଡ ହୋହଲା । କଳେବରର ଆକାର ବୃଦ୍ଧି ସଙ୍ଗେ ଧନସମ୍ପଦ ପାଦ

ମିଳାଇ ଆଗଉଥିବ । ମନରେ ବ ମାଂସ ଲଗିଥିବ । କାଲିକା ଅପବାର୍ଥ ଗୁରୁ ମୋହସ୍ତର ଆନ୍ଦଆ !

ଯେଉଁମାନେ ମଣିଷ ଚରାଉଛନ୍ତି, ସେମାନଙ୍କୁ ପଦମର୍ଯ୍ୟାଦା ଓ ଭବିଷ୍ୟତ ଦେଖାଇବାକୁ ଆନନ୍ଦ ଓ ତାଙ୍କ ଜାଣ୍ଟସ୍ତ୍ରୀମାନେ ସୁନାର ପାଞ୍ଜଣ ଧରି ଚରାଉଛନ୍ତି । ଭଲ ମେଜାଜ୍‌ରେ ଥାଇ, କେଉଁ ବଡ଼ବଡ଼ଆଙ୍କର ମେଳା ମଉଚ୍ଛବ ବଗିଗୃହେକରୁ ଫେରି ଆଉଥରେ ଇନ୍ଦବା ଏକଥା କହୁଥିଲେ ।

ଦାଉନଗୁଳୀ ଠାଣିରେ ସେ ଜିକଜିକ, ଚକଚକ ଦିଶୁଥିଲେ । ମହମହ ବାସୁଥିଲେ । ଦିଶୁଥିଲେ ଗଜାବସୁସିଆ ଗଜଗମନା ଟୋକୀଟିଏ ପରି । ଅାଖିପତାରେ ବହଳ କଜଳ, ଲମ୍ବ ଲଞ୍ଜିଆ । ଧଳା ଡୋଳା ଗୋଲାପୀ ଦିଶୁଥିଲା । ପରିହାସରେ କହୁଥିଲେ, ସେମାନେ ହେମବରଣୀ ପଛରେ ଧାଅନ୍ତି ମ ହଇ ! ସୀତାଙ୍କୁ ପଛେ ରାବଣେ ହେଇନେଉଛନ୍ତି ।

ହସି ହସି ଲେଟିଯାଉଥିଲେ ଇନ୍ଦବା । ଅନୁପା ଲାଜଲାଜ ହୋଇ ଇନ୍ଦବାଙ୍କର ହାତ ଧରି ଆକଟି କହୁଥିଲା, ପିଇସାଙ୍କୁ ତୁ ଏଣୁତେଣୁ କ'ଣ କହୁଛୁ, ବୋଉ ! ତୋ ଦେହ ଭଲ ନାହିଁ । ତୁ ଆ ଶୋଇବୁ ।

ସାରଘାଇ ମୋର ଅଛା ମଣିଷ ଲୋ, ଅନୁ !

ଅନୁପା ତାଙ୍କର ହାତ ଧରି ନେଇଯାଇଥିଲା ।

ଏଥର ଆସି ବାଳକେଶରୀ ଦେଖୁଛନ୍ତି ଓଲଟା ଗୀତ । ଇନ୍ଦବା ଆଉ ପିଲ ହେବାକୁ ଚେଷ୍ଟା କରୁନାହାନ୍ତି । ମଧ୍ୟବିତ୍ତ କୁଟୁମ୍ବର ମାନମହତ ଥିବା ଜଣେ ପକ୍‌କା ଘରଣୀ ସେ ହୋଇଛନ୍ତି । ସ୍ନେହମୟୀ ମାତୃମୂର୍ତ୍ତି । ଦେହରେ ପରିଷ୍କାର ଧୋବ ଶାଢ଼ି । ହାତରେ, ବେକରେ, କାନରେ ସାଧାରଣ ଗହଣା । ମୁଣ୍ଡରେ ଓ ସୀମନ୍ତରେ ସିନ୍ଦୂର । ଆଖିରେ ଅସ୍ପଷ୍ଟ କଜଳ । ଲମ୍ବ ଲଞ୍ଜି ନାହିଁ । ପାଦରେ ଅଳତାର ଗାର । ସବୁବେଳେ ସେ ଘରକାମରେ ବ୍ୟସ୍ତ ରହୁଛନ୍ତି, ଅବା ଠାକୁରଘରେ ଜଣାଣ କରୁଛନ୍ତି ।

ଷୀରକେଶରୀ ନୂଆ କଥାଟିଏ ଆବିଷ୍କାର କଲେ । ଉପର ମହଲାର ଶେଷ ବଖରା ଘରଟି ଏବେ ଠାକୁରଘର ନାମରେ ବିଦିତ ହେଲାଣି । ସେ ଘରେ ବହୁ ଦେବଦେବୀଙ୍କର ଛବି ସଙ୍ଗରେ କେତେ ଧର୍ମଗୁରୁଙ୍କର ବନ୍ଧାଇ ଫଟୋ ରଖା ହୋଇଛି । ସମସ୍ତଙ୍କ ମଝିରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ଛବି । ଇନ୍ଦିରା ସକାଳେ ନିତ୍ୟକର୍ମ ସାରି ଆଗ ସମସ୍ତଙ୍କୁ ଗୋଟି ଗୋଟି କରି ପ୍ରଣାମ ନ କଲେ ଜଳ ସ୍ପର୍ଶ କରୁନାହାନ୍ତି ।

ପୂଜାର ଆୟୋଜନ କରିବାରେ ଅନୁପା ତାଙ୍କୁ ସାହାଯ୍ୟ କରୁଛି ।

**ଆ**ସିଲା ପରଦିନ ଇନ୍ଦିରା ଓ ଅନୁପାଙ୍କ ସଙ୍ଗରେ ଠାକୁରଘରେ ପଶି ନିଷ୍କାମ ଭକ୍ତିରେ ଷୀରକେଶରୀ ମୁଣ୍ଡିଆ ମାରିଥିଲେ ।

ଆନନ୍ଦଙ୍କର ବଟୋଳ ବିଡ଼ମ୍ବିତ ଘରେ କେବେ କାହିଁକି ଏପରି ପରିବର୍ତ୍ତନ ଆସିଲା, ଷୀରକେଶରୀ ଅନୁମାନ କରିପାରିଲେ ନାହିଁ । ତାଙ୍କର ଚିରକା ସନ୍ଦେହୀ ମନରେ କେତେ ପ୍ରକାର ସମ୍ଭାବନା ଗୋଳେଇହେଲା— ଗୁଡ଼ସର ପିମ୍ପୁଡ଼ି ଖାଇଲା ? ଅସାବଧାନତା ପାଇଁ, ନିବୁଦ୍ଧିତା ପାଇଁ, କାହାର ବିଶ୍ୱାସଘାତକତା ପାଇଁ ବେପାର-ପାଏବାର ମଝିରେ କେଉଁଠି ବୋଇତ ଅଟକିଲା, ଅବା ବୁଡ଼ିଲା ? କେଜାଣି ଟଳମଳ ହେଉଛି ? ଠାକୁରମାନେ, ବାବାମାନେ ଉଦ୍ଧାରିବେ । ଅବା, ଆଉ କ କାରଣ ହୋଇଥିବ !

ପଚ୍ଚରିହେବ ନାହିଁ ।

ଯାହା ଜାଣିବାକୁ ସେ କଟକ ଆସିଥିଲେ, ସେତକ ସେ ଜାଣି-ସାରିଛନ୍ତି । ବିକ୍ରମ ବଡ଼ୁଦିନ ହେଲା ତା' ମାମୁଁଙ୍କ ବସାକୁ ଆସିନାହିଁ । ନୂଆ କାମରେ ଯୋଗ ଦେବା ପରେ ଗୋଟିଏ ଲଫାପା ଭିତରେ ଦୁଇଖଣ୍ଡି ଚିଠି ସେ ପଠାଇଥିଲା— ଖଣ୍ଡିଏ ଆନନ୍ଦଙ୍କ ପାଖକୁ ଓ

ଆଉଟି ଉଦ୍ଧବଙ୍କୁ । ଏକୋପଟେକୋ ଚଠି । ସେ ଦୁର୍ବିଙ୍କ ପାଖରେ କୃତଜ୍ଞତା ପ୍ରକାଶ କରିଥିଲା । ପ୍ରଣାମ ଜଣାଇଥିଲା । ସବୁ ପିଲାଙ୍କୁ ଗୋଟିଏ ଧାଡ଼ିରେ କଲ୍ୟାଣ ଜଣାଇ ଇତି କରିଥିଲା ।

ଏଠି ସେଠି ପଡ଼ି ଚଠି ଦି ଖଣ୍ଡି କୁଆଡ଼େ ହଜିଲାଣି ।

ଉଦ୍ଧବ କହିଲେ, କୃତଜ୍ଞତା ପ୍ରକାଶ କରି ଲେଖିଥିବା ଚଠିଟିରୁ ଅକୃତଜ୍ଞତା ପ୍ରକାଶ ପାଉଥିଲା, ଭାଇ ! ସେଥିପାଇଁ ଆମ ମନରେ ତିଳେ ହେଲେ ଦୁଃଖ ନାହିଁ । ପୁଅ ନୁହେ ତ, ଭଣଜା । ଆମର କର୍ତ୍ତବ୍ୟ ଆମେ କରିଛୁ । କେହି ନିନ୍ଦିପାରିବେ ନାହିଁ । ନିଜ ଗୋଡ଼ରେ ଠିଆ ହେବାର ଶକ୍ତି ବିଜମଙ୍କର ହୋଇସାରିଛି । ଆମେ କଲ୍ୟାଣ କରୁଛୁ, ସେ ସୁଖରେ ରହନ୍ତୁ । ବୁଢ଼ାଦିନେ ତମ ଦୁର୍ବିଙ୍କର ଦୁଃଖ ଯାଉ ।

ବୀରକେଶରୀ କହିଲେ, ସେ ନିଜେ ଆସି ତମ ଦୁର୍ବିଙ୍କର ପଦଧୂଳି ନେଇ ମୁଣ୍ଡରେ ମାରିଥାନ୍ତା । ପୁଅଠାରୁ ଅଧିକ କରି ତାକୁ ପାଳି ବଢ଼ାଇଥିଲ । ତେବେ, ନୂଆ ଚାକିରି, କାମ ଶିଖିବାରେ ବ୍ୟସ୍ତ ଥିବ ।

ସେଇଆ ହୋଇଥିବ, ଭାଇ !

ଏତିକି କହି ଉଦ୍ଧବ ଉଠି ଚାଲିଯାଇଥିଲେ । ତାଙ୍କ ପଛେ ପଛେ ଅନୁପା ।

ବୀରକେଶରୀ ଦେଖିଲେ, ଅନୁପା ଆଉ ସେ ପୂର୍ବର ଅନୁପା ହୋଇ ନାହିଁ । ସାଧାସିଧା ଓଡ଼ିଆଘରର ଝିଅଟିଏ ପରି ଦିଶୁଛି । ବଡ଼ଲୋକ ଓ ନବ୍ୟସଭ୍ୟ ଫେସନକୁ ଦୂରେଇଦେଇଛି । ଦୁର୍ବଳ ଦେଖାଯାଉଛି । ଦେହର ରଙ୍ଗ କମିଆସିଲାଣି । ମୁହଁରେ ବିଷାଦ ଓ ଗାମ୍ଭୀର୍ଯ୍ୟର ଛାୟା ।

ନିରୁପାର କିଛି ପରିବର୍ତ୍ତନ ହୋଇନାହିଁ । ତାର ସ୍ୱାସ୍ଥ୍ୟର ଉନ୍ନତି ହୋଇଛି ।

ସେ କହିଲା, କେବେ ବିଜଭାଇ ଭୁବନେଶ୍ୱରରୁ ଯାଇ ଢେଙ୍କାନାଳରେ ପହଞ୍ଚିଲେ, ସେକଥା ସେ ଆମକୁ ଜଣାଇଲେ ନାହିଁ । ସେ

ନିଶ୍ଚୟ ଆମ ଉପରେ ରାଗିଛନ୍ତି । ବୋଉ ବୋଧହୁଏ ତାଙ୍କୁ କେବେ କ'ଣ ଟାଣ କଥା କହିଛି । ବଡଭାଇ ଅଭିମାନୀ ଲୋକ । ମୁହଁରେ କିଛି କହିବେ ନାହିଁ । ସମସ୍ତଙ୍କ ପେଟରେ ରଖିଥିବେ । ନିଜର ସମ୍ମାନ ନିଜେ ଜଗି ଆଡେଇଯିବେ । ମୁଁ ତାଙ୍କ ପାଖକୁ ଢେଙ୍କାନାଳ ଠିକଣାରେ ଖଣ୍ଡେ ଚିଠି ଥରେ ଦେଇଥିଲି । ସେ ଉତ୍ତର ଦେଲେ ନାହିଁ । ମୁଁ ବି ତାଙ୍କ ଉପରେ ରାଗିଛି । ଭାବିଛି, ଆଉ କେବେ ତାଙ୍କୁ ଚିଠି ଲେଖିବି ନାହିଁ ।

ବୀରକେଶରୀ ହସିଲେ । କହିଲେ, ଭାଇଭଉଣୀମାନଙ୍କ ଭିତରେ ଏମିତି ମାନଅଭିମାନ ହେବା ସ୍ୱାଭାବିକ । ମୁଁ ତ ଢେଙ୍କାନାଳ ଯିବି, ମୋ ହାତରେ ତୁ ଓ ଅନୁ ଚିଠି ଲେଖି ଦିଅ । କେମିତି ସେ ଉତ୍ତର ନ ଦେବ ଦେଖିବି ।

ମୋର ଆଉ କିଛି ଲେଖିବାର ନାହିଁ, ପିଉସା ! ବୋଉକୁ ନ କହି ମୁଁ ମୋ ସାଙ୍ଗମାନଙ୍କ ସଙ୍ଗେ ବାଉଁଶଆଭାଇର ଭାରପା ଭଲ୍ଲୁପୀ ଭାଉଜଙ୍କୁ ଦେଖିବାକୁ ଯାଇଥିଲି । ଢମ କଥା ସତ, ପିଉସା ! ଭାରି ଚମତ୍କାର ବୋହୂ । ମୋ ସଙ୍ଗେ କଥାଭାଷା ହେଲେ । ଢମ କଥା ପଚାରୁଥିଲେ । ହାତ ଧରି ଅଟକାଇ ରଖିଲେ । ଜମା ସେ ଛାଡ଼ିଲେ ନାହିଁ । ଅପାକୁ ଯିବାକୁ କହୁଥିଲେ । ବଡଭାଇଙ୍କ ପାଖକୁ ସେହି ଭଲ୍ଲୁପୀ ଭାଉଜଙ୍କ କଥା ଲେଖିଥିଲି । ବଡଭାଇ ଯଦି ସେ ବାହାଘର ଭାଙ୍ଗିଦେଇ ନ ଥାନ୍ତେ··· !

ସେ ଭାଙ୍ଗିଲା ? ତୁ କେମିତି ଜାଣିଲୁ ?

ନିରୁପା ତାଙ୍କ ପ୍ରଶ୍ନର ଉତ୍ତର ଦେବାକୁ କୁଣ୍ଠା ପ୍ରକାଶ କଲା । ସେଇ ବାଣ୍ଡସରେ, ପାଖରେ ସାନନ୍ଦ ନୁଠୁଖୁନ୍ତୁ କରୁଥାଏ । ତା ଆଡ଼କୁ କଣେଇଁ ଗୃହିଁ ନିରୁପା ସ୍ୱର ନମ୍ର କରି କହିଲା, କଥା ଏକାନ ସେକାନ ହୋଇ ସମସ୍ତେ ଜାଣିଲେଣି । ଆପଣ କୁଆଡ଼େ ଭଲ୍ଲୁପୀ ଭାଉଜଙ୍କ ବାପାଙ୍କ ପାଖରୁ ଟଙ୍କା ଆଣି ବଡଭାଇଙ୍କୁ ଦେବେ ବୋଲି ଲେଖିଦେଇଥିଲେ ? ବଡଭାଇ ଟଙ୍କା ଶୁଝି ନିଜକୁ ମୁକାଳଛନ୍ତି । ସତ କି, ପିଉସା ?

ବୀରକେଶରୀ ଅବାକ୍ ହୋଇ ନିରୁପମାର ମୁହଁକୁ ଚାହିଁଲେ । ଭାବିଲେ, କିଛି ଗୋଟାଏ ଉତ୍ତର ନିଶ୍ଚୟ ଦେବାକୁ ହେବ । ଯେଉଁ ଉତ୍ତର ସେ ଦେବେ, ତାହା ଅବଶ୍ୟ ପ୍ରକଟ ହେବ । ମିଥ୍ୟାର ଆଶ୍ରୟ ନେବା ହିଁ ଶ୍ରେୟସ୍କର ମଣିଲେ ।

କହିଲେ, ବିକ୍ରମର ବୋଉ, ଖୁଡ଼ୀ ଓ ଅନ୍ୟମାନେ କାଳୀ କୋଠ କରିବାକୁ ରାଜି ହେଲେ ନାହିଁ । ପ୍ରସ୍ତାବଟା ଆଉ ନ ଉଠାଇବାକୁ ଲେଖି-ଦେବାପାଇଁ ମୁଁ ବିକ୍ରମକୁ କହିଥିଲି । ମୁଁ କେମାର ପଢ଼ୁଥିବାବେଳେ ଯେଉଁ ଟଙ୍କା ତା ବାପାଙ୍କ ପାଖରୁ ଉଧାର ଆଣିଥିଲି, ସୁଧମୂଳ ସହିତ ଶୁଝିଦେବାକୁ ମୁଁ ନିଜେ ତାକୁ ନିର୍ଦ୍ଦେଶ ଦେଇଥିଲି ।

ଅନୁପା ଆସି ପହଞ୍ଚିଗଲା । ନିରୁପାକୁ କହିଲା, କ'ଣ ବୁଢ଼ୀ ଘରଣୀ ପରି ଏତେବେଳଯାଏ ପିଉସାଙ୍କ ସଙ୍ଗେ ଗପୁଛୁ ? ତୁ କେତେକର, ସେ ସେ କେତେକର ! ବୋଉ ବିରକ୍ତ ହୋଇ ଠାକୁରଘରେ ପଶିଲାଣି । ତୁ ଯା, ତଳଘରେ ସୁରୂପା ପାଖରେ ଶୋଇବୁ । ନୋହିଲେ, ଶୋଇ ଶୋଇ ପଡ଼ିବୁ । ଦି'ପହର ଦି'ଟା ହେଲାଣି । ପିଉସା ବିଶ୍ରାମ କରନ୍ତୁ । ମୁଁ ବୈଠକ-ଘରେ ସାନନ୍ଦକୁ ରଖି ଅପେକ୍ଷା କରିଛୁ । କାଳେ ବାପା ଢେଙ୍କାନାଳରୁ ଫେରିବେ । ଆଜ ପୁଣି ତାଙ୍କର ପାରାଦ୍ୱୀପ ଯିବାର ଥିଲା । ଘରକୁ ନ ଫେରି ସେ ତେଣେ ତେଣେ ଗଲେ କି କ'ଣ । ଯା, ନିରୁ !

ତାର ଭାଷାରେ ଦୃଢ଼ତା ଥିଲା । ତାର ସୁନ୍ଦର ମୁହଁରେ ରୁକ୍ଷତା ଥିଲା । ତା'ର ଆଖିରେ ତିରସ୍କାରର ଆକଟିଲା ଚାହାଁଣି ଥିଲା । ନିରୁପା ସେହି ମୁହଁକୁ ଅନାଇ ଆଖି ନୋଇଁ ଦାଣ୍ଡଘରୁ ଧୀରେ ଧୀରେ ବାହାରିଗଲା । ସାନନ୍ଦ ତାର ସ୍କାର୍ଫ୍‌ର କାନ ଧରି ତା' ପଛେ ପଛେ ଗଲା । ସେ ପିଲାଟି ବି ସେହି ଗମ୍ଭୀର ମୁହଁ ଦେଖି, ସେ ମୁହଁର ଦୃଢ଼ ନିର୍ଦ୍ଦେଶ ଶୁଣି, ଅଜଟ ହେବାକୁ ସାହସ କରି ନ ଥିଲା ।

ମୁହୂର୍ତ୍ତକରେ ସେହି ମୁହଁ ଉପରୁ ଦୁଃଖଛାଇର କ୍ଷୀଣ ପରଦାଟି ଅପସରିଗଲା । ସେ ମୁହଁଟି ବଉଦମୁକ୍ତ ଚନ୍ଦ୍ରମା ପରି ବିକଶିତ ହେଲା । ଧୀର କୋମଳ କଣ୍ଠରେ ଅନୁପା କହିଲା, ଆପଣ ଟିକିଏ ବିଶ୍ରାମ ନିଅନ୍ତୁ, ପିଇସା ! ନନ୍ଦୁକୁ ଆକଟ ନ କଲେ, ସେ ଗପୁଡ଼ି ବସି ଗପୁଥିବ । ଦେଖୁଛନ୍ତି ତ ବୋଉ କପର ଉଦାସିଆ ହୋଇଛି !

କାହିଁକି ମା, ଅନୁ ?

ମୁଁ କହିପାରିବି ନାହିଁ । ଯେଉଁମାନେ ତା'ର ସାଙ୍ଗ ଥିଲେ, ସେମାନଙ୍କଠାରୁ ସେ ଦୂରେଇ ରହୁଛି । ସେମାନେ ଆସନ୍ତି । ବୋଉ ସେମାନଙ୍କ ସଙ୍ଗେ ପଦେଅଧେ କଥାଭାଷା ହୋଇ ଠାକୁରଘରେ ପଶି କବାଟ କଲେ । ସେମାନଙ୍କୁ ଭଲ କଥା କହି ବିଦାୟ ଦେବାର ଦାୟିତ୍ୱ ମୋ ଉପରେ ପଡ଼େ । ପିଲାଙ୍କର ତତ୍ତ୍ୱ ନେବାକୁ ସେ ଭୁଲିଯାଏ, ପିଇସା !

କାହିଁକି ଏପରି ହେଲା, ମା ?

କହିପାରିବି ନାହିଁ । ଆପଣ ମୋର ପିତୃତୁଲ୍ୟ । ଯାହା ମୁଁ ଅନୁମାନ କରୁଛି, ଆପଣଙ୍କ ପାଖରୁ ଲୁଚେଇବାକୁ ଚାହେଁ ନାହିଁ । ବାପାଙ୍କର ବେପାରରେ ପ୍ରଚୁର କ୍ଷତି ଘଟିଛି । ତାଙ୍କର ବନ୍ଧୁମାନେ, ପାର୍ଟନରମାନେ, ଅତି ବିଶ୍ୱାସୀ କର୍ମଚାରୀମାନେ, ତାଙ୍କୁ ଠକାକାଟି ବହୁ ଅର୍ଥ ନେଇଯାଇଛନ୍ତି । ସେ କୁଆଡ଼େ ଏବେ ଫମ୍ପା ବୋଇତ ଚଳାଇଛନ୍ତି । ଆଶାକରି ବସିଛନ୍ତି, ପ୍ରାଣପଣ ଉଦ୍ୟମ ବି କରୁଛନ୍ତି, ତାଙ୍କର ଫମ୍ପା ବୋଇତ ପୁଣି ପୂର୍ଣ୍ଣ ହେବ ।

ନିଶ୍ଚୟ ହେବ, ମା ! ଭଗବାନଙ୍କର କରୁଣା ହେଲେ ନିଶ୍ଚୟ ହେବ । ମଣିଷ ଉପରୁ ଈଶ୍ୱରଙ୍କର ବିଶ୍ୱାସ ତୁଟିଯାଇଛି । ମୁଁ ଏହା ବୁଝିପାରିଲିଣି । ସେ ଠାକୁରମାନଙ୍କର ଆଶ୍ରା ନେଇ ଭଲ କରିଛନ୍ତି । ଆଚ୍ଛା ମା, ବିକ୍ରମ କାହିଁକି ଏଠାକୁ ଆସୁନାହିଁ ? ଚିଠିପତ୍ର ଦେଉନାହିଁ ଶୁଣିଲି ? ତୁ କ'ଣ ତା' ପାଖକୁ ଚିଠି ଲେଖୁନୁ ?

ଶୁଣିଲି, ଆପଣ ଆଜି ରାତିଗାଡ଼ିରେ ଢେଙ୍କାନାଳ ଯାଉଛନ୍ତି । ବିଜୟଭାଇ ସେଇଠି ଅଛନ୍ତି । ମୋ ଗୋଲାପ ଦିନେ ମତେ ଫୋନ୍‌ରେ କହୁ-ଥିଲା । ଆପଣ ସବୁକଥା ବିଜୟଭାଇଙ୍କୁ ପଚାରିଲେ ସେ କହିବେ ।

ତୋ ଗୋଲାପ, ମାନେ, ବିଜୟମର କଲେକ୍‌ଟର ବିକାଶବାବୁଙ୍କର ସ୍ତ୍ରୀ ? ସେମାନଙ୍କ ସଙ୍ଗେ ବି ଦେଖାହେବ । ତାଙ୍କର ଭାଇ ସଞ୍ଜୀବବାବୁ ନା, ଯିଏ ଆମ ବିଜୟମର ସାଙ୍ଗ ? ମନେଅଛି । ବିଜୟ ବେକାର ହୋଇ ବୁଲୁଥିଲା-ବେଳେ ସେ ବିକାଶବାବୁଙ୍କୁ କହି ଚାକିରି ଖଣ୍ଡେ କରାଇ ଦେଇଥିଲେ । ସଞ୍ଜୀବବାବୁ ଉତ୍ତମ ଲୋକ । ତାଙ୍କ ସମ୍ବନ୍ଧରେ ତୋର ବାପାବୋଉଙ୍କ ପାଖରୁ ସବୁ ଖବର ମୁଁ ପାଇଛି । ଭାରି ଖୁସି ହେଲି । ଏଇଠି ତୋ ପଢ଼ା-ଘରେ ଆରଥର ତାଙ୍କୁ ମୁଁ ଦେଖିଥିଲି । ରୂପ ସ୍ୱାସ୍ଥ୍ୟ ଯେପରି ସୁନ୍ଦର···

ସେଗୁଡ଼ା ମୋ ଆଗରେ ଆପଣ କାହିଁକି ଗପୁଛନ୍ତି, ପିଇସା ? ସଞ୍ଜୀବବାବୁ ମୋ ଗୋଲାପର ଭାଇ । ପିଲାଦିନରୁ ସେ ଆମ ଘରେ କାରବାର; ଆମର କାରବାର ତାଙ୍କ ଘରେ । ଆମ ଘରର ବିଲେଇ-କୁକୁର ବୁଆ ତାଙ୍କୁ ଦେଖିଛନ୍ତି, ଜାଣିଛନ୍ତି ।

ଅନୁପାର ବାକ୍ୟବାଣରେ ବୀରକେଶରୀ ଆହତ ହେଲେ । ସେ ବୁଝିପାରିଲେ, ଏବକା ଝିଅ ଅନୁପା ନିର୍ବୋଧ ନୁହେଁ । କଥା ଆରମ୍ଭ କରୁଣୁ ସେ ତାଙ୍କୁ ବେଶ୍ ଘୁଟେ ପ୍ରହାର କରିଛି । ଝିଅଟା ଆଗରେ ତାର ବାହାଘର ପ୍ରସଙ୍ଗରେ ପଦେ କହି ସେ ଅନ୍ୟାୟ କରିଛନ୍ତି । ନିବୁଦ୍ଧିତାର ପ୍ରମାଣ ଦେଇଛନ୍ତି । ଅନୁପା କଥାଗୁଡ଼ିକ କହିଦେଇ ଟିକିଏ ଅନୁତପ୍ତ ହୋଇଛି କି ? ଆଖିରେ ତାର ଲୁହ ଛଳଛଳ ହେଉଛି ।

ସେ କହିଲେ, ମା ଅନୁ ! ମୋର ମନର ଆନନ୍ଦଭାବକୁ ମୁଁ ଅଟକାଇ ନ ପାରି କ'ଣ କହିଦେଲି । ତମେ ସବୁ ଏ ଯୁଗର ଝିଅ । ତମ-ମାନଙ୍କର ମନ ନିର୍ମଳ । ଚିନ୍ତା ସ୍ୱାଧୀନ, ଛଳନାହୀନ । ଏପରି ଧାରଣା ମୋର ଥିଲା ବୋଲି କହିହୋଇଗଲା ।

ଅନୁପା ଆଖିରୁ ଲୁହ ପୋଛି କହିଲା, ମୋର କଥା ଶୁଣି ଆପଣ ମନ-ଦୁଃଖ କଲେ । ବାରମ୍ବାର ମୁଁ ବୋଉକୁ କହିଆସିଛି ଯେ, ମୁଁ ଏମ୍. ଏ. ପାସ୍ ନ କରିବା ଯାଏ ବିବାହ କରିବି ନାହିଁ । କିନ୍ତୁ, ସେ ଲୋକଙ୍କର ସମାଲୋଚନାକୁ ଡରି ମୋର ବାହାଘର ସ୍ଥିର କରିଛି । ବାପା ରାଜି ହୋଇଛନ୍ତି । ଦିନବାର ସ୍ଥିର ହୋଇସାରିଛି ।

ତୋର ବାପା କହୁଥିଲେ, କ'ଣ ସବୁ ଅସୁବିଧା ଅଛି ବୋଲି ଦୁଇ ଅଢ଼େଇ ମାସ ଡେରି ହେବ । ଉଭୟ ପକ୍ଷ ସମ୍ମତ । ତୋ ସଙ୍ଗେ ଏସବୁ ବିଷୟରେ ଆଲୋଚନା କରିବା ମୋର ଉଚିତ ହୋଇନାହିଁ ।

ଅନୁପା ହସିଲା । କହିଲା, ଉଚିତ ହେଉ ଅବା ଅନୁଚିତ ହେଉ ଆପଣ ସେତିକି କରିସାରିଛନ୍ତି । ବାପାଙ୍କ କଥା ତ ଦୂରର, ଏ ବିଷୟରେ ମୋ ସଙ୍ଗେ ଆଲୋଚନା କରିବାକୁ ବୋଉ ବି କେବେ ସାହସ କରିନାହିଁ ।

ବୀରକେଶରୀଙ୍କର ହାଲୁକ ଶୁଖିଲା । ତାଙ୍କର ବାହାଦୁରି ଟଳମଳ ହେଲା । ତାଙ୍କ ତୁଣ୍ଡରୁ ବାକ୍ୟ ସ୍ଫୁରିଲା ନାହିଁ । ସେ ନିଜକୁ ନିଃସହାୟ ମଣିଲେ ।

ଅନୁପା ଆଉରି କାଠେ ପ୍ରହାର କଲା । ଆପଣ ଆଜି ସଞ୍ଜରେ ଢେଙ୍କାନାଳ ଯିବେ ପରା, ପିଇସା ! ମୋ ସଙ୍ଗେ ଯେଉଁ ଆଲୋଚନା ହେଲା, ମୁଁ ତ ପରଖିଅ, ଆପଣଙ୍କ ପୁଅ ବିକଭାଇଙ୍କୁ ସେତିକି ଜଣାଇଦେବେ ।

କାହିଁକି ମା ?

ସେ ଜାଣନ୍ତୁ । ଯାହା ବୁଝିବାର ସେ ବଳେ ବୁଝିବେ । ସଞ୍ଜୟବାବୁ କଲେଜ ଜୀବନରେ ତାଙ୍କର ବନ୍ଧୁ ଥିଲେ ।

କଥାଟିକି ବୀରକେଶରୀଙ୍କ ମୁହଁ ଉପରକୁ ଫୋପାଡ଼ି ଅନୁପା ସେ ଘରୁ ବାହାରି ଆସିଲା । ସେ ଦେଖିଲା, କେତେବେଳୁ ଆସି ତାର ବୋଉ ବୈଠକଘରର ଖୋଲା ବାରଣ୍ଡାରେ ଏକା ଠିଆ ହୋଇ ପଦାକୁ ଚାହିଁଛନ୍ତି । ଭାବିଲା, ବୋଧହୁଏ ସେ ତାକୁହିଁ ଅପେକ୍ଷା କରିରହିଛନ୍ତି । ଅନୁପା ତାର ମୁହଁ

ଭିତରକୁ ସ୍ୱାଭାବିକତାର ଢଙ୍ଗ ଆଣିବାକୁ ଚେଷ୍ଟା କରି ଖଞ୍ଜା ଭିତରକୁ ନ ଯାଇ ପୋର୍ଟିକୋ ଆଡ଼କୁ ମୋଡ଼ିଲା ।

ପଲଙ୍କ ଉପରେ ତଳକୁ ଗୋଡ଼ ଓହଳାଇ ବସି ମୁଣ୍ଡ ସାମାନ୍ୟ ଝୁଙ୍କାଇ ବୀରକେଶରୀ ଧ୍ୟାନରତ ଥିଲେ । ବୈଠକଘରର ବାରଣ୍ଡା ଉପରେ ଅନୁପା ଇନ୍ଦିରାଙ୍କ ଆଗରେ ଠିଆ ହେଲା । ଇନ୍ଦିରା ତା'କୁ କ'ଣ ପଚାରିଲେ । ଅନୁପା ତାଙ୍କୁ କଣ ଉତ୍ତର ଦେଇ ଭିତରକୁ ପଶିଲା ।

ବୀରକେଶରୀଙ୍କର ମନେହେଲା, ଇନ୍ଦିରା ଯେପରି ଖଟମଟ ହୋଇ ପୋର୍ଟିକୋକୁ ଓହ୍ଲାଇଲେ । ବୀରକେଶରୀ ପ୍ରମାଦ ଗଣିଲେ । ସେ ବୁଝିପାରୁଥିଲେ ଯେ କୌଣସି ଗୋପନୀୟ ଗୁରୁତର କାରଣ ପାଇଁ ସେ ଏଥର ଏ ଘରର ଅପେକ୍ଷା ଅଛନ୍ତି । ଭଦ୍ରତାକୁ ଜଗି, ବୋଧହୁଏ ନିଜର ସମ୍ମାନକୁ ଜଗି, ତୁମେ ଏଘରୁ ଚାଲିଯାଅ ବୋଲି ସେମାନେ କହୁନାହାନ୍ତି ।

ଆଦ୍ୟ ବୈଶାଖ । ମଧ୍ୟାହ୍ନର ତୀବ୍ର ତାତିକୁ ଭ୍ରୂକ୍ଷେପ ନ କରି ଇନ୍ଦିରା ପୋର୍ଟିକୋ ଭିତରୁ ବାହାରିଆସିଲେ । ଅବନ୍ଧା ମୁକ୍ତ କେଶ ପିଠି ଉପରେ ଦୋହଲୁଥାଏ ।

ବଚନିକା ପାଇଁ ବୀରକେଶରୀ ପ୍ରସ୍ତୁତ ହେଉଥିଲେ ।

ମଟରର ହର୍ଣ୍ଣର ଶବ୍ଦ ହେଲା । ଇନ୍ଦିରା ମଧ୍ୟପଥରେ ଠିଆ ହୋଇ ଗେଟ୍ ଆଡ଼କୁ ଚାହିଁରହିଲେ । ଟିକିଏ ଅପେକ୍ଷା କରି ଆଉଥରେ ହର୍ଣ୍ଣର ଶବ୍ଦ ଶୁଣି ଗେଟ୍ ଆଡ଼କୁ ମୋଡ଼ିଲେ ।

ବୀରକେଶରୀ ଅନୁମାନ କଲେ, ଆନନ୍ଦ ଢେଙ୍କାନାଳରୁ ଫେରି-ଆସିଛନ୍ତି । ବିଚାରିଲେ, ଭିତରୁ କବାଟ କିଳି ତାଙ୍କର ଶ୍ରାନ୍ତି ହରଣ କରିବାର ସୁଯୋଗ ଆସିଛି । ତାଙ୍କର ପ୍ରକାଶିତ ପ୍ରୋଗ୍ରାମ ପ୍ରକାରେ, ଇଚ୍ଛା ଥାଉ ବା ନ ଥାଉ, ଆଜି ସନ୍ଧ୍ୟାଗାଡ଼ିରେ ତାଙ୍କୁ ଢେଙ୍କାନାଳ ଯିବାକୁ ପଡ଼ିବ ।

ବିକ୍ରମ ସଙ୍ଗରେ ଦେଖା ହେଲେ, ତାଙ୍କର ଘରସଂସାର ଓ ଭବିଷ୍ୟତ ଯୋଜନା ସମ୍ବନ୍ଧରେ ଆଲୋଚନା ହୋଇ ଥରେ ସବୁ ବିଷୟର ସମାଧାନ

କରାହେବ । ସେ ନିଶ୍ଚିନ୍ତ ହେବେ। କିଏ ଖାତିର୍ କରେ ଆନନ୍ଦ ଓ ଇନ୍ଦିରାଙ୍କର ଧନ ଦଉଲତକୁ ? ସବୁ ଥାଇପାରେ, କିନ୍ତୁ ତାଙ୍କର କଲମରେ ପାଓ୍ୱାର୍ ନାହିଁ । ସେ ପାଓ୍ୱାର ଏ ଜନ୍ମରେ ତାଙ୍କୁ ମିଳିବ ନାହିଁ ।

ଶାରକେଶରୀ କବାଟ ଆଉଜାଇ ପଲଙ୍କ ପାଖକୁ ଫେରିଆସୁଁ ସଗର୍ବରେ ଚିନ୍ତୁଥିଲେ, ପୁଅ ତାଙ୍କର ପଦସ୍ଥ ହୋଇଛୁ । ନିଜ କଲମର ଶକ୍ତି ବୁଝି ଯଦି ସେ କାମ କରିପାରନ୍ତା··· !

ଯାହା କଥା ସେ ହେଉଥିଲେ ତାହାର ଭୁଣ୍ଡର ଭାଷା କାନରେ ବାଜିଲା । କୁତୂହଳ ଦମନ ନ କରି ସେ ପୁଣି କବାଟ ଖୋଲିଲେ । ଦେଖିଲେ, ଆମ୍ବାସାଡ଼ର କାର୍‌ଟି ତାଙ୍କର ଆଗରେ ଠିଆ ହୋଇ ଖରାରେ ଚକ୍‌ଚକ୍ ଦିଶୁଛି । କାର୍‌ର ପଛପାଖର କବାଟ ଡ୍ରାଇଭର ଖୋଲୁଛି । ଆଗପାଖର କବାଟ ଖୋଲି, ବିକ୍ରମ ପଦାକୁ ବାହାରି ଇନ୍ଦିରାଙ୍କ ପାଖରେ ଠିଆ ହୋଇଛି ।

ଆନନ୍ଦଚନ୍ଦ୍ର ପଛ ସିଟ୍‌ରୁ ଓହ୍ଲାଇ ବାହାରିଆସିଲେ । ତାଙ୍କ ପଛେ ପଛେ ସଞ୍ଜୟ ।

ବିକ୍ରମର ଦୃଷ୍ଟି ଶାରକେଶରୀଙ୍କ ଉପରେ ପଡ଼ିଲା । ସେ ବାରଣ୍ଡା ଉପରକୁ ଉଠି ତଳେ ମୁଣ୍ଡ ଲଗାଇ ଓଳଗି ହେଲା । ଶାରକେଶରୀ ଆନନ୍ଦରେ ଅଭିଭୂତ ହେଲେ । ତାଙ୍କର ଆଖିରେ ଲୋତକ ଛଳଛଳ ହେଲା । ତୁଣ୍ଡରୁ ବାକ୍ୟ ସ୍ଫୁରିଲା ନାହିଁ । ସେ ବିକ୍ରମର ହାତଟିଏ ଧରି ଘର ଭିତରକୁ ନେଲେ ।

ଝରକା ଖୋଲିଲେ । ବିଜୁଳି ପଙ୍ଖାର ବେଗ ବଢ଼ାଇଲେ । ବିକ୍ରମ ଆଗରେ ପଲଙ୍କରେ ବସି କହିଲେ, ଆଜି ସଞ୍ଜଗାଡ଼ିରେ ମୁଁ ଢେଙ୍କାନାଳ ଯାଇଥାନ୍ତି ।

ମୋତେ ସେଠାରେ ଯାଇ ନ ଥାନ୍ତେ, ବାପା ! ମୁଁ ଉପରବେଳା ଟ୍ରେନରେ, ଅବା ବସ୍‌ରେ କଟକ ଚାଲିଆସିଥାନ୍ତି । କାଲି ସକାଳୁ ଗ୍ରାମକୁ ଯାଇ ପୁଣି ସନ୍ଧ୍ୟାରେ ଫେରିଥାନ୍ତି । ଆଜି ଶନିବାର । ସୋମବାରଠାରୁ ଆମର ଗୋଟାଏ ପରୀକ୍ଷା ଆରମ୍ଭ । ଚାରି ଦିନ ଚାଲିବ ।

ପୁଣି ପରୀକ୍ଷା ?

ହଁ, ବାପା ! ସରକାରୀ ପରୀକ୍ଷା । ମାମୁଁ ତାଙ୍କର କେଉଁ କାମରେ ଢେଙ୍କାନାଳ ଯାଇଥିଲେ । ସଞ୍ଜୟବାବୁଙ୍କର ବି ପରୀକ୍ଷା ଯେ, ସେ ଦିନକ ଆଗରୁ ସୁନ୍ଦରଗଡ଼ରୁ ଆସି କଲେକ୍‌ଟର ବିକାଶବାବୁଙ୍କ ଘରେ ପହଞ୍ଚିଥିଲେ । ତାଙ୍କ ସ୍ତ୍ରୀ ଅଞ୍ଜନା ଦେବୀ ମାମୁଁଙ୍କୁ ଅଟକାଇଥିଲେ । ଯାଜପୁରରେ ଆଜି କ'ଣ ଜରୁରୀ କାମ ଥିବାରୁ ମାମୁଁଙ୍କର ଫେରିଆସିବାର କଥା । ସଞ୍ଜୟ-ବାବୁଙ୍କର ତାଙ୍କ ସଙ୍ଗେ ଆସିବାର ହେଲା । ମୋତେ ସଙ୍ଗରେ ଆଣିବାକୁ ସଞ୍ଜୟବାବୁ ମାମୁଁଙ୍କୁ ମନେପକାଇଦେଲେ । ମୁଁ ମନା କରିପାରିଲି ନାହିଁ ।

କାହିଁକି ମନା କରିଥାନ୍ତୁ, ପୁଅ ?

ସଞ୍ଜୟବାବୁଙ୍କୁ ତାଙ୍କ ସଙ୍ଗରେ ଆସିବାକୁ ସେ ମୋ ଆଗରେ ଅନୁରୋଧ କଲେ । ଅଞ୍ଜନା ପାଖରେ ବସି ଆମ ତିନିଙ୍କୁ ଖାଇବାକୁ ଦେଉଥାନ୍ତି । ମୋର ଆଜି କଟକ ଆସିବାର ଥିଲା ବୋଲି ଅଞ୍ଜନା କହିଥିଲେ । ସେଇଥି-ପାଇଁ ମତେ ସେ ନିମନ୍ତ୍ରଣ କରିଥିଲେ, ବାପା ! ବିକାଶବାବୁଙ୍କର କୋରାପୁଟ ବଦଳିହେଉଛି ।

ଆନନ୍ଦ ତୋତେ କିଛି ପଚାରିଲେ ନାହିଁ ?

ମୁଁ କିପରି ଅଛି, କେଉଁଠି ରହୁଛି, ଏହିପରି କେତେ କଥା ପଚାରି-ଥିଲେ । ଦୁଇ ତିନି ଦିନ ହେଲା ଆପଣ ଆସି ଏଠାରେ ଅଛନ୍ତି ବୋଲି ସେ ଖବର ଦେଲେ । ମୁଁ ଉପରେ ପଡ଼ି, ଗୋଡ଼ାଣିଆ ହୋ'ଇ, ତାଙ୍କ ସଙ୍ଗେ ଆସିବାକୁ କାହିଁକି ନିଜଚାଳ କରନ୍ତି ?

ବୀରକେଶରୀ ଟିକଏ ଚିନ୍ତିତ ହେଲେ । ସାମାନ୍ୟ ହସି କହିଲେ, ବୁଝିଲ । ଅନୁପାର ମହାପ୍ରସାଦ ନିର୍ବନ୍ଧରେ କଟକର ବହୁ ଗଣ୍ୟମାନ୍ୟ ଲୋକ ଯୋଗ ଦେଇଥିଲେ । ଶୁଣିଲି, ଗୋଟାଏ ବାହାଘରର ଆୟୋଜନ ମହାନଦୀ-କୂଳ ଗଡ଼ଗଡ଼ିଆରେ ହୋଇଥିଲା । ସେଥିରେ ତୁ ଯୋଗ ଦେଇପାରି ନ ଥିଲୁ । ସେଇଥିପାଇଁ ବୋଧହୁଏ ସେମାନଙ୍କ ମନରେ ଦୁଃଖ ହୋଇଛି । ଏଠାକୁ ତିନ ଦିନ ହେଲା ଆସି ମୁଁ ଏହା ଅନୁମାନ କରୁଛି ।

କ୍ଲାନ୍ତ ବିକ୍ରମର ମୁହଁରେ ରୁକ୍ଷଭାବ ଫୁଟିଉଠିଲା । ସେ ପଲଙ୍କ ଉପରୁ ଉଠି ତଳେ ଠିଆ ହେଲା । ବୀରକେଶରୀଙ୍କ ମୁହଁକୁ କଟମଟ କରି ଚାହିଁ ସେ କହିଲା, ତଥାପି ଆପଣ ଏଠାରେ, ସେମାନଙ୍କ ପାଖରେ ତିନ ଦିନ ରହିସାରିଲେଣି ! ଏତେ ଅପମାନ ସହି ଆପଣ କେଉଁ ଉଦ୍ଦେଶ୍ୟରେ ରହିଛନ୍ତି ଆପଣଙ୍କୁ ଜଣା ।

ଅପମାନ !

ନୁହେଁ ତ ଆଉ କ'ଣ ? ଅନୁପାର ମହାପ୍ରସାଦ ନିର୍ବନ୍ଧରେ ଯୋଗ-ଦେବାକୁ ସେମାନେ ଆପଣଙ୍କୁ ନିମନ୍ତ୍ରଣ ପଠାଇଥିଲେ ?

ନାହିଁ ତ !

ମୋତେ ମଧ୍ୟ ମାମୁଁ, ମାଈଁ ଅବା ଆଉ କେହି ଖବର ଦେଇ ନ ଥିଲେ । ଆମକୁ ସେମାନେ କେଉଁ ଦୃଷ୍ଟିରେ ଦେଖନ୍ତି, ଏଥିରୁ ଅନୁମାନ କରିପାରୁଥିବେ ।

ବୀରକେଶରୀ ଚିନ୍ତିତ ହେଲେ ।

ବିକ୍ରମ କହିଲା, ସେସବୁ ବିଷୟରେ ମୁଣ୍ଡ ଖରଚ କରି ଲାଭ ନାହିଁ । ଆପଣ ଲୁଗାପଟା ବାନ୍ଧି ପ୍ରସ୍ତୁତ ହୁଅନ୍ତୁ । କାର୍ ପଛରେ ମୋର ସୁଟ୍‌କେସ୍ ଓ ବେଡିଂ ଅଛି । ମୁଁ କଢ଼ାଇଆଣେ । ଆମେ ଟ୍ୟାକ୍‌ସି ଅବା ବସ୍‌ରେ ଗ୍ରାମକୁ ଯିବା । କାଲି ମୁଁ ଫେରିଆସିବି ।

ରହିବୁ କେଉଁଠି ତେବେ ?

ମୋର ଜଣେ ବନ୍ଧୁଙ୍କ ଘରେ । ଆଗରୁ ଚିଠି ଲେଖିଛୁ । ସେ ଏକା ଅଛନ୍ତି । ପଢ଼ାପଢ଼ି କରିବାକୁ ମୋର ସୁବିଧା ହେବ ।

ମାମୁଁ ମାଈଁଙ୍କୁ କହିଯିବୁ ନାହିଁ ?

ମାମୁଁ ବୋଧହୁଏ ବିଶ୍ରାମ ନେଉଥିବେ । ମାଈଁଙ୍କୁ ନିଶ୍ଚୟ କହି ଯିବି । ପିଲାମାନଙ୍କୁ ବି ଦେଖିଯିବି ।

ବିକ୍ରମ ପଦାକୁ ଆସିଲା ।

ବୀରକେଶରୀ ତାଙ୍କର ସାମାନ୍ୟ କେଇଖଣ୍ଡି ବିଛଣା ଓ ଲୁଗାପଟା ଯତ୍ନ ସହକାରେ ବାନ୍ଧୁଥିଲେ । ମନେ ମନେ ନିଜର ସବୁ ଦୁଃଖ ବେଦନାକୁ ଉପହାସ କରି ଗୁଣିହେଉଥିଲେ, ବିକ୍ରମ, କାଉଁରିଆ କାଠି ! ଭାଙ୍ଗି ଯାଇ-ପାରେ, ନଇଁବ ନାହିଁ । ଆହ୍ଲାଦ ପାଇଲେ, ଆଦର ଦେଖିଲେ ପୋଷା ମାନିବ । ସେଥିରେ ଊଣା ହେଲେ, ଲଙ୍ଗୁଡ଼ ପିଟି ନିଜ ରୂପ ଧରିବ । କେଶରୀ-ଉଦ୍ରର ପିଲା ସେ !

ଉଦ୍ଧବଙ୍କର ହସହସ ନିର୍ଦ୍ଦେଶରେ ବିକ୍ରମ ସଞ୍ଜୟର ଆଗରେ ବସିଲା । ଟେବୁଲ ଉପରେ ଟ୍ରେରେ ରଖାହୋଇଥିଲା କାଚର ଜାର୍‌ରେ ଚମ୍ପାଫୁଲ ରଙ୍ଗର ସରବତ ଓ ଛଗୋଟି ସରବତଭର୍ତ୍ତି ଗ୍ଲାସ । ଦୁଇଟି ଗ୍ଲାସ୍ ସଞ୍ଜୟ ଶେଷ କରିଦେଇଥିଲା । ଟେଲିଫୋନ ଟେବୁଲ ପାଖରେ ଠିଆ ହୋଇ, ରିସିଭର୍ ଧରି ମୁହଁରେ ଲଗାଇ ନିରୁପା 'ହଲୋ-ହଲୋ' ପାଟି କରୁଥିଲା । ଅନୁପା ବସିଥିଲା ଉଦ୍ଧବଙ୍କ ପାଖରେ । ସେ ଥରଟିଏ ବିକ୍ରମର ମୁହଁକୁ ଅନାଇଁ ପୂର୍ବପରି ଚକ୍ଷୁ ନତ କଲା ।

ଉଦ୍ଧବ କହିଲେ, ତମର ମାମୁଁ ଟିକିଏ ବିଶ୍ରାମ ନେଉଣୁ ତଳ-ଘରେ ଶୋଇପଡ଼ିଲେଣି । ସେମିତି ତାଙ୍କର ନିଦ । ବସୁ ବସୁ ଶୋଇ-ପଡ଼ିବେ । କେବେ କେବେ ପୁଣି ନିଦ ହୁଏ ନାହିଁ ଯେ ରାତିସାରା ଛଟପଟ ହେଉଥାନ୍ତି । ଏବେ ଉଠିବା ସଙ୍ଗେ ସଙ୍ଗେ କହିବେ, ମୁଁ ପାଇଖାନ ଯିବି । କେତେବେଳେ ସେ ଉଠିବେ ତା'ର କେଉଁ ଠିକଣା ?

ବିକ୍ରମ କହିଲା, ଆମେ ଏକସଙ୍ଗେ ଆସିଲୁଁ । ସହଜ ସହଜ ବାହାରିପଡ଼ିଲେ ସନ୍ଧ୍ୟାଆଗରୁ ଆମେ ଗ୍ରାମରେ ପହଞ୍ଚିପାରିବୁଁ । ରିକ୍ସା ଖଣ୍ଡେ ସାରଙ୍ଗ ହାତରେ ମଗାଇଥିଲା । ହେଇଟି, ସେ ଆଣିଲାଣି ।

ରିସିଭରଟି ଥୋଇ ନରୁପା ହଲଦୋହଲ ପାଖକୁ ଆସିଲା । ସଞ୍ଜୟ ପାଖରେ ବସି ଗେଧ୍ୱେଇ କହିଲା, କେହି ଜବାବ ଦେଉନାହାନ୍ତି । ମାଉସୀ ବୋଧହୁଏ ଶୋଇପଡ଼ିଛନ୍ତି । ମଉସା ନ ଥିବେ । ତମେ ଏବେ କାହିଁକି ଘରକୁ ଯିବ ? ଗୃହ ଉପରଘରେ ଟିକଏ ରେଷ୍ଟ୍ ନେବ । ଘୁଇ ଲେଉଟିଲେ ଘରକୁ ଯିବ ।

ଇଢବା କହିଲେ, ସେଇଆ କର, ସଞ୍ଜୟ !

ସଞ୍ଜୟ ମୁରୁକେଇ ହସୁଥିଲା । ଆଖିକୋଣରେ ନରୁପାକୁ ଚାହିଁ ବିକ୍ରମର ଗମ୍ଭୀର ମୁହଁ ଉପରକୁ ଦୃଷ୍ଟି ଫେରାଇଲା । କହିଲା, ତମେ ସର୍ବତ୍ ପିଇଲ ନାହିଁ ଯେ ବିକ୍ରମବାବୁ ? ଟ୍ରେନରେ ଆସି ନିଶ୍ଚୟ ଶୋଷଉଥିବ ।

ସଞ୍ଜୟ ହାତରେ ସର୍ବତ୍ଭରା ଗିଲାସଟିଏ ଧରି, ସାମାନ୍ୟ ଉହୁଁକି ବିକ୍ରମଆଡ଼କୁ ବଢ଼ାଇଦେଲା । ବିକ୍ରମ ଗିଲାସଟି ଧରି ସାମାନ୍ୟ ହସି କହିଲା, ଧନ୍ୟବାଦ ! ସରବତ୍ ପରିବର୍ତ୍ତେ ଥଣ୍ଡା ପାଣି ପିଇବାକୁ ମୁଁ ପସନ୍ଦ କରେଁ । ଦୁଇ ଗ୍ଲାସ ପିଇ ଆସିଛି । ତେବେ, ଆପଣଙ୍କର ଆଗ୍ରହ ମୁଁ ଭାଙ୍ଗିବି ନାହିଁ ।

ଗିଲାସଟି ଓଠରେ ଲଗାଇ ବିକ୍ରମ ସର୍ବତ ଦୁଇ ଢୋକ ଶୋଷିଲା । ଅଧାଗ୍ଲାସଟି ଟେବୁଲ ଉପରେ ରଖି ସେ ଉଠିଲା ।

ନରୁପା କହିଲା, ତମ ଉପରେ ମୁଁ ରାଗିଛି, ବିକଭାଇ ! ଅପା ତ ନିଶ୍ଚୟ ରାଗିଛି । ତମେ ହାକିମ ହେଲ, କେତେ ଆଡ଼େ ବଦଳି ହେଲ, କେବେ ହେଲେ ଖଣ୍ଡେ ଚିଠି ଦେଲ ନାହିଁ ।

ଉପରେ ପଡ଼ି ଇଢବା ତାକୁ ଜବାବ ଦେଲେ, ତାଙ୍କର କେତେ କାମ, କେତେ ଜଞ୍ଜାଳ ! ବେଳ ମିଳୁ ନ ଥିବ । ହଉ ବିକ, ତମର ଡେରି ହେଉଛି । ତମ ବାପା ହେଇଟି ଆସିଲେଣି ।

ଉଦ୍ଧବଙ୍କ କଥାରେ ବସନ୍ତ ଆହତ ହେଲା । ସେ ମୁଣ୍ଡ ନୋଇଁ ହାତ ଯୋଡ଼ି ଉଦ୍ଧବଙ୍କୁ ପ୍ରଣାମ କଲା । ସଞ୍ଜୟଙ୍କୁ ପ୍ରଣାମ କରି ବୈଠକଘର ଭିତରୁ ବାହାର ବାରଣ୍ଡାକୁ ବାହାରିଆସିଲା । ଭାବୁଥିଲା, ବହୁଦିନ ପରେ ଦେଖା । ତାର ମାଈଁଙ୍କର ବାହାରର ରୂପ ବଦଳିଛି, କିନ୍ତୁ ତା' ପ୍ରତି ତାଙ୍କ ମନ ଭିତରର ହଳାହଳ ଆହୁରି ଉତ୍କଟ ହୋଇଛି ।

ବୀରକେଶରୀ ବାରଣ୍ଡା ଉପରକୁ ଉଠିଆସୁଥିଲେ । ବସନ୍ତକୁ କହିଲେ, ରିକ୍‌ସାରେ ସବୁ ଜିନିଷ ମୁଁ ଲଦିଦେଇଛି, ପୁଅ ! ତୁ ଯା ବସ୍‌ । ମୁଁ ଉଦ୍ଧବଙ୍କୁ କହିଆସେ ।

ସେ ଘରଭିତରେ ପଶିଲେ । ଉଦ୍ଧବଙ୍କୁ କହିଲେ, ଆମେ ଗରିବ ବୋଲି ଭୁଲିଯିବ ନାହିଁ, ଉଦ୍ଧବ ! ଅନୁର ବାହାଘରକୁ ଗୁଆ ନ ପକାଇଲେ ନାହିଁ, ଖଣ୍ଡେ ନିମନ୍ତ୍ରଣ ପତ୍ର ପଠାଇଦେବ । ନିବନ୍ଧକୁ ତ ପଚାରିଲ ନାହିଁ !

ଭାରି ତରତରରେ ହୋଇଗଲା, ଭାଇ !

ବୁଝିଲି । ମୋର ଭାଗ୍ୟ ଯେ ଜୋଇଁ ହେବା ଆଗରୁ, ଆମ ଜୋଇଁ ସଞ୍ଜୟବାବୁଙ୍କୁ ଦେଖିବାର ସୁଯୋଗ ପାଇଲି । ଆଗରୁ ବି ଦେଖିଥିଲି ଯେ !

ମନକୁ ପାଉଛି ?

ଏ କି କଥା ପଚାରୁଛ ? ରୂପ, ସ୍ୱାସ୍ଥ୍ୟ, ଗୁଣ, ଧନ, ଆସନ କାହିଁରେ ଭଗବାନ ଊଣା କରିନାହାନ୍ତି । ସୁରୁଖୁରୁରେ ଶୁଭକାର୍ଯ୍ୟ ସମ୍ପାଦିତ ହେଉ, ଏତିକି ଆମର କାମନା । ହଉ ବାବା, ଆସୁଛି ।

ସମସ୍ତେ ଠିଆ ହୋଇ ବୀରକେଶରୀଙ୍କୁ ନମସ୍କାର କଲେ ।

ସେମାନଙ୍କ ମଧ୍ୟରେ ଅନୁପା ନ ଥିଲା । ସେ କେତେବେଳେ ଭିତରଖଞ୍ଜାକୁ ଚାଲିଆସିଥିଲା । ରିକ୍‌ସା ପାଖରେ ଭିତରଖଞ୍ଜାର ଦରଜା ଆଡ଼କୁ ସ୍ଥିରଦୃଷ୍ଟିରେ ଚାହିଁ ବସନ୍ତକେଶରୀ ଠିଆ ହୋଇଥିଲା । ମଳିନ-ବଦନା ଅନୁପାର ଅଶ୍ରୁଭରା ଆଖି ଦିଓଟିକୁ ସେ ଦେଖିଥିଲା । ସେହି ଆଖି ଦିଓଟି ଯେପରି କରୁଣ ନୀରବ ଭାଷାରେ ମିନତି କରୁଥିଲା, ମୋତେ କ୍ଷମା କର, ବଡ଼ଭାଇ ! ସେମାନେ ସବୁ ସ୍ଥିର କରିସାରିଛନ୍ତି । ମୁଁ ଅବଳା ।

ମୋର ସ୍ବର ନାହିଁ । ତମର ସ୍ନେହର ବନ୍ଧନରୁ ମତେ ମୁକ୍ତ ଦଅ, ବଡଭାଇ ! ଯେଉଁ ନୂଆ ସଂସାର ମୁଁ କରିବାକୁ ଯାଉଛି, ତାକୁ ତମେ ଆଶୀର୍ବାଦ କର ।

ତାର ଚିନ୍ତାରେ ସହସା ଆଲୋଡ଼ନ ସୃଷ୍ଟି କରି ଅନୁପା ଅଞ୍ଚଳରେ ଆଖି ପୋଛିଲା । ମୁକ୍ତକେଶ ଦୋହଲାଇ ଦ୍ରୁତ ପଦକ୍ଷେପରେ ନିକଟକୁ ଆସିଲା । ଦୁଇ ହାତ ଯୋଡ଼ି କପାଳରେ ଲଗାଇ ମୁଣ୍ଡ ସାମାନ୍ୟ ନୁଆଁଇ ପ୍ରଣତ ହେଲା । ନମ୍ର ସ୍ବରରେ କହିଲା, ସେମାନେ ତମକୁ ତାଙ୍କ ଘରୁ ତଡ଼ି-ଦେଇଛନ୍ତି, ବଡଭାଇ ! ମୋ ମନଭିତରୁ ତ ତଡ଼ିଦେଇପାରିବେ ନାହିଁ !

ମୁଁ ଜାଣେ, ଅନୁ ! ମୋ ଚିତ୍ତତଳର ସ୍ବପ୍ନପ୍ରତିମାକୁ ବାସ୍ତବ କରିବାକୁ ମୁଁ ବଞ୍ଚିଥିବା ଯାଏ ଅପେକ୍ଷା କରିବି । ଯେଉଁଠି ଥିଲେ ବି ମୁଁ ପ୍ରସ୍ତୁତ ରହିବି ।

ମୁଁ ଫୋନ୍ କରିବି ।

ଚିଠି ଦେବୁ, ଅନୁ ! ତୋର ସମାଧାନ ମୋର ଉତ୍ତର ହେବ । କିଏ କ'ଣ କହିବ, ଭାବିବ, ସମାଲୋଚନା କରିବ, ଏ ସବୁକୁ ଡରି ସତ୍ୟକୁ ଆଡ଼େଇ ଆମେ କାହିଁକି ଦୁଃଖ ଭୋଗିବା ? ଧନସମ୍ପତ୍ତିର ଲୋଭ ଯଦି ତୋର ନ ଥାଏ···

ସେ ଲୋଭ ମୋର ନାହିଁ ।

ବୀରକେଶରୀଙ୍କ ପଛେ ପଛେ ଇନ୍ଦିରା ଆସି ପାଖରେ ପହଞ୍ଚିଲେ ।

ଅନୁପାର ମୁହଁରେ କିଏ ଉଲ୍ଲାସର ଆଲୋକ ବୋଳିଦେଇଥିଲା । ସେ ବୀରକେଶରୀଙ୍କୁ ପ୍ରଣାମ କଲା ।

ବୀରକେଶରୀ ହସହସ ହୋଇ ମୁଣ୍ଡ ହଲାଇଲେ । ମୁହୂର୍ତ୍ତେ ଅପେକ୍ଷା ନ କରି ଅନୁପା ଖଞ୍ଜା ଭିତରକୁ ଚାଲିଗଲା ।

ଇନ୍ଦିରା କହିଲେ, ଦେଖୁଛ ତ ଭାଇ ! ମୁଁ କେଡ଼େ ବ୍ୟସ୍ତ ଅଛି ! ଦେହଟା ଆଜିକାଲି ଭଲ ରହୁନାହିଁ । କାହାରି ଖବର ଅନ୍ତର ମୁଁ ବୁଝି-

ପାରୁ ନାହିଁ । ସବୁ ହେବ ଅନୁପା କହୁଛି । ଅପାଙ୍କୁ ମୋର ବହୁତ ବହୁତ କହିବ ।

କହିବ ।

ତମେ ବଳ ବହୁତ ଦିନ ପରେ ଆସିଲ । ଗୋଡ଼େ ଗୋଡ଼େ ପୁଣି ଗ୍ରାମକୁ ବାହାରିଲଣି । ତମର ଯତ୍ନ ନେଇପାରୁନାହିଁ । କାଳେ ତମର କେଉଁ ଜରୁରି କାମ ଥିବ, ସେଥିପାଇଁ ଅଟକାଇ ପାରୁନାହିଁ । ତେଣେ, ତମ ବୋଉଙ୍କ ହାତରୁ କଂସାବାସନ ଖସିପଡ଼ୁଥିବ । ପିଣ୍ଡାରେ କାଉ ରାବୁଥିବ । ହଉ, ଯାଅ— ।

ଙ୍କରକେଶରୀ କେୈସା ଉପରେ ବସିସାରିଥିଲେ । ବଳରାମ ଇନ୍ଦ୍ରଙ୍କୁ ଆଉ ଥରେ ପ୍ରଣାମ କରି କେୈସାରେ ଉଠିଲା ।

ବୈଠକଘରେ ନରୁପା ସୋଫା ଉପରେ ହସି ହସି ଗଡ଼ୁଯାଉଥିଲା । ସଞ୍ଜୟ ନିଜ ସ୍ଥାନରେ ଦୋହଲୁଥିଲା । ସେହି ଲାବଣ୍ୟପ୍ରତିମା କିଶୋରୀକୁ ସେ ଚାହିଁ ରହିଥିଲା ।

ଇନ୍ଦ୍ର ଘର ଭିତରକୁ ପଶିଲେ । ମନରେ କେତେ ପ୍ରଶ୍ନ ଖେଳୁଥିଲା—ଅନୁପା ଓ ବଳରାମ ! କ'ଣ ସେମାନେ କଥାଭାଷା ହେଉଥିଲେ ? କାହିଁକି ଅନୁପା ଆଖି ପୋଛୁ ବଳରାମ ପାଖକୁ ଧାଇଁଗଲା ? କାହିଁକି ତା'ର ଗମ୍ଭୀର ବିରସ ମୁହଁ ହସହସ ଉଜ୍ଜ୍ୱଳ ହୋଇଉଠିଲା ?

ସଞ୍ଜୟ କହିଲା, ମୁଁ ଏଥର ଯାଏଁ ।

ଇନ୍ଦ୍ର କହିଲେ, ଆଉ ବେଶିବେଳ ତତେ ମୁଁ ଅଟକାଇବି ନାହିଁ । ମା ନରୁ, ତୋର ବାପାଙ୍କର ନିଦ ଭାଙ୍ଗିନାହିଁ । ଡ୍ରାଇଭର ନନ୍ଦଆଚ୍ଛେର ରୁମରେ ଶୋଇପଡ଼ିଛନ୍ତି । ତୁ ଯାଇଁ ଉଠାଇଦେ । ମୁଁ ତୋ ମାଉସୀଙ୍କୁ ଫୋନ୍ କରୁଛି । ସେ ବୋଧହୁଏ ଉଠିବେଣି ।

ମୁଁ ନିଜେ ଡ୍ରାଇଭରଙ୍କୁ ଉଠାଇଦେଉଛି, କହି ସଞ୍ଜୟ ବୈଠକଘରୁ ପଦାକୁ ବାହାରିଗଲା ।

ଇନ୍ଦ୍ର ଫୋନ୍ ଉଠାଇ ନମ୍ବର କରୁଥିଲେ ।

ଲୋକଙ୍କର ସ୍ନେହ-ସମ୍ଭାଷଣ ଓ ମୁହଁଉପରେ ସୁଗୁଣ ବଖାଣ ଶୁଣି ଶିରପଲ୍ଲିରେ ବିକ୍ରମର ରବିବାର ସକାଳଟି କଟିଲା ।

କେବଳାନନ୍ଦ ଗ୍ରାମକୁ ଆସିଥିଲା । ସେ ବିକ୍ରମର ସଙ୍ଗୀ ହୋଇଥିଲା । ସେ ବାରମ୍ବାର ବିକ୍ରମର ପରାମର୍ଶ ନେଉଥିଲା—ଘରର ଅବସ୍ଥା ଦୃଷ୍ଟିରୁ ଏଣିକି ସେ କୌଣସିଠାରେ ଚାକିରି କରିବ, ଅଧିକ ପାଠ ପଢ଼ି ନିଶ୍ଚିତ ନିଯୁକ୍ତି ପାଇଁ ନିଜକୁ ପ୍ରସ୍ତୁତ କରିବ, କିବା ରାଜନୀତିରେ ଯୋଗଦେଇ ଭବିଷ୍ୟତରେ ମନ୍ତ୍ରୀ ଉପମନ୍ତ୍ରୀ, ଅନ୍ତତଃ ବିଧାନସଭାର ସଦସ୍ୟଟିଏ ହେବାକୁ ଆଶା କରିବ ।

ବିକ୍ରମ ବାରମ୍ବାର ତାକୁ ବୁଝାଇ ସେହି ଗୋଟିଏ ଉପଦେଶ ଦେଉଥିଲା, ସୁବିଧା ଯେତେଦିନ ଯାଏ ପାଉଛୁ, ପାଠ ପଢ଼ା ସୁଯୋଗ ଦିନେ ଆସିବ । ଯେଉଁ କ୍ଷେତ୍ରରେ ପ୍ରବେଶ କରିବାକୁ ମନ ହେବ ପଶିବୁ । ମୋ ପରିକା ଅପଦାର୍ଥ ତୁ ନୋହୁ । ଦୁନିଆକୁ ତୁ ଚିହ୍ନିଛୁ । ଦୁନିଆକୁ ତୁ ତତେ ଚଳାଇପାରିବୁ । ପିଲାଦିନରୁ ତୁ ବେ-ପରୁଆ । ଏବଠାରୁ କାହିଁକି ଏତେ ଭାବନା ?

ଭାବନାଟା ମୋର ନୁହେଁ, ମୋର ବାପାବୋଉଙ୍କର । ସେମାନେ ମୋତେ ଜିଦ୍‌ଦାର କରୁଛନ୍ତି । ମୁଁ ଗୋଟାଏ ଚାକିରି କଲେ ସେମାନେ ମୂଲ ଲାଗିବେ ନାହିଁ । ଘରେ ବସି ଖାଇବେ, ପିନ୍ଧିବେ । କେଉଁଠୁ ବୋହୂଟିଏ ଆଣିଲେ ସେ ତାଙ୍କର ସେବା କରିବ, ଅର୍ଥାତ୍ ରନ୍ଧାବାଢ଼ି ଦେବ, ଗୋଡ଼ ଘଷିବ । ସେମାନେ ମାଦଳ ହୋଇ ବସିରହିଥିବେ ।

ବିକ୍ରମ କହିଲା, ବାପ ମା ସେମିତି କେତେ ଆଶା କରନ୍ତି । ତାଙ୍କର ଦୋଷ ଦେବା ଅନୁଚିତ । ଆମର ଯାହା କର୍ତ୍ତବ୍ୟ, ଆମେ କରିବା । ଉପର ପୁରୁଷଙ୍କର ଚିନ୍ତାଧାରା ସଙ୍ଗେ ଆମ ପୁରୁଷର ଚିନ୍ତାଧାରା ମିଳାଇ କାମ କରିବାକୁ ଚେଷ୍ଟା କରିବା । ଯେତିକି ସମ୍ଭବ ହେବ, ସେତିକି । ସେମାନେ ଦୁଃଖ ପାଇବେ ପଛେ, ନିଜର ଚିନ୍ତାଧାରାକୁ ଯୁଗୋପଯୋଗୀ କରି ଆମ ପୁରୁଷର ଚିନ୍ତାଧାରା ସଙ୍ଗେ ମିଶାଇପାରିବେ ନାହିଁ । ଯେତେ ପୁରୁଣା ଧାରଣା ସବୁ ଭଲ, ଯେତେ ନୂଆ ଧାରଣା ସବୁ ମନ୍ଦ, ଏପରି ଭ୍ରମ ତାଙ୍କର ହୁଏ ।

ଠିକ୍ ଭାଇ, ଠିକ୍ । ପାଠ ପଢ଼ିଲେ ନିଶ୍ଚୟ ଚାକିରି କରିବାକୁ ହେବ, ପାଠଟା ଯେଉଁ କିସମର ପଛେ ହେଉ । ଚାକିରି କଲେ କୌଣସି ଉପାୟରେ ବହୁତ ବହୁତ ଧନ ଅର୍ଜିବାକୁ ପଡ଼ିବ । ମୂର୍ଖ କହିଲେ, କାମ ନ କରି କୋଠି ହୋଇ ଘରେ ବସି ପରଘରର ଚର୍ଚ୍ଚା କରିବାକୁ ହେବ । ସେମାନଙ୍କର ଧାରଣା ଏଇଆ ।

ଛାଡ଼ ସେ କଥା । ଢକଳ ମାମୁଁ କେଉଁଠି ତୋ ପାଇଁ ବୋହୂଟିଏ ଏବେହୁଁ ଠିକଣା କଲେଣି ନା କ'ଣ ?

ବାପା ବୋଉ ଦିହେଁ ଯାଇ ଜଣେ ସୂର୍ପଣଖୀକୁ ଦେଖି, ପସନ୍ଦ କରି-ଆସିଲେଣି । କୁଆଡ଼େ ଭାରି ସୁନ୍ଦରୀ । ନାକଟି ଖାଲି ବେଶୀ ଚେପ୍‌ଟା । ଏତିକି ତାର ଦୋଷ ।

କେଉଁଠି ?

ବେଙ୍ଗୁଲିଅପା ଠିକ କରିଛି । ଜୋବ୍ରାରେ । ତା' ବର ସପନାଭାଇ ଯେଉଁ ଅଫିସର ପିଅନ, ସେହି ଅଫିସର ଜଣେ କିରାଣୀବାବୁଙ୍କର ସେ ବଡ଼ ଝିଅ । ଦଶ କ୍ଳାସରେ ସେ ପାଠ ପଢ଼ୁଛି । ତା' ନାଁ ଶୋଭାଙ୍ଗୀ । ବୟସ ସତର । ରଙ୍ଗ, ଢଙ୍ଗ, ସ୍ୱାସ୍ଥ୍ୟ ପାବମା ପରି । ବୋଉ ମତେ କହୁଥିଲା ।

ଭଲ ତ, କିନ୍ତୁ ଏତେ ତରତର କାହିଁକି ?

କେବଳାନନ୍ଦ କହିଲା, ସେମାନେ ନିର୍ବୋଧ, ଭାଇ ! ମୁଁ ତାଙ୍କୁ ମୋର ଶେଷକଥା ଆଜି ଶୁଣାଇଦେଲି । କହିଲି, ଯେତେବେଳେ ସଂସାର କରିବାକୁ ମୁଁ ସ୍ଥିର କରିବି, ମୋ ମନକଥା ତମକୁ ନିଶ୍ଚୟ ଜଣାଇବି । କହିଲି, ତମ ପାଇଁ ମୁଁ ବୋହୂ ଆଣିଦେବି ।

ବିକ୍ରମ ବିସ୍ମିତ ହୋଇ କେବଳାନନ୍ଦର ମୁହଁକୁ ଚାହିଁଲା । ଯିଏ ଦିନେ ତାର ସାନଭାଇ ପରି ଥିଲା, ଗୋଟିଏ ମାତାର ସ୍ତନ୍ୟପାନ କରିଥିଲେ, ଯିଏ ଦିନେ ତାର ଅନୁଗତ ଛାଇଟିଏ ଥିଲା, ଦରକାର ବେଳେ ଶୁଶ୍ରୂଷାମୂଷାଭଳି ସହାୟକ, ନିଃସଙ୍କୋଚରେ ସେ ସମାନସ୍କନ୍ଧ ବନ୍ଧୁପରି ମନ ଖୋଲି କଥା କହୁଛି । ପଚାରିଲା, ଢକଳମାମୁଁ ଆଉ ରଙ୍ଗୁଲିମାଈଁ କ'ଣ କହିଲେ ?

କହିବେ ଆଉ କଅଣ, ଭାଇ ? ମୁଁ ତାଙ୍କୁ ଗୋଟାଏ ବଡ଼ ଦାୟିତ୍ୱରୁ ମୁକ୍ତ କରିଦେଲି । ମୋର ଭବିଷ୍ୟତ ପାଇଁ ବୃଥାରେ ମୁଣ୍ଡ ନ ଖେଳାଇବାକୁ ମୁଁ ତାଗିଦ୍ କରିଦେଲି । ପୁଣି କହିଲି, ଅଳେଖ ସାହଙ୍କ ସ୍ତ୍ରୀଙ୍କୁ ସମସ୍ତେ ଭିନେ ନାକ ଟେକୁଥିଲେ । କେତେ ଛୁ-ଛୁକାର । ଗ୍ରାମ ବହିଷ୍କାର । ଏବେ ସେହି ସାହାଣୀଙ୍କର ରୂପ, ଗୁଣ, ଲକ୍ଷ୍ମୀପଣର ପ୍ରଶଂସା ସମସ୍ତେ ବାଢ଼ୁନାହାନ୍ତି । ସବୁ କରାମତି ଧନର । ସମସ୍ତ ସହାୟକ ।

ବୁଝିଲି । ତୋ ପାଇଁ କ'ଣ କାହାଙ୍କୁ ତୁ ନିଜେ ଠିକ କରିଛୁ ?

ମୋର ନିଜ ଉପାର୍ଜନ ଅସମ୍ଭବ, ମୁଁ କାହିଁକି ସେ ବିଷୟ ମୁଣ୍ଡକୁ ଆଣିବି ? ମୁଁ ପାଞ୍ଚଟାଙ୍କ ସଙ୍ଗେ ମିଶି ଫୁର୍ତ୍ତି ଫାଜଲାମି କରେ । ଲୋକଙ୍କର ନିନ୍ଦା ସମାଲୋଚନାକୁ ଖୁସିରେ ହଜମ କରେ । କିନ୍ତୁ, ଝିଅପିଲାଙ୍କୁ ମୁଁ ସମ୍ମାନ କରେ, ମାନେ, ଦୂରରୁ ଜୁହାରେ ।

କାହିଁକି କେବଳାନନ୍ଦ ?

ଆପଣଙ୍କୁ ମୁଁ କ'ଣ କହିବି, ଭାଇ ?

ତୋ'ର ଧାରଣା ।

ସେମାନେ ଭାରି ଭଲ । ସେମାନେ ପୁଣି ମହାବିପଦ । ସେମାନେ ଭସ୍ମ । ଭସ୍ମକୁ ଗଳାର ମାଳା କରି, ବିପଦକୁ ସ୍ନେହରେ ପିନ୍ଧିଲା କରିବାକୁ ପ୍ରସ୍ତୁତ ହୋଇପାରିଲେ ସେମାନଙ୍କ ଆଡ଼କୁ ଆଗେଇବାକୁ ସାହସ କରିବ ।

ତୁ ସେପରି ସାହସ କେବେ କରିଛୁ ?

ମୋ ପକ୍ଷରେ ଦୂରରୁ ଜୁହାରିବା ଛଡ଼ା ଅନ୍ୟ ପନ୍ଥା ନାହିଁ । ମୁଁ କେବେ ଚୁପସଇତାନ୍ ହୋଇପାରିବି ନାହିଁ । ମୁଁ କେବେ ଅବିଶ୍ୱାସୀ ଓ କୃତଘ୍ନ ହୋଇପାରିବି ନାହିଁ । ଏ ସବୁକୁ ମୁଁ କ୍ଷମା ଦେଇପାରିବି ନାହିଁ, ଭାଇ !

ସାମାନ୍ୟ ହସି କେବଳାନନ୍ଦ ପୁଣି କହିଲା, ଅନୁନ୍ନତ କୁଳରେ, ଅଶିକ୍ଷିତ ମୂଳିଆ ଘରେ ମୋର ଜନ୍ମ । ବେଶବନ୍ଧା, ମୁଖାପିନ୍ଧା ବାହାର-ଦେଖାଣ ଭଦ୍ରତା ମୋର ନାହିଁ । କାହାକୁ ଯଦି କେବେ ସ୍ନେହ କରେଁ,

ତାର ସ୍ନେହ ଯଦି ମୁଁ ପାଏଁ, ତାକୁ ମୁଁ ନିଶ୍ଚୟ ବିବାହ କରିବି । ପରିଣାମ ଯାହା ହେଉ । କିଏ କ'ଣ କହିବ, କିଏ କ'ଣ ଭାବିବ, ସେଥିକୁ ମୁଁ ଭ୍ରୂକ୍ଷେପ କରିବି ନାହିଁ ।

କେବଳାନନ୍ଦଙ୍କୁ ତା'ର ଆଉ କିଛି ପଚାରିବାର ନ ଥିଲା । କେତେ ଘାଟରେ ପାଦ ଧୋଇବାର ଝାନୁ ସେ, ନାମଜାଦା ଖେଳୁଆଡ଼ । ବହୁ ଗେମ୍‌ସର ଚାମ୍ପିଆନ୍ । ବଡ଼ବଡ଼ିଆଙ୍କର ଅଭିନନ୍ଦନ କରମର୍ଦ୍ଦନର ପାତ୍ର । ଥ୍ରୀ ଟପୁର୍ସ ଓ ଫୁଲମାଳ ଫୁଲ-ଗଜରାର ଅଧିକାରୀ । ଟିକିଏ ଭାବପ୍ରବଣ ।

ନିଜର ସ୍ୱରୂପକୁ ପ୍ରକାଶ କରୁଣୁ କେବଳାନନ୍ଦ ବିହଙ୍ଗମର ସ୍ୱରୂପକୁ ଅଜାଣତରେ ନଗ୍ନ କରି ଠିଆ କରାଇଥିଲା ।

ବିହଙ୍ଗମକେଶରୀ ଭାବିଲା, ସେ ନିଜେ ଟୁପ୍‌ସଇଟାନ୍ ! ସେ କେଶବନ୍ଧା, ମୁଖାପିନ୍ଧା, ଭଦ୍ର ଚନ୍ଦ୍ର-ପ୍ରତିମା ! ସେ ସ୍ନେହ ଦେଇଛି, ସ୍ନେହ ପାଇଛି । ସେ ସତ୍ୟ-ଶିବ-ସୁନ୍ଦର ତ୍ରିମୂର୍ତ୍ତିଙ୍କର ଆଗରେ ଶପଥ କରିଛି । ସେ ପ୍ରତିଜ୍ଞାବଦ୍ଧ । ଲୁଚକାଳି ଖେଳିବାର କି ପ୍ରୟୋଜନ ତା'ର ଅଛି ? କାହିଁକି ସଞ୍ଜୟ ସଙ୍ଗେ ପ୍ରସ୍ତାବକୁ ଆଗୁରି ଆଗେଇବାକୁ ସେ ଛାଡ଼ିଦେବ ? ଅଧିକ ଜଟିଳତା ସୃଷ୍ଟି କରିବ ? ଏହାର ପରିଣାମ କ'ଣ ହେବ ?

ରବିବାର ଅପରାହ୍ନଆଡ଼କୁ ସେ ଅସ୍ଥିର ହେବାକୁ ଲାଗିଲା । ମନେ ମନେ ସ୍ଥିର କଲା, ସନ୍ଧ୍ୟା ପୂର୍ବରୁ ସେ କଟକ ଫେରିଯିବ । ମାମୁଁଙ୍କ ଘରେ ରହିବାର ପ୍ରଶ୍ନ ଉଠୁନାହିଁ । ମାମୁଁ ଓ ମାଈଁ ତାକୁ ଅବାଞ୍ଛିତ ମଣି ଦୂରେଇ-ଦେଇଛନ୍ତି । କଲେଜ ହୋଟେଲର ଦ୍ୱିତୀୟ ଫ୍ଲୋରର କଣିକିଆ ଜଣକିଆ ପାଞ୍ଚନମ୍ବର କୋଠରିଟି ସେ ଆଗରୁ ରିଜର୍ଭ କରିଛି । ଦିନକୁ ପାଞ୍ଚଟଙ୍କା ଭଡ଼ା । ଖାଇବା ଖର୍ଚ୍ଚ ସ୍ୱତନ୍ତ୍ର । ସେ ସେଇଠି ରହିବ ।

ପୁଅର ଅସ୍ଥିର ଭାବ ଚନ୍ଦନା ଲକ୍ଷ୍ୟ କଲେ । ଆନନ୍ଦ ଭିତରେ ସେ ଚିନ୍ତାରେ ପଡ଼ିଗଲେ । ଶନିବାର ସନ୍ଧ୍ୟା ପୂର୍ବରୁ ବାପପୁଅ ଗ୍ରାମରେ ପହଞ୍ଚି ଦେବା-ବେଳରୁ ସେମାନଙ୍କ ସଙ୍ଗେ ମନ ଖୋଲି ଦୁଃଖସୁଖ ହେବାକୁ ସେ ବେଳ ପାଇ ନ ଥିଲେ । କୌଣସି ବିଷୟରେ ଆଲୋଚନାବେଳେ ବାପ ଓ ପୁଅଙ୍କ ଭିତରେ ସକାଳେ ସାମାନ୍ୟ ଉଚ୍ଚବାଚ ହେବାର ଶୁଣି, ଗୋଷ୍ଠରୁ ସେ ଧାଇଁ ଆସିଥିଲେ । ତାଙ୍କର ଉପସ୍ଥିତିରେ ସେମାନଙ୍କର ଆଲୋଚନା ବନ୍ଦ ରହିଲା ।

ପୁଣି ସ୍ୱାଭାବିକ ସ୍ୱରରେ ଚାଲିଲା । ପୁରୁଣା ଘର ଓ ଚାଳ ଭାଙ୍ଗି, ନୂଆ ଘର କରାହେବ । ବୀରକେଶରୀଙ୍କର ଇଚ୍ଛା ଯେ ଘରର କାନ୍ଥ ଭାଙ୍ଗି ଇଟାରେ ଗଢ଼ାହେବ, ଉପରେ ଆସ୍‌ବେସଟସ୍ ସିଟ୍ ପଡ଼ିବ । ଘର ହେବ ତିନି ବଖରା । ବିକ୍ରମ ସେଥିରେ ଅମତ ହେଲା ନାହିଁ । ସେ ଟଙ୍କାର ପ୍ରଶ୍ନ ଉଠାଇଲା । କାମ କରାଇବାର ଦାୟିତ୍ୱର ପ୍ରଶ୍ନ ବି ଉଠିଲା । ସେଇଠି ହେଲା ମତର ଅମେଳ, କଥା କଟାକଟି ।

ଦାୟିତ୍ୱ ନେଇ ଘର କରାଇବାକୁ ବୀରକେଶରୀ ପ୍ରସ୍ତୁତ ହେଲେ । ଦଶ ହଜାର ଟଙ୍କା ଯୋଗାଡ଼ କରିବାର ଦାୟିତ୍ୱ ନିଶ୍ଚୟ ବିକ୍ରମର ବୋଲି ସେ ପ୍ରକାଶ କଲେ ।

ବିକ୍ରମ ସେଥିରେ ସମ୍ମତ ହୋଇ କହିଲା, ଦଶଟି ବର୍ଷ ଅନ୍ତତଃ ଅପେକ୍ଷା କରିବାକୁ ପଡ଼ିବ । ଟଙ୍କା କେଉଁଠି ଗଦା ହୋଇନାହିଁ ଯେ ଧାଇଁ-ଯାଇ ସେ ରୁଣ୍ଡାଇ ଆଣିବ ।

ବୀରକେଶରୀ ଚନ୍ଦନାଙ୍କୁ ଚାହିଁ କହିଲେ, ଦେଖ ଆମ ପୁଅଙ୍କର ଯୋଜନା ! ହଇରେ, ଦଶବର୍ଷ ଯାଏ ଆମେ ବଞ୍ଚିଥିବୁଁ ? ଦେଶରୁ ଟଙ୍କା କୁଆଡ଼େ ଉଭେଇଗଲା, ମଣିଛୁ ? ଲୋକେ ଡେଇଁ ଗଣି ପଇସା ଠୁଳାଉଛନ୍ତି । ଲୋକେ ହାତସଫେଇ ଦେଖାଇ ବାଘପେଟରୁ ସୁନା କଙ୍କଣ କାଢୁଛନ୍ତି । ମନ୍ତ୍ର ପଢ଼ି ଗଦ ଶୁଙ୍ଘାଇ ଫଣୀ ମୁଣ୍ଡରୁ ମଣି ଆଣୁଛନ୍ତି ।

ବିକ୍ରମ କହିଲା, ଆପଣ କ'ଣ ଚାହାନ୍ତି ମୁଁ ଚୋରି କରିବି ? ଜାଲ୍ ଜାଲିଆତି କରିବି ? ସେପରି ଆଶା ଆପଣଙ୍କର ସାର୍ଥକ ହେବ ନାହିଁ ।

ଭଗବାନଙ୍କୁ ସାକ୍ଷୀ ରଖି, ସତ୍ୟ ଓ ନ୍ୟାୟ ପଥରେ ଚାଲିବ । ମୁଣ୍ଡଝାଳ ତୁଣ୍ଡରେ ମାରି ପରିଶ୍ରମ କରିବ । ଯେତିକି ମିଳିବ, ସେତିକିରେ ଯାହା ସମ୍ଭବ ହେବ ତାହା କରିହେବ ।

ବସନ୍ତର ଆଖି ଛଳଛଳ ହେଲା । ସେ ବସ୍ତିର କଥା, ଅନ୍ୟମାନଙ୍କର ଧନର ପାହାଡ଼ ଦେଖି, ଅର୍ଜନର ପଦ୍ଧତି ବୁଝି ତାର ବାପା ହାଇଁପାଇଁ ହେଉଛନ୍ତି । ପରକୁ ଠକି, ଅନ୍ୟର ସର୍ବନାଶ କରି ନିଜେ ଅର୍ଥ ମିଳିବାର ସବୁ ଉଦ୍ୟମ, ସୁବିଧାସୁଯୋଗ ବିନା ତାଙ୍କର ବ୍ୟର୍ଥ ହୋଇଛି । ସେହି ବ୍ୟର୍ଥତାର ପ୍ରତିଶୋଧ ସେ ତାଙ୍କର ପୁଅ ହାତରେ ନେବାକୁ ଚାହାନ୍ତି । ଆଜୀବନ ଅଭାବ ଅନଟନରେ ପଡ଼ି, ବ୍ୟର୍ଥତାରେ ସାଣ୍ଟିତକଟି ହୋଇ ହସି ହସି ଅପମାନକୁ ଅଙ୍ଗର ଭୂଷଣ କରିଛନ୍ତି । ସେ ସବୁର ପ୍ରତିକ୍ରିୟା ତାଙ୍କ ମନରେ ଅର୍ଥର ପିପାସା ଜଗାଇଛି । ସେ ପିପାସାର ଅଗ୍ନି ନିର୍ବାପିତ ହେବ ନାହିଁ ।

ପୁଅର ଆଖିରେ ଛଳଛଳ ଲୁହ ଦେଖି, ଚନ୍ଦନା କହିଲେ, ତମେ ଧୈର୍ଯ୍ୟ ଧର । ଆମର ସବୁ ହେବ । ମୋ ପୁଅ କେବେ ଅନ୍ୟାୟ କରିବ ନାହିଁ । ତା'ର ମନ ପିଲାଟିଦିନରୁ ମୁଁ ଜାଣେ ।

ବୀରକେଶରୀ କହିଲେ, ମୁଁ ତାକୁ ଅସତ୍ ପଥରେ ପାଦ ଦେବାକୁ କହୁନାହିଁ । ପେଟ ପାଇଁ, ଦେହ ପାଇଁ, ମୁଣ୍ଡ ଗୁଞ୍ଜିବାପାଇଁ ଯାହା ଲୋଡ଼ା, ସତ୍‌ପଥରେ ଚାଲିଲେ ମଧ୍ୟ ବୁଦ୍ଧି ଖେଳାଇଲେ, ସହଜରେ ସେତିକ ଲାଭ କରି ହେବ । ଅନ୍ୟମାନେ ପାରୁଛନ୍ତି ତ ! ଜଣକର ଉପକାର କଲେ, ସେ ଯଦି ଖୁସିରେ ତା'ର ବଳକା ଧନରୁ କିଛି ଦେବ·········

ବସନ୍ତ ଖେଙ୍କିଉଠିଲା, ମୋତେ ଉତ୍କୋଚ ନେବାକୁ ଆପଣ ଉପଦେଶ ଦିଅନ୍ତୁ ନାହିଁ, ବାପା ! ମୋର ଧନସମ୍ପତ୍ତି, ଏପରିକି ମୁଣ୍ଡ ଗୁଞ୍ଜିବାକୁ ଘରଟିଏ ବି ଲୋଡ଼ା ନାହିଁ । ଏ ସମ୍ବନ୍ଧରେ ଆପଣଙ୍କର କୌଣସି ଉପଦେଶ ମୁଁ ଶୁଣିବି ନାହିଁ ।

ବୀରକେଶରୀ କାବା ହୋଇ ପୁଅର ଲୁହଝରା ଫଣଫଣ ମୁହଁକୁ ଚାହିଁ ରହିଲେ । ଚନ୍ଦନା କଇଁ କଇଁ ହୋଇ କାନ୍ଦିଉଠିଲା । କାନ୍ଦକୁ ସମ୍ଭାଳି ବିକ୍ରମର ହାତଟିଏ ଧରିଲେ । କୋହକୁ ଆୟତ୍ତ କରି ଚିନ୍ତାମଗ୍ନ ସ୍ୱାମୀଙ୍କୁ କହିଲେ, ଆଉ ଘଣ୍ଟାଏ ଦି'ଘଣ୍ଟା ପରେ ପୁଅ ମୋର କଟକ ଚାଲିଯିବ । ବାପପୁଅଙ୍କ ଭିତରେ କଥା କଟାକଟି ଶୁଣିଲେ ଭଗବାନ ହସିବେ । ମୋ'ର ଆଖିର ପିତୁଳା ସେହି ଗୋଟିଏ ଗୋ ! ତମରି ବି । ସେ ଯାହା ଭଲ ମଣୁଛି, କରୁ ।

ବୀରକେଶରୀ ନିଜର ସୁନିଶ୍ଚିତ ପରାଜୟ ହୋଇଛି ଏହା ବୁଝି-ସାରିଥିଲେ । ଶାସ୍ତ୍ରପୁରାଣରେ ସେ ଯେଉଁଠି ବାପପୁଅଙ୍କ ମଧ୍ୟରେ ସମର ହେବାର ଜାଣିଛନ୍ତି, ସବୁ କ୍ଷେତ୍ରରେ ପୁଅମାନଙ୍କର ବିଜୟ ହୋଇଛି । ବୃଦ୍ଧ, ଯୁବଶକ୍ତିର ବିଜୟ । ନୂଆଯୁଗର ବିଜୟ । ତାଙ୍କୁ ନଇଁମିବାକୁ ପଡ଼ିବ ।

ସେ ହସିଉଠିଲେ । କହିଲେ, ଆଲୋଚନା ନ ହେଲେ କୌଣସି ବିଷୟର ନିଷ୍ପତ୍ତି ହୁଏ ନାହିଁ । ମୁଁ ଏହା ଜାଣେ । ମୋ ପୁଅ ବି ଜାଣେ । କଥା ଉପରେ ଜୋର୍ ନ ଦେଲେ ସେକଥା ଦୁର୍ବଳ ହୁଏ । ଯା' ହିଁ କଥା କଟାକଟି ନୁହେଁ । ତମେ କାହିଁକି ଚିନ୍ତିତ ହେଉଛ ? ମୋ ପୁଅର ଦୃଢ଼ ମନ ମୁଁ ଜାଣିଲି । ସେ ଯାହା ବିଶ୍ୱାସ କରୁଛି, ସେଇଟା ଆଗାମୀ ଯୁଗର ବିଶ୍ୱାସ, ବୋଲି ତାଙ୍କ ଅମଳର ବିଶ୍ୱାସ । ସେମାନେ ଯୁଗକୁ ଚଳାଇବେ । ଯୁଗ ସେମାନଙ୍କୁ ଚଳାଇବ ।

ବିକ୍ରମକୁ ଚାହିଁ ହସହସ ମୁହଁରେ ପଚାରିଲେ, ନୁହେ କି ବାପା ? ଆମେ ସବୁ ପୁରୁଣା ଢିବିରି ପଇସା, ଅଚଳ ।

ବିକ୍ରମ କହିଲା, ହଁ, ବାପା ! ପୁରୁଣା ପଇସା । ଓଜନଦାର, ନିରେଖା ତମ୍ବା । ନିଜର ମୂଲ୍ୟ ଅଧିକ ଥାଇ ମଧ୍ୟ ଅଚଳ । ଶୁଣନ୍ତୁ । ଯାହା ଆମେ କରିବା, ରହି ସମ୍ଭାଳି, ସଞ୍ଚୟକୁ ଦୃଷ୍ଟି ଦେଇ, ସତ୍ ଉପାୟରେ ଧୀରେ ଧୀରେ କରିବା । ମନରେ ଗର୍ବ ଆସିବ, ଆନନ୍ଦ ଆସିବ । ଆମେ ଶାନ୍ତିରେ

ବାଟ ଖୋଲିବା । ଘରର ଦେଖି ହନ୍ତସନ୍ତ ହେବା ନାହିଁ । ଈର୍ଷାରେ ଜଳିବା ନାହିଁ । ଦୁଃଖ କରିବା ନାହିଁ ।

ଖୁସି ହୋଇ ଚନ୍ଦନା କହିଲେ, ମୋ ପୁଅ ସାର କଥା କହିଲା । ହଇହେ, ଶୁଣିଲନି ?

ମୁଁ କାଲି ନୁହେଁ ମ, ମୋ ମନକୁ ପାଇଲା । ତମ ଭାଇଭାଉଜ ଅନୁସାର ବାହାଘରରେ ସଞ୍ଜୀପୁବାବୁ ଡେପୋଟିଙ୍କୁ କୋଡ଼ିଏ ପଚିଶ ହଜାର ଟଙ୍କାର ମଟରଗାଡ଼ି ଦେଇଛନ୍ତି । ତାଙ୍କ ବୋଉଙ୍କୁ ନଗଦ କୋଡ଼ିଏ ହଜାର ଦେଇଛନ୍ତି । ଇଦରି ନିଜେ ମତେ କହୁଥିଲେ ।

ସେମାନେ ବଡ଼ଲୋକ, ନ ଦେବେ କାହିଁକି ?

ମୋ ପୁଅ ବି ଡେପୋଟି ହୋଇଛି । କେତେ ବଡ଼ଲୋକ ମଧ୍ୟସ୍ଥ ପଠାଇଲେଣି । ତାଙ୍କ ମନକୁ ଦଶ ହଜାର, ପନ୍ଦର ହଜାର ଦେବାକୁ କହିଲେଣି । ସେମାନଙ୍କର ଅଛି । ସେମାନେ ମନଖୁସିରେ ଝିଅଜୋଇଁଙ୍କୁ ଦେବେ । ତାକୁ ତ ଲାଞ୍ଚ କହିବ ନାହିଁ ?

ଚନ୍ଦନା କହିଲେ, ନାହିଁ । ସେ ଲାଞ୍ଚ ହେବ କିପରି ? ଯାହାଙ୍କର ଅଛି ସେ ଝିଅକୁ ଦେବେ । ତାଙ୍କର ସନମାନ ବଢ଼ିବ । ଲୋକେ ଦେଖିବେ, ଧନ୍ୟଧନ୍ୟ କହିବେ । ଆମର ସନମାନ ବଢ଼ିବ । ଅଭାବ ଘୁଞ୍ଚିବ । ଝିଅ ନ ହୋଇ ପୁଅ ହୋଇ ଜନ୍ମ ହୋଇଥିଲେ ସମ୍ପତ୍ତିରୁ ଭାଗ ନେଇଥାନ୍ତା ତ !

ବୀରକେଶରୀ କହିଲେ, କିଏ ଲୋଡ଼ୁଛି ଭାଗ ? ଯେତିକି ଅଣାଯାଇ-ପାରିବ ସେତିକି । ଦେବା ମରିବାକୁ କିଏ ଭଲ ପାଏ ? ତେଣୁ ଆଙ୍ଗୁଠି ବଙ୍କା କଲେ ବେଶୀ ଘିଅ ଉଠିବ ।

ଚନ୍ଦନା ସମ୍ମତିସୂଚକ ମୁଣ୍ଡ ହଲାଇଲେ । କହିଲେ, ତମେ ଯାହା କର, ଯାହାକୁ ମୁଁ ବୋହୂ କରିବି ତାକୁ ନିଶ୍ଚେ ଆଗ ଆଖିରେ ଦେଖିବି । ପସନ୍ଦ କରିବି । ଦେବାନେବା ବେପାର ପଛ ।

ବିଜୟର ସଜଡ଼ାସଜଡ଼ି କାମ ଶେଷ ହୋଇଥିଲା । ପିତାମାତାଙ୍କର ଆଲୋଚନା ତା'ର କାନରେ ବାଜୁଥିଲା । ସେ ଜାଣେ, ସେମାନେ ବାଳିର

ମନ୍ଦର ଛୋଡୁଥିଲେ । ସେ ବାଧା ଦେଉ ନ ଥିଲ । ତଥାପି ସେ ବସ୍ତୁରିଲ, ଆଲୋଚନାର ଆଶୁ ଅନ୍ତ ହେବା ଉଚିତ ।

ସେ କହିଲ, ବୋଉ ! ମୁଁ ପିଲାଟୁଆ ନୁହେଁ । ବିଚାର କରି ନିଷ୍ପତ୍ତି କରିବାର ବୁଦ୍ଧି ବିବେକ ମୋର ଅଛି । ମତେ ଶୁଣାଇଁ ଏସବୁ ଆଲୋଚନା କରିବା ଉଚିତ ନୁହେଁ ।

ସତ କହିଲୁ ।

ହଁ, ଚନ୍ଦନା ! ଏସବୁ ଜଟିଳ ସାମାଜିକ ବ୍ୟାପାରରେ ପୁଅ କାହିଁକି ମୁଣ୍ଡ ଖେଳାଇ ସମୟ ନଷ୍ଟ କରିବ ?

ବିକ୍ରମ କହିଲ, ମୁଁ ମୁଣ୍ଡ ଖେଳାଇବାକୁ ମୋଟେ ଚାହୁଁନାହିଁ । ଏତିକି କହିଦେଉଛି, ମୁଁ କାହାର ହାତର ଖେଳ-କଣ୍ଢେଇ ଅବା ବେପାରର ଦ୍ରବ୍ୟ ହେବାକୁ ଚାହୁଁନାହିଁ । ମୋର ଦାୟିତ୍ୱଜ୍ଞାନ ଅଛି ।

ଏତିକି କହି, ଘରୁ ବାହାରି ସେ ପଦାକୁ ଚାଲିଗଲ ।

ବୀରକେଶରୀ ଓ ଚନ୍ଦନା ପରସ୍ପରର ମୁହଁକୁ ଦୁଇଟି ଅପରିଚିତ ଶିଶୁଙ୍କ ପରି ଚାହିଁରହିଲେ । କିଛି ସମୟ ନୀରବ ରହି ବୀରକେଶରୀ କହିଲେ, ମୁଁ ଆଉ ଝୁଟି ବଢ଼ାଇବାକୁ ଚାହୁଁନାହିଁ । ଘରେ ଓ ଗାଆଁରେ ମୋର କିଛି କାମ ନାହିଁ ।

ଚନ୍ଦନାଙ୍କର ଆଖିରେ ଲୁହ । ସେ ମୁଣ୍ଡ ହଲାଇ କହିଲେ, ତମେ ସେକଥା ତୁଣ୍ଡରେ ଧରନା । ଚାକିରି ଛାଡ଼ି ଘରେ ରହ । ତା'ର ଯାହା ମନ ସେ କରୁ । ଆମେ ବାଧା ଦେବା ନାହିଁ । ଆମ ଦୁହିଁଙ୍କୁ ପୋଷିବାର ଶକ୍ତି ତାର ଅଛି । ଆମର ଅଧିକ କିଛି ଲୋଡ଼ା ନାହିଁ ।

ବୀରକେଶରୀ କହିଲେ, ତମେ ତାର ମା, ସେପରି ବିଚାରିବା ତମ ପକ୍ଷରେ ସ୍ୱାଭାବିକ । ମୁଁ ବାପ । ନିଜେ ଅର୍ଜନ କରି ଦୁଇଟି ପ୍ରାଣୀ ପୋଷିବାର ଶକ୍ତି ଓ ସାହସ ମୋର ଅଛି । ଅବାଧ୍ୟ ପୁଅର ହାତଟେକାରେ ରହିବା ମରଣଠାରୁ ବଳିବ, ଚନ୍ଦନା !

ଛାଇଲେଉଟା ବେଳ ।

ଖାରକେଶରୀ ଦାଣ୍ଡରେ ଅପେକ୍ଷା କରିଥିଲେ । ଗୋଟିଏ ରିକ୍ସାରେ ବସନ୍ତର ସୁଟ୍‌କେସ୍ ଓ ବେଡିଂ ଲଦା ହୋଇଥିଲା ।

ବଡ଼ ରାସ୍ତାରୁ ପୁରୁଣା ବନ୍ଧ ଉପରେ ଗ୍ରାମପଞ୍ଚାୟତ ରାସ୍ତା ଗାଁର ମଝିରେ ନାଳ କୂଳେ କୂଳେ ହେଲା ଦିନରୁ ଦୁଇବର୍ଷ ହେଲା ଖରାଦିନେ ଏବେ ରିକ୍ସା ଚଳାଚଳ କରୁଛି । ଭାଗ୍ୟକୁ ସେଦିନ ରିକ୍ସାଟିଏ ଗ୍ରାମକୁ ଆସିଥିଲା । ଶୁଭକେଶରୀ ସେହି ଫେରନ୍ତା ରିକ୍ସାକୁ ବସନ୍ତ ପାଇଁ ଠିକ୍ କରିଥିଲା ।

ବୋଉଙ୍କର ଆଦେଶ ମାନି ବସନ୍ତ ତାଙ୍କରି ପଛେ ପଛେ ଶୋଇବା-ଘର ଭିତରକୁ ପଶି ସିନ୍ଦୁକ ଉପର କାନ୍ଥରେ ଟଙ୍ଗା ହୋଇଥିବା ଜଗନ୍ନାଥ ଚିତ୍ରକୁ ପ୍ରଣାମ କଲା । ଚନ୍ଦନା କହିଲେ, ସର୍ବମଙ୍ଗଳ ସେ, ତାଙ୍କୁ ମନରେ ଚିନ୍ତିଲେ ସବୁ ବିପଦଆପଦ ଦୂରେଇ ଯିବ, ବାପ !

ଜଗନ୍ନାଥଙ୍କର ଛବିତଳେ ଝୁଲୁଥିବା ହୋଇଥିବା ଗ୍ରୁପ୍ ଫଟୋ ଖଣ୍ଡି ଦେଖି ବସନ୍ତ କହିଲା, ଏଇଟି ମୋ ଦୃଷ୍ଟିରେ ପଡ଼ି ନ ଥିଲା । କାହିଁକି ଟାଙ୍ଗିଛୁ ?

ତାଙ୍କ ପଦତଳେ ତତେ ମୁଁ ସମର୍ପି ଦେଇଛି । ସେ ତତେ ସଣ୍ଡ ଘୋଡ଼ାଇ ରଖିଥିବେ ।

ମୋ ପାଖରେ ଆଉ ଜଣେ ଠିଆ ହୋଇଛି !

ତାକୁ ମୁଁ ଅତି ସ୍ନେହ କରେ ରେ ପୁଅ ! ଅନୁ ମୋର ପର-ଘରକୁ ଚାଲିଯିବ । ଠାକୁରେ ତା'ର ମଙ୍ଗଳ କରିବେ । ଠାକୁରଙ୍କ ପାଖରେ ମୋର ଅଳି, ଅନୁ ପରି ବୋହୂଟିଏ ସେ ମତେ ଦେଉନ୍ତୁ ।

ଧନଦଉଲତ, ଯାନଯୌତୁକ ?

ଅନୁ ପରି ସୁନା ମନ, ସୁନା ଦେହ ଯେଉଁ ଲକ୍ଷ୍ମୀପ୍ରତିମାର ହୋଇଥିବ, ତାର ପାଦଧୂଆଁ ପଥର ସଙ୍ଗରେ କେଉଁ ଯାନଯୌତୁକ ସମସରି ହେବ ରେ ପୁଅ ? ସେଗୁଡ଼ାକ ଦୁଇଦିନଆ ।

ବସନ୍ତ ହସୁଥିଲା ।

ଚନ୍ଦନାଙ୍କର ଆଖି ଛଳଛଳ ହେଉଥିଲା ।

ବସନ୍ତ କହିଲା, ତୋ'ର ମନର କଥା ତୁ ଅନୁକୁ ଲେଖୁନୁ ?

ତାକୁ କାହିଁକି ଲେଖିବ ?

ତୋ ପାଇଁ ସେ ତା ପରିକା ବୋଉଙ୍କି ଏ ଖୋଜ ଠିକଣା କରିବ ।

ଚିଠି ଲେଖିବ ? ଆଜ ଲେଖିବ । ମୁଁ ଜାଣେ, ସେ ଯାହାକୁ ବାଛିବ, ମୋ ମନକୁ ନିଶ୍ଚେ ସେ ପାଇବ । ତୋ ମନକୁ ବି ପାଇବ ।

ଶୁଭକେଶରୀ ଆସି ଖବର ଦେଲା, ରିକ୍ସାବାଲା ଉଛନ୍ନ ହେଉଛି ।

କେବଳାନନ୍ଦ ଆସି ପହଞ୍ଚିଲେଣି, ସେ ବି କଟକ ଯିବ । ରିକ୍ସାରେ ବୀରକେଶରୀଙ୍କୁ ଆଉ ବଡ଼ରାସ୍ତାଯାଏ ଯାଇ ବସ୍‌ର ଆଗମନକୁ ଅପେକ୍ଷା କରିବାକୁ ପଡ଼ିବ ନାହିଁ ।

ଲୁଚକାଳି ଖେଳ ଓ ଅନିଶ୍ଚିତତା ମଧ୍ୟରେ ସେ ଛଟପଟ ହେବାକୁ ଚାହିଁଲା ନାହିଁ । ପ୍ରକାରାନ୍ତରରେ ସେ ତାର ମନକଥା ଚନ୍ଦନାଙ୍କ ଆଗରେ ପ୍ରକାଶ କରିଛି । ସେଥିରୁ ସେ କିଛି ଅନୁମାନ କରି ପାରି ନ ଥିବେ । ବସନ୍ତ ମନେ କରିଥିଲା, ଚନ୍ଦନାଙ୍କ ଆଗରେ ସେ ମୁକ୍ତକଣ୍ଠରେ ସ୍ୱୀକାର କରିବ ଯେ ସେ ଓ ଅନୁପା ପରସ୍ପରକୁ ଭଲ ପାଇଛନ୍ତି । ବଡ଼ଠାକୁରଙ୍କ ଆଗରେ ପ୍ରତିଜ୍ଞାବଦ୍ଧ ହୋଇଛନ୍ତି ଯେ ସେମାନେ ବିବାହ କରିବେ । ନିର୍ଜନ ବେଳରେ ମନକଥା ଖୋଲି କହିବାକୁ ସେ ସୁଯୋଗ ପାଇଲା ନାହିଁ । ଭାବିଲା, କେବଳାନନ୍ଦ ଆଗରେ ସେ ମନ ଖୋଲିଦେବ । ତା'ର ବୋଉଙ୍କ ପାଖକୁ ଗୁପ୍ତରେ ଖବର ପଠାଇବ ।

ରିକ୍ସାରେ ଯାଉଣୁ ବସନ୍ତ ଅଳ୍ପ କଥାରେ କେବଳାନନ୍ଦ ଆଗରେ ତା'ର ଉଦ୍ଦେଶ୍ୟ ପ୍ରକାଶ କଲା । କେବଳାନନ୍ଦ ଗମ୍ଭୀର ହୋଇ ଶୁଣୁଥିଲେ । ମନେ ମନେ ନିଜକୁ ସେ ସାବାସୀ ଦେଉଥିଲେ । ମୁହଁ ଖୋଲି ବସନ୍ତକୁ ଓଲଟା ପ୍ରଶ୍ନ ପଚାରୁ ନ ଥିଲେ ।

ଭୁବନେଶ୍ୱରରେ ରହଣି କାଳରେ ବସନ୍ତ ଓ ଅନୁପାଙ୍କର ମିଳାମିଶା, ସ୍ୱାଧୀନ ଚଳନ ସେ ଓ ତାର ବନ୍ଧୁମାନେ ଦେଖିଥିଲେ । ଅନ୍ୟମାନେ

ଆଲୋଚନା କରିବାର ସେ ଶୁଣିଥିଲା । ସେମାନଙ୍କ ମୁହଁରେ କୋଳପ ପକାଇବାକୁ ସେ ଚେଷ୍ଟା କରିଥିଲା । ଗୋଟାଏ ଚାଛଲିଆଭରା ହସ । ଢ' ଘୃର ଢଦ ଟାଣ କଥା, ଆରେ ନବୋଧେ ! ସେମାନେ ଭାଇଭଉଣୀ ! ସେ ମାମୁଁ-ଝିଅ ଭଉଣୀ !

ଘୃଣ ତ !

ଲକ୍ଷପତିର ଅଲଅଳ ଝିଅ । ବକଭାଇ ମୋର ଗରିବର ପୁଅ । ଘରେ ଦୁଇବେଳା ଚୁଲି ଜଳେ ନାହିଁ । ମାମୁଁ ଘରେ ରହି ପଢ଼ୁଥିଲେ । ବୋଲହାକ କରୁଥିଲେ । ପିଲାଙ୍କର ସେବା କରୁଥିଲେ । ପଢ଼ାଉଥିଲେ । ନିର୍ମଳ ନିଷ୍କଳଙ୍କ ମନ ।

ସେମାନେ ତା' ଆଗରେ ଭୁଲ ରହୁଥିଲେ ।

ମଣିଷ ଭୁଲ କରେ । କିନ୍ତୁ ତା'ର ଭାବନା ବାତୁଳ ହୁଏ । ଦୁନିଆରେ କେତେ ଦେଖିଲା, ଶୁଣିଲା କଥା, ଅଙ୍ଗରେ ଲଗାଇ ମନରେ ଭେଦାଇଲା କେତେ ଅନୁଭୂତି ତା'ର ମନକୁ ମନ୍ଥନ କରେ ।

ସାତଚକଟା ପୋଡୁଅଣ୍ଡା ବିକଳାନନ୍ଦ ବେଳେ ବେଳେ ସ୍ୱପ୍ନରେ ପଡ଼ୁଥିଲା । ଆଖି ଆଗରେ ତା'ର ମନ କେଉଁ ଧୂଆଁଳିଆ ଛବିଟିଏ ଆଙ୍କୁଣୁ ସେ ଶିହରିଉଠି ମନକୁ ନିଜର ଆସ୍ପୃଷ୍ଟ ଭିତରକୁ ଝିଙ୍କିଆଣିଥିଲା ।

ଛି, ତା'ର ଆଦର୍ଶ, ତା'ର ଶିକ୍ଷକ, ତା'ର ଭାଇ ଦେବୋପମ ବିକ୍ରମକେଶରୀ ଆଜି ଦଶଟାଙ୍କ ପରି ଦୁର୍ବଳ ଲୋକ ନୁହନ୍ତି । ସେ ସଂଯମୀ । ବିକ୍ରମର ସ୍ୱୀକାରୋକ୍ତିରୁ ସେ ବୁଝିଲା ଯେ, ଯାହାକୁ ଅତିମାନବ ବୋଲି ସେ ଗ୍ରହଣ କରିଥିଲା, ସେ ଆଜି ଦଶଟାଙ୍କ ପରି ଦୁର୍ବଳ ମଣିଷଟିଏ । ଯାହା ଘଟିଛି, ସେଥିପାଇଁ କେହି ଦାୟୀ ନୁହେଁ, ଅବା ସମସ୍ତେ ଦାୟୀ ।

ବସ୍ ଆସିବାକୁ ଡେରି ଥିଲା । କେବଳାନନ୍ଦ କହିଲା, ମୁଁ ଆଜି ଆପଣଙ୍କ ସଙ୍ଗେ କଟକ ଯିବି ନାହିଁ, ଭାଇ ! ମୁଁ ଗ୍ରାମକୁ ଫେରିଯିବି । ପିଉସା ନ ଥିଲା ବେଳେ ମୁଁ ଅପାଙ୍କ ଆଗରେ ପ୍ରସ୍ତାବଟି ଖୋଲିବି । ତାଙ୍କର ମନ କଥା ବୁଝିବି । ସେ ଯଦି ସମ୍ମତ ହୁଅନ୍ତି, ପିଉସା ବଳେଇଯିବେ ନାହିଁ ।

ତାଙ୍କର ଧନ ଲୋଡ଼ା । ଆନନ୍ଦବାବୁଙ୍କର ଧନ ଅଛି । ସେ ପ୍ରଚୁର ଦେଇ-ପାରିବେ ।

ତୁ ଜାଣୁ, ମାମୁଁ ସଞ୍ଜୟବାବୁଙ୍କ ସମ୍ବନ୍ଧରେ ଆମକୁ ଖବର ନ ଦେଇ ମହାପ୍ରସାଦ ନିର୍ବନ୍ଧ କରିଛନ୍ତି ?

ହଁ ଭାଇ, ଆଜ ମୁଁ ଶୁଣିଲି । ଶୁଣି ବିସ୍ମିତ ହେଉଥିଲି । ମନେ ମନେ ଭାବୁଥିଲି, ଏଇଥିପାଇଁ ଯେ ଭଉଣୀ ଗରିବ ହେଲା ବୋଲି ଲକ୍ଷପତି ଭାଇ ସମ୍ବନ୍ଧ କାଟିଦେଲେ । ଭଉଣୀର ପଦମର୍ଯ୍ୟାଦାକୁ ସମ୍ମାନ ଦେଖାଇଲେ ନାହିଁ । ମୁଁ ପିଉସାଙ୍କଠାରୁ ଶୁଣି ଅଧିକ ଦୁଃଖିତ ହେଉଥିଲି ଯେ ଆପଣ ବହୁ ମାସ ପରେ ତାଙ୍କ ଘରକୁ ଯାଇଥିଲେ । ପୂର୍ବପରି ଘରେ ରହି ପରୀକ୍ଷା ଦେବାକୁ ଆପଣଙ୍କର ମାଈଁ ଆପଣଙ୍କୁ ଅନୁରୋଧ କଲେ ନାହିଁ । ଏବେ ସବୁ ସନ୍ଦେହ ମୋ ମନରୁ ଦୂର ହୋଇଗଲା । ଆପଣଙ୍କର ମାମୁଁ ଓ ମାଈଁ ବଦଳେଇଯିବେ ନାହିଁ ।

କି ସନ୍ଦେହ ତୋ ମନରୁ ଦୂର ହେଲା ?

ଆପଣଙ୍କୁ ମୁଁ କହିବି କ'ଣ ? ସେମାନେ ନିଶ୍ଚୟ ତାଙ୍କର ଝିଅ ଅନୁପାଙ୍କର ମନ ବୁଝିପାରିଛନ୍ତି । ମୋର ମନେହେଉଛି, ଅନୁପା ନିଜେ ପ୍ରକାଶ କରିଛନ୍ତି । ଆପଣ ଦୁହିଁଙ୍କୁ ଏକାଠି ହେବାର ସୁଯୋଗ ସେମାନେ ଦେବାକୁ ଚାହାନ୍ତି ନାହିଁ । ନ ଦେଉନ୍ତୁ । ଅନୁପା ପରିବା ଉହାଡ଼ରେ ଲୁଚି-ରହିଲା ଅଶିକ୍ଷିତା ଗାଉଁଲି ଝିଅ ନୁହନ୍ତି । ସଞ୍ଜୟବାବୁଙ୍କୁ ବିବାହ କରିବାକୁ କେହି ତାଙ୍କୁ ବାଧ୍ୟ କରିପାରିବେ ନାହିଁ । ଅପା ମଙ୍ଗିଲେ ସବୁ ଠିକ୍ ହୋଇଯିବ ।

ବିକ୍ରମ ଚିନ୍ତିତ ହେଲା । କେବଳାନନ୍ଦର ମନରେ କି ଭାବନା ଖେଳୁଥିଲା, ସେହି କଥା ସେ ଭାବୁଥିଲା । କଟକ ବସ୍ ଆସୁଥିବାର ସେ ଲକ୍ଷ୍ୟ କରିପାରିଥିଲା । ବସ୍ ଦୂରରେ ଅଛି । ଅପେକ୍ଷା କରି ରହିଥିବା ଅନ୍ୟ କେତେଜଣ ଯାତ୍ରୀ ଚଞ୍ଚଳ ହୋଇଉଠିଲେ ।

ସହସା ବିକ୍ରମ ନିଜକୁ ବଜ୍ରାହତ ପରି ମଣିଲା । ମନରେ ଅନୁଶୋଚନା ଘୋଟିଆସିଲା । ଭାବିଲା, ସେ କେଡ଼େ ନିର୍ବୋଧ ! ବୟସ୍କ, ଶିକ୍ଷିତ ଓ ପଦସ୍ଥ ବ୍ୟକ୍ତି ହୋଇ ନିଜକୁ ସେ ଛର ଛହଟି ପାଖରେ ଏଡ଼େ କ୍ଷୁଦ୍ର, ଏଡ଼େ ନିଃସହାୟ କରିପାରିଲା କିପରି ?

ସେ ଅସ୍ଥିର ହେବାକୁ ଲାଗିଲା । ବସ୍ ଆସି ଆଗରେ ଠିଆ ହେଲା । କେବଳାନନ୍ଦ ଛତ ଉପରକୁ ଜିନିଷ ଉଠାଉଥିଲେ ।

ମୁଣ୍ଡ ନୁଆଁଇଁ ନମସ୍କାର କରି ବିଦାୟ ନେଲାବେଳେ ବିକ୍ରମ ତାର କାନ୍ଧରେ ହାତ ଚାପୁଡ଼ି କହିଲା, ବୋଉଙ୍କ ଆଗରେ ଏତେ ତରତର ହୋଇ କିଛି ନ କହିବା ଭଲ । ଯାଉ କିଛି ଦିନ । ଆମେ ବିଚାର କରିବା ।

କେବଳାନନ୍ଦ ମୁଣ୍ଡ ଟୁଙ୍ଗାରିଲେ ।

**ସେଦିନ ରବିବାର ରାତିରେ—**

ପୁଅ ହସାଖୁସି ହେବାକୁ ମନା କରୁନାହିଁ । ସେ ଖାଲି ଅନୁ ପରି ସୁନ୍ଦର ଗୁଣର ବୋହୂଟିଏ ଚାହେଁ । କିଏ ନ ଚାହିଁବ ଯେ ? ସେମିତି ବୋହୂକୁ ନିଜେ ଅନୁପ ବାଛିଦେବ । କେଜାଣି, ଆଗରୁ ସେ ତା'ର କେଉଁ ଚିହ୍ନାପରିଚିତ ସାଙ୍ଗକୁ ପସନ୍ଦ କରି ବାଛିଥିବ । ବିକ୍ରମ ଦେଖିଥିବ, ଜାଣିଥିବ । ବାପଙ୍କ କ୍ରୋଧକୁ ଡରି ଲୋକକୁ ଡରି ମନ ଖୋଲି ସେ ପ୍ରକାଶ କରୁ ନ ଥିବ ।

ଏମିତି କେତେ ଚିନ୍ତା ମୁଣ୍ଡରେ ପୂରାଇ, ଚନ୍ଦନା ଆଗ୍ରହରେ ଚିଠି ଲେଖିବସିଲେ ।

ସଞ୍ଜ ପହର । ଗ୍ରାମ ମାମଲତିରୁ ବୀରକେଶରୀ ଫେରି ନ ଥିଲେ । କେତେ ଡେରିରେ ଫେରିବେ । ଏଡ଼େ ବଡ଼ ଗ୍ରାମର ସବୁ କୁଟୁମ୍ବର ସବୁ ସମସ୍ୟାର ବୋଝ ସତେ କି ତାଙ୍କରି ମୁଣ୍ଡରେ ଲଦା ହୋଇଛି । ଉପରେ ପଡ଼ି ଏବେ ସେ ଉପଦେଶ ବାଣ୍ଟୁଛନ୍ତି । ଗୁଡ଼ାଏ ଚା' ପିଉଛନ୍ତି । ମାନନ୍ତୁ ନ ମାନନ୍ତୁ, ଲୋକେ ଶୁଣୁଛନ୍ତି । ପଛରେ ହସାହସି ହୋଇ ତାଙ୍କୁ ପଦକରେ ଉଡ଼ାଇ ଦେଉଛନ୍ତି, 'କଜଳପାତିଆ' ଗଲେ ହୋ !

କଜଳପାତିଆ କହିଲେ କାହାକୁ ବୁଝାଏ ଗାଁ ମାଇପେ, ପିଲାଛୁଆ ସମସ୍ତେ ଜାଣିଲେଣି । ଜାଆ ବାସନ୍ତୀ ହିନେ କହୁଥିଲା, ଆମ ଘରେ କ'ଣ ପୋଥି ପୁରାଣ ଭାଗବତ ନାହିଁ ଯେ ସାଆନ୍ତେ ସେସବୁ ନ ପଢ଼ି ପରଘର କଜଆରେ ମୁଣ୍ଡ ଖେଳାଉଛନ୍ତି, ଅପା ? ଘରର ରଙ୍କୁଣୀ ବି ସେମିତି କହୁ-ଥିଲା ।

ମନା କଲେ ସେ ମାନୁନାହାନ୍ତି ଲୋ ବାସନ୍ତୀ ! କଡ଼ାକ କଲେ ସେ ଧମକାଉଛନ୍ତି, ଘରକରି ଗାଁକୁ ଘୁଞ୍ଚିଯିବେ ।

ଯାହା ତାଙ୍କର ଖୁସି ସେ କରନ୍ତୁ, ଅପା ! ଘୁଣ୍ଡରେ ହଳାକାଠି, ହାତଗୋଡ଼ରେ ଶିର-ଦଉଡ଼ି ନେଇ ଆଜି ସାଆନ୍ତେ ବିଦେଶ ନ ଯାଉନ୍ତୁ ।

ଚନ୍ଦନା ତୁନି ରହନ୍ତି ।

ସେ ଡେରିରେ ଫେରିବେ । ଏହି ସୁଯୋଗ ନେଇ ଚନ୍ଦନା ଚିଠି ଲେଖିଲେ, ଖଣ୍ଡେ ନୁହେଁ, ଦି' ଖଣ୍ଡି । ପ୍ରଥମ ଚିଠିଟି ଉଦ୍ଧବଙ୍କ ପାଖକୁ । ସବୁ ମାନାଭିମାନ କଥା ।

—ଠାକୁରେ ତମକୁ କୋଟିପତି କଲେ, ଆନନ୍ଦର କଥା । ତା ବୋଲି ଆପଣାର ଲୋକଙ୍କୁ ଭୁଲିଯିବ ? କେତେବେଳେ କାହାର ଭାଗ୍ୟ କପାଳ ବଦଳେ, ଚକାଡୋଳା ଛଡ଼ା ଆଉ କିଏ ଜାଣିବ ? ମନେପଡ଼େ କାଲିକାର କଥା, ଅନୁପାର ଜନ୍ମ !

—ତେର ବର୍ଷର ପୁଅ ବିକ୍ରମକୁ ହିନେ ମୁଁ ନେଇ ତମ ପାଖରେ ଛାଡ଼ି ଦେଇ ଆସିଲି । ତମେ ତାକୁ ବଢ଼ାଇଲ, ପଢ଼ାଇଲ, ମଣିଷ କଲ । ଅନୁପାର ବାହାଘର ହେବ । ଆମକୁ ସିନା ଭୁଲିଲ, ବିକ୍ରମକୁ ମନେ-ପକାଇଲ ନାହିଁ ?

—ତା ମନରେ ଭାରି ଦୁଃଖ, ଉଦ୍ଧବ ! ପିଲାଦିନୁ ସେମାନେ ଏକାଠି ବଢ଼ିଥିଲେ । ଗୋଟିଏ ଥାଳରେ ଖାଇ ଗୋଟିଏ ସପରେ ଶୋଇ ସେମାନେ ବଡ଼ ହେଲେ । ଆରଗୁଡ଼ିକ ସିନା ଅତି ଛୁଆ ଥିଲେ ଗୋ ! ସେ ଦୁଇ-ଜଣଙ୍କର ବୁଦ୍ଧି ହୋଇଆସୁଥିଲା । ଚଳଇପର ହଇଭଉଣୀ ପରି । ହିହେଁ

ଦୁହିଁଙ୍କୁ ସ୍ନେହ କରିବା ତ ସ୍ୱାଭାବିକ । କିଏ ମଝିରେ ବାଡ଼ ପକାଇ-
ପାରିବ ?

— ଅନୁପାର ଦୋଳମୁକୁଟ ବେଳେ ତମର ଭଣଜାକୁ କେବେ ଭୁଲିବ ନାହିଁ । ଗରିବ ନନ୍ଦେଇଟିକୁ ବି ଭୁଲିବ ନାହିଁ । ନହେଲେ ଖଣ୍ଡିଏ ଚିଠାଉ ପଠାଇବ । ଆଉ ଗୋଟିଏ କଥା । ବିଷମର ମତ ବଦଳିଲାଣି । ବାହା ହେବାକୁ ଏଣିକି ସେ ମୁଣ୍ଡ ହଲାଇବ ନାହିଁ । ତା ମନର ପରଚ ମୁଁ ପାଇଛି । ତା' ପାଇଁ ତମେ ଝିଅଟିଏ ଠିକଣା କରିବ । ସେ ଆମ ଅନୁପା ପରି ଗୁଣବନ୍ତୀ, ରୂପବନ୍ତୀ ହୋଇଥିବ । ମୁଁ କ'ଣ ସେଇଆ ଶୁଣିବି ନାହିଁ ? ପିଲାଦିନେ ସେ ଦୁହିଁଙ୍କୁ ଦେଖି ମୁଁ ଗେଲରେ ଗେଲରେ କହୁଥିଲି ଲକ୍ଷ୍ମୀ-ନୃସିଂହ !

—ସବୁବେଳେ ଅନୁଟି ମୋର ଆଖିରେ ନାଚେ । ଆଉମାନେ ବି ।

ଲେଖୁ ଲେଖୁ ଚିଠିଟି ବଡ଼ ହୋଇଥିଲା ।

ଆଉ ଖଣ୍ଡିକ ଅନୁପା ପାଖକୁ—ତମର ଖେଳକୌତୁକ, ହସ-ଖୁସି ମୋ ଆଖିକୁ ଦିଶିଯାଉଛି, ମା ଅନୁ ! ଫଟୋ ତଳେ ନିଜ ହାତରେ ଯେଉଁ ଅମୂଲ୍ୟ ଧାଡ଼ିଟି ଲେଖିଛୁ, ସେତକ ମୋ ଛାତିରେ ଆଙ୍କି ହୋଇଯାଇଛି । ହନୁ ମହାତ୍ମାଙ୍କ ଛାତିତଳେ ଯେମିତି ରାମନାମ ଆଙ୍କିହୋଇଥିଲା ଅବିକଳ ସେମିତି ଲୋ ମୋ ମା ! ସେଇ ଫଟୋଟିକୁ ମୋର ବଡ଼ଠାକୁର ତିନି ମୂର୍ତ୍ତିଙ୍କର ଛବିତଳେ ଝୁଲାଇଛି । ସଞ୍ଜେ ସକାଳେ ପୂଜା କଲାବେଳେ ଆଖିରେ ପଡ଼େ ।

—ତୋ' ପରିକା ରୂପଗୁଣର ଝିଅଟିଏ ହେଲେ ମୁଁ ବୋହୂ କରିବି । ମୋର ଧନଦରବ ଲୋଡ଼ା ନାହିଁ । ତୋ ମନକୁ ପାଇଲେ ବିକି କେବେ ମନା କରିପାରିବ ନାହିଁ । ମୁଁ ଏହା ଜାଣିସାରିଲଣି । ତୁ, ନନ୍ଦୁ, ସୁରୁ ମୋର ଆଶୀର୍ବାଦ ନେବ । ସାନନ୍ଦକୁ କଲ୍ୟାଣ ।

ଚିଠି ଦୁଇଖଣ୍ଡି ଗୋଟିଏ ଲଫାପାରେ ଭରି ଚନ୍ଦନା ଠିକଣା ଲେଖିଲେ । ଶୁଭକେଶଙ୍କୁ ଡାକି ଗେହ୍ଲେଇ କହିଲେ, ବାପ, ଏ ଖଣ୍ଡିକ

ପୋଷ୍ଟ ବାକ୍ସରେ ଆଜ ପକାଇ ଦେଇଆ । କାଲି ସକାଳେ ପୋଷ୍ଟପିଅନ ନେଇଯିବ । ମନେ ନ ପଡ଼ିଲେ ପୁଣି ରହିଯିବ ଯେ !

ଶୁଭକେଶଙ୍କ ବନାନ୍ତି ଧାରେ ଚିଠିଖଣ୍ଡି ଧରି ଚାଲିଗଲା ।

ଦାଣ୍ଡ ଚଉପା ପାଖରେ ଠିଆ ହୋଇ ଚନ୍ଦନା ଚାହିଁ ରହିଥିଲେ । ଭାବୁଥିଲେ, ଭଲ ହୋଇଛି, ବରଷମର ବାପାଙ୍କ ହାବୁଡ଼ରେ ଚିଠି ଖଣ୍ଡି ପଡ଼ିଥିଲେ ସେ କେତେ ଜେରା କରିଥାନ୍ତେ ।

ବାସନ୍ତୀ ଚନ୍ଦନାଙ୍କ ପାଖକୁ ଆସି ପଚାରିଲେ, ବଡ଼ ସଞ୍ଜ ଆଗରୁ ଆଜ ଗଲେ । ଏମିତି କ'ଣ ଜରୁରୀ ଚିଠି ଯେ ଏତେ ରାତିରେ ପିଲାଟାକୁ ଏକୁଟିଆ ପଠାଇଦେଲ ?

ବଜୁଳି ଆଲୁଅ ଗାଁରେ ପଶିଲା ଦିନରୁ ଦାଣ୍ଡ ହାଲୋଳ ହେଲଣି ମ ବାସନ୍ତୀ ! ଲୋକେ ଆତଯାତ ହେଉଛନ୍ତି । ଡାକେ ବାଟ ହେବ ତ ।

ଯେତେ ଯାହା ହେଉ, ରାତିଟା !

ହଇଲୋ, ଶୁଭ କ'ଣ ଏକା ତୋହର ପୁଅ ? ସେ ମୋର ପୁଅ ନୁହେଁ ?

ତମ ପୁଅ ହୋଇଥିଲେ କ'ଣ···

ଚୁପ ହ, ଚୁପ ହ । କଜିଆ କରିବାକୁ ତୋର ମନ ହେଉଛି । ମୁଁ କଜିଆଖୋରଣୀ ନୁହେ ମ ! ହେଲା, ମୋର ଭୁଲ ହୋଇଛି ।

ବାକି ମୁଁ ଏକା କଜିଆଖୋରଣୀ, ନା ଅପା ? ପିଲାଟାକୁ ମୋର···

ମୁଁ କାନ ମୋଡ଼ିହେଉଛି, ବାସନ୍ତୀ ! ଜାଣି ନ ଥିଲି । ଆଜ ତୁ ମତେ ଜଣାଇଦେଲୁ ଲୋ ଚଣ୍ଡାଳୁଣୀ ! ଶୁଣ, ମୋହନ ମୋ ପୁଅ ନୁହନ୍ତି, ଖାଲି ତୋହର ପୁଅ । ହଉ, ତୁ ଭିତରକୁ ଯା । ଦେଖ୍, ଦାଣ୍ଡର ବଜୁଳି ଆଲୁଅରେ ଦେଖ୍, ତୋ ଦେଢ଼ଶୁର ଓ ତାଙ୍କ ସଙ୍ଗରେ କେବଳାନନ୍ଦ ଏଣେ ଆସୁଛନ୍ତି । ପାଟିକରି ମହତ ସାରନା । ଏ ଘରର ସବୁ ଯାଇଛି, ସେତିକ ରହିଛି । ସେତିକ ଥାଉ ।

ବୀରକେଶରୀ ହାତରେ ସଜନାଛୁଇଁ ଗୁରଣ୍ଡା ଦେବ ଧରି ପାଖରେ ପହଞ୍ଚିଲେ । କେବଳାନନ୍ଦ ତାଙ୍କର କଡ଼େକଡ଼େ ବୁଲୁଥିଲା । କଅଣ ସବୁ ଗପୁଥିଲା । ଚନ୍ଦନାଙ୍କୁ ଦେଖି ସେ ପାଟି ବନ୍ଦ କଲା ।

ବାସନ୍ତୀ ବଗ ଚମଚମ ହୋଇ ଘରଭିତରକୁ ପଶିଯାଉଥିଲେ । ଚନ୍ଦନାଙ୍କୁ ଶୁଣାଇ ସ୍ୱଗତୋକ୍ତି କରୁଥିଲେ, ଫେରୁ ସେ ଛତରା ଟୋକା, ଆଜ ତାକୁ ମୁଁ ପାନେ ଦେଉଛି । ପରୀକ୍ଷା ମୁଣ୍ଡ ଉପରେ । ବହିଟାକୁ ଓଲଟାଇ ଦେଇ ଧାଇଁଲା ବେଠି କରିବାକୁ । ହଇରେ, ତାଙ୍କ ପୁଅ ତ ଦୋପଟି ହେଲା, ତୁ କ'ଣ ତା ବୋକବୁଢ଼ା ମୂଲିଆ ହେବୁ ? ଆସୁ ତୋ ବୋପା !

ଚନ୍ଦନା ଶୁଣିଲେ । ଓଲଟ ଜବାବ ଦେଲେ ନାହିଁ । ପୁଅ ଛପୋଟି ହେବାର ଖବର ଆସିଲା ଦିନରୁ ବାସନ୍ତୀ ଏମିତି ଈର୍ଷାରେ ଭିତରେ ଭିତରେ ଜଳିଯାଉଛି । କଜିଆ କରିବାକୁ ଓର ଉଣ୍ଡୁଛି । ଠାଣ ଠାଣ କଥା କହି ନିଜ ମନକୁ ନିଜେ ବୁଝାଇ ପୁଣି ଆସି ଗୋଳେଇହୋଇ ପାଖରେ ପଶୁଛି । ପୁଣି ସେ ସେଇଆ କରିବ ।

ପିଣ୍ଡା ଉପରକୁ ଉଠି ବୀରକେଶରୀ କହିଲେ, ତୁଇଁ ପୁଞ୍ଜିକ ପାବନୀ ଦେଇଛି । ତାର ବର୍ଷକର ପୁଅ କେଡ଼େ ସୁନ୍ଦର ହୋଇଛି ! ମୋ କୋଳରେ ଝୁଲୁଥିଲା, କୋଳ ଓଦା କଲା । ଭାରି କୌତୁକିଆ ।

ଚନ୍ଦନା କହିଲେ, ନାତିଟିଏ କୋଳରେ ଧରିବାକୁ ମନ ହେଲାଣି, ନା ?

ହଁ । ଆମର ପିଲାଗୁଡ଼ିକ ଟିକିଏ ବଡ଼ ହୋଇଗଲେଣି । କୋଡ଼ରେ ବସି ଝୁଲିବାର ବୟସ ତାଙ୍କର ଗଡ଼ିଗଲାଣି !

ଚନ୍ଦନା କହିଲେ, ଠାକୁରଙ୍କୁ ଡାକ, ପୁଣି ଏଘର କୁନିଛୁଆର ହସ-କୌତୁକ, ଦବେଟି ବଚନରେ ହସିଉଠିବ । ପରଘର ଛୁଆ କୋଳ ଓଦା କରିବ ନାହିଁ । ହଇ ରେ କେବଳା !

ଭାଇଙ୍କୁ ବସ୍‌ରେ ବସାଇ ମୁଁ ଫେରିଆସିଲି, ଅପା ! ଗୋଟାଏ କାମ ମୋର ବାକି ରହିଯାଇଛି । ଦୁଇଦିନ ପରେ ଯିବି । ତାଙ୍କୁ କଟକରେ ଭେଟିବି । ଆମେ ଦୁହେଁ ଏକାଠି ଢେଙ୍କାନାଳ ଯିବୁଁ । ଭାଇଙ୍କର ଆଦେଶ, କଲେଜ ଖୋଲିବାଯାଏ ତାଙ୍କ ପାଖରେ ରହିବି । ସେ ମତେ ପାଠ ପଢ଼ିବାର ବାଗ ବତାଇବେ ।

ଏଇଥିପାଇଁ ?

କାହିଁକି ? ରୋଷେଇ କରିବି । ବାସନ ମାଜିବି । ଘରଦ୍ୱାର ପରିଷ୍କାର ରଖିବି । ଭାଇଙ୍କର ଯତ୍ନ ନେବି । ଏକାଳକୁ ବିଶ୍ୱାସୀ ଚାକର ମିଳୁନାହାନ୍ତି । ଭାଇ କହୁଥିଲେ, ଯେ ରହୁଛି ସେ କୌଣସି ଉପାୟରେ କିଛି ହାତପଇଠ କରି ପଳାଉଛି । ସେ ଅଧେଦିନ ଉପାସ ରହୁଛନ୍ତି । କରିବେ କ'ଣ ?

ହଇ ହୋ, ଶୁଣିଲ ତ ? ବୋହୁଟିଏ ଯଦି ଆସନ୍ତା, ସେ ଯଦି ମୋ ପୁଅ ପାଖରେ ଯାଇ ରହନ୍ତା, ସେ ଏତେ ହଇରାଣ ହୁଅନ୍ତା କାହିଁକି ?

ଶାରକେଶରୀ ଉତ୍ତର ନ ଦେଇ ଦାଣ୍ଡଘର ଭିତରେ ପଶିଲେ । ଶୁଭ ଚିଠିଟି ପୋଷ୍ଟବାକ୍‌ସରେ ଗଳାଇ ଧାଇଁ ଧାଇଁ ଫେରୁଥିଲା ।

ଚନ୍ଦନା ବିକଳାନନ୍ଦକୁ କହିଲେ, ତୁ ଆମ ଘରେ ଗଣ୍ଡିଏ ଖାଇକରି ଗଲେ ଭଲ ହୁଅନ୍ତା, ପୁଅ !

ମୁଁ ଖାଇସାରିଛି, ଅପା ! ତମ ପାଖକୁ ଆସୁଥିଲି, ବାଟରେ ପିଇସାଙ୍କ ହାବୁଡ଼ରେ ପଡ଼ିଲି । ସେ ଠିଆ କରାଇ ଗପିଲେ ।

କାହିଁକି ମୋ ପାଖକୁ ଆସୁଥିଲୁ ?

ଗପ ବେଶି ହେଲାଣି । ଆଉଦିନେ ଆସି କହିବି । ନରେଳା ବେଳେ କହିବି । ଗୋଟିଏ ପ୍ରସ୍ତାବ ଅଛି ।

କାହାଘର ପ୍ରସ୍ତାବ ?

ହଁ, ଅପା ?

କାହାର ?

ଭାଇଙ୍କ ପାଇଁ ଝିଅଟିଏ ।

ଦେଖିଛୁ ?

ତମେ, ପିଇସା, ଭାଇ, ସମସ୍ତେ ଦେଖିଛ । ପସନ୍ଦ ବି କରିଛ । ରୂପ, ଗୁଣ, ବିଦ୍ୟା, ବ୍ୟବହାର କାହିଁରେ ବାଛିବାର ନାହିଁ । ଜାତିଗୋତ୍ରରେ ଖୁଣିବାର କିଛି ନାହିଁ ।

ଭଲ ହେବ । କାହାର ଝିଅ ?

ତମର ସମ୍ପର୍କ । ତମ ସମାଜରେ ଚଳନ୍ତି । ତମେ ଚଳାଇଲେ ବାଧା ନାହିଁ । ଦୁଇପକ୍ଷ ସମ୍ମତି ଦେଲେ ବାହାଘର ହେବ ।

କାହିଁକି ମତେ ସନ୍ଦେହରେ ପକାଉଛୁ ? ଜାଣିଛୁ ଯଦି କହୁନୁ ସେ କିଏ ?

ସନ୍ଦେହରେ ପଡ଼ିବାର କିଛି ନାହିଁ, ଅପା ! ସ୍ୱତ ଅନେକ ହେଲଣି । ପିଇସା ଭୋକରେ ଛଟଛଟ ହେଉଛନ୍ତି । ଉଛନ୍ନ ହୁଅନା । ମୁଁ ସବୁ କହିବି, ଯାଉଛି ।

ଶୁଭକେଶରୀ ଆସି କହିଲା, ନାଲି ପୋଷ୍ଟବାକ୍ସରେ ଗଳାଇଦେଇ ଆସିଲି, ବଡ଼ମା !

ଭଲ କଲୁ ବାପ !

ଅନ୍ଧାରିଆ ଦାଣ୍ଡଘର ଭିତରୁ ବାସନ୍ତୀ ପଦାକୁ ଆସି ପଚାରିଲେ, କିଏ ମ ସେ, କାହାର ଝିଅ, ଘର କେଉଁ ଗାଁ ?

କେବଳାନନ୍ଦ ଚାଲିଯାଉଥିଲେ । ଅଟକିଲେ ନାହିଁ । ଉତ୍ତର ଦେଲେ ନାହିଁ ।

ତୁ ଲୁଚି ଲୁଚି ସବୁ ଶୁଣିଲୁ କି ?

ମୁଁ ସ୍ୱୈରଣୀ ଠାକୁରାଣୀ ନୁହେଁ ମ, ଅପା ! ମୋ ପୁଅଟାକୁ ଅପେକ୍ଷା କରିରହିଥିଲି । ସାଆନ୍ତେ ଆସିଲାରୁ କବାଟକଣକୁ ଘୁଞ୍ଚିଯାଇଥିଲି । ବାଇଶି-ଟୋକା ଯାହା କହୁଥିଲେ, ମୋ କାନରେ ବାଜୁଥିଲା । କାନରେ କ'ଣ ହାତ ଦେଇ ଠିଆ ହୋଇଥାନ୍ତି ?

ହଉ ! ତୁଆଣ୍ଟା ପାଖରେ ଠିଆ ହୋଇଛୁ । କାନରେ ହାତ ଦେଇ ନ ପାରିଲୁ ତ, ପାଟିରେ ହାତ ଦେ । ତୋ ବଡ଼ପଣ ରହୁ !

ଚନ୍ଦନା ଘରଭିତରକୁ ପଶିଗଲେ ।

ରାତିସାରା ଚନ୍ଦନା କେବଳ ଭାବୁଥିଲେ । ଆଖି ବୁଜି ସେହି ଅଜଣା ଝିଅଟିର ରୂପ ମନରେ ଆଙ୍କିବାକୁ ଚେଷ୍ଟା କରୁଥିଲେ । ଚଗଲା କେବଳାନନ୍ଦ ସବୁ କହିଲା, ଝିଅଟିର ନାମ ପ୍ରକାଶ ନ କଲା କାହିଁକି ? କିଏ ସେ ହୋଇପାରେ ?

କେବଳାନନ୍ଦର ଉଦନ୍ତ ସ୍ୱାମୀଙ୍କ ଆଗରେ ପ୍ରକାଶ କରିବାକୁ ସେ ମନରେ ସାହସ ବାନ୍ଧି ପାରୁ ନ ଥିଲେ । କେଜାଣି, ସେ କି ଅର୍ଥ କାଢ଼ିବେ ! ଯାହାସବୁ ଘଟିଯାଇଛି, ସେ ସବୁକୁ ଠୁଳ କରି ବିଚାରିଲେ ଗୋଟିଏ ଝିଅର ରୂପ ଆସି ଆଗରେ ଠିଆ ହେଉଛି । ଆଜଯାଏ ସେ ଆଖିର ଆନନ୍ଦ ଥିଲା । ତାକୁ ଦେଖିଲେ, ତା' କଥା ମନେ ପକାଇଲେ ମନରେ ଉଲ୍ଲାସର ଢେଉ ଖେଳୁଥିଲା ।

ଅନୁପା !

ଛାତି ଥରିଉଠୁଛି । ଏହାକି ସମ୍ଭବ ହୋଇପାରେ ! ଗେଲରେ ଗେଲରେ କେତେ କଥା କୁହାଯାଏ । କିନ୍ତୁ ସତରେ ଯାହା କହିବାକୁ ଲାଜ, ତାହା କି କେବେ ସମ୍ଭବ ହୋଇପାରେ ? ଚନ୍ଦନା ନିଜର ମନକୁ ସାନ୍ତ୍ୱନା ଦେଉଥିଲେ—ସେମାନେ ସୁନାମୁଣ୍ଡା । ଚନ୍ଦ୍ରରେ କଳଙ୍କ ଅଛି; କିନ୍ତୁ ହିରଣ୍ମୟ ଓ ଅନୁପାଙ୍କ ମୁହଁରେ କଳଙ୍କର ଦାଗ କିଏ ଦେଖିବ ?

କେବଳାନନ୍ଦ ବଳେ କହିବ ।

ପରଦିନ ତାକୁ ସେ ଅପେକ୍ଷା କରି ରହିଲେ । କାମରେ ମନ ଲାଗୁ ନ ଥାଏ । ସେ ଖାଲି ଘର ବାହାର ହେଉଥାନ୍ତି । ସକାଳବେଳା ସେ ଆସିଲା ନାହିଁ । ମନ ହେଲା ଶୁଭକେଶକୁ ପଠାଇ ତାକୁ ସେ ଡକାଇବେ;

କାଲୁ ତା'କୁ କୌଣସି କାମରେ ବାରିଗିବାକୁ ମନରେ ଡର । ବାସନ୍ତୀ ପୁଣି ଟାଉଁ ଟାଉଁ କରି ଗୁଡ଼ାଏ କହିବ । ଘରେ ଅଶାନ୍ତି ସୃଷ୍ଟି ହେବ ।

ଖାରକେଶଖି ଗ୍ରାମ ମାମଲତି କରିବାକୁ ଯାଇଗଲେଣି । ରଙ୍ଗୁଲି ଯବ ଆସନ୍ତା ! ସବୁଦିନେ ସେ ଆସେ ନାହିଁ । ଆଜ ବା କାହିଁକି ଆସିବ ? ବାସନ୍ତୀ ଅତି ଆପଣାର ହୋଇ ପାଖକୁ ଆସୁଛି । ଅତିଭକ୍ତିର ଲକ୍ଷଣ ଦେଖାଇ ପଦେ ପଦେ ପଚାରିଦେଉଛି । ହାତରୁ ଛଡ଼ାଇ ସୁରପାଇଟି କରିଦେଉଛି । ଚନ୍ଦନା ଜାଣନ୍ତି, ତାଙ୍କ ପେଟ ଭିତରୁ ଗୁମର ଖସାଇନେବା ତାର ଉଦ୍ଦେଶ୍ୟ । ବାଗ ଲାଗିଲେ କେତେ ଜଲ୍ପନା ଦେବ ।

ଦେହ ଭଲ ନାହିଁ କି, ଅପା ! ଏମିତି ସୁଟୋଳ ହେଉଛ କାହିଁକି ? ପୁଅ କାଲି ଯାଇଛନ୍ତି, କଟକ ପହଞ୍ଚି ବଳେ ଚିଠାଉ ଲେଖିବେ ।

ମୋର କଛି ହୋଇନାହିଁ ମ ! ତେବେ ବଳବସ୍ତୁସ କ'ଣ ଆସୁଛି ? ସେଗଣା ଦେହ । ଔଷଧ ଖାଇ ବଞ୍ଚାଇ ରଖିଛି । ମରିଗଲେ ତରିଯାଆନ୍ତି ।

ତମ ଗୋଡ଼ ଧରୁଛି, ସେମିତି କହନା । କହୁ କହୁ କାଲି ରାତିରେ କ'ଣ କହିଦେଇଥିଲ, ମନରେ ଧରନା । କଅଣ ତମର ହୋଇଛି ମତେ କହ ।

ତୋ ପିଲାଙ୍କ ଉପରେ ମୋର ଅଧିକାର ନାହିଁ । ମୋ ପିଲାଟି ବଦେଶରେ ରହିବ । କାହାର ଅର୍ଜ୍ଜନ କରି ମୋର ସମସ୍ତ କଟିବ, ବାସନ୍ତୀ ? ବୋହୁଟିଏ ଯବ ଘରକୁ ଆସିଥାନ୍ତା !

କଛନ ।

କରିବ ? ସାତ ଶେଣାରେ ପାଣି ଉଠିବ ।

ଆଜ ଡେରି କରନା । କେବଳ। ଯାହା କଥା କହୁଥିଲ, ମୁଁ ସବୁ ଶୁଣିଛି । ଲୁଚୁଉଛ କାହିଁକି ? ସେଇଠି କର । ପୁଅ ଦେଖିଛନ୍ତି, ସମସ୍ତେ ଦେଖିଛ, ମନ ମାନଛି । ଡେରି କର ନାହିଁ । ଜବାବ ଦିଅ ।

ସେଇଆ ହେବ ।

ବାସନ୍ତୀ ଯାହା ଜାଣିବାକୁ ଗୋଳେଇ ହେଉଥିଲେ, ଚନ୍ଦନାଙ୍କ ପେଟରୁ ସେ ଖବର ବାହାର କରିପାରିଲେ ନାହିଁ । ହତାଶ ହେଲେ ।

ସେହିଦନଟି ଚନ୍ଦନାଙ୍କର ସେହିପରି ମାନସିକ ଦ୍ୱନ୍ଦ୍ୱ ଓ ଦୁଶ୍ଚିନ୍ତାରେ କଟିଲା । କେବଳାନନ୍ଦର ଦେଖା ମିଳିଲା ନାହିଁ । ଖବର ନେବାରେ ଜଣା-ପଡ଼ିଲା, ସେ ଖାଇପିଇ ସାଇକଲ ଚଢ଼ି କୁଆଡ଼େ ଯାଇଛି । କେତେବେଳେ ଫେରିବ କହିଯାଇନାହିଁ । ସାଇକଲଟିଏ ହାବୁଡ଼େ ପଡ଼ିଲେ ସେ ଧରାକୁ ସରା ଜ୍ଞାନ କରେ । ତା' ପକ୍ଷରେ କଟକ, ଭୁବନେଶ୍ୱର ଆଖିପିଛୁଳା କେଇଟିର ବାଟ । ପୁରୀ, କୋଣାର୍କ, ପାରାଦ୍ୱୀପ, ତାଳଚେର—ହଁ ବାଟ ଦ' କୋଶ ପରି ତାକୁ ଲାଗେ ।

ରାତିରେ କେବାଳନନ୍ଦ ଫେରିଲା କ ନାହିଁ, ରଙ୍ଗୁଲୀ ସେ ଖବର ଦେଲା ନାହିଁ । ଉପସନ୍ଧି ମନର ଛଟପଟ ଭାବନାକୁ ଚନ୍ଦନା ବୀରକେଶରୀଙ୍କୁ ତରତର ପ୍ରକାଶ କଲେ । କେବଳାନନ୍ଦ ଯାହା କହୁଥିଲା ସ୍ୱାମୀଙ୍କ ପାଖରୁ ସେ ଜାଣିବାକୁ ଚାହୁଁଥିଲେ ।

ନିଶବଦ ରାତି । ଅନ୍ଧାର ଘର । ପୂର୍ବପୁରୁଷଙ୍କର ସେହି ଐତିହାସିକ ଶିଶୁକାଠର ପଲଙ୍କ, ଯାହାର ଉପରେ କେତେ କେଶରୀ ପିଲା ଜନମି, ଦୀର୍ଘ ଜୀବନ ସୁଖଦୁଃଖରେ କଟାଇ ଅନ୍ତିମ ନିଶ୍ୱାସ ତ୍ୟାଗ କରିଛନ୍ତି । ସେହି ପଲଙ୍କ ଉପରେ । ପାଖାପାଖି ଦିଓଟି ଦୁର୍ବଳ ରୋଗଣା ବୃଦ୍ଧ ଶରୀର । ଭାବନା-ବିଭୋର ।

ବୁଝିବାକୁ ମୋର ବାକି ନାହିଁ, ଚନ୍ଦନା !

କହ, କ'ଣ ତମେ ଭାବୁଛ ?

ଭାବୁଛି ? ସବୁ କଥା ମୋ ଆଖିକୁ ଜଳଜଳ ହୋଇ ଦିଶିଯାଏ । ମୁଁ ଯାହା ଅନୁମାନ କରେ, କାଳକ୍ରମେ ତାହା ସତ୍ୟ ହୋଇଯାଏ । ସେଇଥିପାଇଁ ଲୋକେ ମୋ କଥା ଶୁଣନ୍ତି, ଯେଉଁ ମସୁଧା କରେ ମାନନ୍ତି । ମୁଁ ଜୟପୁରରୁ ଆସିଲାବେଳେ ଅଫିସର ଅଧେ ଆମଲା ବସ୍ ପାଖକୁ ଆସିଥିଲେ···

ତମର ହାତ ଧରି ମୁଁ ବାହା ହୋଇ ଏ ଘରକୁ ଆସିଛି, ସୁଖରେ ବେଳ କଟାଇ ବୁଢ଼ୀ ବୋଗଣୀ ହୋଇଛି, ବଞ୍ଚି ରହିଛି । ତମ କଥାମତ ମୋ-ଠାରୁ ଅଧିକ କାହାକୁ ଜଣା ? କ'ଣ ତମ ଅନୁମାନ, କହୁନ ? କେବଳ କାହା କଥା କହୁଥିଲ ? ନାମଟି କହିଲ ନାହିଁ ।

ସେ ସବୁ କହିଦେଇଯାଇଛି । ତିନିବର୍ଷ ତଳେ ମୁଁ ଯାହା ସନ୍ଦେହ କରୁଥିଲି, ସେଇଆ । ଶୁଣ, କେବଳ କହୁନାହିଁ, ତା' ମୁହଁରେ ତମ ପୁଅ ବିକ୍ରମ ଲୁହାଇଛି । ସେମାନେ ଚକ୍ରାନ୍ତ କରି ଲିଲୁପୀର ସମ୍ବନ୍ଧ ଭଙ୍ଗାଇଲେ । ବିକ୍ରମ ହାତରେ ଟଙ୍କା ଫେରାଇ ମତେ ଅପମାନ ଦିଆଇଲେ ।

ଇନ୍ଦିରା !

ନା । ତମରି ଗେହ୍ଲାରି ଅନୁପା !

ନା, ନା । ଇନ୍ଦିରା ହୋଇଥିବ । ସର୍ପରେ ଜନ୍ମ ଦେଲି ମୋତେ, ସ୍ୱଭାବ ଛାଡ଼ିବ କେମନ୍ତେ ? ଶୁକମୁନି କଥା ମୋର ମନେପଡ଼ୁଛି । ଯେଉଁ ଦୁର୍ନାମ !

ଅନୁପା ସେହି ସାପର ଛୁଆ । କେତେଙ୍କୁ ଦଂଶିଥିବ । ତମ ପୁଅକୁ ବି ଦଂଶିଛି । ତା'ରି ବିଷରେ ବିକ୍ରମ ଘାରିହେଉଛି ।

ଆଉ କହନା, ତମକୁ ମୋ ରାଣ, ଆଉ କହନା । ମୁଁ ଝିଅଁ ଲାଗି ସବୁ ଭୋଗିଛି । ମୋର ମରଣ ହେଉ, ଏ କୁଳରେ କଳଙ୍କ ନ ଲାଗୁ । ବୁଝିଲି । ଏବେ ସବୁ ବୁଝିଲି ।

ଚନ୍ଦନା କାନ୍ଦିଉଠିଲେ । ପଦେ ପଦେ ହୁଙ୍କାର ଛାଡ଼ି କପାଳକୁ ବାଡ଼ଇଲେ । ବୀରକେଶରୀଙ୍କର ସାନ୍ତ୍ୱନାବାଣୀ କାନକୁ ନେଲେ ନାହିଁ । କାନ୍ଦି କାନ୍ଦି କହିଉଠୁଥିଲେ, ଦଉଡ଼ି ଦେଇ ମରିବ । ଜହର ଖାଇବ । କେଉଁ କୂଅପୋଖରୀକୁ ଡେଇଁପଡ଼ିବ । ବଞ୍ଚିବ ନାହିଁ । ମୋର ଏଇ ପୋଡ଼ାମୁହଁ କାହାକୁ ଦେଖାଇବ, କହ ?

ବୀରକେଶରୀଙ୍କର ସସ୍ନେହ ସ୍ପର୍ଶରେ ଚନ୍ଦନା ପ୍ରକୃତିସ୍ଥ ହେଲେ । ଯେଉଁ ପତ୍ର ଦି'ଖଣ୍ଡି ସେ ଇନ୍ଦିରା ଓ ଅନୁପାଙ୍କ ପାଖକୁ ଲେଖିଥିଲେ ଉପରେ ସ୍ୱାମୀଙ୍କ ପାଖରେ ସେ ସମ୍ବନ୍ଧରେ ସେ କିଛି ପ୍ରକାଶ କଲେ ନାହିଁ ।

ବାରକେଶରୀ ବୁଝାଇ କହିଲେ, ଇନ୍ଦିରା ଓ ଆନନ୍ଦ ବନ୍ଧମକୁ ଦୂରେଇ ରଖିଛନ୍ତି । ତାଙ୍କ ଘରେ ତାକୁ ପ୍ରଶ୍ରୟ ଦେଉନାହାନ୍ତି । ସମସ୍ତଙ୍କର ତ ପୁଣି ସମ୍ମାନକୁ ଡର !

ଚନ୍ଦନା କହିଲେ, ତାଙ୍କ ଝିଅର ଗୁଣ ସେମାନେ ଜାଣିସାରିବେଣି । ମୋ ପୁଅ ତ ତାଙ୍କ ଦୁଆର ମାଡ଼େ ନାହିଁ । ଇନ୍ଦିରା ଯେଉଁ ଜାଲ ପାତିଥିଲେ, ସେଥିରୁ ସେ ଖସିଆସିଛି । ମୋ ପୁଅ ନିର୍ମଳ ସୁନାମୁଣ୍ଡା । ମୋ ପୁଅକୁ ମୁଁ ଚିହ୍ନେ ନାହିଁ ? କଏ କହିବ, ଆଖି ଟେକି ସେ କେବେ କାହାକୁ ଚାହିଁଛି ?

ସତ କଥା । ବନ୍ଧମ ପରି ପିଲା ଖଣ୍ଡେ ଏବଯାଏ ଏ ଗ୍ରାମରେ ଜନମି-ନାହିଁ, ଚନ୍ଦନା ! ଶୀଘ୍ର ଅନୁପାର ବାହାଘର ହୋଇଯିବ । ଧନୀ ବାପର ଏକଇ ପୁଅ, ନିଜେ ଡେପୋଟି-କଲେକ୍‌ଟର, ତା ସଙ୍ଗରେ । ବନ୍ଧମର ମନରେ ତଥାପି ଯଦି ଟିକିଏ ବିଷ ରହିଥିବ ନା, ସେତକ ତା ଲୁହଁକୁ ବଳେ ଝଡ଼ିଯିବ । ସେଇଠୁ, ଆମେ ଆମର ବୋହୂ ବାଛିବା । ନା, କ'ଣ କହୁଛ ?

ଯାହା କହିଲ ।

ରାତିର ଶେଷ ପ୍ରହର ହୋଇସାରିଥିଲା ।

ପରଦିନ ଅପରାହ୍ଣରେ କେବଳାନନ୍ଦ ଆସେ ଆସି ଉପସ୍ଥିତ ହେଲା । ଗ୍ରାମରୁ ସେ ଅନୁପସ୍ଥିତ ଥିବାର ବିବିଧ କାରଣ ଦର୍ଶାଇଲା । ଅନ୍ତ ଜରୁରି କାମରେ ସେ କଟକ ଯାଉଛି, ଦିନେ ଦୁଇଦିନ ସେଠାରେ ସେ ରହିବ ଓ ବନ୍ଧମ ସଙ୍ଗେ ଦେଖାକରିବ ବୋଲି ଜଣାଇଲା ।

ବାରକେଶରୀ ଗ୍ରାମ ପରିକ୍ରମା ପାଇଁ ଚାଲିଯାଇଥିଲେ । ଚନ୍ଦନା କେବଳାନନ୍ଦକୁ ଅପେକ୍ଷା କରିବାକୁ କହିଲେ । ପୁଅ ପାଖକୁ ଚିଠିଖଣ୍ଡେ ଲେଖୁଁଣୁ କାଗଜ ଉପରେ କେତେବିନ୍ଦୁ ଅଶ୍ରୁ ଝରିପଡ଼ିଲା । ଲଫାପା ଭିତରେ ସେହି ଷ୍ଟେଟ ଚିଠି ଓ ଜଗନ୍ନାଥ ମହାପ୍ରଭୁଙ୍କର ଛବିତଳେ ଝୁଲା ହୋଇଥିବା ଷ୍ଟେଟ ଫଟୋଖଣ୍ଡି କାଢ଼ି, ସେଇଟି ରଖିଲେ । ଚୁଡ଼ା ଚକଟି, ଅଠା କରି ଲଫାପା ବନ୍ଦ କଲେ । ଠିକଣା ଲେଖିଲେ । ଦାଣ୍ଡକୁ ଆସିଲେ ।

କେବଳାନନ୍ଦ ଆଶା କରିଥିଲା ଯେ, ଚନ୍ଦନା ତାଙ୍କୁ ସେହି ପ୍ରସ୍ତାବ ବିଷୟରେ କ'ଣ ପଚାରିବେ; କିନ୍ତୁ ଚନ୍ଦନା ପରକ୍ଷଣି ତା' ହାତକୁ ବଢ଼ାଇ-ଦେଇ କହିଲେ, ନେ ବାପ, ବିଦମକୁ ଦେବୁ ।

ହସ ହସ ହୋଇ କହିଲେ, ମୁଁ ସବୁ ବୁଝିପାରୁଛି । ତତେ ମୋର ଆଉ ପଚାରିବାର କିଛି ନାହିଁ । ତୋ ପିଉସାଙ୍କୁ ବି କହିଛି । ଆମର ଜବାବ, ମୋର ଚିଠିରେ ମୁଁ ଲେଖିଛି । ସେମାନଙ୍କୁ ଆଗରୁ ମୁଁ ଲେଖି-ଥିଲି । ଯେଉଁଦିନ ବିଦମ ଗଲା ସେହିଦିନ ।

ଖୁସି ହୋଇ କେବଳାନନ୍ଦ କହିଲା, ଭଲ କଲ, ଅପା ! ଭାଇଙ୍କର ସେଇଠି ଆଗ୍ରହ ।

ଘର ଭିତରୁ ବାସନ୍ତୀ ଧାଇଁଆସିଲେ ।

ଚମକିଉଠି ଚନ୍ଦନା ବଳିବଳେଇଲା ପରି ଥରିଲା ସ୍ୱରରେ ପଚାରିଲେ, ଆଗ୍ରହ ?

ହଁ, ଅପା, ଦୁର୍ବିଙ୍କର ।

କାହାର ମ, ସେ କିଏ ?

ବାସନ୍ତୀଙ୍କର ପ୍ରଶ୍ନରେ ଚନ୍ଦନା ମୂକ ପାଲଟିଥିଲେ । ଯାହା କହିବାକୁ ଲାଜ, ବାସନ୍ତୀଙ୍କ ଆଗରେ ସେତକ ପ୍ରକାଶ କଲେ ଅକାରଣ ଦୁନିଆରେ ଅପବାଦ ରଟିବ । ଯାହା ହେବାର ନୁହେଁ, ହେବ ନାହିଁ, ସେକଥା ସେ ପୁଅକୁ ଲେଖିଦେଇଛନ୍ତି । ବୃଥାରେ ସେଥିପାଇଁ ଉପରମୁହଁ ଚଳକୁ ହେବ କାହିଁକି ?

ସେ କହିଲେ, ତୁ ବଳେ ଜାଣିବୁ ଲୋ, ଆଜହୁଁ ତରତର କାହିଁକି ? ବାହା ନିମିତ୍ୟ ଖବର କ'ଣ ଲୁଚି ରହେ ? କେତେ ପ୍ରସ୍ତାବ ଆସେ, ଭାଙ୍ଗେ, କେଉଁ ଉପରୁ ବର ବାହୁଡ଼େ । ସମସ୍ତେ ଏହା ଜାଣନ୍ତି ।

କେବଳାନନ୍ଦ ଦୁର୍ବିଙ୍କୁ ପ୍ରଣାମ କରି ବିଦାୟ ନେଲା ।

ବାସନ୍ତୀ ଅଭିମାନ କରି କହିଲେ, ନ କହିଲେ ନାହିଁ । ମୁଁ ଜାଣ୍ଡୀ ଦୁଣ୍ଡୀ ନୁହେ ଗୋ ଅପା ! ମତେ ସବୁ ଜଣା । ଝୋଟକୁ ନିଆଁ ଖରି,

ଜଳଯାଏ ଫରଫର । ବେମଧ୍ୟତ ଘରେ ଅଣଆକଟରେ ଠୋକାଠୋକିଙ୍କର କାରବାର । ସେଇ ଷଣ୍ଡ ! ଲୁଚିଛୁ ନା ଗୋଡ଼ ଦଓଟି ଦିଶୁଛି । ଖାଲି ଶୁଖିଲା ଦୁଳଦୁଳ, ଗୁଞ୍ଜଳ ଆଞ୍ଜୁଳ, ପୁଅବୋହୂ ବନ୍ଧାପନା ବାକି ।

ଏ ଗୁଡ଼ାକ ତୁ କ'ଣ କହୁଛୁ ?

ସେସବୁ କାମ ଜଲଦି ସାରିଦିଅ । ମାସ କେଇଟି ପରେ କୋଳରେ ନାତି ଝୁଲାଇବ ।

ମାଉ ମାଉଶୀ ପରି କଥାଗୁଡ଼ାକ କହି ବାସନ୍ତୀ ହସିହସି ମୋହନଙ୍କୁ କାଖ କରି ଚାଲିଗଲେ । ଚନ୍ଦନାଙ୍କର ଚିନ୍ତା କରିବାର ଆଉ ଶକ୍ତି ନ ଥିଲା । ଦେହହାତ ଝିମିଝିମି ହେବାକୁ ଲାଗିଲା । କପାଳରେ କର ନେଇ ସେଇ ଦାଣ୍ଡ-ପିଣ୍ଡାରେ କାନ୍ଥକୁ ଆଉଜି ବସିରହିଲେ । ଦୁଇ ଆଖିରୁ ଲୋତକର ସ୍ରୋତ ପ୍ରବାହିତ ହେଲା ।

ସଞ୍ଜୟପୁର ପରୀକ୍ଷା । କାଲି ସକାଳେ ପରଦିନ ସନ୍ଧ୍ୟା ବସ୍‌ରେ ସେ ସୁନ୍ଦରଗଡ଼ ଚାଲିଯିବ । ନୂଆ କଲେକ୍ଟର ଶ୍ରୀ ବହୁଗୁଣା ପ୍ରକାଶଠାରୁ କାଲି ଦାୟିତ୍ୱ ନେବେ । ପ୍ରକାଶ ଓ ଅଞ୍ଜନା ସନ୍ଧ୍ୟା ପୂର୍ବରୁ ଯେକୌଣସି ମୁହୂର୍ତ୍ତରେ ଆସି କମଳକୃଷ୍ଣବାବୁଙ୍କ ବସାରେ ପହଞ୍ଚିବେ । ଢେଙ୍କାନାଳରୁ ଫୋନ କରି ରଞ୍ଜିତାଙ୍କୁ ଜଣାଇଦେଇଛନ୍ତି । କଟକରେ ମାତ୍ର ଗୋଟିଏ ଦିନ ରହଣି । ଇନ୍ଦିରା ଆଗରୁଁ ସେମାନଙ୍କୁ ମଧ୍ୟ ନିମନ୍ତ୍ରଣ କରିସାରିଛନ୍ତି ।

କମଳବାବୁ, ଆନନ୍ଦ, ଶିବଚରଣ ଓ ରାମକୁମାର ଦୁଇଦିନ ତଳେ କଲିକତା ଗଲେ । ସେମାନଙ୍କର କେଉଁ ଯୌଥ କାରବାର ସମ୍ବନ୍ଧରେ କାହା ସଙ୍ଗରେ ପରାମର୍ଶ କରିବେ । ତରକା ହାଡ଼ବନ୍ଧୁ, ଯୋଗ୍ୟପୁତ୍ର ବାଉରି-ବନ୍ଧୁର ଉପଦେଶ ମାନ ଶୂନ୍ୟରେ ଉଡ଼ାଉଥିବା ଏହି ଯୌଥ କାରବାରୀଙ୍କ ସଙ୍ଗେ ହାତ ମିଳାଇବାକୁ ରାଜି ହୋଇପାରିଲେ ନାହିଁ ।

ଏମ୍.ଏଲ୍.ଏ. ଶିବଚରଣ ଇନ୍ଦିରାଙ୍କୁ ନିଜେ ଏହା କହିଥିଲେ ।

—ଆଗୋ ଅପା ! କହିବ ନାହିଁ, କହିଲେ ଏ ଘରେ ରହିବ ନାହିଁ । ଭାଇଙ୍କର ଯେତିକ ଉମର ବଢୁଛି, ଯେତିକ ସମ୍ପତ୍ତି ବଢୁଛି, ସେ ସେତିକ ମାଇପିବୋଲା ହେଉଛନ୍ତି । ଆମ ଭାଉଜ ଯୁଆଁ, ଝିଅ ନଦେଲେ, କେମିତି ଶ୍ରେଷ୍ଠ ମଦୁଆ ପୁଅକୁ କାଳକୋଚର ନକମା ବୋଲୁ, ସୁନା ବୋଉଛେଇ ହୋଇ ଦୁମୁଦୁମ ଭୁଲିଲାବେଳେ ବସୁଧା ଦୋହଲିଉଠୁଛି ।

କ'ଣ ହେଲା କି ଶିବ ?

ଆମ ସଙ୍ଗରେ ଯୋଗ ଦେବାକୁ ହାଡ଼ଆଭାଇ ମନା କଲା । ତା'ର କି ଭୟ ? କେମିତି ମନ୍ତ୍ରଣା ଦେଲା । ଧେଡ଼ଙ୍ଗୀ ଭାଉଜ କହିଲା, ବୁଝି ଖବର-ବାର୍, ତମ ଧନରେ ତାଙ୍କ ଆଖି । ଚକ୍ରବ୍ୟୂହରେ ପକାଇ ସେମାନେ ତମକୁ ଲୁଟି ଖାଇବେ । କହିଲା, ଶିବକୁ ନାରଦ କରି ପଠେଇଛନ୍ତି । ଯୁଆ ଭିତରେ ଇନ୍ଦ୍ର ଉହାସର ହାତ ଅଛି ।

ଇନ୍ଦ୍ର କହିଲେ, ତମେ ମେମ୍ବର, ତମରି ପାର୍ଟିର କ'ଣ ଯୁଆଁ ଜାଣନ୍ତି ନାହିଁ ? ମତେ ଯାହା କହିଲେ ତ କହିଲେ, ତମକୁ ପୁଣି ଅପମାନ ଦେଲେ ?

ଆରେ ନା, ନା ଅପା ! ମତେ କିଏ ଅପମାନ ଦେଇପାରିବ ? ଭାଉଜ ଲେଖାରେ ଅଠାରେ ପଦେ କହିଦେଲେ । ଆଗି ତୁଇଁ କହୁଛି, ଏମିତିଆ କଥାକୁ ମୁଁ ଛନ୍ଦ କରେ ନାହିଁ । ସେଗୁଡ଼ା ମୁଁ ସବୁଠେଇଁ ପାଏ । ମୋ ଦେହର ମଳ । ସେତକ ନ ହୋଇଥିଲେ, କେବେ କେମିତି ଅନ୍ୟଙ୍କର ହାତଗୋଡ଼ର କରାମତକୁ ଛନ୍ଦ କରି ବସିଥିଲେ, ମୁଁ ମେମ୍ବର ହୁଅନ୍ତି କପରି ? ଭଗବାନ ଶ୍ରୀକୃଷ୍ଣ ନିଜ କାମ କରାଇନେବାକୁ ଗଧର ପାଦ ଧରି ନ ଥିଲେ କି ?

ଧରିଥିଲେ, ଶିବଚରଣ ! କେତେଥର ସେ ଶାଢ଼ି ପିନ୍ଧି ମାଇପି ବେଶ ବି ଧରିଥିଲେ ।

ମୋ ଅପା ଲୋ ! ତତେ ସବୁ କଥା ଜଣା । ମୁଁ, ମନକଲେ ହଜାରେ ଥର ଶାଢ଼ି ପିନ୍ଧିଥିବି । ସେ ଅମଳର ଗଧଗୁଡ଼ିକ ଏ ଅମଳରେ

ମଣିଷ ହୋଇ ବଡ଼ ବଡ଼ ଗାଦ୍ୟାରେ ବସିଛନ୍ତି । ସେମାନଙ୍କର ପାଦ ମଞ୍ଜାଳ, ଭୁଣ୍ଡରେ ପାଞ୍ଚଜନ୍ୟ ଶଙ୍ଖ ପରିବର୍ତ୍ତରେ ପଞ୍ଚଜନ ଶଙ୍ଖ ଫୁଙ୍କାଇ କାମ ହାସଲ କଲେ ଭଲ । ମୁଁ ସେଇଆ କରେଁ । ତୋ'ର ଅପମାନକୁ ହଜମ କରିଥାନ୍ତି, କିନ୍ତୁ ଅନୁପା ନାମରେ ପଦେ କହିଲା ସେ ଧେଡ଼ଙ୍ଗୀ !

ଏଡ଼େ ସାହସ ?

ପିଲାମାନେ ସମସ୍ତେ ପାଖରେ ଥିଲେ । ଉପର ଘରେ । ଅନୁପା ଉଠିଯାଉଥିଲା । ଶିବ ତାର ହାତଟି ଧରି ବସାଇଦେଲେ । କହିଲେ, ବସୁନୁ ମା, ବସ । ଲୋକେ ମିଛ ସତ ଯୋଡ଼ି କହନ୍ତି । କାନରେ ତ ପଡ଼ିବ । ଏ ସଂସାର ସେଇଆ । ସମସ୍ତଙ୍କୁ କ'ଣ ଲୁଚି ଲୁଚି ବୁଲିବା ? କହିବା ଲୋକର ମୁହଁକୁ ଜଳଜଳ କରି ଚାହିଁ ମୁରୁକେଇ ହସୁଥିବ । ନିଜ କାମ ନିଜେ କରିଯିବ । ଭୁକ ଭୁକ ପାଟି ଶୋଲହେଲେ ଘାଉଁ ଘାଉଁ ହୋଇ, ନିଜ ଲାଜ ନିଜେ ଢୋଙ୍କି, ଲାଙ୍ଗୁଡ଼ ଜାକି ବନେ ପଳାଇବେ ।

ସତ କହିଲ, ଶିବ !

ତମ ଜେମାମଣି ଘାଉଜର ଗଣ ପକାଇ ମୁଁ କହୁଛି, ଅପା, ମୁଁ ଯାହା କହେଁ ସତ କହେଁ । ମତେ ଶୁଣାଇ ଶୁଣାଇ ଶତ୍ରୁମାନେ କହନ୍ତି, ମୁଁ ଲୁଆଡ଼େ ଜେମାକୁ ଭେଟି ଦେଇ ବଡ଼ ବଡ଼ କାମ କରାଇନିଏ । ମୋ କାନରେ ପଡ଼ିଲେ ମୁଁ କହେଁ, ଯଦି ଈର୍ଷା ହେଉଛି, ପାରିଲାର ପଣ ଅଛି, ତମେ ସେପରି କର ମ ! ଫଳ ପାଇବ । ନ ପାରିବ ଯଦି ହନ୍ତସନ୍ତ ହୋଇ ଓଠ କାମୁଡ଼ି ଖଣ୍ଡିଆ କରନା । ଜାଣିଥା, ମୁଁ ତିନ ପିଲାର ବାପ । ମୋ ଜେମାକୁ ମୁଁ ଛୁଡ଼ପତ୍ର ଦେବି ନାହିଁ ଯେ, ତମେ ପରୁଡ଼ ମସିଣା ପକାଇବ ।

ଇନ୍ଦିରା ହସିବାକୁ ଲାଗିଲେ ।

ଶିବଚରଣ ହସିହସି ପଲଙ୍କ ଉପରେ ଲେଟି ଯାଉଥିଲେ । ଅନୁପା ଓ ନିରୁପା ମୁରୁକେଉଥିଲେ । ହସ ଥମିବାରୁ ଶିବ ଗମ୍ଭୀର ହୋଇ କହିଲେ, ମୁହେଁ ମୁହେଁ ବଢେଇଦେଲ ଶୁକୁଟି ଭଉଜ ଯୁଥିକାକୁ । କାହିଁକି ଡରିବ ?

ମୋର ସୁନାକଣ୍ଢେଇ ଚନ୍ଦ୍ରବଦନୀ ଲକ୍ଷ୍ମୀ ଭଣିଜୀ ଅନୁର ନାମରେ ଅପବାଦ ଦେଇ ସେ ଗପିଲା, ତା'ର ଜିଭରେ ଏତେ ହାଡ଼ ଅଛି ?

ଇନ୍ଦିରା କହିଲେ, ତା'ର ଏତେ ବହପ !

ସୁନାବୋଉର କରାମତ ନେଲେ ଅପା ! ମୁହେଁ ମୁହେଁ ବତାଇଦେଲା, ଆଗୋ ଭାଉଜ ! ଅନୁପାକୁ ବୋହୂ କରିବ ବୋଲି ପାଞ୍ଚବର୍ଷ ଇନ୍ଦିରାଙ୍କ ଘରକୁ ଧପାଳିଥିଲ । ତମର ଟୋକାଟା କେମା ପୁଅଟାକୁ ଜୋଇଁ କରିବାକୁ ସେ ମଗିଲେ ନାହିଁ । ଏକା ନାହିଁ ଦି'ଖଣ୍ଡ ଘର ବଦମ ତା'ର ଭାଇଟା ! ସେମାନଙ୍କ ସମ୍ବନ୍ଧରେ ଅପବାଦ ଦେଉଛ, ତମର ଜିଭ ରହିବଟି ? ରାଜାପୁଅ ପରି ସଞ୍ଜୟ, କମଳବାବୁଙ୍କ ପୁଅ । ତାକୁ ସେ ଜୋଇଁ କରୁଛନ୍ତି । କେଉଁ ଗୁଣରେ ବାଉରିଆ ଟୋକାଟା କେମା କହ, ଅରକ୍ଷିତ ବଦମ କହ, ସଞ୍ଜୟ ସଙ୍ଗେ ସମସରି ? ଭାଉଜଙ୍କର ପାଟି ତ ବନ୍ଦ !

ପାଖରୁ ଉଠି ଅନୁପା ଆର ଘରକୁ ଚାଲିଯାଉଥିଲା ।

ଇନ୍ଦିରା ମନେ ମନେ ଉତ୍କଣ୍ଠିତ ହେଉଥିଲେ । ଭାବିଲେ, ଶିବଚରଣଙ୍କ କଥା ଅନୁପାର କାନରେ ବାଜିଛି । ଭଲ ହୋଇଛି । ଦିନ କେଇଟା ପରେ ସେ ପର ଘରକୁ ଚାଲିଯିବ । ସେ ବୁଝିଥାଉ, ଟିକିଏ ଅସାବଧାନ ହେଲେ କିପରି ଅପବାଦ ରଟେ ।

ସଞ୍ଜୟ, ବିକାଶ ଓ ଅଞ୍ଜନାଙ୍କୁ କାଲି ସଞ୍ଜରେ ନିମନ୍ତ୍ରଣ କରାହୋଇଛି । ମନୁଆ ଝିଅଟା ଅନୁପା, ପୁଣି ତା'ର ମତ ବଦଳାଇଲାଣି । ନିଜ ଖୁସିରେ ସେ ପୁଣି ସଜବାଜ ହେଉଛି । ବାଛି ବାଛି ମନକୁ ଦେନାଲ ଶାଢ଼ି, ବ୍ଲାଉଜ, ଗହଣା ପିନ୍ଧୁଛି । ନିରୁପା ସୁରୁପାଙ୍କୁ ବି ସଜାଇ ଦେଉଛି ।

ତିନୋଟି ପରୀ ପରି ସେମାନେ ଦିଶୁଛନ୍ତି ।

ଅପରାହ୍ନରେ ଚନ୍ଦନାଙ୍କର ଚିଠିଖଣ୍ଡି ସେ ପାଇଲେ । ସେଥିରେ ଆଖି ବୁଲାଇଲେ । କ୍ରୋଧରେ କୁହୁଳିବାକୁ ଲାଗିଲେ । ଅନୁପା ଓ ନିରୁପାଙ୍କୁ ଶୁଣାଇ କହିଲେ, ଦେଖ ମ ତାଙ୍କର ବଢ଼ପ ! ଆମ୍ଭକୁ ତାଙ୍କର ବୋଲକରା ମଧ୍ୟସ୍ଥ କରି ମଣିଲେ କି ! ଚୂଲିଚୁଲି ନାହିଁ ଅଗର ବାସ । ଯୋଗୀଘରେ ଡିଙ୍କି, ନା ଗୁଣ୍ଡିଲ ଖାଏ ଫୁଙ୍କି ! ଗୁଡର ଦେଖ । ବଇମ ଗୁଳର ଖଣ୍ଡେ ପାଇଛୁ । ତାଙ୍କ ଘର ଓ ରୋଜଗାର ଲାଗି ବୋଝୁ ସେମାନେ ନିଜେ କେଉଁଠି ଖୋଜ ବାହାର କରିବେ । ଅନୁ ପରି ବୋଝୁଟିଏ ତାଙ୍କ ପାଇଁ ମୁଁ କେଉଁଠି ଗଢ଼ାଇବି ?

ବାହାର ମୁହଁରେ ସେ ହସୁଥିଲେ ।

ଚିଠି ହ'ଖଣ୍ଡି ଉପରେ ଆଜି ଥରେ, କ'ଣ ଖୋଜିଲା ଖୋଜିଲା ପରି ଆଖି ବୁଲିଉଥିଲେ— × × ଏକାଠି ବଢ଼ିଥିଲେ × × ଗୋଟିଏ ସପରେ ଶୋଇ × × ଭଲ ପାଇବା ସ୍ୱାଭାବିକ × × ମଝିରେ କିଏ ବାଡ଼ ପକା-ଇବ × × × ଝିଅଟିଏ ଠିକଣା କରିବ × × ଅନୁପା ପରି × × କହୁଥିଲା ଲକ୍ଷ୍ମୀନୃସିଂହ — ।

× × ଫଟୋ ତଳେ × × × ଅମୂଲ୍ୟ ଧାଡ଼ିଟି ଲେଖିଛୁ × × ଝୁଲାଇଛୁ × × ତୋ ପରିକା × × ତୋ ମନକୁ ପାଇଲେ × × ଜାଣି-ସାରିଲଣି—

ମନରେ କେତେ ଅବୋଧ ପ୍ରଶ୍ନ ।

ଗୁଡି ଥରଥର । ଓଠରେ ହସ ଲାଗିରହିଛି । ଚିଠି ହ'ଖଣ୍ଡି ହାତରେ ଧରି ଅନୁପାର ମୁହଁକୁ ଚାହିଁଲେ । ସେ ମୁହଁଟି ସୁନ୍ଦର ଦିଶୁଛି, ପ୍ରଫୁଲ୍ଲ ଦିଶୁଛି । ସେ ମୁହଁରେ ଅବସାଦର ଲେଶ ନାହିଁ ।

ଇନ୍ଦିରା ପ୍ରକୃତିସ୍ଥ ହେଲେ । ସବୁ ଦୋହଲା ପ୍ରଶ୍ନର ଉତ୍ତର ସେ ନିଜ ଭିତରେ ପାଇଲେ— ଅନୁପା ତା'ର ଭୁଲ ବୁଝିସାରିଛି, ସଂସାରକୁ ଚିହ୍ନି-ପାରିଛି; ଏଣିକି ସେ ସାବଧାନ ହେବ, ହାତେ ମାପି ଗୁଖଣ୍ଡିକରେ ଚାଲିବ; ଭାବପ୍ରବଣ ହୋଇ ଭସିଯିବ ନାହିଁ । ଅନୁପା ଏଣିକି କଥା ମାନିବ ।

ଚିଠି ଦି'ଖଣ୍ଡି ଅନୁପାର ପାଖରେ ରଖିଲେ । ମୃଦୁ ହସି କହିଲେ, ଚିଠି ପଢ଼ିବୁ ତ ପଢ଼ ଲୋ ମା ! ନିଜ କଥା ସେ ତାଙ୍କର ବୁଝନ୍ତୁ । ଆମେ ସେଥିରେ ମୁଣ୍ଡ ଖେଳାଇବା ନାହିଁ । ବଡ଼ ପ୍ରମାଦ ।

ନିରୁପା ଚିଠି ଦି'ଖଣ୍ଡି ଉଠାଇନେଲା । ଅନୁପା ଉତ୍ତର ନ ଦେଇ ଇନ୍ଦିରଙ୍କର ତଳ ମହଲାର ଶୋଇବାଘର ଭିତରୁ ବାହାରିଆସିଲା ।

ଅପରାହ୍ନ ।

ଯୋଡ଼ା ପଲଙ୍କ ଉପରେ ସାନନ୍ଦ ଓ ସୁରୂପା ଶୋଇଥିଲେ । ଇନ୍ଦିରା କ୍ଲାନ୍ତ ଅନୁଭବ କରୁଥିଲେ । ଘଣ୍ଟାଏ ବିଶ୍ରାମ ନେବାକୁ ସେ କହିଲେ, ତୁ ଯା ନିରୁ, ଭଉଣୀ ଦୁହେଁ ଉପର ଘରେ ଟିକିଏ ଶୋଇପଡ଼ । ଆଜି ଖରା ଗରମ ହେଉଛି । ସତେ କି ଉପରୁ କିଏ ନିଆଁ ବରଷୁଛି ।

ଉପର ଘରେ ନିରୁପା ପଚାରିଲା, ବୋଉର ସେମାନଙ୍କ ଉପରେ ଏତେ ଘୃଣା, ଏତେ ରାଗ କାହିଁକି ଅପା ! ସେମାନେ ଆମର କି ଦୋଷ କରିଛନ୍ତି ?

ଅନୁପା ଉତ୍ତର ଦେଲା, ବୋଉକୁ ପଚାରି ବୁଝିବୁ ।

ତାଙ୍କର ନାମ ପଡ଼ିଲେ ବୋଉ ନାକ ଟେକୁଛି । ଭାବିଲି, ସେମାନେ ଗରିବ ବୋଲି ବୋଉ ସେମାନଙ୍କୁ ପାଖରେ ପୂରାଇବାକୁ ଚାହୁଁନାହିଁ । ବିକ-ଭାଇଙ୍କୁ ନିମନ୍ତ୍ରଣ କରିବାକୁ ମୁଁ ବୋଉକୁ କହିଲାରୁ ସେ ମୋ ଉପରେ ଚିଡ଼-ଉଠିଲା ।

କ'ଣ କହିଲା ?

ବିକଭାଇ ଯାହା ନୁହନ୍ତି, ସେ ସେଇଆ କହିଲା । ସେ କୁଆଡ଼େ କୃତଘ୍ନ, ସେ କୁଆଡ଼େ ଅଭଦ୍ର । ତାଙ୍କର ସ୍ୱଭାବ ଭଲ ନୁହେ । ପ୍ରତିବାଦ କରିବାକୁ ମୋର ସାହସ ହେଲା ନାହିଁ । ବିକଭାଇ କ'ଣ ସତରେ ଖରାପ ଲୋକ ?

ତୁ କଣ ତାଙ୍କୁ ଜାଣୁ ନାହିଁ ?

ତୁ ତାଙ୍କୁ ଭଲକରି ଜାଣୁ । ସେ ତୋତେ ଅଧିକ ସ୍ନେହ କରନ୍ତି । ତୁ ବି ତାଙ୍କୁ ଖୁବ୍ ଭଲପାଉ । ସମସ୍ତେ ଏହା ଜାଣନ୍ତି । ସଞ୍ଜୟବାବୁ ବି । ସେଇଥିପାଇଁ ତୋ ନାମରେ ସେ ଗପିଥିଲେ ଯେ···

ଅନୁପା ଅବଚଳିତ ହୋଇ ନିରୁପାର କୁତୁହଳୀ ମୁହଁକୁ ଚାହିଁରହିଲା । ତା'ର ହାତଟିଏ ଧରି ସ୍ନେହରେ ପଚାରିଲା, ତୁନି ହେଲୁ କାହିଁକି ? କହ, କହୁନୁ ?

ନିରୁପାର ଆଖିରେ ଲୁହ ଟଳ ଟଳ ହେଲା । ଅନୁପାର ସସ୍ମିତ ମୁହଁକୁ ଚାହିଁ, ସେ ଦୁଇ ହାତରେ ମୁହଁ ଘୋଡ଼ାଇ ଅନୁପାର କାନ୍ଧ ଉପରେ ମୁଣ୍ଡ ଢଳାଇଲା । କଇଁ କଇଁ ହୋଇ କାନ୍ଦଉଠିଲା । ଅନୁପା ତାର ଦେହକୁ ଗୁଡ଼ାଇ ଧରି ପିଠି ଆଉଁସିଲା ।

କାହାରି ତୁଣ୍ଡରୁ ବାକ୍ୟ ସ୍ଫୁରିଲା ନାହିଁ । କିଛିକ୍ଷଣ ନୀରବତା ପରେ ନିରୁପା ମୁଣ୍ଡ ଟେକି ଆଖିରୁ ଲୁହ ପୋଛିଲା । ମନକୁ ମନ ପ୍ରକୃତିସ୍ଥ ହୋଇ ସେ କହିଲା, ମତେ କ୍ଷମା କର, ଅପା ! ମୋର ଦୋଷ ହୋଇଛି । ଏଣିକି ତୋତେ କ'ଣ କହିଦେଲି ।

କହୁ କହୁ ଅଧା କରିଦେଲୁ, ନିରୁ ! ତେବେ, ତୁ ଯାହା କହିବାକୁ ବସିଥିଲୁ ମୁଁ ଶୁଣିପାରିଛି । ମୋର କୈଫିୟତ ଦେବାର କିଛି ନାହିଁ । ଏତିକି କହିଦେଉଛି, ସଞ୍ଜୟବାବୁଙ୍କୁ ମୁଁ ଭଲକରି ଜାଣିଛି । ସେ ଏହା ଜାଣନ୍ତି । ଥରେ ତତେ ଚେତାଇଥିଲି । ଆଜି ଆଉ ଥରେ ଚେତାଇଦେଉଛି । ସାବଧାନ କରିବାକୁ ପୁଣି ତତେ କହୁଛି, ତାଙ୍କ ପରି ଉତ୍ତମ ଲୋକଙ୍କ ସଙ୍ଗେ ତୁ ମୋ'ର ସ୍ଥାନ ଭିଉଣୀଟା, ତୋ'ର ସମ୍ପ୍ରୀତା ରଖିବା ମୋତେ ଆଉ ଉଚିତ ନୁହେ । ସେ ଗୋଟାଏ ଜଳନ୍ତା ନିଆଁ ର ଶିଖା ।

ତୁ ତାଙ୍କୁ ଅବିଶ୍ୱାସ କରୁ, ଅପା ?

ହଁ । ଘୃଣା ବି କରେଁ ।

ତାଙ୍କୁ ତୁ ବାହା ହେବାକୁ ରାଜି ହେଲୁ କିପରି ?

ମୁଁ ରାଜି ହୋଇନାହିଁ ! ମତେ କେହି ପଚାରିନାହାନ୍ତି । ବୋଉ ତା'ର ନିଜର ଆଗ୍ରହରେ ଯାହା କରିବାର କରୁଛି । ମୁଁ ଏ ଘରେ ଅଲୋଡ଼ା ହୋଇ-ପଡ଼ିଲିଣି । ମତେ ଏ ଘରୁ ବିଦା କଲେ ସେ ନିଶ୍ଚିନ୍ତ ହେବ । ତା'ର ଯାହା ମନ, ସେ କରୁଥାଉ ।

ଅପା, ଯାହାକୁ ତୁ ଅବିଶ୍ୱାସ କରୁ, ଘୃଣା ବି କରୁ, ତାକୁ ନେଇ ତୁ ସଂସାର କରିବୁ କିପରି ?

ପୁଣି ନିରୁପାର ଆଖିରେ ଲୁହ ।

ହସିହସି ଅନୁପା କହିଲା, ଯାହାକୁ ମୁଁ ବିବାହ କରିବି ଲୋ ନିରୁ, ତାକୁ ମୁଁ କେବେ ଅବିଶ୍ୱାସ କରିପାରିବି ନାହିଁ, ଘୃଣା ବି କରିପାରିବି ନାହିଁ । ମୋର ସଂସାର ବେଶ୍ ସୁଖରେ ଚାଲିବ । ମୋ ପାଇଁ କେହି ଦୁଃଖ କରିବେ ନାହିଁ ।

ନିରୁପାକୁ ସନ୍ଦେହର ଘୂର୍ଣ୍ଣିରେ ପକାଇ ଅନୁପା ନିଜର ଅଞ୍ଚଳରେ ତା'ର ଆଖି ପୋଛିଦେଲା । ତାକୁ ଗେହ୍ଲା କରି କହିଲା, କେବଳ ସେହି-ମାନଙ୍କର ଦୋଷ ଦେଲେ ଠିକ୍ ହେବ ନାହିଁ । ଆମେ ଯଦି ଆମର ବେଶ-ଭୂଷାରେ, ଚାଲିଚଳଣରେ, ଚୁଣ୍ଡିର ଭଙ୍ଗୀରେ ଅଧିକରୁ ଅଧିକ ଲୋଭନୀୟ ହେବାକୁ ଚେଷ୍ଟା କରିବା, ସେ ଦିଗରେ ପ୍ରତିଦ୍ୱନ୍ଦିତା କରିବାକୁ ନିର୍ଲଜ୍ଜ-ପଣରେ ଚେଷ୍ଟା କରିବା, ସେମାନେ ପ୍ରଲୁବ୍ଧ ହେଲେ ତାଙ୍କୁ ନିନ୍ଦିବା କାହିଁକି ? ଆମେ ନିଜକୁ ଧରିଦେଲେ ଖାଲି ସେମାନଙ୍କୁ ଦାୟୀ କରିବା କାହିଁକି ? ସେମାନେ ବି ତାଙ୍କର ସ୍ଖଳନ ଓ ଦୁର୍ଦ୍ଦଶା ପାଇଁ ଆମକୁ ଦାୟୀ କରନ୍ତୁ ।

କାହିଁକି ଏପରି ହୁଏ ଲୋ, ଅପା ?

ତାରି କ'ଣ କେବଳ ଗୋଟିଏ ଦୁଇଟି କାରଣ ଅଛି ଯେ ମୁଁ କହିପାରିବି ? କାରଣଗୁଡ଼ାକ ଜଳଜଳ । ଦୈନନ୍ଦିନ ଜୀବନରେ ଆପେ ଆସେ । ଅନେକ କ୍ଷେତ୍ରରେ ସେଗୁଡ଼ାକ ଆପୃତ୍ତିହୀନ । ସେମାନଙ୍କୁ ବିଶ୍ୱାସ ନ କରିବା, ନିଜକୁ ସେମାନଙ୍କ କବଳରୁ ବଞ୍ଚାଇ ରଖିବାକୁ ଚେଷ୍ଟା କରିବା

ଆମର କର୍ତ୍ତବ୍ୟ । ତଥାପି, ଆଧୁନିକତାର ମୁଖା ପିନ୍ଧିବାକୁ ପଡ଼ିବ । ନୋହିଲେ, କେହି ଅନାଇବେ ନାହିଁ, ପଚାରିବେ ନାହିଁ । ପଛରେ ପଡ଼ିଯିବା ।

ନିରୁପମାର ଆଉ କିଛି ପଚାରିବାର ନ ଥିଲା । ଅନୁପମାର କଥାଗୁଡ଼ିକ ବୁଝିବାର ଅଭିଜ୍ଞତା ଓ ବୁଦ୍ଧି ତା'ର ନ ଥିଲା । ତେବେ, ସେ ଅନୁମାନ କଲା ଯେ, ଯେଉଁ ସଞ୍ଜୟବାବୁଙ୍କୁ ସେ ଅବିଶ୍ୱାସ କରେ, ଘୃଣା କରେ, ତାଙ୍କୁ ବିବାହ କରିବାକୁ ସେ ଅମଙ୍ଗ ନୁହେ । ବିବାହ ପରେ ଅନୁପମା ତାଙ୍କୁ ଭଲ ପାଇପାରିବ ।

ସେ ପୁଣି ଭାବିଲା, ସଞ୍ଜୟବାବୁଙ୍କ ସଙ୍ଗେ ଏବହୁଁ ତା'ର ଘନିଷ୍ଠ ଭାବରେ ମିଳାମିଶା, ତାଙ୍କ ସଙ୍ଗେ ହସଖୁସିର ଗଳ୍ପ, ଗେହ୍ଲାଇପଣକୁ ଅନୁପମା ପସନ୍ଦ କରୁନାହିଁ । ନିରୁପମା ମନେ ମନେ ଈର୍ଷାପ୍ରଣୋଦିତ ହେଲା । କ୍ଷୁବ୍ଧ ବି । ଭାବିଲା, ତା'ର ଅପା କେବଳ ଏକା ସଞ୍ଜୟବାବୁଙ୍କୁ ଅବିଶ୍ୱାସ ଓ ଘୃଣା କରେ ନାହିଁ, ତା ସଙ୍ଗେ ସଙ୍ଗେ ତାକୁ ବି ସେ ସନ୍ଦେହ କରେ ।

ଭାବନାକୁ ଆଗେଇ ନେବାକୁ ଆଜ ତା'ର ସାହସ ହେଲା ନାହିଁ । ଲଜ୍ଜା ଓ ଭୟରେ ସେ ମୁଣ୍ଡ ଟେକି ତା'ର ସ୍ନେହମୟୀ ଅପାର ମୁହଁକୁ ଚାହିଁଲା । ଦେଖିଲା, ଅନୁପମାର ନେତ୍ରରେ ଅଶ୍ରୁ ଛଳଛଳ ହେଉଛି ।

**କେ**ବଳାନନ୍ଦଠାରୁ ଚନ୍ଦନାଙ୍କର ପତ୍ରଖଣ୍ଡି ପାଇ ବିକ୍ରମ ଖୋଲିଲା । ଫଟୋ-ଖଣ୍ଡି ଦେଖି ସେ ବିସ୍ମିତ ହେଲା । ପତ୍ରରେ ଆଖି ପକାଇ ସେ ବୁଝିଲା ଯେ, ତାର ଅନୁମାନ ସତ୍ୟ ହୋଇଛି । ବୋଉ ଶଙ୍କିତ ହୋଇଉଠିଛନ୍ତି । ବଂଶ-ମର୍ଯ୍ୟାଦାର ହାନି ଓ ଲୋକଲଜ୍ଜା ଯେ ମରଣଠାରୁ ବଳିବ, ଏହା ସେ ଜଣାଇ-ଦେଇଛନ୍ତି । ସେ ଆହୁରି ଜଣାଇଦେଇଛନ୍ତି ଯେ ଅନୁପମା ଓ ବିକ୍ରମଙ୍କର ନିଷ୍କଳଙ୍କ ସ୍ୱଭାବ ଚରିତ୍ରରେ ଦୁନିଆର ଲୋକେ କାଳି ଲେପିବେ । ସେହି କଳାର ଦାଗ ତିନିପୁରୁଷ ଯାଏ ରହିବ । ଲୋକେ କେଶରୀବଂଶର ବଡ଼ପଣକୁ ହେୟ କରୁଥିବେ ।

କେବଳାନନ୍ଦଙ୍କୁ ସେ କହୁ କହିଲ ନାହିଁ । ଭାବିଲ, ଯାହା ହୋଇ-ସାରିଛି, ସେଥିପାଇଁ କାହାର ମତାମତର ଆବଶ୍ୟକତା ନାହିଁ । ସୁରୁଖୁରୁରେ କାମ ହେବାର ସମ୍ଭାବନା ନାହିଁ । ଦୁଇ ପକ୍ଷରୁ ପ୍ରତିବାଦର ଝଡ଼ ଉଠିବ । କାର୍ଯ୍ୟସିଦ୍ଧି ପାଇଁ ଅନ୍ୟ ଉପାୟ ଅବଲମ୍ବନ କରିବାକୁ ପଡ଼ିବ । ପରିଣାମ ଯାହା ହେବାର ହେଉଥାଉ । ଅନୁପାର ସାହସ ଅଛି । ସେ ପ୍ରସ୍ତୁତ ହୋଇ ରହିଛି ।

କେବଳାନନ୍ଦ ପଚାରିଲ, ଅପା କ'ଣ ଲେଖିଛନ୍ତି ?

ବସନ୍ତ କହିଲ, ସେ ପ୍ରତିବାଦ କରିଛନ୍ତି । ତାଙ୍କର ପତ୍ରର ଉତ୍ତର ମୁଁ ଲେଖିଦେବି । ତୁ କ'ଣ ଫେରିଯିବୁ ଗ୍ରାମକୁ ?

ହଁ, ଭାଇ ! କାଲି ସକାଳେ ମତେ ଖାଲି ଥରେ ଭୁବନେଶ୍ୱର ଯିବାକୁ ପଡ଼ିବ ।

ଆଚ୍ଛା, ମୁଁ ଚିଠିଖଣ୍ଡେ ଲେଖିଦେଉଛି । ତୁ ବୋଉକୁ ଦେଇଦେବୁ । ଆମର ପରୀକ୍ଷା କାଲି ସରିବ । ସଞ୍ଜଗାଡ଼ିରେ ମୁଁ ଢେଙ୍କାନାଳ ଚାଲିଯିବି ।

ବସନ୍ତର ଚିଠିଖଣ୍ଡିକ ଅତି ଛୋଟ—

—ଯାହା ତୁ ଲେଖିଛୁ, ସେସବୁ ବହୁ ଆଗରୁ ତୋର ବିଚାର କରିବା ଉଚିତ ଥିଲା, ବୋଉ ! ଏତିକ କହିଦେଉଛି, ମୁଁ ତୋର ଅବାଧ୍ୟ ହେବାକୁ ଏବେ ସାହସ କରିବି ନାହିଁ । ତୋ'ର ମନକାମନା ଯେବେ ପୂରଣ ହେବ । ମୋର ବାହାଘର ବିଷୟରେ ଏବେ କାହାର ମୁଣ୍ଡ ଖେଳାଇବା ଲୋଡ଼ା ନାହିଁ । ମୋତେ ବାନ୍ଧା ଦେଇ କେହି ଯେପରି କେଉଁଠୁ ଅଗ୍ରିମ ଧନ ନ ଆଣନ୍ତି, ସେଥିକୁ ସତର୍କ କରିଦେଉଛି ।

କେବଳାନନ୍ଦ ମେଲଣି ନେଲା ପରେ ବସନ୍ତ ତା'ର ବୋଉଙ୍କର ପତ୍ରଖଣ୍ଡି ଆଉଥରେ ପଢ଼ିଲା । କେତେଗୁଡ଼ିଏ ପଂକ୍ତି ଉପରେ ତାର ବ୍ୟଥିତ ଦୃଷ୍ଟି ଅଟକି ଅଟକି ଯାଉଥିଲା—ଇନ୍ଦିରା ଫାଶ ପାତିଛି ରେ ପୁଅ ! ତତେ ସେ ଘରଜୋଇଁ କରିବ । ଘରର କୁକୁର, ପାଦର କଙ୍କର କରିବ । ତା' ଗୁଣ ସେଇଆ । ଅନୁପାକୁ ତୋ ପଛରେ ଲଗାଇଦେଇଛି । ××

—କେଡ଼େ ଭଲ ସରଳ ନିଶ୍ୱାଦ ପିଲାଟି ଅନୁପା ଥିଲା ରେ ! ବଡ଼ ଝିଅଟାକୁ ବେମହତ ବେଆଡ଼ା ଢଙ୍ଗରେ ନିଜ ପରି ସଜାଇ ଇନ୍ଦିରା ବାରଆଡ଼କୁ ବାର ଲୋକଙ୍କ ସଙ୍ଗେ ଛାଡ଼ିଦେଲା । ନିନ୍ଦା ତ ରଟିବ ରେ ପୁଅ ! ସେପରି ଝିଅ ପାଇଁ ପାତ୍ରଟିଏ ମିଳିବା କାଠିକର ପାଠ । ଭଲ ପାତ୍ରଟିଏ ମିଳିଛି, ତଥାପି ଇନ୍ଦିରାର ମନରେ ଡର । ବେଶୀ ଉପରୁ ବର ବାହୁଡ଼େ । ତେଣେ ସେ ହାତ-ପହଞ୍ଚା କରି ରଖିବାକୁ ଚାହେଁ । × × ଧନ୍ଦିଲୁଆଁ ଦେବୁ ନାହିଁ ରେ, ଆମେ ପଛେ ଉପାସରେ ଗଡ଼ିବା, ଆମ ସନମାନ ଛାଡ଼ିବା ନାହିଁ ।

ମନଦୁଃଖରେ ହରମ ହୋଟେଲରୁ ବାହାରିଆସିଲା ।

ସଞ୍ଜ ହୋଇସାରିଥାଏ । ବଜାର ଆଲୁଅର ଝଟକରେ କଟକ ସହର ନୂଆ ରୂପ ଧାରଣ କରିଥାଏ । କାର୍, ରିକ୍ସା, ସାଇକେଲ ଆରୋହୀ ଓ ପଦଯାତ୍ରୀଙ୍କର ଭିଡ଼ । ଗହଳଚହଳ । ଘାଣ୍ଟିଘୁଣ୍ଟ । ବିଭିନ୍ନ ଶବ୍ଦର ସମାବେଶ । ଦୁଇପାଖର ଦୋକାନମାନଙ୍କରେ ବିକାକିଣାର ବ୍ୟସ୍ତତା । ହରମଚେକଣଶ୍ୱ ଚାଲିଥାଏ । ଅଭ୍ୟସ୍ତ ପାଦ ଦିଓଟି ତାକୁ ସତର୍କତା ସହ ନିଶ୍ୱପଦରେ ଆଗକୁ ଆଗକୁ ଓଟାରିନେଉଥାଏ ।

ସବୁ ତା'ର ଆଖିରେ ପଡ଼ୁଥାଏ । କିନ୍ତୁ କିଛି ସେ ଦେଖୁ ନ ଥାଏ । ସବୁ ପଡ଼ୁଥାଏ କାନରେ, କିଛି ସେ ଶୁଣୁ ନ ଥାଏ । ନିଜ ସଙ୍ଗରେ ନିଜ ଭିତରେ ସେ କଥାଭାଷା ହେଉଥାଏ ।

ଭଲପଣିଆରେ ଆଞ୍ଚ ଆସିବ । ଲୋକେ ତାକୁ ନିନ୍ଦା କରିବେ । କହିବେ, ସେଇଟା ଚୁପ୍‌ଚୋରିଆ । ସେ ବୁଡ଼ିବୁଡ଼ି ପାଣି ପିଉଥିଲା ।

ବୋଉଙ୍କ ପାଖକୁ ସେ ଯେଉଁ ଗ୍ରୁପ ଚିଠିଖଣ୍ଡି କେବଳାନନ୍ଦ ହାତରେ ପଠାଇଛି, ତହିଁରୁ କ'ଣ ସେ ସବୁକଥା ବୁଝିପାରିବେ ନାହିଁ ? ଅନ୍ତତଃ, ତା'ର ବାପାଙ୍କ ପରି ବୁଦ୍ଧିମାନ ଲୋକ ନିଶ୍ଚୟ ବୁଝିବେ । ତା'ର ବୋଉ ତ ନିଶ୍ଚୟ ଠଉରାଇପାରିଛନ୍ତି । ନୋହିଲେ, ସେ ଯେଉଁ ଫଟୋଟିକୁ

ସ୍ନେହରେ ରଖିଥିଲେ, ସେଇଟି ଫେରାଇଦେଇ ଏଣୁତେଣୁ ଗୁଡ଼ାଏ ଲେଖିଥାନ୍ତେ କାହିଁକି ?

ଅଧିକ ଜାଣିବାକୁ ଆଗ୍ରହ ହେଲେ ସେମାନେ ନିଜେ ତା'ର ଶ୍ୱଶୁର ଗାଁକୁ ଆସି ବୁଝିପିବେ । ଜାଣିବାକୁ ପତ୍ର ଲେଖିଲେ ଗୋଟିଏ ବାକ୍ୟରେ ସେ ତାର ଉତ୍ତର ଲେଖିଦେବ—ଆସନ୍ତା ତିଥିରେ ଅନୁପା ସଙ୍ଗେ ବାହାଘରର ବ୍ୟବସ୍ଥା କରନ୍ତୁ ।

ବସନ୍ତର ମନ ଭିତରେ ଖାରକେଶରୀ ଉଭା ହୋଇ ପଚାରୁଛନ୍ତି, କି ବ୍ୟବସ୍ଥା ମୁଁ କରିବି ରେ ପାଗଳ ? କେଉଁ ମୁହଁରେ ଆନନ୍ଦ ଓ ଇନ୍ଦିରାଙ୍କୁ କହିବି, ସଞ୍ଜୟ ସଙ୍ଗେ ସ୍ଥିର ହୋଇଥିବା ସମ୍ବନ୍ଧ ଠକ୍‌କରି ଛିଣ୍ଡାଇଦିଅ । ଲୋକହସା ହୁଅ । ତମର କଳଙ୍କିଆ ଝିଅକୁ ତମ ଗୁଣମଣି ଭଣଜାଙ୍କ ହାତକୁ ଟେକିଦିଅ ।

ଖାରକେଶରୀ ସଚେତ ତା'ର ମୁଣ୍ଡଭିତରୁ ବାହାରି ଗହଳ ଜନତା ଭିତରେ କେଉଁଠି ଲୁଚିଗଲେ । ନିଃସହାୟ ନେତ୍ରରେ ବସନ୍ତ ଏଣେତେଣେ ଚାହିଁ, ଆଗେଇଗଲା । ତାର ମୁଣ୍ଡ ଭିତରେ ଫଣାଟେକା ନାଗୁଣୀ ପରି ଇନ୍ଦିରା ପ୍ରବେଶିଲେ । କ୍ରୋଧରେ ସେ ଫଁ ଫଁ ହେଉଛନ୍ତି । କହୁଛନ୍ତି, ତମେ କାହିଁକି ଆସିଲ ? ମୁଁ ମନା କରିଥିଲି !

ବୁଝି ମଣା ପାଇଁ । ତମେ ଜାଣ ମାଇଁ—

ସବୁ ଜାଣେ । ତମେ ଚାଲିଯାଅ । ବାହାଘରର ନିମନ୍ତ୍ରଣ ପାଇଲେ, ମନ ହେଲେ ଆସିବ ।

ଏ ବାହାଘର ହୋଇପାରିବ ନାହିଁ, ମାଇଁ !

ନିର୍ବୋଧ ! ଚାଲିଯାଅ ଏ ଘରୁ ।

ଅନୁପାକୁ ପଚାରିଛ, ମାଇଁ ?

ଆବଶ୍ୟକ ମଣିନାହିଁ ।

ସଞ୍ଜୟକୁ ସେ ଘୃଣା କରେ । ସଞ୍ଜୟ ଦୁଶ୍ଚରିତ୍ର ।

ତମେ ? ନିର୍ଲଜ୍ଜ ! ଅନୁ ତମକୁ ଖୁବ୍ ଘୃଣା କରେ । ସେ ଜାଣେ, ସଞ୍ଜୟ ମଣିଷ, ତମେ ପଶୁ ।

ଇନ୍ଦ୍ରଜିତ ମନଭିତରେ ମିଳାଇଗଲେ । ସଞ୍ଜୟର ପାଦ ଅଟକିଲା । ସେ ସହସା ସଚେତନ ହେଲା ଯେ, ସେ ତାର ମାମୁଁଙ୍କ ଘରପାଖର ଗଳିରାସ୍ତା ମୋଡ଼ରେ ଆସି ପହଞ୍ଚିଛି । ଅନତିଦୂରରେ କ୍ୟାପିଟାଲ ସିନେମା ଘର ଭିତରୁ ସଙ୍ଗୀତ ଓ ବାଦ୍ୟଯନ୍ତ୍ରର ଶବ୍ଦ ଆସି ତାର କାନରେ ବାଜୁଛି ।

ସବୁ ଅବାନ୍ତର ଭାବନାକୁ ସେ ମନରୁ ପୋଛିପକାଇଲା । ନିଜର ମନକୁ ସେ ସାନ୍ତ୍ୱନା ଦେଲା—କେହି ତାକୁ ଅନୁପାର ମନରୁ ତଡ଼ିପାରିବେ ନାହିଁ ।

ମୁଣ୍ଡର କେଶକୁ ହାତରେ ସାଉଁଳି, ରୁମାଲରେ ମୁହଁ ପୋଛି, ସ୍ୱାଭାବିକ ଗତିରେ ପଦ ସଞ୍ଚାଳି ସେ ତା'ର ମାମୁଁଘରେ ଉପସ୍ଥିତ ହେଲା । ଦ୍ୱାରରକ୍ଷକ ଚମନ ସିଂର ସଲାମ, ଶାରଙ୍ଗ ଓ ଅନ୍ୟ ଭୃତ୍ୟର ମୂଳିଆଙ୍କର ଅଣ୍ଟାପାଖରୁ ଆଗକୁ ନୋଇଁ ହାତଯୋଡ଼ା ଓଳଗି, ରଥିଆର ଚତ୍ପରତା, ସବୁ ତାକୁ ଜଣାଇଦେଉଥିଲା ଯେ, ମାମୁଁଘରେ ତା'ର ସମ୍ମାନ ପୂର୍ବପରି ଅକ୍ଷୁଣ୍ଣ ରହିଛି ।

ବୈଠକଘରେ ଆଲୁଅ ଜଳୁଛି । ବିଜୁଳି ପଙ୍ଖା ବୁଲୁଛି । କବାଟ ଖୋଲା ।

ପରଦା ଦି ଫାଳକୁ ଦୁଇ ପାଖକୁ ଆଡ଼େଇ ସଞ୍ଜୟ ମୁଣ୍ଡ ଗଳାଇ ଭିତରକୁ ଚାହିଁଲା । ମଝି ଟେବୁଲର ଗୋଟିଏ କଡ଼ରେ ସୋଫା ଚେୟାରରେ ବସି ଅନୁପା ତନ୍ମୟ ହୋଇ ବହିଖଣ୍ଡେ ପଢ଼ୁଛି । ଟେବୁଲର ଆରକଡ଼ରେ ବସି ନିରୁପା କେଉଁ ବହିର ପୃଷ୍ଠା ପରେ ପୃଷ୍ଠା ଓଲଟାଇ କେବଳ ଛବି ଦେଖୁଛି ।

ବନ୍ଦନା ଆଗ ତାଆର ଆଖିରେ ପଡ଼ିଲା ।

ବକଭାଇ !

ଅନୁପା ମୁହଁ ବୁଲାଇ ଚାହିଁଲା । ବହି ଓଲଟାଇ ଅସ୍ତବ୍ୟସ୍ତ ହୋଇ ଅନୁପା ଉଠିଲାବେଳକୁ ବନ୍ଦନା କୋଠରି ଭିତରକୁ ପଶିଆସିଥିଲା ।

ଭଉଣୀ ଦୁହେଁ ତାକୁ ପ୍ରଣାମ କଲେ ।

ବନ୍ଦନା ଗୋଟିଏ ଚଉକିରେ ବସିଲା ।

ଚଞ୍ଚଳ ନିରୁପା ଖୁସି ହୋଇ ଟାଉଟାଉ କରି କହିବାକୁ ଲାଗିଲା, ଟିକିଏ ଆଗରୁ ଆସିପାରିଲ ନାହିଁ ବକଭାଇ ? ଏଇ ତ, ଦଶପନ୍ଦର ମିନିଟ୍ ତଳେ ଯେସ୍‌ମିନ୍ ମାଉସୀଙ୍କ ସଙ୍ଗେ ବୋଉ ବନହଂସୀ ମାଉସୀଙ୍କ ଘରକୁ ଚାଲିଗଲା । ସେଠାରେ ତାଙ୍କର ଟି ପାର୍ଟି ହେଉଛି । ଗୋଡ଼େ ଗୋଡ଼େ ଫେରି-ଆସିବ ବୋଲି ସଙ୍ଗରେ ସେ ସ୍ୱରୂପା ଓ ସାନନ୍ଦକୁ ନେଇଯାଇଛି ।

ଶୀଘ୍ର ଫେରିଆସିଲେ ଦେଖା ହେବ । କାଲି ମୋର ପରୀକ୍ଷା ସରିଲେ ମୁଁ ଢେଙ୍କାନାଳ ଚାଲିଯିବି । ମାମୁଁ, ମାଈଁ ଓ ତମମାନଙ୍କୁ ଦେଖି-ଯିବାକୁ ଆସିଲି । ମୁଁ ଟିକିଏ ତରତର ଅଛି । କାଲିକା ପରୀକ୍ଷା ପାଇଁ ପ୍ରସ୍ତୁତ । କେତେ ଜିନିଷ କିଣିବି । ସଞ୍ଜୟବାବୁ ନିମନ୍ତ୍ରଣ କରିଛନ୍ତି ।

ଅନୁପାର ମୁହଁରେ ଓ ଆଖିରେ କୌତୂହଳ । ନିରୂପାର ଢଙ୍ଗରେ ଔତ୍ସୁକ୍ୟ । ସେ କହିଲା, ସଞ୍ଜୟଭାଇ ସ୍ନେହୀ । ସେ ଭଲ ମଣିଷ । ନୁହନ୍ତି କି ବକଭାଇ, ସତ କହିଲ ?

ସେ ମୋର ବହୁଦିନରୁ ପରିଚିତ ବନ୍ଧୁ !

ଅପା ତାଙ୍କୁ ପସନ୍ଦ କରୁନାହିଁ ।

ଅନୁପା ବିରକ୍ତିନେତ୍ରରେ ନିରୁପାର ମୁହଁକୁ ଚାହିଁଲା । କ୍ରୋଧକୁ ଦମନ କରି, ଦୃଷ୍ଟିରେ କୋମଳତା ଭରି, ସ୍ନେହବୋଳା ଭାଷାରେ କହିଲା, ତୁ ମୋର ସାନଭଉଣୀ ସୁନା ଭଉଣୀ ତାଙ୍କୁ ପସନ୍ଦ କରୁଛୁ, ଏହା ମତେ ଜଣା । ସେତିକିରେ ମୁଁ ଖୁସି ।

ନିରୁପା କହିଲା, ତମେ ଗପୁଥାଅ, ମୁଁ ଚାହା ବିସ୍କୁଟ ନେଇଆସେ । ହଁ, ବିକଭାଇ, ବୋଉ ଯଦି ସଞ୍ଜୟଭାଇଙ୍କ ଘରକୁ ଯାଏ, ଯିବ ବୋଲି କହୁଥିଲା ତା'ର ଫେରିବାକୁ ଡେରି ହେବ ।

ବୁଝିଲି, ମାଈଁଙ୍କ ସଙ୍ଗେ ସେଇଠି ଦେଖାହେବ ।

କପେ ଚା' ଖାଇ ତ ଯିବ ? ତମେ ଜାଣ ନା, ତମ ବୋଉ ମୋ ବୋଉକୁ ଓ ଅପାକୁ ଚିଠି ଲେଖିଥିଲେ । ସେମାନେ ଅବିକଳ ଅପା ପରିକା ବୋହୁଟିଏ ତମପାଇଁ ଠିକଣା କରିବେ ।

ସତେ ?

ହଁ । ବୋଉ ଅପାକୁ ସେ ଚିଠି ଦେଲା । କହିଲା, ସେ କ'ଣ ପଢ଼ିବ ? ଅପା ତାକୁ ଛୁଇଁଲା ନାହିଁ । ମୁଁ ରଖିଛି । ତମେ ନେବ ନା ?

ଚିର ଦେ ।

ଅନୁପା ମୁହଁ ଖୋଲିଲା, ତୁ ବହୁତ ଗପୁଛୁ ନିରୁ ! ଚିଠି ଦୁଇଟି ମତେ ଦେଲେ, ମୁଁ ଅପାଙ୍କୁ ଫେରାଇଦେବି । ବିକଭାଇଙ୍କର ଡେରି ହେଉଛି । ସେ କପେ ଚା ଖାଇଲେ ଚାଲିଯିବେ ।

ରାଗ ଫଣଫଣ ହୋଇ କେଶ ଦୋହଲାଇ ନିରୁପା ଖଞ୍ଜା ଭିତରକୁ ଚାଲିଗଲା । କାଳବିଳମ୍ବ ନ କରି ବିକ୍ରମ କହିଲା, ମୁଁ ଜାଣିଥିଲି, ବୋଉ ତମକୁ ଚିଠି ଲେଖିବ । ମାଈଁ ଯେଉଁ ଉତ୍ତର ଦେବେ ସେ କଥା ବି ମୁଁ ଅନୁମାନ କରିଥିଲି । ବୋଉ ମୋ ପାଖକୁ ଯେଉଁ ଚିଠିଖଣ୍ଡି ଲେଖିଛି, ସେଇଟି ମୋ ପାଖରେ ଅଛି । ନେ, ପଢ଼ । ଏ ଘରକୁ ଆସିବାକୁ ମାଈଁ ମୋତେ ମନା କରିବାସତ୍ତ୍ୱେ ମୁଁ ନିର୍ଲଜ୍ଜପଣରେ ଆସିଛି । ତୋତେ ସେ ଚିଠିଟି ଦେଖାଇବାକୁ ଆସିଛି ।

ଅନୁପା ମନେ ମନେ ପଢ଼ିଲା । ପଢ଼ିସାରି ବିକ୍ରମର ହାତକୁ ଫେରାଇ-ଦେଲା ।

ବିକ୍ରମ କହିଲା, ମୁଁ ଏହାର ଉତ୍ତର ଦେଇସାରିଛି, ଅନୁ ! ସେମାନେ ବଳେ ବୁଝିବେ । ଢେଙ୍କାନାଳରେ ପହଞ୍ଚି ବାପାଙ୍କ ପାଖକୁ ଆଉ ଖଣ୍ଡେ

ଛଡ଼ି ଲେଖିବ । ସେମାନଙ୍କୁ ପୋଷିବାର ଦାୟିତ୍ୱ ମୁଁ ନେଉଛି; କିନ୍ତୁ ମୋର ସ୍ୱାଧୀନତାରେ ହସ୍ତକ୍ଷେପ କରିବାକୁ ସେମାନଙ୍କୁ ବା ଅନ୍ୟ କାହାକୁ ମୁଁ ସୁଯୋଗ ଦେବାକୁ ରାଜି ନୁହେଁ ।

ଅନୁପା କହିଲା, ସେମାନେ ଚନ୍ଦନ ପକାଇବେ । ଏ ଘରେ ଅଶାନ୍ତିର ତୋଫାନ କହିବ । କାଲି ସେମାନେ ନିମନ୍ତ୍ରିତ ହୋଇ ଆସୁଛନ୍ତି । ଗୋଲାପ ଆସିବ । ଆମ ନାମରେ ଦୁର୍ନାମ ସେହି ରଟାଇଥିଲା । କି ଉଦ୍ଦେଶ୍ୟରେ କେଜାଣି ସଞ୍ଜୟବାବୁ ସବୁ ଜାଣିଶୁଣି ମୋତେ ବାହା ହେବାକୁ ଝୁଙ୍କି ଧରିଛନ୍ତି । ତାର କୈଫିତ ସେ ମତେ ଦେଇବ । ତା'ପରେ ବୋଉ । ସେଇଠୁ ବାପା । ସର୍ବଶେଷରେ ତମେ ବିକଶ୍ଭାଇ ! ଯାହା ସମ୍ପାଦିତ ହୋଇ-ସାରିଛି, ସେଥିପାଇଁ ଭଗବାନଙ୍କ ଆଗରେ ଆମର କୌଣସି ଜବାବ ଦେବାର ନାହିଁ । ମୁଁ ବୁଝିଛି, ଆଇନ ଆଖିରେ କୌଣସି ବାଧା ନାହିଁ । ମତେ ଏକୋଇଶ ପୂରିଲାଣି ।

ସତେ ଅନୁ ! ଅନିଶ୍ଚିତତାର ଦୋଳିରେ ଝୁଲି ସଞ୍ଜୟ ସଙ୍ଗରେ ବାହାଘରର ପ୍ରସ୍ତାବକୁ ଅଧିକ ଆଗେଇବାକୁ ଦେବା କାହିଁକି ?

କ'ଣ ସେମାନେ କରୁଛନ୍ତି ଆମକୁ ପଚାରୁନାହାନ୍ତି । ସବୁ ସେମାନେ କରିପାରିବେ; କିନ୍ତୁ ବେଦି ଉପରକୁ ବଳପ୍ରୟୋଗ କରି ମୋତେ ନେବାକୁ ସାହସ କରିବ କିଏ ? ସେପରି ଯଦି ହୁଏ, ବୁଝିବା ଆବଶ୍ୟକ ଯେ ମୋ ହାତଟା ମୋର ।

ବିକ୍ରମ ହସିଲା ।

ଅନୁପା କହିଲା, ତମେ ବ୍ୟସ୍ତ ହୁଅନା, ବିକଶ୍ଭାଇ ! ସେମାନେ ସେମାନଙ୍କର ଭୁଲ ଠିକ୍ ସମୟରେ ବୁଝିବେ । ବୁଝି ଯଦି ପଛେଇ ନ ଯିବେ, ତମେ ମୋର ବାର୍ତ୍ତା ପାଇ ଆସିବ । ଯଦି ଆସି ନ ପାରିବ, ଯେଉଁଠି ଥାଅ ମୁଁ ଯାଇଁ ଉପସ୍ଥିତ ହେବି । ସେତିକି ନ ହୋଇ ପାରିଲେ···

ଅନୁପା ତା'ର ବାକ୍ୟ ଶେଷ କରିପାରିଲା ନାହିଁ । ଚିବୁକ ଉପରେ ଲୁହଧାର ଗଡ଼ିଆସିଲା ।

କାନ୍ଦୁଛୁ କାହିଁକି ?

ବାଷ୍ପଗଦ୍‌ଗଦ କଣ୍ଠରେ ଅନୁପମା କହିଲା, କିଏ ଜାଣେ, ତମ ସଙ୍ଗେ ମରଦେହରେ ଏଇ ମୋର ଶେଷ ଦେଖା ହୋଇପାରେ । ଘଟଣାଚକ୍ର ଉପରେ କାହାର ହାତ ଅଛି ?

ଛି, ଛି, ସେପରି କହନା । ମୁଁ ନିମନ୍ତ୍ରଣ ପାଏଁ ବା ନ ପାଏଁ, ଆଗରୁ ଆସି ଉପସ୍ଥିତ ରହିବି । କେହି ମତେ ବାଧା ଦେଇପାରିବେ ନାହିଁ ।

ନିରୁପମା ଘର ଭିତରକୁ ପଶିଆସିଲା । ଅନୁପମା ଆଖିରୁ ଲୁହ ପୋଛୁଥିଲା ।

ନିରୁପମାର ପଛେ ପଛେ ଚାକରିଆ ଆସି ଗୋଟିଏ ଟ୍ରେରେ ଦୁଇ ଗ୍ଲାସ ପାଣି ଟେବୁଲ ଉପରେ ରଖିଦେଇଗଲା । ପୂଷ୍ପାଶ୍ରୀ ଆସିଲେ । ପ୍ଲେଟରେ ସଦ୍ୟଛଣା ଲୁଚି, ପୋଟଳଭଜା ଓ ଆଉ ଗୋଟିଏ ପ୍ଲେଟରେ କେତୋଟି ରସଗୋଲା ।

ପୂଷ୍ପାଶ୍ରୀ କହିଲେ, ମୁଁ ଚା' ନେଇଆସେଁ ।

ସେ ଚାଲିଗଲେ ।

ବିକ୍ରମ ନିରୁକୁ କହିଲା, ଦୁ'ଖଣ୍ଡି ବିସ୍କୁଟ ଆଉ କପେ ଚା ହୋଇଥିଲେ ଭଦ୍ରତା ରକ୍ଷା ହୋଇପାରିଥାନ୍ତା । ତୁ ଜାଣୁ, ସଞ୍ଜୟବାବୁଙ୍କ ଘରେ ମୋର ନିମନ୍ତ୍ରଣ ଅଛି । ମତେ ଶୀଘ୍ର ଚାଲିଯିବାକୁ ହେବ ।

ନିରୁପମା ସେମିତି ଗମ୍ଭୀର ହୋଇ ବସିଥିଲା । କ'ଣ ଭାବିକି ଟେଲିଫୋନ ଟେବୁଲ ପାଖକୁ ଗଲା । ଫୋନ୍‌ରେ ହାତ ରଖି ପୁଣି ହାତ ଉଠାଇଆଣିଲା । ଟିକିଏ ଇତସ୍ତତଃ ହୋଇ ଫେରିଆସି ଅନୁପମା ପାଖରେ ବସିଲା ।

ଜଳଖିଆ ଓ ଚା' ଶେଷ କରିବାଯାଏ ବିକାଶବାବୁ ଏବଂ ଅଞ୍ଜନା ଦେବୀଙ୍କର ମହତ୍ତ୍ୱପଣ ସମ୍ବନ୍ଧରେ ବିକ୍ରମ ଗପିଚାଲିଥାଏ—ସେମାନେ ଉଦାର, କ୍ଷମାଶୀଳ; ସେମାନେ ବିବେକୀ, ନ୍ୟାୟବାନ୍ ।

ବିକାଶବାବୁଙ୍କର ଗୁଣାବଳୀର ବର୍ଣ୍ଣନା ସରିଲା । ଆଜି କ'ଣ ଏଣୁତେଣୁ ଗପି ସମୟ କଟାଇବ, ସେଇ ବିଷୟ ଚିନ୍ତା କରୁଥିଲା । ଅନୁପମା

କହିଲା, ତମେ ଯିବା ପୂର୍ବରୁ ଆମର ଠାକୁରମାନଙ୍କୁ ନିଶ୍ଚୟ ପ୍ରଣାମ କରି-ଯିବ, ବଉଦେଇ ! ଆସ ! ତୁ ବି ଚାଲ୍ ନିରୁ !

ଅନୁପାର ପଛେ ପଛେ ବସନ୍ତ । ବସନ୍ତର ପଛରେ ନିରୁପା । ସେ ଗମ୍ଭୀର ହୋଇ ଚାଲିଥାଏ । ଅନୁପା ଶୀଘ୍ର ଶୀଘ୍ର ପାହାଚ ଉଠି ଆଗେଇଗଲା । ବସନ୍ତ ମୁହଁ ବୁଲାଇ ପଚାରିଲା, ତୁ ଏତେ ଚୁପ୍‌ଚାପ୍ ରହିଛୁ କାହିଁକି ?

ନିରୁପା କହିଲା, କଥାଟିଏ ପଚାରିବି ବଉଦେଇ ?

ପାହାଚ ଅତିକ୍ରମି ସେମାନେ ଉପର ବାରଣ୍ଡାକୁ ଆସିସାରିଥିଲେ ।

ପଚାରିବାକୁ ମୋର ଅନୁମତି ନେଉଛୁ କାହିଁକି ନିରୁ ?

ଅପା କାହିଁକି କାନ୍ଦୁଥିଲା ?

ବସନ୍ତ କହିଲା, ଝିଅମାନେ କାହିଁକି କାନ୍ଦନ୍ତି, କେବଳ ତାଙ୍କୁ ଜଣା । ତୁ ତ ନିଜେ ଜାଣିଥିବୁ ।

ଅପା କାହିଁକି କାନ୍ଦୁଥିଲା, ମୁଁ ଅନୁମାନ କରିପାରୁଛି, ବଉଦେଇ ! ସଞ୍ଜୟଭାଇଙ୍କ ପରି ଭଲ ଲୋକ, ହେମ୍ନା ଲୋକଙ୍କୁ ସେ ଘୃଣା କରେ । ସେଇଥି-ପାଇଁ ହୋଇଥିବ ।

ବସନ୍ତ ଉତ୍ତର ଦେଲା, ଅନୁପା ଛଡ଼ା ତୋ ମନର ସନ୍ଦେହ ଆଉ କେହି ଦୂର କରିପାରିବେ ନାହିଁ ନିରୁ !

ଇନ୍ଦିରା କମଳବାବୁଙ୍କ ଘରୁ ଡେରିରେ ଫେରିଲେ । କମଳବାବୁଙ୍କ କାର୍‌ରେ ନିଜେ ସଞ୍ଜୟ ସେମାନଙ୍କୁ ଛାଡ଼ିଦେଇଗଲେ । ସେହି ଗାଡ଼ିରେ ସେ ବସନ୍ତକୁ ବସାଇ ଆଣିଥିଲା । କଲେଜ ହୋଷ୍ଟେଲ ଆଗରେ ଓହ୍ଲାଇ ଦେଇଥିଲା ।

ଇନ୍ଦିରା ବସନ୍ତଠାରୁ ଖବର ପାଇଲେ ଯେ, ସେ ତାଙ୍କ ଘରକୁ ଆସିଥିଲା । ଅନୁପା ଓ ନିରୁପା ତାର ଚର୍ଚ୍ଚା ନ କରି ତାକୁ ଛାଡ଼ିଲେ ନାହିଁ । ଇନ୍ଦିରା ବାହାର ମୁହଁରେ ରଞ୍ଜିତାଙ୍କ ଆଗରେ ଆନନ୍ଦ ପ୍ରକାଶ କଲେ । ବସନ୍ତର ଭୂୟସୀ ପ୍ରଶଂସା କଲେ । କହିଲେ, ସାନନ୍ଦର ଜନ୍ମ ମତେ କାଳପରି ଲାଗୁଛି,

ସମୁଦୁଣୀ !   ତେବେ ଯାଏ ବସନ୍ତ ଯେ ମୋର ପୁଅ ନୁହେଁ ଭଣଜା, ଏକଥା ମୁଁ   ଭୁଲିଯାଉଥିଲି  ।  ଝିଅ ଛଅଟା ତାଙ୍କୁ ତାଙ୍କର ଭାଇ ବୋଲି ଜାଣନ୍ତି । ଏବଯାଏ ତାଙ୍କର ସବୁ ଉପରେ ଆପତ୍ତି, ମାନ ଅଭିମାନ ତାଙ୍କରି ପାଖରେ ।

ହେବ ନାହିଁ ? ପିଲାଦିନୁ ଏକାଠି ବଢ଼ିଲେ, ଏକାଠି ଚାଲିଲେ । ସଞ୍ଜୟ ବସନ୍ତର ଭାରି ପ୍ରଶଂସା କରେ । ବିକାଶ ଓ ଅଞ୍ଜନା ତାଙ୍କୁ ସ୍ନେହ କରନ୍ତି । ଏ ଯୁଗରେ କୁଆଡ଼େ ବସନ୍ତ ପରି କର୍ମଠ, କର୍ତ୍ତବ୍ୟପରାୟଣ, ସାଧୁ, ସଚ୍ଚରିତ୍ର ପିଲାଟିଏ ମିଳିବା ବିରଳ ।

ହଁ, ସମୁଦୁଣୀ ! ବସନ୍ତ ମୋ ହାତରେ ଗଢ଼ା ।

ସଞ୍ଜୟ ଓ ବସନ୍ତ ଆରଘରେ ହସଖୁସିରେ ଗଳ୍ପ କରୁଥିଲେ । ସେମାନଙ୍କର ହସ ଇନ୍ଦିରାଙ୍କ କାନରେ ପଡ଼ୁଥିଲା । ସାନନ୍ଦ ଓ ସୁରୂପା ତାଙ୍କରି ପାଖରେ ଗେହ୍ଲେଇ ହେଉଥିଲେ । ରଞ୍ଜିତାଙ୍କ ସଙ୍ଗେ ଗପ କରୁଣୁ ଇନ୍ଦିରା କେତେବେଳେ ଅନ୍ୟମନସ୍କ ହୋଇ ଭାବୁଥିଲେ, ମଣିଷର କ ଭାଗ୍ୟ । ସବୁ ଦଇବର ହାତ । ମଣିଷର ସୁନ୍ଦର ଦେହ, ନିର୍ମଳ ମନ, ନିଖୁଣ ଢଙ୍ଗରେ କେତେବେଳେ ସେ ବିଷର ଜୁଆର ଛୁଟାଏ, କିଏ କହିବ ?

ରଞ୍ଜିତା କହିଲେ, ତମେ ଆଜି କ'ଣ ଭାବୁଛ ?

ପିଲା ଦି'ଟା ଘରେ ଏକା ଅଛନ୍ତି ।

ସଙ୍ଗରେ ଆଣିଲ ନାହିଁ ?

ଯେସ୍‌ମିନ୍‌ଙ୍କ ଘରବାଟେ ଆସିଲି ଯେ ! ତା'ଛଡ଼ା ଅନୁପା କ'ଣ ଆସନ୍ତା ? ତାକୁ ଦୁନିଆପାକର ଲାଜ ।

ରଞ୍ଜିତା ସେମାନଙ୍କର ବି ଚର୍ଚ୍ଚା କରିଥିଲେ ।

କଳିଙ୍ଗ ହୋଟେଲ ଆଗରେ ବସନ୍ତ ଇନ୍ଦିରାଙ୍କୁ ପ୍ରଣାମ କରି ବିଦାୟ ନେଲାବେଳେ ସେ କହିଲେ, ମା'ମୁଁ ଘରେ ତମର ପଢ଼ାରେ ଅସୁବିଧା ହେବ ଭାବି ହୋଟେଲରେ ରହିବାକୁ ମନ କଲ ସିନା, ମୁଁ ଭାବୁଛି ଏଠାରେ ଅଧିକ ଅସୁବିଧା ହୋଇଥିବ । ହୋଟେଲ ମାଲିକ ନିତ୍ୟାନନ୍ଦବାବୁ ଯେ ଜଣେ ଖିଆଲି ମଣିଷ ।

ଜଣେକିଆ କୋଠରି ନେଇଛି, ମାଉଁ ! ନିର୍ଗୁଣବାବୁ ପକ୍କା ବେପାରୀ; କିନ୍ତୁ ଘର ଭଡ଼ା ।

କାଲି ସଞ୍ଜରେ ଆମ ଘରକୁ ଯିବାକୁ କହିଥାନ୍ତି । ଶୁଣିଲି, ପରୀକ୍ଷା ସାରି ଢେଙ୍କାନାଳ ଚାଲିଯାଉଛ ?

ହଁ, ମାଉଁ ! ପ୍ରକାଶବାବୁ ଢେଙ୍କାନାଳ ଛାଡ଼ିବା ଆଗରୁ ମୁଁ ପହଞ୍ଚିବାକୁ ଚେଷ୍ଟା କରିବି ।

ହଉ, ରହ ।

ନିରୁପା ଉପରଘରେ ଶୋଇପଡ଼ିଛି ।

ଅନୁପା ବୈଠକଘରେ ବସି ଅଧା ବହି ଖଣ୍ଡି ଶେଷ କରିବାକୁ ଚେଷ୍ଟା କରୁଛି । ହର୍ଣ୍ଣ ଶୁଣି ସେ କବାଟ ଖୋଲିଲା । କିଛି କ୍ଷଣ ପରେ ଘର ଭିତରକୁ ପଶିଆସିଲେ ଇନ୍ଦିରା, ପିଲା ଦିଓଟି ଓ ସବାପଛରେ ସଞ୍ଜୟ ।

ସତେ କି ଅନୁପା ସେମାନଙ୍କୁ ଅପେକ୍ଷା କରି ରହିଥିଲା । ସଞ୍ଜୟଙ୍କୁ ଦେଖି ସେ ବିସ୍ମିତ ହେଲା ନାହିଁ । ସେ ଜାଣେ, ତାର ବୋଉ ତାଙ୍କୁ ଜୋଇଁ କରିବାପାଇଁ ସବୁପ୍ରକାର ପ୍ରଶ୍ରୟ ଦେବାକୁ ବ୍ୟାକୁଳ । ନିଜ ସରମରେ ସେ ଜଳାଞ୍ଜଳି ଦେବାକୁ କୁଣ୍ଠିତ ନୁହେଁ । ସବୁ ଜାଣି କିଛି ନ ଜାଣିଲାର ଛଳନା ସେ କରିପାରେ ।

ଅନୁପା ଚଉକିରୁ ଉଠି ସଞ୍ଜୟଙ୍କୁ ନମସ୍କାର କଲା । ହସହସ ସଞ୍ଜୟ ପ୍ରତିନମସ୍କାର କଲା ।

ଇନ୍ଦିରା ପଚାରିଲେ, ନିରୁ କାହିଁ ?

ସେ ଉପରଘରେ ଶୋଇପଡ଼ିଛି ।

ଇନ୍ଦିରା କହିଲେ, ସାନନ୍ଦ ନିଦରେ ଢୁଳୁଛି ମା, ମୁଁ ତାକୁ ଶୁଆଇ-ଦେଇ ଆସୁଛି । ସୁରୁ ବି ନିଦମଳମଳ ହୋଇ ଭିତରକୁ ଗଲାଣି । ଅଥରପୀ, କେଉଁଠି ଝୁଣ୍ଟିପଡ଼ିବ । ତୁ ବସି ଗପ କରୁଥା କି, ଠାକୁରଙ୍କୁ ଓଳଗି ହୋଇ ମୁଁ ଆସୁଛି ।

ସଞ୍ଜୟ ଆଡ଼କୁ ମୁହଁ ଫେରାଇ ଇନ୍ଦିରା କହିଲେ, ଟିକିଏ ବସ, ପୁଅ ! ରାତି ସେତେ ବେଶୀ ହୋଇନାହିଁ ।

ସଞ୍ଜୟ ତାଙ୍କର କଥା ଶୁଣିଲା ନାହିଁ । ଅନୁପା ସାନନ୍ଦର ବାହୁଟିଏ ଧରି କହିଲା, ସମସ୍ତ ମୋଟେ ଦଶଟା, ବୋଉ ! ତୋର ଗପ ସରି ନ ଥିବ । ମୁଁ ସାନନ୍ଦକୁ ନେଇ ତଳଘରେ ଶୁଆଇଦେଉଛି ।

ଇନ୍ଦିରାଙ୍କର ଆଉ କୌଣସି ନିର୍ଦ୍ଦେଶକୁ ଅପେକ୍ଷା ନ କରି ଅନୁପା ସାନନ୍ଦର ହାତ ଧରି ପଦାକୁ ଚାଲିଗଲା । ତା'ର ଦୁଇଟି ଆଜାନୁଲମ୍ବିତ ବେଣୀର କଳାନାଗ ଦୋଳନକୁ ସଞ୍ଜୟ ଚାହିଁରହିଥିଲା ।

ରାତି ଆଠଟା । ସେମାନେ ଶୀଘ୍ର ଆସି ପହଞ୍ଚିବେ । ବିକାଶ, ଅଞ୍ଜନା ଓ ସଞ୍ଜୟ । ରଞ୍ଜିତା ଟିକିଏ ଡେରି କରି ପହଞ୍ଚିବେ । ଫୋନରେ ଖବର ଦେଇଛନ୍ତି । ସବୁ ପ୍ରସ୍ତୁତ ହୋଇସାରିଛି । ନିଜେ ଇନ୍ଦିରା ଓ ପିଲାମାନେ ବେଶଭୂଷାରେ ମଣ୍ଡିତ ହୋଇ ୱେଟ୍ କରୁଛନ୍ତି । ଯାହାକୁ ଇନ୍ଦିରାଙ୍କର ମନେ ମନେ ଡର ଥିଲା, ସେ ପ୍ରତିବାଦ କରିନାହିଁ । କୁହାରିବୋଲର ହୋଇଛି ।

ଝିଅଟା ତର୍କପ୍ରିୟ, ଅବାଗିଆ ଢଙ୍ଗ ଧରିଥିଲା । ଆଜି ସେ ମଉଁନମୁହାଁ ହୋଇଛି । ବେଶୀ କଥାଭାଷା କରୁନାହିଁ । କିଛି ପଚାରିଲେ ହଁ ନା କହି ଉତ୍ତର ଦେଉଛି । କେତେବେଳେ ସେ କି ରୂପ ଧରିବ, କିଏ କହିପାରିବ ? କି ଶିକ୍ଷା ତାକୁ ବିକ୍ରମ ଦେଇଗଲା କେଜାଣି ! ନିରୁପା ଗୁପ୍ତରେ କହୁଥିଲା ଯେ, ବିକ୍ରମ ଆଗରେ ବସି ସେ ଆଖିରୁ ଲୁହ ଗଡ଼ାଉଥିଲା । କ'ଣ କହୁଥିବ ଚୁଲିପଶା ଟୋକାଟା ?

ଠାକୁରେ, ଅନୁର ବାହାଘର ସୁରୁଖୁରୁରେ ସମ୍ପାଦିତ ହେଉ । ଏତିକି କରୁଣା କର । ବିକ୍ରମକୁ ଖଣ୍ଡେ ଛପା ନିମନ୍ତ୍ରଣ ପତ୍ର ଲୋକ ଦେଖା-ଣକୁ ମଙ୍ଗଳ ଦିନ ପୋଷ୍ଟରେ ପଠାଇବାପାଇଁ ଅନୁର ବାପାଙ୍କୁ ତାଗିଦ କରିହେବ । ଘର ବିଷୟରେ ସେ ନିର୍ଲିପ୍ତ । ଏଣୁତେଣୁ କହି ତାଙ୍କର

ମତି ବିଗାଡ଼ିବା ଉଚିତ ନୁହେ । ସେ ଭଲ, ତାଙ୍କ ବେପାରବଣିଜ, ଲାଭ-କ୍ଷତି, ଟିକସ, ମକଦ୍ଦମା, ଓକିଲ ଭଲ । କେଉଁଠି ଅଡୁଆ ଅଟକ ହେଲେ ଆସି ଶରଣ ପଶିବେ । ମୁହଁ ଶୁଖାଇ ନିଉନ ହୋଇ କହିବେ, ହଇହୋ, କଣ କରାଯିବ ? ପ୍ରବଳ ତୋଫାନ । ଡଙ୍ଗା ବୁଡ଼େ କି ନ ବୁଡ଼େ । ଦୁକାନ ଅସମ୍ଭାଳ । ମଙ୍ଗରେ ତମେ ହାତ ପକାଅ ।

ମୁହଁରେ ଈଷତ୍ ଗୋଲାପୀ ରଙ୍ଗର ପାଉଡ଼ରର ପରଖ ଦେଲେ । ଚମର ରଙ୍ଗକୁ ଆଜି ଟିକିଏ ତୋଫା କରି, ଇନ୍ଦିରା ନିଜକୁ ନିଜେ ଆଇନାରେ ଦେଖିଲେ । ରଙ୍ଗିଲା ଓଠରେ ସ୍ମିତ ବିକଶାଇ ସେ ଭାବିଲେ, ନିଜକୁ ଟିକିଏ ନ ମାଜିଲେ ଅନ୍ୟମାନେ ଖୁସି ହେବେ ନାହିଁ । ଯେସ୍‌ମିନ୍ ବରାବର ଏହା କହନ୍ତି । ସତ ପରଖା । ଅନୁଠା ଆଗେ କଥା ମାନୁଥିଲା । ଏବେ ପ୍ରତିବାଦ କରୁନାହିଁ, କିନ୍ତୁ ତାର ଯାହା ମନ ସେଇଆ କରୁଛି । ନିରୁ ସୁରୁଙ୍କୁ ଯାହା କହିବ ସେଇଆ ।

ଉପରେ ସିଡ଼ିପାଖ ଘରେ ସେମାନଙ୍କୁ ଚର୍ଚ୍ଚା କରାହେବ । ସେ ଦାୟିତ୍ୱ ନେବାକୁ ଅନୁପା ମନା କରିଦେଲା । ଇନ୍ଦିରା ଭୁଲିଇବେ । ନିରୁପା ସାହାଯ୍ୟ କରିବ । କାଲି ରାତିରେ ଅନୁ ତାଙ୍କୁ ଅପଦସ୍ଥ କରିଛି । ସଞ୍ଜୟ ନିଜକୁ ଅପମାନିତ ମଣିଥିବ । ଆଜି ଯେପରି ସେ ତା'ର ଢଙ୍ଗକୁ ସଂଯତ କରେ, ତାକୁ ତାହା ବୁଝାଇଦେବାକୁ ହେବ । ଊର୍ମୀ ଟୋକିଟାର ବସ୍ତୁର-ବୁଦ୍ଧି ନାହିଁ । କାଳ ଯେମିତି ହେଲାଣି, ଏବକା ପୁଅ ଯେପରି ଅମାନିଆଁ ବାରବଖା ହେଲେଣି, ଫାଶ ପକାଇ ଭଲ ପିଲାଟିଏ ଧରିବା କାଠିକର ପାଠ । ମନ ବିଗିଡ଼ିଲେ, ପିଡ଼ିକିଗଲେ କଥା ସରିଲା ।

ଅନୁପାକୁ ପାଖକୁ ଡକାଇଲେ । କବାଟ କିଳିଲେ । ସେ ଦାମିକା ସୁନ୍ଦର ଶାଢ଼ି ପିନ୍ଧିଛି । ଯେଉଁ ପଥରବସା ସୁନା ଗହଣା ନିଜ ହାତରେ ତାକୁ ପିନ୍ଧାଇ ଦେଇଥିଲେ, ସେତେବେଳେ ସେ ପ୍ରତିବାଦ କରୁଥିଲା, ସବୁ ଦେହରେ ରଖିଛି । ଆଖିରେ କଜଳ ଧାପେ । ମୁଣ୍ଡରେ ଛୋଟ କୁଙ୍କୁମ

ଠୋପା ଲଗାଇଛୁ । ପାଉଡରର ଟିକଏ ମାଖିଥିଲେ ସୁଠାମ ମୁହଁଟି ଆହୁରି ଝଟକୁଥାନ୍ତା ।

କାହିଁକି ଡକାଇଲୁ ବୋଉ ?

ସେମାନଙ୍କର ଆସିବାର ବେଳ ହେଲାଣି ।

ମୁଁ କଣ କରିବି ?

ଇଏବି କ'ଣ କହିବେ ବୁଝିପାରିଲେ ନାହିଁ । ଥା ଥା ମା ମା ହୋଇ କହିଲେ, କାଲି ସେ ଟିକଏ ମନକଷ୍ଟ କରିଥିବ । ସଞ୍ଜୟ କଥା କହୁଛି, ମା ! ତା' ପାଖରେ ପାଞ୍ଚ ଦଶ ମିନିଟ ବସି ଏଣେତେଣେ ଗପ କରି-ଥିଲେ ଭଲ ହୋଇଥାନ୍ତା । ଏବକା ପିଲାଏ ଖୁବ୍ ଅଭିମାନୀ ।

ତାଙ୍କ ମନକଷ୍ଟରୁ ମତେ କ'ଣ ମିଳିବ ?

ସେମିତି କହନା, ମା ! ତୁ ଜାଣୁ, କଟକର କେତେ ଗଣ୍ୟମାନ୍ୟ ଲୋକଙ୍କ ଉପସ୍ଥିତିରେ, ଠାକୁରମାନଙ୍କ ଆଗରେ ତୋ ବାପା କମଳ-ବାବୁଙ୍କ ହାତକୁ ମହାପ୍ରସାଦ ଦେଇ ନିର୍ବନ୍ଧ କରିଛନ୍ତି ।

ଖବରକାଗଜରେ ବାହାରିଥିଲା, ବୋଉ ! ମୋ ସାଙ୍ଗମାନେ ମତେ ଦେଖାଉଥିଲେ । ଉପହାସ କରୁଥିଲେ । ମୁଁ କହିଲି, ମୁଁ ଜାଣେ ନାହିଁ ।

ତୁ ଆଉ କ'ଣ କହନ୍ତୁ ? ଘଣ୍ଟା ଥିବା ପିଲାଏ ସେଇଆ କହନ୍ତି । ତୋ ଯେସ୍ମିନ୍ ମାଉସୀ ଖୁସି ହୋଇ ଗୁଡ଼ାଏ ଟଙ୍କା ଖରଚ କରି ଖବର-କାଗଜରେ ଛପାଇଛନ୍ତି । କହିଲେ, ତାଙ୍କ ସମାଜରେ ବାଗ୍‌ଦାନ ବିଷୟ ବି ସମସ୍ତଙ୍କୁ ଜଣାଇଦିଆଯାଏ ।

ତୁ ମତେ କ'ଣ କହୁଛୁ ?

କ'ଣ କି ମା, ଦିନବାର ସ୍ଥିର ହୋଇସାରିଛି—ଆଷାଢ଼ ଶୁକ୍ଳ ପଞ୍ଚମୀ ରବିବାର ଦିନ । ଜୁନ୍ ମାସ ୨୬ ତାରିଖରେ । ସଞ୍ଜୟର ମନ ବିଗାଡ଼ିଲେ ସେ ଯଦି ବୁରୁଡ଼ିଯିବ ? ଏବକା ଟୋକାଙ୍କ ଢଙ୍ଗ ଜାଣିଛୁ ତ ମା ! ବାପ ମା, ଠାକୁର ଠାକୁରାଣୀ, ଗୁରୁଜନ କାହାରି କଥା ସେମାନେ

ଶୁଣିବେ ନାହିଁ । କୁକୁରଲାଙ୍ଗୁଡ଼ ବଙ୍କା । ସେମାନଙ୍କୁ ସ୍ନେହରେ ବଶ କରି ହେବ ।

ଅନୁପମା କିଛି ସମୟ ନୀରବ ରହିଲା । ତଳକୁ ମୁହଁ ପୋତି ତା'ର ସୁନ୍ଦର ଶାଢ଼ିର ଅଞ୍ଚଳ ପରଖୁଥିଲା । ସେ ଧୀରେ ଧୀରେ ମୁହଁ ଟେକିଲା । ଆଖିରେ ଲୁହ ଟଳଟଳ ହେଉଛି । ଆର୍ଦ୍ର କଣ୍ଠରେ କହିଲା, ବୋଉ !

କ'ଣ ମା ?

ତୋ'ର ଠାକୁରବିଶ୍ୱାସ ଅଛି ?

ଏ କି କଥା ପଚାରୁଛୁ ? ପିଲାଦିନରୁ ବାପଘରେ ଠାକୁର-ଠାକୁରାଣୀମାନଙ୍କର ପୂଜା କରୁଥିଲି । ପାଦୁକ ପାଉଥିଲି । ରଜ, କୁଆଁର ପୁନେଇଁ କରୁଥିଲି । ଦୋଳ ମଉଚ୍ଛବରେ ଠାକୁରମେଳଣମାନଙ୍କରେ ହାଅଁ ଦର୍ଶନ, ଗଣେଶ ଚତୁର୍ଥୀ, ଶ୍ରୀପଞ୍ଚମୀ, ଦଶହରା, କାଳୀପୂଜା, କେତେ ନାମ କହିବି ? ଶାଶୁଘରକୁ ଆସିଲା ପରେ, ଯେଉଁ ବାର ବ୍ରତ ପାଞ୍ଜିରେ ଲେଖା ହୋଇଛି, ଲମ୍ବ ତାଲିକା,—ଓଷା, ବ୍ରତ, ସାବିତ୍ରୀ, ଗୁଣ୍ଡିଚା, ମାଣବସା । ତୁ ବଳେ ଜାଣିବୁ ଯେ । କେଉଁଟା ମୁଁ ଛାଡ଼େ ନାହିଁ । ଠାକୁରବିଶ୍ୱାସ ନ ଥିଲେ ଏସବୁ ମୁଁ କରନ୍ତି କାହିଁକି ?

ସେମାନଙ୍କର କି ସେମିତି ଠାକୁରବିଶ୍ୱାସ ଥିବ, ବୋଉ, ମାନେ ସଞ୍ଜୟବାବୁଙ୍କର ?

ଥିବ, ମା ! ତେବେ, ଏବକା ପିଲା···

ମୁଁ ବି ଏବକା ପିଲା, ବୋଉ ! ମତେ ନ ପଚାରି ତୁ ଏତେ ଦୂର ଆଗେଇଗଲୁ କାହିଁକି ? ତତେ ମୁଁ ବାରମ୍ବାର କହୁଛି, ମୁଁ ଆହୁରି ପଢ଼ିବି, ବାହା ହେବି ନାହିଁ । ନିଜ ଗୋଡ଼ରେ ନିଜେ ଠିଆ ହୋଇ ନିଜର ଉପାର୍ଜନରେ ନିଜେ ଚଳିବାର ଶକ୍ତି ମୋର ନ ହେବାଯାଏ···

ଖିତିଅବି କଣ୍ଠରେ ଇନ୍ଦିରା କହିଲେ, ଏ ବୁଦ୍ଧି ତତେ କିଏ ଦେଲା ? ପାଠ ଆହୁରି ପଢ଼ିବାକୁ ମନ କଲେ ସେମାନେ ତତେ ପଢ଼ାଇବେ । ରଞ୍ଜିତା ରାଜି ହୋଇଛନ୍ତି ।

ମତେ ପଢ଼ାଇବାକୁ ମୋ ବାପାଙ୍କର ଧନର ଅଭାବ ହେବ ନାହିଁ ।
ମୁଁ ଏମ୍. ଏ. ପାସ୍ କରିସାରିଲା ପରେ ବାହାଘରର ବନ୍ଦୋବସ୍ତ କରିବୁ । ଦେଖୁ
ଦେଖୁ ଦୁଇଟି ବର୍ଷ କଟିଯିବ, ବୋଉ !

କମଳବାବୁ ଅପେକ୍ଷା କରିବେ ନାହିଁ । ଆମେ କିପରି ଅପେକ୍ଷା
କରିପାରିବୁ ? ତୋ ପଛକୁ ନିରୁର ବୋଝ ଲାଗିଆସିଲାଣି । ପାଠରେ ତାର
ଆଗ୍ରହ ନାହିଁ । ଆସନ୍ତା ବର୍ଷ ତାକୁ ଉଠାଇଦେଲେ ନିଶ୍ଚିନ୍ତ ହୋଇପାରିବ ।

ସେଇଆ କର, ବୋଉ ! ଏବର୍ଷ ଯେଉଁ ତିଥି ସ୍ଥିର ହୋଇଛି, ସେହି
ତିଥିରେ ନିରୁକୁ ତୁ ଉଠାଇଦେଇ ନିଶ୍ଚିନ୍ତ ହ । ମହାପ୍ରସାଦ ଲଙ୍ଘନ ହେବ-
ନାହିଁ । ମୋର ସେଥିରେ ଆନନ୍ଦ । ସେମାନେ ଅଧିକ ଖୁସି ହେବେ ।

କେଡ଼େ ଅସମ୍ଭବ କଥା ତୁ କହୁଛୁ, ଅନୁ ! ତୋ ମୁହଁକୁ ଲାଜସରମ
ନାହିଁ ? ଅଧିକ ପାଠ ପଢ଼ି ଆମ୍ଭର ଦୁର୍ନାମ କମାଇବୁ ? ମୋ ଉପରି ମୁହଁ
ତଳକୁ କରିବୁ ?

ଅନୁପା ତାଟଙ୍କା ହେଲା । କ୍ରୋଧରେ ସେ ଆପଣା ଭିତରେ ଜଳି-
ଯାଉଥିଲା । ପଲଙ୍କ ଉପରୁ ସେ ଉଠିଲା ନାହିଁ । ତଳକୁ ମୁହଁ ପୋତି ସେ
ବସିରହିଥିଲା, ଟାଣ ଟାଣ କରି ସେ ତାର ବୋଉକୁ କେତେ କଥା ଶୁଣାଇ-
ଦେବ । ସଞ୍ଜୟର କୀର୍ତ୍ତିକଳାପ ତାଙ୍କ ଆଗରେ ଉନ୍ମୋଚନ କରିବ ।

କ୍ରୋଧକୁ ଆୟତ୍ତ କରି ସେ ମୁହଁ ଖୋଲିଲା ନାହିଁ । ଆଖିରୁ
ଲୋତକର ଧାର ପ୍ରବାହିତ ହେଲା ।

ଇନ୍ଦିରା ବ୍ୟଥିତ ହୋଇଥିଲେ । ତାଙ୍କର ମନରେ ଅନୁଶୋଚନା ନ
ଥିଲା । ଭାବିଲେ, ଭଲ ହୋଇଛି । ପାଠ ପଢ଼ି ସେ ଉପରମୁହାଁ ହୋଇଛି ।
ତାର ମୁହଁ ଭାଙ୍ଗିବା ଉଚିତ ।

ମନକୁ ମନ ସେ ନରମିଆସିଲେ । ଭାବିଲେ, ଝିଅଟା ଗେହ୍ଲାରେ
ବଢ଼ିଛି । ପିଲାଦିନରୁ ସ୍ୱାଧୀନ ଭାବରେ ଚଳବୁଲ ହୋଇଛି । ଘରେ ଓ
ବାହାରେ ସମସ୍ତଙ୍କ ମୁହଁରୁ ସେ ଖାଲି ପ୍ରଶଂସା ଶୁଣିଆସିଛି, ନରମ କୋମଳ

ବଚନ । ଟାଣ କଥା ପଦେ ଶୁଣି ନାହିଁ, ଝିଙ୍ଗାସ ଓ ଦୂରର କଥା । ଏଣୁତେଣୁ କ'ଣ କରିପକାଇବ ।

ସେ ଅନୁପାର ହାତଟିଏ ଧରିଲେ । ନିଜର ଅଞ୍ଚଳରେ ତାର ମୁହଁ ପୋଛିଦେଲେ । ସ୍ନେହରେ ତାର ମୁହଁରେ ହାତ ବୁଲାଇଲେ । ଆଖି ଛଳଛଳ କରି କହିଲେ, ମୋ ମାଆଟା, ମୋ ସୁନାଟା ! ମନଦୁଃଖ କରିବୁ ନାହିଁ । ତତେ ଜନମ ଦେଇଛି, ଯାହା ମୁଁ କରିବ ତୋର ମଙ୍ଗଳ ପାଇଁ କରିବ । ହେଇଟି, ମଟର ହର୍ଣ୍ଣ ଶୁଭୁଛି, ସେମାନେ ଆସିଲେ କି କ'ଣ । ମୁଁ ଯାଇ ଦେଖେଁ । ତାଙ୍କୁ ପାଛୋଟି ଆଣେ । ତୁ ଯାଇ ମୁହଁ ଧୋଇପକା । ଉଠ୍ ମା !

ଅନୁପା ଆଉ ପ୍ରତିବାଦ ନ କରି ଉଠିଲା ।

ଇନ୍ଦିରା କବାଟ ଖୋଲି ପଦାକୁ ଆସିଲେ । ଗୋଟିଏ ଗାଡ଼ିରେ ସମସ୍ତେ ଆସିଥିଲେ ।

ଦୁଇଟି ଘଣ୍ଟା ସେମାନେ ରହିଲେ । ହସଖୁସି, ଆନନ୍ଦ । କେତେ ଆଡ଼ର କେତେ ଗପ ।

ଇନ୍ଦିରା ମନେ ମନେ ଡରୁଥିଲେ । ଅନୁପା ଆଉ କ'ଣ ଢଙ୍ଗ କାଢ଼ି ସମସ୍ତଙ୍କୁ ଅପଦସ୍ଥ କରିବ କି ? କିନ୍ତୁ ଅଳ୍ପ ସମୟ ପରେ ତାଙ୍କର ସେ ଭୟ ଦୂର ହେଲା । ଅନୁପା ହସି ହସି ସମସ୍ତଙ୍କ ସଙ୍ଗେ ଆଳାପ କରିଥିଲା ।

ବହୁଦିନ ପରେ ତା'ର ବାଲ୍ୟସଙ୍ଗିନୀ ଗୋଲାପ ଅଞ୍ଜନାକୁ ସେ ପାଇଥିଲା । ତା'ର ହାତ ଧରି ମହିଁଘରକୁ ନେଇ ଗପ ଆରମ୍ଭ କରିଦେଇଥିଲା ।

ବିକାଶ ଓ ସଞ୍ଜୟଙ୍କ ପାଖରେ ନିରୁପା ଓ ସୁରୂପା । ଭବିଷ୍ୟତରେ ଯେ ଭଉଣୀଙ୍କ ହେବେ, ତାଙ୍କର ପାଖରେ ନିରୁପା ମୁଖଭଙ୍ଗୀ କରି, ଭ୍ରୂଲତା ଟେକି ଗେହ୍ଲେଇ ହେଉଥିଲା । ବିକାଶବାବୁଙ୍କୁ କଣେଇଁ କଣେଇଁ ଚାହୁଁଥିଲା । ବିକାଶ ସୁରୂପାର ହାତଟିଏ ଧରି ଏଣୁତେଣୁ ପଚାରୁଥିଲେ ।

ଭବିଷ୍ୟତର ଦୁଇ ସମ୍ଭୁଦୁଣୀଙ୍କ ଆଳାପରେ ଥିଲା ନିଜ ନିଜ ପିଲା-ମାନଙ୍କର ଗୁଣଗ୍ରାମର ପ୍ରଶଂସା । ସେମାନେ ମଝିଘର ପଲଙ୍କ ଉପରେ ବସିଥିଲେ । ସାନନ୍ଦ ଶୋଇପଡ଼ିଥିଲା । କୌତୂହଳର ପ୍ରଶ୍ନ ବି ଇନ୍ଦିରା ଉଠାଇ-ଥିଲେ । ରଞ୍ଜିତା ଉତ୍ତର ଦେଲେ, ତମର ଝିଅଟାକୁ ତମେ ଦେବ, ମୁଁ କାହିଁକି ପାଣି ପିଠାଇବି ? ବଣ୍ଟିଲୁ ସୁନ୍ଦର ହେବ, ଦୁଇକୁଳର ସମ୍ମାନ ରହିବ; ପିଲାଙ୍କ ମନରେ ଦୁଃଖ ହେବନାହିଁ ।

ଅଞ୍ଜନା ଓ ଅନୁପା ଶେଷରେ ପିଲାଦିନର ସାଙ୍ଗମାନଙ୍କ ବିଷୟରେ ଆଲୋଚନା କରିଥିଲେ । ଗତ ଜୀବନର ଆନନ୍ଦ ଓ ବିଷାଦର ସ୍ମୃତି । କିଏ କେଉଁଠି ସଂସାର କଲେଣି ହେଲେଣି, ସାତସପନ । କେଉଁମାନେ ପୁଣି ଏ ଦୁନିଆରୁ ହଜିଗଲେଣି । ଅଞ୍ଜନାର ମନେପଡ଼ିଥିଲା ପୁଷ୍ପାଞ୍ଜଳୀ । ସୁନ୍ଦର ନିଗିହ ଝିଅଟିଏ । ସମସ୍ତେ ତାକୁ ସ୍ନେହ କରୁଥିଲେ ।

ଅଞ୍ଜନା କହିଲା, ତୋର ବଉଳ ପୁଷ୍ପାଟି ମନେପଡ଼ୁଛି, ଗୋଲାପ ! ସବୁ ଘରେ ସେ ଗେହ୍ଲେଇ ଝିଅ ।

ଅନୁପା କହିଲା, ସବୁବେଳେ ସେ ମୋର ମନେପଡ଼େ ଲୋ ଗୋଲାପ ! କେବେ କେବେ ତାକୁ ମୁଁ ସପନ ଦେଖେଁ । ଆହା ବିଚରା, କାନ୍ଦି କାନ୍ଦି କେତେ କ'ଣ ଗପିଯାଏ ।

ଅଞ୍ଜନା କହିଲା, ବାପାବୋଉ ତାକୁ ବୋହୂ କରିବେ ବୋଲି ଗେଲରେ ଗେଲରେ ଚଳାଉଥିଲେ । ଭାଇ ତାକୁ ଠିକ୍ ଏ ପସନ୍ଦ କରୁଥିଲେ । ତା' ପ୍ରଶଂସା ଗାଉଥିଲେ, ବୋଧହୁଏ ସେଇଥିପାଇଁ । ଭାଇଙ୍କ ପାଖରେ ଗେହ୍ଲେଇ ହୁଏ ବୋଲି ମୁଁ ତାକୁ ଭାଉଜ କହି ଚିଡ଼ାଉଥିଲି । ସେ ଚିଡ଼େ-ନାହିଁ । ଓଲଟି ହସେ ।

ଅନୁପା କହିଲା, ସେ ସତ ମଣି ଥିଲା ।

ଅଞ୍ଜନା କହିଲା, ଭାବପ୍ରବଣ ଝିଅଟି । ଶୁଣିଲି, ପରୀକ୍ଷାରେ ଭଲ କରି ନ ପାରି ଜୀବନ ହାରିଦେଲା । ଆହା, ବିଚରା !

ଅନୁପା କହିଲା, ମୋ ବଉଳ ପୁଷ୍ପାବଣୀକୁ ଆଜି ଭୁ ମନେପକାଇ-ଦେଲୁ । ଦୁଃଖ ଲାଗୁଛି । ସତେ, ଫୁଲଟିଏ ପରି ତା'ର ମନ କୋମଳ ଥିଲା । ଯାହା କହିଲେ ସେ ସହଜରେ ବିଶ୍ୱାସ କରୁଥିଲା । ପରେ ଶୁଣିଲି ଲୋ ଗୋଲାପ, କୌଣସି କାରଣରୁ ତା'ର ବିଶ୍ୱାସ ଭୁଟିଲା । ମୋ ଅଶୋକା ସୁମତିକୁ ସଞ୍ଜସୁଭଣ ଭଲପାଇଲେ ବୋଲି ସେ ଶୁଣିଲା । ନିବୋଧ ବଉଳଟି ମୋର ଜାଣି ମଧ୍ୟ ସତେ ଜାଣିଲା ନାହିଁ ଯେ ସଞ୍ଜସୁଭଣ ଅତି ସ୍ନେହପ୍ରବଣ, ସମସ୍ତଙ୍କୁ ସେ ଆପଣାର କରନ୍ତି । ବିଚରା ଦୁଃଖରେ, କେଜାଣି ବା ଭୟରେ, ଜୀବନ ହାରିଲା ।

ଅଞ୍ଜନା କହିଲା, ମୋ ଭାଇଙ୍କ ନାମରେ କଳଙ୍କ ବୋଳିବାକୁ ଏଇଟା ସେମାନଙ୍କର ଗୋଟାଏ ମିଛ ପ୍ରଚାର ।

ଅନୁପା କହିଲା, ହୋଇଥିବ ମିଛ । ପୁଅଝିଅଙ୍କ ଭିତରେ ଟିକିଏ ବନ୍ଧୁତା ହେଲେ, ସେମାନେ ସ୍ୱାଧୀନଭାବରେ ବୁଲାଚଲା କଲେ, ହସଖୁସିରେ ଆଳାପ କଲେ, ଖଳଲୋକେ ବାଉ ଦୁର୍ନାମ ରଟାନ୍ତି । ବାହା ହୋଇ ସଂସାର କରି, ପୁଅଝିଅଙ୍କର ମା' ହୋଇ ବି ସେପରି ଦୁର୍ନାମରୁ କେହି କେହି ରକ୍ଷା ପାଆନ୍ତି ନାହିଁ ।

ଅଞ୍ଜନା କହିଲା, ପର ଘୋଇଖୋଳା ଲୋକେ ଅନ୍ଧାରରେ ବାଡ଼ି ବୁଲାନ୍ତି । ଧୂଆଁ ବାଣ ମାରନ୍ତି । ଛାଡ଼ ସେ ସବୁ ବାଜେ ଆଲୋଚନା । ଅସନାକୁ ଆଲୋଡ଼ନ କଲେ ଦୁର୍ଗନ୍ଧ ଉଠିବା ସ୍ୱାଭାବିକ ।

ହସଖୁସିରେ ବେଳ କଟିଲା ।

ରାତି ଏଗାରଟା । ସେମାନେ ବିଦାୟ ନେଉଥିଲେ—

ବୈଠକଘରର ଆଲୋକିତ ବାରଣ୍ଡାରେ ନିରୁପା ଓ ସୁରୂପାଙ୍କ ପରି ଅନୁପା ମଧ୍ୟ ସମସ୍ତଙ୍କୁ ପ୍ରଣାମ କଲା । ରଞ୍ଜିତା ତା' ବେକରେ ପିନ୍ଧାଇ-ଦେଇଥିବା ମୂଲ୍ୟବାନ ହାରଟି ଉଜ୍ଜ୍ୱଳ ଆଲୋକରେ ଝଟକୁଥିଲା । ସେ ତା ଗୋଲାପର ହାତ ଧରି କହିଲା, ସେକାଳ ଆଉ ଏକାଳ ମଧ୍ୟରେ ବହୁତ ତଫାତ୍, ନୁହେ କି ଗୋଲାପ ?

ଅଞ୍ଜନା ଉତ୍ତର ଦେଲା, ମୁଁ ଖାଲି ସେକାଳିଆ ହୋଇ ରହିଗଲି, ଗୋଲାପ ! ହଉ, ଆସୁଛୁ । ବଡ଼ସକାଳୁ ଆମେ କୋରାପୁଟ ଚାଲିଯିବୁଁ । ପୁଣି ଯାଇଁ ଦେଖା ଆସନ୍ତା ମାସର ଶେଷ ସପ୍ତାହରେ । ସେତେବେଳକୁ ମୋ ସ୍ନେହର ଗୋଲାପ ମୋ ବଡ଼ଭାଉଜ ହୋଇସାରିଥିବ । ମୋ'ର ସମ୍ମାନର ଅଧିକାରିଣୀ, ନମସ୍ୟା !

ଦୁହେଁ ହସାହସି ହେଲେ ।

ଇନ୍ଦର ରଞ୍ଜିତାଙ୍କ ସଙ୍ଗେ ପୋର୍ଟିକୋ ଭିତରେ ଠିଆ ହୋଇ ଗପ କରୁଥିଲେ । କଣେଇଁ ଚାହିଁଲେ । ଝିଅର ମନରେ ଆନନ୍ଦ ଓ ଚଙ୍ଗରେ ମହତପଣ ଦେଖି ସେ ସନ୍ତୁଷ୍ଟ ହେଲେ । ଭାବୁଥିଲେ, ଶିକ୍ଷିତା ବୁଦ୍ଧିମତୀ ଝିଅ, ତାଙ୍କର ସାର ବଚନକୁ ଗ୍ରହଣ କରିଛି ।

ପୋର୍ଟିକୋ ବାହାରେ ଖୋଲା ଆକାଶ ତଳେ ସଞ୍ଜୟ ଆଗରେ ଠିଆ ହୋଇ ନିରୁପା ଗେହ୍ଲେଇ ହେଉଥିଲା । ସଞ୍ଜୟର ହାତଟିକୁ ବାରମ୍ବାର ଧରି ହଲଉଥିଲା । ମୁଣ୍ଡ ସଙ୍ଗେ କବରୀ ଦୋହଲାଇ ପାଟିକରି ହସୁଥିଲା । ହସୁହସୁ ସତେ କି ସଞ୍ଜୟର ଛାତି ଉପରେ ଅଜାଡ଼ି ହୋଇ-ପଡ଼ୁଥିଲା । ଅନ୍ୟମାନଙ୍କର ଉପସ୍ଥିତିକୁ ସେ ଭ୍ରୁକ୍ଷେପ କରୁ ନ ଥିଲା, ଅବା ସେ ଆତ୍ମବିସ୍ମୃତ ହୋଇଥିଲା । ସଞ୍ଜୟ ନୀରବ ରହି କେବଳ ଶୁଣୁଥିଲା, ସାମାନ୍ୟ ମୁଣ୍ଡ ହଲଉଥିଲା ।

ଅନୁପା ବେଦନାଭରା ଦୃଷ୍ଟିରେ ନିରୁପାର ନିଜଭୁଲା ଗତିକୁ କଣେଇଁ ଚାହିଁଲା । ସେ ଆଖି ଫେରାଇଲା ତା'ର ବୋଉ ଓ ରଞ୍ଜିତାଙ୍କ ଆଡ଼କୁ । ସେ ଦୁହେଁ ମୁଗ୍‌ଧ ହୋଇ, ନିର୍ବାକ ହୋଇ ନିରୁପା ଓ ସଞ୍ଜୟଙ୍କର ଆନନ୍ଦ ଓ କୌତୁକକୁ ଲକ୍ଷ୍ୟ କରୁଥିଲେ ।

ଶିରପଲ୍ଲି ତାଙ୍କୁ ଆଜ ଭଲ ଲାଗୁନାହିଁ । ଗ୍ରାମର ଏମୁଣ୍ଡରୁ ସେମୁଣ୍ଡ ଦି ଥର ବୁଲିଆସିଲେ ଦେହର ଅଳସ ଭାଙ୍ଗେ, କ୍ଳାନ୍ତି ଦୋ ଟି ଆସେ; କିନ୍ତୁ ହାଇଁପାଇଁଆ ମନର୍ ହେକ ମ ର ନାହିଁ । କାଲିକାର ମେଅଡ଼ ଛୁଆଗୁଡ଼ାକ

ଏବେ ମଣିଷ ହୋଇ ମାମଲତ୍ତ କଲେଣି । ଗାଁରେ ତିନ ଫାଙ୍କ । ସବୁ କ୍ଷେତ୍ରରେ ରାଜନୀତି । ମୁହଁକୁ ବଳବଳ ଦୁହିଁ ଅପମାନଆ କଥା କହୁଛନ୍ତି । ସୀର-କେଶରୀଙ୍କ ଅମଳର ଲୋକେ, ଯେଉଁମାନେ କୌଣସି ନା କୌଣସି ଲାଭପ୍ରଦ କାର୍ଯ୍ୟରେ ନିଜକୁ ନିୟୋଜିତ କରିଛନ୍ତି, ଅଳସ ଆଳାପରେ ସମୟ ନଷ୍ଟ କରିବାକୁ ଚାହୁନାହାନ୍ତି । କାହାରି ଘରେ କପେ ଚା’ ଦୂରର କଥା, ପାନ ଖିଲେ ମିଳିବା କଷ୍ଟକର ହୋଇପଡ଼ୁଛି ।

କେଶରୀବଂଶର ଡାୟାଦ, ନୂଆ ଉପୋଟିଙ୍କର ବାପ, ସେକାଳର ରକ୍ଷଣଶୀଳ ମାମଲତକାର ସୀରକେଶରୀଙ୍କୁ ମାନ୍ୟତା ଦେବ କିଏ ? ପଦେ ତ ପଚାରୁନାହାନ୍ତି ।

‘ଆସିଗଲେ କଜଳପାତିଆ’ ରବ ସୀରକେଶରୀଙ୍କର କାନରେ ପଡ଼େ । ଶୁଣି ନ ଶୁଣିଲାର ଛଳନା କରନ୍ତି । ଘରେ କି କାମ ବା ସେ କରିବେ ? ବନ୍ଦୀ ହୋଇ ରହିଲା ପରି ଲାଗେ । ଅଳସ ଚିନ୍ତାରେ ସମୟ କଟେ । ଲୁଗା ଖଣ୍ଡିକ ଦି’ଖଣ୍ଡ କରିବାକୁ ବଳ ପାଏ ନାହିଁ ।

ବନ୍ଧମ କଟକରୁ କେବଳାନନ୍ଦ ହାତରେ ଯେଉଁ ଚିଠିଖଣ୍ଡି ପଠାଇଥିଲା, ତାକୁ ସେ ଓ ଚନ୍ଦନା ବାରମ୍ବାର ପଢ଼ିଛନ୍ତି । ଚନ୍ଦନା ଯାହା ବୁଝିବାର ବୁଝିଥାଆନ୍ତୁ, ସୀରକେଶରୀ ବୁଝିସାରିଛନ୍ତି ଯେ ପୁଅ ହାତମୁଠା ଭିତରୁ ଖସି ପଳାଇଛି । ତା’ର ମନକୁ ନ ଦେଖିଲେ ନଚେତ୍ ପିତୃଭକ୍ତି ଦେଖାଇବାକୁ ସେ କେବେ କଥା ମାନିବ ନାହିଁ ।

କେତେ ଟାଣ ବାଣ ହାଣିଛି—ବନ୍ଧାଦେଇ ଅଗ୍ରିମ ଆଣିବା କଥା ! କିଏ ତାକୁ ବନ୍ଧା ଦେଇଥିଲା ? ବିପଦବେଳେ ଅନ୍ୟ ଜଣକର ବାକ୍ସରୁ ଟଙ୍କା କଢ଼ାଇବାର ଉପାୟ ସେ କରିଥିଲେ । ସେହି ପନ୍ଥା ଧରି ନ ଥିଲେ ଡାକ୍ତରଖାନାରେ ମୃତ୍ୟୁ ଘଟିଥାନ୍ତା । ପୁଅଙ୍କର ପାଠରେ ଡୋରି ବନ୍ଧା ହୋଇଥାନ୍ତା । ଆଜ ହାକମ ପାହ୍ୱଆ ପାଇ, ବଢ଼େଇ କରି ବୁଡିର କାଢ଼ନ୍ତେ ନାହିଁ ।

ବୁଝିଲ, ଚନ୍ଦନା ! ପୁଅ ଆମକୁ ନାଲିଆଖି ଦେଖାଉଛନ୍ତି । ତାଙ୍କ ହାତଟେକାରେ ରହିଛୁଁ ଜନା !

ତମକୁ ମୋ ରାଣ, ତମେ ସେପରି ବ୍ୟବହାର କର ନାହିଁ । ସମସ୍ତେ ତାକୁ ପ୍ରଶଂସା କରୁଛନ୍ତି । ସେ ଆସୁ, ତାକୁ ମୁଁ ବୁଝାଇଦେବି । ଟିକଏ ଅଝଟ ହୋଇଛି । ଆସିବ ତ ଶନିବାର ରାତିରେ ।

ତିନୋଟି ଶନିବାର ଅତୀତ ହୋଇଛି । ହେମ ଆସିନାହିଁ । କେଇଧାଡ଼ି ଲେଖି ମଝିରେ ପୋଷ୍ଟକାର୍ଡ଼ ଖଣ୍ଡେ ପଠାଇଥିଲା—ଆପଣଙ୍କର ଓ ବୋଉର ଲମ୍ବା ଲମ୍ବା ପତ୍ର ପଢ଼ିବାକୁ ମୋର ସମୟ ନାହିଁ । ଲମ୍ବା ଚିଠି ଲେଖି କ'ଣ ସବୁ ଆପଣ ଲେଖିଛନ୍ତି ତା'ର ଉତ୍ତର ଦେବାକୁ ବେଳ କାହୁଁ ପାଇବି ? ମୁଁ ଭଲ ଅଛି । କେବଳାନନ୍ଦ ଆସି ଦୁଇଦିନ ରହି ଭୁବନେଶ୍ୱର ଫେରିଗଲା । ଭାରି ଆନନ୍ଦରେ ବେଳ କଟିଲା । ଶୁଣି ଖୁସି ହେବେ ଯେ, ସେ ଶୀଘ୍ର ଦିଲ୍ଲୀ ଯାଉଛି । ସେଇଠି ଏମ୍. ଏ. ପଢ଼ିବ । କାର୍ଯ୍ୟବ୍ୟସ୍ତ ଅଛି । ଗ୍ରାମକୁ କେବେ ଯିବି କହିପାରୁନାହିଁ । ଯଥାସମୟରେ ଟଙ୍କା ପଠାଇବି । ଦେହ ପ୍ରତି ଯତ୍ନ ନେବେ । ପ୍ରଣାମ ଗ୍ରହଣ କରିବେ ।

ଚିଠି ପଢ଼ି ହରକେଶଙ୍କ ମୁହଁ ମୋଡ଼ିଲେ । ମନେ ମନେ ସେ ଆହତ ହେଲେ । ଏତେ କଷ୍ଟରେ କେତେ ଭାବ ଚିନ୍ତି, ସାବଧାନ ହୋଇ ସେ ଉପଦେଶପୂର୍ଣ୍ଣ ଚିଠି ଖଣ୍ଡିଏ ଲେଖିଥିଲେ । ଉଦାହରଣମାନ ଦର୍ଶାଇଥିଲେ । ଯୋଗ୍ୟପୁଅ ତାକୁ ପଢ଼ିଲା ନାହିଁ । ଅଶ୍ରଦ୍ଧା, ଅଭକ୍ତି, ଅବଜ୍ଞାର ଲକ୍ଷଣ ! ଅପମାନ ଦେଲା ।

ଅତି ଦୁଃଖରେ ସେ ଚନ୍ଦନାଙ୍କୁ କହିଲେ, ମୁଁ ବଞ୍ଚିଥାଉଣୁ ସେ ଜାଣ ମତେ ମାରିଦେଲା ଚନ୍ଦନା, ମତେ ସେ ଅବଜ୍ଞା କଲା ।

ଚନ୍ଦନା ବୁଝାଇ କହିଲେ, ତମକୁ ସେ ଅବଜ୍ଞା କରିବ ? ଦେଖୁନା, ମୋ ପାଖକୁ ପଦେ ଲେଖିନାହିଁ । ସତେ, ସେ କାମ ଭିତରେ ଘାଣ୍ଟି ହେଉ-ଥିବ । ମୁଁ ତ ମନକଷ୍ଟ କରୁନାହିଁ ! ମୁଁ ଖୁସି ଯେ ମୋ ପୁଅ ଭଲ ଅଛି ।

ଚନ୍ଦନାଙ୍କ ଆଖିରୁ ଲୁହ ଝରୁଥିଲା । ସେ ଭାବୁଥିଲେ, ଭଗମ ତାଙ୍କ ଉପରେ ରାଗିଛି । କେବଳାନନ୍ଦ ହାତରେ ସେ ଯେଉଁ ଚିଠିଖଣ୍ଡି ଲେଖିଥିଲେ, ଫଟେଟା ଫେରାଇଦେଇଥିଲେ, ସେଥିପାଇଁ ପୁଅ ଅଭିମାନ କରୁଛି ।

ସେ ଭଗମକୁ ଚେତାଇ ଦେଇଥିଲେ । ପୁଅ ବୁଝିଲା ନାହିଁ । ତା ପାଖକୁ ଢେଙ୍କାନାଳ ଠିକଣାରେ ଯେଉଁ ଲମ୍ବା ଚିଠିଟି ଲେଖିଥିଲେ, ସେଥିରେ ସେ ସବୁ ଭଲ ଭାବରେ ବୁଝାଇଦେଇଥିଲେ । ଲେଖିଥିଲେ ଯେ, ଇନ୍ଦିରା ଓ ଅନୁପାଙ୍କ ମନରେ ଯଦି କପଟ ନ ଥାନ୍ତା, ତାଙ୍କର ଚିଠି ଦିଓଟିର ଉତ୍ତର ସେମାନେ ଦେଇ ନ ଥାନ୍ତେ କାହିଁକି ? ଇନ୍ଦିରା ମହା ଜଣେ ! ବୁଡ଼ ବୁଡ଼ ପାଣି ପିଏ । କଥା କହି ପାଣିରେ ସର ପକାଏ । ତା ଘରକୁ ନ ଯିବା ଭଲ ରେ ପୁଅ, ବେଆବୁ ଘରେ ମହତ ସରିବ ।

ତାଙ୍କର ଚିଠିଟି ବି ଭଗମ ପଢ଼ିଲା ନାହିଁ !

ତମେ କାନ୍ଦୁଛ, ଚନ୍ଦନା ?

ମୋ ପୁଅ ଉପରେ ତମେ ଅସନ୍ତୁଷ୍ଟ ହୁଅ ନାହିଁ । ସେ ବିଦେଶରେ ବୁଲୁଛି । ସେଇ ତ ଆମର ଆଖିର ପିତୁଳା । ତାର ଅମଙ୍ଗଳ ହେବ ।

ଅସନ୍ତୁଷ୍ଟ ହେବି କାହିଁକି ? ମୁଁ ନିଜେ ଦୁଃଖ କରୁଛି ।

ଚନ୍ଦନା କଥା ନ ବଢ଼ାଇ ଆଖିରୁ ଲୁହ ପୋଛିଲେ ।

ଯେଉଁ ଚିଠିଗୁଡ଼ିକ ସେ ଇନ୍ଦିରା, ଅନୁପା ଓ ଭଗମ ପାଖକୁ କଟକ ମୁକାମକୁ ପଠାଇଥିଲେ, ସେ ସମ୍ବନ୍ଧରେ ସ୍ୱାମୀଙ୍କ ଆଗରେ ଚନ୍ଦନା କିଛି ପ୍ରକାଶ କରି ନ ଥିଲେ । ମନରେ ଡର, ପୁଣି ସେ କ'ଣ ଆଣ୍ଡୁଆ ବୁଝିବେ । ଘରେ ଅଶାନ୍ତି ସୃଷ୍ଟି ହେବ ।

ଜୟପୁରରୁ କେତେ ଖଣ୍ଡ ଚିଠି ଆସିଲାଣି । କେହିକେହି ଲେଖିଛନ୍ତି, ଆସ, ଜଲଦି ଆସ । ନୂଆ ହାକିମଗୁଡ଼ା ଆମ ଉପରେ ଅତ୍ୟାଚାର କରିବାକୁ ଲାଗିଲେଣି । ବାର ହଟହଟା ହେଉଛୁଁ । ଆମର ବୁଦ୍ଧି ହଜିଯାଉଛି । କେମିତି ଲଢ଼ିବୁଁ ? ତମେ ସିନା ଜିତିଲ ଥରେ ! ପିଲ୍ଲା ତାଙ୍କଠୁ ସରକାର ମହତ୍ତାଭତ୍ତା ବଢ଼ାଇଛନ୍ତି । ତମେ ବି ଅନେକ ଟଙ୍କା ପାଇବ । ନ କାନ୍ଦିଲା ପୁଅ ଉପାସ ରହେଟି !

ଚନ୍ଦନା ଜାଣନ୍ତି, ଶାରକେଶଶ୍ୱ ଜୟପୁର ଯିବାକୁ ଗୋଡ଼ ଟେକ ଉଠିଛନ୍ତି । ବୁଝାସୁଝା କରି ତାଙ୍କୁ ସେ ଅଟକାଇ ରଖିଛନ୍ତି ।

ପୁଅ ଆମର ପାରିଗଲାଣି, ଦୁର୍ବଳ ଦେହ ଧରି ପୁଅକୁ ନ ପଚାରି ତମେ କେବେ ବିଦେଶ ଯାଅନା । ଟଙ୍କା ପାଇବାର ଥିଲେ, ହାକିମଙ୍କୁ ଲେଖ, ସେ ପଠାଇଦେବେ ।

ଶାରକେଶଶ୍ୱ ଆଉ ଖୋଜୁଛନ୍ତି । ତାଙ୍କୁ ଚିଡ଼ାଇଲେ ସେ ବିଗିଡ଼ିବେ । ତାଙ୍କ ମୁଣ୍ଡରୁ ପୁଣି କେଶଶ୍ୱ-ପୋକ ଉଠିବ, ଯିଏ କୁଆଡ଼େ ଲିଙ୍ଗରାଜଙ୍କ ମନ୍ଦିର ତୋଳାଇଥିଲେ । ସେ ଜୟପୁର ବାହାରିବେ ।

ଆଉଟିଏ ମିଳିଗଲା ।

ବିଷମ ମନିଅର୍ଡ଼ର କରି ତାଙ୍କ ନାମରେ ମୋଟେ ପଚିଶଟି ଟଙ୍କା ପଠାଇଛି । କୁପନରେ ଲେଖିଛି—କଉଜରେ ବୁଡ଼ିରହିଛି । ଅଧିକ ଟଙ୍କା ପଠାଇବା ଏବେ ସମ୍ଭବ ହେଲା ନାହିଁ । ଆଶା କରେ ଚଳିଯିବ । ସୁବିଧା ହେଲେ ପରେ ଆଉକିଛି ପଠାଇବି । ଆପଣ ଓ ବୋଉ ମୋର ଶତକୋଟି ପ୍ରଣାମ ନେବେ ।

ନିଅ, ଚନ୍ଦନା ! ପ୍ରଣାମ ପଣପଣ । ସେଥିରେ ଆମର ପେଟ ପୂରିଯିବ ।

ଚଳିଯିବ ତ ! ଆଉ ଥର ଆସି ଛ'ମାସ ଚଳିବାପାଇଁ ତେଜସ୍ୱତି, ତେଲ, ଲୁଣ କିଣିଦେଇଛି । ଆଗରୁ ସରୁଧାନ କିଣି ଦୁଇଟା ଓଳିଆ ବନ୍ଧେଇ-ଦେଇଛି । ତୁମେ ବୃଦ୍ଧଜନ । ଆମର ତ ଦୁଇଟା ପେଟ । ହାତରେ କିଛି ଟଙ୍କା ଅଛି । ନ ଚଳିବ କାହିଁକି ?

ହୁଁ । ଏତେଗୁଡ଼ାଏ ଟଙ୍କା ଦରମା, ତା'ର ହିସାବ କାହିଁ ? ସେ ଟଙ୍କା ଅନବ୍ୟୟ କରୁଛି ।

ରଖୁଥିବ ମ । ଭଲ । ଆମର ନଅଟା ନା ଛଅଟା !

ଏହା ସେ ଜାଣେ ତ ? ବାପ ଉପରେ ଅବିଶ୍ୱାସ କରୁଛି ଯେ ସେ ଆଉ କେଉଁ ପୁଅକୁ ଦେଇଦେବ ? ମାଆକୁ ଅବିଶ୍ୱାସ ଯେ ସେ

ନେଇ କେଉଁ ଝିଅଘରେ ଥୋଇବ ? ସେକଥା ନୁହେଁ । ବେଷ୍ଟସାବ୍ । ବିନବ୍ୟସ୍ତ ।

ନାଇଁ ଗୋ, ତା ନାଇଁ ।

ତେବେ, ସେ କ'ଣ ବୁଝୁଁଛି ଯେ ବାପକୁ ହାତଟେକାରେ ରଖିବ ? ଢୋକେ ପିଇ ଦଣ୍ଡେ ଖାଇବାର ସୁଯୋଗ ଦେବ ? ଶୁଣ, ଏବଯାଏ ମୋ ହାତରୁ କଲମ ଖସିପଡ଼ିନାହିଁ । ମୁଁ ଅଚଳ ପଙ୍ଗୁ ହୋଇନାହିଁ । ହେଲା, ଯଦି ସତକୁ ସତ କଲମ କରଜରେ ବୁଡ଼ିରହିଛି, ସେ କରଜ ପୁଣି ଶୁଝିବ କିପରି ?

ବୀରକେଶରୀ ହସିଲେ । ମନକଥା ଚନ୍ଦନାଙ୍କୁ ଜଣାଇଲେ ନାହିଁ । ପ୍ରସ୍ତୁତ ହେବାକୁ ଲାଗିଲେ । କହିଲେ, ସେ ଆଗ ଜୟପୁରରେ ଅତିରିକ୍ତ ମହାରାଜାଙ୍କ ହାତପଇଠ କରିବେ । ସେଇଠୁ ବନ୍ଧୁମାନଙ୍କୁ ବିଭିନ୍ନ ବିଷୟରେ ପରାମର୍ଶ ଦେବେ । ଦିନ ପନ୍ଦରଟା ଭିତରେ ସେ ନିଶ୍ଚୟ ଫେରିଆସିବେ ।

ଏହିପରି ସାନ୍ତ୍ୱନା ଦେଇ ସେ ସୋମବାର ଦିନ ସକାଳେ, ଅମୃତ ବେଳାରେ, ନାସିକାର ଦକ୍ଷିଣ ପୁଡ଼ାରେ ନିଶ୍ୱାସ ଚାଲୁଥିବା ସମୟରେ ଘରୁ ଅନୁକୂଳ କରି ଗଲେ ।

ପ୍ରବାସିଆ ଘରେ ଆଖିରୁ ଲୁହ ଢାଳିଲେ ଅଶୁଭ । ତେଣୁ, ଚନ୍ଦନା ମୁହଁକୁ ହସହସ କରୁଥିଲେ । ତାଙ୍କର ଅନ୍ତରାତ୍ମା ବିକଳ ସ୍ୱରରେ କାରୁଣ୍ୟ କରୁଥିଲା । ଛଟପଟ ମନ ନିଜ ଭିତରେ ନିଜକୁ ଛୁଟିଥିବା ପ୍ରଶ୍ନ ପଚାରୁଥିଲା— ଏହି କ'ଣ ଏ ଜନ୍ମର ଶେଷ ଦେଖା ? ଦୁର୍ବଳ ମୁଣ୍ଡଟି ଥରିଉଠୁଥିଲା ।

ପ୍ରଥମ ଚିଠିଟି ଚନ୍ଦନାଙ୍କ ପାଖରୁ—

× × ଦଶ ପନ୍ଦର ଦିନ ମଧ୍ୟରେ ଫେରିଆସିବେ ବୋଲି କହି ଯାଇଛନ୍ତି । ଟଙ୍କା କୋଡ଼ିଏଟି ନେଇଯାଇଛନ୍ତି । ମୋ ଚଳିବାପାଇଁ ମୋ ପାଖରେ ଯଥେଷ୍ଟ ଅଛି । ତୁ ବ୍ୟସ୍ତ ହେବୁ ନାହିଁ । ଆଗ ତୋ କରଜ ଶୁଝି-

ପକା । କରଜ କଥା ଶୁଣି ତୋ ବାପା ବ୍ୟସ୍ତ ହୋଇ ଉଙ୍ଗା। ସ୍ୱାସ୍ଥ୍ୟ, ଦୁର୍ବଳ ଦେହ ଧରି, ମୋ ବୋଲ ନ ମାନି ଚାଲିଗଲେ । ବିରକ୍ତ ହେବୁ ନାହିଁ । × × ମୋ ଆଖି ଉହକ ବିକଳ ହେଉଛି ରେ, ବିକ ! ଶନିବାର ଦିନ ନିଶ୍ଚେ ଆସିବୁ, ନଚେତ ମୋ ରାଣ ।

ଦ୍ୱି ଖଣ୍ଡ ପତ୍ରଟି ଭୁବନେଶ୍ୱରରୁ ପ୍ରଦ୍ୟୁମ୍ନ ପାଖରୁ ଆସିଛି । ପ୍ରଦ୍ୟୁମ୍ନର ବାହାଘର ଦେଢ଼ ବର୍ଷ ତଳେ ହୋଇଥିଲା । ମୋଫସଲର କେଉଁ ସମ୍ଭ୍ରାନ୍ତ ବଂଶର ଝିଅ । ଭଲ ଦେବାନେବା କରିଥିଲେ । ଛଅ ମାସ ତଳେ ଭଉଣୀର ବାହାଘର ହୋଇଗଲା । ଜ୍ୱାଇଁଟି ସମବାୟ ବିଭାଗରେ ଇନ୍‌ସପେକ୍‌ଟର କାମ କରେ । ଆନନ୍ଦପୁରରେ ରହେ । ସେ ତା'ର ନବବିବାହିତା ପତ୍ନୀକୁ ସ୍ୱକର ଗାଁକୁ ନେଇଯାଇଛି ।

ଗତ ଥର ଭୁବନେଶ୍ୱର ଯାଇ ବିକ୍ରମ ତାର ପୁରୁଣା ବନ୍ଧୁ ପ୍ରଦ୍ୟୁମ୍ନର ବସାରେ ରହିଥିଲା । ପ୍ରଦ୍ୟୁମ୍ନର ପଦୋନ୍ନତି ହୋଇଛି । ସେ ଭଲରେ ଅଛି । ନବପରିଣୀତା ପତ୍ନୀଙ୍କର ଫଟୋ ଖଣ୍ଡିଏ ଟେବୁଲ ଉପରେ ଯତ୍ନରେ ରଖିଛି । ସୁନ୍ଦର ସ୍ୱାସ୍ଥ୍ୟବତୀ ଝିଅଟିଏ । ତାଙ୍କର ଗୁଣଗାନ କରିବାରେ ପ୍ରଦ୍ୟୁମ୍ନ ଅନେକ ସମୟ ବ୍ୟୟ କରିଥିଲା ।

ସେ ଲେଖି ଜଣାଇଥିଲା—

× × ପନ୍ଦର ଦିନ ହେଲା ସେମାନେ ଆସିଲେଣି । ଗ୍ରାମକୁ ଫେରିଯିବାକୁ ବୋଉ ଉଚ୍ଛନ୍ନ ହେଉଛି । ସାନ ଭାଇ ଦିହେଁ ସେଠାରେ ହଇରାଣ ହେଉଥିବେ । ତମ ଭାଉଜ ଅଦିତିଙ୍କୁ ସେ ଏଠାରେ ଛାଡ଼ିଯାଉଛନ୍ତି । ସାନ ଭଉଣୀ ସିଁତା ପାଖରେ ରହିବ । ନିଶ୍ଚେ ଆସିବ । ବୋଉ ତମକୁ ଦେଖିବାକୁ ଚାହୁଁଛି । ତମ ଭାଉଜଙ୍କୁ ଦେଖିଯିବ । × × କେବଳାନନ୍ଦ ସବୁ କଥା କହୁଥିଲା । ଦୁଃଖିତ ହେଲି । ଭୁଲିଯାଅ । ସେଗୁଡ଼ାକ ସେମିତି । ଡାଆଣୀ ପଲ । ମନପ୍ରାଣ ଶୋଷି ଉଡ଼ିଯାଇ ଆଉ କେଉଁଠି ବସିବେ । ଟହ ଟହ ହସିବେ । × × ଆସିବ । କଥାଭାଷା ହେବା ।

ବସନ୍ତ ଦୀର୍ଘଶ୍ୱାସ ଛାଡ଼ିଲା । ଝରକାବାଟେ ପଦାକୁ ଚାହିଁଲା । ଦୁଇ ଘଡ଼ି ଅନ୍ଧାର ପରେ ଆକାଶ ଉଜ୍ଜ୍ୱଳ ଦିଶିଆସିଲାଣି । ଷ୍ଟେସନକଡ଼ର ବିଜୁଳି ଆଲୁଅ ଦୂରରୁ ନିଷ୍ପ୍ରଭ ଦିଶୁଛି । ଘର ନିସ୍ତବ୍ଧ ଲାଗୁଛି । ମନରେ ବିଷଣ୍ଣତା ପଶୁଛି । ଦୁଇ ଦିନର ଗସ୍ତ ଶେଷ କରି ଘଣ୍ଟାଏ ଆଗରୁ ସେ ମୋଫସଲ ଅଞ୍ଚଳରୁ ଫେରିଛି । ଦାଣ୍ଡଘରେ ବିଛଣା ପଡ଼ିରହିଛି । ପିଅନ୍ ସୁବଳ ରୋଷେଇଘରେ ପଶି କପେ ଚାହା କରିବାକୁ ଚେଷ୍ଟା କରୁଛି । କ୍ଷୀର ଯୋଗାଡ଼ କରିବାକୁ ଯାଇଥିଲା । ଏବେ ଫେରିଆସିଛି । କେତେ ଡେରି ସେ କରିବ କେଜାଣି ! ବିରକ୍ତ ଲାଗୁଛି ।

ବସନ୍ତ ଲଫାପା ଖୋଲିଲା । ପତ୍ରଖଣ୍ଡି କାଢ଼ିବା ସଙ୍ଗେ ସେ ବୁଝି-ପାରିଲା କିଏ ଲେଖିଛି । ମନ କୁଣ୍ଠିତହେଲା । ଅନୁପାର ଚିଠି । ଜଣଙ୍କରେ ସାକ୍ଷାତ ହେଲା ପରେ ଏଇଟି ତା'ର ପ୍ରଥମ ଭାଷା ।— × × ବେଳ କାହିଁ ? ଲେଖିବାକୁ ସୁଯୋଗ ମିଳୁଛି କେଉଁଠି ? ସବୁବେଳେ ଗହଳ ଚହଳ । ମୋର ବନ୍ଧୁମାନେ ଆସୁଛନ୍ତି ଯାଉଛନ୍ତି । ସବୁଦିନେ କାହାର ନା କାହାର ଘରେ ନିମନ୍ତ୍ରଣ । ସେମାନଙ୍କ ସଙ୍ଗେ ସିନେମା ଥିଏଟର୍ ଦେଖା ।

—ବାହାଘରର ଆୟୋଜନ ଜୋରସୋରରେ ଚାଲିଛି । ମୁଁ ଅଳ୍ପ ସୁଧାର ପିଲା ହେଲିଣି । ନିରୁପା ଛୁଇ ପରି ମୋ ପାଖେ ପାଖେ ଅଛି । ମୁଁ କାନ୍ଦୁନାହିଁ, ସେ କାନ୍ଦୁଛି । ଦେଖାହେଲେ କହିବ । ନିଶ୍ଚୟ ତମ ସଙ୍ଗେ ଦେଖା ହେବ । ସୋମବାର, ଚଉଦ ତାରିଖ, ପ୍ରଥମରଜ, ହିନ୍ଦ୍ ସିନେମା, ସେକେଣ୍ଡ ସୋ ଆରମ୍ଭ ଆଗରୁ । ଭାରି ଜରୁରି । କେବେ ଭୁଲିବ ନାହିଁ ।

—ସଞ୍ଜୟବାବୁ ସୁନ୍ଦରଗଡ଼ରୁ ଚିଠି ଲେଖିଥିଲେ । ଭାରି ସୁନ୍ଦର ଚିଠି । ମୋ ପାଖକୁ ନୁହେଁ ମ, ନିରୁପା ପାଖକୁ । ତାଙ୍କର କି ଦୋଷ ? ବୋଉ ତାଙ୍କୁ ଅନୁରୋଧ କରିଥିଲା । ତାଙ୍କୁ ସେ ହାତଛଡ଼ା କରିବାକୁ ଚାହେଁ ନାହିଁ । କହିପାରିବ, ସବୁଠାରୁ ଅଧିକ ନିର୍ଲଜ୍ଜ କିଏ ? ବୋଉ, ନିରୁ, ମୁଁ, ତମେ, ତମ ବୋଉ, ସଞ୍ଜୟବାବୁଙ୍କ ବୋଉ···?

—ମନ ଖୋଲି କହିଲେ ହର୍ଷଗୋ । ଦୁନିଆରେ ଚଳିକ । ଅସା-ମାଜିକ ଅମୃତ ହେଲ । କାର୍ଯ୍ୟ ସଫଳ ହେବ ନାହିଁ । ଦୁନିଆ ବାହାରକୁ ପଳାଇହେବ । ସେଥିପାଇଁ ମୁଁ ସବୁବେଳେ ପ୍ରସ୍ତୁତ ରହିଛି । ପଛରେ ଯିଏ ଯାହା କହୁଥାଉ । ସେଇଟା ଶେଷ କଥା । ଡରିବ ନାହିଁ । ଠିକ୍ ସମୟରେ ଆସିବ ।

କେତେବେଳୁ ସୁବଳ ଗରମ ଚା' ଟେବୁଲ ଉପରେ ରଖିଦେଇ ଯାଇଥିଲ । ବଡ଼ମ ଭାବୁଥିଲ, କ'ଣ ଅନୁପାର ମନରେ ଅଛି ? କ'ଣ କରିବାକୁ ସେ କହିବ ? ଦୁନିଆ ବାହାରକୁ ଯିବାକୁ ସବୁବେଳେ ସେ ପ୍ରସ୍ତୁତ ରହିଛି କାହିଁକି ?

ସୁବଳ ମନେ ପକାଇଦେଲ, ଚା' ଥଣ୍ଡା ହେଉଛି । ଗସ୍ତରୁ ଫେରି ସେ ପୋଷାକ ପାଲଟି ନାହିଁ । ପଇସା ଦେଲେ ସୁବଳ ସଉଦା ଆଣିବାକୁ ବଜାରକୁ ଯିବ ।

ଚା' କପ୍ ରୁ ସୁଡ଼ୁକାଏ ଟାଣି ଅନ୍ୟମନସ୍କ ବଡ଼ମ ପଚାରିଲ, ଆଜ କ'ବାର ସୁବଳ ?

ଶୁକ୍ରବାର, ଆଜ୍ଞା ! ଏଗାର ତାରିଖ ।

ଠିକ୍ ଅଛି ।

ଭାଗ୍ୟକୁ କଳିଙ୍ଗ-ହୋଟେଲର ଦ୍ୱିତୀୟ ଫ୍ଲାଟ୍‌ର ସେହି ପାଞ୍ଚ ନମ୍ବର କୋଠରିଟି ସେଦିନ ଖାଲି ପଡ଼ିଥିଲ । ବନ୍ଧୁ ନିର୍ଗୁଣାବାବୁ ଠିକଏ ଖେଳିବାକୁ ଆରମ୍ଭ କଲେ । କହିଲେ, ଅନ୍ୟ ଜଣେ ବାବୁ ଭଦ୍ରକରୁ ଫୋନ କରିଥିଲେ, ମୁଁ ଜବାବ ଦେଇଛି । ତାଙ୍କର ଗୃହଦାନ ରହିବାର କଥା । ଆପଣଙ୍କୁ ଗୃହ-ଜଣିଆ କୋଠରିରେ ଗୋଟିଏ ସିଟ୍ ଦେଲେ ଚଳିବ ନାହିଁ ? ଜଣକିଆ ଅବା ଦୁ'ଜଣିଆ କୋଠରି ଖାଲି ନାହିଁ ।

ବିକ୍ରମ କହିଲା, ସେ ଭଦ୍ରଲୋକଙ୍କୁ ଦୁଇଜଣିଆ କୋଠରିରେ ସ୍ଥାନ ଦେଇନ୍ତୁ। ନୋହିଲେ ମତେ ଅନ୍ୟତ୍ର ଯିବାକୁ ପଡ଼ିବ। ମୁଁ ବରଂ ଦୁଇଦିନ ପାଇଁ ରିଜର୍ଭ କରିବାକୁ ପ୍ରସ୍ତୁତ ଅଛି।

ସ୍ୱଳ୍ପକାୟ ପ୍ରୌଢ଼ ବିଗୁଣାବାବୁ ବ୍ୟସ୍ତ ହୋଇ କହିଲେ, ଆପଣ ମୋର ପରିଚିତ ବନ୍ଧୁ। ଆପଣ ହାକିମ ଲୋକ। ଆପଣଙ୍କୁ ମୁଁ ଛାଡ଼ିପାରିବି ? ବରଂ ଜବାବ ସ୍ଲିପ୍ ହେଉ। ରିଜର୍ଭେସନ ଫିସଟା ଅଗ୍ରିମ ଦେଲେ ରସିଦ ତାଙ୍କୁ ଦେଖାଇ କ୍ଷମା ମାଗିନେବି। କିଛି ମନେକରିବେ ନାହିଁ।

ବିକ୍ରମ ଟଙ୍କା ଦେଇ ରସିଦ ହାସଲ କଲା। ଭାବୁଥିଲା, କୋଡ଼ିଏ ଟଙ୍କା ଗଲେ ଯାଉ, ସନ୍ଧ୍ୟା ହେଲାଣି, ଅନ୍ୟତ୍ର ଚେଷ୍ଟା କଲେ ସମୟ ନଷ୍ଟ ହେବ। ନିଜ କୋଠରିକୁ ଆସି ସେ ଯଥାଶୀଘ୍ର ପ୍ରସ୍ତୁତ ହେଲା। କୋଠରିରେ ତାଲା ପକାଇ ସେ ତଳକୁ ଡାଇନିଂ ହଲକୁ ଆସିଲା। ଜଳଖିଆ ଓ ଚା' ପାନ ପରେ କ'ଣ କରିବ, ତାହା ହିଁ ସେ ବିଚାରୁଥିଲା।

ସୋମବାର ଯାଏ ସେ ଅପେକ୍ଷା କରି ନ ଥିଲା। ଭୁବନେଶ୍ୱର ଆସିବାକୁ ଅନୁମତି ନେଇ ସେ ସକାଳ ସକାଳ ଢେଙ୍କାନାଳରୁ ବସ୍‌ରେ ବାହାରିଥିଲା। ବିଚାରିଥିଲା, ଭୀରୁଙ୍କ ପରି ସେ ଅପସରି ରହିବ ନାହିଁ। ହୋଟେଲରେ ଓହ୍ଲାଇ ସିଧାସଳଖ ସେ ତା'ର ମାମୁଁ ଘରେ ଉପସ୍ଥିତ ହେବ। ତା'ର ଗତି ଅବାରିତ। କିଏ ତାକୁ ବାରଣ କରିବ ?

ମାଇଁ ଅସନ୍ତୁଷ୍ଟ ହୋଇପାରନ୍ତି; କିନ୍ତୁ ମୁହଁରେ ସେ କିଛି କହିପାରିବେ ନାହିଁ। ମନ ଭିତରେ ରକ୍ତଗରଳ ଘୋଟାଇଲେ ଘୋଟାଉଥାଆନ୍ତୁ। ସେ ଭ୍ରୂକ୍ଷେପ କରିବ ନାହିଁ। ଭାବିଥିଲା, ତା'ର ମାମୁଁ ଥିଲେ ତ ଆହୁରି ଭଲ। ମାଇଁ ପାଟି ଖୋଲିପାରିବେ ନାହିଁ।

ବିସ୍ତୀର୍ଣ୍ଣ ବାରଣ୍ଡାକୁ ଆସି ସେ ହୋଟେଲ ସମ୍ମୁଖର ସୁରକ୍ଷିତ ଫୁଲ-ବଗିଚାକୁ ଚାହିଁଲା। ଫ୍ଲୋରେସେଣ୍ଟ୍ ଆଲୁଅର ସ୍ତମ୍ଭମାନଙ୍କରେ ସୁନ୍ଦର ଦିଶୁଛି। ଜାତିଜାତିକା ଗୋଲାପ, ମନ୍ଦାର, ଟଗର। ଧାଡ଼ି ଧାଡ଼ି କ୍ରୋଟନ ଗଛ, ପ୍ରକାର ପ୍ରକାରର। ବିଭିନ୍ନ କିସମର ପାମ୍। ରାସ୍ତାକଡ଼ର ପାଚିରିକୁ ଲାଗି

ଗୁଡ଼ଗୁଡ଼ିକା ସୋହଡ଼ ଗୁଆଗଛ ଗୁଡ଼ିଏ । ସତେ କି ବିକ୍ରମ ଆଜି ସନ୍ଧ୍ୟାରେ ନୂଆ ଆବିଷ୍କାର କରୁଛି ।

ବାରଣ୍ଡା ଉପରୁ ତଳ ପାହାଚରେ ପାଦ ଥୋଇଣୁ ବିକ୍ରମର ମନକୁ ପ୍ରଶ୍ନଟିଏ ଆସିଲା । ମାମୁଁଙ୍କ ଘରକୁ ଯିବାକୁ ତା'ର ଡରଭୟ ନାହିଁ ସତ; କିନ୍ତୁ କି ଉଦ୍ଦେଶ୍ୟରେ ଅନୁପା ତାକୁ ଭେଟିବାପାଇଁ ନିର୍ଦ୍ଦିଷ୍ଟ ସ୍ଥାନ, ଦିନ, ସମୟ ଜଣାଇଥିଲା ? ତା' ଆଗରୁ ଦେଖା କରିବାକୁ ଗଲେ, ପୁଣି ତାଙ୍କର ଘରକୁ, ତା'ର ଉଦ୍ଦେଶ୍ୟ ବିଫଳ ହେବ ନାହିଁ ତ ? କିଏ ଜାଣେ ?

ବିକ୍ରମ ପାଦ ଟେକି ପହଞ୍ଚିଆସିଲା । ମାନେଜରଙ୍କ କୋଠରି ଭିତରେ ହୋଟେଲର ଜଣେ ବେହେରା ବ୍ୟତୀତ ଅନ୍ୟ କେହି ନ ଥିଲେ । ବିକ୍ରମ ତାଙ୍କର ପାଖରେ ଉପସ୍ଥିତ ହେଲା । ନିର୍ଗୁଣବାବୁ ତାକୁ ବସିବାକୁ ନିର୍ଦ୍ଦେଶ ଦେଲେ । ହସ ହସ ହୋଇ ପଚାରିଲେ, କିଛି ସ୍ୱତନ୍ତ୍ର ବିବାଦ ଅଛି କି, ଆଜ୍ଞା ? ଆମର ଗରାକମାନେ ବିଭିନ୍ନ ସ୍ଥାନରୁ ଆସନ୍ତି । ବିଭିନ୍ନ ବ୍ୟବସାୟର, ଭିନ୍ନ ଭିନ୍ନ ଢଙ୍ଗର । ସେମାନେ ସବୁ ଖୋଜନ୍ତି ।

ତାଙ୍କର ଭ୍ରୂଲତାଟେକା ହସ ତାଙ୍କର ବାକ୍ୟଗୁଡ଼ିକୁ ବେଶ୍ ଅର୍ଥପୂର୍ଣ୍ଣ କରିଥିଲା । ବିକ୍ରମର ମୁହଁରେ ବିସ୍ମୟର ଆଭାସ ପାଇ ସେ ଅନୁମାନ କଲେ ପରା, ବିକ୍ରମ ଆହୁରି ଅଧିକ ଜାଣିବାକୁ ଆଗ୍ରହୀ । ସେ ତାଙ୍କ ରହସ୍ୟର ଚାବିକାଠି ଅଳପ ଖୋଲିଲେ, ସ୍ୱତନ୍ତ୍ର ବ୍ୟବସ୍ଥା, ପୂରାପୂରି ଗୋପନୀୟ । ଆମର ସମ୍ମାନିତ ଅତିମତ ଅତିଥିମାନଙ୍କର ସେବା, ସେମାନଙ୍କର ମନୋରଞ୍ଜନ ଆମର କର୍ତ୍ତବ୍ୟ ।

ବିକ୍ରମର ଛାତି ଥରିଉଠିଲା । ସେ ବୁଝିଲା, ବନ୍ଧୁ ନିର୍ଗୁଣ ତାକୁ ନରକର ପଥ ଦେଖାଉଛନ୍ତି । ସେ କହିଲା, ଆପଣଙ୍କୁ ଅଶେଷ ଧନ୍ୟବାଦ, ନିର୍ଗୁଣବାବୁ ! ଥରେ ଆପଣ ବେଶ୍ ଉତ୍ତେଜିତ ହୋଇ ମାରୁଆଡ଼ି ଜାତିର ଧର୍ମ ଓ କର୍ମ ସମ୍ବନ୍ଧରେ ବିବୃତି ଦେଉଥିଲେ—ସେମାନଙ୍କର ଗୋଶାଳା, ଧର୍ମଶାଳା, ମନ୍ଦିର, ବିଦ୍ୟାଳୟ, ସମାଜସେବା, ଦାନ ଓ ଦରିଦ୍ରନାରାୟଣ ଭୋଜନ ପଛରେ ସମାଜକୁ ଶୋଷଣ କରିବାର ବିପୁଳ ସମବେତ ପରିକଳ୍ପନା

ଓ ଯୋଜନା ରହିଛି । ଆପଣଙ୍କର ଏହି ଚମତ୍କାର ଅତିଥିସେବାର ଆୟୋଜନ ପଛରେ କ'ଣ ରହିଛି ?

ବିଶ୍ୱାସ କରନ୍ତୁ, ଆଜ୍ଞା ! କେବଳ ମନୋରଞ୍ଜନ । ଧନାଗମ ଆମର ଉଦ୍ଦେଶ୍ୟ ନୁହେଁ । ଯେଉଁମାନଙ୍କର ଧନ ଲୋଡ଼ା ସେମାନେ ଆମର ପ୍ରାର୍ଥୀ । ଯେଉଁମାନେ ତାଙ୍କର ଉଦ୍‌ବୃତ୍ତ ଧନରୁ କିଞ୍ଚିତ୍ ଦାନ କରି ମନୋରଞ୍ଜନ ପାଇଁ ଆଗ୍ରହୀ, ସେମାନେ ଗ୍ରାହକ । ଆମର ଏହି ପ୍ରସିଦ୍ଧ ଅନୁଷ୍ଠାନଟି ନିର୍ବିକଳ୍ପ, ଆଜ୍ଞା ! ଆମର ସମ୍ମାନିତ ଅତିଥିମାନଙ୍କର ସେବକ, ଉଭୟ ପକ୍ଷର ସେବକ । ଛାଡ଼ନ୍ତୁ । ଆଉ କି ସେବା ଆପଣଙ୍କର କରିପାରିବି ?

ହସହସ ନିର୍ଗୁଣାବାବୁ ହାତଯୋଡ଼ି ପଚାରିଲେ ।

ମୁଁ ଫୋନ୍ କରିବାକୁ ଚାହୁଁଛି ।

ଟ୍ରଙ୍କ୍ ନୁହେଁ ତ ? ଅଧିକା ଖର୍ଚ୍ଚ ପଡ଼ିବ ।

ଲୋକାଲ୍ କଲ୍ ।

ଦଶଟି କଲ୍ ଦିନକୁ ଫ୍ରି । ତହିଁରୁ ଅଧିକ ହେଲେ କଲ୍ ପ୍ରତି କୋଡ଼ିଏ ପଇସା । ଆମ ଅତିଥିମାନଙ୍କର ସାଧୁତା ଉପରେ ନିର୍ଭର କରେ । ମୋ ଫୋନ୍‌ର ଏକ୍ସଟେନ୍‌ସନ୍ ଆର କୋଠରିରେ । ଆସନ୍ତୁ ।

ନିର୍ଗୁଣାବାବୁ ବିକ୍ରମକୁ ସଂଲଗ୍ନ କୋଠରି ଭିତରକୁ ନେଇଗଲେ । କହିଲେ, ଯଦି କିଛି ଗୁପ୍ତ ବିଷୟ ଥାଏ, କବାଟ ବନ୍ଦକରି କଥାଭାଷା ହୁଅନ୍ତୁ ।

ନିର୍ଗୁଣାବାବୁ ନିଜେ ମଝିକବାଟ ବନ୍ଦ କରି ତାଙ୍କର ଅଫିସ କୋଠରିକୁ ଫେରିଗଲେ । ବିକ୍ରମ ଫୋନ୍ ଉଠାଇ ନମ୍ବର କହିଲା । କିଛି ସମୟ ପରେ ସୁରୂପା ଫୋନ୍ ଉଠାଇଲା ।

ଆନନ୍ଦବାବୁ ଅଛନ୍ତି ?

ନାହିଁ ତ । ଘଣ୍ଟାଏ ହେବ ବାପା ବୋଉ ନିରୁଅପାକୁ ସଙ୍ଗରେ ନେଇ ଇପାରି ଗୋବିନ୍ଦଙ୍କ ଦୋକାନକୁ ଗହଣା ବଦଳ ଦେବାକୁ ଯାଇଛନ୍ତି । ଫେରୁ ଫେରୁ ଡେରି ହେବ ।

ତମ ଅପା ?

ତା’ ସାଙ୍ଗମାନଙ୍କ ସଙ୍ଗେ ମାଟିନି ସୋ ସିନେମା ଦେଖିବାକୁ ଯାଇଥିଲା । ସମସ୍ତେ ଆସି ଘରକୁ ଫେରି ଗପ କରୁଥିଲେ । ତା’ ସାଙ୍ଗମାନଙ୍କୁ ବଳେଇଦେବାକୁ ଏବେ ବାହାରକୁ ଗଲା । ଡାକଦେବି ?

ହଁ । ତମେ ତା ସାନଭଉଣୀ ନା ? କ’ଣ ନାମଟି ?

ମୋ ନାଁ ସୁରୂପା । ଅପାକୁ ଡାକଦେଉଛି । କିଏ ଡାକୁଛି କହିବି ?

କହିବ, ତମ ସାଙ୍ଗ, ବିସ୍ମିତା ଦିଦି ଡାକୁଛନ୍ତି ।

କିଏ, ବିସ୍ମିତା ଦିଦି ?

ହଁ । ତମକୁ ଚିହ୍ନି ନାହିଁ । ତମ ଅପା ଅନୁପା ମୋର ପିଲାଦିନର ସାଙ୍ଗ । ସେ ଚିହ୍ନିବେ ଯେ । ଡାକିଦିଅ ମ !

ସୁରୂପା କାନ ପାଖରୁ ଫୋନ୍ ଉଠାଇ ଦୂରେଇ ଧରିଲା । କାବା କାବା ହୋଇ ସେ ଫୋନ୍‌ଟିକୁ ମୁହୂର୍ତ୍ତେ ଚାହିଁଲା । ଭାବୁଥିଲା, ବିସ୍ମିତା ଦିଦିଙ୍କର କଣ୍ଠସ୍ୱର କେଡ଼େ କର୍କଶ ! ଏକାଥରେ ମରଦାନିଆ । ଫୋନ୍‌ଟିକୁ ଟେବୁଲ ଉପରେ ରଖି ସୁରୂପା ଦୋଦୋପାଞ୍ଚ ହୋଇ ପଦାକୁ ଗଲା ।

ଆରପାଖରେ ମନକୁ ମନ ବିକ୍ରମ ହସୁଥିଲା । ସୁଯୋଗ ପାଇଁ ଭଗବାନଙ୍କୁ ସେ ଧନ୍ୟବାଦ ଜଣାଉଥିଲା । ଅନୁପାର ବିଳମ୍ବ ହେଉଛି କାହିଁକି ? ଏକ୍‌ସଚେଞ୍ଜ ଅପରେଟର ସତର୍କ କରିଦେଲା ଯେ ତିନି ମିନିଟ୍ ଶେଷ ହୋଇଛି । ସମୟ ପ୍ରସାରଣ କରିବାକୁ ବିକ୍ରମ ଅନୁରୋଧ କଲା ।

ନିର୍ଗୁଣାବାବୁ ହାତଘଣ୍ଟାକୁ ଚାହିଁ ଭାବିଲେ, ବିକ୍ରମବାବୁ ଏତେ ଡେରି କରୁଛନ୍ତି କାହିଁକି ? ଆଉ ଦୁଇଜଣ ଅତିଥି ଫୋନ୍ କରିବାକୁ ପହଞ୍ଚି-ଗଲେଣି । ଜଣଙ୍କର ପୁଣି କଲିକତା ଟ୍ରଙ୍କ୍-କଲ୍ କରିବାର ଅଛି । ତାଙ୍କର ବେପାର ବଣିଜ କଥା, ଜରୁରୀ କଲ୍ । ବ୍ୟସ୍ତ ହୋଇ ନିର୍ଗୁଣାବାବୁ ମଝି-କବାଟ ପାଖକୁ ଗଲେ । କବାଟ ଦି’ଫାଳ ଆସ୍ତେ ସାମାନ୍ୟ ଖୋଲିଲେ । ନାଲି ପରଦା ଅଳପ ଆଡ଼େଇ ଭିତରକୁ ଚାହିଁଲେ । ବିକ୍ରମବାବୁ କାନ ପାଖରେ ଫୋନ୍ ଧରି ପରଦା ଆଡ଼କୁ କଡ଼କରି ଠିଆହୋଇଛନ୍ତି ।

ମୁଁ ସସ୍ମିତା ନୁହେଁ, ଅନୁ ! ମୁଁ ବିସ୍ମିତା ଦେବୀ ।

ଝଙ୍କର ହସିବାକୁ ଲାଗିଲା । ନିର୍ଗୁଣାବାବୁ ଟିକଏ ଚମକିଉଠିଲେ । ପରବା ଗୁଡ଼ ମୁହଁ ଘୁଞ୍ଚାଇଆଣିଲେ ।

ଭୁଲଗଲି । ହେଲା, ମୁଁ ବସିନ୍ତା ଝଡ଼ । ତୋ'ର ଚିଠି ପାଇ ମୁଁ ବ୍ୟସ୍ତ ହୋଇ ଧାଇଁଆସିଲି । ସେମାନେ ନାହାନ୍ତି ବୋଲି ବଚସ ସୁରୁପା ମତେ କହିଲା । ମିଛ କି ?

ଟିକଏ କାନେଇଁ ଝଙ୍କର କହିଲା, ଦୁଇ ତରଫରୁ ପ୍ରତିବାଦ ହେବ । ମୁଁ ଏହା ଜାଣିଥିଲି । ସେଥିକୁ ମୁଁ ଡରେ ନାହିଁ । ତୁ ହତାଶ ହୋଇଛୁ ଜାଣି···

ଟିକଏ ମୌନ ରହି, ପୁଣି ସେ କହିଲା, ମନ୍ଦିରରେ ? କେଉଁ ମନ୍ଦିରରେ, କେଉଁଠି, କେବେ ?

ପୁଣି ସେ କ'ଣ ଶୁଣିଲା । ତା' ପରେ — ସ୍ୱସ୍ତି ନଅଟା ବାଜିବ । ବ୍ରିଷ୍ଟପ ଫ୍ଲାଟ୍, ପାଞ୍ଚ ନମ୍ବର । ମୋର ବନ୍ଧୁ ନିର୍ଗୁଣାବାବୁ ଅତି ବିଶ୍ୱାସୀ । ତାଙ୍କୁ ଖବର ଦେଲେ ସେ ମତେ ଟ୍ରଙ୍କ୍ ଫୋନ୍‌ରେ ଜଣାଇବେ । ×× ଓହୋ, ତାଙ୍କୁ ତୁ ଜାଣୁ ? କିଏ ନ ଜାଣେ ଯେ !

ଗର୍ବରେ ପ୍ରୌଢ଼ ନିର୍ଗୁଣାବାବୁଙ୍କର ଛାତି କୁଣ୍ଢେ ମୋଟ । ସେ ମନକୁ ମନ ହସି ମୁଣ୍ଡ ହଲାଇଲେ । ନିଜକୁ ନିଜେ କହିଲେ, ପ୍ରଜାପତି ମନ ନିର୍ବାଚିତ କଲେ, ଯେନାସେନ ପଥରେ ଦଉଡ଼ାଇଲେ, ନିର୍ଗୁଣା ଚନ୍ଦ୍ରଙ୍କୁ ବିଶ୍ୱାସ ନ କରିବ କିଏ ? ମୁଣ୍ଡ ଟାଙ୍ଗର ହୋଇପାରେ, କିନ୍ତୁ ପାଟି ଉପରକୁ ଲମ୍ବିଥିବା ଧୋବଲା ଗାଲମୁଚ୍ଛ, ସେମିତି ଧୋବଲା ପ୍ରଜାପତିଆ ନିଶ, ଥୋଡ଼ିରେ ଦୁଇଇଞ୍ଚ ଚଉଡ଼ା ପାଞ୍ଚଇଞ୍ଚ ଲମ୍ବର ଦାଢ଼ି ଦେଖି ଲୋକଙ୍କର ପ୍ରତ୍ୟୟ ଆସିବା ଉଚିତ । ନକଲି ଦାନ୍ତ ହ'ଧାଡ଼ ଭଲ ଫିଟ୍ କରିଛି ।

ଅପେକ୍ଷା କରିଛ ? ଝଙ୍କର ପଚାରିଲା ।

ନିର୍ଗୁଣା ଖୁସି ହୋଇ ମୁଣ୍ଡ ଟୁଙ୍ଗାରିଲେ । ଭାବିଲେ, ଆସିବେ ତା' ହେଲେ, ଅନୁ ଦେବୀ ଅନୁକମ୍ପା କଲେ । ବସିନ୍ତା ଝଡ଼ଙ୍କୁ ଭେଟିବାକୁ ଆସିବେ ! ଆଗରୁ କେତେଥର ଆସିଥିବେ । ଦେଖିଲେ ଚିହ୍ନିବେ । ଡୋକା ଅଫିସର ଓସ୍ତାଦ୍ ଖଲିଫା ଅଛି ।

ହଉ, ରହିଲି ଅନୁ ! ମୁଁ ପ୍ରସ୍ତୁତ ହୋଇଛି । ତୋର ନିର୍ଦ୍ଦେଶକୁ ଅପେକ୍ଷା କରିବି ।

ବିକ୍ରମ ଫୋନ୍‌ଟିକୁ ଯଥାସ୍ଥାନରେ ରଖିଲା ।

ନିର୍ଗୁଣବାବୁ ଯାଉଁଳି କବାଟକୁ ତରତର ହୋଇ ନିଃଶବ୍ଦରେ ଆଉଜାଇ ତାଙ୍କର ଅଫିସ-କୋଠରିରୁ ଧୀରେ ଧୀରେ ପଦାକୁ ଆସିଲେ । ବେହେରାକୁ କହିଲେ, ସତର ନମ୍ବର କୋଠରିରେ ଖବର ଦିଅ । ଫୋନ୍ ଖାଲି ପଡ଼ିଲା । ସେ କଲିକତା ଟ୍ରଙ୍କ୍‌ଫୋନ୍ କରିବେ ତ ଆସି କରିପାରନ୍ତି ।

ବିକ୍ରମକେଶରୀ ପଦାକୁ ବାହାରିଲା । ମନରେ ଆନନ୍ଦ, ପାଦରେ ଫୁର୍ତ୍ତି । ନିର୍ଗୁଣ ଚନ୍ଦ୍ରଙ୍କ ଫୁଲବଗିଚ୍ଚ ଆଡ଼କୁ ମୋଡ଼ିଥିଲେ । ଗମ୍ଭୀର ଚିନ୍ତାରେ ନିମଜ୍ଜିତ ହେଲା ପରି ମନେ ହେଉଥିଲେ । ପଛରୁ ବିକ୍ରମ ଲକ୍ଷ୍ୟକରୁଥିଲା । ବିଚାରୁଥିଲା, ଏହି ଜଟିଳ ପୁରୁଷଟି ଉପରେ ଆସ୍ଥା ରଖି ତାକୁ ନିଜର କାମରେ ଲଗାଇପାରିବ ତ ? ଅତି ବିଶ୍ୱାସୀ ବନ୍ଧୁ ବୋଲି ଅନୁପକୁ ନିର୍ଭର ଜବାବ ଦେଇଛି । ଅର୍ଥଲୋଭରେ ଯଦି ସେ ବିଶ୍ୱାସଘାତକତା କରନ୍ତି, ପରିଣାମ କ'ଣ ହେବ ? ବଢ଼ିପାଣିରେ ଉବୁଟୁବୁ ହେଉଥିବା ମଣିଷଟି ସମଦଶାପନ୍ନ ଅହିରାଜର ଆଶ୍ରା ନେବା ଅବସ୍ଥା !

ବିକ୍ରମ ଅସ୍ଥିର ହେବାକୁ ଲାଗିଲା । ମୁଣ୍ଡର କେଶଭିତରେ ଆଙ୍ଗୁଠି ସଞ୍ଚାଳନ କଲା । ଭାବିଲା, ଆନନ୍ଦ, ଉତ୍ତେଜନା ଓ ଭାବପ୍ରବଣତା ତା'ର ମନର ସମତାକୁ ଦୋହଲାଇ ଦେଇଥିଲା, ଯେଉଁଥିପାଇଁ ସେ ତରତର ହୋଇ ଅନୁପର ମନରେ ଭ୍ରମାତ୍ମକ ଆସ୍ଥା ଜନ୍ମାଇଲା, ତାକୁ ଅନର୍ଥକ ସାହସିମା କଲା । କେଡ଼େ ଦୃଢ଼ତାର ସହ ସେ କହିପାରିଲା, ସେମାନେ ଯଦି ମୋର କଥା ନ ଶୁଣିବେ, ମୁଁ ବିଦ୍ରୋହ କରିବି । ତାଙ୍କର ସମ୍ମାନ ତାଙ୍କର, ମୋର ସମ୍ମାନ ତମେ । ସେମାନେ ତାଙ୍କର ସେ ସମ୍ମାନ ଭାଙ୍ଗିଲେ ଭାଙ୍ଗନ୍ତୁ ! ମୋର ସମ୍ମାନ କେହି ଊଣା କରିପାରିବେ ନାହିଁ । ସଞ୍ଜୟବାବୁଙ୍କୁ ଠିକ୍

ସମୟରେ ଚେତାଇଦେବ । କପରି ଚେତାଇବ, କ'ଣ ଚେତାଇବ ସେ ଜାଣିବେ ଈଶ୍ୱର ! ତମେ ଜାଣିବାକୁ ଚାହିଁବ ନାହିଁ । ଉତ୍କଳ ନମସ୍କାର ।

ଅନୁତପ୍ତ ଓ ବିବ୍ରତ ବିନମ ସଦରଦରଜା ଆଡ଼କୁ ଆଗଉଥିଲା, ନିଗୁଣାବାବୁଙ୍କ ଉପରେ ତାର ଦୃଷ୍ଟି ପଡ଼ିଲା । ଫୁଲବଗିଚା ଭିତରେ ଗୋଟିଏ ସିମେଣ୍ଟ ବେଞ୍ଚ ଉପରେ ସେ ବସିଛନ୍ତି । କେତେ ଲୋକ, ସ୍ତ୍ରୀ ଓ ପୁରୁଷ କଥାଭାଷା ହୋଇ ହୋଟେଲ ଭିତରକୁ ଆସୁଛନ୍ତି, ପୁଣି ହୋଟେଲରୁ ବାହାରି-ଯାଉଛନ୍ତି । ବିନମର ମନେ ହେଲା, ଯେପରି ନିଗୁଣା ଚନ୍ତକ ତାକୁହିଁ ଚାହିଁ-ରହିଛନ୍ତି ।

ବିନମ ପାଦ ଫେରାଇ ତାଙ୍କର ପାଖକୁ ଗଲା । ନିଗୁଣାବାବୁ ତାଙ୍କର ସ୍ଥୂଳ ଦେହ ଉଠାଇ ସମ୍ଭାଷିଲେ, ଆସନ୍ତୁ ବିସ୍ମିତ ଦେଖା ! ବସନ୍ତୁ । ନିଃସଂକୋଚରେ ପ୍ରକାଶ କରନ୍ତୁ କପରି ସେବା ଆପଣଙ୍କର ମୁଁ କରିବ ?

ଆପଣ ଲୁଚ ଲୁଚ···

ଚିନ୍ତା କରନ୍ତୁ ନାହିଁ । ନିଜେ ଆପଣ ଅନୁପା ଦେବୀଙ୍କୁ କହୁଥିଲେ, ମୁଁ ଆପଣଙ୍କର ଅତି ବିଶ୍ୱସ୍ତ ବନ୍ଧୁ । ଆପଣଙ୍କର ବିଶ୍ୱାସର ଖିଲାପ୍ କେବେ ହେବ ନାହିଁ । କାହିଁକି ଡେରି କରୁଛନ୍ତି, ଏହା ଜାଣିବାକୁ କବାଟ ଖୋଲିବା ମାତ୍ରେ ଆପଣ ଛଦ୍ମ ନାମଟିଏ ପ୍ରକାଶ କଲେ । ମୋର କୌତୂହଳ ହେବାର କଥା ।

ବୁଝିଲି । ଆପଣ ଅନୁପାକୁ ଜାଣନ୍ତି ?

ଅନୁ ନାମରୁ ଅନୁପା ନାମଟି ମୁଁ ଅନୁମାନ କରିନେଲି । ଜାଣେ ନାହିଁ, ତେବେ ଚିହ୍ନେ ବୋଲି ଅନୁମାନ କରୁଛି । ବହୁବର୍ଷ ହେବ, କେଳେ କେଳେ ତାଙ୍କର ନାମ ଖବର କାଗଜରେ ବାହାରେ । କେତେଥର କେତେ ପ୍ରକାର ନୃତ୍ୟଭଙ୍ଗୀର ଛବି ମଧ୍ୟ ଖବରକାଗଜରେ ପ୍ରକାଶିତ ହୋଇଛି । ଷ୍ଟେଟ ବୟସର, ବଡ଼ ବୟସର । ଆମ ହୋଟେଲର ହଲ୍‌ରେ ତାଙ୍କ ସମ୍ବ-ନ୍ଧରେ ବହୁବାର ଆଲୋଚନା ହେବାର ମୁଁ ଶୁଣିଛି । ସ୍କୁଲ୍ କଲେଜର ଛାତ୍ରଛାତ୍ରୀମାନେ ଆମର ହୋଟେଲକୁ ଆସନ୍ତି ତ ! ସେ ହୁଏତ କେବେ

କେବେ ତାଙ୍କର ପଦଧୂଳି ପକାଇଥିବେ । ଦେଖିଲେ ଚିହ୍ନିବି । ସେଛି କି ? ଆସିବେ ?

ଆପଣ ଅତି ବିଚିତ୍ର ଲୋକ, ନିର୍ଗୁଣବାବୁ !

ମୋଟେ ନୁହେଁ । ଆମର ଅତିଥିମାନଙ୍କର ମତିଗତି ବୁଝି ସେମାନଙ୍କର ସେବା କରିବା, ସେମାନଙ୍କର ମନ ଖୁସି କରିବା ଆମର ପରମ କର୍ତ୍ତବ୍ୟ । ଭଲମନ୍ଦ ସେମାନଙ୍କର ଦାୟିତ୍ୱ । ତେବେ, ବେଳେ ବେଳେ ଆମ ଅନୁଷ୍ଠାନର ମଙ୍ଗଳ ଦୃଷ୍ଟିରୁ ଆମେ ସେମାନଙ୍କୁ ସତର୍କ କରିଦେଉଁ, ନିଜେ ବି ସାବଧାନ ରହୁଁ । ଭାବିଥିଲି, ଆପଣଙ୍କ ପାଇଁ ଗୋଟାଏ ଦୁଇ-ଜଣିଆ କୋଠରି ଦରକାର ହେବ । ଖାଲି ନାହିଁ ; ଆଉ ଗୋଟାଏ ବେଡ୍ ଯୋଗାଡ଼ କରିପାରିପାରେ । ପାଞ୍ଚ ଟଙ୍କା ଅଧିକା ପଡ଼ିବ । ଦ୍ୱିତୀୟ ବେଡ୍ ନ ଲୋଡ଼ିଲେ ମୋଟେ ତିନି ଟଙ୍କା । ବହୁତ ଶସ୍ତା । କିନ୍ତୁ ମୁଁ ଠିକ୍ ବୁଝି-ପାରିଲି, ଆପଣମାନଙ୍କର ସମ୍ବନ୍ଧ ଭିନ୍ନ ପ୍ରକାର ।

ଆପଣ ମନଗଢ଼ା ଏସବୁ ଅମାତି କଥା କ'ଣ ଗପିପାରୁଛନ୍ତି, ନିର୍ଗୁଣବାବୁ ?

ବ୍ୟବସାୟର କଥା । ବହୁ ଅଭିଜ୍ଞତାର ଫଳ । ପୁଣି କହୁଛି, ଆପଣ ସଙ୍କୁଚିତ ହେବେ ନାହିଁ । ମୁଁ ବୁଝିସାରିଛି, ଆପଣ ଦୁହିଁଙ୍କର ପ୍ରଣୟ ଗଭୀର । ଦୁଇ ପକ୍ଷର ଅଭିଭାବକମାନେ ପ୍ରଚଳିତ ସାମାଜିକ ରୀତିରେ ଆପଣଙ୍କର ବିବାହର ଅନ୍ତରାୟ ହେଉଛନ୍ତି । ଆପଣଙ୍କର ରୂପ, ଗୁଣ, ବିଦ୍ୟା, ବୁଦ୍ଧି, ସମ୍ମାନ ଦେଖି କେଉଁ ପିତାମାତା ଜାମାତା କରିବାକୁ ଆଗ୍ରହୀ ନ ହେବେ ? ଅନୁପମା ଦେବୀଙ୍କୁ କୁଳବଧୂ କରିବାକୁ କୁଣ୍ଠିତ ହେବାର କାରଣ କ'ଣ ହୋଇପାରେ ? ତାହାହିଁ ଚିନ୍ତା କରୁଥିଲି । ସେ ଲକ୍ଷପତିର କନ୍ୟା !

ବିବ୍ରତ ବିକ୍ରମ ବିଳମ୍ବକେଇଲା ପରି ପଚାରିଲା, ଆପଣ ଜାଣନ୍ତି ?

ଜାଣେ, ଭଲକରି ଜାଣେ । କଣା ମାରୁଆଡ଼ିର ସୁଦକ୍ଷ ଦୁଇ ଗୁମାସ୍ତା ଆନନ୍ଦ ଓ ହାଡ଼ବନ୍ଧୁଙ୍କୁ ବହୁ ବର୍ଷ ହେଲା ଜାଣେ, ଆଜ୍ଞା ! ବେପାର

ହେଲା, ନେଇ ଆଣି ଥୋଇ ପାରିବାର କର୍ମ । କିଏ କେବେ କ'ଣ ଥିଲା, ସେ ଗୁଡ଼ା ବିଚାରିବା ଓ ହନ୍ତସନ୍ତ ହାଇଁପାଇଁ ହେବା ନିର୍ବୋଧର କାମ ।

ଆଜି ଯାହାର ସ୍ଥିତି ଯେଉଁଠି, ଆମେ ତାକୁ ସେହି ଆସନର ସମ୍ମାନ ଦେଉଁ । ଆମେ ବି ବେପାରୀ । ସେମାନେ ହାତହାଣ୍ଡିରୁ ମାଛ ଧରନ୍ତି । କିନ୍ତୁ ଆଜ୍ଞା, ଅନୁପା ଦେବୀ ଓ ଆପଣ ଡାକ୍ତରୀ ପଢ଼ି ନ ଥିଲେ; କେଉଁଠି ଏକାଠି ଚାକିରି କରୁ ନ ଥିଲେ । ପରସ୍ପରକୁ ସ୍ନେହ କଲେ କେଉଁ ଷ୍ଟେଜରେ, ଅବା ଖାଲି ଚାରିଚକ୍ଷୁର ମିଳନରେ, ଭଞ୍ଜୀପୁ ଗଣ୍ଡରେ ?

ସେ ଘରେ ଆପଣଙ୍କର ପ୍ରବେଶ ହେଲା କିପରି ? ନିଶ୍ଚୟ ପୌରାଣିକ ପଦ୍ଧତି କିମ୍ବା ଆଈବୁଢ଼ୀଙ୍କର ମନପବନ ଡଙ୍ଗା ପ୍ରଣାଳୀରେ ନୁହେ ।

ତ୍ରିଗୁଣାବାବୁଙ୍କର ଶ୍ରେଷ୍ଠ ବକ୍ତୃତା ଶୁଣି ବିକ୍ରମ କାବୁଷ୍ଟ ହେଲା । ନିଜକୁ ଅତି ଚାଲାଖ ମଣି ବାହାଦୁରି କରି ସତର୍କତାର ସହିତ ଫୋନ୍‌ରେ ସେ ଯେତିକି କହିଥିଲା, ଚତୁର ତ୍ରିଗୁଣାବାବୁ ସେତିକିରୁ ତା' ଜୀବନର ଗୋପନୀୟତା ଅନୁମାନ କରିସାରିଛନ୍ତି । ସେ ଇଚ୍ଛା କଲେ ବିଭ୍ରାଟ ସୃଷ୍ଟି କରିପାରିବେ ।

ତୁନି ରହିଲେ ଯେ ? ରୋଗର କାରଣ ନ ଜାଣିଲେ, ଚିକିତ୍ସା କରିବା କଠିନ । ଅନୁରାଗ ବି ଗୋଟାଏ ବିକାର । ବିବାହ ସେ ବିକାରର ନିରାକରଣ କରିପାରେ, ନ କରି ବି ପାରେ । ସାଧାରଣତଃ ସେହିମାନଙ୍କ ପାଇଁ ଆମର ଅନୁଷ୍ଠାନ ମନୋରଞ୍ଜନର ବ୍ୟବସ୍ଥା କରେ । କିଛି ମନେକରିବେ ନାହିଁ ।

କୁଣ୍ଠିତ କଣ୍ଠରେ ବିକ୍ରମ କହିଲା, ଆନନ୍ଦବାବୁ ମୋର ନିଜର ମାମୁଁ ।

ତା'ର ଗଳା ଥରିଉଠୁଥିଲା । ମନରେ ଦୁଃଖ ହେଉଥିଲା । ଅକଳରେ ପଡ଼ି ସେ ତା'ର ସବୁ ବାରଣ୍ଟ ଗୋଟାଏ ଗୋଛୁକଟା ବ୍ଲାକ୍‌ମେଲର୍ ହୋଟେଲ୍-ରକ୍ଷକର ପାଦତଳେ ଅଜାଡ଼ିଦେଇଛି ।

ଗୋଟାଏ ଦୁଇଟା ଦୀର୍ଘଶ୍ୱାସ ଛାଡ଼ି, ଚନ୍ଦାମୁଣ୍ଡରେ ହାତ ବୁଲାଇ ତ୍ରିଗୁଣା କହିଲେ, ମାମୁଁଙ୍କ ଘରେ ଥାଇ ଅଧ୍ୟୟନ କରୁଥିଲେ, ନା ? ସବୁ

କଥା ମୁଁ ବୁଝିପାରୁଛି । ଘରର ଚଳଣି ନଷ୍ଟପ୍ରାୟ ଶିଥିଳ । ଢଙ୍ଗ ଅସଂଯତ । ଧନଲୋଭର ଯାହାସବୁ ପ୍ରକୃତି । ଅଣାୟତ୍ତ । ସ୍ୱାଭାବିକ । ସାନ୍ନିଧ୍ୟର ଆକର୍ଷଣ । ପ୍ରେମପ୍ରେମ କିଛି ନୁହେଁ । ଅନୈତିକ ବ୍ୟାପାର । ଓହୋ, ବୁଝିଲି । ଆକଟ ? ହଁ, ଆକଟ । ସେଇଥିପାଇଁ ଧନକୁବେରର ଭଣଜାଙ୍କର ହୋଟେଲରେ ବହୁଣି । ଫୋନ୍‌ର କାରବାର । ଛଦ୍ମନାମର ଛଳନା ।

ଏସବୁ ଆପଣ କ'ଣ କହୁଛନ୍ତି, ହିଗୁଣାବାବୁ ?

କାହାକୁ କିଛି ମୁଁ କହୁନାହିଁ । ମୋର ନିଜ କାନକୁ ଶୁଣାଇବାପାଇଁ ଟିକିଏ ଉଚ୍ଚସ୍ୱରରେ ଚିନ୍ତା କରୁଛି । ଜ୍ୟାମିତିକ ଧାରାରେ । ନିଜେ ମୁଁ ପ୍ରେମରେ ପଡ଼ି କଲେଜର ଚତୁର୍ଥ ଶ୍ରେଣୀରୁ ପାଠ ଛାଡ଼ିଥିଲି କିନା ! ଗଣିତ ଶାସ୍ତ୍ରରେ ମୁଁ ଅନର୍ସ ନେଇଥିଲି । ମୋତେ ଟିକିଏ ଭାବିବାକୁ ଦିଅନ୍ତୁ ।

ସ୍ୱାଧୀନତା ହରଣ ପାଇଁ ଆକ୍ଷେପ । ଘଟିଯିବା ଘଟଣାଗୁଡ଼ିକ ପାଇଁ ଟିକ୍ ଅନୁତାପ କରୁହେବ ନାହିଁ, ଟିକିଏ ମୁଲାହିଜା, ମାନେ ମୁଖଲଜ୍ଜା ।

ଦୂରେଇଗଲେ, ସମୟ ବିତିଲେ, ସ୍ୱାଭାବିକ ଧାରାରେ ଜୀବନ କଟିଲେ ସେତକ ବି ହଜିଯାଏ । କର୍ତ୍ତବ୍ୟବୋଧର ଘଟାଟୋପ ? ନୂତନ ସ୍ଥାନରେ ଆବୋରିବାପାଏ ମନକୁ ଉନ୍ମୁକ୍ତ କରି ରଖିଥାଏ । ମାତ୍ର କିଛିକାଳ ପାଇଁ । ହଁ, କିଛିକାଳ । କବିତା ଖାତାରେ—

ମୁଁ ସେତେବେଳେ ଭଞ୍ଜ ମୁଖସ୍ଥ କରୁଥିଲି । ଜଣକ ପାଇଁ ବହୁ ଆଗ୍ରହରେ କବିତା ବି ଲେଖୁଥିଲି । ପଦ ଯୋଡ଼ି ଯୋଡ଼ି, ଅଭିଧାନ ଘାଣ୍ଟି । ଆସ୍ୟ, ଲାସ୍ୟ, ହାସ୍ୟ ଓ ଭାଷ୍ୟ ଏବଂ ଅଙ୍ଗ, ଢଙ୍ଗ, ରଙ୍ଗ ଓ ସଙ୍ଗ ମନକୁ ଝୁରାଏ । ଏହିସବୁ ହେଲା ଘଟାଟୋପର, ମାନେ କର୍ତ୍ତବ୍ୟବୋଧର ନକ୍‌ସା ।

ମୋର ପୁରୁଷକାରକୁ ଆପଣ ଧିକ୍କାରୁଛନ୍ତି, ହିଗୁଣାବାବୁ ! ମୋର ସମସ୍ୟା ଆପଣ ଭୁଲିଯାଉନ୍ତୁ । ତାକୁ ମୁଁ ସମାଧାନ କରିବି । ଆପଣ ବହୁ ମୂଲ୍ୟବାନ ସମୟ ମୋ ପାଇଁ ନଷ୍ଟ କଲେଣି । ମୁଁ ଦୁଃଖିତ ।

ବିଦାୟ କହିପାରିଲା, କିନ୍ତୁ ସେହି ଚୁମ୍ବକ-ବ୍ୟକ୍ତିତ୍ୱ ପାଖରୁ ଉଠି ଯାଇପାରିଲା ନାହିଁ । ହିଗୁଣାବାବୁ ତା' ଜୀବନର କଟୁ ସତ୍ୟ ପ୍ରକାଶ

କରୁଛନ୍ତି; କିନ୍ତୁ ତା’ ଭିତରେ ଓ ଅନୁପ୍ରା ଭିତରେ ଯେଉଁ ଅନାବିଳ ମମତାର ପ୍ରବାହ ଛୁଟିଛି, ଯାହା ଦିଓଟି ଜୀବନକୁ ବଡ଼ଠାକୁରଙ୍କ ଆଗରେ ଅନନ୍ତ କାଳ ପାଇଁ ବାନ୍ଧିଦେଇଛି, ତା’ର ସମ୍ବାଦ ସେ ଜାଣନ୍ତି ନାହିଁ ।

ନିର୍ଗୁଣାବାବୁ ହସିଲେ । କହିଲେ, ମୋର ଭାବନାଗୁଡ଼ିକୁ ସଶବ୍ଦ କରି, ମୋ ଜୀବନର କାହାଣୀ ମୁଁ ଆପଣଙ୍କୁ ଶୁଣିବାର ସୁଯୋଗ ଦେଇ ଆନନ୍ଦ ଲାଭ କରୁଛି । ଆପଣଙ୍କର ପୁରୁଷକାରକୁ ମୋର ସମ୍ମାନ ରହିଛି । ମୋତେ, ସାମାନ୍ୟ ଗୋଟାଏ ହୋଟେଲ-ମାଲିକକୁ, ଯିଏ ଆପଣଙ୍କର ପିତା ବୟସର, ଆପଣ ପ୍ରିୟବନ୍ଧୁର ଆସନରେ ବସାଇସାରିଛନ୍ତି । ଆପଣଙ୍କ ଜୀବନର ପରମ ପବିତ୍ର, ଗଭୀର ଗୋପନୀୟ ବ୍ୟାପାରର ସହାୟକ ହେବାର ଗୁରୁଦାୟିତ୍ୱ ମୋ ଉପରେ ସାମାନ୍ୟ ନ୍ୟସ୍ତ କରିବାର ପ୍ରସ୍ତାବ କରିଛନ୍ତି ।

ମୁଁ ଭୁଲ କରିଛି । ସେଥିପାଇଁ ମୁଁ ଅନୁତାପ କରୁଛି, ନିର୍ଗୁଣାବାବୁ !

ଅନୁତାପ କରନ୍ତୁ ନାହିଁ । ବନ୍ଧୁର କର୍ତ୍ତବ୍ୟ ମୁଁ ନିଶ୍ଚୟ କରିବି । କୌଣସି ଦେବାଳୟଟିର ଅନ୍ୟାୟକୁ ନ୍ୟାୟ, ଅସାତକୁ ସାତ କରାଇବାର ଶୁଭକାର୍ଯ୍ୟ ସମ୍ପାଦନ କରିବାର ପୂର୍ଣ୍ଣ ଦାୟିତ୍ୱ ମୁଁ ନେବି । ପୁରୋହିତ, ବାରିକ, ଦୁଇ ପକ୍ଷର କର୍ତ୍ତା, ବନ୍ଧୁମିଳନର ବ୍ୟବସ୍ଥା, ଯାନବାହନ, ସବୁ ମୁଁ ଯୋଗାଡ଼ କରିବି । ସମସ୍ତେ ଏଇଠି ଅଛନ୍ତି । ଏହି ମୋର ହୋଟେଲରେ । ତିନି ଘଣ୍ଟାର ଘଣ୍ଟାର କାର୍ଯ୍ୟ । କହିବେ ଯଦି, ଦେବାଳୟକୁ ନ ଯାଇ ବେଦିକା ଉପରେ ପ୍ରଚଳିତ ପଦ୍ଧତିରେ ସବୁ ହୋଇପାରିବ । ସମସ୍ତ ଖର୍ଚ୍ଚ ଆପଣଙ୍କୁ ବହନ କରିବାକୁ ପଡ଼ିବ ।

କେତେ ଖର୍ଚ୍ଚ ପଡ଼ିବ ?

ଯେତେ ଖର୍ଚ୍ଚ କରିପାରିବେ ।

ସର୍ବନିମ୍ନ ?

ଟଙ୍କା ଦୁଇଶ ହେଲେ ଚଳିବ । କୋଡ଼ିଏ ଟଙ୍କାରେ ମଧ୍ୟ ମୁଁ କାର୍ଯ୍ୟ ଚଳାଇଦେଇଛି । ନୂଆ ଲୁହେ ହରିହରବାବୁ, ଅନ୍ତତଃ ବର୍ଷକୁ ଆଠଦଶଟି ବିବାହର ବ୍ୟବସ୍ଥା ମୁଁ କରିଏ । ଭାବେଁ, ମୁଁ ପୁଣ୍ୟ ଅର୍ଜନ କରେ । ଲାଭକ୍ଷତିର

ବିସ୍ତର ମୋର ନ ଥାଏ । ଗୋଟିଏ ବିବାହ ଶେଷରେ, ବରକନ୍ୟାଙ୍କୁ ବିଦାୟ ଦେଇ ମୁଁ ବିସ୍ତର କରେଁ, ବୋଧହୁଏ ମୁଁ କେଉଁ ଅନାଗତ ଶିଶୁର ଅବା କେଉଁ ଭାବପ୍ରବଣ ଯୁବକ ବା ଯୁବତୀର ପ୍ରାଣରକ୍ଷା କରି ପାରିଲି । ତଦନ୍ତ କରିବା ଆବଶ୍ୟକ ମନେ ନାହିଁ । ମୋର ଏହି ଲାଭହୀନ ବେପାର ସମ୍ବନ୍ଧରେ ଆପଣ ନିଶ୍ଚୟ ଆଗରୁ ଅବଗତ ।

ଆଜ୍ଞା, ହଁ । ମୋର ଜଣେ ବନ୍ଧୁଙ୍କ ମୁହଁରୁ ଶୁଣିଥିଲି । ପଚିଶ ଟଙ୍କା ମୁଁ ଆପଣଙ୍କୁ ଦେବାକୁ ପ୍ରସ୍ତୁତ । ଖର୍ଚ୍ଚ ବାଦ୍ ଯାହା ବଳିବ ସେତକ ଆପଣଙ୍କ ବ୍ୟବସାୟର ଲାଭ । ମୁଁ ହିସାବ ମାଗିବି ନାହିଁ । ଟଙ୍କା ପାଇଁ ମୋତେ ହିସାବ ଦେବା ଲୋଡ଼ା ପଡ଼ିବ ନାହିଁ । ସୋମବାର ରାତିଯାଏ ସମୟ ମାଗୁଛି ।

ତ୍ରିଗୁଣାବାବୁ ଉଚ୍ଚସ୍ୱରରେ ହସିଉଠିଲେ । ହସ ବନ୍ଦ କରି କହିଲେ, ରାତି ଡେରି ହେଲାଣି । ଅନେକ ବିଷୟ ଆଲୋଚନା କରିବାକୁ ରହିଗଲା । ଆପଣ ଯାଇ ନିଶ୍ଚିନ୍ତ ହୋଇ ରାତ୍ରିଭୋଜନ ଶେଷ କରନ୍ତୁ । ସବୁ ଭାବନାକୁ ମୁଣ୍ଡରୁ କାଢ଼ି ମୋ ଉପରକୁ ଫିଙ୍ଗି, ଶାନ୍ତିରେ ଶୋଇପଡ଼ନ୍ତୁ । କାମ ଶେଷ କରି ରାତିକ ପାଇଁ କର୍ମଚାରୀଙ୍କର କାର୍ଯ୍ୟନିର୍ଘଣ୍ଟ ସ୍ଥିର କରି ମୋତେ ମୋ ଘରକୁ ଫେରିଯିବାକୁ ହେବ । ଜାଣନ୍ତି ତ ମୁଁ ବିପତ୍ନୀକ ? ହଁ, ପାରିବେ ଯଦି କାଲି ସକାଳେ ମାମୁଁ ଘରଆଡ଼ୁ ବୁଲିଆସନ୍ତୁ । ଉଠନ୍ତୁ ।

ବିକ୍ରମର ଉତ୍ତରକୁ ଅପେକ୍ଷା ନ କରି ତ୍ରିଗୁଣାବାବୁ ନିଜେ ଉଠିଲେ ।

ତ୍ରିଗୁଣାବାବୁଙ୍କ ସମ୍ବନ୍ଧରେ ବିକ୍ରମ ଯେଉଁ ଖବର ଯୋଗାଡ଼ କଲା ସେଥିରେ ସେ ବିସ୍ମିତ ହେଲା । ସେ ଧନୀର ସନ୍ତାନ ଥିଲେ । ଛାତ୍ରଜୀବନରେ ଉଚ୍ଛୃଙ୍ଖଳ । ଅନ୍ୟ ଜାତିର ଯେଉଁ ସୁନ୍ଦରୀ କନ୍ୟାଟିକୁ ସେ ସ୍ନେହ କରୁଥିଲେ, ସେ ଦୁଷ୍ପ୍ରାପ୍ୟା ଥିଲେ । ବନ୍ଧୁ ସ୍ନେହୀଙ୍କର ଆଦରର ପ୍ରତିମା । କେହି ତାଙ୍କୁ ପତ୍ନୀତ୍ୱର ସମ୍ମାନ ଦେବାକୁ ଆଗେଇଆସିଲେ ନାହିଁ । କୁସୁମର ରଙ୍ଗ ମଉଳିଆସିଲା । ସୁବାସ ଆଉ ଚହଟିଲା ନାହିଁ ।

ପ୍ରତ୍ୟାଖ୍ୟାତ ନିର୍ଗୁଣଙ୍କର ନ୍ରେକ ସେଣ୍ଟ ଅବହେଳତାର ପ୍ରଣୟ-ପ୍ରାର୍ଥୀ ହେଲେ । କୁଟୁମ୍ବରେ ଓ ବନ୍ଧୁମହଲରେ ଗୁଞ୍ଜନ ଖେଳିଗଲା । ପ୍ରତିବାଦ, କେବଳ ପ୍ରତିବାଦ । ଅକୁଳର ଅବୈଧ କଳଙ୍କିନୀ ଝିଅଟାକୁ ବିବାହ କରିବାକୁ ହତଭାଗ୍ୟ ନିର୍ଗୁଣ ଜିଦ୍ କରିଛି ! ବଡ଼ମଜା ।

ଚଣ୍ଡୀଙ୍କ ମନ୍ଦିରରେ ବିବାହ ହେଲା ।

ନିର୍ଗୁଣ ତ୍ୟାଜ୍ୟପୁତ୍ର ହେଲେ ।

ସେ ପ୍ରତିବାଦ କଲେ ନାହିଁ । ପୈତୃକ ଘର ଛାଡ଼ି ଭଡ଼ାଘରେ ଆଶ୍ରା ନେଲେ । ଚଳିବେ କିପରି ? ପତ୍ନୀ ସୁବାସିନୀ ଶିକ୍ଷୟିତ୍ରୀ ହେଲେ । ନିର୍ଗୁଣ ଇନ୍‌ସିଓରେନ୍‌ସ ଏଜେଣ୍ଟ, ଗ୍ରେଟବଡ଼ ଦଲାଲ, ମାଛ ବେପାରୀ, ଗ୍ରେଟବଡ଼ ବାହାଘରିତ୍ୟ, ବିଭିନ୍ନ ସାଂସ୍କୃତିକ ଓ ଅନ୍ୟାନ୍ୟ ଉତ୍ସବମାନଙ୍କରେ ଖାନା-ପିନାର ଆୟୋଜକ । କଣ୍ଟ୍ରାକ୍ଟର । ହୋଟେଲ ଖୋଲିବାର ଧାରଣା ସେଇଠି ମନରେ ପଶିଲା ।

ହୋଟେଲ ଖୋଲିଲେ—"କଳିଙ୍ଗ ହୋଟେଲ୍" ।

ଗୋଟିଏ ପୁଅ, ତିନୋଟି ଝିଅଙ୍କର ଜନନୀ ସୁବାସିନୀ ଶିକ୍ଷୟିତ୍ରୀ କାର୍ଯ୍ୟ ଛାଡ଼ିଲେ । ଗୃହକର୍ତ୍ତ୍ରୀର ଦାୟିତ୍ୱ ବନେଇପଡ଼ିଲା । ସ୍ୱାମୀ ଓ ପିଲାଙ୍କର ଯତ୍ନ । ନୂତନ ଗୃହତୋଳାର ଦାୟିତ୍ୱ । ପୁଅଝିଅଙ୍କର ଶିକ୍ଷା ।

ସଂସାର ସୁଖରେ ଚାଲିଲା । କଟକ ସହର । କାହାକୁ କିଏ ଏକଘରିଆ ବାସନ୍ଦ କରିବ ? ଯେଉଁ ଆତ୍ମୀୟ ବନ୍ଧୁବାନ୍ଧବେ ଆଡ଼େଇ ରହିଲେ, ଆଡ଼େଇ ରହନ୍ତୁ । ଦୂରରୁ କୁକୁରଦଳ ଭୁକିଲା ପରି ଭୁକ ଭୁକ ନିନ୍ଦା ଅପବାଦ ଉଠାଇବାର ଉଠାନ୍ତୁ । ସେଥିକୁ କିଏ ଖାତିର୍ କରୁଛି ?

ଧନ ଥିଲେ, ମନ ଥିଲେ, ଉଦାରତା ଓ ମୁକ୍ତହସ୍ତତା ଥିଲେ ପ୍ରଚୁର ବନ୍ଧୁ ମିଳିବେ । କଟକ ସହର ଯେ, ଦେଶର ସବୁ ବଡ଼ ବଡ଼, ମଝିଆଁ ସହର ପରି ଏଠାରେ ସବୁ ଧର୍ମ, ସବୁ ଭାଷାଭାଷୀ, ସବୁ ଜାତି ଅଜାତି, ଧନୀ ଓ ନିର୍ଦ୍ଧନ, ଋଷି ସନ୍ୟାସୀ, ବେଶ୍ୟା ଗଣିକାଟା, ଦେଖା ସୁନ୍ଦର

କର୍ଣ୍ଣାରୁବଡ଼, ମନ-ଜାଣେ-ପାପସମ୍ପାଦିତ ଚିହ୍ନପ୍ରତିମା ପ୍ରାପ୍ତ ଟେକାଟଙ୍କଧୃଷ୍ଟ-ମାନେ ଅଛନ୍ତି । ସମସ୍ତଙ୍କର ପେଟପାଟଣା କାରବାର । ତମ ବନ୍ଧୁବାନ୍ଧବ ବାଛିନିଅ । ଘନିଷ୍ଠତା, ଅନ୍ତରଙ୍ଗତା । କିନ୍ତୁ ତରକଥିବ ଚେଏରଲୁ !

ନିର୍ଗୁଣା ଓ ସୁବାସିନୀଙ୍କୁ ବନ୍ଧୁବାନ୍ଧବର ଅଭାବ ହୋଇନାହିଁ । ବରଜଳ ଆତ୍ମୀୟେ କାଳକ୍ରମେ ଧନର ଆଗମ ସଙ୍ଗେ ମୁହଁ ଗଳାଇଛନ୍ତି । ପ୍ରଶଂସାମୁଖର ହୋଇଛନ୍ତି । ନିର୍ଗୁଣା ଓ ସୁବାସିନୀଙ୍କଠାରୁ ସାହାଯ୍ୟ ଗ୍ରହଣ କରିଛନ୍ତି; କିନ୍ତୁ ସେମାନଙ୍କୁ କେବେ ଅମାର ଭିତରେ ମୂଷିକ ହେବାର ସୁଯୋଗ ଦେଇନାହାନ୍ତି ।

ଛଅବର୍ଷ ତଳେ ତାଙ୍କ ମୁଣ୍ଡରେ ବଜ୍ରପାତ ହେଲା—ସୁବାସିନୀ ସେପୁରକୁ ଚାଲିଗଲେ । ନିର୍ଗୁଣା ଧୈର୍ଯ୍ୟଚ୍ୟୁତ ହେଲେ ନାହିଁ । ପିଲା ଗ୍ଲବେଷ୍ଟିଙ୍କର ଭବିଷ୍ୟତ ଗଠନରେ ଉଦ୍‌ଯୋଗୀ ହେଲେ ।

ଏବେ ନିର୍ଗୁଣା ଚିନ୍ତକ ନିଶ୍ଚିନ୍ତ । ପିଲାମାନେ ନିଜ ନିଜର ଭବିଷ୍ୟତ ଆପେ ଗଢ଼ିନେଇଛନ୍ତି ।

ବଡ଼ଝିଅ ଜଣେ ଖ୍ରୀଷ୍ଟିଆନ୍ ଫଟୋଗ୍ରାଫରଙ୍କୁ ବିବାହ କରିଛି । ମଝିଆଁ ଟି ବିବାହ କରିଛି ଜଣେ ମୁସଲମାନ ଡାକ୍ତରଙ୍କୁ । ସେ ସରକାରୀ କର୍ମଚାରୀ । ତିନିବର୍ଷ ତଳେ ସାନଟିର ବିବାହ ହୋଇଗଲା । ହରିଜନ ଯୁବକ, ଜଣେ ଅଧ୍ୟାପକ । ବିବାହ ପରେ ସେ ତାଙ୍କର ସାଙ୍ଗିଆ ବଦଳାଇ 'ନାୟକ' ଆଗରେ 'ପଣ୍ଡ' ଯୋଡ଼ିଦେଲେ ।

ତାଙ୍କର ପ୍ରଥମ ସନ୍ତାନ ପୁଅ ପ୍ରେମାନନ୍ଦ ବିଚକ୍ଷଣ ଛାତ୍ର ଥିଲା । ଶାନ୍ତ, ଶିଷ୍ଟ, ଭଦ୍ର ଓ ଚରିତ୍ରବାନ୍ । ପଦାର୍ଥ ବିଜ୍ଞାନରେ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ହୋଇ ତିନିବର୍ଷ ତଳେ ଯୁକ୍ତରାଷ୍ଟ୍ର ଆମେରିକାର କେଉଁ ବିଶ୍ୱବିଦ୍ୟାଳୟରେ ଡକ୍ଟରେଟ୍ କରିବାକୁ ଯାଇଥିଲା । ଅଦ୍ୟାପି ଫେରିନାହିଁ । ତା' ପିଛା ପ୍ରଚୁର ଧନ ନିର୍ଗୁଣାବାବୁ ଖରଚ କରିଛନ୍ତି । ଏବଯାଏ କରୁଛନ୍ତି । ମନରେ ସବୁବେଳେ ଧକ, ପ୍ରେମାନନ୍ଦ ଫେରିବ ତ ? କେତେ ପିଲା ଦେଶକୁ ଫେରିବାକୁ କୁଣ୍ଠିତ ହେଉଛନ୍ତି । ରହିଯାଉଛନ୍ତି । ସେଇଠି ସଂସାର ।

ସାହାବାଣୀ ଝିଅଟିଏ ବାହା ହେଇ ପଛେ ଦେଶକୁ ଫେରିଆସୁ, ଏତିକି ତାଙ୍କର ଭାବନା ।

ବିକ୍ରମ ପରିବାରର ବିଷୟରେ ଜାଣିବାକୁ ଉତ୍ସୁକ ହୋଇଥିଲା ! ବେହେରା ପାଖରୁ ଗୁପ୍ତରେ ଯେଉଁସବୁ ଖବର ସେ ଯୋଗାଡ଼ କରିଥିଲା, ସେତିକି ମୁଣ୍ଡ ଭିତରେ ବୋଝ ହୋଇ ରହିଥିଲା । ନିର୍ଗୁଣବାବୁଙ୍କ ସମ୍ବନ୍ଧରେ ଅଳ୍ପ ବହୁତେ ସମସ୍ତଙ୍କୁ ଜଣା ବୋଲି ସେ ଶୁଣିଥିଲା । ସେ ଛୁଆଙ୍କେ ଶିଶୁ ପରି ସରଳ । ମନ ହେଲେ ମାଗିବା ଲୋକଙ୍କୁ ମୁକ୍ତ ହସ୍ତରେ ଦାନ କରନ୍ତି । ବ୍ୟବସାୟରେ ପାଞ୍ଚଟି ପଇସା କାହାକୁ ଛାଡ଼ନ୍ତି ନାହିଁ । ଅଞ୍ଚଳରେ ପଡ଼ିଥିବା ଝିଅପୁଅଙ୍କର ବାହାଘର କରାଇଦେବାକୁ ସେ ଜୀବନର ଗୋଟାଏ ବ୍ରତ ବୋଲି ଗ୍ରହଣ କରିଛନ୍ତି !

ବିକ୍ରମ ଭାବୁଥିଲା, ସମସ୍ତେ ଯେବେ ଜାଣନ୍ତି, ଅନୁପାକୁ କ'ଣ ଜଣା ନ ଥିବ ? ସେ କ'ଣ ସମ୍ମତ ହେବ ? ବାହାଘର ଆୟୋଜନ ଆଗେଇ ଚାଲିଛି । ଗହଣାଗଣ୍ଠି କିଣା ହେଉଛି ।

ଅନୁପା ପ୍ରତିବାଦ କରୁନାହିଁ କାହିଁକି ? କ'ଣ ଅଛି ତା ମନରେ ?

ରବିବାର ସକାଳ ।

ବିକ୍ରମ ତା'ର ମାମୁଁ ଘରେ ଉପସ୍ଥିତ ହେଲା । ମାମୁଁ ମାଇଁଙ୍କୁ ପ୍ରଣାମ କଲା । ଆଜି ସେ ଗ୍ରାମକୁ ଯିବାକୁ ପ୍ରସ୍ତୁତ ହୋଇ ଆସିଛି ବୋଲି ଜଣାଇଲା ।

ସେମାନେ ଆଦର କଲେ । ମାଇଁ କେତେ ଅଭିମାନିଆ କଥା କହି ତାଙ୍କର ସ୍ନେହ ଜଣାଇଦେଲେ । ବାହାଘର ପାଇଁ କିପରି ସେମାନେ ବ୍ୟସ୍ତ, ସେକଥା ବୁଝାଇଦେଲେ ।

ଟଙ୍କାକଉଡ଼ି ପାଇଁ ଚିନ୍ତା ନାହିଁ ବରେ ବିକ ! କିନ୍ତୁ କେଉଁଠି ଥିବେ ମୁଁ ଭଣ୍ଡା କରିବ ? ସଞ୍ଜୟ ପରି ପୁଅ, କମଳବାବୁଙ୍କ ଘର, ତାଙ୍କ ଟେକ ରକ୍ଷା

ନ କଲେ ପାଞ୍ଚଲୋକେ ପାଞ୍ଚକଥା କହିବେ । ମୋର ମନ ତ ମାନୁନି ନାହିଁ । ଅନୁପମା ପରି ଝିଅ, ପରଘରକୁ ଯିବ, ତା' ମନରେ ଦୁଃଖ ଦେବି କପରି ?

କିଛି କହିବାକୁ ହେବ ବୋଲି ବସନ୍ତ କହିଲା, ଶୁଣିଛୁ, ନଜେ ବନ-ଭାଙ୍ଗି ହୋଇ ଝିଅକୁ ଦେବାକୁ ମା' ମନ ଛଟପଟ ହୁଏ । ତମର ଅଛି । ଭଗବାନ ଦେଇଛନ୍ତି, ଦେଉଛନ୍ତି । ତମେ ଦେବାକୁ ମନ ନ କରିବ କାହିଁକି ମାଉଁ ?

ଆନନ୍ଦ କହିଲେ, ତୁ ଠିକ୍ କହିଲୁ, ବସନ୍ତ ! କିନ୍ତୁ 'ଅଛି' ଶବ୍ଦଟିର ଗୋଟାଏ ଆକାର, ଗୋଟାଏ ସୀମା ମଧ୍ୟ ରହିଛି । ଉପରଦେଖାଣକୁ ବହୁତ ଅଛି । ଗୃହ,ଆଡ଼େ ବାଣ୍ଟିଦେଲେ କିଛି ନାହିଁ । ବର୍ଦ୍ଧୀକର, ଅଯୁକର ମକଦ୍ଦମା ଛୁଟୁନାହିଁ । ଦୁଇଟା ମିଶି ଦେଢ଼ଲକ୍ଷ ଟଙ୍କାରୁ ଅଧିକ । ଅପିଲ୍ ଶୁଣାଣି ହୋଇନାହିଁ । ନୂଆ ନୂଆ ବେପାର ଚଳାଇବାକୁ ବ୍ୟାଙ୍କ ସଂସ୍ଥାରୁ କରଜ ବି ଗୁଡ଼ାଏ ଅଣାହୋଇଛି । ସବୁ ବିଷୟ ବିଚାର କରି ବ୍ୟବସ୍ଥା କରିବାକୁ ହେବ ।

ତମେ କ'ଣ ମୋ ଝିଅକୁ ଦେବ ନାହିଁ ? ଅଧିକା ଉପରେ ଟଙ୍କା ଦଶ ହଜାର ମୁଁ ସମୂଦୁଣୀ ରଞ୍ଜିତା ଦେବୀଙ୍କୁ ଗୁପ୍ତରେ ଦେଇଛି । ସମସ୍ତେ ଜାଣନ୍ତି । ଖାଲି ସଞ୍ଜୟକୁ ଗୁପ୍ତ । ସେ ଯୌତୁକର ବିରୋଧୀ । ବାହାଘରରେ ତାଙ୍କର ଗୁଡ଼ାଏ ଖରଚ ହେବ । ଟଙ୍କା ତ ବେପାରରେ କମଳବାବୁ ଖେଳାଇ-ଦେଇଛନ୍ତି । ତାଙ୍କ ହାତରେ ଧନ ନାହିଁ । ମାର୍ଗଶିର ମାସକୁ ଗଡ଼ାଇ-ଦେଲେ ଭଲ ହୁଅନ୍ତା କହି ରଞ୍ଜିତା ବ୍ୟସ୍ତ ହେଉଥିଲେ । କହିଲି, ଶୁଭକାମ ଶୁଭରେ ହେଉ ସମୂଦୁଣୀ, ମନ ଦୁଡ଼ୁଗୁଡ଼ୁ କରନା । ଟଙ୍କାର ଅଭାବ ରହିବ ନାହିଁ ।

ଆନନ୍ଦ ପଚାରିଲେ, ମତେ କହିଲ ନାହିଁ, ଇନ୍ଦିରା?

ଇନ୍ଦିରା ବସନ୍ତକୁ ଚାହିଁ କହିଲେ, ତମେ ତ ହାକମ ହେଲଣି, କହ ! ତମେ ବିଚାର କର, ଏଗୁଡ଼ା କ'ଣ ପ୍ରକଟ କରିବାର କଥା ? ସବୁ ଠିକ୍-

ଠାକୁ ହେଲଣି । ଟଙ୍କା ଅଖରବର ଆଉ ଦେଖାଇ ତା'ରଖ ଗଢ଼ାଇବେ, ସେଇଠେ ବାହାଘର ଭାଙ୍ଗିଦେବେ । କେଡ଼େ ଲାଜର କଥା !

ଅନୁପା ପରଘରକୁ ଯିବ ବୋଲି ଏକୁଟିଆ ଥିଲାବେଳେ ଖାଲି କାନ୍ଦୁଛି । ବାହା ନ ହୋଇ ଆଦ୍ଦର ପଡ଼ିବାକୁ ଝୁଙ୍କ ଧରିଥିଲା । ଏବେ ଆଉ ସେକଥା କହୁନାହିଁ । ବାହାଘର ଭାଙ୍ଗିଲେ, ସେ ଆଉ ଧରାଛୁଆଁ ଦେବ ନାହିଁ ।

ବ୍ୟାଗ୍ ଭିତରୁ କାଢ଼ି ଶହେଟଙ୍କିଆ ବଣ୍ଡଲଟିଏ ରଞ୍ଜିତାଙ୍କ ହାତକୁ ବଢ଼ାଇଦେଲ । ନିରୁପା ଖଞ୍ଜା ଭିତରେ ବୁଲୁଥିଲା । କୁଣ୍ଡରେ ଲଗା ହୋଇ-ଥିବା ଗୋଲାପ ଗଛ ଗୁଡ଼ିକର ଜାକଜାକିକା ଫୁଲ ଦେଖି ଖୁସି ହେଉଥିଲା । ପାଠ କରୁଥିଲା । ସେ ବ ଜାଣିନାହିଁ ।

ବନ୍ଧମ ପଚାରିଲା, ହେ ଗ୍ରହଣ କଲେ ମାଣ୍ଡ ? ତାଙ୍କର ତ ଧନର ଅଭାବ ନାହିଁ !

କଅନ୍ତେ ନାହିଁ ? ସେ ହାକମାଣୀ ଥିଲାବେଳେ କେତେଥର ଦେଇଛି । ସେ ସେମିତ ନେଲେ । ସଙ୍ଗେ ସଙ୍ଗେ ଆଲମାରୀରେ ରଖିଲେ । କାହିଁକ ଦେଲ ବୋଲି କହି ତା'ପରେ ସେ ଉପରମୁହଁରେ ଭାରି ବ୍ୟସ୍ତ ହେଲେ । ସେଇଟା ତାଙ୍କର ପ୍ରକୃତି । ତମେ କମଳବାବୁଙ୍କ ସଙ୍ଗେ ଦାଣ୍ଡ-ଘରେ ବସି ଗଳ୍ପ କରୁଥିଲ ଗୋ ! ତମେ ଜାଣନ୍ତ କପରି ?

ଅନନ୍ତ ଦୁଃଖିତ ହୋଇ କହିଲେ, ତମେ ତାଙ୍କୁ ନଗଦ ଦଶହଜାର ଦେଇଛ, ଏ ଖବର ମୁଁ ଆଗରୁ ଜାଣିପାରିଥିଲେ, କମଳବାବୁଙ୍କୁ କାହିଁ କଣିବାକୁ କୋଡ଼ିଏ ହଜାର ଟଙ୍କାର ପ୍ରତିଶ୍ରୁତି କାଲି ଦେଇ ନ ଥାନ୍ତି । ଆଜି-ତାଙ୍କ ପାଖକୁ ଟଙ୍କା ପଠାଇଦେବାକୁ ହେବ । ଷଡ୍ଯନ୍ତ୍ରର ସେତିକରେ ଆଶା । ଅବଶ୍ୟ ଅଣ୍ଟ ନଅଣ୍ଟ କମଳବାବୁ ଚଳାଇବେ ।

ଭଲ କଲ । ପରକୁ ଦେଇ ନାହିଁ । ତମର ଅଛି, ତମେ ଦେବ । ଜ୍ୱାଇଁକୁ ଦେବ । ଝିଅ ଦେଇ ପୁଅ ପାଇବ । ତା' ପରିକା ପିଲା ଖୋଜିଲେ ନ ପାଇ !

ଆନନ୍ଦ କହିଲେ, କ ପିଲାଟାଏ ସେ ? ତା'ପରି ପଟପଟ ଉପୋଟି ଅଛନ୍ତି । ହେଇଟି, ତମରି ଆଗରେ ମୋର ଭଣଜା ବସିଛି । କେଉଁ ଗୁଣରେ ସଞ୍ଜୟ ହେମ ସଙ୍ଗରେ ସମାନ ? ଠକା କେଇଟା ଦରମା । ବାଉରିବନ୍ଧୁର ଗୁମାସ୍ତା ସେମାନଙ୍କଠାରୁ ବେଶି ରୋଜଗାର କରେ । ଦବାର କଥା, ଦିଆଗଲା । ସେତିକ ।

ଦେଲ ତ, ଆଉ ସୁ ତା' ନାମ ଲୁଣ୍ଡିକୁ ଆଣେନା । ବାହାଘରର ଅନ୍ୟାନ୍ୟ ଯୋଗାଡ଼ କର । ନିରୁପାର ମାପରେ ତା' ପସନ୍ଦ ପ୍ରକାରେ ମାତ୍ର ଅଧେ ଗହଣା କଣା ହେଲା । ଦେଖିଲ ତ । ବାକ ଅଧେ ବଦଳ ଦିଆଗଲା । ସେ କଥା ମୁଁ ବୁଝିବ । ବାହାଘରର ଅନ୍ୟାନ୍ୟ ଖବର ତମେ ବୁଝ । ତମ କର୍ମଚାରୀପଲଙ୍କୁ ଲଗାଇଦିଅ ।

ଆନନ୍ଦ କହିଲେ, ସବୁ ବଦଳ କରି ସରିଛି । ତମର ମୁଣ୍ଡ ଖେଳାଇବା ଲୋଡ଼ା ନାହିଁ । ମୁଁ ପଚାରୁଛି, ଗହଣା ବଦଳ ଦେବାକୁ, ପସନ୍ଦ କରି କଟେଇବାକୁ ଅନୁକୁ ସଙ୍ଗରେ ନ ନେଇ ନିରୁକୁ ନେଲ କାହିଁକ ? ଯଦି ଅନୁର ମନକୁ ନ ଆସେ ?

ଇନ୍ଦିରା କହିଲେ, ଯେତେ ଡାକିଲ, ଅନୁପା ସଙ୍ଗରେ ଯିବାକୁ ମନା କଲା । ବାହା ହୋଇ ପରଘରକୁ ଯିବା ଝିଅ । ଯେତେ ପାଠ ପଢ଼ିଲେ ବି ଲାଜ ହେବାର କଥା । ସେ କହିଲା ଯେ, ଅନୁର ମାପ ଓ ତା' ମାପ ସମାନ । ନିରୁର ପସନ୍ଦ ତା' ପସନ୍ଦଠାରୁ ସରସ । ନିରୁପା ହମହମ ହୋଇ ବାହାରିଲେ । ଅନୁପାର ଯାହା ପସନ୍ଦ ନ ହେବ ଗହଣାଦୋକାନ ବଦଳାଇଦେବ ।

ବୁଝିଲି । କୁଣିଆଁ ମେହେନ୍ତର ଖାନାପିନାର ଦାୟିତ୍ୱ କଳିଙ୍ଗ-ହୋଟେଲର ମାଲିକ ନିର୍ଗୁଣାବାବୁ ନେବାକୁ ଜବାବ ଦେଇପାରିଲେ ନାହିଁ, ଇନ୍ଦିରା ! କହିଲେ, ତାଙ୍କ କର୍ମଚାରୀମାନଙ୍କୁ ପଚାରି ସେ ପରେ କହିବେ । ହଜାରେ ଲୋକଙ୍କର ବ୍ୟବସ୍ଥା ସେ କରିପାରିଲେ ଗୋଟିଏ ବଡ଼ ଝିନ୍ଝଟରୁ ରକ୍ଷା ମିଳିଥାନ୍ତା । ସକାଳେ ତାଙ୍କ ଘରକୁ ପୁଣି ଫୋନ୍ କରିଥିଲି । ତାଙ୍କର ଝିଅ ଜୟଶ୍ରୀ ଧରିଲା । ସେ ନ ଥିଲେ ।

ଇନ୍ଦିରା କହିଲେ, ଶୁଣୁଛନ୍ତି ମ ! ଅଧିକ ବ୍ୟୟ କରିବାର ଫିକର୍ । ତ୍ରିଗୁଣାବାବୁଙ୍କର ସ୍ତ୍ରୀ ସୁବାସିନୀ ଯାହା କହୁଥାଆନ୍ତି, କେମିତି ସେ ଚାଳଚଳନ କରିଥାଆନ୍ତି ଦେଖନ୍ତୁ । ଆମ ନାରୀ-ପ୍ରଗତି-ସଙ୍ଘରେ ସେ ଜଣେ ମେମ୍ବର ଥିଲେ । ତାଙ୍କର ଝିଅ ଜୟନ୍ତୀ ଫୋନ୍ ଧରିଥିବ, ଯୋଷେଫ୍ ଫଟୋଗ୍ରାଫରକୁ ବାହାହୋଇଛି । ସବା ସାନଝିଅ ଶୋଭଶ୍ରୀକୁ ଦେଖିଥିବ ? ଆମ ଅନୁପା ସାଙ୍ଗରେ ପଢୁଥିଲା । କେତେଥର ଆମ ଘରକୁ ଆସିଛି । ଓଡ଼ିଶୀ ଗାଇବାରେ ସରସ । ହରିଜନ ପିଲାକୁ ବାହା ହୋଇଗଲା । ସୁବାସିନୀ କହୁଥିଲେ କ'ଣ ଝିଅଗୁଡ଼ାକ ଏମିତି ଅକୂଳରେ ପଶିଥାଆନ୍ତି ? ଆହା !

ଆନନ୍ଦ କହିଲେ, ପରଘର କଥା ଚର୍ଚ୍ଚା କରିବା ସ୍ତ୍ରୀଗୁଡ଼ାଙ୍କର ଅଭ୍ୟାସ । ମୋର ଜରୁରୀ କାମ ଅଛି । ମୋତେ ଶୀଘ୍ର ଭୁବନେଶ୍ୱର ଯିବାକୁ ପଡ଼ିବ । ଶିବଚରଣ ଓ ରାମକୁମାର ଅପେକ୍ଷା କରି ରହିଛନ୍ତି ।

ସ୍ୱରୂପା ଧାଇଁଆସିଲା । ହସୁଥାଏ । ବିକ୍ରମକୁ ନମସ୍କାର କରି ଇନ୍ଦିରାଙ୍କ ପାଖକୁ ଗଲା । ସେମିତି ହସିହସି କହିଲା, ବୋଉ, ତୁ ଜଲଦି ଉପରକୁ ଆ । ଗୋଟାଏ ମଜା ଦେଖିବୁ । ଭାରି ମଜା । ଆସୁନୁ ?

ଇନ୍ଦିରା ପଚାରିଲେ, ଏମିତି ହସିହସି ନୟାନ୍ତ ହେଉଛୁ କାହିଁକି ? କହୁନୁ, କ'ଣ ହୋଇଛି ?

ରଥିଆ ଆସି ଖବର ଦେଲା, ବୈଠକଘରେ ଫୋନ୍ ବାଜୁଛି । କିଏ ଡାକୁଛନ୍ତି ପରା ମା !

ଆନନ୍ଦ ପଲଙ୍କ ଉପରୁ ଉଠିଲେ । ବିକ୍ରମକୁ ଚାହିଁ କହିଲେ, ନିଶ୍ଚୟ ରାମକୁମାର ଡାକୁଥିବେ । ଦେଖେଁ । ତୁ ଆଜି ରହିବୁ ବିକ୍ରମ ?

ବିକ୍ରମ ଚଉକିରୁ ଉଠି କହିଲା, ମୁଁ ଏବେ ଗ୍ରାମକୁ ଯିବି, ମାମୁଁ ! ଆପଣ ବୋଧହୁଏ ଜାଣି ନ ଥିବେ ଯେ, ବାପା ପନ୍ଦର କୋଡ଼ିଏ ଦିନ ତଳେ ବୋଉର ମନା ନ ମାନି ପୁଣି ଜୟପୁର ଚାଲିଗଲେଣି ।

ଆନନ୍ଦ କହିଲେ, ସେ ଉଦ୍‌ଯୋଗୀ ଲୋକ । ଗ୍ରାମରେ ବସି ବସି ସମୟ ନଷ୍ଟ କରିବାକୁ ଭଲ ଲାଗି ନ ଥିବ । କ୍ଷତି କ'ଣ ? ଯାଆନ୍ତୁ ।

କହୁକହୁକା ସେ ତଳ ମହଲାର ଶୋଇବାଘର ଭିତରୁ ବାହାରି ଚାଲିଗଲେ ।

ବଙ୍କିମ ଇନ୍ଦିରାଙ୍କୁ ପ୍ରଣାମ କରି ବିଦାୟ ମାଗିଲା ।

ଇନ୍ଦିରା କହିଲେ, ଏମିତି ଗୋଡ଼େ ଗୋଡ଼େ ଆସି ଚାଲିଯାଉଛ ? ବୋଉଙ୍କୁ ଦେଖିବାକୁ ଇଚ୍ଛା ହେଉନ୍ଥ ? ମୁଁ ଅଟକାଇବି ନାହିଁ । ହାକିମ ହେଲ ବୋଲି ପର କରିଦେବ ନାହିଁ, ବିକ ! ତମରି ମାମୁଁ ଘର ତ ! ଲାଜ ସରମ କଅଣ ? ସୁଦର୍ଶନ ପଣ୍ଡାଙ୍କୁ ମାଗି ନେଇ କ'ଣ ପାଟିରେ ଦେଇଯାଅ । ତୁଣ୍ଡ ଓଦା ନ କଲେ ଆମ ମନରେ ଦୁଃଖ ହେବ ନାହିଁ ?

ବଙ୍କିମ କହିଲା, ହଉ, ମାଈଁ !

ସୁରୂପା ବଙ୍କିମର ହାତ ଧରି ଓଟାରିଲା । କହିଲା, ତମେ ବି ଆସୁନ, ବିକଭାଇ ! ଉପରେ ଅପା କେମିତି ଫାର୍ସ କରୁଛି । ହସିହସି ଗଡ଼ିଯାଉଛି । ଆସ ମ ଦେଖିବ ।

ଇନ୍ଦିରା କହିଲେ, ସେ ଗାଁକୁ ବାହାରିଛନ୍ତି । ଗଣ୍ଡାଏ କ'ଣ ଖାଇଦେଲେ ଚାଲିଯିବେ । ସେ କାହିଁକି ଯିବେ ? ତାଙ୍କର ଡେରି ହେବ । ଚାଲ୍, ମୁଁ ଯାଉଛି ।

ଇନ୍ଦିରାଙ୍କ ପଛେ ପଛେ ବଙ୍କିମ ଶୋଇବାଘର ଭିତରୁ ବାହାରିଲା । ଭାବୁଥିଲା, ଅନୂପା ସଙ୍ଗେ ତାର ସାକ୍ଷାତକୁ ତାର ମାଈଁ ସନ୍ଦେହର ଚକ୍ଷୁରେ ଦେଖୁଛନ୍ତି । ମନେ ମନେ ସେ ବ୍ୟଥିତ ହେଉଥିଲା । ଭାବୁଥିଲା, କ'ଣ ଗୋଟାଏ ତୁମୁଳ କାଣ୍ଡ ସେ ଘଟାଇବ । କିନ୍ତୁ କ'ଣ ସେ କାଣ୍ଡ ?

ଇନ୍ଦିରା ଶୋଇବାଘରର କବାଟ ବନ୍ଦ କରି ଶିକୁଳି ଲଗାଇଲେ । ସୁରୂପା ପୁଣି ବଙ୍କିମର ହାତ ଧରି ଓଟାରିଲା । ଅଳି କଲା, ଆସ ମ ବିକଭାଇ, ତମକୁ ରାଣ ଅଛି । ଖାଲି ଠାକୁରାଣୀଙ୍କୁ ଥରେ ଚାହିଁଦେଇ ଆସିବ ।

ଇନ୍ଦିରା ପଚାରିଲେ, ଠାକୁରାଣୀ ?

ହଁ ଲୋ ବୋଉ ! ଅପା ନିଜେ କହିଲା, ସେ ଠାକୁରାଣୀ ସଜାଇଛି । ଜୀଅନ୍ତା ଠାକୁରାଣୀ ମ ! ସଜେଇହୋଇ ନିଜେ ହସିହସି ନଯ୍ୱାନ୍ତ ହେଉଛି । ଆସୁନୁ ଦେଖିବୁ ଜଲଦି । ମୁଁ ତତେ ଡାକିବାକୁ ଲୁଚିକରି ପଳେଇଆସିଛି ।

ଇନ୍ଦିରା କହିଲେ, ହଉ ତେବେ, ତମେ ବି ଆସ, ବଉ ! ପିଲାଟା ଅନୁରୋଧ କରୁଛି । ତାର ସବୁଠୁ ଭାଙ୍ଗନା । ତମର ଟିକିଏ ଡେରି ହେଲେ ହେଉ, ଠାକୁରାଣୀଙ୍କୁ ଚାହିଁଦେଇ ଆସିବ ।

ଆଗେ ଆଗେ ସୁରୂପା, ତା ପଛରେ ଇନ୍ଦିରା, ଶେଷରେ ବଙ୍କିମ ପାହାଚ ଅତିକ୍ରମି ଉପରକୁ ଉଠିଲେ । ସିଡ଼ି ପାଖର ସେହି ଘରେ ପଲଙ୍କ ଉପରେ ଗୋଡ଼ ଲମ୍ବାଇ ନିରୂପା ବସିଛି । ଦ୍ୱାରବନ୍ଧ ଆଡ଼କୁ ପଛକରି ଅନୁପା ତଳେ ଠିଆ ହୋଇ ସାମାନ୍ୟ ନଇଁ ନିରୂପାର ପାଦରେ ଅଳତା ଲଗାଉଛି । ଗତ ରାତିରେ କିଣା ହୋଇଥିବା ଅଳଙ୍କାରଗୁଡ଼ିକ ନିରୂପା ଦେହରେ ଝଟକୁଛି । ସୁନା ଓ ନାନାଜାତି ଷ୍ଟୋନବଡ଼ ରଙ୍ଗିନ ପଥରରେ କମକୁଟ ଆଧୁନିକ ଗହଣା ।

ନିରୂପା ଦ୍ୱାରବନ୍ଧ ଆଡ଼ପାଖେ ସେମାନଙ୍କୁ ଦେଖି, ଗୋଡ଼ ସଙ୍କୁଚିତ କରି କହିଲା, ସେତିକି ଥାଉ । ହେଇଟି, ବୋଉ ଆସିଲାଣି । ଆରେ, ବଉଝିଅ ଆସିଛନ୍ତି ମ ! ଥାଉ—

ଅନୁପା ପଛକୁ ଫେରିଚାହିଁ କହିଲା, ସଇଲା । ସେମାନେ ଆସନ୍ତୁ । କେଡ଼େ ସୁନ୍ଦର ଠାକୁରାଣୀ ପରି ତୁ ମୋ ଆଖିକୁ ଦିଶୁଛୁ, ନିରୁ !

ନିରୁ ପଲଙ୍କ ଉପରେ ସଜାଡ଼ିହୋଇଣୁ କହିଲା, ତୁ ସେମିତି ଦିଶିବୁ, ଅପା ! ତୋ'ର ପସନ୍ଦ ହେଲା ତ ? ନୂଆ ଗହଣା, ତୋ ପାଇଁ କିଣା, ଏଥର ଉତାରିଦେ ।

ଇନ୍ଦିରା ଘରଭିତରକୁ ପଶିଯାଇଥିଲେ । ବଙ୍କିମ ବାହାରେ ଠିଆ ହୋଇ ନିରୂପା ଓ ଅନୁପାଙ୍କୁ ଦେଖୁଥିଲା । ନିରୂପା ଲାଜଲାଜ ହେଉଥିଲା । ଅନୂପା ହସହସ ।

ଇନ୍ଦର ପଚାରିଲେ, ସେତୁ କ'ଣ ନିରୁ ? ନୂଆ ଗହଣା, ତୋ ଅପା ପାଇଁ କଣା ହୋଇଥିଲା । ତୁ କାହିଁକି ପିନ୍ଧିଲୁ ? ତା'ର କ'ଣ ପସନ୍ଦ ହେଲା ନାହିଁ ?

ତାଙ୍କ ମୁହଁରେ ଓ ଭାଷାରେ ବିରକ୍ତି ।

ନିରୁପାର ମୁହଁ ମଉଳିଗଲା । ସେ କହିଲା, ଅପାର ପସନ୍ଦ ହେଲା । ଅପା କହିଲା, ଆଗେ ନିରୁ, ମୁଁ ପିନ୍ଧିଲେ କେମିତି ଦିଶିବ; ତତେ ପିନ୍ଧାଇ ଦେଖିଲେ ସିନା ଜାଣିବ । ନିଜେ ପିନ୍ଧିଲେ କ'ଣ ମୁଁ ନିଜକୁ ଦେଖି ପସନ୍ଦ କରିପାରିବ ? ମୁଁ କେମିତି ମନା କରନ୍ତି ?

ଅନୁପା ହସିହସି କହିଲା, ହଁ ଲୋ ବୋଉ, ସେଇଆ । ଆଇନାରେ ଦେଖିଲେ ଖାଲି ଛୁରତା ଦେଖନ୍ତି । ଦେଖିଲୁ, ନିରୁ କେମିତି ଠାକୁରାଣୀ ପରି ଦିଶୁଛି ! କେଡ଼େ ସୁନ୍ଦର !

ନିରୁପା ଆଖି ଛଳଛଳ କରି କହିଲା, ତୁ ଆହୁରି ସୁନ୍ଦର ଦିଶିବୁ, ଅପା !

ଇନ୍ଦର ଗମ୍ଭୀର ହୋଇ କହିଲେ, ବୁଝିଲି । ସବୁ ଉତାରିପକା । ନୂଆ ଗହଣା, ମୁଁ ଲୁହା ବାକ୍ସରେ ରଖିଦେବି ।

ବିକ୍ରମକୁ ଚାହିଁ କହିଲେ, ତମେ ଏଥର ଯାଅ, ବାବୁ ! ଗାଁକୁ ଯିବାକୁ ତରତର ହେଉଛ । କ'ଣ ଗଣ୍ଡାଏ ଖାଇଦେଇ ଯିବ । ଅପାଙ୍କୁ ମୋର ବହୁତ ବହୁତ କହିବ । ବେଳେ ତାଙ୍କ ପାଖକୁ ନିମନ୍ତ୍ରଣ ଯିବ ଯେ ।

ଅନୁପା ବ୍ୟଥିତ ହୋଇଥିଲା । ବିଦ୍ରୋହ କରିବାକୁ ତାର ମନ ଡାକୁଥିଲା । କ୍ରୋଧକୁ ଆୟତ୍ତ କରି ନ ପାରି ସେ ପଚାରିଲା, କେତେବେଳେ ଆସିଲ କି ବିକ୍ରମଭାଇ ? ଯିବାକୁ ଯଦି ଏଡ଼େ ତରତର, ମୁହଁ ଦେଖାଇବାକୁ ଆସିଲ କାହିଁକି ? କିଏ ତମକୁ ଆସିବାକୁ ନିମନ୍ତ୍ରଣ କରିଥିଲା ? ତମେ ଏବେ ହାକିମ ହେଲଣି ! କଟକ ବଜାରରେ କେଉଁଠି କ'ଣ ଗଣ୍ଡାଏ ଖାଇବାକୁ ତମ ପାଖରେ ପଇସା ନ ଥିଲା ? ଯେଉଁଠି ଆଦର ସ୍ନେହ ନାହିଁ—

କହୁକହୁ ଅନୁପା କନ୍ଦପକାଇଲା । ଝଟ୍‌କିନା ଆଖିରେ ସେ ଚାହିଁରହିଲା ବନମର ମୁହଁକୁ ।

ସ୍ତବ୍ଧ ହୋଇ ସ୍ଥାଣୁ ପରି ଠିଆ ହୋଇ ଇନ୍ଦ୍ରସ ଦେଖୁଥିଲେ ।

ବନମ ଚାହିଁରହିଥିଲା ।

ନିଜ ଅଙ୍ଗରୁ ଗହଣା ଉତାରୁଣୁ ନିରୁପାର ହାତ ଅଟକିଯାଇଥିଲା । ସେ ମଧ୍ୟ ତା'ର ଅପାର ମୁହଁକୁ ଚାହିଁରହିଥିଲା । ଏକା ସେହି ଜାଣେ, ତା'ର ଅପା ସବୁଦିନେ ରାତିରେ କାନ୍ଦୁଛି । ପଚାରିଲେ କହୁଛି, ବାହା ହେବାକୁ ଯାଉଥିବା ଝିଅ ସେମିତି କାନ୍ଦନ୍ତି । ଏପୁର ଛାଡ଼ି, ସେପୁର ଗଲେ ଆଉ କ'ଣ ଦେଖା ହେବ କି ନାହିଁ ? ତୁ ମୋ ସୁନାଭଉଣୀ, ଶୋଇପଡ଼ । କାନ୍ଦୁଛି ବୋଲି ବୋଉକୁ କହିବୁ ନାହିଁ ।

ରାତି ପାହିଲେ ପୁଣି ହସଖୁସି । ସେଇଁ ଅପାକୁ ସେହି ସ୍ନେହମୟୀ ଅପା ।

ଅନୁପା ପଲଙ୍କ ଉପରେ ବସି ନିଜ ହାତରେ ନିରୁପା ଦେହରୁ ଗହଣାସବୁ ଉତାରିବାକୁ ଲାଗିଲା ।

ତଳକ ଖଣ୍ଡେ ସାମାନ୍ୟ ଟାଣି ଇନ୍ଦ୍ରସ ବସିଲେ । କହିଲେ, ତମେ ବି ବସ, ବାବା ! ଅନୁ ମୋର ଅଫିଟ ହୋଇଛି । ତମେ କହ ତ, ଏ ଘରର ଭଣଜା ତମେ, ସୁଖଦୁଃଖ ଅଙ୍ଗରେ ଭେଦାଇଛ, କିଏ କେବେ ତମକୁ ହତାଦର କରିଛି ? ଆସିଲେ ତମେ ଚରଚର ହୁଅ ବୋଲି—

ବନମ ସେମିତି ଠିଆ ହୋଇ କହିଲା, ତୁ ଠିକ୍ କହିଲୁ, ଅନୁ ! ତମମାନଙ୍କୁ ଦେଖିବାକୁ ଆଗ୍ରହ ହେବାରୁ ମୁଁ ଚାଲିଆସିଲି ।

ଇନ୍ଦ୍ରସଙ୍କୁ ଚାହିଁ କହିଲା, ତମର ନିମନ୍ତ୍ରଣପତ୍ର ପାଇବା ଆଗରୁ ମୁଁ ଚାଲିଆସିଲି, ମଉଁ, ତମର ଅବାଧ୍ୟ ହୋଇଛି । ସେଥିପାଇଁ କ୍ଷମା ମାଗୁଛି । ଆଉ କେବେ ସେପରି ଭୁଲ ହେବ ନାହିଁ । ହଉ, ଆସୁଛି ।

ବନମ ଓଳଗି ହେଲା ।

ମୁଣ୍ଡ ଟେକି ଚାହିଁଲା; ଅନୁପାର ଲଜ୍ଜାଭରା ମୁହଁରେ ସ୍ମିତ; ନରୁପାର ଆଖିରେ ବିସ୍ମୟ; ଇନ୍ଦିରା କ'ଣ କହିବେ କହିବେ ହେଉଥିଲେ ପରି, ଓଠ ଦି'ଫାଳ ଥରିଉଠୁଥିଲା ।

ଝଟମ ମୁହଁ ବୁଲାଇ କୋଠରିଭିତରୁ ବାହାରିଆସିଲା ।

ନୂଆ ଗହଣାଗୁଡ଼ିକ ପ୍ଲେଟ ଟିଣବାକ୍ସରେ ଅନୁପା ସଜାଡ଼ି ରଖିଲା । ବାକ୍ସଟି ଟେବୁଲ ଉପରେ ଥୋଇ ଇନ୍ଦିରାଙ୍କୁ କହିଲା, ଭାରି ଚମତ୍କାର । ମୂଲ୍ୟ ବହୁତ ହୋଇଥିବ । ନେ ବୋଉ, ସାଇତି ରଖ । ତୋ'ର ଗହଣା ଯତ୍ନ କରି ରଖିଥା, ଦ୍ବେର ହୋଇପିବ ।

ପଲଙ୍କରୁ ଓହ୍ଲାଇ ଅନୁପା ଟଳଟଳ ହୋଇ ପଦାକୁ ବାହାରିଗଲା ।

ଇନ୍ଦିରା ପଛରୁ ଡାକିଲେ, ଅନୁ !

ମୁହଁ ଫେରାଇ ଅନୁପା ଚାହିଁଲା ।

ଶୁଣ୍, ଅନୁ !

କ'ଣ କହ ।

ଆ, ମୋ ପାଖକୁ ଆ । ମୋ ମାଆଟା !

ଅନୁପା କୋହ ଚାପି ପାଖକୁ ଆସିଲା ।

ବହୁ ଚିନ୍ତା କରି ନରୁପା ମୁହଁ ଖୋଲିଲା, ତୁ କାହିଁକି ଜ୍ୱାଇଁଙ୍କୁ ଆମ ଘରୁ ତଡ଼ିପକାଇଲୁ ବୋଉ ! ସେ କି ଦୋଷ କାହାର କରିଛନ୍ତି ? କେତେଦିନ ପରେ ସେ ଖୁସିରେ ଆସିଥିଲେ । ଆମେ କେତେ ଗପ କରିଥା'ନ୍ତୁ ।

ମୁଁ ତଡ଼ିପକାଇଲି ? ସେ ଯିବାକୁ ତରତର ହେଉଥିଲେ । ସେଇଆ ମୁଁ କହିଲି ।

ସେ କ'ଣ ଏଡ଼ିକି ଓଲୁ ଯେ, ତୋ ବଙ୍କା କଥା ବୁଝିପାରିଲେ ନାହିଁ ? ଆମ ଘରୁ ସେ କ'ଣ କେବେ କିଛି ଦ୍ବେର କରିଥିଲେ କି ? ଆମ ଘରକୁ ସେ ଆସିଲେ ତୁ କାହିଁକି ତାଙ୍କୁ—

ବାଧା ଦେଇ ଅନୁପା ଗର୍ଜିଉଠିଲେ, ନରୁ ! ତୁନ ହ । ବୋଉର ଦୋଷଗୁଣ ବାରିବାର ବୁଦ୍ଧି ତୋ'ର ହେଲାଣି ? ବଜଶ୍ରରଙ୍କି ଏ ଘରୁ ମୁଁ ତଡ଼ିଦେଇଛି । ସେ ଆଉ କେବେ ଆମ ଘରର ଦରଜା ମାଡ଼ିବେ ନାହିଁ । ଅପମାନ ପାଇବାକୁ ନିର୍ଲଜ୍ଜପଣରେ ସେ ମୁହଁ ଦେଖାଇବାକୁ ଆସିଥିଲେ, ଅପମାନ ପାଇ ଗଲେ ।

କାହିଁକି, ଅପା ? ଆମ ବିକଶ୍ରଇ କେଡ଼େ ଭଲ ! ଆମକୁ ସେ କେତେ ଭଲ ପାଆନ୍ତି !

ନରୁପାର ଛଳଛଳ ଆଖି ଓ ପ୍ରଶ୍ନର ଉତ୍ତର ଅନୁପା ଦୁଇଧାର ଲୁହରେ ଦେଲା । ମୁହଁ ନ ଖୋଲି ସେ ପୁଣି ଘରଭିତରୁ ପଦାକୁ ବାହାରି ଠାକୁରଘରଆଡ଼େ ଚାଲିଗଲା ।

ଇନ୍ଦିରା ବିସ୍ମିତ ହୋଇ ବସି ଭାବୁଥିଲେ, ତାଙ୍କର କିଛି ଭୁଲ ହେଲା କି, ଅନ୍ୟାୟ ହେଲା ? ଆପେ ଆପେ ତାଙ୍କର ମୁଣ୍ଡ ଦୋହଲି-ଗଲା । ନିଜକୁ ନିଜେ ସେ ସାନ୍ତ୍ୱନା ଦେଲେ, ସତେ ଠୋକାଠା କମିଆଁ ଜାଣେ । ଚାଲିଗଲା ଭଲ ହେଲା । ଅନୁପା ତାକୁ ତଡ଼ିଦେଇଛି, ଏ କଥା ସେ ବୁଝନ୍ତୁ ।

ମନକର୍ଣ୍ଣ ଦେଇ ନିଗୁଣାବାବୁ ସବୁ ଶୁଣିଲେ ।

ଅପରାହ୍ନ ପାଖେଇ ଆସିଥିଲା । ଆକାଶ ମେଘାଚ୍ଛନ୍ନ । ବିହମର ଉତ୍ସୁକ୍ତ ଓ ବିରକ୍ତ ଭାବ ସେ ତୀକ୍ଷ୍ଣ ଦୃଷ୍ଟିରେ ଲକ୍ଷ୍ୟ କରୁଥିଲେ । ମୁହଁ ଖୋଲୁ ନ ଥିଲେ । ବେଳେବେଳେ କେବଳ ତାଙ୍କର ଚନ୍ଦାମୁଣ୍ଡଟି ହଲାଇ ସାମାନ୍ୟ ହସୁଥିଲେ । ବାମ ହାତରେ ତାଙ୍କର ଦାଢ଼ି ଆଉଁସି ଗମ୍ଭୀର ହୋଇ ସବୁ ଶୁଣୁଥିଲେ ।

ଶେଷକୁ ଆଖି ଛଳଛଳ କରି ବିହମ କହିଲା, ଅନୁପା ବାଧା ଦେଇ-ପାରିବ ନାହିଁ । ହୁଏତ ସେ ଉତ୍ତେଜନାରେ ପାଗଳ ହୋଇ ଆତ୍ମଘାତିନୀ

ଦେବ; ଅଥବା ମନରୁ ସବୁ ଅଶାନ୍ତିକୁ ପୋଛିଦେବ । ଭାବପ୍ରବଣତାକୁ ଦୂରକୁ ଫିଙ୍ଗିବ । ସରଳ ସୁଧାର ଝିଅଟିଏ ହୋଇ ମାଁଙ୍କର କୋଳ ମାଗିବ ।

ନିର୍ଗୁଣା ଶିହରିଉଠିଲେ । କହିଲେ, ଆଉରି ଗୋଟିଏ ସମ୍ଭାବନା ତମର ମନକୁ ଆସୁନାହିଁ । ହୋଟେଲ ମାଲିକ ମୁଁ, ବୁଢ଼ା ବୁଢ଼ୀ, ଟୋକା ଟୋକୀ, ଭଦ୍ର ଅଭଦ୍ର, ସାଧୁ ଅସାଧୁ ସମସ୍ତେ ମୋର ଅତିଥି ହୁଅନ୍ତି । ମୁଁ ସମସ୍ତଙ୍କର ଦରଦୀ ବନ୍ଧୁ । ବିଶ୍ୱାସଭାଜନ । ମୋ ଉପସ୍ଥିତିକୁ ସମସ୍ତେ ଉପେକ୍ଷା କରନ୍ତି । ମନ ଖୋଲି ଅତି ଘୃଣ୍ୟ ଜଘନ୍ୟ ବିଷୟର ଆଲୋଚନା ମଧ୍ୟ ଚଳେ । କାହିଁରେ ମୁଁ ବାଧା ଦିଏ ନାହିଁ । ଆଲୋଚନାରେ ଯୋଗ ଦିଏ ନାହିଁ । ନୀତି ଅନୀତି, କର୍ତ୍ତବ୍ୟ କର୍ମ ବର୍ଜନୀୟ, ବ୍ୟାପାର ବିଷୟରେ ମୁହଁ ଖୋଲେ ନାହିଁ । କାରଣ, ମୁଁ ବେପାରୀ । ତେବେ କାନ ବନ୍ଦ କରି ବସେ ନାହିଁ ତ ! ମୁଁ ସବୁ କଥା ଜାଣେ । ତେଣୁ ସମ୍ଭାବନାକୁ ଅନୁମାନ କରି-ପାରେଁ ।

କି ସମ୍ଭାବନା ?

କୌଣସି ଗୋଟିଏ ଶୁଭସନ୍ଧିର ଶୁଭ ମୁହୂର୍ତ୍ତରେ ତମର ଢେଙ୍କା-ନାଳସ୍ଥ ବାସଭବନର ଦ୍ୱାରରେ କିଏ ଜଣେ ମୃଦୁ କରାଘାତ କରିପାରେ । କିଏ, କିଏ ପଚାରିଲେ ସେ ଉତ୍ତର ଦେବ ନାହିଁ । ଦ୍ୱାର ଯଦି ନିଜେ ମୁକୁଳିବ, ତମେ ତାକୁ ଦେଖିବ । ତମର ବିନା ଯଦି ଦ୍ୱାର ଖୋଲିବ ସେ ସିଧା ସିଧା ଭିତରକୁ ଯିବ, ତମର ଶୟନକକ୍ଷକୁ ।

କିଏ ?

ସେ ଜଣେ ତମର ଚିହ୍ନା ଚିହ୍ନା ସୁନ୍ଦର ତରୁଣ ବନ୍ଧୁ । ସେ ତମର ଶୟନ କକ୍ଷର ଦ୍ୱାର କିଳିବ । ଚକିତ ହେବ କି ? ଚିନ୍ତିତ ହେବ କି ବିକ୍ରମ ବାବୁ, ତମକୁ ସେ ମର୍ଡର୍ କରିବ ? ମୁଣ୍ଡରୁ ଫେଲ୍ଟ ହ୍ୟାଟ୍ ଓ ଦେହରୁ ଓଭରକୋଟ୍ କାଢ଼ି ସେ ତରୁଣ ତଳେ ପକାଇବ । ବିସ୍ମୟରେ ତମେ ଚାହିଁ-ରହିବ ବିସ୍ମିତା ଦେବୀ ! ଦେଖିବ, ସେହି ତମର ପ୍ରିୟବାନ୍ଧବୀ ଅନୁପମା !

ବସନ୍ତ ହସୁଛି ହେଲା । ନାକ ଫଣଫଣ କରି କହିଲା, ମୋତେ ଉପହାସ କରିବାକୁ ଆପଣ ଗୋଟାଏ ରୋମାନ୍ସ ଗଢ଼ୁଛନ୍ତି, ନିର୍ଗୁଣାବାବୁ !

ନିର୍ଗୁଣାବାବୁ ଗମ୍ଭୀର ହୋଇ କହିଲେ, ହଁ, ରୋମାନ୍ସ । ସମ୍ଭବ ବି ହୋଇପାରେ । କିନ୍ତୁ, ସେପରି କିଛି ଘଟିବ ନାହିଁ । ପ୍ରକୃତ ରୋମାନ୍ସଟି ମୁଁ ଆୟୋଜନ କରିବି । ମୋ ସଙ୍ଗେ ତମେ ସେ ଘରକୁ ଚାଲ । ଟେଲିଫୋନ୍ କରି ବୁଝିବା ।

ନିର୍ଗୁଣାବାବୁ ତାଙ୍କର ପୃଥୁଳ ଦେହ ଚେୟାରରୁ ଉଠାଇଲେ । ବେହେରାକୁ ଡାକି ଅଫିସଘରେ ରହିବାକୁ କହିଲେ । ସଂଲଗ୍ନ କୋଠରିକୁ ବସନ୍ତର ହାତ ଧରି ନେଲେ । ଦରଜାକବାଟ ବନ୍ଦ କରି ନିଜେ ଗୋଟିଏ ଚେୟାରରେ ବସି, ବସନ୍ତକୁ ବସିବାକୁ କହିଲେ । ପଙ୍ଖା ଚଳାଇବାକୁ ବସନ୍ତକୁ ନିର୍ଦ୍ଦେଶ ଦେଇ ସେ ଫୋନ୍ ଉଠାଇ ନମ୍ବର କହିଲେ ।

ବସନ୍ତ ଶୁଣିଲା । ସେ ତାର ମାମୁଙ୍କର ନମ୍ବର କହୁଛନ୍ତି । କୁତୂହଳୀ ହୋଇ ଅନାଇଁ ରହିଲା ।

—ନମସ୍କାର, ମୁଁ ନିର୍ଗୁଣା ଚନ୍ଦ୍ରକ, କଳିଙ୍ଗ ହୋଟେଲ ।

—ଭୁବନେଶ୍ୱର ଯାଇଛନ୍ତି ? ହଲୋ—

—ହେଲା । ମୁଁ ହଜାରେ ଲୋକଙ୍କର ଖାନାପିନାର ଦାୟିତ୍ୱ ନେବି । ଆପଣ ନିଶ୍ଚିନ୍ତ ରହନ୍ତୁ । ଆୟୋଜନ କରିବାପାଇଁ ଅନ୍ତତଃ ଚାରିହଜାର ଟଙ୍କା ଦାଦନ୍ ମୁଁ ଚାହେଁ । ସାତଦିନ ଆଗରୁ —, ଏଁ, କ'ଣ କହିଲେ ?

—ହଉ ହେଲା, ଇଚ୍ଛା ଦେବା ! ତିନି ହଜାର ପଠାଇଦିଅନ୍ତୁ । ମୁଁ ରସିଦ୍ ଦେବି । ହଁ, ପରେ ହିସାବ କରାହେବ । ଯେଉଁ ତାଲିକା ଆପଣ ଦେଲେଣି, ସେହି ଅନୁସାରେ ଆୟୋଜନ କଲେ ମିଲ୍ ଗୋଟିକ ପାଞ୍ଚ ଟଙ୍କାରୁ ଊଣା ପଡ଼ିବ ନାହିଁ । ଯେଉଁ ମହଙ୍ଗା କାଳ !

—ମୋତେ ସେ ତାଙ୍କ ଘରକୁ ଡକାଇଥିଲେ । ଚଉଠୀ ରାତିର ଭୋଜି ପାଇଁ କମଳବାବୁ···। ହଜାରେ ଜଣଙ୍କ ପାଇଁ ।···ପ୍ଲେଟ୍ ଧରାଇ-ଦେବେ···। ତିନି ହଜାର ଟଙ୍କା ଯଥେଷ୍ଟ ।

—ସତେଇଶ ତାରିଖ ? ମଝିରେ ମୋଟେ ଦଶଟି ଦିନ ।···ହଇ, ମୁଁ କାଲି ସକାଳେ ନିଜେ ଯାଇ ଟଙ୍କା ନେଇଆସିବି ?···କ'ଣ କହିଲେ ? ଜୟଶ୍ରୀ ଫୋନ୍ କରିଥିଲା ?···କଲେଜ ଛୁଟି । ଶୋଭା ମୋ ଜ୍ୱାଇଁ ପାବନଙ୍କ ସଙ୍ଗେ ପୁଣା ଯାଇଥିଲା । ସେଠାରୁ ସେ ତା'ର ଶାଶୁଘର ଉଦୟଗିରି ଯାଇଥାନ୍ତା । ବେଶ୍ ଧନୀ ଘର । ନାଏକ ଥିଲେ, ଏବେ ପଟ୍ଟନାଏକ ହୋଇଛନ୍ତି । ଖ୍ରୀଷ୍ଟିଆନ୍ ଥିଲେ, ଏବେ ହିନ୍ଦୁ ହୋଇଛନ୍ତି ।

—ଧର୍ମନିରପେକ୍ଷ ରାଷ୍ଟ୍ର । ଯାହାର ଯାହା ରୁଚି, ଯାହାର ଯାହା ଖୁସି···। ବିଶ୍ୱାସ ? ସେଇଟା କ'ଣ ବଦଳିପାରିବ ନାହିଁ ? ସ୍ୱାଧୀନତା ତ ଅଛି ! ସୁବିଧା ଦୃଷ୍ଟିରୁ···। କିଏ ବାଧା ଦେଇପାରିବ ?

— ଆପଣ ତ ପଠାଇବାକୁ ରାଜି ହୋଇଛନ୍ତି, ଅନୁ ଓ ନିରୁ କ'ଣ ମନା କରିବେ ?···ହୋଇଥିବ । ସନ୍ଧ୍ୟା ପୂର୍ବରୁ ଶୋଭା ନିଶ୍ଚୟ ପହଞ୍ଚିବ ।··· କିଏ ସେ, ବସିଷ୍ଠ ?···ଓହୋ, ଜୟଶ୍ରୀର ସାଙ୍ଗ ମିତା ହୋଇଥିବ । ତାକୁ ବି ଜୟଶ୍ରୀ ଡାକିଥିବ । ଆପଣ ବି ଆସନ୍ତୁ ନା —।

—କେବେ ନାହିଁ ?···ଜୟଶ୍ରୀ ନିଜେ ଯିବ, ଡ଼ାକିଆଣିବ । ରାତି ଆଠଟା ବେଳେ ।···ଯୋଶେଫ୍ ଖ୍ରୀଷ୍ଟିଆନ୍, କିନ୍ତୁ ଆପଣ ଜାଣନ୍ତି ଜୟଶ୍ରୀ ନୈଷ୍ଠିକ ହିନ୍ଦୁ । ସବୁ ଦେବଦେବୀଙ୍କୁ ପୂଜା କରେ···।

—ହଉ, ରହିଲି । ନମସ୍କାର ।

ବସିଷ୍ଠ ବିକ୍ରମଙ୍କୁ ହସ ହସ ହୋଇ ଗ୍ରହିଁ ହିରଣ୍ମୟବାବୁ କହିଲେ, ପ୍ରହେଳିକା ପରି ଲାଗୁଛି, ନା ? ଶୁଣ ବିକ୍ରମବାବୁ ! ମୋର ସ୍ତ୍ରୀ ସୁହାସିନୀ ବଞ୍ଚିଥିବା ଯାଏ ଆମର ଦୁଇଟି କୁଟୁମ୍ବ ମଧ୍ୟରେ ବେଶ୍ ଘନିଷ୍ଠତା ଥିଲା । ଅନୁପା ଓ ଶୋଭାଙ୍କ ମଧ୍ୟରେ ସେ ତଫାତ୍ ଦେଖିପାରୁ ନ ଥିଲା । ଉଦୟ ସୁହାସିନୀଙ୍କର ବାନ୍ଧବୀ ଥିଲେ । ତାଙ୍କର ମୃତ୍ୟୁ ପରେ ମୋଟେ ଛଅ ବର୍ଷ ହେଲା ଘନିଷ୍ଠତା କମିଲା । ସମ୍ପର୍କ ତୁଟି ନ ଥିଲା । ମୋର ଝିଅ ତିନିହେଁ ସ୍ୱାଧୀନ ଭାବରେ ଅନ୍ୟ ଧର୍ମ ଓ ଜାତିରେ ନିଜନିଜର ସଂସାର ବାଛିନେଲେ ।

ଆନନ୍ଦଙ୍କ ଘର ସଙ୍ଗେ ସମ୍ପର୍କ ଯୁଡ଼ିବାର କଥା, ଯୁଡ଼ିଲା । ବନ୍ଧୁତା ଓ ଆତ୍ମୀୟତା ତଥାପି ଥିଲା ଓ ଅଛି । ଅନୁପାକୁ ମୁଁ କନ୍ୟା ପରି ଦେଖେଁ । ଜୟଶ୍ରୀ ତାକୁ ସାନ ଭଉଣୀ ପରି ଭଲପାଏ ।

ଏ ସବୁ ମତେ ଜଣା ନ ଥିଲା, ଆଜ୍ଞା !

ଆବଶ୍ୟକ ନ ଥିଲା । ଆପଣଙ୍କ ମାମୁଁଘର ପରି କଟକର ବହୁ କୁଟୁମ୍ବ ସଙ୍ଗେ ମୋର ସେହି ଜାତୀୟ ସମ୍ବନ୍ଧ, ବିକ୍ରମବାବୁ ! ମୁଁ ସେମାନଙ୍କର ଗନ୍ଧନ ବ୍ୟବସାୟର ସହାୟକ । ଜାଣି ରଖିଥାଅ, ମୁଁ ମଧ୍ୟ ବ୍ୟବସାୟ କରେଛି । ଆପଦ ବିପଦର ଜଙ୍ଗଲରେ ମୋର ଲାଭକ୍ଷତି ବିଚାରଣାକୁ ନେଇ ମୁଁ ଆଗକୁ ପାଦ ବଢ଼ାଏଁ । ପାଦ ଚିପି ଚିପି ଅଗ୍ରସର ହୁଏଁ ।

ଆପଣ ଅଦ୍ଭୁତ ଲୋକ, ନିଗୁଣାବାବୁ !

ହୋଇପାରେ । କିନ୍ତୁ, ମୁଁ ଧାନହାଣ୍ଡିରୁ ଗୋଟିଏ । ସାତଚକଟା ପୋତୁଅ ଘଣ୍ଟା । ଶୁଣ ବିକ୍ରମବାବୁ, ଅନୁପା ମୋର କନ୍ୟା ପରି । ପ୍ରକୃତରେ ସେ ତମକୁ ବିବାହ କରିବାକୁ ଚାହେଁ କି ନାହିଁ, ମୁଁ ଜାଣିବାକୁ ଚାହେଁ ।

ବିକ୍ରମ ବିଚଳିତ ହେଲା । ତୁଣ୍ଡରୁ ଗୋଟିଏ ଥରିଲା ଶବ୍ଦ ତା'ର ଖସିଆସିଲା, କିନ୍ତୁ—

ନାସ୍ତିବାଚକ ବିଚାର, ବିକ୍ରମବାବୁ ! କେତେ କେତେ କମ୍ପା-କିନ୍ତୁରେ ସେମାନେ ଭେଳକ ଲଗାଇପାରନ୍ତି । ଅଡୁଆରେ ପଡ଼ିଲେ ନିଜେ ଝୁଣ୍ଟି-ପଡ଼ିବାକୁ ପସନ୍ଦ କରନ୍ତି । ଅନୁପାର ମନକଥା ମୋର କନ୍ୟା ଜୟଶ୍ରୀ ବୁଝିପାରିବ । ତାକୁ ମୁଁ ସବୁ କହିଛି ।

ଜୟଶ୍ରୀ ଦେବୀଙ୍କୁ କହିଛନ୍ତି ?

କହନ୍ତି ନାହିଁ ? ତମେ ମୋର ସହସ୍ର ଗରିହାଙ୍କ ମଧ୍ୟରୁ ମାତ୍ର ଜଣେ । ଭଦ୍ର, ଚରିତ୍ରବାନ୍, ଟିକିଏ ଗବସ୍ଥ । ଅକାଳ-ସକାଳର ଅତିଥି । ହଞ୍ଜୁବାବୁ ମଧ୍ୟ ସେହିପରି ଗରାକ । ତମେ ଗରିବ, ତେଣୁ ମିତବ୍ୟୟୀ ।

ବାଇବେବନ୍ଧୁ ବାବୁ ଧର୍ମର ସନ୍ତାନ, ସେ ବ୍ରହ୍ମଚାରୀ । ଅନ୍ୟ ପରିଚିତ, ଅପରିଚିତ ବନ୍ଧୁମାନଙ୍କ ଚର୍ଚ୍ଚା କରିଗଲା ସମୟରେ ସେ ହାତ ଖୋଲି ଖର୍ଚ୍ଚ କରନ୍ତି । ଭବିଷ୍ୟତର ନିରାପତ୍ତା, ସୁବିଧା-ସୁଯୋଗ ବିଷୟ ସେ ସବୁବେଳେ ବିଚାର କରୁଥାନ୍ତି । ମାପଚୁପ କରି ଆଳାପ କରନ୍ତି ।

ସଞ୍ଜୟବାବୁ ବଡ଼ଖର୍ଚ୍ଚୀ । ତାଙ୍କ ଖରଚରେ ଅନେକ ବନ୍ଧୁ ମଉଜ ଉଡ଼ାନ୍ତି ।

ସେମାନେ ମୋର ଧରାବନ୍ଧା ଟଗର । ଏମାନେ ସମସ୍ତେ ମୋର କନ୍ୟା ଶୋଭା ଓ ମଝିଆଁ ଝିଅ ଶୁଭାଙ୍କୁ ସ୍ନେହ କରୁଥିଲେ । ଏକାଠି ସେମାନେ ଅଭିଯାନ କରୁଥିଲେ । ସେମାନେ ସ୍ନେହ ଉପହାର ଦେଉଥିଲେ । ଶୁଭା ଓ ଶୋଭାଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯାଇଥିଲା; କିନ୍ତୁ ମୋର ସ୍ତ୍ରୀ ଓ ବୁଦ୍ଧିମତୀ ଜୟଶ୍ରୀ ପ୍ରତି ମୁହୂର୍ତ୍ତରେ ସେମାନଙ୍କୁ ସାବଧାନ କରିଦେଉଥିଲେ— ପ୍ରବଞ୍ଚକଙ୍କୁ ସାବଧାନ !

ବିକ୍ରମ ପଚାରିଲା, ସେମାନେ କୁଳ ଛାଡ଼ି ଅକୁଳରେ ବାହାହେଲେ ଯେ ?

ଅକୁଳ କାହାକୁ କହୁଛ ? ସମସ୍ତଙ୍କର କୁଳ ଅଛି । ସବୁ କୁଳ ବଡ଼ । ସେମାନେ ପସନ୍ଦ କଲେ, ସଂସାର କଲେ । ବେଶ୍ ଭଲରେ ଅଛନ୍ତି । ସେମାନଙ୍କୁ କେବେ ଅନୁତାପ କରିବାର ଆମେ ଦେଖିନାହୁଁ । ଆଚ୍ଛା, ତମକୁ ମୁଁ ଜୟଶ୍ରୀ ତରଫରୁ ତା'ର ବନ୍ଧୁମିଳନରେ ଯୋଗ ଦେବାକୁ ନିମନ୍ତ୍ରଣ କରୁଛି, ବସି ତା ଦେଖ ! ମିତା ବି ଆସିବ ।

ବିଗୁଣାବାବୁ ହସିବାକୁ ଲାଗିଲେ ।

ପଚାରିପାରେ କି ମିତା ଦେଖା କିଏ ?

ମିତାକୁ ସମସ୍ତେ ଚହ୍ନନ୍ତି । ତମେ ତାକୁ ଶୁଣିଛ, ଦେଖି ନ ଥିବ । ରେଡିଓ ଆର୍ଟିଷ୍ଟ, ସିନେମା-ଷ୍ଟାର, ଅଭିନେତ୍ରୀ ସୁମିତ୍ରା ! ତାର ଡାକନାମ ମିତା । ଆମ ଯୋଶେଫ୍‌ର ଅଧା-ଭଉଣୀ ।

ବିକ୍ରମ ପଚାରିଲା, ସାବତ ଭଉଣୀ ?

ନିର୍ଗୁଣବାବୁ କହିଲେ, ନା, ନା, ଅଧା-ଭଉଣୀ ! ଯୋଶେଫର ଜନ୍ମର କେଇବର୍ଷ ପରେ, ତା'ର ଜନନୀ ତାର ଜନକ ଅର୍ଥାତ୍ ମୋର ବାଲ୍ୟବନ୍ଧୁ ଆଇଜାକ୍ ମିଶ୍ରଙ୍କୁ ଛାଡ଼ପତ୍ର ଦେଲେ । ପରେ ସେ ମିଶ୍ରେ ଜଣେ ବିଧବାଙ୍କୁ ବିବାହ କରିଥିଲେ । ଆମର ସେହି ଅଧା ସମୁଦୁଣୀଙ୍କର ପ୍ରଥମ ସ୍ୱାମୀଙ୍କର ବର୍ଷଙ୍କର ସୁବର୍ଣ୍ଣପ୍ରତିମା ଝିଅଟିଏ ଥିଲା । ତା'ର ନାମ ସୁମିତ୍ରା ।

ସର୍ବପ୍ରଥମେ ସୁମିତ୍ରା ପହଞ୍ଚିଲା । ଯୋଶେଫ୍ ତାକୁ ସଙ୍ଗରେ ନେଇ ଆସିଥିଲେ । ଶୋଭା ଓ ପାବନବାବୁ ଆସିବେ କି ନାହିଁ ଅନିଶ୍ଚିତ । ନନ୍ଦେଙ୍କୁ ଜୟଶ୍ରୀ ଆୟୋଜନର ଉଦ୍ଦେଶ୍ୟ ଟିକେ ଟିକେ ଗୁପ୍ତରେ ଜଣାଇଲା । ଅନୁରୋଧ କଲା ଯେ, ସୁମିତ୍ରା କୌଣସି ଉପାୟରେ ନିରୁପା ଓ ମେଘଙ୍କୁ ତଳମହଲରେ ଆମୋଦିତ କରି କିଛି ସମୟ ରଖିବ । ଜୟଶ୍ରୀ ଅନୁପାକୁ ସଙ୍ଗରେ ଧରି ଦୋତାଲର ବୈଠକଘରକୁ ଯିବ । ସେଇଠି ସେ ତା'ର ମତାମତ ବୁଝିବ । ପ୍ରକୃତରେ ସେ ଯଦି ବିହମକୁ ବିବାହ କରିବାକୁ ମନସ୍ଥ କରିଥାଏ, ସେ ଫୋନ୍ କରି ନିର୍ଗୁଣବାବୁଙ୍କୁ ଜଣାଇବ ।

ସୁମିତ୍ରା କହିଲା, ମୋର କର୍ତ୍ତବ୍ୟ ଟିକକ ମୁଁ ଦକ୍ଷତାର ସହ ସମ୍ପାଦନ କରିପାରିବି, ଭାଉଜ ! ଅନୁପା ଓ ନିରୁପା ମୋର ଅଚିହ୍ନା ନୁହନ୍ତି । ସେମାନଙ୍କୁ ବିବିଧ ସମାରୋହରେ ମୁଁ ଭେଟିଛି । ସଜାଇଦେଇ ଷ୍ଟେଜ୍ ଉପରକୁ ପଠାଇଛି । ମୁଁ ଗାଇଛି, ସେମାନେ ନାଚିଛନ୍ତି ।

ଜୟଶ୍ରୀ କହିଲା, ମତେ ଅଜଣା ଥିଲା ପରି ତମେ କହୁଛ, ମିତା ! ପିଲା ଦୁଇଟାଙ୍କୁ ମୋର ସାନଭଉଣୀ ଶୋଭା ପରି ମୁଁ ଭଲପାଏ, ଜାଣ ତ ?

କିନ୍ତୁ ଭାଉଜ, ପରଘରର ବ୍ୟାପାରରେ ମଉସା କାହିଁକି ହସ୍ତକ୍ଷେପ କରୁଛନ୍ତି ? ଅନ୍ୟକୁ ପଚାରିବା ଆବଶ୍ୟକ କ'ଣ ? ଯାହାର ଗତି ଅବାଧ, ଧନ ପ୍ରଚୁର, ପୁରୁଷବନ୍ଧୁ ପଣପଣ, ସେ ଯଦି ପ୍ରକୃତରେ ତାର ଘରୁ-ମାଷ୍ଟର ବିହମବାବୁଙ୍କୁ ସ୍ନେହ କରୁଥା'ନ୍ତା, ସେ ତାଙ୍କୁ କେବଠାରୁ

ବିବାହ କରିସାରିଲାଣି । ସନ୍ତୋଷବାବୁଙ୍କ ସଙ୍ଗେ ବିଭାଘରର ଆୟୋଜନକୁ ଏତେଦୂର ଆଗେଇଯିବାକୁ ସେମାନେ ଅପେକ୍ଷା କରିଥାଆନ୍ତେ କାହିଁକି ? ମୁଁ ଭାବୁଛି, ବିଚରା ବିକ୍ରମ-ମାଷ୍ଟରଟି ଗୋଟିଏ ଭାବପ୍ରବଣ ନିର୍ବୋଧ । ସ୍ୱପ୍ନବିଳାସୀ ପାଗଳ । ବିବାହ ପୂର୍ବରୁ ଓ ବିବାହ କାଳରେ କ'ଣ ଗୋଟାଏ ଗଣ୍ଡଗୋଳ ହେବାରୁ ବିକ୍ରମ ଉପୋଟି ଉପୁଜାଇପାରେ, ଏହି ଆଶଙ୍କାରେ ବୁଦ୍ଧିମତୀ ଅନୁପା, ସେହି ନିର୍ବୋଧକୁ ଭୁଆଁ ବୁଲାଉଛି ।

ଜୟଶ୍ରୀ କହିଲା, ତମର ଅନୁମାନ ସତ ହୋଇପାରେ, ମିଛ ବି ହୋଇପାରେ, ମିତା ! ମୁଁ ସେ ବିଷୟରେ ମୁଣ୍ଡ ଖେଳାଇବା ଆବଶ୍ୟକ ମଣିନାହିଁ । ବାପାଙ୍କର ନିର୍ଦ୍ଦେଶ ମୁଁ ପାଳନ କରୁଛି । ତେବେ, ଏତିକି କହୁଛି, ବିକ୍ରମବାବୁଙ୍କର ଠାରିନାମ ଧରି ଫୋନ୍‌ରେ ଯେବେ ଅନୁକୁ କହିଲି ଯେ ବିସ୍ମିତା ଦିଦି ବି ଆସିବେ, ଭେଟ ହେବ, ସେ ଖୁସି ହୋଇ କହିଲା, ଭଲ ହେବ, ମୁଁ ନିଶ୍ଚୟ ଯିବି ।

ସୁମିତ୍ରା ସନ୍ଦେହରେ ପଡ଼ିଲା । ଟିକିଏ ଭାବି ସେ କହିଲା, ଯାହାର ଯାହା ଉଦ୍ଦେଶ୍ୟ ଥାଉ, ପରଘରର ବ୍ୟାପାର ଭିତରକୁ ହାତ ବଢ଼ାଇବା ମୋଟେ ଉଚିତ ନୁହେଁ । ଏହା ମୋର ଦୃଢ଼ ମତ । ପରେ ହୁଏତ ଅନୁତାପ କରିବାକୁ ପଡ଼ିବ । କେତେ ଜଟିଳତା ସୃଷ୍ଟି ହୋଇପାରେ ।

ଜୟଶ୍ରୀ କହିଲା, ସେକଥା ବାପା ବିଚାରିବେ । ତମେ ମେଘା ସଙ୍ଗେ ସମୟ କଟାଉଥାଅ । ମୁଁ ସେମାନଙ୍କୁ ନେଇଆସେଁ । ତମ ଭାଇ ତାଙ୍କ ନୂଆ ଗାଡ଼ିରେ ମତେ ନେଇଯିବେ ।

ଠିକ୍ ରାତି ନଅଟା ସମୟରେ—

ହୋ'ଟେଲର ପାଞ୍ଚନମ୍ବର କୋଠରିରେ ହିଗୁଣାବାବୁ ତାଙ୍କର ବକ୍ତବ୍ୟ ଶେଷ କରୁଥିଲେ ।

—ଶୁଣ ବିକ୍ରମବାବୁ, ସୁତାହାଟରେ ମୋ'ର ସେହି 'ପ୍ରଜାପତି ନିକେତନ'ରେ ସବୁ ପକ୍କା ବ୍ୟବସ୍ଥା କରିହୋଇଛି । ନୂଆ ଏକେମହଲ

କୋଠା । ସୁସଜ୍ଜିତ । ସ୍ୱିଚ୍ ଟିପିଲେ ଆଲୋକମାଳାରେ ବିଭୂଷିତ ହେବ । କେବଳ ଅଗଣା ଭିତରେ । ପ୍ରଶସ୍ତ । ବିଭିନ୍ନ ଢଙ୍ଗର ଆଲୋକରେ ସଜ୍ଜିତ । ବିବିଧ ଜାତିର କ୍ରୋଟନ୍ ଓ ଗୋଲାପଗଛର କୁଣ୍ଡ । ବରକନ୍ୟାଙ୍କ ପାଇଁ ନାନାବିଧ ଢଙ୍ଗର ପୋଷାକ, ଶାଢ଼ି, ମୁକୁଟ, ଅନ୍ୟାନ୍ୟ ଉପକରଣ ଭଡ଼ାରେ ମିଳିବ । ମାଇକ୍ ଓ ରେକର୍ଡ଼ର ବ୍ୟବସ୍ଥା ଅଛି । ମାଗିଲେ ମିଳିବ । ସ୍ୱତନ୍ତ୍ର-ଭଡ଼ା ।

'ପ୍ରଜାପତି ନିକେତନ' ପାଇଁ ଭଡ଼ା—ପ୍ରଥମ ଘଣ୍ଟା ତିରିଶ ଟଙ୍କା, ପରବର୍ତ୍ତୀ ଘଣ୍ଟାମାନଙ୍କ ପାଇଁ ପ୍ରତି ଘଣ୍ଟାକୁ କୋଡ଼ିଏ । ଆମର ସହକାରୀ ମ୍ୟାନେଜର ସୌନ୍ଦର୍ଯ୍ୟ ମିଶ୍ର ନିକେତନର ଦାୟିତ୍ୱରେ ରହନ୍ତି । ପାଉଣା ଅଗ୍ରିମ ଦେୟ । ଆଗରୁ ବ୍ୟବସ୍ଥା ନ କଲେ, ସୁବିଧା ନ ମିଳିପାରେ । କର୍ତ୍ତା ଯୋଗାଡ଼ କରିବାକୁ ହେବ । ଦୁଇ କର୍ତ୍ତାଙ୍କୁ ମିଶାଇ, ଦୁଇ ପୁରୋହିତ, ଭଣ୍ଡାରୀ, ଭଣ୍ଡାରୁଣୀ, ଶଙ୍ଖୁଆ ଇତ୍ୟାଦି ସବୁ ଭଡ଼ାରେ ମିଳିବେ । ଆମର ଧରାବନ୍ଧା, ଶିକ୍ଷିତ, ଅଭିଜ୍ଞ ଲୋକେ ଅଛନ୍ତି । ଫିକ୍ସଡ୍ ରେଟ୍ । ସୌଭାଗ୍ୟବାବୁ ସେଥିପାଇଁ ମଧ୍ୟ ଅଗ୍ରିମ ନେବେ ।

କେତେ ଘଣ୍ଟା ଭିତରେ ଶୁଭକାର୍ଯ୍ୟ ସମାପନ କରାହେବ, ତାହା ଜାଣିଲେ ପଣ୍ଡିତଶେଖର ଦୁହେଁ ତାର ବ୍ୟବସ୍ଥା କରିବେ । ସମୟ-ସୀମାକୁ ଦୃଷ୍ଟି ରଖି, ବହୁ ଗବେଷଣା ପରେ କେତେ ସେଟ୍ ନିର୍ଭୁଲ ଶାସ୍ତ୍ରାନୁମୋଦିତ କର୍ମ-କର୍ମାଣୀ ଟେପ୍-ରେକର୍ଡ଼ିଂ କରାହୋଇଛି । ପ୍ରତ୍ୟେକ ସ୍ୱୟଂ-ସମ୍ପୂର୍ଣ୍ଣ ।

କୌଣସି ମନ୍ଦିରରେ, ଠାକୁର ଠାକୁରାଣୀଙ୍କ ଆଗରେ ବିଭାଘରରେ ଆହୁରି ଅଳ୍ପ ସମୟ ଲାଗିବ । ଅତି ଅଳ୍ପ ବ୍ୟୟରେ ହୋଇପାରିବ ।

ଯାହାର ଯେପରି ରୁଚି, ବିକ୍ରମବାବୁ, ଯାହାର ଯେପରି ଆଗ୍ରହ । ଆଉ ଗୋଟିଏ କଥା ମୁଁ ସ୍ପଷ୍ଟ ଭାବରେ କହିଦେଇଥାଏଁ । ସମସ୍ତଙ୍କ ପାଇଁ ମୁଁ ସୁବ୍ୟବସ୍ଥା କରିଦେଇଛି, କିନ୍ତୁ ମୁଁ କାହିଁରେ ନିଜେ ସମ୍ପୃକ୍ତ ହେବାକୁ ଚାହେଁ ନାହିଁ । ଯେଉଁମାନେ ବିବାହ କରିବେ, କର୍ତ୍ତା ହେବେ, ଭଲମନ୍ଦର

ଦାୟିତ୍ୱ ସେମାନଙ୍କର । କୌଣସି କାରଣରୁ ବାହାଘର ହୋଇ ନ ପାରିଲେ ଅଗ୍ରିମ-ଦାଦନ ଫେରସ୍ତ ଦିଆଯାଏ ନାହିଁ । ସୌଭାଗ୍ୟବାବୁ ଯେଉଁ ରସିଦ୍ ଦେବେ, ସେଥିରେ ଏହା ସ୍ପଷ୍ଟ ଉଲ୍ଲେଖ କରାହୋଇଛି ।

ସ୍ୱତମ ମନଦେଇ ଶୁଣୁଥିଲା ।

ବେହେରା ଆସି ଖବର ଦେଲା, ଜୟଶ୍ରୀ ଦିଦି ଫୋନ୍‌ରେ କହିଲେ, ସେମାନେ କେତେବେଳୁ ଆସିସାରିଲେଣି । ଦିଦି ଆପଣଙ୍କୁ ଓ ଆଉ କେଉଁ ଦିଦିଙ୍କୁ, ନାଁଟି ଭୁଲିଗଲି ଆଜ୍ଞା, ଡାକୁଛନ୍ତି ।

ଖୁସି ହୋଇ ନିର୍ଗୁଣାବାବୁ କହିଲେ, ଅଚ୍ଛା, ତୁ ଯା, ଡ୍ରାଇଭରଙ୍କୁ କହ, ଗାଡ଼ି ପୋର୍ଟିକୋକୁ ଆଣିବେ ।

ନମସ୍କାର କରି ବେହେରା ପ୍ରସ୍ଥାନ କଲା ।

ନିର୍ଗୁଣା ଚଳିକ କହିଲେ, ପାଞ୍ଚମିନଟ୍ ମଧ୍ୟରେ ପ୍ରସ୍ତୁତ ହୋଇ ତମେ ତଳକୁ ଆସ, ସ୍ୱତମବାବୁ ! ମୋର ଯାହା ବୁଝିବାର ଥିଲା, ମୁଁ ବୁଝି ସାରିଲିଣି । ଆମର କୋଠା ଉପରେ ତମେ ଦିହେଁ ଦଶମିନଟ୍ ଆଲୋଚନା କରିବ । ଉଭୟେ ନିଃସଂକୋଚରେ ଦୋ'ମାହାଲକୁ ମୋର ବୈଠକୀ ଘରକୁ ଆସିବ । ସେତିକି ଯଥେଷ୍ଟ । ମୁଁ ଆଶୀର୍ବାଦ କରିବି । ତା'ପରେ ଆୟୋଜନର ବ୍ୟବସ୍ଥା । ସେତକ ତମ ଦୁହିଁଙ୍କର ଦାୟିତ୍ୱ ।

ନିରୁପା ଆସି ନ ଥିଲା, ଆସିଥିଲା ସ୍ୱରୂପା ।

ବନହଂସୀ ଯେସ୍‌ମିନ୍‌ଙ୍କୁ ସଙ୍ଗରେ ନେଇ ଆନନ୍ଦଙ୍କ ଘରେ ଆସି ପହଞ୍ଚିଥିଲେ । କେତେଖଣ୍ଡି ମୂଲ୍ୟବାନ୍ ଆଧୁନିକ ରୁଚିଅନୁରୂପ ଶାଢ଼ି, ଅନୁପା ଦେହକୁ ମାନିଲା ପ୍ରକାରେ ଜୟ କରିବାର କଥା । ସେ ଦିଗରେ ଯେସ୍‌ମିନ୍‌ଙ୍କର ଭଲ ଧାରଣା ଅଛି । ଜଣକୁ ଦି'ଜଣ ଦେଖିବା ଭଲ । କେବଳ ଯେସ୍‌ମିନ୍ କାହିଁକି, ବନହଂସୀଙ୍କୁ ବି ରାମକୁମାରବାବୁଙ୍କ ଦୋକାନକୁ ଯିବାକୁ ଇନ୍ଦିରା ଅନୁରୋଧ କଲେ ।

ନିରୁପା ଓ ସାନନ୍ଦ ତାଙ୍କ ସଙ୍ଗେ ଯିବାକୁ ଅଳି କଲେ । ଇନ୍ଦ୍ର ଆପତ୍ତି କଲେ ନାହିଁ ।

ଜୟଶ୍ରୀ ସଙ୍ଗରେ ଅନୁପା ଓ ସୁରୁପାକୁ ପଠାଇଦେଇଥିଲେ ।

ନିରୁପାର ନିଦ ଭାଙ୍ଗିଲା, ସପନ ଛୁଟିଲା । ସେ କାନ ପାରିଲା । ଅନ୍ଧାରିଆ ମଶାରି ଭିତରେ ଅନୁପା ଚୁନ ଚୁନ କାନ୍ଦୁଛି । କୋହକୁ ଚାପି ରଖିବାକୁ ଚେଷ୍ଟା କରୁଛି । ରାତି କେତେ ହେଲାଣି କେଜାଣି !

ନିରୁପା ହାତ ଲମ୍ବାଇ ଅନୁପାର ମୁହଁ ଦରାଣ୍ଡିଲା । ଆଖିରେ ଲୁହ ।

ଅନୁପା ମୁହଁ ବୁଲାଇନେଲା ।

ଅପା, ତୁ କାନ୍ଦୁଛୁ କାହିଁକି ?

ତୋ'ର ପାଇଁ, ନିରୁ !

ମୁଁ ତୋ'ର କି ଦୋଷ କରିଛି ?

ବାରମ୍ବାର ତୋତେ ମୁଁ ନିର୍ଜନରେ କାନ୍ଦିବାର ଦେଖୁଛି । ଅନ୍ୟମାନଙ୍କ ପାଖରୁ ତୁ ତୋର ମନର ବେଦନା, ଆଖିର ଲୁହ ଲୁଚାଇ-ପାରିଛୁ ନିରୁ, ମୋ ପାଖରୁ ସେତକ ତୁ ଲୁଚାଇପାରନ୍ତୁ କପରି ?

ମତେ ଛାଡ଼ି ମୋର ଅପା ପରଘରକୁ ଯିବ, ମତେ କାନ୍ଦ ମାଡ଼ିବ ନାହିଁ ? ଆପେ ଆପେ କାନ୍ଦହୋଇଯାଏ ତ—

ସତେ, ମୁଁ ପରଘରକୁ ଯାଉଛି । ସମସ୍ତଙ୍କର ସବୁ ମାୟାର ଡୋର ଛିଣ୍ଡାଇ ମୁଁ ଚାଲିଯିବି । ମୋ ଆଖିରୁ ଆପେ ଲୁହ ଝରିବା ତ ସ୍ୱାଭାବିକ । ନୁହେଁ କି ନିରୁ ?

ନିରୁପା ନିରୁତ୍ତର ରହିଲା ।

ଟିକିଏ ଅପେକ୍ଷା କରି ଅନୁପା ପଚାରିଲା, ମୁଁ ସଞ୍ଜୟବାବୁଙ୍କୁ ବିବାହ କଲେ ତୁ କ'ଣ ସୁଖୀ ହେବୁ ? ତୋର ମନ ଖୋଲି ମତେ ତୁ କହିପାରିବୁ ? ସୁନା ଭଉଣୀଟା !

ଅପା !

ନରୁପା କ'ଣ କହିବାକୁ ଯାଉଥିଲା, କହିପାରିଲା ନାହିଁ । ଅନୁପାର କୋଳରେ ମୁହଁ ଲୁଚାଇ କହିଁ କହିଁ ହୋଇ କାନ୍ଦିବାକୁ ଲାଗିଲା । ଆଖିରୁ ଲୁହ ଝରାଇ ଅନୁପା ତାର ପିଠି ଆଉଁସିଲା । ନରୁପା ଟିକିଏ ପ୍ରକୃତିସ୍ଥ ହେଲାରୁ ଅନୁପା କହିଲା, ତୁ ତୁନି ହ, ନରୁ ! ମୁଁ ସବୁ ଜାଣିଛି । ମୁଁ ଜାଣେ ବୋଲି ସଞ୍ଜୟବାବୁଙ୍କୁ ଅଜଣା ନୁହଁ । ତଥାପି, ସେ ନିର୍ଲଜ୍ଜ ନିଜେ ପ୍ରତିବାଦ କରୁ-ନାହାନ୍ତି ।

ତୁ ପ୍ରତିବାଦ କରୁନାହୁଁ ?

ତୁ ଜାଣୁ ନରୁ, କେତେଥର ମୁଁ ମନା କରିଛି । ବୋଉ ମତେ ତା' ପାଖରୁ ଦୂରେଇଦେବାକୁ ପଣ କରିଛି । ତା'ର ଧନ ଅଛି, ସେ ଜୋଇଁଟିଏ କିଣିବାକୁ ପ୍ରଚୁର ଧନ ଦେଇପାରିବ । ନିଜର ସମ୍ମାନ ରକ୍ଷା କରିବାକୁ ଅଜସ୍ର ଧନ ବ୍ୟୟ କରିବ । ଝିଅର ମନ ବୁଝି ମଧ୍ୟ ସେ ଜାଣି ଜାଣି ବୁଝିବାକୁ ଚାହୁଁନାହିଁ ।

ଅପା, ବାପାଙ୍କର ଏବେ ଆର୍ଥିକ ଦୁରବସ୍ଥା ସତ୍ତ୍ୱେ ସେ ତୋ' ପାଇଁ ଯେଉଁସବୁ ଗହଣା ଓ ଶାଢ଼ି କିଣିଆଣିଛି, ତୁ ଦେଖିଛୁ ତ ? ତତେ ସେ ଏତେ ଅଧିକ ଭଲ ପାଏ ଯେ, ନିଜେ ଦରିଦ୍ର ହୋଇ ତତେ ସେ ସବୁ ଦେବାକୁ ଚାହେଁ । ଦେବ ବି ।

ତୋ'ର ଈର୍ଷା ହେଉଛି ?

ମୋ'ର କାହିଁକି ଈର୍ଷା ହେବ ? ବୋଉକୁ ତୁ ନିନ୍ଦୁଛୁ ବୋଲି ମୁଁ କହିଲି ।

ନରୁ, ମୋର ମୂଲ୍ୟବାନ ଗହଣା, ଚକଚକ ମୂଲ୍ୟବାନ ଶାଢ଼ି ଲୋଡ଼ା ହେବନାହିଁ । ସବୁ ତୋ'ର ପାଇଁ ରହିବ । ଯେମିତି ମୁଁ ଲୁଙ୍ଗୁଳା ହୋଇ ଜନ୍ମ ହୋଇ ଏ ଘରେ ବଢ଼ିଥିଲି, ସେମିତି ମୁଁ ଲୁଙ୍ଗୁଳା ହୋଇ ଏ ଘରୁ ଚାଲିଯିବାକୁ ପସନ୍ଦ କରିବ ।

ତୁ ଏମିତ କ'ଣ କହୁଛୁ ଲୋ ଅପା ! ସତେ, ତୁ ପାଗଳ ହୋଇଛୁ ? ସୁରୂପା କହୁଥିଲା, ଜୟଶ୍ରୀ ଅପାଙ୍କ ଘରକୁ ବଳଭଇ କୁଆଡ଼େ ନିମନ୍ତ୍ରିତ ହୋଇ ଆସିଥିଲେ । ସେ ତାଙ୍କ ଗାଁକୁ ଯାଇନାହାନ୍ତି ?

ନା, ଯାଇନାହାନ୍ତି । ମୋ' ସଙ୍ଗେ ଦେଖା ହୋଇଥିଲା । କଥାଭାଷା ହୋଇଥିଲା ।

ତୋର ସେ କଥା ଠିକ୍ ଅନୁମାନ କରିଥିଲା, ଅପା ! ବଳଭଇଙ୍କ ନାମ ପଡ଼ିବାରୁ ସେ ରାଗରେ ଜଳିଗଲା, ଅପା ! କହିଲା, ଚଳିପଣା ଟୋକା ଘୁଲ ପରି ପଛେ ପଛେ ଗୋଡ଼ାଉଛି । ପୁଣି ସେ ତୋର ମୁଣ୍ଡ ବିଗାଡ଼ିଦେବ । ଶୋଭା ତ ଆସିନାହିଁ, ତା ନ ମରେ ଜୟଶ୍ରୀ ଏଇଥିପାଇଁ ଜଳଖିଆ ଡାକରା କରି ନେଇଥିଲା କାହିଁକି ? କାଲି ତାକୁ ପାନେ ଦେଉଛି ରହ ।

ଅନୁପା କରି କରି ହସିଲା । ପଚାରିଲା, ସେ କାହାକୁ ପାନେ ଦେବ ? ବଳଭଇ, ଜୟଶ୍ରୀ ଅପା, ନା ମତେ ? ନିରୁ ଲୋ, ବଳଭଇଙ୍କ ପ୍ରତି ତା'ର ଘୃଣା, ଆକ୍ରୋଶ ବ କୁହାଯାଇପାରେ, ତା'ର ମୁଣ୍ଡକୁ ଗୋଳମାଳ କରି-ଦେଇଛି । ଯାହା ସେ ନିଜେ ଭିଆଣ କରିଛି, ତାର ପ୍ରଭାବ ସେ ଆଜି ସହି-ପାରୁ ନାହିଁ । ଯାହା ସତ୍ୟ, ତାକୁ ସେ ଦେଖିଛି, ବୁଝିଛି । ତା'ର ବୀଜ ସେ ନିଜେ ତ ବପନ କରିଛି !

ତମ ଦୁହିଁଙ୍କୁ ସେ ଏକାଠି ଦେଖିବାକୁ ଚାହେ ନାହିଁ ।

ହଁ, ସେ ସନ୍ଦେହ କରେ, ନିରୁ ! କାହିଁକି ବଳଭଇ ଉପରେ ତା'ର ଏତେ ରାଗ ? ହଇଲୋ ନିରୁ, ଆମେ ନାହିଁ ନାହିଁ କଲେ ମଧ୍ୟ ତାର କେଉଁ ସ୍ୱାର୍ଥ ସାଧନ ପାଇଁ ଆମକୁ ନର୍ତ୍ତକୀ ବେଶରେ ସଜାଇ ଅନ୍ୟମାନଙ୍କ ସଙ୍ଗରେ ଯିବାକୁ ଛାଡ଼ିଦିଏ ? ବଡ଼ବଡ଼ଆଙ୍କର ଗେହ୍ଲା ହେବାକୁ, ତାଙ୍କ ମନ ଖୁସି କରିବାକୁ ତାଙ୍କ ଆଗରେ ନାଚ କରିବାକୁ ପ୍ରବର୍ତ୍ତାଏ ? ହନୁହିନ ନିଜେ ସେ ପିଲାଙ୍କ ପରି ହୁଏ ? ଔଷଧ ଛଳରେ ମଦ ଖାଏ ? ମୁଁ କେବେ କେବେ ଭୁଝିଛି ଯେ । ମୁଁ ଜାଣେ, ତୁ ବି ବୁଝିଛୁ ।

ଲାଜ ମାଡ଼ୁଛି ଲୋ ଅପା ! ଆଜି ସେ କଥା ତୁ କହ ନା । ମନେ-ପକା ନା । ଏବେ ତ ଆଉ ସେଗୁଡ଼ା କେହି ଘୁଖୁନାହାନ୍ତି । କେଜାଣି, ଦେହ କସମସ ହେଲେ ବାପା ଯଦି କେବେ ବୋଉଠାରୁ ମାଗି ଟିକିଏ ଖାଉଥିବେ । ସାଙ୍ଗମାନଙ୍କ ପାଇଁ ଦାମିକା ବିଲାତି ଚିଜ କେଇ ବୋତଲ ବୋଉ ଗୋଟାଏ ଗଡ଼ରେଜ୍ ଆଲ୍‌ମାରିରେ ରଖିଛି । ତା'ର ପାଖେ ପାଖେ ଚାବି । ବାପା ବିବାଦ କଲେ ସେ ଦିଏ । ନ ଦେଲେ କୁଆଡ଼େ କେଉଁ ସବୁ କାମ ଭଣ୍ଡୁର ହୋଇଯିବ ।

ତୁ ଏତେ କଥା ଜାଣୁଛି ନିରୁ ? ବୋଉ ଯଦି ତା'ର ଅଭ୍ୟାସ-ଦୋଷରୁ ଟିକିଏ ଛାଡ଼ି ଦେଉଥିବ ?

ନାଇଁ ନାଇଁ ଅପା ! କେତେ ଠାକୁରଙ୍କୁ ସେ ପୂଜା କରୁଛି । ବାବାମାନଙ୍କ ଫଟୋ ତଳେ ମୁଣ୍ଡିଆ ମାରି ଭୂଷ୍ଟୁଭୂଷ୍ଟୁ ହୋଇ ପ୍ରାର୍ଥନା କରୁଛି ।

ତୋ' କଥା ସତ ହୋଇଥିବ । ମୁଁ କାହିଁକି ପ୍ରତିବାଦ କରିବି ? ଠାକୁରମାନେ, ବାବାମାନେ, ମହର୍ଷିମାନେ ତାକୁ ସୁବୁଦ୍ଧି ଦେବେ । ଆଲୋ ନିରୁ, ଯେତେ ଭଲ ମଣିଷ ହେଲେ ବି, ତା ଭିତରେ କେଉଁଠି ଦୁର୍ବଳ-ପଣିଆ ଲୁଚି ରହିଥାଏ । ବେଳେ ବେଳେ ସେହି ଦୁର୍ବଳତା ପଶୁତ୍ୱକୁ ବଳ-ପଡ଼େ । ଅଦମ୍ୟ, ଅଣାୟତ୍ତ ।

କାହିଁକି ଏପରି କହୁଛୁ ?

ସଞ୍ଜୟବାବୁ କ'ଣ ଜାଣନ୍ତି ନାହିଁ ଯେ, ତୁ ତାଙ୍କୁ ମନପ୍ରାଣ ଦେଇ ଭଲ ପାଉ ? ସେ କ'ଣ ଜାଣନ୍ତି ନାହିଁ ଯେ, ତୁ ବିଶ୍ୱାସ କରୁ, ସେ ବି ତୋତେ ଜୀବନରୁ ବଳି ଭଲପାଆନ୍ତି ?

ଅପା ! ତୁ ଆଉ କହ ନା । ତତେ···ତତେ ମୋ ରାଣ ।

ସେହି ଅନ୍ଧାର ରାତିରେ ମଶାରି ତଳେ ନିରୁପା ତାର ସ୍ନେହମୟୀ ଅପାର ଉନ୍ନତ ବକ୍ଷୋଜ ଭିତରେ ମୁହଁ ଲୁଚାଇ ସକାଇବାକୁ ଲାଗିଲା । ମୌନ ଅନୁପାର ଆଖିରୁ ପୁଣି ଦୁଇ ଧାର ତତଲା ଲୁହ ଝରିଆସିଲା ।

ମାତ୍ର ଛଗୋଟି ବର୍ଷ ସେ ନିରୁପାଠାରୁ ବଡ଼ । କିନ୍ତୁ ଦୁନିଆର ଲୋକଙ୍କ ଚଳଣିର ଦାମ୍ପତି ଅପଶ୍ରୀତ ଢଙ୍ଗର ବାରମ୍ବାର ସମ୍ମୁଖୀନ ହୋଇ ଦେହର ବୟସ ତୁଳନାରେ ତାର ମନର ବୟସ ଦଶଗୋଟି ବର୍ଷ ଆଗେଇ-ଯାଇଛି ।

ସେ ନିରୁପାର ପିଠିରେ ହାତ ବୁଲାଇ କହିଲା, ଜାଣୁଛୁ କାହିଁକି ? ଶୁଣ୍ ମୁଁ ଯାହା କହୁଛି । ଦିନ କେଇଟା ପରେ ବାହାଘର । ପରଘରକୁ ଚାଲିଯିବୁ । ତୁ ବି ପରଘରକୁ ଯିବୁ । ସେଠାରେ ସଂସାର ଯିଏ କରିବ । କି ସମ୍ପର୍କ ବା ରହିବ ? କେଣିକି ଭଦ୍ରତାର ସ୍ନେହ । ହଁ, ଭଦ୍ରତାର । ନିଜ ନିଜ ସ୍ୱାର୍ଥର ଆଳାପ ଆଲୋଚନା । ମନତଳେ ଲୁଚକାଳି ଖେଳୁଥିବା ଈର୍ଷାର ବି ହୋଇପାରେ । ମନ ଖୋଲି କହିବାର ସୁଯୋଗ ଜୀବନରେ ଆଉ ମିଳିବ ନାହିଁ । ସ୍ୱାଧୀନ ଭାବରେ, ନିର୍ମଳ ମନରେ ଜଣକ ପାଇଁ ଆଉ ଜଣକର କିଛି କରିବାର ସୁଯୋଗ ବି ମିଳିବ ନାହିଁ । ନିରୁ, ଶୁଣ୍ ମୁଁ ଯାହା କହୁଛି ।

ନିରୁ ମଥା ଦୁଲାଇଲା ।

ଅନୁଗା କହିଲା, ସଞ୍ଜୟବାବୁ ସବୁ ଜାଣନ୍ତି । ସେ ଏ ବିଭାଘରରେ ପ୍ରତିବାଦ କରିନାହାନ୍ତି । ତୋତେ ସେ ଠକିଦେବାକୁ ଚାହାନ୍ତି । ମୋତେ ବିବାହ କରି ମୋ ଉପରେ ସେ ଆକ୍ରୋଶ ସାଧିବାକୁ ପଣ କରିଛନ୍ତି । ସେହି ମୋ ନାମରେ ଦୁର୍ନାମ ରଟାଇଥିଲେ । ଜାଣୁ କି ?

ଖିନ୍ନଜଡ଼ିତ କଣ୍ଠରେ ନିରୁପା କହିଲା, ମୋ ଆଗରେ ସେ ଗୁପ୍ତରେ କହୁଥିଲେ, ଅପା ! ଲଜ୍ଜାରେ, ଡରରେ ମୁଁ କେବେ ପଚାରିଲି ନାହିଁ । କାହିଁକି ସେ ଦୁର୍ନାମ ରଟାଇଲେ ?

ନିରୁ, ସେଥିକି ମୋ'ର ଭାବନା ନ ଥିଲା । ଯାହା ସତ୍ୟ, ତାହାହିଁ ସେ ପ୍ରକାଶ କରିଥିଲେ । ମୋତେ ପାଇବାକୁ, ମୋର ଦେହଟାକୁ କଳଙ୍କିତ କରିବାକୁ ବାରମ୍ବାର ଚେଷ୍ଟା କରି ସେ ବିଫଳ ହୋଇଥିଲେ । ସେ ଭାବି-ଥିଲେ, ମୋ'ର ଓ ବିକାଶଭାଇଙ୍କର ଏକାଠି ଗମନାଗମନକୁ ହାତର ପାଞ୍ଚ କରି ସେ ମୋତେ ପାଇପାରିବେ । ବୋଉର ବୋଧହୁଏ ଉଦ୍ଦେଶ୍ୟ ଥିଲା ଯେ, ସେପରି

କହୁ ଘଟାଇପାରିଲେ ବାଧ୍ୟ ହୋଇ ସେ ମୋତେ ବିବାହ କରିବେ । ବୋଉ ଭଲ କୋଇଁଟିଏ ପାଇବ ।

ଶେଷକୁ ତାହାହିଁ ତ ହେବ ଲୋ, ଅପା !

ହେବ, ନିଶ୍ଚୟ ହେବ । ମୋ ସଙ୍ଗେ ସଞ୍ଜୟବାବୁଙ୍କର ବାହାଘର ସ୍ଥିର ହେବାର ବହୁଦିନ ପରେ, ସେ ଯେଉଁ ଚିଠିଖଣ୍ଡିକ ଠାରଭାଷାରେ ସୁନ୍ଦରଗଡ଼ରୁ ତୋ ପାଖକୁ ନିର୍ଲଜ୍ଜପଣରେ ପଠାଇଥିଲେ—

ତାକୁ ତୁ ରଖିଛୁ ଅପା !

ଭୟ କର ନା । ତାକୁ ମୁଁ ରଖିଛି । ଖାଲି ସେତିକି ନୁହେଁ, ତା'ର ଉତ୍ତର ବି ମୁଁ ତାଙ୍କୁ ଲେଖିଦେଇଛି ।

ନିରୁପାର ଚିତ୍ତ ଥରଥର ହୋଇ କମ୍ପିବାକୁ ଲାଗିଲା । ସେ କୋହ ସମ୍ଭାଳି ନ ପାରି କହିଁ କହିଁ ହୋଇ କାନ୍ଦିଉଠିଲା ।

ଅନୁପା କହିଲା, ତୁ ଅସ୍ଥିର ହ ନା, ଶୁଣ୍ । ତାଙ୍କ ଚିଠି ମୁଁ ପଢ଼ିଛି । ବୁଝିଛି । ତୁ ମୋର ସାନ ଭଉଣୀ, ଗେହ୍ଲା ଭଉଣୀ । ତତେ କଳଙ୍କିନୀ ହୋଇ ବଞ୍ଚି ରହିବାକୁ ମୁଁ ପସନ୍ଦ କରିବି ? ସଞ୍ଜୟବାବୁ ମତେ ବିବାହ କରିବେ, ତୁ ହେବୁ ତାଙ୍କର ଉପପତ୍ନୀ ?

ନିରୁପା ଅସ୍ଥିର ହୋଇ ଉଠି ବସିଲା । କାନ୍ଦଣା ସ୍ୱରରେ କହିଲା, ମୁଁ ମରିବି ଅପା, ଯେମିତି ହେଲେ ନିଶ୍ଚୟ ମରିବି !

ଅନୁପା ମଧ୍ୟ ଉଠି ବସିଲା । ନିରୁପାର ହାତଟିଏ ଧରି ସେ ଗେହ୍ଲେଇ କହିଲା, ହଇଲେ ବାଇଆଣୀ, ମୁଁ ଜାଣିଲିଣି ବୋଲି ତୁ ଆତ୍ମଘାତିନୀ ହେବୁ ? ମୁଁ ଜାଣି ନ ଥିଲେ, ତୁ ମୋର ସାନଭଉଣୀ, ମୋର ଅଜ୍ଞାତରେ ତାଙ୍କର ଉପପତ୍ନୀ ହୋଇ ରହିଥାନ୍ତୁ ? ଓଲମ୍ପି ଟୋକି ! ଆତ୍ମହତ୍ୟା ଯଦି କରିବାକୁ ପଡ଼ିବ, ସେ କରିବେ, ସଞ୍ଜୟବାବୁ ! ସବୁ ଅବିବେକୀ କାମର ସୀମା ଅଛି । ସେ ସୀମା ଲଙ୍ଘନ କଲେ । ଦଇବ ସହିପାରିବ ନାହିଁ । କେତେ ନିରାହ

ଜୀବନ ସଙ୍ଗେ ସେ ଖେଳିସାରିଲେଣି । ଆଉ ସେ ଖେଳିପାରିବେ ନାହିଁ । ମୋର ଛଟିଛଣ୍ଡି ପାଇ ହୁଏତ ସେ ଅନୁତାପ କରିବେ । ଭଲ ମଣିଷ, ନିର୍ମଳ ନିଷ୍କଳଙ୍କ ପୁରୁଷ ହେବେ । ନେ ହୁଲେ, ନିଜର ଶେଷ ନିର୍ବୋଧ ବଡ଼ିମା ଦେଖାଇବାକୁ ଆତ୍ମହତ୍ୟା କରିବେ ।

ମୁଁ କାହିଁକି ସେ ଦୁଃସମ୍ବାଦ ଶୁଣିବାକୁ ବଞ୍ଚିରହିବି ? ବରଂ ଅପା, ତା ଆଗରୁ ମୁଁ —

ସେତିକି କହିଥା ନିରୁ ! ତୋ ମୁହଁରୁ ଯାହା ମୁଁ ଶୁଣିବାକୁ ମିଛର ସାହାଯ୍ୟ ନେଉଥିଲି, ସେତକ ମୁଁ ଶୁଣିସାରିଲିଣି । ତୋ'ର ହୃଦୟ ପରଖୁଥିଲି । ସେଇଟା ସୁନାରେ ଗଢ଼ା । ତାକୁରେ ଉତ୍ତେଜନା ଓ ଉତ୍ତେଜକରେ ଦେହଟାକୁ ଚଢ଼ିଯାନ୍ତୁ ନେ ! ସାବଧାନତା ଶିଥିଳ ହେଲେ, ଅଭିଭାବକେ ନିର୍ବୋଧ ହେଲେ, ଅଣସୂତ୍ରରେ କ'ଣ ହୋଇଯାଏ । ଦୋଷ ନ ଥାଏ । ଯେଉଁଠି ଅଭିଜ୍ଞ ଅଭିଭାବକେ କନ୍ୟାର ଦାୟରୁ ମୁକ୍ତ ଲଭିବାକୁ ସୁନାର ହରିଣ ଦେଖାଇଦେଇ, ବିପଦସଙ୍କୁଳ ଗହନ ବନରେ ଛାଡ଼ିଦେଇ ନିର୍ଦ୍ଦେଶ ହୁଅନ୍ତି, ଧରି, ମା ଧରି, ସେଇ ହେବ ତୋ'ର ତପସ୍ୟାର ଫଳ, ସେଠି ଆମର ଦୋଷ କ'ଣ ?

ଅପା, ସବୁ ଭୁଆଣ ବୋଲି କରିଛୁ ।

ତା'ର ଦୋଷ ଦେଇ ଲାଭ ନାହିଁ । ସେ ଆମର ଜନ୍ମଦାତ୍ରୀ । ସେ ଆମର ମଙ୍ଗଳ କାମନା କରେ । ସେ ବି ମଣିଷ ନେ, ନିରୁ ! ତା'ର ଦେହରେ ମନରେ କ'ଣ ତାକୁରେ ଉତ୍ତେଜନା ଦେଇନାହାନ୍ତି ? ସୁରା ପାନ କରି ସେ ଉତ୍ତେଜନାକୁ ଜଳାଇଛୁ, ବିବେକକୁ ଝିଙ୍କିଏ ବିପଥଗାମୀ କରାଇଛୁ । ଭଲ-ମନ୍ଦ ବାରି ପାରେ ନାହିଁ ।

ଛି, ଛି ଅପା !

ଚିନ୍ତା ନାହିଁ ନେ ନିରୁ ! ଧୈର୍ଯ୍ୟ ଧର । ଉତ୍ତେଜନାକୁ ଆୟତ୍ତ କର । ମୋର ସାନକୁହା ମାନ, ମୁହଁରେ କୋଲପ ପକାଇ ରହ । ମଝିରେ କେଇଟା ଦିନ ତ ବାକି । ତା' ପରେ ଚାହାଘର । ସବୁ ଠିକ୍ ହୋଇଯିବ ।

କ'ଣ ଠିକ୍ ହୋଇଯିବ ?

ବାହାଘର ମ ! ତୋ ଅପା ଉପରେ କ'ଣ ତୋ'ର ଘଟଆସ ନାହିଁ ? ମାଈଁ ଆଈ ତୋ'ର ମନେପଡ଼ନ୍ତି କି ନନ୍ତ ?

ହଁ, ଅପା ! କେତେଥର ତାଙ୍କୁ ମୁଁ ସପନ ଦେଖିଛି । ଦେଖୁଥିଲି ତ, ତୋ କୋହ କାନ୍ଦରେ ନିଦ ସଙ୍ଗେ ମୋର ସପନ ଛୁଟିଲା ।

କି ସପନ ଦେଖୁଥିଲୁ ?

ବହୁତ ଦୂରକୁ ଆମେ ଚାଲିଯାଇଥିଲୁଁ ଅପା, ଗୋଟାଏ ଲମ୍ବା ରାସ୍ତାରେ । ଆଗରେ ଛୋଟ ପାହାଡ଼ । ପାହାଡ଼ କଡ଼ରେ ଦରିଆ । ଆଖି ପାଉନାହିଁ । ଦିଗ୍‌ବଳୟରେ ମିଶିଛି । ରାସ୍ତା ସେଇଠି ସରିଛି । ପାହାଡ଼ ତଳେ ଛୋଟ ମନ୍ଦିରଟିଏ । ମନ୍ଦିର ଆଗରେ ପୋଖରୀ । ଚାରିପାଖେ ଘଞ୍ଚ ବୃକ୍ଷଲତା । ସଞ୍ଜୟବାବୁ ସେଇଠି କାର୍ ରଖିଲେ ।

—ସଞ୍ଜ ହୋଇ ନ ଥାଏ । ସମୁଦ୍ରର ଦିଗ୍‌ବଳୟ ଉପରେ ଆକାଶରେ ସୂର୍ଯ୍ୟ ଝୁଲୁଥାଆନ୍ତି । ନରମ କିରଣରେ ସମୁଦ୍ରର ବକ୍ଷ ଝଲସିଉଠୁଥାଏ । ଛୋଟ ପୋଖରୀକୂଳ ବୃକ୍ଷହେଳ ତଳେ ସୂର୍ଯ୍ୟରଶ୍ମି ପଡ଼ୁ ନ ଥାଏ । କିନ୍ତୁ ବେଶ୍ ଉଜ୍ଜ୍ୱଳ ଦିଶୁଥାଏ ।

—ସଞ୍ଜୟବାବୁଙ୍କ ଦୁଇ ପାଖରେ ଆମେ ଦୁହେଁ ମାନେ ତୁ ଓ ମୁଁ, ହସଖୁସିରେ ଟପ କରି ଚାଲିଥାଉଁ । ମନ୍ଦିର ଭିତରେ ଶିବଲିଙ୍ଗଟିଏ । କଳା-ଫୁଲରେ ଢାଙ୍କି ହୋଇଥାଏ । ଚାରିଆଡ଼େ ଚାହିଁଲୁ । କାହାକୁ ଦେଖିଲୁ ନାହିଁ । ସୁନ୍ଦର ସତେଜ କଳାଫୁଲର ଚହଟରେ ଆକୃଷ୍ଟ ହୋଇ ସଞ୍ଜୟବାବୁ ଜୋତା ଉତାରି ମନ୍ଦିର ଭିତରେ ପଶିଲେ । ଫୁଲଟିଏ ଆଣି ପଦାକୁ ଆସିଲେ ଶୁଙ୍ଘିଶୁଙ୍ଘିକା ।

— ଅପା ଲୋ, କି ଆଶ୍ଚର୍ଯ୍ୟ କଥା ! ଆମେ ଦୁହେଁ ତ ପୋଖରୀ-କୂଳର ମାର୍ବଲ ପଥର ପାହାଚ ଉପରେ ବସି କାଚକେନ୍ଦୁ ପରି ପାଣି ଭିତରେ ଖେଳୁଥିବା ରଙ୍ଗିନ୍ ମାଛଗୁଡ଼ିକୁ ଚାହିଁଥିଲୁଁ, ସଞ୍ଜୟବାବୁ ଆମ ପାଖକୁ ବିକଳ ହୋଇ ଚାରି ଗୋଡ଼ରେ ଧାଇଁଆସିଲେ ।

ଚାରି ଗୋଡ଼ରେ, ନନ୍ତ !

—ହଁ, ଲୋ ଅପା, କ ଉପୁଙ୍କର ! ସେ ଗୋଟାଏ କଳଳକଳା ଚକଚକ ବଳିଷ୍ଠ ଗାରଡ଼ ହୋଇଥିଲେ । ମୁହଁଟା ମଣିଷ ମୁହଁ ଥାଏ ଯେ କଳାକାଠ ପଡ଼ିଯାଇଥାଏ । କହିଲେ, କଳାଫୁଲ ଶୁଙ୍ଘି ଏମିତି ହେଲି । କଅଣ ଆଉ କହୁଥାଆନ୍ତେ ପରା, କଳୁ ଝୁହ୍ନ ଗୃହ୍ନ ମୁଣ୍ଡଟା ଗାରଡ଼ ମୁଣ୍ଡ ହୋଇଗଲା । ଖାଲି ଗାରଡ଼-ବୋବାଳି ଛାଡ଼ିଲେ ।

ସେଇଠୁ ?

—ଆମ ଦୁହିଁଙ୍କର କାନ୍ଦଣା ଶୁଣି ଜଙ୍ଗଲ ଭିତରୁ ମାଈ ଆଈ ବାହାରି ଆସିଲେ । କେଡ଼େ ତେଜସ୍ୱୀ ନ ସୁନ୍ଦର ଦିଶୁଥାନ୍ତି । ସର୍ବାଙ୍ଗରେ ସୁବର୍ଣ୍ଣ ଗହଣା ମଣ୍ଡିହୋଇଥାନ୍ତି । ମହାବଳ ବାଘଟା ପିଠିରେ ବସିଥାଆନ୍ତି । ସେ ଚିହ୍ନା ଦେଇ ନ ଥିଲେ ଆମେ କ'ଣ ତାଙ୍କୁ ଚିହ୍ନି ପାରିଥାନ୍ତୁ କି ? ବାଘଟା ଗାରଡ଼କୁ ଖାଇବ ବୋଲି ଗର୍ଜୁଥାଏ । ପାଟି ବିକଟାଳ କରୁଥାଏ । ଆଈ ତା'ର ମୁଣ୍ଡ ଥାପଡ଼ି ମନା କରୁଥାଆନ୍ତି । କହୁଥାନ୍ତି, ରହ, ଖାଇବୁ ତ, ଉଚ୍ଛନ୍ନ ହେଉଛୁ କାହିଁକି ? କାଲି ତ ଗୋଟାଏ ହାଡ଼ଗୋଡ଼ ଗୋଟେବଇ ଖାଇଛୁ । ପେଟ କ'ଣ ଖଙ୍କା ହେଲାଣି ?

—ଆଈ ଆମ କଥା ସବୁ ଶୁଣିଲେ । ହସିଲେ । ଯେମିତି ସେ ହସନ୍ତି, ଅପା ! ଦୁଃଖ ବି କଲେ । କହିଲେ, ଏ ବାଘଟି କଏ ଚିହ୍ନିଛ ରେ ପିଲାଏ ? ରଜାଘର ପୁଅ । ସାତ ସମୁଦ୍ର ମଝିରେ ତା'ର ରାଇଜ । ରାଜ-କୁମାରୀଟିଏ, ଯାହାକୁ ସେ ଭଲପାଉଥିଲା, ତାକୁ ଭେଟିଲା ନାହିଁ । ଏ କାନ୍ତାରକୁ ମରିବାକୁ ଆସିଥିଲା । ଦେଖିଲି । ମୋ ଗେହ୍ଲା ନାତି ବୋଲି ଚିହ୍ନିଲି । ନାଲିଫୁଲ ମନ୍ତ୍ରର ଶୁଙ୍ଘାଇଦେଲି । ବାଘ ହେଇଛୁ । ଯେବେ ରଜାଝିଅ ଆସିବ, ସେହି ବାଘକୁ ଚିହ୍ନିଏ ଆଉଁସିବ, ଡରିବ ନାହିଁ, ମୁଁ ମନ୍ତ୍ରପାଣି ଛିଞ୍ଚିବି, ସେ ତା ନିଜ ରୂପ ଧରିବ ।

—ଭୁ ପଚାରିଲୁ, କେବେ ସେ ରାଜଜେମା ଆସିବ, ଆଈ ?

—ଆଈ ତୋ ହାତଟିଏ ଧରିଲେ, ଅପା ! ପୁଣି ହସିହସିକା ତୋ ମୁହଁରେ ହାତ ବୁଲାଇଲେ । ତୋ ଦୁଇ ଆଖିରେ ଦୁଇ ଟିପ ଘଷି ଫୁଙ୍କିଲେ ।

ଆଖି ଖୋଲିଦେଲେ, କହିଲେ, ତୁଇ ଯଗ୍ ସେଇ ରାଜଜେମା ଲୋ ! ଏଥର ଚାହିଁଲୁ ସେ ରାଜକୁମାରକୁ, ବାଘ ହୋଇ ଯେ ଠିଆ ହୋଇଛି ! ଦେଖ୍, ଦେଖ୍, କେମିତି ସେ କାନ୍ଦୁଛି ।

—ତୁ ଆଖି ଖୋଲି ଚାହିଁଲୁ । ତୁ କାନ୍ଦଉଠିଲୁ । ବିକଳରେ, ବିକଳରେ ଚିତ୍କାର କରି ତୁ ସେଇ ବାଘଟା ପାଖକୁ ଧାଇଁଗଲୁ, ଅପା ! ସେ ପାଟି ଆଁ କରି ଗର୍ଜୁଥାଏ । ଜିଭ କାଢ଼ି ଗାରଡ଼କୁ ନାଳି ନାଳି ଭୟଙ୍କର ଆଖିରେ ଚାହିଁଥାଏ । ଜିଭ ଲହ ଲହ କରୁଥାଏ । ଭୟରେ ତ ମୁଁ ଛାନିଆ ହୋଇଥାଏଁ, ଅପା ! ମୋର ଦେହହାତ ଥରିଉଠୁଥାଏ ।

—ତୋ କାନ୍ଦରେ ମୋର ନିଦ ଭାଙ୍ଗିଲା ଲୋ ଅପା !

ଅନୁପା ଦୀର୍ଘଶ୍ୱାସ ଛାଡ଼ିଲା । ଟିକିଏ ଭାବିଲା । ଦୁଇ ହାତରେ ନିରୁପାର ମୁଣ୍ଡଟିକୁ କାନ୍ଧ ଉପରକୁ ଓହ୍ଲାଇ ଆଣିଲା । କଅଁଳେଇ କହିଲା, ଡରିଲୁ ନା ? ନିଦ ଭାଙ୍ଗି ନ ଥିଲେ, ଅଧା ସପନଟି ତୋ'ର ପୂରା ହୋଇଥାନ୍ତା ଲୋ, ନିରୁ !

କ'ଣ ହୋଇଥାନ୍ତା, ଅପା ?

— ଆଉ ପୋଖରୀରୁ ପାଣି ଆଣି ବାଘ ଉପରକୁ ପକାଇଥା'ନ୍ତେ । ଭୟଙ୍କର ବାଘଟା ପୁଣି ନିଜ ରୂପ ଫେରି ପାଇଥା'ନ୍ତା । ଆଉ ପତରଟିଏ ଛିଣ୍ଡାଇ ପାଣିରେ ପକାଇ କହନ୍ତେ, ତୁ ହ'ରେ ମନପବନ ଡଙ୍ଗା । ସେ ସେଇଆ ହୋଇଥା'ନ୍ତା । ରାଜକୁମାର ଓ ରାଜଜେମା ସେଥିରେ ବସି କହିଥା'ନ୍ତେ, ବୁଡ଼୍ ବୁଡ଼୍ ଡଙ୍ଗା, ନେଇ ଯା ସପନ-ଦ୍ୱୀପକୁ। ସେଇ ପାତାଳପୁରୀ ପୋଖରୀରେ ଡଙ୍ଗା ଟୁବ୍ କରି ବୁଡ଼ିଥା'ନ୍ତା ।

ମୁଣ୍ଡ ଟେକି ନିରୁପା ପଚାରିଲା, ସେ ଗାରଡ଼ ?

—ତୋ'ର କାନ୍ଦଣା କ'ଣ ଆଉ ସହିପାରିଥାନ୍ତେ କି ? ଦେଖିବାକୁ ତ ମୁଁ ନ ଥାନ୍ତି । ତେବେ ମୁଁ ଅନୁମାନ କରୁଛି, ମାଈଁ ଆଉ ଥରେ ସେ ଗାରଡ଼ ପିଠିରେ ନିଜ କୋଳରେ ବସାଇ, ତାକୁ ତେନ୍ତୁଳିଗଛ ପିଟିପିଟି ମନ୍ଦିର ଚାରିପଟେ ତିନିଥର ତିନିବାର ବୁଲନ୍ତେ । ପ୍ରତି ଥୁଣ୍ଠରେ ଚାଗିଦା କରି କହନ୍ତେ, କାହାର ଫୁଲରେ ଆଉ କେବେ ଲୋଭ କରିବୁ ନାହିଁ । ଛୁଇଁବା

ତେଣେ ଥାଉ, ଦୃଷ୍ଟି ଦେବୁ ନାହିଁ ରେ ଚଣ୍ଡାଳ ! ତିନଦିନ ପରେ, ସେହି ଦୟାମୟୀ ଅଣ୍ଡ ତ କୁ ଧଳ ଫୁଲ ଶୁଙ୍ଘାନ୍ତେ । ମଣିଷ କରନ୍ତେ । ପକ୍ଷୀରାଜ ଘୋଡ଼ା ଡକାଇ ସେଥିରେ ତମ ଦୁହିଁଙ୍କୁ ବସାଇ ସୁବର୍ଣ୍ଣ-ଦ୍ୱୀପକୁ ଉଡ଼ାଇ-ଦେଇଥାନ୍ତେ ।—

ପାହାନ୍ତିଆ ପକ୍ଷୀ ରାବ ଛାଡ଼ିଲେଣି । ଆମର ସପନ, ଅନୁମାନ ସବୁ କ'ଣ ସତ ଫଳିବ କି ନାହିଁ ? କେଜାଣି ସେହି ମାଣିଁ ଅଣ୍ଡାର ଆତ୍ମା ଜାଣିଥିବ । ରାତି ତ ପାହିବ । ମୁଣ୍ଡ ଝାଙ୍କୁଛି । ସବୁ ଭାବନା ମନରୁ ପୋଛି, ଟିକିଏ ଶୋଇପଡ଼ିବା ଚାଲ !

ହଁ, ଅପା !

ଭଉଣୀ ଦିହେଁ, ବାନ୍ଧବୀ ଦିଓଟି ପୁଣି ପାଖାପାଖି ହୋଇ ଶୋଇଲେ । ଜଣକର ପିଠି ଉପରେ ଆଉ ଜଣକର ହାତ ।

ଚନ୍ଦନାଙ୍କର ଗୋଡ଼ ତଳେ ଲାଗୁନାହିଁ । ହେମ ଆସିଛି । ଅଦିନିଆ । ସୋମବାର ସକାଳେ । ଘରେ ପାଦ ଦେଇ ତାଙ୍କୁ ଓ ବାସନ୍ତୀଙ୍କୁ ପ୍ରଣାମ କରି ସେ କାହିଁକି ଗ୍ରାମ ଭିତରକୁ ବୁଲିଯାଇଛି । ଗୋଟେ ଗୋଟେ ଫେରିଆସିବ ବୋଲି କହିଯାଇଛି ।

ଆଜି କାହିଁକି ସେ ବିଶେଷ ଅନ୍ୟମନସ୍କ ଓ ଚଞ୍ଚଳ ଥିଲା ପରି ମନେହେଉଛି । କହିଲେ, ଉପରବେଳା ସେ କଟକରୁ ଭୁବନେଶ୍ୱର ଚାଲିଯିବ । ସେଠାରେ ଜରୁରୀ କାମ । ସେତକ ସାରି ସେ ସଞ୍ଜଗାଡ଼ିରେ ଢେଙ୍କାନାଳ ବାହାରିବ । ଡେରି ହେଲେ କଟକ ଫେରିବ ।

ରାତିରେ ସେଇଠି ରହିଣି । ମାମୁଁ ଘରେ ନୁହେଁ ବୋଉ, ହୋଟେଲରେ । ମଙ୍ଗଳବାର ସକାଳେ ଢେଙ୍କାନାଳ ଯିବ ।

ଜୟପୁରରୁ ହେମର ବାପା ଚିଠି ଦେଇଛନ୍ତି । ବ୍ୟସ୍ତ ହୋଇ ଲେଖିଛନ୍ତି ଯେ, ଚନ୍ଦନାଙ୍କର କଥା ନ ମାନି ସେ ସେଠାକୁ ଚାଲିଯାଇ ଭୁଲ କରିଛନ୍ତି ।

—ପୁରୁଣାକାଳିଆ କଥାଟିଏ ଅଛି, ନ ଦେଖିଲେ ଝୁରିହୁଏ, ଦେଖିଲେ କଥା ନ କହେ । ସେମିତି ହୋଇଛି, ଚନ୍ଦନା ! ଯେଉଁ ବନ୍ଧୁମାନେ ଏଠିକର ଲେଖିଥିଲେ ଯେ, ସେ ନ ଥିଲାରୁ ବୁଦ୍ଧି ବତାଇବାକୁ ଆଉ କେହି ନାହିଁ, ଖାଲିଶୋଷା ହାକମେ ଅତ୍ୟାଚାର କରୁଛନ୍ତି, ସେମାନେ ଧବଛୁଆଁ ହେଉନାହାନ୍ତି । ହସି ହସି ଦଣ୍ଡବତ କରୁଥିଲେ । କହୁଥିଲେ, ଆସିଗଲ ଭଲହେଲା । ଶୁଣିଲି, ସେମାନେ 'ତୋ'ର ମୋ'ର ଅଧାଅଧିଆ' ସାଲିସ୍ କରି ନେଇଛନ୍ତି । କଏ ମୋତେ ଶୁଣାଇଁ ଶୁଣାଇଁ ଆଉ କାହାକୁ କହୁଛି, ଆସିଗଲେ ମୁକୁଳିବ । ଆସିଗଲେ ହାକିମଙ୍କ ବାପେ । ମେଳିଆ, ଅନଶନିଆ ଲାଙ୍ଗର । ଆଉ କି ଭାବନା ? ଆଖି ବୁଜି ଏଥର କାମ କର ।

—ଥଣ୍ଡା ନକଲ କରୁଛନ୍ତି ଚନ୍ଦନା, କାହାକୁ କହିବ ଲାଜର କଥା ? ଏବକାଳକୁ ସମସ୍ତେ ସମାନ ହେଲେଣି । କେହି କାହାକୁ ଚିହ୍ନୁନାହାନ୍ତି । ପୂର୍ବର ଗୌରବ, ପୂର୍ବର ମହତ୍ତ୍ୱ କାହାରି ନାହିଁ । ଆଉ ମିଳିବ ନାହିଁ । ପୁଅ ଯଦି ଆମରି କୁହାର ବୋଲର ହୋଇଥାନ୍ତା, ସେ ଯଦି ଏତେ ବିଦ୍ୟା ଘୋଷି ବାହାର ନ କଲା ଯେ, ପିତା ଧର୍ମ, ପିତା ସ୍ୱର୍ଗ, ସେ ଯଦି ନ ବୁଝିଲା ଯେ ଜନନୀ ଓ ଜନ୍ମଭୂମି ସ୍ୱର୍ଗରୁ ବଳି ଶ୍ରେଷ୍ଠ, କାହାକୁ କହିବା, କପାଳରେ ସିନା କରି କହିବା ?

—ଆମ ପେଷ୍କାରବାବୁ ମତେ ନିଜେ ତାଙ୍କ ବସାକୁ ଡକାଇନେଇ କହୁଥିଲେ, ସେ ନଗଦ ଦୁଇ ହଜାର ଟଙ୍କା ଗସ୍ତା ଖରଚ ଦେବେ । ଆଉ ସବୁ ଆଧୁନିକ ଆନୁଷଙ୍ଗିକ ଦେବେ । ଝିଅଟି ସୁନ୍ଦର । ଏଠାକା କଲେଜରେ ପଢ଼େ । ମନକୁ ପାଇଛି । କିନ୍ତୁ, ବହମର ଯେଉଁ ଢଙ୍ଗ, ସେଥିରେ କଥା ପକାଇବାକୁ ସାହସ ହେଉନାହିଁ । ଟିପଣା ମଗାଇଛି । ପୁଅକୁ ପଚାରିବ । ସେ ହଁ କଲେ ଆଗେଇବ । ନାହିଁ କଲେ କହିବ, ଟିପଣା ସୁହିଲା ନାହିଁ ।

—ବାକିଆ ପାଉଣା ଦେଢ଼ଶ ଟଙ୍କା ମିଳିବ । ମିଳିଲେ ପଠାଇବି । ମେସ୍ କରି ଆମେ ସାତଜଣ ଏକାଠି ରହୁଛୁ । ଭଲରେ ଚଳୁଛି ଯେ,

ପେଟରେ ଗୋଳମାଳ ତ ରହୁଛି । ତେବେ ମୁଁ ସାବଧାନ ଅଛି । ତମେ ବ୍ୟସ୍ତ ହେବ ନାହିଁ । ନିଜର ଯତ୍ନ ନିଜେ ନେବ ।

ବସନ୍ତକୁ ଚିଠିଖଣ୍ଡିକ ସେ ପଢ଼ିବାକୁ ଦେଇଥିଲେ । ପିଲାଟା ଜାମା ଜୋତା ନ ଛଡ଼ାଇ ଠିଆ ଠିଆ ଚିଠିଖଣ୍ଡିକ ଖୋଲି ଆଖି ବୁଲାଇଗଲା ।

ସେ କହିଲା, ଏ ଲମ୍ବା ଚିଠିଟା ପଢ଼ିବାକୁ ମୋର ବେଳ ନାହିଁ । ମୋତେ ସେ ଆଜଯାଏ ବହୁତ ନୀତିଶିକ୍ଷା ଦେଇଆସିଛନ୍ତି ବୋଉ, ସବୁ ମୋର ମନେ ଅଛି । ଯାହା ଉଚିତ ମଣିବି ମୁଁ ଅବଶ୍ୟ କରିବି । ତୁ ବାପାଙ୍କୁ ଲେଖିଦେ, ମୁଁ କହୁଛି, ସେ ସଙ୍ଗେ ସଙ୍ଗେ ଜୟପୁରରୁ ଗ୍ରାମକୁ ଫେରି-ଆସିବେ ।

—ତାଙ୍କର ବାଙ୍କିଆ ପାଉଣା ଆସି ଗ୍ରାମରେ ତାଙ୍କ ପାଖରେ ପହଞ୍ଚିବ । ତାଙ୍କୁ ଲେଖିଦେବୁ ଯେ, ଅନୁପାର ଗୋଲାପର ସ୍ୱାମୀ ବିକାଶବାବୁ କୋରାପୁଟ୍‌ର କଲେକ୍ଟର ହୋଇ କେବଠାରୁ ଯୋଗ ଦେଲେଣି । ମୁଁ ତାଙ୍କୁ ଚିଠି ଲେଖିବି ।

ଏତିକି ଆଲୋଚନା ।

ପୁଅଟା ସଙ୍ଗେ ସଙ୍ଗେ ଗ୍ରାମ ଭିତରକୁ ଚାଲିଗଲା । ଶୁଭକେଶରୀ ତାର ପଛେ ପଛେ ଯାଉଥିଲା । ସେ ତାକୁ ମନାକଲା । ଫେରାଇ ଦେଲା ।

ବସନ୍ତକୁ ମୁଠିଏ ଭଲକରି ଖାଇବାକୁ ଦେବାକୁ ଚନ୍ଦନା ଶେଷ କାମରେ ବ୍ୟସ୍ତ ରହିଲେ । ବାସନ୍ତୀ ସବୁ ହିଂସା ଦ୍ୱେଷ ଭୁଲି ତାଙ୍କୁ ସାହାଯ୍ୟ କଲେ । ଶୁଭକେଶରୀ ମାଛ ଆଣିବାକୁ କେଉଟସାହିକୁ ଧାଇଁଲା । ଖରମସ ଘିଅ ଆଣିବାକୁ ମୋହନକେଶରୀଙ୍କୁ ବାସନ୍ତୀ ଗଉଡ଼ସାହିକୁ ବରଗିଲେ । କେଶରୀବଂଶର ମୁହଁ ଉଜ୍ଜ୍ୱଳ କରିପାରୁଛି ଯେଉଁ ଶିକ୍ଷିତ ପୁଅ, ଯାହାର ମନରେ ଏବଯାଏ ତୋର-ମୋର ଭାବ ପଶିପାରିନାହିଁ, ତାର ଯତ୍ନ ନେବାକୁ ବାସନ୍ତୀ କୁଣ୍ଠିତ ହେଲେ ନାହିଁ ।

ବସନ୍ତ ମନଖୁସିରେ ମଣୋହି କରୁଛି । ଚନ୍ଦନା ପରଷୁଛନ୍ତି । ବାସନ୍ତୀ ତାଳପତ୍ରର ପଙ୍ଖାଟିଏ ଧରି ବିଞ୍ଚିଦେଉଛନ୍ତି । ଗୋଟିଏ ବଡ଼

ଥାଳରେ ଅବଶ୍ୟ ସୁନ୍ଦର ସରୁ ଅନ୍ନ । ଚାରିପାଖରେ ଥାଳିଆ ଓ ତାଟିଆ-
ଗୁଡ଼ିକରେ କେତେ ଜାତିର ଭଜା, ଭାଜି, ତିଅଣ । ବିଷମର ପାଖରେ ବସି
ଗୋଟିଏ ଥାଳିରେ ଶୁଭ୍ର, ମୋହନ ଓ ସୋହନ ଖାଉଛନ୍ତି । ନିଜେ ବିଷମ
ସାନଭାଇଗୁଡ଼ିଙ୍କର ତୁଣ୍ଡରେ ଆଗ ଦେଉଛି । ସେ ବି ଗୁଣ୍ଡିଏ ଗୁଣ୍ଡିଏ
ଖାଉଛି । ବାସନ୍ତୀ ପିଲଙ୍କ ଉପରେ ବିରକ୍ତ ହେଲେ ବିଷମ ଅନୁନୟ କରି
କହୁଛି, ଏ ଆନନ୍ଦ କାହିଁ ପାଇବ, ବୁଢ଼ୀ ?

ଚନ୍ଦନାଙ୍କ ମୁହଁରେ ହସ ଉଚ୍ଛୁଳି ଉଠୁଛି । ସେ କହୁଛନ୍ତି, ପୁଅ
ସତ କହିଲା ଲୋ ବାସନ୍ତୀ ! ମା ବୁଢ଼ୀ ପାଖରେ ବସି ତାଙ୍କର ଚାରୋଟି
ଛୁଆଙ୍କୁ ଏକା ଥାଳିରେ ଖୁଆଉଛନ୍ତି । ଏ ଆନନ୍ଦ, ଏ ଗର୍ବଠାରୁ ବଳି
ଅଧିକ ଆମ ପିଲାଏ ଆଉ କେବେ କ'ଣ ପାଇବେ ?

କ୍ଲାନ୍ତ ବିଷମ ତାଙ୍କର ସେହି ପୂର୍ବପୁରୁଷଙ୍କର ପୁରୁଣା ପଲଙ୍କ
ଉପରେ ଶ୍ରାନ୍ତି ହରଣ କରୁଣୁ ତା'ର ଆଖିପତା ମାଡ଼ିହୋଇଗଲା ।
ପାଖରେ ବସି ଚନ୍ଦନା ପଙ୍ଖା କରୁଥିଲେ, ଅତୀତକୁ ସ୍ମରଣ କରୁଥିଲେ ।

କିଅଣ ଗୋଟିଏ ସପନ ଦେଖି ଚମକି ଉଠିଲା ପରି ବିଷମ ଶିହରି-
ଉଠିଲା । ଆଖି ଖୋଲିଲା । ଜନନୀଙ୍କୁ ପାଖରେ ଦେଖି ସେ ବସିଲା । କହିଲା,
ଅଜଗର ସାପ ପରି ମୁଁ କଥାନନ୍ଦସରେ ଗୁଡ଼ାଏ ଗିଳିଦେଲି ବୋଉ, ଦେହ
ଅବଶ ଲାଗିଲା, ଶୋଇପଡ଼ିଲି । ଡେରି ହୋଇଗଲା । ଏଥର ମୁଁ ବାହାରିବି ।

ଦିନଟିଏ ତୁ ରହିବୁ ନାହିଁ, ପୁଅ ? ମତେ ଅନ୍ଧ କରି ତୁ ଗୋଡ଼େ
ଗୋଡ଼େ ଫେରିଯିବୁ ? ଲୋକେ ପଚାରିଲେ ମୁଁ କି କାରଣ ଦେବି ? ରାତିକ
ରହି କାଲି ସକାଳେ ଗଲେ ହୁଅନ୍ତା ନାହିଁ ?

ଶୁଣି ନ ଶୁଣିଲା ପରି ବିଷମ ପଲଙ୍କରୁ ଓହ୍ଲାଇ ଆଉଜା କବାଟ
ଖୋଲି ଅଗଣାକୁ ଆସିଲା । ମୁହଁ ପଖାଳି ମେଘମେଦୁର ବିଷଣ୍ଣ ଆକାଶକୁ
ଚାହିଁଲା । ଘର ଭିତରକୁ ଫେରିଆସି ସେ ତା'ର ପୋଷାକ ପିନ୍ଧିଲା । ନିଜକୁ
ସତେ ଯେପରି ସେ ଅପରାଧୀ ମଣୁଥିଲା । ଭାବୁଥିଲା, କିଏ ଜାଣେ, ଯେଉଁ
ଘଟଣାଟି ଘଟିବାକୁ ଯାଉଛି ! ତାର ପ୍ରତିକ୍ରିୟା ଏ କୁଟୁମ୍ବ, ଗ୍ରାମ ଓ ଆତ୍ମୀୟ

ସ୍ୱଜନଙ୍କ ଉପରେ କପଣ ହେବ ! ଏ ଗ୍ରାମରେ, ଏ ଘରେ ପାଦ ଦେବା, ମା, ଭଉଣୀ ଓ ଭାଇଟିମାନଙ୍କ ଗହଣରେ ଆନନ୍ଦରେ କଟାଇଥିବା ସମୟଗୁଡ଼ିକ କ'ଣ ଆଜଠାରୁ ଶେଷ ହୋଇଯିବ ?

ମନର କରୁଣ କୋହରେ ସେ ଚନ୍ଦନାଙ୍କର ମୁହଁକୁ ଚାହିଁ ପାରୁ ନ ଥାଏ ।

ଚନ୍ଦନା ହେମର ଅବେଟମୟ ପ୍ରବୃତ୍ତିକୁ ଲକ୍ଷ୍ୟ କରୁଥିଲେ । ମନେ ମନେ କାରଣ ଅନୁସନ୍ଧାନ କରୁଥିଲେ । କୌଣସି ଫଳକୂଳ ସେ ପାଉ ନ ଥିଲେ । କ'ଣ ପଚାରିବେ ସ୍ଥିର କରି ପାରୁ ନ ଥିଲେ ।

ହେମ ମୁଣ୍ଡ ନୁଆଇଁ ଚନ୍ଦନାଙ୍କୁ ପ୍ରଣାମ କଲା । ମୁହଁ ନ ଖୋଲି ସେ ଦାଣ୍ଡଘରବାଟେ ବାହାର ବାରଣ୍ଡାକୁ ଆସିଲା । ଆଖିରେ ଲୋତକ ଭରି ଅସଂଯତ ହଳମଇଳା ଧୋବଳ ଶାଢ଼ିର ପଣତ ତଳେ ଘୋଷାରି ଚନ୍ଦନା ହେମର ପଛେ ପଛେ ଗୋଡ଼ାଇଆସିଲେ । ତାଙ୍କର ଅସ୍ଥିର ଅଧୀର ଆଗମନ ଅନୁମାନ କରି ହେମ ତଳିବପାଖ ଦାଣ୍ଡବାରଣ୍ଡା ଉପରେ ପାହାଚ ପାଖରେ ଠିଆ ହେଲା । ମୁହଁ ବୁଲାଇ ଚାହିଁଲା । ପଚାରିଲା, କ'ଣ କହୁବୁ ବୋଉ ?

ଚନ୍ଦନା କୋହ ଚାପି ପଚାରିଲେ, ତୁ କ'ଣ ମୋ ଉପରେ ରାଗିଛୁ ବାବୁ ? ଘରେ ପାଦ ଥୋଇ ସଙ୍ଗେ ସଙ୍ଗେ ଗ୍ରାମ ଭିତରକୁ ଚାଲିଗଲୁ । ସେଠାରୁ ଫେରି କ'ଣ ଦି'ଗୁଣ୍ଡା ଖାଇ ଟିକିଏ ଶୋଇଲୁ । ଚମକିଉଠି ସଙ୍ଗେ ସଙ୍ଗେ ଚାଲିଯାଉଛୁ । କିଛି କହୁନାହୁଁ ।

କ'ଣ ତତେ କହିବି ? ଅଲେଖା ଘରକୁ ଟଙ୍କା ପାଞ୍ଚଶହ ଧାର ଆଣିବାକୁ ମୁଁ ଯାଇଥିଲି । ସେ ମୋର ପିଲାଦିନର ସାଙ୍ଗ । ମୁହଁକୁ ଅନାଇଁ, ଜମି ବନ୍ଧା ନ ହେଲେ ଖାଲି ହ୍ୟାଣ୍ଡ୍‌ନୋଟ୍‌ରେ ଟଙ୍କା ଧାର ଦେବାକୁ ମନା କରିଦେଲା ।

ପାଁ ଶ' ଟଙ୍କା ! ମୋ ପାଖରେ ଟଙ୍କା ଶହେଟି ଅଛି ରେ ପୁଅ ! କଷ୍ଟରେ ଚଳି ତୋ'ର ପାଇଁ ସଞ୍ଚିରଖିଛି । ତୋ'ର ଲୋଡ଼ା । ତୁ ସେତକ ନେଇଯା ।

ନାହିଁ ବୋଉ ! ମୁଁ ଟଙ୍କା ପାଇଲିଣି । ଅଲେଖ ମନା କଲାବେଳେ ତା'ର ସ୍ତ୍ରୀ ପାବନୀ ଶୁଣୁଥିଲା । ସେ ଘରଭିତରକୁ ଧାଇଁଯାଇ ଶହେଟଙ୍କିଆ ପାଞ୍ଚଟି ନୋଟ ଆଣି ମୋ ହାତକୁ ବଢ଼ାଇଦେଲା ।

ପାବନୀ ?

ହଁ, ବୋଉ ! ସେ କହିଲା, ମୁଁ ତମର ଧର୍ମର ଭଉଣୀ । ଏତିକି ଉପକାର କରିବ ନାହିଁ ? ମୋର ବନ୍ଧାଛନ୍ଦା କାଗଜପତ୍ର ଲୋଡ଼ା ନାହିଁ ମ ଭାଇ ! ତମକୁ ବିଶ୍ୱାସ ନ କଲେ କାହାକୁ ମୁଁ ବିଶ୍ୱାସ କରିପାରିବି ନାହିଁ । ତମର ଗରଜ ମେଣ୍ଟୁ । ଯେବେ ସୁବିଧା ହେବ ମୋ ଟଙ୍କା ମତେ ଫେରାଇଦେବ ।

କ ଘର ଝିଅ ସେ କେଜାଣି ରେ ପୁଅ, ଠାକୁରେ ତା'ର ରୂପକୁ କଳି ବୁଦ୍ଧିବିବେକ, ସବୁ ଭଲ ଗୁଣ ଦେଇଦେଇଛନ୍ତି । ସତେ, ଅଲେଖା କେଉଁଠୁ କାହାର ହଜିଲା ରତ୍ନ ଗୋଟାଇ ଆଣିଛି । କିନ୍ତୁ ବାପ, ଏତେ ଟଙ୍କାକୁ କ'ଣ କରିବୁ ?

ମୋର ଲୋଡ଼ା ଅଛି ବୋଉ !

କହିବୁ ନାହିଁ ?

କହିବି । ତୁ ମୋର କଥାଟିଏ ରଖିପାରିବୁ ?

କାହିଁକି ନ ପାରିବି ?

ଖୁଡ଼ୀଙ୍କ ଜିମା ଏ ଘର ଦେଇ ତୁ କାଲି ସକାଳେ ମୋ ସଙ୍ଗେ ଢେଙ୍କାନାଳ ଯାଇପାରିବୁ ? ମୁଁ ତେବେ ଭୁବନେଶ୍ୱର ଆଜି ନ ଯାଇ ରାତିକ ତୋ ପାଖରେ ରହିଯିବି । ଢେଙ୍କାନାଳରେ ମୁଁ ତତେ ସବୁ କହିବି ।

ଚନ୍ଦନା କିଛି ସମୟ ମୌନ ରହି କହିଲେ, ତୁ ଅବୁଝା ହ'ନା ବାପ ! ବାହାରକୁ ଉଜୁଡ଼ିଯିବ । ମୁଁ ଜାଣେ, ଏକୁଟିଆ ଥିବାରୁ ସେଠାରେ ତୋ'ର ଖିଆପିଆର ଅସୁବିଧା ହେଉଛି । ତଥାପି ତୋ'ରି ପାଇଁ ରେ ଧନ, ଏଇ ଦାଦର ଘରକୁ ଜଗି ଦିଅ କୁଣ୍ଡ ପରି ମୁଁ ପଡ଼ିରହିଛି । କହିଲୁ ଯେବେ, ମୁଁ

ନଷ୍ଟସ୍ପ ଯିବ । ଶନିବାର ଯାଏ ସଚାର କର । ତୋ ସଙ୍ଗେ ମୁଁ ରବିବାର ଦିନ ଚାଲିଯିବ । ଧାନ ଦଶ ଗୌଣି କୁଟିବାକୁ ଦେଇଛୁ । ଜମିର ଫସଲ ସମ୍ବନ୍ଧରେ ବଳଳା ସଙ୍ଗେ କଥାଭାଷା ହେବ—

ହଉ ହେଲା, ବୋଉ ! ମୋ ପାଇଁ ଏ ଘର ନୁହେ ଯେ, ଏ ଘର ପାଇଁ ମୁଁ । ମୋର ଡେରି ହେଉଛି ବୋଉ, ଦେଖ ଗୁରିଟା ବାଜିଲାଣି । ମୁଁ ଆସୁଛି ।

ଆହୁରି ଥରେ ଚନ୍ଦନାଙ୍କୁ ନମସ୍କାର କରି ବିକ୍ରମ ଏକମୁହାଁ ହୋଇ ଗ୍ରାମଦାଣ୍ଡକୁ ବାହାରିଗଲା ।

ଚନ୍ଦନା ଅପଲକ ଆଖିରେ ଗୁହିଁ ରହିଥିଲେ । ବିକ୍ରମ କ'ଣ କହିଗଲା, ସେ କଥାକୁ ମନରେ ଭେଦାଉଥିଲେ । ବିଗ୍ରୁଥିଲେ, ବିକ୍ରମ ପରି ପୁଅ, ତା'ର ଢଙ୍ଗ ଏପରି ବଦଳିଲା କାହିଁକି ? କାହିଁକି ସେ ତାଙ୍କ ପାଖରେ କପଟ କଲା ? ମନ ଖୋଲି କଥା ପ୍ରକାଶ କଲା ନାହିଁ ?

ସଞ୍ଜସରିକି ବିକ୍ରମ ଭୁବନେଶ୍ୱରରେ ପ୍ରଦ୍ୟୁମ୍ନର ବସାରେ ପହଞ୍ଚିଲା । ପ୍ରଦ୍ୟୁମ୍ନ ମା ଗ୍ରାମକୁ ଫେରିଯାଇଥିଲେ । ପ୍ରଦ୍ୟୁମ୍ନର ସ୍ତ୍ରୀ ଅଦିତି ଓ ସାନଭଉଣୀ ସ୍ମିତା ବସାରେ ଥିଲେ । ବିକ୍ରମକୁ ଦେଖି ପ୍ରଦ୍ୟୁମ୍ନ କୋଟିନିଧି ପାଇଲା ପରି ମଣିଲା । ଅଦିତିକୁ ପରିଚିତ କରାଇଦେଲା ।

ବୟସ ଓ ପଦମର୍ଯ୍ୟାଦା ଭୁଲି ବିକ୍ରମ ଲଜକଲଜ ଅଦିତିକୁ ପ୍ରଣାମ କଲା । ଭାଉଜ ସମ୍ବୋଧି କହିଲା, ପ୍ରଦ୍ୟୁମ୍ନବାବୁ ମୋର ପ୍ରିୟବନ୍ଧୁ ସତ; କିନ୍ତୁ ସେ ମୋ'ଠାରୁ ବୟସରେ ବଡ଼ । ସ୍ମିତା ମତେ ଭାଇ ଡାକେ । ସେ ସବୁକୁ ହିସାବ କରି ତମକୁ ଭାଉଜ ଡାକିବା ମୋ'ର ଫାଇଲା । ତମମାନଙ୍କୁ ଦେଖି-ବାକୁ ଘଣ୍ଟାକ ପାଇଁ ମୁଁ ଗ୍ରାମରୁ ଆସିଛି । ଘଣ୍ଟାକ ପରେ ମୁଁ କଟକ ଚାଲି-ଯିବ । କାଲି ସକାଳୁ ଢେଙ୍କାନାଳ ।

ଲଜ୍ଜାବତୀ ଅଦିତି, ମାସ କେଇଟିର ନୂଆବୋହୂ, ମୁଣ୍ଡର ଓଢ଼ଣା ଭ୍ରୂଲତା ଉପରଯାଏ ଟାଣିଛି, ରଙ୍ଗିଲା ଓଠରେ ହସ ଝଲଶାଇ ସମ୍ମତି

ଜଣାଇଲା । ମୁହଁ ଖୋଲିଲା ନାହିଁ । ଜଳଖିଆ ଚୁହାର ଆୟୋଜନ କରିବାକୁ ଖଞ୍ଜା ଭିତରକୁ ଚାଲିଗଲା । କିଛି ସମୟ ପରେ ସ୍ମିତା ଆସି ଟେବୁଲ ଉପରେ ଗୋଟିଏ କମଳକଟ କରି ରୂପା ଥାଳିଆରେ ପାନ ଚାରିଖଣ୍ଡି ରଖି କହିଲା, ଭାଇଜ କହୁଛନ୍ତି, ଆପଣ ଆଜି ରାତିରେ ନିଶ୍ଚୟ ଏଠି ରହିବେ । ଖାଲି ଚା' ଜଳଖିଆ ଖୋଇ ସେ ଆପଣଙ୍କୁ ଛାଡ଼ିବାକୁ ରାଜି ନୁହନ୍ତି ।

ଶ୍ୟାମଳୀ, ସ୍ୱାସ୍ଥ୍ୟବତୀ, ସୁଠାମମୂର୍ତ୍ତି କିଶୋରୀ ସ୍ମିତାର ମୁହଁକୁ ହସ ହସ ହୋଇ ଚାହିଁ ବିକ୍ରମ କହିଲା, ତୁ ମୋର ହୋଇ ତାଙ୍କୁ କହି ଦେ ଭଉଣୀ, ଆଜି ନୁହେଁ, ଆଉ କେବେ ଆସିଲେ, ଦିନେ ନୁହେଁ, ଦୁଇ ଦିନ ରହିବି । ଭାଇଜ କେତେ ପ୍ରକାର କ'ଣ ଖାଦ୍ୟ ଖୋଇବେ, ମୁଁ ଦେଖିବି । ହେଲା ତ ?

ପ୍ରଦ୍ୟୁମ୍ନ କେବଳ ହସୁଥିଲା ।

ଦୁଇ ବନ୍ଧୁଙ୍କର ଗୁପ୍ତ ଆଲୋଚନା । ସ୍ଥିର ହେଲା ଯେ ବିକ୍ରମ ଯଥା-ସମୟରେ ଟେଲିଫୋନ କରି ଜଣାଇବ । ପ୍ରଦ୍ୟୁମ୍ନ ଆଗରୁ ଯାଇ ତ୍ରିଗୁଣା-ବାବୁଙ୍କ ସଙ୍ଗେ କଟକରେ ଦେଖା କରିବ । କ'ଣ ଆୟୋଜନ ହୋଇଛି ତା'ର ତତ୍ତ୍ୱ ନେବ । ସୌଭାଗ୍ୟବାବୁଙ୍କ ସଙ୍ଗରେ ତ୍ରିଗୁଣାବାବୁ ଭେଟ କରାଇ-ଦେବେ । ସେ ଆଗରୁ ସୂତାହାଟର 'ପ୍ରଜାପତି-ନିଳୟ'ରେ କି ବ୍ୟବସ୍ଥା ହୋଇଛି ବୁଲାଇ ଦେଖାଇବେ ।

ପ୍ରଦ୍ୟୁମ୍ନ କହିଲା, ସେ ସବୁର ତତ୍ତ୍ୱ ମୁଁ ନେବି । ମୋ'ର ଦିଓଟି ପ୍ରସ୍ତାବ ତମ ପାଖରେ ଉପସ୍ଥାପନ କରିବାର ଅଛି । ପ୍ରଥମଟି ହେଲା, ବାହାଘର ପରେ ରାତାରାତି ଢେଙ୍କାନାଳ ନ ଯାଇ ତମେ ଦିହେଁ ଭୁବନେଶ୍ୱର ଆସିଲେ ଭଲ ହେବ । ମୋର ଏ ବସାଟି ଛୋଟ ହେଲେ ବି ଗୁଡ଼ିଏ କୋଠରି ଅଛି । ତା'ଛଡ଼ା, ପାଖଘରଟି ଖାଲି । ସଚ୍ଚିଦାନନ୍ଦବାବୁ ତାଙ୍କର ପିଲାକୁଟୁମ୍ବ ନେଇ ଭଉଣୀର ବାହାଘର ଆୟୋଜନ କରିବାକୁ ଆଠଗଡ଼ ଯାଇଛନ୍ତି । ତିନି ସପ୍ତାହ ଛୁଟି ନେଇଛନ୍ତି । ଘର ମୋତେ ଦେଇଯାଇଛନ୍ତି । ଏଇଠି ଚଉଠୀ ହେବ । ସବୁ ଆୟୋଜନ ମୁଁ କରିବି । ବନ୍ଧୁମିଳନର ବି—

ବିକ୍ରମ ଚିନ୍ତିତ ହେଲା ।

ପ୍ରଦ୍ୟୁମ୍ନ ପୁଣି କହିଲା, ଅନୁପମା ଦେବୀ ମୋର ଅପରିଚିତା ନୁହନ୍ତି । ଅଦ୍ଭୁତ ଘରେ ଖୁସି ହେବ । ମିତ୍ରାର ଗୋଡ଼ ତଳେ ଲାଗିବ ନାହିଁ । ମାଉସୀ ଯଦି ଆଗରୁ ଢେଙ୍କାନାଳ ଯାଇପାରିଥାନ୍ତେ, ମୁଁ ଏ ପ୍ରସ୍ତାବ ଦେଇ ନ ଥାନ୍ତି । ପୁଅବୋହୂଙ୍କୁ ଦେଖି ବଳେ ସେ ପାଗ୍ଳେଇ ନେଇଥାନ୍ତେ । ଆଗରୁ ନ ଜାଣିଲେ ନାହିଁ ।

ବୁଝିଲି ପ୍ରଦ୍ୟୁମ୍ନ ! ମୁଁ ତାଙ୍କୁ ପଚାରିବି, ମାନେ ଅନୁପମାଙ୍କୁ । ସେ ରାଜି ହେଲେ, କାଲି ଅଫିସ ସମୟ ଭିତରେ ମୁଁ ତମକୁ ଜଣାଇବି । ଫୋନ୍‌ରେ । ନ ଜଣାଇଲେ ବୁଝିବ, ସେ ରାଜି ହେଲେ ନାହିଁ ।

ହେଲା । ଦ୍ୱିତୀୟ ପ୍ରସ୍ତାବ ହେଲା, ବାହାଘର ଦିନ ଅବା ତା' ଆଗ ଦିନ ଟେଲିଗ୍ରାମ୍ କରି ମଉସାଙ୍କୁ ଜଣାଇଦେବା । ସେ ଆସନ୍ତୁ । ତାଙ୍କର ପହଞ୍ଚିବା ଆଗରୁ ବିବାହ କାର୍ଯ୍ୟ ତ ସରିଥିବ । ସେହି ଦିନ ମାଉସୀଙ୍କ ପାଖକୁ ମଧ୍ୟ ଖବର ପଠାଇବା ଦରକାର । ସେତକ କେବଳାନନ୍ଦବାବୁ କରିପାରିବେ । ମୁଁ ସେ ଦାୟିତ୍ୱ ନେବି ।

ନା, ନା ପ୍ରଦ୍ୟୁମ୍ନ ! ଆଗରୁ ଜାଣିଲେ ଅସୁବିଧା ହେବ । ପରେ ଜାଣିଲେ, ସେମାନଙ୍କୁ ଉପହାସ କଲା ପରି ହେବ । ବଳେ ସେମାନେ ଜାଣିବେ ।

ସେମାନଙ୍କର ଜାଣିବା ଦରକାର, ବିକ୍ରମ ! ବିଳମ୍ବ ପାଇଁ ବରଂ ଦୋଷଟା ମୁଁ ମୋ ମୁଣ୍ଡକୁ ଟାଣିନେବାକୁ ପ୍ରସ୍ତୁତ । ବର ଓ କନ୍ୟା ଦୁହିଁଙ୍କର ଅଭିଭାବକ ଯେଉଁଠି ଅସମ୍ମତ, ପରେ ବିବିଧ ପ୍ରକାର ଆନ୍ଦୋଳନ, କୁତ୍ସା ରଟନା, ପରିସ୍ଥିତିର ଦୋଷ ଦିଆଯାଇ ଜଣ୍ଟିଲ ହେବ । ସବୁ ମଙ୍ଗଳମୟ ଧୈର୍ଯ୍ୟରେ ସହିତ ସହିବାକୁ ପଡ଼ିବ । କେବଳ ଦୁଇଟି କୁଟୁମ୍ବରେ ନୁହେଁ, ବନ୍ଧୁବାନ୍ଧବ, ଆତ୍ମୀୟ ସ୍ୱଜନ, ଜଣା ଅଜଣା ଅସମ୍ପୃକ୍ତ ବାହାର ଲୋକଙ୍କ ମଧ୍ୟରେ ନିନ୍ଦା ରଟିବ । ସେଥିକୁ ତ ପ୍ରସ୍ତୁତ । ପିତାମାତାଙ୍କୁ ଅଳ୍ପ ଆଗରୁ ଜଣାଇଲେ କ'ଣ ବା ଅଧିକ କ୍ଷତି ହେବ ?

ବହୁ ଆଲୋଚନା ପରେ ବିକ୍ରମ ରାଜି ହେଲା ।

ରାତି ନଅଟାରେ ସେ ହୋଟେଲକୁ ଫେରିଲା ।

ତ୍ରିଗୁଣାବାବୁ ବସନ୍ତକୁ ଦେଖି ହସ ହସ ହେଲେ । ଚଉକିରୁ ଉଠି ଆଗେଇଆସି କରମର୍ଦ୍ଦନ କଲେ । କହିଲେ, ମୁଁ ତମକୁ ଅଭିନନ୍ଦନ ଜଣାଉଛି, ବସନ୍ତ ! ସକାଳୁ ଏତେବେଳଯାଏ ତମେ ଥିଲ କେଉଁଠି ?

ବସନ୍ତ ନମସ୍କାର କରି ଆଉ ଚଉକିରେ ବସିଲା । ପ୍ୟାଣ୍ଟପକେଟରୁ କାଢ଼ି ଟଙ୍କା ବଣ୍ଡଲ ତ୍ରିଗୁଣାବାବୁଙ୍କ ଆଗରେ ଟେବୁଲ ଉପରେ ରଖି କହିଲା, ଏତିକି ଯୋଗାଡ଼ କରିବାରେ ବ୍ୟସ୍ତ ଥିଲି । ଗଣନ୍ତୁ । ତାରିଖ ଓ ସମୟ ପରେ ଜଣାଇଦେବି ।

ତ୍ରିଗୁଣାବାବୁ କହିଲେ, ଟଙ୍କା ମୋ'ର କ'ଣ ହେବ ? ସହକାରୀ ମାନେଜର ସୌଭାଗ୍ୟବାବୁଙ୍କ ଅଫିସ୍ ତମେ ଦେଖିଛ ? ଡାଇନିଂ ହଲ୍ ଓ ରିସେପସନ୍ ହଲ୍‌ର ମଝିରେ । ଏ ସବୁ ବିଷୟର ତତ୍ତ୍ୱ ସେ ନିଅନ୍ତି ।

ଟଙ୍କାତକ ପୁଣି ପକେଟରେ ରଖି ବସନ୍ତ ଉଠିଲା । ତ୍ରିଗୁଣାବାବୁ ଦାଢ଼ି ଆଉଁସି ମୁଣ୍ଡ ଟଙ୍ଗାଇ କହିଲେ, ତମେ କ୍ଲାନ୍ତ ଦିଶୁଛ । ବସ । ଏପରି ଅଧୀର ହେଉଛ କାହିଁକି ? ଯାହା ହେବାର କଥା ଠିକ୍ ସମୟରେ ସବୁ ହୋଇଯିବ । ଏଇ ଟେବୁଲ ଉପରେ ବସି ଆଗ କପେ କଫି ଖାଇ ତାଜା ହୋଇଯାଅ । ତା' ପରେ ଖବର ଶୁଣିବ । ସବୁ ବିଷୟର ଯାହା କରିବାର କରିବ ।

ତ୍ରିଗୁଣାବାବୁ କଲିଂ ବେଲ୍ ଟିପି ଜଣେ ପରିଚାରକକୁ ଡକାଇଲେ । ଦୁଇ କପ୍ କଫି ବରାଦ କରି ଶୀଘ୍ର ଆଣିବାକୁ ତାକୁ ବରଗିଲେ । ବସନ୍ତକୁ କହିଲେ, ତମର ବ୍ୟାକୁଳତା ଅପେକ୍ଷା, ମୁଁ ଦେଖୁଛି, ତା'ର ବ୍ୟାକୁଳତା ବଳେଇପଡ଼ୁଛି । ସନ୍ଧ୍ୟା ପରେ ସେ ଆମ ଘରକୁ, ଜୟଶ୍ରୀ ପାଖକୁ ପୁଣି ଆସିଥିଲା ।

ଅନୁପା ?

ଆଉ କିଏ ହୋଇପାରେ ? ତା' ସଙ୍ଗରେ ତାର ଆଉ କେତେଜଣ ବାନ୍ଧବୀ ଆସିଥିଲେ । କେଉଁମାନେ ମୁଁ ଜାଣେ ନାହିଁ । ହୁଏତ ଜୟଶ୍ରୀ

ଜାଣେ । ତମକୁ ସେ ଖୋଜୁଥିଲା । ଜୟଶ୍ରୀ ମୋତେ ଫୋନ୍ କରିଥିଲା । ତମେ ଫେରିପାରି, କିନ୍ତୁ କେତେବେଳେ ଫେରିବ ମୁଁ ଜାଣେ ନାହିଁ ବୋଲି କହିଲି । ଶୁଣିଲି, ଜୟଶ୍ରୀ ସଙ୍ଗରେ ଅନୁପା ସୌଭାଗ୍ୟବାବୁଙ୍କ ସଙ୍ଗେ ସାକ୍ଷାତ କରିବାକୁ ଆସିଥିଲା ।

କାହିଁକି ?

ତମେ ଯେଉଁଥିସକାଶେ ବୋଧହୁଏ ଅଖିଆ ଝିପିଆ ସାରାଦିନ ଧାଇଁଛ, ସେହି ବିଷୟ ଚୂଡ଼ାନ୍ତ କରିବାକୁ ସେ ନିଜେ ଧାଇଁ ଆସିଥିଲା । କାଲି ତାକୁ ନିଶ୍ଚୟ ତମେ 'ପ୍ରଜାପତି ନିଳୟ' ସମ୍ବନ୍ଧରେ ସୂଚନା ଦେଇଛ ?

କହିଥିଲି ।

ହେଲା । ତମେ ଯାହା କରିବାକୁ ଚାହୁଁଥିଲ, ସେତିକ ସେ କରି-ଯାଇଛି । ସୌଭାଗ୍ୟବାବୁ ମତେ ଖବର ଦେଇଗଲେ । ଦୁଇ ଦିନ ରିଜାର୍ଭେସନ୍ । ଅଗ୍ରିମ ପେମେଣ୍ଟ । ବାକିସବୁ ଖବର ସୌଭାଗ୍ୟବାବୁଙ୍କ ପାଖରୁ ବୁଝିଲେ ଭଲ ହେବ । ଅନୁପାକୁ ଫୋନ୍ କରି ମଧ୍ୟ ବୁଝିପାରି । ଆମ ଘର ଫୋନ୍‌ରେ, ଅବା—

ଚକିତ ନେତ୍ରରେ ବିସ୍ମୟ ନିର୍ଗୁଣାବାବୁଙ୍କ ମୁହଁକୁ ଚାହିଁରହିଥିଲା । ସେ ନେତ୍ରରେ ଛଳଛଳ ହୋଇଥିଲା ଲୋତକ । ନିର୍ଗୁଣାବାବୁଙ୍କ କଥାରେ ବିଶ୍ୱାସ କରି ମଧ୍ୟ ସେ ଯେପରି ବିଶ୍ୱାସ କରିପାରୁ ନ ଥିଲା ।

ଗୋଟିଏ ଟ୍ରେ'ରେ ପରିଚାରକ ପ୍ଲେଟ୍‌ଭରି ବିସ୍କୁଟ ଓ କିଛି କାଜୁ-ବାଦାମ ସହ ଦୁଇକପ ଚା' ଆଣି ପାଖରେ ଛିଡ଼ା ହେଲା । ଟେବୁଲ ଉପରେ ରଖିବାକୁ ଆଙ୍ଗୁଠି ଦେଖାଇ ନିର୍ଦ୍ଦେଶ ଦେଇ ନିର୍ଗୁଣାବାବୁ କହିଲେ, ସୌଭାଗ୍ୟବାବୁଙ୍କୁ ସଲାମ୍ ଦିଅ ।

ପରିଚାରକ ଉତ୍ତର ଦେଲା, ଦେଇଛି ଆଜ୍ଞା ! କିନ୍ତୁ ସେ ଶୀଘ୍ର ଆସି-ପାରିବେ ନାହିଁ । ତାଙ୍କ ପାଖରେ ବହୁତ ଲୋକ ଅଛନ୍ତି ।

ଆଚ୍ଛା ! ତମେ ଖବର ଦିଅ । ତାଙ୍କର କାମ ସାରି ମୋ ସଙ୍ଗେ ଫୋନ୍‌ରେ କଥା ହେବେ ।

ପରିସ୍ଥିତିକୁ ମୁଣ୍ଡ ନୋଇଁ ସମ୍ମତି ଜଣାଇଲା । ପରଦା ଆଡ଼ୁଇ ପଦାକୁ ଚାଲିଗଲା । ନିଜେ ବିସ୍କୁଟ୍ ଖଣ୍ଡିଏ ହାତରେ ଉଠାଇ ନିର୍ଗୁଣୀବାବୁ କହିଲେ, ଡେରି କାହିଁକି ? ଏଗୁଡ଼ିକର ସଦ୍‌ବ୍ୟବହାର କର । ନିଜ କୋଠରିକୁ ଯାଇ ଟିକିଏ ବିଶ୍ରାମ ନିଅ । ତା'ପରେ ଭାବି ଚିନ୍ତି ତମେ ତମର କର୍ତ୍ତବ୍ୟ ସ୍ଥିର କରିବ । ମୁଁ ଆଉ ତମ ଦୁହିଁଙ୍କର ବ୍ୟାପାରରେ ନିଜକୁ ମୋଟେ ସମ୍ପୃକ୍ତ କରିବାକୁ ଚାହେଁ ନାହିଁ । ତମର ଦାୟିତ୍ୱ ତମର । ତମକୁ ହିଁ ତୁଲାଇବାକୁ ପଡ଼ିବ ।

କଫି କପ୍ ଉଠାଇ ସେ ବିକ୍ରମର ହାତକୁ ବଢ଼ାଇଦେଲେ । ଆଉ କପ୍ ଉଠାଇ ଓଠରେ ଲଗାଇଲେ । ଯୋଡ଼ିଏ ଚୋପା ଶୋଷି ସେ କହିଲେ, ତମ ଦୁହିଁଙ୍କର ପରସ୍ପରର ସ୍ନେହକୁ ମୁଁ ସମ୍ମାନ ଦେଖାଉଛି । ସ୍ୱାଗତ କରୁଛି । ତମ ଦୁହିଁଙ୍କର ଧୃଷ୍ଟତାକୁ ମୁଁ ପସନ୍ଦ କରିପାରୁନାହିଁ । ଯେଉଁମାନେ ପ୍ରତିବାଦ କରିବେ, ତାଙ୍କ ବିରୁଦ୍ଧରେ ସାହସର ସହିତ ଯଦି ଅଭିଯାନ କରି-ପାରିଥାନ୍ତ, ନିନ୍ଦା ସମାଲୋଚନାକୁ ଦୁଇକଡ଼କୁ ଆଡ଼େଇ, ମୁହିଁରୁ ମୁଲଜାର ମୁଖା କାଢ଼ି ନିର୍ଭୟ ଯଦି ହାତ ଧରାଧରି ହୋଇ 'ପ୍ରଜାପତି ନିଳୟ'କୁ ଆସିପାରନ୍ତ, ତେବେ ତମେ ମୋର ସାବାସିର ପାତ୍ର ହୋଇପାରନ୍ତ ! ସାମାଜିକ ପରିଣାମକୁ ତମେ ବିହେଁ ଡରୁଛ । ମୁଁ ଡରି ନ ଥିଲି । ତ୍ୟାଜ୍ୟପୁତ୍ର ହୋଇଥିଲି । ମୋର ପିଲାମାନେ ଡରି ନ ଥିଲେ । ମୋର ସ୍ନେହ ସେମାନେ ହରାଇ ନ ଥିଲେ । କେବେ ହରାଇବେ ନାହିଁ ।

ଲଜ୍ଜାରେ ବିକ୍ରମର ମୁହିଁ ଜଳିଯାଉଥିଲା । ସେ ନିର୍ବାକ୍ ହୋଇ କଫି ଶୋଷୁଥିଲା ।

ନିର୍ଗୁଣୀବାବୁ ସ୍ୱଗତୋକ୍ତି କଲେ—ସମାଜର ରୂପ ବଦଳି ବଦଳି ଯାଉଛି । ସ୍ତ୍ରୀ-ଶିକ୍ଷା ଓ ସ୍ତ୍ରୀ-ସ୍ୱାଧୀନତା ପାଇଁ କେବଳ ସବୁବେଳେ ସର୍ବଦା ଚିତ୍କାର ପଡ଼ୁନାହିଁ, ବିଭିନ୍ନ ପ୍ରକାରରେ ଉଦ୍ୟମ ହେଉଛି । ପରଦାପ୍ରଥା ଲୋପ ପାଇଲାଣି । ପୁଅଝିଅମାନେ ବିଭିନ୍ନ କ୍ଷେତ୍ରରେ ଏକାଠି ହେଉଛନ୍ତି । ସ୍ନେହ ଓ ମିଳାମିଶା ମୋଟେ ଅସ୍ୱାଭାବିକ ନୁହେ । ଯେଉଁ ଅଭିଭାବକେ ଏସବୁ

କ୍ଷେତ୍ରରେ ବିବାହ-ବନ୍ଧନର ଅନିବାର୍ଯ୍ୟ ଦୃଷ୍ଟାନ୍ତ, ସେମାନଙ୍କର କପଟ ଆତ୍ମ-ମର୍ଯ୍ୟାଦାର ଗୋପନ ଦ୍ୱନ୍ଦ୍ୱରେ ବାସ୍ତବତା ଆଡ଼କୁ ପିଠି ଦେଖାଇ ବ୍ୟକ୍ତିତ୍ୱର ପୃଷ୍ଠପୋଷକତା କରନ୍ତି । ସେମାନଙ୍କୁ ଶିକ୍ଷା ଦେବାକୁ ହେବ ।

କେନ୍ଦୁପଡ଼ ଠିକାଦାର ଶ୍ରୀଯୁକ୍ତ ମୋହନଲାଲ ତାଙ୍କର ନୂଆ ଆମ୍ବାସାଡ଼ର ଗାଡ଼ିଟି ପଠାଇଦେଇଛନ୍ତି । ତାଙ୍କର ସାନପୁଅ ପଛ ସିଟ୍‌ରେ ଅପେକ୍ଷା କରି ବସିଛି । ଡ୍ରାଇଭର ସିଟ୍‌ରେ ଡ୍ରାଇଭର ପ୍ରସ୍ତୁତ ହୋଇ ରହିଛି । ଜିନିଷପତ୍ର ପଛରେ ଲଦା ହୋଇସାରିଲାଣି । ସମସ୍ତ ସକାଳ ନଅଟା ।

ସଞ୍ଜୟବାବୁ ଗାଡ଼ିରେ ବସିଲେ ଗାଡ଼ି ଛୁଟିବ । ସେ ପ୍ରସ୍ତୁତ ହୋଇ-ସାରିଲେଣି । ବାହାରିଲା ବେଳକୁ କେତେ ନା କେତେ ନିମନ୍ତ୍ରିତ ବନ୍ଧୁ ପହଞ୍ଚି-ଯାଉଛନ୍ତି । ସେମାନଙ୍କର ଅଭିନନ୍ଦନ ଗ୍ରହଣ କରିବା ଓ ସେମାନେ କୌଣସି ନା କୌଣସି କାରଣ ଦେଖାଇ ବିବାହ ଉତ୍ସବରେ ଯୋଗ ଦେବାକୁ ଅକ୍ଷମ ବୋଲି ସେମାନଙ୍କର ଦୁଃଖ ପ୍ରକାଶ ଶୁଣିବାରେ ସମୟ କଟୁଛି ।

ଛପା ନିମନ୍ତ୍ରଣପତ୍ର ସେ ନିଜେ ସମସ୍ତଙ୍କୁ ଜଣ ଜଣ କରି ଦେଇ-ଆସିଥିଲେ । ସଞ୍ଜୟ ନିକଟସ୍ଥ, ଭଦ୍ର, ମିଷ୍ଟଭାଷୀ, ପରୋପକାରୀ ଓ ହାତରୁ ଖର୍ଚ୍ଚ କରି ଅନ୍ୟମାନଙ୍କୁ ଆପ୍ୟାୟିତ କରେ । ସେ ସ୍ନେହ, ଭକ୍ତି ଓ ସମ୍ମାନର ଅଧିକାରୀ ହୋଇଛି । ବନ୍ଧୁ ଓ ଅନୁଗତଙ୍କର ପରିସର ବଡ଼ । ସମସ୍ତଙ୍କୁ ନିମନ୍ତ୍ରଣ କରିବାର କଥା, ଉପରିକ, ସହକର୍ମୀ ଓ ଅଧୀନସ୍ଥ । ଏହାଛଡ଼ା କ୍ଲବର ସଭ୍ୟ, ସାଂସ୍କୃତିକ ପରିଷଦର ସଭ୍ୟ ଓ ସଭ୍ୟାମାନେ । ଅଭିନନ୍ଦନ ଓ ଶୁଭେଚ୍ଛା ବୃଷ୍ଟି ହେବାର କଥା ।

କୋଟିପତି ମୋହନଲାଲଙ୍କର ପୁତ୍ର ମଖନଲାଲଙ୍କର ଧୈର୍ଯ୍ୟ ଅସୀମ । ହାକିମହୁକୁମାଙ୍କର ଢଙ୍ଗ ସେମାନଙ୍କୁ ଜଣା । ପ୍ରତ୍ୟେକର ଖିଆଲ ସଙ୍ଗେ କାର୍ଯ୍ୟସିଦ୍ଧି ପାଇଁ ନିଜକୁ ଖାପ ଖୋଇବା ସେମାନଙ୍କର ଶିକ୍ଷା ଓ ଅଭ୍ୟାସ । ମୋହନଲାଲ ବି ନିମନ୍ତ୍ରିତ । କମଳକୃଷ୍ଣବାବୁ ସଞ୍ଜୟ ପାଖକୁ

ପଠାଇଥିବା ତାଡ଼ାଏ ଗ୍ଲପା ନିମନ୍ତ୍ରଣ ପତ୍ରରୁ ଖଣ୍ଡିଏ ଧରି ମଖନଲାଲ ଅକ୍ଷର ଚହ୍ନି ଚହ୍ନି ବାରମ୍ବାର ପଢ଼ୁଛନ୍ତି — × × ପୁଅ ସଞ୍ଜୟର ବାହାଘର × × —ଙ୍କ ଝିଅ ଅନୁପମା ସହିତ × × ଚଳିତ ମାସ ସତେଇଶ ତାରିଖ ରବିବାର × × —

ଶେଷରେ ଆସିଥିବା ଦୁଇଜଣ ଭଦ୍ରବ୍ୟକ୍ତିଙ୍କୁ ବିଦାୟ ଦେଇ ସଞ୍ଜୟ କାର୍ ନିକଟକୁ ଆସିଲା । ତାକୁ ଦେଖି ମଖନଲାଲ ପଛ ସିଟ୍‌ର ଦରଜା ଖୋଲି ପଦାକୁ ବାହାରିଲେ । ସଞ୍ଜୟ ଲକ୍ଷ୍ୟ କଲା ଯେ, ତାଙ୍କର ପିଅନ ଖବର କାଗଜ ଓ କେତେଖଣ୍ଡି ଚିଠି ଡାକଘରୁ ନେଇ ତା' ପାଖକୁ ଧାଇଁଛି । ସେ ଅପେକ୍ଷା କଲା । ପିଅନ ପାଖକୁ ଆସି ପତ୍ର କେଇଖଣ୍ଡି ତା' ହାତକୁ ବଢ଼ାଇଦେଲା ।

ମଖନଲାଲ କହିଲେ, ଆପଣ ସୁବିଧାରେ ଏକା ପଛରେ ବସନ୍ତୁ ଆଜ୍ଞା, ମୁଁ ଆଗରେ ବସୁଛି । ସଞ୍ଜୟର ଆପତ୍ତିକୁ ଭଦ୍ରତାର ସହ ଧ୍ୟାନ ନ କରି ସେ ଆଗ ସିଟ୍‌ରେ ଡ୍ରାଇଭର ପାଖରେ ବସିଲେ । ସଞ୍ଜୟ ପଛରେ ବସି ଦରଜା ବନ୍ଦ କଲା ।

କାର୍ ଚାଲିଲା ।

ସୁନ୍ଦରଗଡ଼ ସହର ଅତିକ୍ରମ କରିବାଯାଏ ସଞ୍ଜୟ ବାହାରକୁ ଚାହିଁ-ରହିଥିଲା । ମୁହଁରେ ହସ ଲାଗିରହିଥାଏ । ଭାବୁଥାଏ, ଜୀବନର ଗୋଟାଏ ବିରାଟ ପରିବର୍ତ୍ତନର ସମ୍ମୁଖୀନ ସେ ହେବାକୁ ଯାଉଛି । ବିବାହ ବନ୍ଧନରେ ସେ ନିଜକୁ ବାନ୍ଧିବ । ଅତୀତର ସବୁ ଫୁର୍ତ୍ତି ସବୁ କଣ୍ଢେଇଖେଳକୁ ସ୍ମୃତିର ଓ ବିସ୍ମୃତିର ଅନ୍ଧାରି ଗହ୍ୱରକୁ ନିକ୍ଷେପିବ ।

ସେ ନୂଆ ମଣିଷ ହେବ । ପବିତ୍ର ସୁନ୍ଦର ନୂତନ ସଂସାର ଗଢ଼ିବ । ଯେଉଁମାନଙ୍କ ସଙ୍ଗେ ସେ ଖେଳିଥିଲା, ଯେଉଁମାନେ ତା' ସଙ୍ଗେ, ହୁଏତ ଅନ୍ୟମାନଙ୍କ ସଙ୍ଗେ ବି ଖେଳିବାକୁ, ଫୁର୍ତ୍ତି କରିବାକୁ ଆଗେଇ ଆସିଥିଲେ, ସେଇ ମନୋହାରିଣୀ ଚିତ୍ରପ୍ରତିମାମାନେ କିଏ ଯାଇଁ କେଉଁଠି । ଯାହା କହି ନୁହଇ, ଯାହା କହିବାକୁ ଲାଜ, ନୂତନ ଜୀବନର ଚଳଣି ତଳେ ତାକୁ

ସମାଧି ଦେଇଥିବେ । ଭାଗ୍ୟବତୀ ସତୀ ସାଧ୍ୱୀ କୁଳବଧୂମାନେ ! କେହି କେହି ଜନନୀର ଗର୍ବରେ ଗର୍ବିତା ହୋଇଥିବେ । କୁଳରକ୍ଷିକାର ସ୍ନେହସମ୍ମାନର ଅଧିକାରିଣୀ ହୋଇଥିବେ ।

ସହସା ସ୍ମୃତିରେ ଚନ୍ଦ୍ରିକା ପଶିଲା । ଗୋଟିଏ ସରଳ ସୁନ୍ଦର ନିଷ୍ପାପ ମୂର୍ତ୍ତି, ଲାଜ ଲାଜ ସ୍ମିତହସିତ, ଚଳନ୍ତା ଗାଡ଼ିର କଡ଼େ କଡ଼େ ସତେ ଜ ଅସ୍ତବ୍ୟସ୍ତ ହୋଇ ଧାଉଁଛି । ଉନ୍ମୁକ୍ତ କବରୀ ପଣତ ସଙ୍ଗରେ ଧୂଳିଧୂସରିତ ହୋଇଛି । ସୂର୍ଯ୍ୟରଶ୍ମିରେ, ଆଗୁଆ ପବନରେ ଇତସ୍ତତଃ ହୋଇ ପଛରେ ଉଡ଼ୁଛି । କ'ଣ ଯେପରି ସେ କହିବାକୁ ଚାହେଁ ।

ପୁଷ୍ପା !

ଦିଓଟି ଦୀର୍ଘଶ୍ୱାସ । ପୁଷ୍ପାର ସ୍ମୃତି । ସେ କହୁ ନୁହେଁ । ମନର ବିକାର । ଟିକିଏ ଅନୁତାପର ପ୍ରତିବିମ୍ବ ? ସଞ୍ଜୟ ପଦଗୁଡ଼ିକ ଉପରକୁ ଦୃଷ୍ଟି ଫେରାଇଲା । ବିଚାରିଲା, କାହିଁକି ଅନୁତାପ ସେ କରିବ ? ପୁଷ୍ପା ନିଜେ ଆତ୍ମଘାତିନୀ ହୋଇଛି । ମରି ବୋଲି ସଞ୍ଜୟ ତାକୁ କହିନାହିଁ । କେହି ତା' ପଛରେ ସେପୁଲିଙ୍କୁ ଗୋଡ଼ାଇଯିବ ନାହିଁ । ଆନନ୍ଦବେଳରେ ଦୁଃଖର ସ୍ମୃତି ସେ ମନକୁ ଆଣିବ ନାହିଁ ।

ଖଣ୍ଡିଏ ନିମନ୍ତ୍ରଣ ପତ୍ର— × × ଜୁନ୍‌ମାସ ସତେଇଶ ତାରିଖରେ × × ଅନୁପମାର ଶୁଭପରିଣୟ × × ସଞ୍ଜୟକୁମାର ସହ × × ତ୍ରୁଟି ମାର୍ଜନା କରିବେ— ।

ସଞ୍ଜୟ ସାମାନ୍ୟ ହସିଲା । ଦାମିକା 'ଶୁଭବିବାହ' ଲଫାପା ଉପରେ ଲେଖା ହୋଇଥିବା ଠିକଣାକୁ ପରୀକ୍ଷା କଲା । ଓଡ଼ିଆରେ ଲେଖା ହୋଇଛି । ନିରୁପାର ହସ୍ତାକ୍ଷର ହୋଇପାରେ, ଅବା ବନମକେଶବର ! ଆଉ କାହାର ହୋଇପାରେ । ସୁନେଲି ଅକ୍ଷରରେ ଛପା ପଦଟି ମହକୁଛି । ଅନୁପମା ଲେଖି ନ ଥିବ ।

ଆଗ ସିଟ୍‌ରୁ ମୁହଁ ବୁଲାଇ ମଖନଲାଲ ବିମାଚ ହୋଇ କହିଲେ, ଝାରସୁଗୁଡ଼ା ପାଖେଇ ଆସିଲା । ଏଠାରେ କିଛି କାମ ଅଛି ସାର୍, ଚା, କଫି ଖାଇବେ ?

ନାହିଁ ନାହିଁ । ଆପଣ ଗାଡ଼ିରେ ଏତେ ଜାତିର ଏତେ ଫଳ ଗଦା ଇଛନ୍ତି ଯେ—

ସେ କିଛି ନୁହେଁ । ତେବେ ସମ୍ବଲପୁରରେ—

ନାହିଁ, ବରଂ କଟକରେ ଟିକିଏ ଡେରିରେ ଲଞ୍ଚ୍ ଖାଇବାର ବ୍ୟବସ୍ଥା କରାଯାଉ । ଆଉ ଆପଣଙ୍କର ଡ୍ରାଇଭର ତ ଗାଡ଼ିକୁ ପବନ ବେଗରେ ଉଡ଼ାଇନେଉଛି ।

ରାସ୍ତା ଟିକିଏ ଖରାପ ଅଛି, ନୋହିଲେ ଆହୁରି ବେଗରେ ଲଛମନ ଗାଡ଼ି ଚଳାଇନଥାନ୍ତା । ଆପଣଙ୍କୁ କଟକରେ ପହଞ୍ଚାଇ ସଙ୍ଗେ ସଙ୍ଗେ ଭୁବନେଶ୍ୱର ଗଲେ ମନ୍ତ୍ରୀଙ୍କ ସଙ୍ଗେ ସଞ୍ଜ ଆଗରୁ ମୁଲାକାତ୍ ହେବ ।

ଆଜି ?

ବହୁତ ଜରୁରୀ କାମ । କାଲି ସକାଳେ ସେ ପ୍ଲେନ୍‌ରେ ଦିଲ୍ଲୀ ଚାଲିଯିବେ ।

ଆଚ୍ଛା । ମୋ ପାଇଁ ବ୍ୟସ୍ତ ହୁଅନା । ଗାଡ଼ି ଚାଲୁ ! ତେବେ ଢେଙ୍କାନାଳରେ ମୋର ପାଞ୍ଚ ଦଶ ମିନିଟ୍ କାମ ଅଛି । ସେଠାରୁ ମୋ ସାଙ୍ଗରେ ମୋର ଜଣେ ବନ୍ଧୁ ବି ଯାଇପାରନ୍ତି ।

ହଉ ଆଜ୍ଞା !

ମଖନ୍‌ଲାଲ ଆଗକୁ ଚାହିଁଲେ । ଝାରସୁଗୁଡ଼ା ରେଲଷ୍ଟେସନ ଅତିକ୍ରମ କରି ଗାଡ଼ି ସହର ଭିତରେ ପଶିଲା । ଲଛମନ ଗାଡ଼ି ଗତି ମନ୍ଥର କଲା । ସଞ୍ଜୟ ଚିନ୍ତାଶୂନ୍ୟ ନେତ୍ରରେ କଡ଼କୁ ଅନାଇଁ ସବୁ ଦେଖି କିଛି ନ ଦେଖିଲେ ପୁଣି ମନକୁ ଭାବନା ଘୋଟିଗଲା । ବିକ୍ରମକୁ ସେ ସଙ୍ଗରେ ନେଇଯିବ । ବିଷ୍ଣୁ ରହିଲା, ଅବଶ୍ୟ ଯଦି ସେ ଆଗରୁ ଚାଲିଯାଇ ନ ଥାଏ । ଦୁଇ ବନ୍ଧୁଙ୍କ ମଧ୍ୟରେ ସାମାନ୍ୟ ବୁଝାମଣାର ଅମେଳ ହୋଇଥିଲା । ମାର୍କବାଦୀ, କର୍ତ୍ତବ୍ୟ-

କିନ୍ତୁ ବିକ୍ରମକେଶରୀ ସେଥିକି ଦାୟୀ ନୁହେ । ଦାୟୀ ସେ ନିଜେ । ଅତି ନିକଟ ସମ୍ପର୍କ ହେବାକୁ ସେ ଯାଉଛି, ଅନୁପାର ବଡ଼ଭାଇ !

ବିକ୍ରମ ବିନୟୀ, ବିକ୍ରମ ଭଦ୍ର, ଉଦାର ଓ କ୍ଷମାଶୀଳ । ଗରିବ ହୋଇ ପାରେ, କିନ୍ତୁ ତାର ମନରେ ଛଳ ନ ଥାଏ । ଛଳକପଟ ଜାଣେ ନାହିଁ । ତା'ର ସ୍ନେହରେ, ତା'ର ଭଲ ଗୁଣରେ ଅନ୍ୟମାନେ କିଣି ହୋଇଯାଆନ୍ତି । ପରଘରର ଝିଅବୋହୂଙ୍କୁ କେବେ ସେ ଆଡ଼ଆଖିରେ ଚାହିଁବାର କେହି ଦେଖିନାହିଁ । ପରଘରର ଚର୍ଚ୍ଚା କରିବା ତ ଦୂରର କଥା, ଯେଉଁଠାରେ ବନ୍ଧୁମହଲରେ ଚର୍ଚ୍ଚା ହେଉଥାଏ, ସେ ସ୍ଥାନ ତ୍ୟାଗ କରି ଚାଲିଯାଏ ।

ଅନୁପା ଓ ନିରୁପା ସେପରି ଭାଇଟିକୁ ସ୍ନେହ କରିବା ଅତି ସ୍ୱାଭାବିକ । ପିଲାଦିନରୁ ସେମାନେ ଏକାଠି ବଢ଼ିଛନ୍ତି । ଅପର ଲୋକଙ୍କ ସଙ୍ଗରେ ବୁଲି-ବାକୁ ନ ଯାଇ ଭାଇ ବିକ୍ରମ ସଙ୍ଗରେ ଭୁବନେଶ୍ୱର, କୋଣାର୍କ, ପୁରୀ, ଅବା ଅନ୍ୟ କେଉଁଠିକି ଅନୁପା ବୁଲିଗଲେ, ହସଖୁସିରେ ମନମଉଜରେ ସମୟ କଟାଇଲେ ଦୋଷାବହ ହେବ କାହିଁକି ?

ସେମାନେ ଦୁର୍ନାମ ରଟାଇଲେ । ସେ ନିଜେ ମଧ୍ୟ ସେଥିପାଇଁ ଦାୟୀ । ନିଜର ବିକୃତ ଭାବନା ଓ ବିଫଳ ଆଶାର କୁହାଟ ସେ ଛାଡ଼ିଥିଲା ।

ବୁଦ୍ଧିମତୀ ଅନୁପା ଯେ ଜ୍ୱଳନ୍ତ ବହ୍ନି ! ଅନ୍ୟ କେହି ଜାଣୁ ବା ନ ଜାଣୁ, ସେ ଜାଣେ । ଅନୁପା ନାଚେ, ଗାଏ, ନାୟିକାର ରୋଲରେ ଅଭିନୟ କରେ, ସହସ୍ର ଚକ୍ଷୁରେ ପ୍ରଲୋଭନର ହୁତାଶନ ଜଳାଏ, କିନ୍ତୁ ସେ ଚପଳ-ମତି ନିରୁପା ପରି ଟିକିଏ ଆଦରରେ ପରତେ ଯାଇ କୋଳରେ ଢଳିବାର ପିତୁଳା ନୁହେଁ ।

ମଝିରେ ମାତ୍ର ଗୋଟିଏ ଦିନ । ତା'ପରେ ଅନୁପା ତା'ର ହେବ । ନିରୁପା ହେବ ସ୍ନେହର ପିତୁଳା । ଦୂରେଇଯିବ । ଆଖି ଆଖି ହୁଏତ ଅତୀତର ଉତ୍ତେଜନାକୁ ଟିକିଏ ମନେପକାଇଦେବ ; କିନ୍ତୁ ସେ ହେବ କୌତୁକର ଟିକିଏ ମଧୁର ସ୍ମୃତି ।

ସମ୍ବଲପୁର ପାଖେଇ ଆସିଲା ।

ଇଂରାଜୀ ଖବରକାଗଜ ଓ ଓଡ଼ିଆ ମାସିକ ପତ୍ରିକା ଉପରକୁ ସଞ୍ଜୟ ଦୃଷ୍ଟି ଫେରାଇଲା । ମନ ଉଚ୍ଛନ୍ନ ହେଉଛି । ଏକାଡ଼ଆଁରେ କପଡ଼ କଣ୍ଟକରେ ପହଞ୍ଚିପାରନ୍ତା କି ! କୋରାପୁଟରୁ ଅଞ୍ଜନା ଓ ବିକାଶ ଆସିସାରିବେଣି । ଆଜି କେଉଁ ଆତ୍ମୀୟମାନେ ସମ୍ବଲପୁରରୁ ଯାଇ ପହଞ୍ଚିସାରିଥିବେ । ଘରେ ଗହଳ ଚହଳ । ସମ୍ବଲପୁରରେ ଅନେକ ଆତ୍ମୀୟମାନଙ୍କର ତଲାସ ନେଲେ ହୁଅନ୍ତା, କିନ୍ତୁ ଅନର୍ଥକ ଡେରି ହୋଇଯିବ । ସନ୍ଧ୍ୟା ଆଗରୁ ମଫସଲଙ୍କର ଭୁବନେଶ୍ୱରରେ କାମ ।

ଆରେ, ମାସିକପତ୍ରିକା 'ଜୀବନରଙ୍ଗ' ତଳେ ଆଉ ତିନିଏ ଲଫାପାର ଚିଠି ! ସେଇଟି ତଳେ ରହିଯାଇଛି । ପଢ଼ାଯାଇନାହିଁ । ବେଶ୍ ମୋଟାଳିଆ ଲାଗୁଛି । କିଏ ଦେଇପାରିଥାଏ ?

ସଞ୍ଜୟ ପତ୍ରଟି ଅଳସ ଭାବରେ ହାତରେ ଚାଉଁଲା । ଧୀରେ ଧୀରେ ଖୋଲି ତିନିଖଣ୍ଡି ପତ୍ର ଲଫାପା ଭିତରୁ ଓଟାରିଲା ।

ପ୍ରଥମ ପତ୍ରଟି ଖୋଲି ଆଖି ପକାଇ ସେ ଚମକିଉଠିଲା । ତାଆରି ହସ୍ତାକ୍ଷର, ତାଆରି ପତ୍ର ! ଆଖି ବୁଲାଇଲା । ସତେ, ତାଆରି ସେହି ପତ୍ର-ଖଣ୍ଡିକ, ଯାହାକୁ ସେ ନିରୁପାକୁ ଲେଖିଥିଲା । ଲେଖିସାରି ସେ ପତ୍ରଟି ପୋଷ୍ଟ ଅଫିସକୁ ପଠାଇଲା ପରେ ଅନୁତାପ କରିଥିଲା । ଫେରାଇ ଆଣିବାପାଇଁ ପୋଷ୍ଟ ଅଫିସକୁ ଅସ୍ଥିର ହୋଇ ଧାଇଁଥିଲା ।

ଦୁରାଶା । ଡାକ ବନ୍ଧାହୋଇ ସିଲ୍‌କରା ଥଳି ଭିତରେ ରଖା ସରିଥିଲା । ମନକୁ ସେ ସାନ୍ତ୍ୱନା ଦେଇଥିଲା ଯେ, ନିରୁପା ନାମରେ ଯାଇଥିବା ଚିଠି ଅନ୍ୟ କେହି ଖୋଲିବେ ନାହିଁ । ଖୋଲି ପଢ଼ିଲେ ମଧ୍ୟ ଠାରିଚଠିର ଇଙ୍ଗିତ ଭାଷା ଅନ୍ୟ କେହି ବୁଝିବେ ନାହିଁ ।

ବୁଦ୍ଧିମତୀ ଅନୁପାକୁ କେବଳ ଡର । ନିଶ୍ଚୟ ନିରୁପା ସେହି ଆଶଙ୍କାରେ ପତ୍ରଖଣ୍ଡି ଫେରାଇଦେଇଛି । ଗ୍ଲେଟ୍ ଚିଠିଟି ବୋଧହୁଏ ସେହି ଲେଖିଥିବ । ଏହାପରେ ବସ୍ତର ସଞ୍ଜୟ ଦ୍ୱିତୀୟ ଚିଠିଖଣ୍ଡି ଖୋଲିଲା । ତୃତୀୟ

ପଟଟି ଜଙ୍ଘ ଉପରୁ ତଳକୁ ଖସିଲା । ଗାଡ଼ିର ସହସା ଉଠାପଡ଼ା, ସହରର ଅମସୃଣ ରାସ୍ତାରେ ଗାଡ଼ି ହଲି ଦୋହଲି ଚାଲିଛି । ଖଣ୍ଡେଦୂର ପରେ ଭଲ ରାସ୍ତା ପଡ଼ିବ ପରା !

ସଞ୍ଜୟ ପରଦାକୁ ଟାଣିଲା । ଲୋକ ଗହଳି ଓ ଯାନବାହନକୁ ଆଡ଼େଇ ଆଡ଼େଇ ଯାଉଣୁ ଗାଡ଼ିର ଗତି ମନ୍ଥର ହୋଇଛି । ମଦନଲାଲ ମୁହଁ ବୁଲାଇ ପଚାରିଲେ, ଏଠାରେ କିଛି କାମ ନାହିଁ ତ ସାର୍ ?

ଅଳପ ହସି ସଞ୍ଜୟ କହିଲା, ନାହିଁ, ଢେଙ୍କାନାଳରେ ପାଞ୍ଚ ଦଶ ମିନଟ୍ ।

ମୋର ମନେଅଛି ।

ଚା’ ଖାଇବେ ନାହିଁ ?

ଆବଶ୍ୟକ ହେଲେ ବାଟରେ କେଉଁଠି ଖାଇବ । ଫ୍ଲାସ୍କରେ ଗରମ ଚା’ ପୂର୍ଣ୍ଣ ରହିଛି । ତିନିଜଣଙ୍କୁ ଯଥେଷ୍ଟ ।

ସିଗାରେଟ୍ ଟିଣ ଗାଡ଼ିରେ ରଖା ହୋଇଛି ସାର୍ !

ମୁଁ ଧୂଆଁ ଟାଣେ ନାହିଁ । ପାନ ଚୋବାଏ ନାହିଁ ।

ମଦନଲାଲ ମୁହଁ ବୁଲାଇ ଲିଛମନ ରାଓ ଡ୍ରାଇଭରକୁ ନିର୍ଦ୍ଦେଶ ଦେଲେ, ଗାଡ଼ି ଅଟକାଇବା ଦରକାର ନାହିଁ । ରେଢ଼ାଖୋଲରେ ଅଟକାଇ ମନ ହେଲେ ଚା’ ଖାଇପାରୁ ।

ସଞ୍ଜୟ ଦ୍ୱିତୀୟ ପତ୍ରଟି ଖୋଲିଲା । ଅକ୍ଷର ଅସୁନ୍ଦର, ଧାଡ଼ିଗୁଡ଼ିକ ବଙ୍କା । କେହି ତରତର ହୋଇ ଲେଖିଲା ପରି ଜଣାପଡ଼ୁଛି । ବଉଳ ବୋଲି ସମ୍ବୋଧନ କରି ଲେଖିଛି ।

—କଅଣ ତତେ ଅଜଣା ଯେ, ମୋର ଏ ଶ୍ରେଷ୍ଠ ଚିଠିରେ, ଶେଷ ଚିଠିରେ ସବୁ ପୁଣି ଚିପିବ ? ଧରା ନ ଦେଇ ତୁ ଟାଣୁପଣ ଦେଖାଉଛୁ । ନିବୁଝିଆ ପଣରୁ ତାଙ୍କ ଆଗରେ ମୁଁ ମୋର ଉରକଥା କହିଦେଲି । ସେ ଦେବ-ପୁରୁଷ । ଆଜି ତାଙ୍କର ଦେଖା ନ ପାଏଁ । ବିବେକ ନିର୍ମଳ ଥାଇ କ’ଣ ମୁଁ ଅମୃତ ବୋଲି ତାଙ୍କର ଗରଳ ଢୋକିଥିଲି କି ? ତାଙ୍କ ଆଖିରେ ତ

ଦୁର୍ବଳ ଥିଲା । ତାଙ୍କର ହସରେ କମିଆ ଥିଲା । ତାଙ୍କର ମନକଣା ମୋହିନୀ ଭାଷାରେ ଭବିଷ୍ୟତର ଆଶା ବି ଥିଲା । ମୋ ପ୍ରାଣର ବଉଳ ଲୋ , ତାଙ୍କର ପରଶରେ ଥିଲା ବିବେକ-ହୁଡ଼ା, ଚେତନା-ବୁଡ଼ା ମଦିରା । ତାଙ୍କର ଦୋଷ ନାହିଁ । ମୋର ଭୁଲ ନାହିଁ । ସେ ପର କଲେ, ମୁହଁଛପା ଦେଇ ତୋ ଅଶୋକାକୁ ସ୍ନେହ କଲେ । ନିଜକୁ ମୁଁ ଦେଖିଲେ ମତେ ଡର ମାଡ଼ୁଛି । ହତାଶିଆ ଲାଗୁଛି । ଆଖି ବୁଜିଲେ ମୁଁ ଶାନ୍ତି ପାଇବି । ଯାଉଛି ବଉଳ, ସେଇଆ କରିବି । ମନେ ରଖିଥିବୁ ।

ସଞ୍ଜୟର ଆଖି ତରଳି ହୋଇଗଲା । ଭୟରେ ସେ ସେହି ପତ୍ରଟିର ଅକ୍ଷରଗୁଡ଼ିକୁ ଚାହିଁରହିଥିଲା । କିଏ ସେ ପତ୍ର ଲେଖିଛି ଏବଂ କାହାକୁ ଲେଖିଛି ବୁଝିବାକୁ ତାର ବିଳମ୍ବ ହେଲା ନାହିଁ । ତା'ର ମନେହେଲା, ଯେପରି ପୁଷ୍ପାରାଣୀ ତା'ର ସେହି ପତ୍ରଟି ଭିତରେ ଆତ୍ମପ୍ରକାଶ କରିଛି । ସେ କାନ୍ଦୁଛି, ସେ ଅଭିଯୋଗ କରୁଛି, ସେ ଅଭିଶାପ ଦେଉଛି ।

ସଞ୍ଜୟର ହାତ ଥରିବାକୁ ଲାଗିଲା । ମୁଣ୍ଡ ଭିତରେ ସହସ୍ର ବୃଶ୍ଚିକର ଦଂଶନ । ସେ ପତ୍ରଟିକୁ ସିଟ୍ ଉପରେ ରଖି ପଦାକୁ ଚାହିଁଲା । ଦୁଇ କଡ଼ରେ ଅରଣ୍ୟ । ରାସ୍ତା ପାଖର ବୃକ୍ଷଗୁଡ଼ିକ ଅତି ବେଗରେ ପଛେଇ ଯାଉଛନ୍ତି । ନିର୍ଜନ ଜାତୀୟ ରାଜପଥରେ କାର୍ ଦ୍ରୁତଗତିରେ ଆଗେଇ ଚାଲିଛି । ମଧ୍ୟାହ୍ନ ହେଲେ ବି ପାଗ ମେଘୁଆ ଦିଶୁଛି । ଆକାଶରେ ବାଦଲ । ବୃଷ୍ଟିର ସମ୍ଭାବନା ରହିଛି ।

ସଞ୍ଜୟର ଉଦ୍‌ବେଳିତ ମନରେ ବିଷଣ୍ଣତା ଢେଉ ଭାଙ୍ଗୁଛି । ଅନୁତାପର କଣ୍ଟକାଗ୍ନି ବାରମ୍ବାର ଝଟକି ଉଠୁଛି । ଆକୁଳତାର ଆହା-ରବ ଅନ୍ତରର ଗଭୀର ଗହ୍ୱରରୁ ଉଠି ତା'ର ଔଦ୍ଧତ୍ୟ ଓ ଦାୟିତ୍ୱହୀନତାକୁ ପ୍ରଶ୍ନ ପଚାରୁଛି—ନିଷ୍ପାପ ପୁଷ୍ପରାଣୀର ମରଣ ପାଇଁ ତମେ ଦାୟୀ ନୁହଁ, କପଟ ବିଚାରୁଛ ? ତମର ବିଶ୍ୱାସଭଙ୍ଗ ତା'ର ଶେଷ ପରିଣତିର କାରଣ ନୁହେଁ କି ?

ହଠାତ୍, ହଠାତ୍ ସଞ୍ଜୟ ଆଖି ବୁଜି ପଛକୁ ଆଉଜିଲା । ଲମ୍ବ କେଶ ଭିତରେ ଦୁଇ ହାତର ଆଙ୍ଗୁଠି ଗଳାଇ କେଶ ଟାଣିବାକୁ ଲାଗିଲା । ଆହା ହତଭାଗ୍ୟ ପୁଷ୍ପା ! ସେ ଜଗତ ଆତ୍ମାର ସ୍ମୃତି ପାଖରେ କୈଫିୟତ୍ ଦେଲା—ମୁଁ ମନା କରି ନ ଥିଲି । ଆତ୍ମଘାତିନୀ ହେବାକୁ ମୁଁ ନିର୍ଦ୍ଦେଶ ଦେଇ ନ ଥିଲି । ଅନୁତାପ କରିବାର ପ୍ରଶ୍ନ ଉଠୁନାହିଁ ।

ଆଉ ଟିକିଏ ଭାବନା ମନରେ ପଶିଲା । ସଞ୍ଜୟ ଚମକିଉଠିଲା । ହଷ୍ଟେଲ, ଦ୍ୱିସ୍ତରଣୀ ଅନୁପା ନିକଟକୁ ଲେଖିଥିବା ପତ୍ରଟି ନିରୁପା କାହିଁ ପାଇଲା ? ବିବାହ ତିଥିର ସାମାନ୍ୟ କେତେଦିନ ଆଗରୁ ଏହି ମାରାତ୍ମକ ଚିଠିକୁ ସେ ତା' ପାଖକୁ ପଠାଇଦେଇଛି କେଉଁ ଉଦ୍ଦେଶ୍ୟରେ ? ନିରୁପା ତାକୁ କ'ଣ ଜଣାଇଦେବାକୁ ଚାହେଁ ?

ମୋହନଲାଲ ମୁହଁ ବୁଲାଇ ପଚାରିଲେ, ଆପଣଙ୍କର ଦେହ କ'ଣ ଭଲ ଲାଗୁନାହିଁ ? ଅନେକ ବେଳଯାଏ ଆଖି ବୁଜି ମୁଣ୍ଡର ବାଳ ଟାଣୁଥିଲେ କାହିଁକି ?

ସଞ୍ଜୟ କହିଲା, ନିଦୁଆ ଲାଗିଲା । କାଲି ରାତିରେ ଟାଉନ୍‌କ୍ଲବରେ ଗୋଟାଏ ସମାବେଶ ଥିଲା, ମୋହନବାବୁ ! ମଜଲିସ୍ ସାଙ୍ଗକୁ ଓଡ଼ିଶୀ ଗୀତ, ନାଚ । ତା'ପରେ ଖାନାପିନା । ଘରକୁ ଫେରି ବିଛଣା ଧରୁଣୁ ରାତି ଦୁଇଟା ।

ଜାଣେ, ସାର୍ ! ବଡ଼ବଡ଼ ସାହେବମାନେ ଯୋଗ ଦେଇଥିଲେ । ବାପା କହୁଥିଲେ । ବୁଢ଼ା ଝାଡ଼ୁସୁଗୁଡ଼ା ଫେରିଲେ ରାତି ଦୁଇଟାରେ । ସଙ୍ଗେ ସଙ୍ଗେ ଆମକୁ ଉଠାଇ ହୁକୁମ୍ ଦେଲେ, ବଡ଼ସକାଳୁ ଗାଡ଼ି ପାଇଁ ପହଞ୍ଚିବ । ସକାଳୁ ଉଠି ଦେଖେଁ ତ ସେ ପ୍ରସ୍ତୁତ ହୋଇ ଫୋନ୍ ଧରି ବସିଛନ୍ତି । ତାଙ୍କର ବୟସ ସତସ୍ତରି !

ସଞ୍ଜୟ କହିଲା, ସେପରି କର୍ମିଷ୍ଠ ହୋଇ ନ ଥିଲେ, ମୋହନଲାଲ୍-ବାବୁଙ୍କ ପଛେ ପଛେ ଲକ୍ଷ୍ମୀ ଗୋଡ଼ାଇ ନ ଥାନ୍ତେ । ବହୁତ ଭଲ ଲୋକ ।

ମାଖନ୍‌ଲାଲ୍ କହିଲେ, ଆମେ ଅନେକବେଳୁ କେଡ଼ାଖୋଲ୍ ଟପି-ଆସିଲୁଣି । କହିବେ ଯଦି, ଗାଡ଼ି ଟିକଏ ଅଟକାଇବା । ଆପଣଙ୍କୁ ତାଜା କରିବାକୁ ଗାଡ଼ିପଛରେ ବିସ୍କୁଟ୍, କେକ୍, ସିଙ୍ଗାଏଟ୍, ଡ୍ରିଙ୍କ୍ସ ରଖାହୋଇଛି । ପାଞ୍ଚ ମିନିଟ୍‌ର କାମ । ଆଳସ୍ୟ ଓ ତନ୍ଦ୍ରା କୁଆଡ଼େ ଉଡ଼ିଯିବ ।

ମାଖନଲାଲଙ୍କ ଓଠରେ ଅର୍ଥବୋଧକ ହସ । ଟିକଏ ମୁଣ୍ଡହଲା । ସଞ୍ଜୟ ହସିଲା । ମାଖନଲାଲ ହୁଏତ ବୟସରେ ତା'ଠାରୁ ପାଞ୍ଚ ସାତ ବର୍ଷ ବଡ଼ । ଚମ୍ପାଳିଆ ରଙ୍ଗ । ସ୍ୱାସ୍ଥ୍ୟ ଭଲ । ଗୋଲଗାଲିଆ ଚିକ୍କଣ ମୁହଁ । ଆଖି ଦିଓଟି ସାମାନ୍ୟ ଛୋଟ । ସେଥିକି ବଦଳେଇଛି । ସେଥିର ଭିତରେ ଆଖି ଦିଓଟି ମିଟିମିଟି ହେଉଛି । ସଞ୍ଜୟର ନିର୍ଦ୍ଦେଶକୁ ଆଗ୍ରହରେ ଅପେକ୍ଷା କରି ରହିଛି ।

ସଞ୍ଜୟ କହିଲା, ଥାଉ । ମୋର ତନ୍ଦ୍ରା ଭାଙ୍ଗିଲେଣି । ସତେ ଯଦି ଆଖି ମାଡ଼ି ମାଡ଼ି ପଡ଼ିବ, ଚଳନ୍ତା ଗାଡ଼ିରେ ଆଖି ବୁଜି ଶୋଇପଡ଼ିବି । ଆପଣଙ୍କ ମୂଲ୍ୟବାନ ଦ୍ରବ୍ୟଗୁଡ଼ିକର ସଦ୍‌ବ୍ୟବହାର ବନ୍ଧୁଙ୍କ ବସାରେ ଠେକାନା କରେ କରିଯିବ ।

ମାଖନଲାଲ ମୁହଁ ବୁଲାଇ, ଆଖି ବୁଜି ସାମାନ୍ୟ ଢୁଲାଇବାକୁ ଚେଷ୍ଟା କଲେ । ଅବା ଭାବୁଥିଲେ, ଟୋକା ଅଫିସର ମଣ ନ ହେଲା ପରି ଲାଗୁଛି !

ସଞ୍ଜୟ ଚଟି ଦୁଇଟଣ୍ଡି ଗୁଡ଼ିପକେଟରେ ଉଠିଲା । ନିରୁପାର ଉଦ୍ଦେଶ୍ୟ ବୁଝିବାକୁ ସେ ଦେହ ନୁଆଇଁ, ହାତ ବଢ଼ାଇ, ତଳେ ଖସିପଡ଼ିଥିବା ପଦଟି ଉଠାଇନେଲା । ଥରେ ମାଖନ୍‌ଲାଲ୍‌ଙ୍କ ମୁଣ୍ଡକୁ ଚାହିଁ, ଯେଉଁ ଚିଠିଖଣ୍ଡି ନିରୁପାର ବୋଲି ମଣିଥିଲା, ତାର ଭାଙ୍ଗ ଖୋଲିଲା । ପଢ଼ିଲା—

ସଞ୍ଜୟବାବୁ,

—ଆପଣ ହୁଏତ ନିଜକୁ ଚିହ୍ନି ମଧ୍ୟ ଚିହ୍ନିପାରି ନାହାନ୍ତି । ଏଥି ସହିତ ଯେଉଁ ପଦ ଦୁଇଟଣ୍ଡି ପଠାଇଲି ତାକୁ ପଢ଼ିଲେ ନିଜକୁ ଭଲକରି ଚିହ୍ନିପାରିବେ । ଏ ବିଷୟରେ ଅଧିକ ଲେଖିବା ନିଷ୍ପ୍ରୟୋଜନ ।

—ଆପଣ ଅପଣଙ୍କର ଶେଷ ପତ୍ର ନିରୁ ପାଖକୁ ଲେଖିଛନ୍ତି । ମୋ ବଉଳ ପୁଷ୍ପା ତାର ଶେଷପତ୍ର ମୋ ପାଖକୁ ଲେଖିଥିଲା । ଏଇଟି ଆପଣଙ୍କ ପାଖକୁ ମୋର ଶେଷ ପତ୍ର । ଲେଖିବାର ଉଦ୍ଦେଶ୍ୟ ଅଛି । ଆପଣ କ'ଣ ଚାହାନ୍ତି, ବାହାଘର ପରେ ଯେତେବେଳେ ଆପଣ ମୋ ଉପରେ ପ୍ରତିଶୋଧ ନେଉଥିବେ, ମୋ'ର ସାନଭଉଣୀ, ଗେହ୍ଲା ଭଉଣୀ ନିରୁ ନିଜ ଉପରେ ପ୍ରତିଶୋଧ ନେବାକୁ ପୁଷ୍ପରାଣୀର ପଦାଙ୍କ ଅନୁସରଣ କରି ଏ ଦୁନିଆ ଛାଡ଼ି ଚାଲିଯିବ ?

—ଆପଣ ନିରୁକୁ ସ୍ନେହ କରନ୍ତି । ନିରୁର ସେଇ ବିଶ୍ୱାସ । ନିରୁ ଯେ ଆପଣଙ୍କୁ ଖୋଇ ସ୍ନେହ କରେ, ତାହା ଆପଣଙ୍କ ବ୍ୟକ୍ତିତ ଅନ୍ୟ କେହି ଅଧିକ ଅବଗତ ନୁହେ । ମୋତେ ବିବାହ କରି ମୋର ଅନୁଜାକୁ ଆପଣ ପ୍ରେୟସୀ କରି ରଖିବାକୁ ଚାହାନ୍ତି ? ତାହା ଯଦି ଆପଣଙ୍କର ଅଭିପ୍ରାୟ ଥାଏ, ସେ ଅଭିପ୍ରାୟ ସଫଳ ହେବ ନାହିଁ । ମୁଁ ବିବାହ ନ କରି ଆତ୍ମର ପଡ଼ିବି ବୋଲି ବୋଉକୁ ବାରମ୍ବାର କହିଲି । ସେ ଶୁଣିଲା ନାହିଁ ।

— ବାହାଘରର ସବୁ ଆୟୋଜନ ହୋଇସାରିଛି । କାହାକୁ ବିବାହ କରିବାକୁ ବରବେଶ ସାଜ ଦଳବଳ ଘେନି ଆସିବେ ? ଆମ ଦୁହିଁଙ୍କର ଶବକୁ ? ପ୍ରେତାତ୍ମାଙ୍କୁ ? ମନେ ରଖିଥାଆନ୍ତୁ, ପୁଷ୍ପପରି ମୁଁ ନିର୍ବୋଧ ନୁହେ । ଦୁନିଆ ଲୋକଙ୍କର ଅବଗତି ପାଇଁ କି ଉପାୟ ଅବଲମ୍ବନ କରିବାକୁ ହେବ, ସେତିକ ମୋତେ ଜଣା । ପ୍ରସ୍ତୁତ ହୋଇସାରିଛି । ଜାଣି ରଖିଥାନ୍ତୁ, ମୋର ପ୍ରେତାତ୍ମା କଥା କହିବ । ଶେଷ ମୁହୂର୍ତ୍ତରେ ମରିବାକୁ ଯଦି ମନ ନ ହେବ, ବେଦି ଉପରେ ଆପଣଙ୍କର ଚାରିତ୍ରର କାହାଣୀ ସମସ୍ତେ ଶୁଣିବେ । ତା' ପରେ କ'ଣ ଘଟିବ ବିଚାର କରିବେ ।

—ସମାଧାନର ବାଟ ଅଛି । ସବୁ ପଶୁତ୍ୱରେ ଜଳାଞ୍ଜଳି ଦେଇ, ଅତୀତ ପାଇଁ ଅନୁତାପ କରି, ନୂଆ ପୁଅ ହୋଇ ବାହାହେବାକୁ ଚାଲିଆସନ୍ତୁ । ଅନୁପାକୁ ନୁହେ, ଆପଣଙ୍କର ସ୍ନେହର ପିତୁଳା ନିରୁପାକୁ । ଆପଣଙ୍କର ବାପାବୋଉଙ୍କ ପାଖରେ ଆପଣ ସେଇ ଇଚ୍ଛା ପ୍ରକାଶ କରନ୍ତୁ । ମନେ–

ପକାନ୍ତୁ, କେତେ ଉଚ୍ଛୃଙ୍ଖଳତା ଆପଣଙ୍କର ମୁଁ କ୍ଷମା କରିଛି । ଆବଶ୍ୟକ ମଣିଲେ ଆପଣ, ଯାହାଙ୍କୁ ମୁଁ ବଡ଼ଭାଇ ବୋଲି ଗ୍ରହଣ କରିଥିଲି, ମୋ ନାମରେ ଯେତେ ଇଚ୍ଛା ସେତେ ଦୁର୍ନାମ ରଟାନ୍ତୁ ।

ମୁଁ ଛଳ କରିବି ନାହିଁ । ମୋ ସାନଭଉଣୀର ଜୀବନରକ୍ଷା ପାଇଁ ମୁଁ ହସିହସି ଦୁର୍ନାମ ଗ୍ରହଣ କରିବି । ମଉସା ମାଉସୀ ନିଶ୍ଚୟ ରାଜି ହେବେ । ମୋ ବାପାବୋଉ ସମ୍ମତ ହେବାକୁ ବାଧ୍ୟ ହେବେ, ସଞ୍ଜୟବାବୁ ! ମୋର ଇଚ୍ଛା ବିରୁଦ୍ଧରେ କିଏ ମୋତେ ବେଦି ଉପରକୁ ନେଇପାରିବ ? ସେପରି ଚେଷ୍ଟା ଯଦି ହୁଏ, ପରିଣାମ କ'ଣ ହେବ ତା'ର ସମ୍ଭାବନା ମୁଁ ଉଲ୍ଲେଖ କରିଛି । ମୁଁ ଯେତେବେଳେ ମରିବାକୁ ପ୍ରସ୍ତୁତ ହୋଇସାରିଛି, କାହାକୁ ମୋର ଡରିବାର କାରଣ ନାହିଁ । ରହିଲି । ପ୍ରଣାମ ।

—ମନେରଖନ୍ତୁ । ମୁଁ ଏ ଯୁଗର ବହ୍ନି-କନ୍ୟା । କାହାର ହାତର ଖେଳଣା ମୁଁ ନୁହେଁ । ମୁଁ ଜଳାଇପାରିବି । ଜଳି ଜଳି ନିଜେ ପାଉଁଶ ହେବି ।—

ଅନୁପମା

ବହ୍ନି-କନ୍ୟା ଅନୁପମା ! ସତେ, ସେ ପତ୍ରଟି ଭିତରେ କଥା କହୁଛି । ସେ ପ୍ରଜ୍ୱଳିତ ହୋଇଛି । ନିଜେ ସେ ଜଳିବ । ଅନ୍ୟମାନଙ୍କୁ ଜଳାଇଦେବ ।

ଏ ବାହାଘର କ'ଣ ବନ୍ଦ କରିଦେବ ?

ସଞ୍ଜୟ ଭାବିବାକୁ ଲାଗିଲା । ଇନ୍ଦିରା ତାର ବୋଉଙ୍କୁ ଦଶ ହଜାର ଟଙ୍କା ଦେଇସାରିଛନ୍ତି । ଏ ଖବର ସେ ପାଇଥିଲା । ସତ୍ୟାସତ୍ୟ ତାକୁ ଜଣା ନାହିଁ । ସେ ପୁଣି ଖବର ପାଇଛି, ତା' ପାଇଁ ନୂଆ କାର୍ ଆନନ୍ଦବାବୁ ମଗାଇଥିଲେ । ସେ କାର୍ ଖଲାସ କରିସାରିଲେଣି । ଟଙ୍କା ଓ କାର୍ ପାଇଁ ତା'ର ଆସକ୍ତି ନାହିଁ । କିନ୍ତୁ ଆଜଯାଏ ଚୁପ୍ ରହି, ନିଜେ, କେଉଁମାନଙ୍କୁ କଟକରେ ଓ କଟକ ବାହାରେ ନିମନ୍ତ୍ରଣ କରିବାକୁ ହେବ, ତାର ତାଲିକା ଲେଖି ତା'ର ବାପାଙ୍କ ପାଖକୁ ପଠାଇ, କିପରି ସେ ଶେଷ ମୁହୂର୍ତ୍ତରେ ମନା କରିଦେବ ? ସମସ୍ତଙ୍କ ମୁହଁରେ ଚୂନକାଳି ବୋଳିବ ?

ସଞ୍ଜୟ ଭାବିବାକୁ ଲାଗିଲା, କ ବୁଦ୍ଧି ସେ ନ କଲା ? ସୁନ୍ଦର-ଗଡ଼ରେ ପର୍ଚ୍ଚ ଖୋଲି ପଡ଼ିଥିଲେ, ଆଜ ସେ କଟକ ନ ଆସି, ଏ ଗାଡ଼ିକୁ ଫେରାଇ ଦେଇ ପାରିଥାନ୍ତା । ପରେ, କୌଣସି ଆଳ ଦେଖାଇ ଟେଲିଗ୍ରାମ୍ କରି ବାହାଘରର ଦିନ ଘୁଞ୍ଚାଇଦେବାକୁ କହିଥାନ୍ତା । ତା' ପରେ ଭାବି ଚିନ୍ତି କେଉଁ ମିଥ୍ୟାର ଆଶ୍ରୟ ନେବାକୁ ପଡ଼ନ୍ତା, ସ୍ଥିର କରନ୍ତା । ସେ କୌଶଳ ବାଟ ହୋଇଛି । ଏ ଗାଡ଼ି ଅଣବାଟୁଆ । ସନ୍ଧ୍ୟା ଆଗରୁ ଭୁବନେଶ୍ୱର ଯିବ । ଅନୁରାଗୀଜନରେ ପାଞ୍ଚ ମିନିଟ ରହି ଗାଡ଼ି ମେରାମଣ୍ଡଳୀ ଡେଇଁଆସିଲାଣି ।

କ ଉପାୟ ସେ କରିବ ? ପୁଷ୍ପରାଣୀ ତାକୁ ଡାକୁଛି । ତା'ର ଅନ୍ତର ଭିତରେ ପ୍ରବେଶି ସେହି ଏକା ସାନ୍ତ୍ୱନା ଦେଉଛି ।—ମୁଁ ତୁମର ପାଖେ ପାଖେ ଅଛି ନ, ତମକୁ ଅପେକ୍ଷା କରିଛି । ଏତେ ଭାବନା କାହିଁକି ? ତମକୁ ପାଛୋଟି ନେବାକୁ ଦୁଇ କର ପ୍ରସାରି ମୁଁ ପ୍ରସ୍ତୁତ ହୋଇ ରହିଛି ।

ଅରଖ ହାତରେ ଥିବା ପକେଟରୁ ପୁଣି ସେ ପତ୍ର ଦଉଟି ଓଟାରିଲା । ପୁଷ୍ପାର ପତ୍ରଟିକୁ ଆଉ ଥରେ ପଢ଼ିବାକୁ ମନ କଲା । ଦୃଷ୍ଟି ଲାଖିରହିଲା ଗୋଟିଏ ପଦରେ —ସେ ବଷ-ପୁରୁଷ !

ଆଉ ସେ ପଢ଼ିପାରିଲା ନାହିଁ । ଆଖି ଝଲଝଲ ହେଲା । ଭାବିଲା, ସତେ ସେ ବଷ-ପୁରୁଷ ! ଆଉ ନୁହେ । ନିଜର ବିଷରେ ସେ ନିଜକୁ ଜାଳି-ଦେବ । ଏକମାତ୍ର ପୁତ୍ର ବୋଲି ଯେଉଁ ପିତାମାତା ଅତି ସ୍ନେହରେ ତାକୁ ଲଗାମଛଡ଼ା ସ୍ୱାଧୀନତା ଦେଇଥିଲେ, ସେମାନେ ବୁଝିବେ । ତାଙ୍କର ସ୍ୱେଚ୍ଛା-ଚମାରି ହାବ ପ୍ରଚୁର ଅନ୍ୟାୟଲବ୍ଧ ଧନରେ ଯେଉଁ ପୁତ୍ରଟିକୁ ସେମାନେ ବାହାରେ ଭଦ୍ର, ସାଧୁ, ଚରିତ୍ରବାନ୍ ପୁରୁଷ କରି, ଭିତରେ ଅସାମାଜିକ କଳଙ୍କର ବିଷ ଭରି ଗଢ଼ିବାର ସୁଯୋଗ ଦେଇଥିଲେ, ସେହି ପୁତ୍ରଟି ନିଜର ବିଷରେ ନିଜେ ଜଳିଯିବ ।

ବିକ୍ରମକେଶରୀର ବଙ୍ଗଳା ଆଗରେ ଗାଡ଼ି ଅଟକିଲା । ଡ୍ରାଇଭର୍ ହର୍ଣ୍ଣ ଚିପିଲା । ମାଖନ୍‌ଲାଲ ଗାଡ଼ିରୁ ଓହ୍ଲାଇ ପଛ ସିଟ୍‌ର ଦରଜା ଖୋଲି ଧରିଲେ । ସଞ୍ଜୟ ପଦାକୁ ବାହାରିଲା । ଘର ଆଗର ଛୋଟ ବଗିଚାର ଫାଟକ ଖୋଲିଲା । ଭିତରକୁ ପଶିଲା । କିଛିପାଦ ଆଗେଇ ସେ ଠିଆ ହେଲା । ଭାବିଲା, ସେ କେଡ଼େ ନିର୍ବୋଧ ! ଆଜି ଶୁକ୍ରବାର, ବିକ୍ରମକୁ ବସାରେ ଖୋଜିଲେ ସେ ମିଳିବ କିପରି ? ସେ ଥିବ ଅଫିସରେ ।

ଗାଡ଼ି ପାଖକୁ ଲେଉଟି ଆସିବାକୁ ସେ ବିଚାର କରୁଛି, ଜଣେ ବଳିଷ୍ଠ ଟୋକା କବାଟ ଖୋଲି ବାହାରକୁ ଆସିଲା । ଖାକି କନାର ଅଧା ପ୍ୟାଣ୍ଟ ପିନ୍ଧିଛି । ଦେହରେ ମଇଳା ଗେଞ୍ଜି । ମୁଣ୍ଡରେ ନାଲି ରଙ୍ଗର ଗାମୁଛା ବାନ୍ଧିଛି । ହାତରେ ନଡ଼ିଆ ପିଞ୍ଚୁର ବଢ଼ିଣା ।

ସେ ଯୁବକ, ବିକ୍ରମର ଚପରାଶି । ସଞ୍ଜୟକୁ ଦେଖି ସେ ବଢ଼ିଣା ତଳେ ପକାଇ, ମୁଣ୍ଡରୁ ଗାମୁଛା ଖୋଲି ହାତରେ ଧରିଲା । ପାଖକୁ ଆସି ଠିଆ ହେଲା । କହିଲା, ମାଜିଷ୍ଟ୍ରେଟ ସାହେବ ନାହାନ୍ତି, ଆଜ୍ଞା, ଘଣ୍ଟାଏ ଆଗେ ବସ୍‌ରେ କଟକ ବାହାରିଗଲେ । ତାଙ୍କର ବାହାଘର ଯେ—

କାହାର ବାହାଘର ?

ତାଙ୍କର ହୋଇଥିବ, ଆଉ କାହାର ? ମୋତେ ହୁକୁମ ଦେଇଛନ୍ତି, ମୁଁ ଘରଦ୍ୱାର ଝାଡ଼ି ସଫା କରିବ, କେଉଁଠି ଏତେ ଟିକିଏ ମଇଳା ରଖିବ ନାହିଁ । ଘର ମଇଳା ଦେଖିଲେ ମା ବିରକ୍ତ ହେବେ । ସେ ଗଲା ପରେ ମୁଁ ସେଇ କାମରେ ଲାଗିଯାଇଛି ।

କେବେ ବାହାଘର ?

କହିଯାଇ ନାହାନ୍ତି, ଆଜ୍ଞା !

କେବେ ଫେରିବେ ?

ଜାଣେ ନାହିଁ, ଆଜ୍ଞା ! ଖାଲି ଏତିକି କହି ମତେ ତାଗିଦ୍ କରିଗଲେ ଯେ, ମୁଁ ଘର ଛାଡ଼ି, କୋଲପ ପକାଇ କୁଆଡ଼େ ଯିବି ନାହିଁ । ସଙ୍ଗରେ ସେ

ମାଆଙ୍କୁ ସେଣ୍ଟ ଫେରବେ । ହୁକୁମ୍ ବୋଇଗଲେ ଯେ, ଜଣେ ଗ୍ଭକରାଣୀ ଠିକଣା କରଥିବ ।

ବୁଝିଲି । ସଙ୍ଗରେ ତାଙ୍କର ବୋଉଙ୍କୁ ନେଇ ଆସିବେ । ମୋ' ଘର ସେ ଦରକାର ହେଉଥିବେ ।

କାହିଁକି ଦରକାର ହେବେ ? କେଉଁ ମାଇକିନା ମୋ'ଠାରୁ ଅଧିକ ଭଲ ରାନ୍ଧିପାରିବ ? କେତେ ହାକିମ ହୁକୁମାଙ୍କୁ ମୁଁ ରାନ୍ଧି ଖୁଆଇଛି । ପ୍ରଶଂସା ପାଇଛି । ମୋ ପାଖରେ ସେମାନଙ୍କର ସାର୍ଟିଫିକେଟ ଅଛି । ଦେଖିବେ ଯଦି ମୁଁ ଦେଖାଇପାରେଁ । ହଁ, ତେଲ ମସଲା ଅଧିକ ଖରଚ କରେଁ ।

ତମକୁ ମୁଁ ନିନ୍ଦା କରୁନାହିଁ । କ'ଣଟି ତମ ନାଁ ?

ସୁବଳ । ଆପଣଙ୍କୁ ମୁଁ ଚିହ୍ନେ, ଆଜ୍ଞା ! ଆପଣ ବି ଜଣେ ହାକିମ । ଆପଣ ଆମ ପୁରୁଣା କଲେକ୍ଟର ସାହେବଙ୍କର,—ହେଁ, ହେଁ —

ଆଚ୍ଛା ! ଉତ୍ତମବାବୁ ତାଙ୍କର ଜଣେ ଭଉଣୀର ବାହାଘରରେ ଯୋଗ ଦେବାକୁ ଯାଇଛନ୍ତି ତେବେ । ବାହାଘର ପରେ ସେ ବି ହେବେ ମୋର ହେଁ ହେଁ —

ସଞ୍ଜୟ ମୃଦୁ ହସିଲା । ଟିକଏ ଚିନ୍ତା କରି ସୁବଳ ତା'ର ମୁହଁକୁ ବଲବଲ କରି ଗ୍ଭହିଁଲା । ସଞ୍ଜୟର କଥା ତା'ର ମନରେ ଭେଦିଲା । ସେ ଚମକିଉଠିଲା । ଗାମୁଛାକୁ କାନ୍ଧରେ ପକାଇ, ଦୁଇ ହାତ ଯୋଡ଼ି ମୁଣ୍ଡରେ ଲଗାଇ କହିଲା, ଏବେ ମୁଁ ସବୁ କଥା ବୁଝିଲି, ସାହେବ ! ଭିତରକୁ ଆସିବା ହେଉନ୍ତୁ । ଦୁଇ ମିନିଟ୍ ମଧ୍ୟରେ ମୁଁ ଷ୍ଟୋଭ୍ ଲଗାଇ କପେ ଗ୍ଭ' କରିଦେବି । ଆସନ୍ତୁ ସାର୍ !

ସଞ୍ଜୟ କହିଲା, ତମେ ଚିନ୍ତା କରନା । ଆମର କାର୍ ଭିତରେ ସବୁ ଅଛି । ଡେରି ହୋଇଯିବ । ତମେ ଖୁବ୍ ଭଦ୍ର ସୁବଳ, ତମେ ବେଶ ବୁଦ୍ଧିମାନ୍ !

ସଞ୍ଜୟ ଗାଡ଼ି ଭିତରକୁ ଫେରିଲା ।

ଚଳନ୍ତା ଗାଡ଼ି ଭିତରେ ସେ ଚିନ୍ତା କରୁଥିଲା—ଅନୁପାର ବାହା-ଘରରେ ଯୋଗ ଦେବାକୁ, ତବାହର ଆୟୋଜନରେ ସାହାଯ୍ୟ କରିବାକୁ ତହମ ତିନି ଦିନ ଆଗରୁ ତା'ର ମାମୁଁଙ୍କ ଘରକୁ ଚାଲିଯାଇଥିବ । ଫେରିଲା-ବେଳକୁ ତା'ର ବୋଉଙ୍କୁ ଗ୍ରାମରୁ ସଙ୍ଗରେ ନେଇ ଆସିବ । ଏହାହିଁ ତା'ର ପ୍ରୋଗ୍ରାମ୍ ହୋଇଥିବ ।

ସଞ୍ଜୟ ଆଖି ବୁଜି ଆହୁରି ଆହୁରି ଚିନ୍ତା କରିବାକୁ ଲାଗିଲା । ମୁଣ୍ଡର କେଶ ଟାଣି ଟାଣି ସେ ସମାଧାନର ବାଟ ଖୋଜୁଥିଲା । ତା'ର କପାଳ ଘର୍ମାକ୍ତ ହୋଇଥିଲା ।

ବଡ଼ଘରର ବଡ଼ ଝିଅର ବାହାଘର । ସବୁ ଆୟୋଜନ ହୋଇସରିଛି । ଆନନ୍ଦଙ୍କର ଘର ଇନ୍ଦ୍ରଭବନ ପରି ଦେଖାଯାଉଛି । ସଦର ଦରଜା ପାଖରୁ ବୈଠକଖାନା ଯାଏ ତୋରଣମାନ ଗଢ଼ାଯାଇଛି । ବାମପାଖରେ ନୂଆ ଗୋଦାମଘରପର୍ଯ୍ୟନ୍ତ ଦୁଇଧାଡ଼ି ଅସ୍ଥାୟୀ ଆବାସ ତୋଳାହୋଇଛି । ସେଠାରେ ଆତ୍ମୀୟସ୍ୱଜନ ଓ ଦୂରାଗତ ବନ୍ଧୁବାନ୍ଧବମାନଙ୍କର ରହିବାପାଇଁ ବ୍ୟବସ୍ଥା କରାହୋଇଛି । ଅସ୍ଥାୟୀ ଘରର ଆଗରେ କାର୍ ଓ ଜିପ୍‌ସବୁ ରହିବାର ସ୍ଥାନ । କେତେ ସାମିଆନା ଟଣାଯାଇଛି । ତା ଭିତରେ ଶହ ଶହ ଫୋଲ୍‌ଡିଂ ଚେୟାର । ଡାହାଣହାତ ଗଜା ନଡ଼ିଆଗଛର ଧାଡ଼ିକୁ ଲାଗି ସ୍ତ୍ରୀ ଓ ପୁରୁଷ-ମାନଙ୍କର ଚର୍ଚ୍ଚା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା । ବୈଠକଖାନା କଡ଼କୁ ରନ୍ଧନ-ଶାଳା ।

ଆଲୋକମାଳାରେ ସୁସଜ୍ଜିତ । ପ୍ରତି ଖମ୍ବ, ବୃକ୍ଷ, କୋଣ, ଘର-ମାନଙ୍କର ଛାତରେ ଟିଉବ୍-ଲାଇଟ୍ । ରାତି ଦିଶୁଛି ଦିନ ପରି । ଗହଳ ଚହଳ, ପାଟିତୁଣ୍ଡ । ତଥାପି ସଜାସଜ ଓ ଆୟୋଜନ ଶେଷ ହୋଇନାହିଁ । କାମ ଚାଲିଛି । କାର୍ ଓ ଜିପ୍ ଛୁଟାଛୁଟି । ମୁକ୍ତହସ୍ତରେ ଟଙ୍କା ଖରଚ ହେଉଛି । ଆନନ୍ଦ ଓ ଇନ୍ଦିରା ମୁକ୍ତହସ୍ତ ହୋଇଛନ୍ତି ।

ଝିଅର ବାହାଘର । ମଝିରେ ମାତ୍ର ଦିନଟିଏ ବାକି । ଆଜଠୁଁ ଆୟୋଜନ ପକ୍କା କରିବାକୁ ପଡ଼ିବ । କେତେ ବଡ଼ବଡ଼ିଆ ନିମନ୍ତ୍ରିତ ହୋଇଛନ୍ତି । ମନ୍ତ୍ରୀ, ଉପମନ୍ତ୍ରୀ, ହାକିମ ହୁକୁମା, ସାହୁ-ବ୍ୟବସାୟୀ । ସେମାନଙ୍କର ଯଥୋପଯୁକ୍ତ ଚର୍ଚ୍ଚା କରିବାକୁ ହେବ । ସମ୍ମାନ ପାଇଁ, ମୋହବତ ପାଇଁ । କିଛି ପାଣିରେ ପଡ଼ିବ ନାହିଁ ।

ଶିବଚରଣ ବୁଝାଇ କହୁଥିଲେ, ଆରେ ଅପା ! ଜାଣ, କେଉଁଣ୍ଡି ଗୁହ୍ମା ବେହାର । ବାଳିଆ ସେମାନେ, ହାଡ଼ିପାଟିଆ । ଯେତେ କରିଣ୍ଡିକୁ ସେତେ ବଳିଆ । ମନେ ରଖିଥା, କେହି ଖାଲି ହାତରେ ଆସିବେ ନାହିଁ ।

ଶିବଚରଣ ସାହାଯ୍ୟ କରୁଛନ୍ତି । ହାଡ଼ବନ୍ଧୁ ପଚ୍ଛେଇ ରହୁନାହାନ୍ତି । ତାଙ୍କର ତିନି ଧୁରନ୍ଧର ପୁଅ—ବାଉରି, ଗୋପି, ଶ୍ୟାମ ବିଭିନ୍ନ କାମର ଦାୟିତ୍ୱ ମୁଣ୍ଡାଇ ନେଇଛନ୍ତି । ହାତ କେମ୍ପା, ଗୋଡ଼ ବଙ୍କା ବାଉରିବନ୍ଧୁର ମସୁଧା ବୋଲି କରୁଛି । ଆନନ୍ଦଙ୍କର ଅନୁରୋଧ ସେମାନେ ଏଡ଼ାଇଦେଇ ପାରିନାହାନ୍ତି । ମନରେ ଯାହା କଡ଼କଡ଼ ହେଉଥାଉ, ବାହାର ଦେଖାଣିକୁ ମିଳାମିଶା ହୋଇସାରିଛି ।

ଯୂଥିକା ତାଙ୍କର ଧନ ଦଉଲତ ଅଙ୍ଗରେ ବୋଝେଇ କରି ଦୁଇଥର ଆସି ବୁଲିଗଲେଣି । ଗରିବ ଘରର ଝିଅ ତାଙ୍କର ଝେଳକଣ୍ଠେଇ ଦେଖିବାର ବୋହୂ ଉଲୁପୀକୁ ଶଗଡ଼େ ଗହଣାରେ ବୋଝେଇ କରି ଗତଥର ସେ ସଙ୍ଗରେ ଆଣିଥିଲେ । ଇନ୍ଦିରାଙ୍କ କାନରେ କହୁଥିଲେ, ତା'ର କ'ଣ ପିଲାପିଲି ହବ ମ ସମୁଦୁଣୀ, ବୋହୂପାଇଁ ରେ ସାର !

ଇନ୍ଦିରା କହିଲେ, ହେଲା । ସମୁଦୁଣୀ ଡାକ ନ ବଦଳୁ । ଉଲୁପୀର ବୋଉଙ୍କୁ ମୁଁ ନ ଦେଖିଲେ ନାହିଁ, ଦୂରରେ ଥାଇ ତାଙ୍କୁ ବଡ଼ ଭଉଣୀ କରୁଛି । ଉଲୁପୀବଣୀର ମୁଁ ମାଉସୀ ହେଲେ, ଆମ ସମୁଦୁଣୀ ଡାକ ରହିବ ।

ସେଇଆ ହେଉ ।

ଅନୁପାର ବାହାଘର ଉପଲକ୍ଷରେ ପୁରୁଣା ବୈରିତା ଦୂର ହୋଇଥିଲା । ଆନନ୍ଦ ଓ ଇନ୍ଦିରା ବୁଝୁଥିଲେ ସର୍ବଶୁଭରେ, ଆନନ୍ଦରେ ବଡ଼ ଝିଅ, ଶିକ୍ଷିତା ଝିଅର ବାହାଘର ସମ୍ପନ୍ନ ହେବ । ଗୁଣବନ୍ତୀ, ରୂପବନ୍ତୀ, ବୁଦ୍ଧିମନ୍ତୀ ଝିଅ ଅନୁପମାର ପିତାମାତାରୂପେ ସେମାନେ ପରିଚିତ ହେଉଥିଲେ । ପ୍ରଶଂସା ଓ ସୁବିଧା ଲାଭ କରୁଥିଲେ ।

ସୁଖଦା ଓ ପିଲାମାନଙ୍କୁ ସଙ୍ଗରେ ଘେନି ନନ୍ଦ ପୁରୀରୁ ଆସିଥିଲେ । ଚାକିରିରୁ ଛଡ଼ାଖାଇଲା ପରେ ନନ୍ଦ ବେପାର କରୁଥିଲେ । କେତେବେଳେ କି ବେପାର ତା'ର ଠିକଣା ନ ଥାଏ । ପୁରୀ ସହର । ଜଗନ୍ନାଥ ଧାମ । ତୀର୍ଥକ୍ଷେତ୍ର । ଧନ ବୃଷ୍ଟି ହେଉଛି । ଗୋଟାଇପାରିଲେ ଭଣ୍ଡାର ପୂରିବ । ନନ୍ଦ ଖଦାଘରର ଦାୟିତ୍ୱ ନେଇଛନ୍ତି ।

ବୀରକେଶରୀଙ୍କ ପାଖକୁ ଜୟପୁର ଠିକଣାରେ ଖଣ୍ଡେ ଛପା ନିମନ୍ତ୍ରଣ-ପତ୍ର ପଠାଯାଇଛି । ନରମକେଶରୀର ଠିକଣା କେଉଁ ଲଫାପା ଉପରେ ଲେଖା ହୋଇଥିଲା । ଇନ୍ଦିରା ନିଜେ ତାକୁ ପୋଷ୍ଟରେ ଦେବେ ବୋଲି ଅନ୍ୟ ଚିଠିଗୁଡ଼ିକ ସଙ୍ଗରେ ଭ୍ୟାନିଟି-ବ୍ୟାଗ୍‌ରେ ରଖିଥିଲେ । ଶୁଣାଇ କହୁଥିଲେ, ଅନୁର ବଡ଼ଭାଇ ସେ, ଆସି ପହଞ୍ଚିଲେ ବରଧରା ହୋଇ ଯିବ ।

ସେ ଦୁହେଁ ଏକସାଥେ ଆସି ପହଞ୍ଚିପାରିନାହାନ୍ତି । ପରଘରେ ମୁଣ୍ଡ ବିକିଛନ୍ତି । ଛୁଟି ମିଳିଲେ ଠିକ୍ ବେଳରେ ଆସି ଉପସ୍ଥିତ ହେବେ । ନ ଆସିଲେ ନାହିଁ । କାହାପାଇଁ କେଉଁ କାମ ଅଟକି ରହେ ନାହିଁ ଲୋ, ସୁଖଦା ! ଅନୁପାର ଦାଦା ନନ୍ଦ ଅଛନ୍ତି । ସେ ବରଧରା ହୋଇ ଯିବେ ।

ସୁଖଦା କହିଲେ, ହଁ ଗୋ ଅପା ! ଚନ୍ଦନା ଅପାଙ୍କ ପାଇଁ ତମେ ଯାହା କରିଛ, କେଉଁ ଭାଉଜ କେଉଁ ନଣନ୍ଦ ପାଇଁ ଏହା କରେ ? ତାଙ୍କ ପୁଅ ନରମକୁ ପାଖରେ ରଖି ପୁଅ ପରି ପାଳିଲ । ପାଠ ପଢ଼ାଇ ମଣିଷ କଲ । ହାକିମ ଚାକିରି କରାଇଦେଲ । କେବେ ପିଲାଦିନେ ଦେଖିଥିବି, ଆଜି ଦେଖିନାହିଁ କି ଜାଣିନାହିଁ । ତାଙ୍କ ବଉଁଶ ଆମକୁ ପଚାରନ୍ତି ନାହିଁ ।

ଆସିଲେ ଆସିବ, ନ ହେଲେ ନାହିଁ । ଏଥିକୁ ଏତେ ଭାବନା କାହିଁକି ? ଖବର ଦେଲେ ମୋ ବଡ଼ପୁଅ ଚଇଁଆ ଦୋକାନ ବନ୍ଦ କରି ବରଯାତ୍ରୀ ହେବାକୁ ଚାଲିଆସିବ । ପୁଅ କଏ, ପୁତୁରା କଏ ? ପୁଣି ତ ଜାଣ ଡାକେ ବାଟ ।

ଇନ୍ଦ୍ରର ହସିଲେ । ଜାଆଁ ବହେଁ ହତା ଭିତରେ ବୁଲି ବୁଲି ଆୟୋଜନ ଦେଖୁଥିଲେ । ରାତି ଆଠଟା ହେବ । ଚତୁର୍ଥୀର ଜହ୍ନ ଆକାଶ କୋଣରେ ଅବା ଚଳନ୍ତା ବଉଦ ତଳେ ଲୁଚିଗଲାଣି । ବଜୁଲି ଆଲୁଅର ବନ୍ୟାରେ ଅନ୍ଧାର ଛଡ଼ିହୋଇଯାଇଛି । ଲୋକଗହଳି ଭାଙ୍ଗିଲାଣି । ଜଗନ୍ନାଥ ମିସ୍ତ୍ରୀ, ତା'ର ସହକର୍ମୀ ଭିକାରୀ ବଢ଼େଇ ଓ ଶାରଙ୍ଗ ଏବଂ ଅନ୍ୟାନ୍ୟ କେତେ ଜଣ ମୂଲିଆ-ମୂଲିଆଣୀଙ୍କ ସହ କାର୍ଯ୍ୟରେ ଶେଷ ହାତ ବୁଲାଉଛନ୍ତି । ପାଣିକଳ ଧାଡ଼ି ଆଚମନ ଆସ୍ଥାନ ଉପରେ ଖଞ୍ଜାଯାଇଛି । ବାଉଁଶରେ ଲାଗୁଛି ।

ରାତି ପାହିଲେ ସତେଇଶ ତାରିଖ । ରବିବାର । ବାହାଘର । ରାତି ଏଗାରଟା ପଇଁଚାଳିଶ ମିନିଟ୍‌ରେ ଶୁଭବେଳା ଆରମ୍ଭ । ରାତି ସାରା ବାହାଘର ସରିବ । ତା'ପରେ ମହାପ୍ରସାଦ ସେବା, ଠାଆପିଢ଼ା । ଅପରାହ୍ଣରେ ବଦାବନ୍ଦ । ସୋମବାର ଏତେବେଳକୁ ଅନୁପା ପରଘରକୁ ଚାଲିଯାଇଥିବ । ସାତ-ସପନ ହୋଇସାରିଥିବ । ତା'ର ସବୁ ଅଳିଅର୍ଦ୍ଦଳି ଏ ଘରୁ ସାରିଦେଇ ଯିବ । ଏ ଘର ଅନ୍ଧାର ହୋଇଥିବ ।

ଇନ୍ଦ୍ରରଙ୍କ ଆଖିରୁ ଲୁହଧାର ଝରିଆସିଲା । ସେ ଅଞ୍ଚଳରେ ଆଖି ପୋଛିଲେ । ବେଳ ଜାଣି ସୁଖଦା କହିଲେ, ଝିଅଜନମ ସେଇଆ ଗୋ ଅପା ! କାନ୍ଦ କନ୍ଦାଇ ପରହାଣ୍ଡିରେ ଚାଉଳ ପକାଇବାକୁ ଚାଲିଯାଆନ୍ତି । କଥା ସରିଲା । ସେଇଠୁ ସେ ବାପଘରେ କୁଣିଆଁ ।

ସୁଖଦା ବି ଆଖିରୁ ଲୁହ ପୋଛିଲେ । କଥା କଥାରେ ମନ କଲେ ସେ ଆଖିରୁ ଲୁହ ଝରାଇପାରନ୍ତି । ଇନ୍ଦ୍ରର ଘରଆଡ଼କୁ ମୋଡ଼ିଗଲେ । ବୈଠକଘରେ ଶିବଚରଣ, ନନ୍ଦନ ଓ ଗୋପବନ୍ଧୁ ବସିଛନ୍ତି । ଆଉ କେଉଁ-ମାନେ ମଧ୍ୟ ଅଛନ୍ତି । କେଉଁ ବିଷୟରେ ଆଲୋଚନା ଚାଲିଛି । ହାଡ଼ବନ୍ଧୁ

ଓ ଘନଶ୍ୟାମବାବୁ ଭୁବନେଶ୍ୱର ଗଲାବେଳେ ଦୁଇଘଣ୍ଟା ପାଇଁ ଆନନ୍ଦଙ୍କୁ ସଙ୍ଗରେ ନେଇଯାଇଥିଲେ । ଦିଲ୍ଲୀରୁ କେଉଁମାନେ ସବୁ ଆସିଛନ୍ତି ଯେ, ସେମାନଙ୍କ ସଙ୍ଗେ ଦେଖା କରିବାକୁ ବିଭାଗୀୟ ମନ୍ତ୍ରୀ ଡକାଇନେଇଛନ୍ତି । ତିନିଘଣ୍ଟା ହେଲାଣି ଫେରିନାହାନ୍ତି । ବେପାର ବଣିଜ ସମ୍ବନ୍ଧ, ନ ଗଲେ ନ ଚଳେ । କେଜାଣି ଆଉ କି ବିଷୟରେ ହୋଇଥିବ !

ଇନ୍ଦ୍ର ବୈଠକଘର ଆଡ଼େ ଦୃଷ୍ଟି ନିକ୍ଷେପି ଖଞ୍ଜା ଭିତରେ ପଶିଲେ । ଦୋ'ତାଲା ଧାଉଡ଼ିର ପ୍ରକୋଷ୍ଠଗୁଡ଼ିକ ଆଲୋକିତ । ତଳ ମହଲାରେ ନନ୍ଦ, ସୁଖଦା ଓ ତାଙ୍କର ଯେଉଁ ପିଲା ଦିଓଟି ସଙ୍ଗରେ ଆସିଥିଲେ, ସେମାନଙ୍କ ପାଇଁ ରହିବାର ବ୍ୟବସ୍ଥା କରାହୋଇଛି । ଉପର ମହଲାରେ ପିଲାମାନେ ନାହାନ୍ତି । ବନହଂସୀ ଅନୁପାକୁ କନିଆ-ଡାକରା କରି, ନିଜେ ଆସି ସବୁ ପିଲାଙ୍କୁ ସଙ୍ଗରେ ନେଇଯାଇଥିଲେ । ତାଙ୍କର ପୁଅ ବିମଳ ବି ଗାଡ଼ି ଚଳାଇ ଆସିଥିଲା । ଦୁଇଘଣ୍ଟାରୁ ଅଧିକ ହେଲାଣି ।

ଖଞ୍ଜା ଭିତରେ ଠିଆ ହୋଇ ଇନ୍ଦ୍ର ଦୋତାଲାର ବାରଣ୍ଡାକୁ ଚାହିଁଲେ । ପୁଣି ଆଖିରେ ଲୁହ ଛଳଛଳ ହେଲା । କହିଲେ, ଉପରେ କେହି ନାହାନ୍ତି ଲୋ ସୁଖଦା ! ଝିଅ ତିନୋଟି ବାହା ହୋଇଗଲେ ଏଡ଼େ ବଡ଼ ଘରଟା ଏମିତି ଶୂନଶାନ୍ ହେବ ।

ଏତେ କନିଆ ଡାକରା, ଅପା ! ଘଣ୍ଟାଏ ହୋଇ ଘରେ ରହୁ-ନାହାନ୍ତି । ଯେତେ ସମୟ ରହୁଛନ୍ତି, ଅନୁ ଓ ଝିନୁ ପରସ୍ପରର ମୁହଁକୁ ଚାହିଁ ବସୁଛନ୍ତି । ବେଶୀ କଥାଭାଷା ନାହିଁ । ଖାଲି କାନ୍ଦ । ଦିହୁରିଳ, ତଳ ଉପର ଭଉଣୀ । ପରଘରେ ଯାଇଁ କିଏ କେଉଁଠି ସଂସାର କରିବେ । ଦେଖାହେବା କାତିକର ପାଠ । ସେଇଆ ଭାବି କେହି କାହାର ପାଖ ଛାଡ଼ୁନାହାନ୍ତି ।

ଏଇଆ କ'ଣ ପିଲାଗୁଡ଼ାଙ୍କ ମନରେ ପଶିବ ?

ଇନ୍ଦ୍ର ମଠେଇ ମଠେଇ ପାହାଚ ଚଢ଼ିଲେ । ତାଙ୍କର ପାଖେ ପାଖେ ସୁଖଦା ଯାଉଁଣୁ କହିଲେ, ପଶିବ ନାହିଁ ? ସଂସାରକୁ ସେମାନେ ଦେଖୁନାହାନ୍ତି ? ଗୋଟିଏ ଭଉଣୀର ପିଲାମାନେ ଆଉ ଭଉଣୀର ପିଲାଙ୍କୁ ଚାହିଁବାର

ତ ଦୂରର କଥା ଅପା, ମାଁ ବି ଜାଣନ୍ତି ନାହିଁ । କାଳକ୍ରମେ ଅବସ୍ଥାରେ ଉଣେଇଶ ବିଶ ହେଲେ, ସେତକ ତ କପାଳର କଥା, ହାଡ଼ରେ ଈର୍ଷା, ଦ୍ୱେଷ ଚଢ଼ିଯାଏ । ଭଉଣୀ କ'ଣ, ଭାଇ କ'ଣ !

ସୁଖଦାଙ୍କ କଥାର ମର୍ମ ଉଦ୍ଧବ ବୁଝିପାରିଥିଲେ । କିଛି କହିଲେ ନାହିଁ । ସିଡ଼ିପାଖ ପଢ଼ାଘରର ପଲଙ୍କ ଉପରେ ବସିଛନ୍ତି କି ନାହିଁ, ବିନନ୍ଦଙ୍କର ସାନପୁଅ ଉପରକୁ ଧାଇଁଆସିଲା । ଧଇଁସଇଁ ହୋଇ କହିଲା, ବାପା କହିଲେ, ଆପଣଙ୍କୁ ଟେଲିଫୋନ୍‌ରେ କିଏ ଡାକୁଛି, ବଡ଼ମା ! ଜଲଦି ଆସନ୍ତୁ ।

ବିରକ୍ତ ହୋଇ ଉଦ୍ଧବ କହିଲେ, ଯାଉଛି ରେ ବାପ ! ଦିନସାରା ତ ଡାକୁଛନ୍ତି । ବସେଇ ଉଠେଇ ଦେଉନାହାନ୍ତି । ଘର ବିରକ୍ତ ଲାଗୁଛି ଲୋ ସୁଖଦା ! ପିଲାମାନଙ୍କ ସାଙ୍ଗମାନେ ତ ବେଶି ଡାକୁଛନ୍ତି । ଫୋନ ଧରିଲେ ପଚାରୁଛନ୍ତି, ନାହାଁ କି ଅନୁପା, ନିରୁପା, ସୁରୂପା ? ତୁ ବସିଥା, ମୁଁ ଗୋଡ଼େ ଗୋଡ଼େ ଆସୁଛି ।

ବୈଠକଘରକୁ ଆସି ଉଦ୍ଧବ ଫୋନ୍ ଉଠାଇଲେ । ରଞ୍ଜିତା କହୁଛନ୍ତି । ତାଙ୍କର ସ୍ୱର ଥରିଉଠୁଛି ।

— ଘଣ୍ଟାକ ତଳେ ପ୍ରକାଶ ଓ ଅଞ୍ଜନା କୋରାପୁଟରୁ ଆସି ପହଞ୍ଚିଲେ । କାଲିଠାରୁ ଆସି ହଞ୍ଚୁ ଘରୁ କୁଆଡ଼କୁ ଯାଇ ନ ଥିଲା । ସକାଳ ଆଠଟାରେ ଉଠିଲା । ବାଇଆଙ୍କ ପରି ହେଉଥିଲା । ଗାଧୋଇସାରି କୁଆଡ଼େ ଗଲା ଯେ ଫେରିଲା ଦିନ ଦି'ଟାରେ । ତା'ପରି ପିଲା, କାହିଁକି ବାଇଆ ବାଉଳଙ୍କ ପରି ହେଲା ? ଯେତେ ପଚାରିଲେ କହିଲା ନାହିଁ । ଘରେ କବାଟ କିଳି ରହିଲା ।

—ଦେହ ଖରାପ ଅଛି ?

—ରାଣ ନିୟମ ଦେଲାରୁ କବାଟ ଖୋଲିଲା । ବାପ ଲୋ, ଧନ ଲୋ କହି ପଚାରିଲାରୁ, ସେ କହିଲା—

—କ'ଣ କହିଲା ?

—ଏ ବାହାଘର ବନ୍ଦ କର ।

—କାହିଁକି ? ତା'ର କ'ଣ ଆଉ କିଛି ଲୋଡ଼ା ହେଉଛି ?

—ନାହିଁ, ନାହିଁ । କାନ୍ଦ କାନ୍ଦ ସେ ଆଖି ଲାଲ କରୁଛି । ଯେତେ ପଚ୍ଚାରିଲି, ସେ ଅଧିକା କିଛି କହିଲା ନାହିଁ । ବେଶୀ ବଳାଇବାରୁ ମୋ ଆଗରେ ଏତିକ କହିଲା ଯେ, ଏ ବାହାଘର ହୋଇପାରିବ ନାହିଁ ।

—କେଉଁଠି କ'ଣ ଶୁଣିଲା କି ? ସବୁ ଠିକ ପାଇଲେ ବାହାଘର, ସବୁ ଆୟୋଜନ ହୋଇସାରିଛି ।

ଇନ୍ଦ୍ରଜିତ ଗୋଟାଗୁଏଁ ଥରୁଥାନ୍ତି । ମୁହଁ କଳାକାଠ ପଡ଼ୁଥାଏ । ମୁଣ୍ଡ ଭ୍ରମୁଥାଏ ।

ରଞ୍ଜିତା କହିଲେ, ଅଞ୍ଜନା ଆସିଲାରୁ ଏବେ ସବୁକଥା ଜଣାପଡ଼ିଲା । ତମେ ମୋ' ପୁଅର ଦୋଷ, ଅବା ଆମର କାହାର ଦୋଷ ଦେଇପାରିବ ନାହିଁ । କେତେ ଖୁସି ସେ ହେଉଥିଲା, ପନ୍ଦର ଦିନ ଛୁଟି ନେଇ ବାହା ହେବାକୁ ସେ ଆସିଥିଲା !

—ପୁଣି କ'ଣ ହେଲା ଯେ···

—ଅନୁପାର ସମ୍ମତି ନେଇଥିଲ ? ପାଠ ପଢ଼ାଇଲ, ସବୁ ପ୍ରକାର ସ୍ୱାଧୀନତା ଦେଲ, ଜୀବନସଜାଡା କାରବାରରେ ତା'ର ମତାମତ ବୁଝିଲ ନାହିଁ ?

—ସେ କି ଦୋଷ କଲା ?

—ଦୋଷ କାହିଁକି କରିବ ? ଯାହା ନ୍ୟାଯ୍ୟ, ଯାହା ଉଚିତ, ଯାହା ସତ୍ୟ ସେ ସେଇଆ କରୁଛି । ଅଞ୍ଜନା ଏହା ମତେ କହିଲା । ତାଙ୍କୁ ନ ପଚାରି ଭୁଲ କରିଛ, ଭଉଣୀ ! ଅଞ୍ଜନା କହିଲା, ଏ ସଙ୍କଟର ସମାଧାନ ହୋଇପାରିବ ଯେ···

—ହୋଇପାରିବ ? ଯେତେ ଗୁହିଁବ, ମୁଁ ବିନାଦ୍ୱିଧାରେ ଦେବି । କହ, ମନଖୋଲି ମତେ କହ ।

—ଟଙ୍କାପଇସା ନୁହେଁ ମ । ଏମିତି କହିହେବ ନାହିଁ । ତମେ ଆସ । ଆନନ୍ଦବାବୁଙ୍କୁ ସଙ୍ଗରେ ନେଇ ଆସ । ଆମେ ଅପେକ୍ଷା କରି ବସିଛୁ ।

—ଯାଉଛି ।

ଫୋନ୍ ରଖିବା ସଙ୍ଗେ ସଙ୍ଗେ ଉଦ୍‌ବିଗ୍ନ ହୋଇ ଶିବଚରଣ ପଚାରିଲେ, କ'ଣ ଘଟିଗଲା ଅପା ? ମୁଁ ଜାଣେ ପରା, ସେଗୁଡ଼ା ଭରି ଲେଖା, ଭାଲୁଶୋଷା । ସୁନନ୍ଦ ଓ ଗୋପବନ୍ଧୁ ଇନ୍ଦିରାଙ୍କର ଉତ୍ତରକୁ ଆଗ୍ରହ ସହକାରେ ଅପେକ୍ଷା କରି ରହିଲେ ।

ଇନ୍ଦିରା କହିଲେ, ସେମିତି କିଛି ନୁହେଁ ଯେ, ଭଲ କାମରେ କେତେ ବାଧାବିଘ୍ନ ପଡ଼ନ୍ତି । ସବୁ ପୁଣି ସୁଧୁରିଯାଏ । ତୋ'ର କାର୍‌ରେ ମୋତେ କମଳବାବୁଙ୍କ ଘରେ ଛାଡ଼ିଦେଇଆସିବୁ, ଗୋପବନ୍ଧୁ ? କାର୍ ତ ନାହିଁ, ତମ ମଉସା ନେଇଛନ୍ତି ।

ଗୋପବନ୍ଧୁ ସଙ୍ଗେ ସଙ୍ଗେ ଉଠିଲେ । କହିଲେ, ଆସ ମାଉସୀ !

କମଳକୃଷ୍ଣବାବୁଙ୍କ ଘରକୁ ଇନ୍ଦିରା ଯିବାର ପାଞ୍ଚ ଦଶ ମିନିଟ୍ ମଧ୍ୟରେ ଆନନ୍ଦଚନ୍ଦ୍ର ତାଙ୍କର ଦୁଇ ବନ୍ଧୁଙ୍କୁ ସେମାନଙ୍କ ଘରେ ଛାଡ଼ି ନିଜ ଘରକୁ ଫେରିଲେ । ତାଙ୍କର ସଙ୍ଗରେ ବନହଂସୀଙ୍କ ଘରୁ ଅନୁପା ଦେବିକା ମଧ୍ୟ ଫେରିଥିଲେ । ପିଲାମାନେ ଉପରକୁ ଚାଲିଗଲା ପରେ ବୈଠକଘରେ ସୁନନ୍ଦ ଖବର ଦେଲେ ଯେ, ଇନ୍ଦିରା ବ୍ୟସ୍ତ ହୋଇ କମଳବାବୁଙ୍କ ଘରକୁ ଯାଇଛନ୍ତି ଓ ଭୁବନେଶ୍ୱରରୁ ଫେରିଲେ ଆନନ୍ଦଙ୍କୁ ମଧ୍ୟ ସଙ୍ଗେ ସଙ୍ଗେ ସେଠାକୁ ଯିବାକୁ କହିଛନ୍ତି ।

କାହିଁକି ରେ, ସୁନନ୍ଦ ?

ମୁଁ ଜାଣେ ନାହିଁ, ଭାଇ ! ଭାଉଜ ବୋଧହୁଏ କମଳବାବୁଙ୍କ ସ୍ତ୍ରୀଙ୍କ ସଙ୍ଗରେ କଥାଭାଷା କରୁଥିଲେ । ମୁଁ ଯାହା ଅନୁମାନ କଲି, ସେ ପାଇଲା ଗାଡ଼ିଆ ଆଡ଼ୁରି ବୋହିବାକୁ ବସିଛନ୍ତି । ଶିବଚରଣବାବୁ ତାଙ୍କ ଉପରେ ରାଗି ତାଙ୍କ ଘରକୁ ଗଲେଣି ।

ଆନନ୍ଦ ମୁଣ୍ଡ ଠୁଙ୍କାଇ କହିଲେ, ଓ, ଏଇ କଥା ? ମୁଁ ଜାଣେ, ରଞ୍ଜିତା ଟିକିଏ ଲେଖି । ଶେଷ ମୁହୂର୍ତ୍ତରେ ଫେରୁଛନ୍ତି । ତୁ ବି ମୋ ସଙ୍ଗରେ ଚାଲ୍ । ସାମାନ୍ୟ କଥାଟାର ସମାଧାନ ହୋଇପାରିବ ନାହିଁ ?

ସତ ନଅଟା ବାଜିଲା । ଆନନ୍ଦ ନିରୁପାକୁ ପାଖକୁ ଡାକିଲେ । ତା ସଙ୍ଗରେ ସୁରୂପା ମଧ୍ୟ ଆସିଲା । ଆନନ୍ଦ କହିଲେ, ତୁ ଏଇଠି ଥା ମା ! ଆମେ ବିହା ପଦାକୁ ଯାଉଛୁଁ । କେହି ଯଦି ମତେ ଫୋନ୍‌ରେ ଡାକେ, କମଳ-ବାବୁଙ୍କ ଘରକୁ ଫୋନ୍ କରିବାକୁ କହିବୁ । ନମ୍ବର ଜାଣୁ ତ ?

ନିରୁପା କହିଲା, ଜାଣେ ବାପା !

ଅନୁପା କ'ଣ କରୁଛି ?

ସେ ଓ ସାନନ୍ଦ ଖୁଡ଼ୀଙ୍କ ସଙ୍ଗେ ଗଳ୍ପ କରୁଛନ୍ତି । ଚନ୍ଦନା ଅପା ଓ ଭିକଭାଇ କାହିଁକି ଆସିଲେ ନାହିଁ ବାପା ? ମୁଁ ନିଜେ ସେମାନଙ୍କ ପାଖକୁ ନିମନ୍ତ୍ରଣ ପତ୍ରରେ ଠିକଣା ଲେଖି ପଠାଇଥିଲି ।

କ'ଣ ଅସୁବିଧା ହୋଇଥିବ । ବୋଧହୁଏ କାଲି ଆସି ପହଞ୍ଚିବେ ।

ଏତିକି କହି ଆନନ୍ଦ ପଦାକୁ ବାହାରିଗଲେ ।

ସୁରୂପାକୁ ସଙ୍ଗରେ ଧରି ନିରୁପା ପଦାକୁ ବାହାରିଲା । ବିନନ୍ଦଙ୍କର ସାନ ପୁଅକୁ ବୈଠକଘରେ ବସାଇଦେଇ ଗଲା । ନିରୁପା ବୁଲି ବୁଲି ହତା ଭିତରେ ବାହାଘରର ଆୟୋଜନ ଦେଖୁଥିଲା । ମନ କିନ୍ତୁ ତା'ର ସେଠି ନ ଥିଲା । ସେ ଭାବୁଥିଲା, ବନହଂସୀ ମାଉସୀଙ୍କ ଘରେ ତାଙ୍କ ପାଖରେ ଆଉ ସମସ୍ତଙ୍କୁ ଛାଡ଼ି ତା'ର ଅପା ବିମଳବାବୁଙ୍କ ସଙ୍ଗରେ କୁଆଡ଼େ ବୁଲି-ଯାଇଥିଲା ? ଅଧଘଣ୍ଟାକରୁ ଅଧିକ ଡେରିରେ ଫେରିଲା । ବନହଂସୀ କହିଲେ, ସେ ଚଣ୍ଡୀଙ୍କ ମନ୍ଦିରକୁ ଯାଇଛି ନିରୁ, ମୁଁ ନିଜେ ପଠାଇଛି । ଗୋଡ଼େ ଗୋଡ଼େ ଫେରିଆସିବ ।

ସତକୁ ସତ ସେ ଚଣ୍ଡୀମନ୍ଦିରରୁ ସିନ୍ଦୂର, ଧଣ୍ଡା, ପ୍ରଚୁର ପ୍ରସାଦ ନେଇ ମନଖୁସିରେ ଫେରିଲା । ଚଣ୍ଡୀଙ୍କ ସିନ୍ଦୂର ନିଜେ ସେ କପାଳରେ ଲଗାଇଥାଏ । ନିଜ ହାତରେ ସେ ଯେଉଁ ଠୋପାଟି ତା' ମୁଣ୍ଡରେ ଲଗାଇ-ଦେଇଥିଲି, ସେ ଠୋପା ଲିଭି ରହିଥିବ । ସୁରୂପାର କପାଳରେ ଦାଉ ଦାଉ ଦିଶୁଛି ।

ନରୁପା ଅଭିମାନ କରି ପଚ୍ଛରିଥିଲା, ଆମକୁ କାହିଁକି ସଙ୍ଗରେ ନେଲୁ ନାହିଁ ?

ଝିହାଡ଼କୁ ନେଇ ନରୁପାର ଚିବୁକରେ ହାତ ଦେଇ ଅନୁପା ଗେହ୍ଲେଇ ହୋଇ କହିଲା, ଗୋଡ଼େ ଗୋଡ଼େ ଫେରିଆସିବାକୁ ଯାଇଥିଲି । ମନ୍ଦିରରେ ଭାରି ଭିଡ଼ । ସାମାନ୍ୟ ଡେରି ହେଲା । ନରୁ ଲୋ, ମା' ଚଣ୍ଡୀଙ୍କୁ ଚାହିଁ ରହିଥିଲି, ମତେ ଦିଶିଲା, ଯେମିତି ତୋ'ର ସପନ, ଆଜି ମୋର ଅନୁମାନ ସତ ଫଳିଯାଉଛି । ମନେହେଲା, ଆଈ ନିଜେ ଚଣ୍ଡୀ ହୋଇ ଠିଆ ହୋଇଛନ୍ତି । ରାଜକୁମାର ବାଘ ହୋଇ ତାଙ୍କ ପାଖରେ ଗର୍ଜୁଛନ୍ତି ।

ଭୁନ ହ ଅପା ! ବୋଉ ଶୁଣିଲେ—

ଶୁଣିବ ଲୋ ନରୁ ! ଖପା ହେବ । ଜନମ ଦେଇଛି, ପାଳି ବଢ଼ାଇଛି, ତା'ର ଗାଳି ମୁଁ ସହିବ । ଛଳ କରିବ ନାହିଁ । ସେହି ଗାଳି ହେବ ମୋର ଯୌତୁକ । ଶେଷବେଳକୁ ସେତକ ମୋ ଗଳାର ମାଳ କରି ଯିବି । ଆଜି ତା'ର ମୁଁ କଛି ଧାରିବ ନାହିଁ ।

ନରୁପା ଡରିଥିଲା । ପଚ୍ଛରିଥିଲା, ଏମିତି କ'ଣ କହୁଛୁ ?

ଡରିଲୁ କି ? ମୁଁ ମରିବ ନାହିଁ ମ । ମଲେ, ଏସବୁ ଆୟୋଜନ ପଣ୍ଡ ହେବ । ସଞ୍ଜୟବାବୁ ସୁନ୍ଦରଗଡ଼ରୁ ଆସି କାଲିଠାରୁ ଘରେ ପଶିଛନ୍ତି । ବିମଳବାବୁ କହୁଥିଲେ ।

ଅପା ! ଆଜି ତାଙ୍କୁ ମୁଁ ଦୁଇଥର ଫୋନ୍‌ରେ ଡାକିଲି । ବହୁତ ସମୟ ପରେ, ଦି'ପହରେ ପ୍ରଥମ ଥର ସେ ଫୋନ୍ ଉଠାଇଲେ । ପଚ୍ଛରିଲେ, କିଏ ? କହିଲି, ମୁଁ ନରୁପା । ତୁ ବିନବଟି ଲୁଚେଇ ଲୁଚେଇ କାନ୍ଦୁଛି ବୋଲି ତାଙ୍କୁ କହିଲି । ଅନୁରୋଧ କଲି, ମୋ ଅପା ଓ ଥାଣ କଥା ସହି-ପାରେ ନାହିଁ, ତାକୁ କେବେହେଲେ ବଡ଼ ପାଟି କରି କହିବ ନାହିଁ । ପୁଣି କହିଲି······ ।

ନିରୁପା ତା'ର ବାକ୍ୟ ଶେଷ କରିପାରି ନ ଥିଲା । ଲାଜେଇଗଲା । ସୁରୂପା ଓ ସାନନ୍ଦ ପାଖକୁ ଆସିଲେ । ତଥାପି ଅନୂପା ପଚାରୁଥିଲା, କ'ଣ କହିଲୁ ?

ସୁରୂପା କହିଥିଲା, ମାଉସୀ ତମ ଦୁହିଁଙ୍କୁ ଡାକୁଛନ୍ତି, ତମେ ସିଡ଼ି ପାଖରେ ଠିଆ ହୋଇ ଗପ କରୁଛ ।

ଅନୂପା କହିଥିଲା, ଯା କହିବୁ ଆମେ ଯାଉଛୁ !

ଆସୁନ ?

ମୋ କଥା ମାନିବୁ ନାହିଁ ? ତୁ ବି ଯା ସାନନ୍ଦ !

ସେମାନେ ଫେରିଯାଇଥିଲେ ।

କ'ଣ କହିଲୁ ନିରୁ ?

କହିଲି,—, ଲାଜ ମାଡ଼ୁଛି ଅପା !

କହ ।

କହିଲି, ତମ ପିଠିରେ ବେଣୀ ନୁହେଁ, ଗଣି ଗଣି ମୋଟେ ପାଞ୍ଚଟା ବିଧା ଖୋଇବି । ତମର ଓଲେଇ ବଲେଇପଣ ସେତିକରେ ସାରି-ଦେବି । ସେ ଉତ୍ତର ଦେଲେ ନାହିଁ, ଅପା ! ଖୁବ୍ ଜୋର୍‌ରେ ନିଶ୍ୱାସ ଛାଡ଼ିଲେ । ମୁଁ ତାଙ୍କ ଅତିଲା ନିଶ୍ୱାହର ଆବାଜ୍ ଶୁଣିପାରିଲି । ସେ ଫୋନ୍ ଛାଡ଼ିଦେଲେ ।

ଆଉ ଥରେ ଫୋନ୍ କରିଥିଲୁ ?

ସଞ୍ଜ ଆଗରୁ ଅପା ! ମାଉସୀ ଧରିଲେ । କହିଲେ, ସେ ବିମଳ ସଙ୍ଗେ ରାସ୍ତା ଉପରେ କ'ଣ କଥା ହେଉଛି । ଡକାଇଦେଉଛି । କିଛି ସମୟ ପରେ ସେ ଫୋନ୍ ଉଠାଇଲେ । ପଚାରିଲେ, କିଏ ? ମୁଁ ଯେମିତି ମୋ ନାଁ କହିଲି, ସେ ଧଡ଼୍ କରି ଫୋନ୍ ରଖିଦେଲେ ଅପା ! ମତେ ସେ ଅପମାନ ଦେଲେ ।

ନିରୁପାର ଓଠ ଥରଉଠିଥିଲା । ତା'ର ଆଖିରେ ଲୁହ ଛଳଛଳ ହୋଇଥିଲା । ଅନୂପା ମୃଦୁ ହସି ନିରୁପାର ଚିବୁକରେ ହାତ ଦେଲା । ମୁହଁଟିକୁ

ସାମାନ୍ୟ ହଲାଇ କହିଲା, ତାଙ୍କ ଉପରେ ଅଭିମାନ କରିଛୁ ? ଭଲ । ପ୍ରତିଶୋଧ ନେବାର ଦିନ ଆସୁଛି । ପ୍ରତିଶୋଧ ନେବୁ । ହାତ ଯୋଡ଼ି ସେ କ୍ଷମା ମାଗିବେ । ଦୁଇ କାନ ଧରି ସେ ସାତଥର ବସ୍‌ଉଠ୍ ହେବେ । ତେବେ ଯାଇଁ ତୁ ତାଙ୍କୁ କ୍ଷମା କରିବୁ । ହେଲା ?

ପୁଣି ବନହଂସୀ ଦେଖା ସେମାନଙ୍କୁ ସ୍ୱରୂପା ହାତରେ ଉଡାଇ ପଠାଇଲେ । ସେ ଦୁହେଁ ଯାଇଥିଲେ । ଅଧିକ ଆଲୋଚନାର ସମୟ ନ ଥିଲା ।

ସ୍ୱରୂପା ଘରୁ ଉପରକୁ ଯାଇ ସଦର-ଦରଜାର ସ୍ୱାଗତ-ତୋରଣକୁ ତନ୍ମୟ ହୋଇ ଚାହିଁରହିଛି । ସ୍ତୂପ ଆକୃତିର ଖିଲଣରେ ଅସଂଖ୍ୟ ନାଲିନେଳି ଫ୍ଲେଟ ବଲ୍‌ବ ଖଞ୍ଜା ହୋଇଛି । ଜଳୁଛି, ଲିଭୁଛି । 'ସ୍ୱାଗତ' ଜଣାଉଛି । ଦୁଇ କଡ଼ର ସୁସଜ୍ଜିତ ସ୍ତମ୍ଭରେ ଲଗାହୋଇଛି ବାର୍-ଲାଇଟ୍‌ଗୁଡ଼ିଏ । ଖିଲଣ ଉପରେ ଆଲୋକର ନାଡ଼ । ନାଡ଼ ଉପରେ ନାଲିନେଳି ବଲ୍‌ବରେ ତିଆରି ବଡ଼ ପଦ୍ମଫୁଲଟିଏ । ସେ ଫୁଲର କେଶର ହୋଇଛି ଗୁଡ଼ିଏ ମର୍କରୀ ବଲ୍‌ବ । ପଦ୍ମଫୁଲଟି ଧୀରେ ଧୀରେ ନିଜ କକ୍ଷରେ ବୁଲୁଛି । ବିଜୁଳି-ମିସ୍ତ୍ରୀ ଓ ତାଙ୍କର କର୍ମୀମାନେ ଆବୁରି ପରୀକ୍ଷା କରି ଦେଖୁଛନ୍ତି ।

ତାକୁ ଦେଖିବାର ଆଗ୍ରହ ନିବୃତ୍ତିପାରୁ ନାହିଁ । ତା'ର ମନ ରୋଦନ କରୁଛି । ସଞ୍ଜୟବାବୁ ତାର ସବୁ ସ୍ନେହ ଲୁଟି, ତାକୁ ଅପମାନ ଦେଲେ । ସେ କାଲି ଏତିକିବେଳକୁ ବରବେଶ ସାଜି ଆସୁଥିବେ । ଦିନକ ପରେ ସେ ହେବେ ବଡ଼ ଭଣୋଇ । ସେ ପୁରୁଷ ପିଲା । ନିର୍ଲଜ୍ଜପଣକୁ ସରନ୍ତି । କିପରି ନିରୁପା ଉଦ୍ଧ୍ୟୋତରେ ତାଙ୍କ ମୁହଁକୁ ଚାହିଁବ ? ଯେଉଁ ଅପା ତା'ର ପେଟ-ଭିତରୁ ତା'ର ଅଣାୟତ୍ତ-ସ୍ଥଳନର ସବୁ ଘଟଣା ଟାଣିନେଇଛି, ପଦଗୁଡ଼ିକ ହସ୍ତଗତ କରିଛି, କିପରି ସେ ସେହି ଅପାକୁ ମୁହଁ ଦେଖାଇପାରିବ ?

ନିଜ ଲାଜ ନିଜକୁ । କାନ୍ଦିବସିବା ତା'ର ନିରର୍ଥକ । ତା'ର ଅପା ଗଡ଼ି ଜିତିବ, ସେ ଜାଣେ । ବାହା ହେବ ବୋଲି ଆନନ୍ଦରେ କୁରୁଳି ଉଠୁଛି ।

ଚଣ୍ଡୀଙ୍କ ମନ୍ଦିରରୁ ଫେରି ଅନୁପାକୁ ଘୁଡ଼ ଗାଡ଼ି ଧରି ବିମଳବାବୁ ପୁଣି କୁଆଡ଼େ ଚାଲିଯାଇଥିଲେ । ଡେରି ହେବାର ଦେଖି ନିଜେ ନିରୁପା ଆନନ୍ଦବାବୁଙ୍କର ଗାଡ଼ି ପାଇଁ ଘରକୁ ପରିମଳବାବୁଙ୍କ ଟେଲିଫୋନ୍‌ରୁ ଫୋନ୍ କରିଥିଲା । ସେ ଭାବିଥିଲା ତା'ର ବାପା ଭୁବନେଶ୍ୱରରୁ ଫେରି ଆସିଥିବେ । ସେ ଫେରି ନ ଥିଲେ । ଘରର ଫୋନ୍‌ରୁ ଗୋପବନ୍ଧୁ ଉତ୍ତର ଦେଲେ । ସେ ଜଣାଇଲେ ଯେ, ଭୁବନେଶ୍ୱରରୁ ସେମାନେ ଫେରି-ନାହାନ୍ତି, ତାର ଅନୁଅପାକୁ × × × ନମ୍ବର ଫୋନ୍‌ରୁ କେଉଁ ବସ୍ତି ତା ଦେବୀ ଟିକଏ ଅସ୍ଥିର-ସ୍ୱରରେ ଡାକୁଥିଲେ ।

ଏ ଖବର ପାଇ ତା'ର ଅପା ଅସ୍ତବ୍ୟସ୍ତ ହୋଇ ବନହଂସୀ ମାଉସୀଙ୍କ ଫୋନ୍‌ରୁ କଥା କହୁଥିଲା । ସେ ଅଧିକ ଶୁଣିଥିଲା । କେବେ କେବେ ପଦେ ପଦେ ପଚାରୁଥିଲା—ହଉ × × ଠିକ୍ ହେଲା × × ନିମନ୍ତ୍ରଣ ପତ୍ର ପାଇନ ? × × ସତେଇଶ × × ଜାଣିଲନି ? ଭଲ × × ବଡ଼ ବଡ଼ × × ପରବନ କାହିଁକି ? × × ନା, ସେଠିକି ନୁହେଁ, ଭୁବନେଶ୍ୱର × × ତା'ପରେ ଗୃହକରିଗାଁ × × ତମର ଭାଉଜ ଓ ତାଙ୍କର ନଣନ୍ଦ ? ସୁ-ସମ୍ବାଦ । ତାଙ୍କୁ ନାହିଁ । ତାଙ୍କ ନାଁ ? × × ବେଶ୍ ବେଶ୍ × × ଅମୋଘ ଅସ୍ତ୍ର ତାଙ୍କ ପାଖକୁ ଯାଉଛି । ସେ ଅସ୍ତ୍ର ବାଜୁଛି । କାମ କଲାଣି । ଦେଖାଯାଉ ପ୍ରତିକ୍ରିୟା × × ରହିଲି ? ହେଉ, ନମସ୍କାର—

ନିରୁପା ସବୁ ଶୁଣୁଥିଲା । ମନରେ କେତେ ସନ୍ଦେହ ଦେଇ ଖେଳୁଥିଲା । ଅନୁପାକୁ ପଚାରିବାକୁ ବେଳ ମିଳିଲା ନାହିଁ । ତା'ର ପିତା ଆନନ୍ଦବାବୁ ପରିମଳ ମଉସାଙ୍କୁ ସଙ୍ଗରେ ଧରି ନିଜ ଗାଡ଼ିରେ ପହଞ୍ଚିଗଲେ । ସେମାନଙ୍କୁ ସଙ୍ଗରେ ଘେନି ଆସିଲେ ।

ଏତେବେଳଯାଏ ନିରୁପା ସବୁ ଘଟଣା ମନରେ ଘାଣ୍ଟୁଛି । ନିଜେ ଅସ୍ଥିର ହେଉଛି । କିଏ ତାକୁ ସବୁ ପ୍ରଶ୍ନର ଉତ୍ତର ଦେଇପାରିବ ? କେଉଁ ସାହସରେ ସେ ତା'ର ଅପାକୁ ପଚାରିବ ? କାଲି ଏତେବେଳକୁ ଘୋ-ଘା ଲାଗିଥିବ । ତା' ପରଦିନ ଏତେବେଳକୁ ସେ ନ ଥିବ । ସବୁ ଶୂନ୍‌ଶାନ୍ । ସେ

ନିଜେ କ'ଣ ତାରି ଜଳନ୍ତି ଆତ୍ମା, କଲବଲି ଜୀବନ, ହନ୍ତସନ୍ତ ମନ ଧରି ନିଲଠା ପୋଡ଼ାମୁହଁ ଦେଖାଇବାକୁ ରହିବ କି ? ନା, ନା, ନା । ନିଜର ଦେଖିଲା କାମ ସେ ନିଶ୍ଚୟ ନିଜେ କରିବ ।

ସ୍ୱାଗତ ତୋରଣ ପାଖରୁ ସୁରୂପା ଫେରିଆସୁଛି । ବୈଠକ-ଘରଆଡ଼ୁ ଧାଇଁଆସୁଛି ଦାଦପୁଅ ଭାଇ ନିରି । କିଏ ଫୋନ୍‌ରେ ଡାକିଲାଣି ପରା ! ନିରୁପା ସେଇଆଡ଼େ ମୋଡ଼ିଲା ।

ଅଞ୍ଜନା ଡାକୁଥିଲା ।

କିଏ, ଗୋଲାପ ?

ଅଞ୍ଜନା ଅପା କି ? ସ୍ୱରରୁ ବାରିଲି । ନମସ୍କାର । ମୁଁ ନିରୁ କହୁଛି । ଅପା ଭିତରେ ଅଛି । ଡାକିବି ?

ନିରୁପମା ଦେବୀ ? ଠିକ ଖାଇଛ ? ହଉ, ଆଜି ଦିନକ ନମସ୍କାର କରିଥା, ଗ୍ରହଣ କରୁଛି ।

କ'ଣ କହୁଛ ଅପା ! ବୁଝିପାରୁନି । ମୁଁ ନିରୁ ମ, ଚିହ୍ନିପାରୁନ ? ଭୁଲ ନମ୍ବର ଲାଗିଛି ।

ଭୁଲ ନମ୍ବର ଲାଗିଥିଲା । ଏବେ ଠିକ୍ ହୋଇଗଲାଣି । ଏକ୍‌ସଚେଞ୍ଜ ଅପରେଟର ମୋ ଗୋଲାପକୁ ଡାକିଦିଅ, ନିରୁ ! ତମ ସଙ୍ଗେ ଅଧିକ କଥା-ଭାଷା ହୋଇପାରିବ ନାହିଁ । ବାକିତକ ସୋମବାର ରାତିରେ । ଯାଅ, ମୁଁ ଫୋନ୍ ଧରିଛି ।

ତମେ କିଏ ସତ କହ ମ । ଏମିତି କ'ଣ ଗପୁଛ ?

ସେପାଖରୁ ଖିଲି ଖିଲି ହସ ଶୁଭିଲା । ହସ ଥମିଲାରୁ ସେ କହିଲେ, ସପନ ଦେଖି ଠିକଏ ମୁଁ ବଳବଳଉ ଥିଲି ଲୋ ନିରୁ ! ତୋ ଅପା ଅନୁପା, ମାନେ ମୋ ଗୋଲାପକୁ ଯା ଡାକି ଦେ ।

ଯାଉଛି । ସତରେ ମୁଁ ଡରିଗଲି !

ନିରୁପା ଫୋନ୍‌ଟିକୁ ଟେବୁଲ ଉପରେ ରଖି ନିଜେ ଅନୁପାକୁ ଖବର ଦେବାକୁ ଧାଇଁଗଲା । ଅନୁପା ଦୁଇ ଆଖିରେ ଲୁହ ଭରି ଠାକୁରଘର ଭିତରୁ ବାହାରି ଆସୁଥିଲା । ସେ ଇଲା ଘରର ସାଉଁଳ ପଲଙ୍କ ଉପରେ ବସି ତାର ଖୁଡ଼ୀ ବୋଧହୁଏ ତାକୁ ଅପେକ୍ଷା କରି ରହିଥିଲେ । ଅନୁପାକୁ ଖବର ଦେଇ ନିରୁପା ତାଙ୍କରି ପାଖକୁ ଗଲା । ତା ପଛେ ପଛେ ସୁରୂପା ଆସି ପହଞ୍ଚିଗଲା । ଖୁସି ହୋଇ କହିଲା, ସ୍ୱାଗତ ତୋରଣ କେଡ଼େ ସୁନ୍ଦର ଦିଶୁଛି ଖୁଡ଼ୀ, ତମେ ଯାଅ ଦେଖିଆସିବ ।

ସୁଖଦା କହିଲେ, ଦେଖିଛି ଲୋ ମା ! ଧନ ପାଣି ପରି ଢାଳିଲେ କ'ଣ ହୋଇ ନ ପାରିବ ? ଇନ୍ଦ୍ରଭବନ ଏ ପୁରକୁ ଓହ୍ଲାଇଆସିବ । ତୋ ବାପା ତ ତୋ ଦାଦା ପରି ଗରିବ ନୁହେଁ ଲୋ ମା, ତୋ ବୋଉ ତ ତୋ ଖୁଡ଼ୀ ପରି ଭିକାରୁଣୀ ନୁହେଁ !

ନିରୁପା ଆକଟିଲା, ପିଲାଟାକୁ ସେମିତି କହନା, ଖୁଡ଼ୀ ! ତା' ମନରେ ଦୁଃଖ ହେବ । ଅପାର ବାହାଘର ହେଉଛି ବୋଲି ସେ ଓ ସାନନ୍ଦ କେଡ଼େ ଖୁସି ହେଉଛନ୍ତି । ଦାଦା, ଖୁଡ଼ୀ ଓ ଭାଇମାନଙ୍କୁ ଦେଖି ତାଙ୍କର ଆନନ୍ଦର ସୀମା ନାହିଁ । ଧନଦଉଲତ, ବାଦବିବାଦ, ଛଳ କଥା ସେମାନେ ବୁଝିବେ ନାହିଁ ।

ସୁଖଦା ମନେ ମନେ ଲାଜେଇ ହେଲେ । ନିଜର ଭୁଲ ସେ ବୁଝିଲେ । ଭାବିଲେ, ଅନୁପାକୁ ବଳି ନିରୁପା । ମୁହେଁ ମୁହେଁ ଜବାବ ଦେଇପାରେ । ସଣୁଣା ଶିଖିନାହାନ୍ତି । କଥାକୁ ଚଳାଇନେବାକୁ ବୁଲିଇ ଓଲଟ ଭାଷାରେ କହିଲେ, ଝିଅ ତିନୋଟି ଅପା ଜନମ କରିଛନ୍ତି ସେ ତିନୋଟି ରତ୍ନ । କେଡ଼େ ସରଳ ମନ, ସରଳ ପ୍ରକୃତି ! ଦେଖ ଅନୁକୁ । ଗତି ପାହିଲେ ବାହାଘର । କେଉଁ ଗହଣାଗାଣ୍ଠିର ଅଭାବ ଅଛି ? କାନରେ ସାଧାରଣ ପଥରବସା ହଳେ ଫୁଲ, ହାତରେ ମୋଟେ ବି'ପଟି କରି ପତଳା ସୁନାକାଚ, ବେକରେ ହାରଟିଏ ଯେ ବି'ଭରି ହଏ ନ ହଏ । ସାଧାରଣ ଶାଢ଼ି ଖଣ୍ଡିଏ ପିନ୍ଧିଛି ।

ନିରୁପା କହିଲା, ମୋ ଅପା ମନ କଲେ, ବୋଉ ତାକୁ ସୁନା ଆଉ ମୋତିମାଣିକ୍ୟର ଗହଣାରେ ଘୋଡ଼ାଇ ପକାଇବ । ଜାଣି ସାରିଛୁ ତ । ବୋଉ ତମକୁ ଦେଖାଇନାହିଁ ? ବଡ଼ଲୋକ ଦେଖିବ ଯେ ରହ । ବାହାବେଦୀ ଉପରେ ସବୁ ପିନ୍ଧି ଅପା ବସିବ । ସବୁବେଳେ ଗହଣା ବୋଝାଇ ହୋଇ ଆଉଯାଉ ହେବାକୁ ସେ ଭଲପାଏ ନାହିଁ ।

ସ୍ୱରୂପା କହିଲା, ଅପା ଆଖି ପୋଛୁ ପୋଛୁ ତଳକୁ ଓହ୍ଲାଇଥିଲା ।

ସୁଖଦା କହିଲେ, ବାହା ହେବାକୁ ଯାଉଥିବା ଝିଅ କାନ୍ଦନ୍ତି ଲୋ ମା ! ସବୁ ସ୍ନେହର ଡୋରି ଛିଣ୍ଡାଇ ପରଘରକୁ ଚାଲିଯିବେ । ନୂଆ ଜନମ ମିଳିବ । କାନ୍ଦିବେ ନାହିଁ ? ସମସ୍ତେ କାନ୍ଦନ୍ତି । ସାହିପଡ଼ିଶା, ଏପରିକି ପୋଷା ପଶୁପକ୍ଷୀ, ଗଛପତର—

ନିଜେ ସେ ଆଖିରୁ ଲୁହ ପୋଛିଲେ ।

ସାନନ୍ଦ ପଲଙ୍କ ଉପରେ ଶୋଇପଡ଼ିଥିଲା । କାନ୍ଦିବ କି ନାହିଁ ତଳ-ବରଡ଼ା ସ୍ୱରୂପା ବିଚାର କରୁଥିଲା । ନିରୁପାକୁ କାନ୍ଦ ମାଡ଼ୁଥିଲା, କିନ୍ତୁ ସେ କାନ୍ଦିବା ଆଗରୁ ହସିହସିକା ଅନୁପା ତରତର ହୋଇ ଘରଭିତରକୁ ପଶିଆସିଲା । ନିରୁପାକୁ କୋଳାଗ୍ରତ କଲା । ତା'ର ଚିବୁକରେ ବୋକ ଦେଲା ।

ପ୍ରକୃତିସ୍ଥ ହୋଇ, ବିସ୍ମୟରେ ସ୍ଥାଣୁ ପରି ଠିଆ ହୋଇ ରହିଥିବା ନିରୁପାର ପଚ୍ଛରଳ-ପଚ୍ଛରଳ ଆଖି ଦିଓଟିକୁ ସ୍ନେହପୂର୍ଣ୍ଣ କୋମଳ ଦୃଷ୍ଟିରେ ଚାହିଁଲା, ତା'ର ଦୁଇ ଗାଲକୁ ଦୁଇ ହାତରେ ଛୁଇଁ ମୁଣ୍ଡ ହଲାଇ ହଲାଇ, ମୃଦୁ କଣ୍ଠରେ କହିଲା, ଗୋଲାପ ଫୋନ୍ କରିଥିଲା । ତା' କଥା ତୁ ବୁଝିପାରିଲୁ ନାହିଁ ?

କ'ଣ ସେ ଏଣୁତେଣୁ କହୁଥିଲା ?

ନିରୁପାର ମୁହଁରୁ ହାତ ଖସାଇ ଅନୁପା କହିଲା, ମୋ'ର ଅମୋଘ-ଅସ୍ତ୍ର ସମସ୍ତଙ୍କର ଆଖି ଖୋଲିଛି । ସମସ୍ତଙ୍କୁ ସତ୍ୟ-ପନ୍ଥ ଧର୍ମ-ପଥକୁ

ଟାଣିଆଣିଛୁ । ଆ, ଚଳେ ସବୁ କହିବ । ଆଗ ତୁ ଠାକୁରମାନଙ୍କୁ ପ୍ରଣାମ କରିସାର । ସେମାନେ ବି ଶୁଣିବେ ।

ନିରୁପାର ହାତ ଧରି ଅନୁପା ଠାକୁରଘରକୁ ନେଲା ।

**ସେ**ମାନେ ଘରଅଧରେ ଫେରିଲେ ।

ବୈଠକଘରର ବାହାର ପାଖର କବାଟ ଝରକା ସବୁ ବନ୍ଦ କରାହେଲା । ଆନନ୍ଦ, ବନନ୍ଦ, ଶିବଚରଣ ଓ ଇନ୍ଦୁଙ୍କ ଭିତରେ ଅଳ୍ପ ସମୟ ଆଲୋଚନା ହେଲା । ସବୁ ଆୟୋଜନ ସମ୍ପୂର୍ଣ୍ଣ ହୋଇଛି । ପ୍ରଚୁର ଅର୍ଥ ବ୍ୟୟ ହୋଇସାରିଲାଣି । ସ୍ଥିର ହୋଇଥିବା ତିଥିରେ ଓ ଲଗ୍ନରେ ବାହାଘର ନିଶ୍ଚୟ ହେବ । ପାଠପଢ଼ା ପୁଅଝିଅ, ଯେଉଁମାନଙ୍କର ଗଣ୍ଠିବନ୍ଧ ପାଇଁ ପୂର୍ଣ୍ଣ ସ୍ୱାଧୀନତା ଦିଆହୋଇଛି, ବାହା-ନିମିତ୍ୟ ବିଷୟରେ ସେମାନଙ୍କର ସମ୍ମତି ନ ନେଲେ ଏହି ଅବସ୍ଥା ହେବ । ସମସ୍ତେ ସେମାନେ ଏହା ବୁଝିଲେ ।

ହେଲା, ଲୋକେ ପଚରାପଚରି ହେବେ । ନାନା କଥା କହି ଆଲୋଚନା କରିବେ । ଦୁର୍ନାମ ରଟାଇବେ । ସେସବୁକୁ ପିଠେଇଦେବାକୁ ହେବ । ନିମନ୍ତ୍ରିତ ବାହାର ଲୋକେ, ଯେଉଁମାନେ ଭୋଜି ଖାଇବାକୁ ଆସନ୍ତି, ସେମାନେ ଆନନ୍ଦବାବୁଙ୍କର ଝିଅର ବାହାଘରରେ ଯୋଗ ଦେଇ ନିମନ୍ତ୍ରଣ ରକ୍ଷା କରିବେ । ଆଶୀର୍ବାଦ କରିଯିବେ । କେଉଁ ଝିଅର ବାହାଘର, ବଡ଼ କି ମଝିଆଁ, ଅନୁପମା କି ନିରୁପମା, ସେ ବିଚାର କରିବାର ସୁଯୋଗ ପାଇବେ ନାହିଁ । ବେଳ ପାଇବେ ନାହିଁ । ମାଇପି ମହଲରେ ଆଲୋଚନା ହେଲେ ହେବ । କିଏ ବାରଣ କରିବ ?

ଅତି ଆତ୍ମୀୟ ଯେଉଁମାନେ, ସେମାନଙ୍କୁ ଜଣାଇବାକୁ ହେବ— ବଡ଼ ଝିଅ ବାହା ନ ହୋଇ ପଢ଼ିବାକୁ ମନକଲା । ତେଣୁ ଏହି ପରିବର୍ତ୍ତନ । ଦୁଇ ପକ୍ଷର ସମସ୍ତେ ରାଜି । ଆଗରୁ ତାକୁ ପଚରା ହୋଇ ନ ଥିଲା । ପଚାରିବାରୁ ସେ ମନା କରିଦେଲା । ଏ କୈଫିୟତରେ କାହାର ହୃଦ୍‌ବୋଧ

ହେବ ନାହିଁ; କିନ୍ତୁ କିଛୁ ଗୋଟାଏ କଇଫତ ଦେବାକୁ ହେବ ତ ! ଅଧିକ ଖୋଳତାଡ଼ ପ୍ରଶ୍ନର ଉତ୍ତର ଦିଆହେବ ନାହିଁ ।

ଶିବଚରଣ କହିଲେ, ଆଲୋ ଅପା ! ଅନୁଟା କେଡ଼େ ଲୋକହସା କରାଇଲା ! ମଙ୍ଗୁଳା-କନ୍ୟା ହେଲା । ସେତେବେଳେ ବାରଣ କଲା ନାହିଁ ? ଏବେ ପଧିକ କାଢ଼ିଲା ! ହଁ, ତା'ର କି ଦୋଷ ? ସିଏ ଜୋଇଁ ହବ, ପୁଣି ହାକିମ ହୋଇଛି, ଅଭିଲା ମାଇଗ୍ଟ ଟୋକା, କେଉଁଠୁ କ'ଣ ଶୁଣିଥିବ ମ, ମୁଣ୍ଡ ହଲାଇଦେଲା । ଯେମିତି ହେଲେ ଜୋଇଁ ହବ, ନୋହିଲେ ତାକୁ ପାନେ ଦିଅନ୍ତି । ମୁଁ ଏମ୍. ଏଲ୍. ଏ.ଟି ! ପୂଅ ଚିହ୍ନନ୍ତା !

ଇନ୍ଦିରା କହିଲେ, କ'ଣ ତେବେ ହେବ ?

ଶିବଚରଣ ଭଣିଲେ, ବିଧିବିଧାନ ପାଳିବାକୁ ହେବ । କାଲି ସକାଳୁ ନିରୁ ପାଇଁ ଦିଅଁ ମଙ୍ଗୁଳା କର । ସେ ମଙ୍ଗୁଳା-କନ୍ୟା ହେଉ । ତା'ପରେ, ସଦ୍ୟ ମଙ୍ଗନ, ସଦ୍ୟ ବାହା । ଗାତ ନ ପାହୁଣୁ, ମୁଁ ତୋ ଭାଉଜ ଜେମା-ମଣିକି ଆଣି ଛାଡ଼ଦେଇଯିବି । ସବୁ ବିଧିବିଧାନ ତାକୁ ଜଣା । ସାତ ମାଇପଙ୍କ କାନ କାଟିବ ।

ଇନ୍ଦିରା ମୁଣ୍ଡ ହଲାଇ କହିଲେ, ଭାରି ଭଲ ହେବ । ଘର ଭିତରର ସବୁ କାମ ସେ ନିଜେ ଆଦରିନେବେ । ମୋ ଗୋଡ଼ହାତରେ କିଛୁ ପଶିବ ନାହିଁ । ତାଙ୍କୁ ସାହାଯ୍ୟ କରିବାକୁ ସୁଖଦା ତ ଅଛି ।

ଶିବଚରଣ ପୁଣି କହିଲେ, ତା ମୁଣ୍ଡରେ ଦାୟିତ୍ୱ ଲଦିଦେଲେ, ଦେଖିବୁ ସେ କେମିତି ଭୁଲାଇବ । ଆସିଥିଲା ତ, ତାକୁ ଛାଡ଼ଦେଲୁ କାହିଁକି ? ଏବେ ସେ ଗୋଡ଼ ଲମ୍ବାଇବ । ଖୁସାମଦ ଖୋଜିବ । ତୁ ମୋ ସଙ୍ଗରେ ଯିବୁ, ଅବା ଡାକିବୁ ?

ନିଶ୍ଚୟ ଯିବି ।

ହଁ, ଆଉ ଗୋଟିଏ କଥା । ନିରୁର ମତାମତ—

ମୋ କଥାରୁ ସେ ବାହାର ହେବ ନାହିଁ ।

ପୁଣି ଆଉ ଗୋଟିଏ କଥା ଲେ ଅପା ! ଅନୁଟା ମଙ୍ଗଳା-କନ୍ୟା ହୋଇଛି । କେମିତ ଅଭିଆଡ଼ୀ ରହିବ ? କେତେ ଧନ ରହିବ ? ମୁଁ ଜାଣେ, ତା'ର ରକ୍ତଶୁଦ୍ଧି ଗୃହଶୁଦ୍ଧି ହୋଇଥିଲା । ବାହାଘର ତ ଅଟକିବାର ନୁହେଁ !

କେଉଁ ଅବ୍ୟକ୍ତ ବେଦନାରେ ଇନ୍ଦିରଙ୍କର ଅନ୍ତରାତ୍ମା ଥରଉଠିଥିଲା । ତୁଣ୍ଡରେ ସେ ଯାହା କହନ୍ତୁ, ବାହାରକୁ ଯେତେ କଠୋରପଣ ଦେଖାନ୍ତୁ, ଆଜ ରାତିର ଘଟଣାବଳୀ ତାଙ୍କର ମାତୃହୃଦୟକୁ ନରମାଇ ଦେଇଥିଲା । ଅନୁପା ତାଙ୍କର ଅବାଧ ହେଲା ସତ, ତାଙ୍କ ପାଖରୁ ଆସ୍ଥା ହରାଇଲା । ନିରୁପାୟ ଜୀବନ ରକ୍ଷା ପାଇଁ ଶେଷକୁ ସେ ସଞ୍ଜୟକୁ ଆକ୍ରମଣ କଲା । ତା'ର ଶରଣ ପଶିଲା । ସମାଧାନର ବାଟ ଦେଖାଇଲା ।

ସଞ୍ଜୟ ଅଞ୍ଜନାକୁ ଅନୁପାର ଯେଉଁ ପତ୍ର ଦେଇଥିଲା, ଅଞ୍ଜନା ସେ ପତ୍ରଟିକୁ ଗୁପ୍ତରେ ତାଙ୍କୁ ପଢ଼ାଇଥିଲା । ବାରମ୍ବାର ସେ ତାକୁ ପଢ଼ିଥିଲେ । ରଞ୍ଜିତା ବୋଧହୁଏ ଆଗରୁ ଦେଖିଥିଲେ ।

ସବୁ ବିଭ୍ରାଟ ପାଇଁ ନିଜକୁ ସେ ଦୋଷୀ ମଣିଲେ । ତାଙ୍କର ଅଦୂର-ଦର୍ଶିତା ପାଇଁ କୁଟୁମ୍ବରେ ଯବ ବିଶୃଙ୍ଖଳା ପଶିଲା, ସେଥିପାଇଁ ପିଲାଙ୍କର ଓ ବାହାର ଲୋକଙ୍କର ଦୋଷ ଦେଇ ନିଜେ ମୁଣ୍ଡ କୋଡ଼ହେଲେ ଲୋକହସା ହେବାକୁ ପାର ହେବ । ଯାହା ଘଟିଯାଇଛି, ତାକୁ ମନରେ ଲୁଚାଇ ହସ-ଖୁସିରେ ନିମିତ୍ୟ ଉଠାଇବା ଭଲ ।

ଶିବଚରଣ କହିଲେ, ତୁ ବହୁତ ଭାବୁଛୁ ଲେ ଅପା ! ଅନୁ ଆମର ମଙ୍ଗଳା-କନ୍ୟା । ତୁ ଚାହିଁଲେ ରାତି ନ ପାହୁଣୁ, ତା' ଉପଯୁକ୍ତ ଜୋଇଁ ଠିକଣା କରିଦେବି । ଇନ୍ଦ୍ରପୁଅ ପରି ହୋଇଥିବ । ବଡ଼ ଚାକିରି କରୁଥିବ । ପାଠରେ ସେ ମାଇଲୁ ସଞ୍ଜୟକୁ ଟପିଥିବ । ଦେବାନେବା ତମ ମନ । ତୁଳସୀପତ୍ର ଦେଇ ବିଦା କଲେ ସନ୍ଥି । କାଲି ବାହାଘର ହେବ । ଏକା ଡିଥିରେ । କଟକରେ ଗହଣା, ଶାଢ଼ି ଅପୂର୍ବ ନୁହେ । ତମର ଟଙ୍କାର ଅଭାବ

ନାହିଁ । ଏକା ଖରଚରେ ପାଇଟି ଶେଷ । ବାପ ବଡ଼ ଝିଅ ଅନୁପାକୁ ବାହା କରାଇବେ । ବାଦ ନରୁପାକୁ । ତୁ ହଁ କହିଲେ ହେଲା ।

ସମସ୍ତେ ଉଦ୍‌ଗ୍ରୀବ ହୋଇ ଇନ୍ଦ୍ରଙ୍କୁ ଚାହିଁ ରହିଥିଲେ । ଇନ୍ଦ୍ରଙ୍କ ଅନ୍ତରର ଆଖି ଆଗରେ ଭଣଜା ବଙ୍କିମକେଶରୀ ଉଭା ହୋଇଥିଲା । ଶିବଚରଣ ବର୍ଣ୍ଣିଥିବା ସବୁ ସୁଗୁଣର ଅଧିକାଂଶ ହେଲେ ସେଇ ଟୋକାଟି ହୋଇପାରେ, ସେଇ ପିଲା, ଯାହାକୁ ପ୍ରକାରାନ୍ତରେ ସେ ଘର ମନା କରିଛନ୍ତି । ସେଇ ସେ, ଯାହାକୁ—

ଭାବି ହେଉ ନାହିଁ । ମନ ନିଜକୁ ଧିକ୍‌କାରୁଛି ।

ତାଙ୍କର ଆଖି ସଜଳ ହେଲା । କହିଲେ, ଅନୁ ମୋର ଜୀବନରୁ ବଳି ଅଧିକ । ହେଉ ସେ ମଙ୍ଗୁଳା-କନ୍ୟା । ପିଲଟି ଦିନରୁ ସେ ସେଇଆ । ଅପେକ୍ଷା କରିବି । ଯେତେ ମନ ସେତେ ପଢ଼ୁ । ଯେବେ ତା' ମନ ବଦଳିବ, ସେବେ ବାହା କରାଇବି । ଯାହାକୁ ସେ ନିଜେ ବାଛିବ, ସେଇ ମୋ'ର ଜୋଇଁ ହେବ । ତା' ମନରେ ମୁଁ କାଣିଚାଏ ଦୁଃଖ ଆଘାତ ଦେବାକୁ ଚାହେଁ ନାହିଁ ।

ଇନ୍ଦ୍ର ଆଖିରୁ ଲୁହ ପୋଛିଲେ । ନିଜେ ଉଠି ଅନ୍ୟମାନଙ୍କୁ କହିଲେ, ଆଜି ଆଲୋଚନା ଲୋଡ଼ା ନାହିଁ । ରାତି ଅଧିକ ହେଉଛି । ସମସ୍ତେ ଖାଆପିଆ ସାରି ବିଶ୍ରାମ ନିଅ ।

ଶିବଚରଣ କହିଲେ, ମତେ ଫେରିବାକୁ ହେବ ।

ଆନନ୍ଦ କହିଲେ, ଡ୍ରାଇଭର ଛାଡ଼ିଦେଇ ଆସିବ ।

ଇନ୍ଦ୍ର କହିଲେ, ଭଲ ହେବ । ସେ ବସା ଦେଖିଆସୁ । କାଲି ବଡ଼-ସକାଳୁ ମୁଁ ନିଜେ ଯାଇଁ ଜେମାମଣିଙ୍କୁ ଧରିଆଣିବି । ଯାଏଁ ଦେଖେଁ, ଝିଅ ଦିନେଁ ଚେଇଁଛନ୍ତି, କି ଶୋଇଛନ୍ତି ! ଏତେବେଳଯାଏ ସେମାନେ କିଛି ଜାଣିନାହାନ୍ତି । କିପରି ତାଙ୍କୁ ଜଣାଇବି ? କି ନୂଆ ଢଙ୍ଗ ସେମାନେ କାଢ଼ିବେ ? କିପରି ତାଙ୍କୁ ମୁଁ ସମ୍ଭାଳିବି ? କ'ଣ କହି ବୁଝାଇ ଶୁଝାଇ ସୁରୁଖୁରୁରେ ତାଙ୍କୁ ମଙ୍ଗାଇବି ? ସେଇ ଚିନ୍ତା ମତେ ଘାରୁଛି ।

ବନନ୍ଦ କହିଲେ, ମୁଁ ସେଇଆ ବଗୃରଥିଲି । ତେବେ, ତମ ଜାଆ ସୁଖଦା ଅଛି । ସେ ସାହାଯ୍ୟ କରିବ । ଯାହା ଦେଖୁଛି, ଆଜ ତମର ସ୍ୱତ ପାହିବ ।

ଠାକୁରେ ସାହା ହେବେ, କହି ଇନ୍ଦର ଟଳଟଳ ହୋଇ ବୈଠକ-ଘରୁ ପଦାକୁ ଆସିଲେ । ମଣୁଥିଲେ, ତାଙ୍କ ଦେହରୁ କିଏ ଜୀବନୀ-ଶକ୍ତି ଶୋଷିନେଇଛି । ସେ ଝିଲୁନାହାନ୍ତି, ପବନରେ ପହଁରି ପହଁରି ଯାଉଛନ୍ତି ।

ଆଜ ଅନୁପାର ବାହାଘର । ହଁ ତ, ଆଜ ରବିବାର, ସତେଇଶ ତାରିଖ । ଛାପା ନିମନ୍ତ୍ରଣ ପତ୍ରରେ ସେହି କଥା ଲେଖା ହୋଇଛି । ଗରିବ ଭଉଣୀ ବୋଲି ଆନନ୍ଦ ଖାଲି ଛାପା କାଗଜ ଖଣ୍ଡିଏ ପଠାଇ ଦୋଷ ଛଡ଼ାଇଦେଇଛି । ଜାଆ ବାସନ୍ତୀ ଦେଖି ମୁହଁ ମୋଡ଼ିଦେଲେ । କହିଲେ, ହଁ, ତାଙ୍କ ବଡ଼ଲୋକୀ ତାଙ୍କର, ଆମର କି ଥାଏ ?

ଚନ୍ଦନା ପଚାରିଲେ, ଏପରି କାହିଁକି କହୁଛ ?

ବାସନ୍ତୀ ଉତ୍ତର ଦେଲେ, ତମେ ତାଙ୍କର ଗୋଟିଏ ବୋଲି ଭଉଣୀ । ଏହି ସନମାନ ଦେଖାଇଲେ ? ଭଣ୍ଡାରି ହାତରେ ଗୁଆ ଚଳାଇପାରିଲେ ନାହିଁ ? ତାଙ୍କର ପ୍ରଥମ ନିମିତ୍ୟ । ତମୁକୁ ନେବାପାଇଁ କାହାକୁ ପଠାଇ-ପାରିଲେ ନାହିଁ ? ବନ୍ଧୁପଣ କାଟିଦେଲେ ମ ଅପା !

ଚନ୍ଦନା କହିଲେ, କାଲି ଉପରବେଳା ଏ ଚିଠି ପାଇଲି । ସେ ପକ୍ଷେ ସ୍ନାନମାନ କରୁ, ମୋ କର୍ତ୍ତବ୍ୟ କରି ମୁଁ ବେଭାର ପାଇଁ କିଛି ଟଙ୍କା ପଠାଇଦେଇଥାନ୍ତି । ପୁଅ ଆସିଲା ନାହିଁ । ଅପେକ୍ଷା କରି ଆଜ ଛୁଇ ଲେଉଟିଲା । ଆଉ କ'ଣ ଆସିବ ?

ବାସନ୍ତୀ କହିଲେ, ବଡ ମାମୁଁ ଘର ନିମିତ୍ୟ କାମରେ ନିଜେ ବ୍ୟସ୍ତ ଥିବେ । ସେଥିପାଇଁ ଆସିପାରିଲେ ନାହିଁ । ସେଇଠି ସେ ବେଭାର ପାଇଁ ଶାଢ଼ି, ଟଙ୍କା ଦେଇଥିବେ । ତମେ ବ୍ୟସ୍ତ ହୁଅନା । ଗୋଟାଏ ଖବର ମୁଁ ପାଇଲି, ଅପା !

କି ଖବର ଲୋ ?

ସତମିଛ ମୁଁ ଜାଣେ ନାହିଁ । ଶୁଣିଲି, ଆଉ ଥର ଅସି ବସନ୍ତ, କମ୍ ନୁହେ, ପାଞ୍ଚଶହ ଟଙ୍କା ଅଲେଖାର ଶ୍ୱଶୁର ପାଦମା ପାଖରୁ ହାତଉଧାର ନେଇଯାଇଛନ୍ତି । ତମେ ଜାଣନାହିଁ ?

ଜାଣେ ଲୋ ବାସନ୍ତୀ, କିନ୍ତୁ କାହିଁକି ନେଇଛି ମତେ ସେ କିଛି କହିଲା ନାହିଁ । ଆସିଲା, ଗାଁ ବୁଲିଗଲା । ଘରକୁ ଫେରି ମୁଠିଏ ଖାଇ ଆଖି ବୁଜିଛି କି ନାହିଁ, ଉଠି ତରତର ହୋଇ ଚାଲିଗଲା । ଚିଠି ଖଣ୍ଡେ ବି ଦେଇନାହିଁ । ତୁ କେଉଁଠୁ ଶୁଣିଲୁ ?

କଥା କ'ଣ ଛପିରହେ କି ? ସମସ୍ତେ ଭୁଟ୍‌ଭାଟ୍ ହେଉଛନ୍ତି । ସେ ଟଙ୍କା ବାହାଘର ପାଇଁ ନେଇଛନ୍ତି ।

ଚନ୍ଦନା କିଛିକ୍ଷଣ ନୀରବ ହୋଇ ଚିନ୍ତା କଲେ, ପୁଅ ତାଙ୍କ ପାଖରୁ ଲୁଚାଇଲା କାହିଁକି ? ସେ ଦିନ ପରେ ଜୟପୁରରୁ ଆସିଥିବା ଆଉ ଖଣ୍ଡେ ଚିଠି ସେ ପାଇଲେ । ତାଙ୍କର ସ୍ୱାମୀ ଲେଖିଥିଲେ ଯେ ପୁଣି ତାଙ୍କର ପୁରୁଣା ପେଟରୋଗ ଦେଖାଗଲାଣି । ମୁଣ୍ଡ ଭ୍ରମିଲାଣି । ଦେହ ଥରୁଛି । ସେ ଦରମା ପାଉନାହାନ୍ତି । ଛୁଟି ନେଇ କଷ୍ଟେମଷ୍ଟେ ଚଳୁଛନ୍ତି । ବାକିଆ ପାଉଣା ମିଳିବାକୁ ଆଉ ମାସେ ଲାଗିବ । ସେତିକ ହାତରେ ଧରିଲେ ଚାକିରି ଛାଡ଼ି ଗ୍ରାମକୁ ଚାଲିଆସିବେ । ଆଉ ଜୟପୁର ମନେ ପକାଇବେ ନାହିଁ ।

ଶନିବାର ଦିନ ସ୍ୱାମୀଙ୍କର ପତ୍ର ପାଇ ଚନ୍ଦନା ଆକୁଳ ବିକଳ ହୋଇଥିଲେ । ଶୁଭକେଶଙ୍କ ହାତରେ ମନିଅର୍ଡ଼ର ଲେଖାଇ ସ୍ୱାମୀଙ୍କ ପାଖକୁ ଟଙ୍କା ଚାଳିଶଟି ପଠାଇଦେଇଥିଲେ । ପତ୍ର ଲେଖିଥିଲେ—ଚାକିରି ସେତିକି ଥାଉ । ଟଙ୍କା ପାଇ ସଙ୍ଗେ ସଙ୍ଗେ ଚାଲିଆସ । ସେମାନେ ତମର ବାକିଆ ଟଙ୍କା ଗ୍ରାମ ଠିକଣାରେ ଯେବେହେଲେ ପଠାଇବେ ।

ଚନ୍ଦନାଙ୍କ ପାଖରେ ଆଉ ସାମାନ୍ୟ କେଇଟି ଟଙ୍କା ଅଛି । ବସନ୍ତ ଆସିଲେ ସେ ଚଳିବା ପାଇଁ ଟଙ୍କା ଦେଇଯିବ । ଏହି ଆଶା ସେ କରିଥିଲେ । ସେ ଆସିଲା ନାହିଁ । କେଜାଣି ହପ୍ତାରେ ଆସିପାରେ । ଭଉଣୀର ବାହାଘର

ପାଇଁ ଛୁଟି ନେଇଥିବା । ଆସିବ । ମୁହଁ ମାରିଦେଇ ଗୋଡ଼େ ଗୋଡ଼େ ଫେରିବ । ସ୍ଵଭାଅଧରେ ବାହା । ମାମୁଁଙ୍କ ମଟରଗାଡ଼ିରେ ଆସିବ କି, ତାଙ୍କୁ ସଙ୍ଗରେ ନେଇଯିବ ?

ସେଇଆ । ଆନନ୍ଦ ପର କରିବ ନାହିଁ ।

ଚନ୍ଦନା ମନକୁ ମନ ହସିଲେ । କହିଲେ, ଆଲୋ ବାସନ୍ତୀ ! ପୁଅ ମୋର କେଡ଼େ ବୁଝିଆଣି କାମ କରିଛି ! ତୋ କଥା ଯଦି ସତ ହୋଇଥାଏ, ମୁଁ ଭାରି ଖୁସି ହେବି । ନଜର ଭଉଣୀ ନାହିଁ । ତୋ ପେଟରୁ ଜନମିଲା ନାହିଁ । ହାକମ ହୋଇଛି । ଯେଉଁ ଅନୁପାକୁ ସେ ଭଉଣୀଠାରୁ ବଳି ଅଧିକ ସ୍ନେହ କରେ, ତା' ପାଇଁ ଶକ୍ତିକୁ ବୁଝି ଗହଣା ଖଣ୍ଡିଏ କରି ସେ ଦେବ ନାହିଁ କି ? ବାସନ୍ତୀ ଲୋ, ଟଙ୍କା ପାଆଁଶ ତା' ପାଖରେ ନଗଦ ନ ଥିଲା । ପାବନୀଠାରୁ ସେ ବେଭାର ଖରଚ ପାଇଁ ନେଲେ ନେଇଥିବ । ଏ କାନରୁ ସେ କାନ ନ ହେଉଣୁ ସେ ଦେଇଦେବ ଯେ !

ବାସନ୍ତୀ କହିଲେ, କିଏ ମନା କରୁଛି କି ଅପା ? ଟଙ୍କା ପାଆଁଶ ଆମୁକୁ ପର୍ବତ ଭଳିଆ ଦିଶୁଛି । ବିକ୍ରମଙ୍କର ଫୁଟିକ ସଙ୍ଗେ ସମାନ । ମୁଁ ଆଜ ଆଉ କଥାଟିଏ ଶୁଣିଲି ଯେ ମୋ'ର ନଜର ତ ବିଶ୍ୱାସ ହେଲା ନାହିଁ, ଭୁଣ୍ଡ ଖୋଲି ତମକୁ କେମିତି କହିବି ?

କ'ଣ ଶୁଣିଲୁ, କହୁନୁ ଲୋ !

ଲୋକେ କ'ଣ ସଜ ମାଛରେ ପୋକ ପକାନ୍ତି ନାହିଁ କି ଅପା ? ସେମିତିଆ ଆକାଶରୁ ତୋଳା ଅସମ୍ଭବ କଥା । ବିକ୍ରମ କୁଆଡ଼େ ତାଙ୍କ ନଜର ବାହାଘର ପାଇଁ ସେ ଟଙ୍କା ନେଇଛନ୍ତି ! ସେଇଥିପାଇଁ ଏଡ଼େ ତରବର ହେଉଥିଲେ ।

ବାସନ୍ତୀ ହସି ହସି ନସ୍ଥାନ୍ତ ହେଲେ । ପୁଣି କହିଲେ, ପାବନୀ ତା ଶାଶୁଙ୍କୁ ଗୁପ୍ତରେ ଏଇଆ କହିଥିଲା । ବୁଢ଼ୀ ପଚାରୁଥିଲି ଅଲେଖାକୁ, ଆଉ ଆକଟ କରି କହୁଥିଲା, ଡାକହାକରେ ସାନ୍ତେ ପାବନୀକୁ ଝିଅ ବୋଲି

ଡାକୁଥିବାରୁ, କାଗଜ ନ ରଖି ଓଲମୀ ଝୋଙ୍କା ଏତେ ଟଙ୍କା ବଙ୍କମ ହାତକୁ ବଢ଼ାଇଦେଲା । ଆଉ କ ମିଳବ ? ଯେଉଁମାନେ ଏହା ଶୁଣିଥିଲେ, ପ୍ରଘଟ କଲେ ।

ଚନ୍ଦନା କହିଲେ, ଗାଁ'ର ହିଂସୁକା ଲୋକେ ଦୁର୍ନାମ ରଟାଉଛନ୍ତି ଲୋ ! କ'ଣ ଆମକୁ ସେଥିରୁ ମିଳବ ? ବଙ୍କମ ଆଜ ଅନୁପାର ବାହାଘର ପାଇଁ ମାମୁଁ ଘରେ ବ୍ୟସ୍ତ ଥିବ । ସେ ଆଖିଦୁରୁଶିଆ ବେହାର ଦେଇଥିବ । ମୁଁ ଏବେ ଜାଣିଲ । କାହିଁକ ମିଛରେ ଧନ୍ଦହେଉଛୁ ? ଆଜ ପୁଅ ମୋର ଆସିଲେ ଆସୁ ଲୋ ବାସନ୍ତୀ, ନ ଆସିଲେ ନାହିଁ । ମୁଁ ମୋରନ ଶ୍ଚିନ୍ତ ହେଲି ।

ମନକୁ ବୁଝାଇ ଚନ୍ଦନା ବାସନ୍ତୀଙ୍କ ପାଖରୁ ଉଠିଆସିଲେ ।

ଦୁ' ପହର ଡେଇଁଗଲଣି । ବାହାରେ ମଝି ଅଷାଢ଼ର ଟାଇଁଟାଇଁଆ ଖରା । ଆକାଶରେ କଳାଧୁମର ମେଘ । କେତେବେଳେ ଘୋଟିଯିବ । ଦୁଲୁଦୁଲୁ ବର୍ଷା ଅଜାଡ଼ି ପକାଇବ । ତା' ସାଙ୍ଗକୁ ପ୍ରବଳ ପବନ । ପୁରୁଣା ଘର ଠେକ କରୁଥିବ । ପାତଳ ଛଣରେ ଘର ଛୁଆଣି ହୋଇଥିଲା । ପୁଣି କେତେ ଜାଗାରେ ଉଡ଼ାଇ ନେଲଣି । ପାଣି ଗଳଗଳ ହୋଇ ଗଳିବ । ବାର ହାନସ୍ତା ।

ଘର ଭିତରକୁ ଆସି ଚନ୍ଦନା ଆଖି ପୋଛିଲେ । ସେ ଡହକୁଣୀ ପରି ଘର ଜଗି ବଢ଼ିଉଛନ୍ତି ! ପୁଅ ପତି କାଏ କେଉଁଠି । କପାଳରେ ଏହି ହାନମାନ ବହି ନହିଛି । ପ୍ରାଣ ନେଉନାହିଁ ।

ଚନ୍ଦନା ବାଇଆଣୀ ପରି ଏକଡ଼ ସେକଡ଼ ହେଲେ । ପୁରୁଣା ଚଟି-ପୁଳାକ ଘାଣ୍ଟୁଣୁ ହାତରେ ପଡ଼ିଲା ସେହି ଲଫାପାଟି, ଯହିଁରେ ଅନୁପା ପଠାଇଥିବା ଗ୍ରୁପ ଫଟୋ ଓ ଚିଠି ଖଣ୍ଡିକ ଥିଲା । ଖୋଲିଲେ । ଆଖି ପୁରାଇ ଦେଖିଲେ । ସେହି ଫଟୋଟି ! କେତେ ବର୍ଷ ତଳେ ବାଲିଯାତ୍ରା ପଡ଼ିଆରେ ଉଠାଯାଇଥିଲା । ଅନୁପା ଓ ବଙ୍କମ ପିଲା ହୋଇଥିଲେ । ସେ ନିଜେ କହିଥିଲେ, ଦେଖ୍ ଲୋ ଇନ୍ଦିରା ! କେମିତି ଦିଶୁଛନ୍ତି । ଆନନ୍ଦ ପାଖରେ ସତେକି ମୁଁ ଠିଆ ହୋଇଛି ।

କେତେଦିନ ତଳର ଘଟଣା ମନେପଡ଼ିଲା । ପରଙ୍କର ସମାଲୋଚନା ଶୁଣି, ସ୍ୱାମୀଙ୍କର ଟାଣ ମନ୍ତବ୍ୟରେ ମୁଣ୍ଡ ବଗଡ଼ାଇ କେବଳାନନ୍ଦ ହାତରେ ସେ ଆଜ ଖଣ୍ଡିଏ ଫଟୋ ବହମ ପାଖକୁ ଫେରାଇ ଦେଇଥିଲେ । ଏକକାର ଫଟୋ । କେଉଁ ମନ୍ଦିର ଆଗରେ ବହମ ପାଖରେ ଅନୁପା ଠିଆ ହୋଇଛୁ । ଲକ୍ଷ୍ମୀ-ନୃସିଂହ ଫଟୋ ବୋଲି ସମସ୍ତଙ୍କୁ କହୁଥିଲେ । କାନ୍ଥରେ ଝୁଲାଇ ସବୁଦିନେ ଦେଖୁଥିଲେ । ଆଖି ପୂରିଉଠୁଥିଲା ।

ଆଗ୍ରହରେ ବହମ ଦେଇଥିଲା । ଫେରାଇବେଳ ଦିନରୁ ଘରଟା ନୂତନ ନଲୁଚିଆ ଲାଗୁଛି । ନବେଳା ବେଳରେ ଫଟୋରୁ ବାହାର ସେ ବନ୍ଦେ ପାଖକୁ ଆସୁଥିଲେ । ସେମାନେ ଆଜ ଆସୁନାହାନ୍ତି ।

ସପନ ଯଦି ସତ ହୋଇପାରିଥାନ୍ତା, ତାଙ୍କର ସଂସାର କ'ଣ ସୁଖରେ ଚଳି ନ ଥାନ୍ତା ? ସ୍ୱାମୀ ଓ ସଂସାର ତାଙ୍କର ଆଗ୍ରହର ଅଗ ମୋଡ଼ିଲେ ।

ଗୋଟାଏ ଲହରରେ ଟାଣ ଚିଠିଖଣ୍ଡେ ପୁଅ ପାଖକୁ ଲେଖିଥିଲେ । କେବଳାନନ୍ଦ ଗଲା ପରେ ତାଙ୍କର ହାଲୁକ ଶୁଖିଲା । ସେ ଭାବୁଥିଲେ, କି ଦୁର୍ବୁଦ୍ଧି ସେ କଲେ ! ପରଙ୍କ କଥାରେ ମୁଣ୍ଡ ବଗାଡ଼, ଯେଉଁ ସୁନାପୁଅକୁ ଜୀବନରେ କେବେ ଟାଣ କଥା ପଦେ କହି ନ ଥିଲେ, ତାକୁ କନ୍ଦାଇଲା କଠୋର ଚିଠାଏ ଲେଖିଲେ !

ସେହିଦିନରୁ ପୁଅର ଧରଣ ବଦଳିଛି ।

ବହମ ତାଙ୍କ ଚିଠିରେ ସ୍ନେହବୋଳା ନରମ କେଉଁସି ପଠାଇଥିଲା । କେତେ ଧାଡ଼ ବୁଝି ହେଉ ନ ଥିଲା । ମନ କେଉଁ ଗହନ ଅନ୍ଧାର ଭିତରେ ଅଣ୍ଡାଳ ହେଉଥିଲା । କଅଣ ତାର ଅର୍ଥ ? ବାସନ୍ତୀ ଯେଉଁ ଉଡ଼ା ଖବରଟି ତାଙ୍କୁ ଚମକିଲା ପରି ଦେଲା, ଅସମ୍ଭବ ପରି ଲାଗିଲେ ମଧ୍ୟ ତାଙ୍କର ଅନ୍ଧାଶା ଭାବନା ଭିତରେ ସିନ୍ଦୂର ଫାଟିଲା ପରି ସେ ମଣିଲେ ।

ହେଇଟି ସେହି ଶ୍ଳୋକ ଚିଠି—

— ତୋ’ର ମନକାମନା ଏବେ ପୂରଣ ହେବ । × × ତୋ’ର ଅବାଧ ହେବାକୁ ଏବେ ସାହସ କରିବ ନାହିଁ । × × ଆଗରୁ ତୋ’ର ବିଚାର କରିବା ଉଚିତ ଥିଲା, ବୋଉ !

ଚନ୍ଦନାଙ୍କର ମନ ପୁଣି ଧନ୍ଦହେଲା । କ’ଣ ସେ ଆଗରୁ ବିଚାର କରିଥାଆନ୍ତେ ?

ଯେଉଁ ଉତ୍ତର ମନକୁ ଆସିଲା, ତାକୁ ମୁଣ୍ଡ ହଲାଇ ସେ ଘଉଡ଼ାଇ-ଦେଲେ ।

କେଉଁ କଥାରେ ଅବାଧ ହେବାକୁ ବିକ୍ରମ ଏବେ ସାହସ କରିବ ନାହିଁ ? ପୁଣି ସେଇ ଉତ୍ତରଟା ମନ ଭିତରକୁ ଧସାଇ ପଶୁଛି ।

କି ମନକାମନା ସେ ପୂରଣ କରିବ ? କ’ଣ ତାଙ୍କର ମନକାମନା ଥିଲା ? ସେଇ ଉତ୍ତରଟି ଆସି ଆଗରେ ଠିଆ ହେଉଛି । ଅନୁପା, ତା’ ପାଖରେ ବିକ୍ରମ !

ଠାକୁରେ କରନ୍ତେ କି, ସବୁ ବାଦ ପ୍ରତିବାଦ ସତ୍ତ୍ୱେ, ସବୁ ନିନ୍ଦା-ସମାଲୋଚନାକୁ ପିଟେଇ, ଅନୁପାର ହାତ ଧରି ବିକ୍ରମ ଆସି ଆଗରେ ଠିଆ ହୁଅନ୍ତା ! କହନ୍ତା, ଦେଖ୍ ବୋଉ, ତୋ’ର କଥା ଲଙ୍ଘିନାହିଁ । ଅବାଧ ହୋଇନାହିଁ । ମନକାମନା ପୂରଣ କରିଛି । ନେ ତୋ’ର ଅନୁପାକୁ । ସାତ-ବର୍ଷର ସେଇ ହାଡ଼ ଖିଟିଖିଣ୍ଡି, ଧଡ଼ିଆଧେଡ଼ିଙ୍ଗ, ରୋଗଣା ଫୁଙ୍ଗୁଳା ଝିଅଟା, ଯାହାକୁ କୋଳରେ ପକାଇ ଦେହରେ ତେଲ ହଳଦୀ ମାଲିସ କରୁଥିଲୁ, ପୁଣି କହୁଥିଲୁ, ବଞ୍ଚିବ ନ ଇନ୍ଧବ, ଦେଖିବ ରହ । ଇନ୍ଦୁଆ-ଗୁନ୍ଦକୁ ପଛ କରିବ । ଏଇଟିକୁ ମୁଁ ବୋହୂ କରିବି !

ଅନୁପା ସଞ୍ଜୟକୁ ବାହା ହେଉଛି । ସେ କେଉଁ କମଳକୃଷ୍ଣବାବୁ-ଙ୍କର ପୁଅ ।

ଶୁଭକେଶରୀ ଘରେ ପଶିଲା । କେଉଁଠାରୁ ଧାଇଁଧାଇଁ ଆସିଥିଲା । ଧଇଁସଇଁ ହେଉଥାଏ । କହିଲା, ବଡ଼ମା ଲୋ ! ପାବଣି ଅପାର ଶାଶୂ କହୁଥିଲା—

କ'ଣ କହୁଥିଲ ରେ ପୁଅ ?

ପବନ ଶୋଷି, ଦମ୍ ନେଇ ଶୁଭକେଶଙ୍କ କହିଲା, ଭାଇଙ୍କର ବାହାଘର ହେଉଛି ଯେ—

କାହାକୁ କହୁଥିଲ ?

ମତେ । ପାବନୀ ଅପା ଆସି ବାଧାଦେଲା । ସେ ବୁଢ଼ୀଙ୍କୁ ଆକଟି କହିଲା, ମିଛ କ ସତ, ତମକୁ କହିଲ ବୋଉ, ତମେ ପ୍ରସ୍ତୁତ କରୁଛ କାହିଁକ ? ତାଙ୍କୁ ମୁଁ ଭାଇ କରିଛି । ଟଙ୍କା ମୁଁ ଦେଉଛି । ମୁଁ ଫେରାଇ-ଆଣିବ । ବୁଡୀ ଚଡ଼ଚଡ଼ି କହିଲା, କାଗଜ ରଖିନୁ, ଆଉ ସେ ନ ଦିଏ। ପାଂଶ ଟଙ୍କା ଜାଣ ବୁଡ଼ିଲା । ପାବନୀ ଅପା କାନ୍ଦୁଥାଏ । ମୁଁ ପଳାଇ ଆସିଲି । କେମିତ ମିଛରେ ଦୁର୍ନାମ କରୁଛନ୍ତି !

ଚନ୍ଦନା ତାଟଙ୍କା ହେଲେ । ମନକୁ ବୁଝାଇ କହିଲେ, କାହିଁକ ସେଗୁଡ଼ା ତୁ ଶୁଣୁଛୁ ବାପ ? ମୋ ଭାଇଙ୍କ ଝିଅ ଅନୁପାର ଆଜ ବାହାଘର । ତୋ ଭାଇ ବେଭାର ଦେବାକୁ ଟଙ୍କା ନେଇଛି । ନମନ୍ତ୍ରଣ ଚିଠି ତୁ ଦେଖିଛୁ ?

ଦେଖିଛି ବଡ଼ମା !

ସେଜି ବାହାଘରରେ ବ୍ୟସ୍ତ ଥାଇ ଭଜମ ଆସିପାରିନାହିଁ । ମୋର ବି ଯିବାକୁ ମନ ହେଉଛି । ବକୁଳମାମୁଁଙ୍କୁ ଟିକିଏ ଡାକଦେବୁ କ ବାପ? ସେ ମତେ ବସ୍‌ରେ ଚଢ଼ାଇଦେଲେ ମୁଁ ଏକା ଯାଇପାରିବ । ମୁଁ ମୋ ଭାଇଘର ଦେଖିନି ।

ସେ କାହିଁକ ଯିବେ? ମୁଁ ଯିବି ବଡ଼ମା ! ତମ ସଙ୍ଗେ କଟକ ଯିବ। ବୋଉ ମନା କରିବ ନାହିଁ । ଅନୁଅପାଙ୍କ ଫଟୋ ମୁଁ ଦେଖିଛି । ଏଇଟି ଟଙ୍ଗା ହୋଇଥିଲ । ଭାଇଙ୍କ ପାଖରେ ଠିଆ ହୋଇଥିଲେ । ସେ ଫଟୋକୁ ତୁ ଭାର ଭଲପାଉଥିଲୁ। କେଉଁଠି ତାକୁ ରଖିଛୁ ?

ଅଛି ରେ ଧନ ! ଲୁଚାଇ ରଖିଛି—

ଚନ୍ଦନାଙ୍କର ଆଖି ଛଳଛଳ ହେଲା । ଅଧା ବାକ୍ୟଟିକୁ ମନ ପୂରଣ କଲା—ଗହନ ଥାନରେ, ମୋ ଛାତି ଭିତରେ ରେ ବାପ !

ଶୁଭକେଶରୀ ଅଳି କଲା, ମୁଁ ତୋ' ସଙ୍ଗରେ ନିଶ୍ଚୟ ଯିବି ଲୋ ବଡମା, ବୋଉକୁ ମୁଁ ରାଜି କରାଇବି ।

ପୁଅର ଆଗ୍ରହ ଓ ଅଳିରେ ବାସନ୍ତୀ ଚନ୍ଦନାଙ୍କର ଅନୁରୋଧ ଭାଙ୍ଗିଲେ ନାହିଁ ।

ଛୁଟି ମଞ୍ଜୁର କରିବାକୁ ହାକିମ ମନା କରିଦେଲେ । କହିଲେ, ଆପଣଙ୍କୁ ନିର୍ବୋଧ କରିବାକୁ କେହି ଜଣେ ମିଛ ଟେଲିଗ୍ରାମ କରିଛି । ଆପଣ ଜାଣନ୍ତି ନାହିଁ, ଅଥଚ ଆପଣଙ୍କ ପୁଅର ବାହାଘର ହେବ ?

ହାକିମମାନେ ଓ ପାଖରେ ଯେଉଁ ଅମଲାମାନେ ଥିଲେ, ସମସ୍ତେ ହସିଉଠିଲେ । ହସ ଥମିବାରୁ ଜଣେ ଟୋକା ହାକିମ, ଯିଏ କେଶରୀ ବୁଢ଼ାଙ୍କ ପ୍ରତାପ ଜାଣନ୍ତି ନାହିଁ, ଗର୍ଜନ ଶୁଣିନାହାନ୍ତି, ସେ କହିଲେ, ଅଧିକା ମହଙ୍ଗାଭତ୍ତା ଗୁରୁବାର ଦିନ ସମସ୍ତଙ୍କୁ ମିଳିଗଲା । କାଲି ପୁଣି ସମସ୍ତେ ଦରମା ପାଇଲେ । ଏ ସପ୍ତାହକ ଭିତରେ ମୁଁ ଏପରି ଅନେକ ଟେଲିଗ୍ରାମ ଓ ଛୁଟି ଦରଖାସ୍ତ ଆଶା କରୁଛି । କାହାର ଆଈବୁଢ଼ୀ ବେମାର, କାହାର ମାମୁଁଙ୍କର ମୂର୍ଚ୍ଛା ରୋଗ, କାହାର ବୃଦ୍ଧ ପିତାଙ୍କର ମୁଣ୍ଡ ଖରାପ, ମା'ଙ୍କର ଗୋଡ଼ ଖସି ହାଡ଼ ଭାଙ୍ଗିଛି, ଏମିତି କେତେ ପ୍ରକାର ବାହାନା ।

ପେସ୍କାର ହାତ ଯୋଡ଼ି ନିବେଦିଲେ, ହଜୁର ! ଗରିବଙ୍କର ଦୁଃଖ ଆପଣ ବୁଝିବେ ନାହିଁ । ମିଛ ହୋଇପାରେ, କେହି କେହି ମିଛ ଟେଲିଗ୍ରାମ୍ ମଗାଉଥିବେ ।

ଟୋକା ହାକିମ କହିଲେ, ମୁଁ ସେଇ କଥା କହୁଛି, ପେସ୍କାରବାବୁ ! ଛୁଟି ନା-ମଞ୍ଜୁର କରିବା ଉଚିତ । କାମର ପ୍ରଗ୍ରେସ୍ କମିବ । କ'ଣ କହୁଛ ?

ବତିଶ ବର୍ଷ ଅଭିଜ୍ଞତା ହାସଲ କରି ଅନ୍ତତଃ ଦେଢ଼ ଶହ ହାକିମଙ୍କର ତୋଡ଼ ସମ୍ଭାଳି, ଅଭିଜ୍ଞତାରେ ପାକଳ ନରି ସିରସ୍ତାଦାର କହିଲେ, ବେକୁଫ୍ ବନାଇବାକୁ ଟେଲିଗ୍ରାମ ଅପ୍ରେଲ ପହିଲାରେ ଆସେ । ଜୁନ ମାସ ଛବିଶ ତାରିଖରେ ଆସେ ନାହିଁ ।

ସାରକେଶରୀ କହିଲେ, ଟେଲିଗ୍ରାମ ପଢ଼ିବା ହେଉନ୍ତୁ । ପ୍ରଦ୍ୟୁମ୍ନ ମୋ ପୁଅର ସାଙ୍ଗ । ସେକ୍ରେଟେରିଏଟ୍‌ରେ କାମ କରେ । କାଲି ସତେଇଶ ତାରିଖରେ ବାହାଘର । ମୁଁ ଦଶଦିନର ଛୁଟି ମାଗୁଛି ।

ହାକମ ଟେଲିଗ୍ରାମଟିକୁ ଭଲ କରି ପଢ଼ିଲେ । ମନ୍ତବ୍ୟ ଦେଲେ— ଭୁବନେଶ୍ୱରରୁ ଟେଲିଗ୍ରାମ୍ ଆସିଛି । ଖାଲି ଲେଖା ହୋଇଛି, ସତେଇଶରେ ବାହାଘର । କେଉଁଠି ହେବ, କାହା ସଙ୍ଗେ ହେବ ଲେଖା ହୋଇନାହିଁ । ଯାଇ ଯୋଗ ଦେବାକୁ ଆପଣଙ୍କୁ ଅନୁରୋଧ କରାହୋଇନାହିଁ । ତେଣୁ, ମନରେ ସନ୍ଦେହ ଆସୁଛି ।

ଟୋକା ହାକମ କହିଲେ, ମୁଁ ଯାହା ଦେଖୁଛି, ସତ୍ୟ ହୋଇପାରେ । କିଛି ଗୋଟାଏ ଲଜ୍ଜାକର ଘଟଣା ଘଟିଥିବାରୁ ବଙ୍କମବାବୁ କାହାକୁ ବିବାହ କରିବାକୁ ବାଧ୍ୟ ହେଉଛନ୍ତି । ଆପଣଙ୍କୁ ଦୁଃସମ୍ବାଦଟା ଖାଲି ଜଣାଇ-ଦେଇଛନ୍ତି ।

ସିରସ୍ତାଦାର କହିଲେ, ଆପଣଙ୍କର ଅନୁମାନ ଯଥାର୍ଥ, ହଜୁର ! ସାରବାବୁଙ୍କୁ ମୁଁ ଠିକ୍ ସେହି କଥା କହିଥିଲି । ଆଜିକାଲି ଝିଅଗୁଡ଼ାକ, କେହି ଚିପା ପତ୍‌ଲେନ୍ ପିନ୍ଧି, ସ୍କୁଟରେ ପାତଳା ସୁନ୍ଦର ଯୋଡ଼ାଇ ଆଉ କେହି କେହି ଉପରୁ ଅଧା ଛାତି ଯାଏ ଫୁଙ୍ଗୁଳା କରି, ତଳୁ ଜଙ୍ଘ ଅଧାଯାଏ ଦେଖାଇ ଯେମିତି ଆତଯାତ ହେଉଛନ୍ତି—

ହାକମେ ହସିଉଠିଲେ । ଟୋକା ହାକମ କହିଲେ, ତମେ ଖୁବ୍ ରସିକ ହେ, ବୟସ କେତେ ?

ହଜୁର, ତେଷଠି ପୂରି ଚଉଷଠି ଚାଲିଛି । ସେଇଟା ମୋ ଜାତକ ବୟସ । ତାକୁ ଭୁଲ ବୋଲି ପ୍ରମାଣ କରିହୋଇଛି । ହଜୁରମାନଙ୍କ ରେକର୍ଡ଼ରେ ମୋ ବୟସ ସତାବନ । ସେଇଟା ବି ଭୁଲ ବୋଲି ପ୍ରମାଣ କରି ଗୋଟାଏ ଆଫିଡେଭିଟ୍ କରିବାକୁ ମନ ହେଉଛି । ହଜୁରମାନେ ଗ୍ରହଣ କଲେ, ମୁଁ ସେତକ କରିଦିଅନ୍ତି ।

ହାକମ ପଚାରିଲେ, କେତେ କମାଇବ ?

ସମ୍ ସମ୍ ହଜୁର ! ମିଛରେ ପାଖ ପଶିବ ନାହିଁ । ଯାହା ଉଆଜବ୍ ହେବ, ସେତିକ ମୋର ବୟସ ହେବ । ଚଷମା ବ୍ୟବହାର କରିନାହିଁ । ଦାନ୍ତଟିଏ ମୋର ପଡ଼ିନାହିଁ । ଖାଲି ମୁଣ୍ଡବାଳରୁ କେଇ କେସ ପାଚିଛି । ଡାକ୍ତର ଯାହା କହିବେ, ଲେଖିଦେବେ । କୋର୍ଟଙ୍କ ଆଗରେ ଶପଥ କରି ମୁଁ ସେଇଆ କହିବ । କୌଣସି ସ୍କୁଲରେ କେବେ ନାମ ଲେଖାଇ ନ ଥିଲି, ଆଜ୍ଞା, ବୟସ ଲୁଚାଇବାର ପ୍ରଶ୍ନ ଉଠୁନାହିଁ ।

ହାକିମ କହିଲେ, ତମେ ସେଇଆ କର, ସିରସ୍ତାଦାର୍, ଡାକ୍ତର ନଷ୍ଟପୁ କହିବେ ପରୁଣ ।

ହଜୁର, ଆଉ ଦୁଇଟଙ୍କା ଅଧିକା ଫିଜ୍ ତାଙ୍କୁ ପଛେ ଦେବ, ଦଶଟି ବର୍ଷ ବଢ଼ାଇଦେବାକୁ କହିବ । ନୋହିଲେ ମୋ ବଡ଼ପୁଅ ସ୍କୁଲ-ଇନ୍ସ-ପେକ୍ଟରର ବୟସ ମୋ'ଠାରୁ ଏଗାର ମାସ ଅଧିକ ହୋଇଯିବ ।

ଟୋକା ହାକିମ ପଚାରିଲେ, ବଙ୍କିମବାବୁଙ୍କ ବାହାଘର କଥା କ'ଣ କହୁଥିଲ —

ଆଜ୍ଞା, ସେ ଯଦି ବନ୍ଦୋବସ୍ତ ଇଲାକାରେ କଟିଛି ଦିନ ଏ ଟୋକା ବୟସରେ ଟ୍ରେନିଂ ନେଇଯାଇଥାନ୍ତେ, ସେ କ'ଣ ଏମିତି କାହା ଫାଶରେ ଧରାପଡ଼ି ବାହା ହେବାକୁ ବାଧ୍ୟ ହୋଇଥାନ୍ତେ ? ବିଚରା ଖିରକେଶରୀ ବାଇଆ ହୋଇଯାଉଛନ୍ତି । ତାଙ୍କୁ ଛୁଟି ମଞ୍ଜୁର କରାହେଉ । ବାହାଘର ତ ସରି-ଥିବ । ସେ ଖାଲି ଦେଖିଆସିବେ । ବୁଝିଆସିବେ—ଝିଅଟି କେମିତି, କି ଜାତିର । ଅନୂଢ଼ା, ଗେରସ୍ତ-ଛଡ଼ା, କି ବିଧବା । ବିଧବା ହୋଇଥିଲେ ପିଲେଇଣି ହଡ଼ା ନା ନିଃସନ୍ତାନ ଘରଚଡ଼ା ।

କେଶରୀରାଜାଙ୍କ ଦାୟାଦ, ଜଣେ ହାକିମଙ୍କ ପିତା, ସେବକାଳର ଅନଶନକାରୀ ସତ୍ୟାଗ୍ରହୀ, ଗ୍ରାମ ମାମଲତକାର, ବନ୍ଦୋବସ୍ତ ମୋହରର, ଦୁର୍ବଳିଆ ଖିରକେଶରୀଙ୍କର ମୁହଁ ଲାଜରେ ଜଳିଯାଉଥାଏ । ରାଗରେ ମନେ ମନେ ସେ ରକ୍ତସ୍ଫଳ ହେଉଥାନ୍ତି ।

ସିରସ୍ତାଦାରଙ୍କ କଥାରେ ଦୁଇଟା ତୀକ୍ଷ୍ଣ ଧାର ଥିଲା । ଗୋଟାଏ ଧାରରେ ସେ ଚକ୍‌ଚକିଆ ହାକିମଙ୍କର ନୂଆ ପ୍ରକୃତିରୁ ଛାଲ ଉତାରୁଥିଲେ, ଆଉ ଧାରରେ ବଡ଼ ହାକିମଙ୍କର ଆଧୁନିକତାରୁ । ପିଲାମାନଙ୍କୁ ସେ ନବ୍ୟ ସଭ୍ୟ ଫେସନ୍‌ରେ ସ୍କୁଲ କଲେଜକୁ ଛାଡ଼ିଦେଉଥିଲେ । ତାଙ୍କ ଧାରୁଆ କଥାର ମୁନରେ ବୀରକେଶରୀଙ୍କର ଅହମିକାକୁ ମଧ୍ୟ ସେ କେଞ୍ଚିଦେଇଥିଲେ ।

ସମସ୍ତେ ଚୁପ ହୋଇଗଲେ । ବଡ଼ ହାକିମ ଅଧିକ ବାକ୍ୟ ବ୍ୟୟ ନ କରି ବୀରକେଶରୀଙ୍କୁ ସାତ ଦିନର ଛୁଟି ମଞ୍ଜୁର କରିଦେଲେ । ଶନିବାର ଛବିଶ ତାରିଖ ସଞ୍ଜ ।

ରବିବାର ସକାଳେ ବୀରକେଶରୀ ଯଥାସମୟରେ ବନ୍ଧୁମାନଙ୍କ ପାଖରୁ ବିଦାୟ ନେଇ ବସ୍‌ରେ ଚଢ଼ିଲେ । ସବୁ ଜିନିଷ ସେ ସଙ୍ଗରେ ନେଇଆସିଥିଲେ । ଶୀଘ୍ର ଫେରିଆସି କାର୍ଯ୍ୟରେ ଯୋଗ ଦେବେ ବୋଲି ନିର୍ଭର ଜବାବ ସେ ଦେଇଯାଇଥିଲେ; କିନ୍ତୁ ସେ ନିଜେ ଜାଣିଥିଲେ ଯେ, ତାଙ୍କର ଏ ଯାତ୍ରା ରୁକୁଣାରଥର ଯାତ୍ରା ।

ଏକ୍‌ସପ୍ରେସ୍ ଗାଡ଼ି ଦିନ ବାରଟାରେ ବିଜୟନଗରମ୍ ଛାଡ଼ିବାର କଥା । ରାତ୍ରି ଏଗାରଟା ପାଖାପାଖି ଭୁବନେଶ୍ୱର ଓ ବାରଟା ଆଗରୁ କଟକରେ ପହଞ୍ଚିବ । ବାହାଘର ଯେଉଁ ମୁକାମରେ ହେଉଥାଉ, ମଧ୍ୟରାତ୍ରି ପରେ ଶୁଭମୁହୂର୍ତ୍ତ ଆରମ୍ଭ । କର୍ମ ଶେଷ ହୋଇ ନ ଥିବ । ସେ ଉପସ୍ଥିତ ହୋଇପାରିବେ । ବାଧା ତ ଦେଇପାରିବେ ନାହିଁ, ଏକମାତ୍ର ସନ୍ତାନ, କୁଳର ପ୍ରଦୀପ, ଆଜି ଯିଏ କର୍ତ୍ତା ହେବାର ହୋଇଥାଉ, ଆଖିରେ ପୁଅର ବାହାଘର ଦେଖିବେ । ଆଶୀର୍ବାଦ କରିବାକୁ ମନ ଡାକିଲେ କରିବେ ।

ବୀରକେଶରୀଙ୍କର ଅନ୍ତର ଆକୁଳ ହେଉଥିଲା । ଚଳନ୍ତା-ବସ୍‌ରେ ଦେହର ଆଲୋଡ଼ନକୁ ତୁଚ୍ଛ କରି ତାଙ୍କର ମନ ଅଧିକରୁ ଅଧିକ ଆନ୍ଦୋଳିତ ହେଉଥିଲା । ସିରସ୍ତାଦାର ବୁଢ଼ାଙ୍କର ଖଇଆ କଥାର ଗୋଜିଆ ଶର ତାଙ୍କର ପିତୃହୃଦୟକୁ ବାରମ୍ବାର ଫୋଡ଼ିପକାଉଥିଲା ।

ଲମ୍ବ ପଣତ ସବୁଠିକି ପାଏ । ଏହି ବଚନ ପାଳନ କରି ଶାରକେଶରୀ କଟକକୁ ଟିକଟ କାଟିଲେ । ଭାବିଲେ, ଟ୍ରେନ୍‌ରେ ବସି ସେ ବିଚାର କରିବେ, ଭୁବନେଶ୍ୱରରେ ଓହ୍ଲାଇ ପ୍ରଦ୍ୟୁମ୍ନର ବସାକୁ ଯାଇ ସବୁ ଖବର ବୁଝିବେ, ଅବା କଟକରେ ଓହ୍ଲାଇ ଆନନ୍ଦଙ୍କ ବସାକୁ ଯିବେ । କଲେକ୍ଟରଙ୍କ ଶଳା ଡେପୁଟି ସଞ୍ଜୀବ୍‌ବାବୁଙ୍କ ସଙ୍ଗରେ ଅନୁପାର ବାହାଘର, ଠିକା ପର୍ଯ୍ୟନ୍ତ ବେଭାର ଆଗରୁ ସେ ବତାଇଦେବେ । ସେଇଠି ସବୁ ଖବର ଜଣାପଡ଼ିବ ।

ଏକ୍‌ସପ୍ରେସ ଟ୍ରେନ୍ ଦୁଇଘଣ୍ଟା ଡେରିରେ ପହଞ୍ଚିଲା । ଦକ୍ଷିଣରେ କେଉଁଠି ପ୍ରବଳ ବର୍ଷା ଓ ତୋଫାନ ପାଇଁ ଲାଇନ ଉପରେ ପାଣି ବୋହିଥିଲା । ସେଇଥିପାଇଁ ଏତେ ଉଚ୍ଛୁର । ଟ୍ରେନ୍‌ରେ ଚଢ଼ିଲାବେଳେ ପୁଣି ଶୁଣାଗଲା, ବାଲୁଗାଁ ପାଖରେ ସେହିପରି ଅବସ୍ଥା ଘଟିଛି ।

ଚଳନ୍ତା ଟ୍ରେନ୍‌ରେ ସେ ଭାବୁଥିଲେ, ପହଞ୍ଚିଲା ବେଳକୁ କ'ଣ କାମ ସରିଥିବ ? ସେ ବାହାଘର ଦେଖିପାରିବେ ନାହିଁ ? ପ୍ରକୃତି ଉଗାରି ହେଉଛି ।

ଟ୍ରେନ୍-ଚଳନର ଶବ୍ଦ ଧୀରେ ଧୀରେ ବଢ଼ୁଛି । ଶାରକେଶରୀଙ୍କୁ ହଲାଇ ଦୋହଲାଇ, ଖାଁ ଖାଁ କାନରେ ଯେପରି ପରିହାସ କରି, ଉଚ୍ଚସ୍ୱରରେ, ଚିତ୍କାର ହୋଇ, ଠାଉଠାଉ କରି ପ୍ରଶ୍ନ ପଚାରୁଛି—ଅନୂଢ଼ା, ନା ଗେରସ୍ତ-ଛଡ଼ା, ବିଧବା, ନା ପିଲେଇଛି-ହାଡ଼ା— ।

ସୂତାହାଟର 'ପ୍ରଜାପତି ନିକେତନ'ରେ ସବୁ ଆୟୋଜନ ହୋଇସାରିଥିଲା । ବାହାରେ ଓ ଭିତରେ ରଙ୍ଗିନ ଆଲୁଅ ଜଳୁଥିଲା । ନଟଜ ସୌଭାଗ୍ୟବାବୁ ନିଜେ ସାଜସଜ୍ଜା ତଦାରଖ କରୁଥିଲେ । ସେମାନଙ୍କ ସଙ୍ଗେ ବିକ୍ରମ, ପ୍ରଦ୍ୟୁମ୍ନ ଓ କେବଳାନନ୍ଦ ସବୁ ବୁଲି ବୁଲି ଦେଖୁଥିଲେ । ସୌଭାଗ୍ୟବାବୁ ସେମାନଙ୍କୁ ନିର୍ଭର ଜବାବ ଦେଲେ ଯେ ଦୁଇ କର୍ତ୍ତା, ଦୁଇ ପୁରୋହିତ ଓ

ଅନ୍ୟମାନେ ପ୍ରସ୍ତୁତ ରହିଛନ୍ତି । ଗତ ବାରଟାରେ ସେମାନେ ଉପସ୍ଥିତ ହେବେ । ଯେଉଁ ମୁହୂର୍ତ୍ତରେ ଆସି କନ୍ୟା ଉପସ୍ଥିତ ହେବେ, ସଙ୍ଗେ ସଙ୍ଗେ କାର୍ଯ୍ୟ ଆରମ୍ଭ ହେବ ।

କେବଳାନନ୍ଦ ପଚାରିଲା, କେତେବେଳେ ସରିବ ?

ସୌଭାଗ୍ୟବାବୁ କହିଲେ, କନ୍ୟାର ଆସିବା ସମୟ ଉପରେ ଓ କେତେ ସମୟ ବରକନ୍ୟାଙ୍କୁ ଦେଇପାରିବେ, ତା' ଉପରେ ନିର୍ଭର କରେ । ବିଭାଘରର ସବୁ କର୍ମକର୍ମାଣି, ମନ୍ତ୍ର ଟେପ୍-ରେକର୍ଡ଼ିଂ କରିହୋଇଛି । ଗୋଟାଏ ସେଟ୍ ନୁହେଁ । ଚାରିଟା ସେଟ୍ । ବିସ୍ତାରିତ—ତିନିଘଣ୍ଟା, ମଧ୍ୟମ—ଦେଢ଼ଘଣ୍ଟା, ସଂକ୍ଷିପ୍ତ—ପଚାଶ ମିନଟ୍ ଓ ନୂଆ ପଦ୍ଧତି—ମୋଟେ ପଚିଶ ମିନିଟ୍ ।

ପ୍ରଦ୍ୟୁମ୍ନ ପଚାରିଲା, କିପରି ଏହା ସମ୍ଭବ ହେବ ?

ସମ୍ଭବ ହୋଇଛି ଆଜ୍ଞା ! ଆଜିକାଲିକା ଚଞ୍ଚଳିଆ ଯୁଗରେ ଅଧିକ ସମୟ ନଷ୍ଟ କରିବାକୁ ଲୋକେ ନାରାଜ । ଯେଉଁ କ୍ଷେତ୍ରରେ ବରକନ୍ୟା ଉଭୟେ ଆଗରୁ ସମ୍ମତ, ସେମାନଙ୍କର ମାନସିକ ବିବାହ ହୋଇସାରିଥାଏ । ବୈଦିକ ବିବାହ, ସୁବିଧା ସୁଯୋଗ ଦେଖି ହୋଇଥିବାର ବିଶେଷ ସମ୍ଭାବନା ଥିବ । ବାକି ରହିଲା ଲୌକିକତା । ହସ୍ତଗ୍ରନ୍ଥି ଓ ତତ୍‌ସମ୍ପୃକ୍ତ ବିଧି, ମନ୍ତ୍ର ଉଚ୍ଚାରଣ ।

ପ୍ରଦ୍ୟୁମ୍ନ କହିଲା, ଆଶ୍ଚର୍ଯ୍ୟ !

ସୌଭାଗ୍ୟ କହିଲେ, ଏହି ଚାରିଗୋଟି ସେଟ୍ ପ୍ରସ୍ତୁତ କରାଇବା ପାଇଁ ନିର୍ଗୁଣାବାବୁ ବହୁ ଅର୍ଥ ବ୍ୟୟ କରିଛନ୍ତି । ସୁଯୋଗ୍ୟ ପଣ୍ଡିତମାନଙ୍କୁ ନିଯୁକ୍ତ କରି 'ପୁରୋହିତ ସର୍ବସ୍ୱ' ମନ୍ଥନ କରାଇ ତା'ର ସାର ସଂଗ୍ରହ କରାଇଛନ୍ତି ।

କେବଳାନନ୍ଦ ପଚାରିଲା, ଆହୁରି ସଂକ୍ଷିପ୍ତ କରାଯାଇପାରିବ ନାହିଁ ?

ସୌଭାଗ୍ୟ କହିଲେ, ହୋଇପାରିବ । ଏଠାରେ ନୁହେଁ, କୌଣସି ମନ୍ଦିରରେ । ଫୁଲମାଳର ଆଦାନ ପ୍ରଦାନ, ଯୁଗଳ ପ୍ରଣତ, ଆଶୀର୍ବାଦ,

ଦକ୍ଷିଣା । ସରିଲା । ନିର୍ଗୁଣାବାବୁ ସେପରି ଷ୍ଟାଇଲର ବିବାହ ପାଇଁ ଏଠାରେ ବ୍ୟବସ୍ଥା ରଖିନାହାନ୍ତି ।

ପ୍ରଦ୍ୟୁମ୍ନବାବୁଙ୍କୁ ଚାହିଁ ସୌଭାଗ୍ୟବାବୁ ପୁଣି କହିଲେ, ପୁରୋହିତ ହସ୍ତ ଆସିଲେ, ଆପଣମାନଙ୍କର ସମୟକୁ ଜଳନା କରି, ସୁବିଧା ଅସୁବିଧା କଥା ବିଚାରି, ଆପଣ ନିର୍ଦ୍ଦେଶ ଦେବେ କେଉଁ ପଦ୍ଧତିରେ ଶୁଭକର୍ମ ସମ୍ପନ୍ନ ହେବ । ସେମାନେ ଟେପରେକର୍ଡ଼ କର୍ମକୃଷ୍ଣବାବୁଙ୍କ ପାଖରୁ ଆଣି ମେସିନ୍‌ରେ ସେଟ୍ କରିବେ । ବରକନ୍ୟା ପ୍ରସ୍ତୁତ ହୋଇ ବେଦୀ ଉପରକୁ ଆସିବା ସଙ୍ଗେ ସଙ୍ଗେ ମେସିନ୍ ଚାଲିବ, କର୍ମ ଆରମ୍ଭ ହେବ ।

ଶଙ୍ଖଧ୍ୱନି, ହୁଳହୁଳି, ମଙ୍ଗଳାଷ୍ଟକ, ସବୁ ରେକର୍ଡ଼ିଂ କରାହୋଇଛି । ଆପଣମାନେ ନିଶ୍ଚିନ୍ତ ରହନ୍ତୁ । ଆମ୍ବାସାଡର କାର ନଂ ଓ.ଆର.ଏକ୍ସ. ୩୫୭୯ ଆପଣମାନଙ୍କ ପାଖରେ ରହିଲା । ମୋ ସଙ୍ଗରେ ଆପଣମାନେ ଆସନ୍ତୁ ।

ସେମାନଙ୍କୁ ସମ୍ବର୍ଦ୍ଧନା ପ୍ରକୋଷ୍ଠରେ ବସାଇ ନିଜେ କର୍ମକୃଷ୍ଣଙ୍କ ଅଫିସ୍‌ରେ ପଶିଲେ । ଟେଲିଫୋନ୍‌ରେ କାହା ସଙ୍ଗେ କିଛି ସମୟ କଥାବାର୍ତ୍ତା କଲେ । ତା' ପରେ ସେ ସେଇଠି କିଛି ସମୟ ରହି ବଙ୍ଗମ ପାଖକୁ ଫେରି ଆସିଲେ । ତା'କୁ ଖଣ୍ଡେ ଛପା କାଗଜ ଦେଲେ । ତହିଁରେ ତିନି ଚାରି ଧାଡ଼ି କ'ଣ ଲେଖା ହୋଇଥିଲା ।

ସୌଭାଗ୍ୟବାବୁ କହିଲେ, କଳିଙ୍ଗ-ହୋଟେଲର ତିନୋଟି ଘରୋଇ ଟ୍ୟାକ୍ସି ଅଛି ଆଜ୍ଞା ! ୩୫୭୯ ଟିର ଏଇଟି ଅସ୍ଥାୟୀ ଲଗ୍-ବୁକ୍ । ବର୍ତ୍ତମାନ-ଠାରୁ ଅଠଚାଳିଶ ଘଣ୍ଟା ଆପଣ ଗାଡ଼ିଟିକୁ ବ୍ୟବହାର କରିପାରିବେ । କେଉଁ କେଉଁ ସ୍ଥାନରୁ କେଉଁ କେଉଁ ସ୍ଥାନକୁ ଯିବେ ଓ କେତେ କିଲୋମିଟର ଗଲେ, ଏଥିରେ ପୂରଣ କରିବେ । ଯାହାକୁ ଏ ଫର୍ମ ଦେବେ, ସେ ଏ ଗାଡ଼ି ବ୍ୟବହାର କରିପାରିବ । ଡ୍ରାଇଭରଙ୍କୁ ସେ ଉପଦେଶ ଦିଆଯାଇଛି । ଗାଡ଼ିରେ ଯେତିକି ପେଟ୍ରୋଲ ପକାଇବେ, ତା'ର ହିସାବ ଏଥିରେ ଲେଖିବେ ।

ଯଥାସମୟରେ ଆପଣ ବିଲ୍ ପାଇବେ । ଆପଣଙ୍କ ପାଇଁ ବିଶ୍ୱଣାବାବୁ ସ୍ୱତନ୍ତ୍ର ସୁବିଧା କରିଦେଇଛନ୍ତି ।

ବିକ୍ରମ ଧନ୍ୟବାଦ ଜଣାଇଲା ।

କର୍ମଗୃହବାବୁ ପାଖକୁ ଆସିଲେ । କହିଲେ, ଆପଣଙ୍କୁ ଜୟଶ୍ରୀ ଦେବୀ ଫୋନ୍‌ରେ ଡାକୁଛନ୍ତି, ବିକ୍ରମବାବୁ ! ଶୀଘ୍ର ଆସନ୍ତୁ ।

ତାଙ୍କ ପଛେ ପଛେ ବିକ୍ରମ ଫୋନ୍ ଥିବା ଘରକୁ ଗଲା । ରିସିଭର୍ ଟେକି କାନରେ ଦେଲା ।

ମୁଁ ବିକ୍ରମ ।

ପୁଣି ତୁମକୁ ଡାକିବାକୁ ବାଧ୍ୟ ହେଲି । ଦଶ ପନ୍ଦର ମିନିଟ୍ ହେଲା ଆମେ ସେଠାରୁ ଫେରିଲୁଁ—ମାନେ, ମୁଁ, ତୁମ ଭାଉଜ ଅଦିତି, ଭଉଣୀ ସ୍ମିତା ଓ ମିରା । ଚିହ୍ନା, ଅଚିହ୍ନା ଅନେକ ଝିଅ ବୋହୂଙ୍କ ସଙ୍ଗେ ଦେଖା ହେଲା । ମାଉସୀ, ମାନେ ତୁମ ମାଈଁ ଓ ଅନୁପା ସମସ୍ତଙ୍କୁ ପାର୍ଟିକୁ ନେଇଥିଲେ । ଅନୁପାକୁ ଦେଖିଲେ କେହି କେବେ ବିଶ୍ୱାସ କରିପାରିବ ନାହିଁ ଯେ ସେ ଅନୁପା ।

ବୁଝିପାରିଲି ନାହିଁ ।

ସ୍ୱାଧୀନ ନିଃସଙ୍କୋଚ ଚଳନ । କେହି ପଚାରିଲେ ସେ ସଙ୍ଗେ ସଙ୍ଗେ ଉତ୍ତର ଦେଉଛି, ନିମନ୍ତ୍ରଣ ପତ୍ରରେ ନାମଟି ଭୁଲରେ ଛାପା ହୋଇଯାଇଛି । ହେବାର କଥା ନିରୁପମା । ମତେ ବି ଅନୁ ସେଇଆ କହିଲା ।

ସତେ ?

ମୁଁ କହିଲି, ତାର ନାମଟା ଭୁଲ ହୋଇଛି ନା ! ତେବେ ସବୁ ଠିକ୍-ଠାକ୍ । କେତେବେଳେ ପୁଣି ଶୁଭାଗମନ ? ୩୫୭୯ ଗେଟ୍ ଭିତରେ ଥିବ ! ସେ କହିଲା, ମୋ ଦାଦା ଏବେ ବରଧବା ହୋଇ ଗଲେ । ସେ ଫେରିବେ, ବର ଆସିବ, ନିରୁଚ୍ଛ ବାହାଘର ମୁଁ ଦେଖିବି । ହାତଗଣ୍ଠି ପଡ଼ିବ, ତା' ପରେ ତୁମ ସଙ୍ଗେ ଯିବ ।

ଆଜି ଥରେ ତୁମକୁ ଯିବାକୁ ପଡ଼ିବ, ଦାଦା ?

ଯେତେବେଳେ ସେ ଝିଅ । ଗୋଲାପୀ ଶାଢ଼ି ଖଣ୍ଡେ ପିନ୍ଧିଛି । ପାଟ ନୁହେଁ, ସିଲ୍କ ନୁହେଁ, ବେଶ୍ ଦାମିକା ମିଲ୍ ଶାଢ଼ି ଖଣ୍ଡିଏ । ଆଖିରେ ଖାଲି ଦ' ଧାର କଜଳ । ମୁହଁରେ ପାଉଡରର ଟିକିଏ ବୋଳ ନାହିଁ । ଦେହରେ ଗହଣା ନାହିଁ କହିଲେ ଚଳେ । ନିରାଡ଼ମ୍ବର ।

ଏସବୁ କାହିଁକି କହୁଛ ?

ଆଖିରେ ସେତକ ଦିଶିଯାଉଛି । ସେହି ଦରିଦ୍ର ବେଶରେ ସେ ସମସ୍ତଙ୍କ ଭିତରେ ବାରି ହୋଇ ପଡ଼ୁଛି । ତା'ର ମୁହଁର ତେଜରେ ସେ ଝଟକୁଛି ! ସେହି ବେଶରେ କୋଟିପତିର ଅଳିଅଳି ଝିଅ ବେଦୀରେ ବସିବ !

ବସନ୍ତର ଗ୍ଳାନି ଅପସରି ଗଲା । ପଚାରିଲା, ଆଜି କ'ଣ କହୁଥିଲ ?

ମନ ଦୁଃଖ କଲ କି ଭାଇ ? କାହିଁକି ଏସବୁ କହିଲି ଜାଣ ? ମୋର ଧାରଣା ମୁଁ ସଂଶୋଧନ କଲି । ଚନ୍ଦ୍ରକାନ୍ତ ମଣିରେ ଯାହାର ତନୁ ଗଢ଼ା, ତପ୍ତ କାଞ୍ଚନ ପରି ଯାହାର ମନ ଉଜ୍ଜ୍ୱଳ ଓ ତେଜୀୟାନ, ତାକୁ ମୁଁ ନିଜ ହାତରେ ତମ ପରି ପୁରୁଷରତ୍ନର ଗଳାରେ ଲମ୍ବାଇଦେବି ।

ବାହା !

ଜୟଶ୍ରୀଙ୍କର କୋହ ଉଠୁଥିଲା । ବସନ୍ତ ତାହା ଅନୁଭବ କରୁଥିଲା । ଟିକିଏ ରହି ସେ କହିଲେ, ଝିଅଟିଏ ସେ, ସ୍ୱଭାବତଃ ଲାଜକୁଳୀ ଲତା । ତା'ର ହାତଟି ଧରି ଗାଡ଼ିକୁ ନ ନେଲେ, ତା'ର ପାଦ କ'ଣ ଚଳିବ ? ମୁଁ ନିଶ୍ଚୟ ପୁଣି ଯିବି । ମିଶ୍ର ଯିବାକୁ କାନ୍ଦୁଛି । ସେ ଯିବ । ତମ ଅବଧୂତ ଭାଇଜଙ୍କୁ ମୁଁ ଅନୁକୂଳ କରାଇଦେଲି । ଆଜି ତମ ଭଉଣୀ ସିନା ତାକୁ । କ'ଣ କହିବି ତା'ର ଆନନ୍ଦ ! ସେମାନେ ବି ଯିବେ । ୫୫୨୯କୁ ପଠାଅ ।

ତମର ଗାଡ଼ି ?

ଯୋସେଫ୍ ନେଇ କମଳବାବୁଙ୍କ ଘରକୁ ଯାଇଛନ୍ତି । ସଞ୍ଜୟବାବୁଙ୍କ ବରଯାତ୍ରୀ ପଟୁଆରରେ ସେ ଯୋଗଦେବେ ।

ଏଇ ଗାଡ଼ି ଯିବାକୁ ସାମାନ୍ୟ ଡେରି ହେବ ।

କେତେ ଡେରି ?

ଘଣ୍ଟାଏ । ମୋ ଭଉଣୀକୁ ଆଣିବାକୁ ମୁଁ ନଜେ ଯୋଗ୍ରା ଯିବି । ସଙ୍ଗେ ସଙ୍ଗେ ଫେରିବ ।

ତମର ଭଉଣୀ ?

ସେ ମୋ ମା ପେଟରୁ ଜନମିନାହିଁ, କନ୍ତୁ ମୁଁ ତା ମା'ର କ୍ଷୀର ଖାଇ ବଞ୍ଚିଥିଲି । ସେ ବାଙ୍ଗଦେଶର ଝିଅଟିଏ । ତା' ନା ବେଙ୍ଗୁଲି ।

ଯୋଗ୍ରାରେ କ'ଣ କରେ ?

ତା' ସ୍ୱାମୀ ପିଅନ୍ ।

ଘରି ଖୁସି ହେଲ । ହେଉ, ଟିକଏ ଡେରି ହେଉ ।

ଜୟଶ୍ରୀ ଫୋନ୍ ଛାଡ଼ିଲେ । ବସନ୍ତ ସମ୍ବର୍ଦ୍ଧନା କୋଠରିକୁ ଫେରି-ଆସିଲି । ଦେଖିଲି, କେବଳାନନ୍ଦ ଓ ପ୍ରଦ୍ୟୁମ୍ନ ବସି ଗପ କରୁଛନ୍ତି । ସୌଭାଗ୍ୟବାବୁ କାମର ଲୋକ । ସେ ଗ୍ଲଲିଗଲେଣି ।

ଆସିଲାବେଳେ ଫାଟକ ପାଖରେ ଆନନ୍ଦଙ୍କ ସଙ୍ଗେ ଚନ୍ଦନାଙ୍କର ଦେଖା ହେଲା । ଆନନ୍ଦ ଓ ଇନ୍ଦିରା ସୁସଜ୍ଜିତ ଆଲୋକିତ ଫାଟକକୁ ଦେଖୁଥିଲେ । ଆନନ୍ଦ ପଗ୍ଲରିଲେ, ଅପା, ଆସିଛୁ କଲେ ?

ନଜ ପ୍ରଶ୍ନର ଉତ୍ତର ନଜେ ଦେଲେ, ଭଲ କଲୁ ।

ପୁଣି ପଗ୍ଲରିଲେ, କେଶରୀ-ରଜା ତ ଜୟପୁରରେ, କନ୍ତୁ ବସନ୍ତ କାହିଁ ?

ମେନକା ପରି ନଜକୁ ସଜାଇ ବଜୁଳି ଆଲୁଅରେ ଝଟକୁଥିବା ଇନ୍ଦିରା ହସରେ ସ୍ୱାଗତ ସୂଚାଇ କହିଲେ, ବସନ୍ତକୁ ସେ କାନରେ ବାନ୍ଧି ଆଣନ୍ତେ ? ନ ଆସିଲେ ନାହିଁ । ତାଙ୍କ ପାଇଁ କ'ଣ କାମ ଅଟକିଯିବ ? ଭିତରେ ରହିବାକୁ ସ୍ଥାନ ନାହିଁ ଅପା ! ଘରି ଭିଡ଼ । ଘଣ୍ଟା, ତମେ ସେହି ନାଲି ଘରେ ରହିବ । ଆସ, ଦେଖାଇ ଦେଉଛି । ସବୁ ସୁବିଧା

କଗହୋଇଛି । କେତେ ସ୍ତ୍ରୀଲୋକ ରହୁଛନ୍ତି । ବାହବାଟେ ଝଙ୍କା ଭିତରକୁ ଯାଇଆସି ପାରିବ । ସେଇଠି ବାହାବେଗ ହୋଇଛି ।

ମଙ୍ଗ ମାରିଲୁ ପର ସେ କଥା ।

ଶୁଭକେଶରୀ ଭଲୁଆଙ୍କ ପର ଏଣେତେଣେ ଘୂରୁଥାଏ । ନବାକ୍ ହୋଇ ଅନୁତପ୍ତ ଚନ୍ଦନା ଇନ୍ଦ୍ରଙ୍କ ପଛେ ପଛେ ଆସ୍ଥାୟୀ ବରଣ୍ଡାଟାଟିର ଘରକୁ ଗଲେ । ସତେ, ଅସ୍ଥାୟୀ ହେଲେ ବ ଗ୍ଲୋଟ ଗ୍ଲୋଟ ଆଲୋକଚ ବଖର-ଗୁଡ଼ିକ ସୁନ୍ଦର ହୋଇଥିଲା । ଆଗରୁ କେଉଁମାନେ ଆସି ପାଖ ବଖର-ମାନଙ୍କରେ ରହୁଥିଲେ । ଚନ୍ଦନାଙ୍କର ଗ୍ଲୋଟ ଗଣ୍ଠିରୀକୁ ଶୁଭକେଶରୀ ନଜେ ବୋହିନେଇଥିଲା ।

ସେଇଠି ଚନ୍ଦନା ଟଙ୍କା ପଚ୍ଚଶଟି ଇନ୍ଦ୍ରଙ୍କ ହାତକୁ ବଢ଼ାଇଦେଲେ । କହିଲେ, ବେଶର ! ଭାବଥିଲ ବହମ ଆସିଥିବ—

ନ ଆସିଲେ ନାହିଁ, ଅପା ! ତମେ ତ ଆସିଛ । ସେତକ ମୋର ଯଥେଷ୍ଟ । ତାଙ୍କ ମାମୁଁ ଖାଲ ବହମ ବହମ ହେଉଛନ୍ତି । ସେ କୁଆଡ଼େ ବରଧର ହୋଇ ଯାଇଥାନ୍ତେ । ଏବେ ବୁଝନ୍ତୁ, ମାଇପି ଜଗ ମିଛ ନୁହେ,—ବାର ବରଷ ମଇଳା ପୋଷେ, ଖୁଡ଼ୁତା ଦେଖିଲେ ଜଙ୍ଘରେ ବସେ । ଅନୁପାର ଖୁଡ଼ୁତା ପୁରୀରୁ ଆସିଛନ୍ତି । ତାଙ୍କ ପୁଅମାନେ ବ ଆସିଛନ୍ତି । ବନନ୍ଦ ବାହୁଧର ହୋଇ ଯିବେ ।

ବନନ୍ଦ ଆସିଛି ?

ହଁ, ସୁଦେବା ବ । ମୁଁ ଅସୁଛି । କେଉଁମାନେ ସବୁ ଆସିବେଣି । ତାଙ୍କୁ ପାଗ୍ଲୋଟି ନେବ । ନଜ କଥା ନଜେ ବୁଝିବ ଅପା ! ତମର ତ ଘର, ତମେ ଆଡ଼େଇ ଆଡ଼େଇ ରହିଲେ ନଜେ ଅସୁବଧା ହେବିବ ।

ଇନ୍ଦ୍ର ଚାଲିଗଲେ । ଶୁଭକେଶରୀ ହତା ଭିତରେ ବୁଲ ତା' ଆଖିରେ ସବୁ ବହୁସ୍ଥକର ଦୃଶ୍ୟ ଦେଖୁଥାଏ । ଚନ୍ଦନା ପଦାରେ ଠିଆହୋଇ ଏଣେତେଣେ ଚାହିଁ କେବଳ ମନ ଭିତରେ କାରୁଣ୍ୟ କରୁଥାନ୍ତି । ଭାବୁଥାନ୍ତି, ଯେଉଁ ବହମ ଅନୁପାକୁ ଏତେ ସ୍ନେହ କରେ, ତା'ର ବାହାଘରରେ ଯୋଗ

ଦେଖିବାକୁ ସେ ନ ଆସିଲେ କାହିଁକି ? ଦେହ ଭଲ ନାହିଁ ? କେତେ ଦିନ ହେଲା ଚିଠିପତ୍ର ଦେଇ ନାହାନ୍ତି କାହିଁକି ? ମା ମଙ୍ଗଳା ତାଙ୍କୁ ସୁସ୍ଥରେ ରଖିଥାନ୍ତୁ । ବାଇଦ ବାଜଣା କରିବି । କଳା ବୋଦା, କଳା ଶାଢ଼ି ଦେବି । ଗାଁକୁ ଫେରିଲେ ବରଷମର ଦେହପା କୁଶଳ ଖବର ପାଇଲେ, ମୁଁ ରଥ-କେଉଟଙ୍କୁ କାଳସି ଲଗାଇବି, ମା !

କେତେ ଅଚିହ୍ନା ଲୋକ ଆତଯାତ ହେଉଛନ୍ତି । ସ୍ତ୍ରୀ ପୁରୁଷ, ବାଳକ ବାଳିକା । ସେମାନଙ୍କୁ ଦୃଷ୍ଟି ନ ଦେଇ, କଏ କଅଣ ଭାବିବେ ସେ ଭାବନା ମନରେ ନ ପୂରାଇ, ଚନ୍ଦନା ବେକରେ ଅଞ୍ଚଳ ପକାଇ ସେହି ନାଲି-ଘର ଆଗରେ ତଳେ ମୁଣ୍ଡ ଲଗାଇ ମଙ୍ଗଳାଙ୍କୁ ପ୍ରଣାମ କଲେ । ଆଖିରୁ ଲୁହ ଝରି-ପଡୁଥାଏ । ସେ ଗୁଣୁଗୁଣୁ ହୋଇ ଗୁହାରି କଲେ ! ଦୁଃଖୀ-ସଙ୍ଗାଳଙ୍କୁ ସୁସ୍ଥରେ ରଖିଥା, ମା ! ମୁଁ ଯାହା କହିଲି, ଦେବି । ତିନିଥର ସତ୍ୟ କରୁଛି— ।

ମୁଣ୍ଡ ଟେକିଲେ । ସହସା ମନରେ ଗୋଟାଏ ଭାବନା ପଶିଲା— କୌଣସି ଠାକୁରଠାକୁରାଣୀଙ୍କ ପାଖରେ ସେ ମାନସିକ କରି ନ ଥିଲେ, କିନ୍ତୁ ତାଙ୍କ ହୃଦୟ ବାରମ୍ବାର ତାଙ୍କୁ କହୁଥିଲା, କଥାଚ୍ଛଳରେ ଭୁଣ୍ଡରୁ କେତେଥର ବଚନ ବାହାରିଥିଲା, ଏଇ ଅନୁକୁ ବୋହୂ କରିବି । କେଡ଼େ ସୁନ୍ଦର ଭାଇଭଉଣୀ ପରି ଦିଶିବେ । ବରଷମ ଅନୁକୁ ଭଲପାଏ । ବାଇଆଟା, ସେଇଥିପାଇଁ ସେ ଆସିଲା ନାହିଁ କି ? ଭାବିଲା, ଅନ୍ୟ ଜଣେ ଅନୁପାରି ହାତ ଧରି ନେବ, ସେ ଏ ଦୃଶ୍ୟ ଦେଖିବ ନାହିଁ ?

ନାଲିଘରର କବାଟ କାଳ ଚନ୍ଦନା ଶ୍ରୀଭୁବନେଶ୍ୱରଙ୍କୁ ପାଖକୁ ଡାକିଲେ । କହିଲେ, ତୁ ଏ କୋଠରି ପ୍ରତି ନଜର ରଖିଥା ବାପ ! ମୁଁ ଖଞ୍ଜା ଭିତରୁ ଆସେ ।

ଶ୍ରୀଭୁବନେଶ୍ୱର ରାଜି ହେଲା ।

ଚିହ୍ନାପରିଚ ପରେ ସୁଖଦା ମାଇପିଭିଡ଼ ଭିତରେ ଚନ୍ଦନାଙ୍କ ଆଗରେ, ସେ ଜାଣିଥିବା ସବୁ ଘଟଣା ଓ ଘଟଣାଗୁଡ଼ିକ ଏକାଠି କରି ତହିଁରୁ ଅନୁମାନ କରିଥିବା ତାଙ୍କର ଧାରଣାକୁ ଘଟଣାରୂପେ ଗୁନ ଗୁନ ଗୁପ୍ତରେ ବର୍ଣ୍ଣନା କଲେ ।

କହିଲେ, କାଲି ବ୍ରତଅଧ୍ୟାଏ ସମସ୍ତେ ଜାଣିଥିଲେ, ଅନୁପାର ବାହାଘର ହେଉଛି । ଆଚମ୍ବିତ କଥା, ନିରୁପା ବି ସେଇଆ ଜାଣିଥିଲା । ଆଜି ସକାଳୁ ଶୁଣିବ କ'ଣ ନା, ନିମନ୍ତ୍ରଣ ଚିଠିରେ ଭୁଲ ଛପା ହେଲା । ଅନୁପାର ବାହାଘର ନୁହେଁ, ନିରୁପାର ବାହାଘର ! ସମସ୍ତେ କାବା ହୋଇଛନ୍ତି । ସେ ପୁଣି କହିଲେ କାନ ପାଖରେ, ତାଙ୍କ ବଉଁଶ ନଲଠା ମ ଅପା ! ଦେଖୁନା ମାଆଙ୍କୁ, ଯିଏ କହିବ ଇନ୍ଦିରା ଭାଉଜଙ୍କର ବାହାଘର ହେବ । ଝିଅଗୁଡ଼ାକ ତନ୍ତୁଁ ବଳି ବେମହଚ ।

ତୁନି ହ ସୁଖଦା !

ତମକୁ କହୁଛି ନା, ଘରକଥା କ'ଣ ଦାଣ୍ଡରେ ପଡ଼ିବ ? ପାଠ ପଢ଼ିବ ବୋଲି କୁଆଡ଼େ ଅନୁପା ବାହା ହେବାକୁ ମନା କରିଦେଲା ! ଟୋକୀ ଖଣ୍ଡି ଭରି ମଙ୍ଗନମୁହାଁ । ଭାରି କୁହାଳିଆ । ଦେଖୁନା, ଆହା, କେଡ଼େ ସାଧାସିଧା ବେଶରେ କାରବାର ! ନିର୍ଲଜ୍ଜୀ ପଣକୁ ସରିଛି । ସେ ବି ସେଇଆ କହୁଛି ।

ସେପରି କହନା ସୁଖଦା !

ତମକୁ କହୁଛି ନା !

ଆଉ କାହାକୁ କହିଲେ ସେ ପରତେ ଯିବ ଲୋ, ମୁଁ କେମିତି ସୁନାମୁଣ୍ଡା ଟାକୁ କହିବ ଗୋବରଗୁଳା ?

ଚନ୍ଦନା ସୁଖଦାଙ୍କ ଆଗରୁ ଚାଲିଆସିଲେ ।

ଖଞ୍ଜା ଭିତରେ ବେଳୁବେଳ ସ୍ତ୍ରୀଲୋକଙ୍କର ଭିଡ଼ ବଢ଼ୁଛି । କେତେ-ବେଳେ ଅନୁପା, କେତେବେଳେ ଇନ୍ଦିରା, ଆଉ କେତେବେଳେ ଚନ୍ଦନାଙ୍କର ଅତିଥି କେଉଁମାନେ ଆଉନ୍ତୁକାମାନଙ୍କୁ ସଙ୍ଗରେ ନେଇ ଦୋତାଲା ଉପରେ ନିରୁପା ପାଖରେ ଜୁଟୁଛନ୍ତି । ସମସ୍ତେ ସେମାନେ ମୂଲ୍ୟବାନ୍ ଶାଢ଼ି ପିନ୍ଧି, ଦେହରେ ଅଳଙ୍କାର ମଣ୍ଡି ହୋଇଛନ୍ତି । କେତେ ଜାତିର ଜୁଡ଼ା ପାରିଛନ୍ତି । ଜାଲି ବାନ୍ଧିଛନ୍ତି । ଘାଟୁଆ ଝିଅଙ୍କ ଫେସନ କହିଲେ ନ ସରେ । ଓଡ଼ିଆ କହୁଛନ୍ତି, ନୋହିଲେ ନିପଟ ମଫସଲିଆଣୀ ଚନ୍ଦନା କାହାକୁ କେଉଁ ଜାତିଆ

ଝିଅ ବୋଲି ମଣିଥାଆନ୍ତେ । ସୁରୂପା ବ ସେମିତ ଗୋଟାଏ ଛପା ପତଲୁନ୍ ପିନ୍ଧିଛି ଯେ ବସିପାରୁନାହିଁ ।

ଏକା ସେଇ ଅନୁପାଟି ବାରିହୋଇପଡ଼ୁଛି । ସାଧାସିଧା । ଯିଏ କହିବ କେଉଁ ମୋଫସଲର ଖାନଦାନୀ ଘରର ଝିଅ । ତା'ଉପରେ ଚନ୍ଦନାଙ୍କର ଆଖି ଲାଖୁଛି । ଲକ୍ଷ୍ମୀ ଝିଅଟି, କିନ୍ତୁ ବାହା ହେବାକୁ କାହିଁକି ସବୁବେଳେ ସେ ମନା କରିଦେଲା ? ଆଗରେ ଆଖି ପଡ଼ିଲେ ଲାଜେଇଯାଉଛି ?

ନବରୂପାର ଆଖିରୁ ଲୁହଧାର ବନ୍ଦ ହେଉ ନାହିଁ । କେତେ ଝିଅବୋହୂ ତା'କୁ ମଝିଘର ପଲଙ୍କ ଉପରେ ଘେରି ବସିଛନ୍ତି ।

ଚନ୍ଦନା ପାଖକୁ ଯାଇ ତା'ର ମୁହଁ ପୋଛିଦେଲେ । ଆଖିରେ ଆଖିଏ ଲୁହ ।

କେଉଁ ବୋହୂଟିର ହାତ ଧରି ଅନୁପା ଘର ଭିତରକୁ ଆସିଲା । ଦେହର ବର୍ଣ୍ଣ ଟିକିଏ ମଇଳିଆ, କିନ୍ତୁ ମୁହଁଟି ଭାରି ସୁନ୍ଦର ! ଝକଝକ ଗହଣାରେ ଦେହ ମଣ୍ଡିହୋଇଛି । ଝିଅଟା ଝିଅଟା ପରି ଲାଗୁଛି ।

ସେ କାହା ବୋହୂ ଲୋ ଅନୁ ?

ଅନୁ ମୁରୁକେଇ ହସିଲା । କହିଲା, ତୁ ନିଶ୍ଚେ ହୋ-ହୋ ଝିଅଟା ହେଉଛୁ, ଅପା ! ଦେଖିଲୁ ତାଙ୍କର ଆଗ ଦାନ୍ତଟି ଆଉ ଭ୍ରୂଲତା ? ତୋ ପୁଅ ଅଜଟ ହୋଇ ନ ଥିଲେ ଏଇ ଉଲୁପୀରାଣୀ ତୋ ବୋହୂ ହୋଇଥାନ୍ତେ ।

ଉଲୁପୀ ମୁଣ୍ଡ ନୋଇଁଲା । ଲାଜରେ ସଢ଼ିଲା ।

ଚନ୍ଦନା ପଚାରିଲେ, ସେ କାଇଁଆ ଗଲା କୁଆଡ଼େ ?

ଅନୁପା ଉତ୍ତର ଦେଲା ନାହିଁ । ଉଲୁପୀକୁ ଛାଡ଼ ପଦାକୁ ବାହାରି-ଗଲା ।

ଅନୁପା ସଙ୍ଗରେ ତାଙ୍କର ସେତିକି ଦେଖା ।

ବରଧରି ଗଲା ।

ତା' ପରେ ଖିଆପିଆର ଗଣ୍ଡଗୋଳ ।

ଚନ୍ଦନା ଅଖିଆପିଆ ନାଲିଘରେ ବିଶ୍ରାମ ନେଉଁଣୁ ତାଙ୍କର ଆଖି ମାଡ଼ିମାଡ଼ି ପଡ଼ିଲା । ଶୁଭକେଶରୀ ଏପାଖ ସେପାଖ ହେଉଥାଏ ।

ବାଣରେ ଶବ୍ଦରେ ତାଙ୍କର ତନ୍ଦ୍ରା ଭାଙ୍ଗିଲା । ଶୁଭକେଶରୀ ତାଙ୍କୁ ହଲାଇ ଉଠାଇ କହିଲା, ବଡ଼ମା, ବର ଆସିଲା । ଆ ଦେଖିବୁ, କେତେ ଆଲୁଅ ! କେତେ ଜାତିର ବାଣ ଫୁଟୁଛି । ଉଠ୍ ମ, ଦେଖିବୁ ।

ଚନ୍ଦନା ଉଠି ପଦାକୁ ଆସିଲେ । ନାଲିଘର ଆଗରେ ମାଇପି ଭିଡ଼ । ସମସ୍ତେ ଫାଟକ ଆଡ଼କୁ ମୋହିଁଛନ୍ତି । ଚନ୍ଦନା ସେମାନଙ୍କ ସଙ୍ଗେ ମିଶିଗଲେ ।

ବାଣଫୁଟା ସରିଲା । ଗ୍ୟାସ୍ ଆଲୁଅର ଝାଡ଼ଗୁଡ଼ିକ ଗଳିରାସ୍ତାର କଡ଼ରେ ସଜାଇ ରଖାଗଲା । ବଡ଼ଫାଟକ ଆଗରୁ ବାଁ ଦିଗରେ ସେ ଆଲୁଅର ଧାଡ଼ି ଲମ୍ବିଗଲା ବଡ଼ରାସ୍ତା ପାଖକୁ, ଡାହାଣହାତି ଲମ୍ବିଲା ଖଣ୍ଡେ ଦୂରଯାଏ, ଯେଉଁଠି ଲମ୍ବ ପଡ଼ିଆରେ ଗାଡ଼ିଗୁଡ଼ିକ ରଖାଯାଉଛି । ମୋଟେ ଖଣ୍ଡିଏ ଗାଡ଼ି ଗେଟ୍‌ବାଟେ ଭିତରକୁ ପଶିଲା । ବାକିସବୁରୁ ଫାଟକ ଆଗରେ ବାବୁ ଓ ବାବୁଆଣୀମାନେ ଓହ୍ଲାଇଲେ । ହଟା ଭିତରକୁ ପଶିଲେ । ଗାଡ଼ିଗୁଡ଼ିକ ପଡ଼ିଆ ଆଡ଼କୁ ଆଗେଇଗଲା ।

ଶୁଭକେଶରୀ ଆଲୁଅମାଳାର କଡ଼େ କଡ଼େ ଗାଡ଼ିଗୁଡ଼ିକୁ ଗଣିଗଣି ଆଗକୁ ଯାଉଥିଲା । ଭିଡ଼ ଭିତରେ ଗଳି ଗଳି, ଚଳନ୍ତା ଗାଡ଼ି ଓ ଆଲୋକମାଳା ମଝିରେ ଆଡ଼େଇ ଆଡ଼େଇ ସେ ମନଖୁସିରେ ଆଗଉଥିଲା । ବାର ତେର ବରଷର ପିଲାଟି, ଗାଡ଼ି ଗଣିଲା, ହେଲା ଷ୍ଟୋଳଶ ଖଣ୍ଡି । ଅଳ୍ପଦୂର ଛାଡ଼ି ଆଉଖଣ୍ଡିଏ ରଖା ହୋଇଛି ।

ଶୁଭକେଶରୀ ପାଖେଇଗଲା । ସେ ଦେଖିଲା, ଦରଜା ଖୋଲି ତା' ଭିତରୁ ବସନ୍ତକେଶରୀ ବାହାରିଆସିଲା । ଶୁଭକେଶରୀ ପାଖକୁ ଧାଇଁଗଲା । ଚିତ୍କାର କରିଉଠିଲା, ଭାଇ !

ବିକ୍ରମ ବିଚଳିତ ହେଲି । ଗାଡ଼ି ବୁଲାଇବାକୁ ଡ୍ରାଇଭରକୁ ନିର୍ଦ୍ଦେଶ ଦେଲି ।

ଶୁଭକେଶରୀ କହିଲା, ବଡ଼ମାଙ୍କ ସଙ୍ଗରେ ମୁଁ ସଞ୍ଜରେ ଆସିଛି ଭାଇ ! ସେ ତ ଆସିବାକୁ ଉଚ୍ଛନ୍ନ ହେଲେ !

କାହିଁକି ଉଚ୍ଛନ୍ନ ହେଲି ?

କେବେଠାରୁ ନିମନ୍ତ୍ରଣପତ୍ର ପାଇଥିଲେ । ଆଜି ଉପରବେଳାଯାଏ ଆପଣଙ୍କୁ ଅପେକ୍ଷା କରିଥିଲେ । ବୋଉକୁ କହିଲେ, ଆପଣ ଅନୁଅପାର ବାହାଘରକୁ ନିଶ୍ଚେ ଆସିବେ । ବେଭାର ପାଇଁ ପାବମାଅପାଠାରୁ ଟଙ୍କା ଧାର ଆଣିଛନ୍ତି ।

ସେଇଠୁ କ'ଣ ହେଲି ?

ପାବମାଅପାର ଶାଶୁ ଟଙ୍କାପାଇଁ ତାଙ୍କୁ ଗଞ୍ଜଣା ଦେବାରୁ ପାବମା-ଅପା କହିଦେଲି ଯେ ଆପଣ ବୁଆଡ଼େ ନିଜ ବାହାଘର ପାଇଁ ତା'ଠାରୁ ପାଁଶ ଟଙ୍କା ହ'ତ ଉଧାର ଆଣିଛନ୍ତି । ପାବମାଅପା ପୁଣି ଠାଣ କରି କହିଲା, ମୁଁ ନିଜେ ଶୁଣିଛି ଭାଇ, କହିଲା, ମୋର ଧର୍ମର ଭାଇଙ୍କୁ ମୁଁ ଦେଇଛି, ସୁବିଧା ଯେବେ ହେବ ସେ ଶୁଝିବେ ।

ଠିକ୍ କହୁଛି । ବୁଢ଼ୀଙ୍କୁ କହିଦେଲୁ ବାବୁ, ମୁଁ ତା'ର ଭାଇ, ଧର୍ମର ଭାଇ । ମା' ପେଟର ଜନମିଲା ଭାଇ ଭଉଣୀର ଧନ କେବେ କାହିଁକି ଠୋକ ଦେଇ ପାରେ, ହଜମ ବି କରିପାରେ । କିନ୍ତୁ ଯେ ଧର୍ମର ଭାଇ, ସେ ଧର୍ମ ବୁଡ଼ାଏ ନାହିଁ । ମୋ ପାବମା ଭଉଣୀର ଟଙ୍କା ଜାଣ ତା ବାକ୍ସରେ ଥୁଆ ହୋଇଛି ।

କହିଦେବି, ଭାଇ ! ଆପଣ ବାହା ହେଉଛନ୍ତି, ଏ ମିଛ ଖବର ଶୁଣି ବଡ଼ମା କଟକ ଆସିବାକୁ ଉଚ୍ଛନ୍ନ ହେଲେ ।

ମାମୁଁ ମତେ ନିମନ୍ତ୍ରଣପତ୍ର ଖଣ୍ଡେ ଡାକରେ ପଠାଇଦେଇଥିଲେ । ଆସିବାକୁ ଚିଠି ଲେଖି ନ ଥିଲେ । ବୋଉକୁ ଆଣିବାକୁ ବି ସେ ଲୋକ ପଠାଇ-ନାହାନ୍ତି । ନିଜ ମାନ ହରାଇ ସେ ଆସିଛି ତ ଅପମାନ ପାଇ ଫେରିବେ ।

ବୋଉକୁ କହିବୁ, ରାତି ପାହିବା ସଙ୍ଗେ ସଙ୍ଗେ ସେ ଯେମିତି ନିଜ ମନକୁ ଆସିଥିଲା, ସେମିତି ମାନେ ମାନେ ଫେରିଯିବ ।

ଆପଣ ରହିବେ ଭାଇ ? ବଡ଼ମାଙ୍କୁ ଡାକିବି ? କଥାଭାଷା ହେବେ ? ଘର ଗହଳ ହୋଇଛି ।

ନା । ମୁଁ ତାଙ୍କ ଘରକୁ ଆସିନାହିଁ । ମୋର ଜଣେ ବନ୍ଧୁ ଆସିଛନ୍ତି । ହେଇଟି ସେ ଫେରୁଛନ୍ତି ।

ସବୁ ଗାଡ଼ି ଆଗେଇ ଯାଇଥିଲା । ଯେଉଁ ଗାଡ଼ିରୁ ବଙ୍କିମ ଓହ୍ଲାଇଥିଲା, ସେଇଟି ମୁହଁ ବୁଲାଇ ଠିଆ ହେଲାଣି ।

ଶୁଭକେଶରୀ ଦେଖିଲା, କେବଳାନନ୍ଦ ସଙ୍ଗରେ ଆଉ ଜଣେ ଭଦ୍ରଲୋକ ପାଖେଇ ଆସୁଛନ୍ତି । ତାଙ୍କ ପଛରେ ଜଣେ ଭଦ୍ରମହିଳା ଓ ସ୍ୱାସ୍ଥ୍ୟବତୀ ଝିଅଟିଏ ।

ଭଦ୍ରଲୋକ ଜଣକ ବଙ୍କିମକୁ କହିଲେ, ଜୟଶ୍ରୀ ଦେବୀ ତମ ଭାଉଜଙ୍କୁ ଛାଡ଼ି ପଠାଇଲେ । କହିଲେ, ସେ ଏକା ରହିଲେ ଭଲ ହେବ । କିଛି ଅସୁବିଧା ହେବ ନାହିଁ । ଏମାନେ ସେଠାକୁ ଚାଲିଯାଉଛନ୍ତି । ଭିଡ଼ କମିଲେ, ଦେଖାର କାମ ତ ଆରମ୍ଭ ହୋଇଗଲାଣି, ସେମାନେ ଆଗ ନିର୍ଗୁଣାବାବୁଙ୍କ ଘରକୁ ଯିବେ, ସେଠାରୁ—

ବଙ୍କିମ କହିଲା, ବୁଝିଲି, ବୁଝିଲି ।

ଭଦ୍ରଲୋକ କହିଲେ, ସେଠାରେ ଆପଣଙ୍କର ଭଉଣୀ ଭଣୋଇଁ ଅଛନ୍ତି । ଭୁବନେଶ୍ୱରରୁ ଯେଉଁ ପାଞ୍ଚଜଣ ବନ୍ଧୁ ଆସିଛନ୍ତି, କଳିଙ୍ଗ-ହୋଟେଲରେ ଓହ୍ଲାଇଛନ୍ତି । ସେମାନଙ୍କୁ ସଙ୍ଗରେ ନେଇ ମୁଁ ପଛେ ପଛେ ଯାଉଛି ।

ଭଦ୍ରମହିଳା ଓ ଝିଅଟି ଗାଡ଼ି ଭିତରେ ପଶିଲେ । ବଙ୍କିମ ଆଗରେ ବସିଲା । ଶୁଭକେଶରୀ କେବଳାନନ୍ଦକୁ ପଚାରିଲା, ଭାଇ କୁଆଡ଼େ ଯାଉଛନ୍ତି, ଫେରିବେଟି ?

କେବଳାନନ୍ଦ କହିଲା, ଆଜି ଗୋଟାଏ ବାହାଘରରେ ଯୋଗ ଦେବାକୁ ଯାଉଛନ୍ତି । ମୁଁ ବି ସେଠାକୁ ଯାଉଛି । ଫେରିବି ନାହିଁ ।

ବଡ଼ମାଙ୍କୁ କ'ଣ କହିବ ?

ଯାହା ତୋ'ର ଖୁସି । ତେବେ, ଏଠି କିଛି ନ କହି ଘରେ କହିଲେ ଭଲ ହେବ । ଝିଆଣ୍ଟର ବାହାଘର ଦେଖିବାକୁ ଆସିଛନ୍ତି, ମନଖୁସିରେ ସେ ଦେଖନ୍ତୁ । ଭାଇଙ୍କ ସଙ୍ଗେ ଦେଖା ହେଲା ନାହିଁ ଜାଣିଲେ, ସେ ମନଦୁଃଖ କରିବେ । ତୁ ମନଖୁସିରେ ବୁଲ୍ । ଦେଖ୍, ଶୁଣ୍ । ଭଲକରି ଖା-ପିଆ କର । ବଡ଼ଲୋକଙ୍କର ବାହାଘରର କାରବାର ମଉଜ-ମଜଲିସ ଦେଖି ଯାଇଥା । ଗ୍ରାମରେ ଗପିବୁ । ବୁଝିଲୁ ?

କେବଳାନନ୍ଦ ସେହି ଗାଡ଼ିରେ ଡ୍ରାଇଭର ପାଖରେ ବସିଲା । ଗାଡ଼ି ଚାଲିଗଲା । ଆଉ ଭଦ୍ରଲୋକ ଜଣକ ରିକ୍ସା ଚଢ଼ି ଚାଲିଯାଇଥିଲେ ।

ଶୁଭକେଶଙ୍କର ଶ୍ରେଷ୍ଠ ମୁଣ୍ଡରେ ଭାବନାଟିଏ ଆଉଟି ହେଉଥିଲା,— ହାକିମ ହେଲାରୁ ସତେ କ'ଣ ତା'ର ଘର ଆତ୍ମୀୟସ୍ୱଜନ ହୋଇଗଲେ ? ବଡ଼ମାଙ୍କୁ ଦେଖା ନ ଦେଇ ସେ ଫେରିଗଲେ !

ବ୍ୟାଣ୍ଡ ବାଇଦର ଶବ୍ଦ, ପାଠିତୁଣ୍ଡ, ଶଙ୍ଖ, ହୁଳହୁଳି ଗାଡ଼ିଗୁଡ଼ିକର ପ୍ରତ୍ୟାବର୍ତ୍ତନ, ଲୋକଭିଡ଼, ଖାନାପିନାର କୋଳାହଳ, ମାଇକ୍‌ଗୁଡ଼ିକରେ ଆକାଶ ଫଟା ସିନେମା ରେକର୍ଡ଼ଗୀତ, ଆଲୋକମାଳା, ଚକଚକ ଶାଢ଼ି ଓ ଗହଣାପିନ୍ଧା କେତେ ଜାତିର ମାଇପେ, ସେକାଳର କେଶଙ୍କବଂଶର ଏବକାଳର ବରିଷ୍ଠ ଶ୍ରମଜୀବୀର ଶ୍ରେଷ୍ଠପୁଅ ଶୁଭକେଶଙ୍କ ସବୁ ଦେଖୁଥାଏ, ସବୁ ଶୁଣୁଥାଏ, ଉପଭୋଗ କରୁଥାଏ, ଶୋକଶୋଷ ଭୁଲିଯାଇଥାଏ ।

ନିମନ୍ତ୍ରିତ ଭଦ୍ରବ୍ୟକ୍ତି, ବରଯାତ୍ରୀ ଓ ଭଦ୍ରମହିଳାମାନେ ଚାଲିଯାଇଥିଲେ ।

ଦୁଇପକ୍ଷର ଆତ୍ମୀୟ ଓ ଅତି ଘନିଷ୍ଠ ବନ୍ଧୁ ଓ ବାନ୍ଧବୀମାନେ ବାସଘର ଦେଖିବାକୁ ରହିଥିଲେ । ରାତି ଗୋଟାଏ ବାଜିଲାଣି । କାହାର କାହାର ଆଖିକୁ ନିଦ ଆକ୍ରାନ୍ତ କଲାଣି ।

ବିବାହ-କର୍ମ ଆଗେଇ ଚାଲିଛି । ବନହଂସୀ, ଯେସ୍‌ମିନ, ଜୟଶ୍ରୀ ଓ ନିଜେ ଇନ୍ଦିରା ନିରୁପାକୁ ବଧୂ-ବେଶରେ ସଜାଇ ଦେଇଛନ୍ତି । ଦେହରେ ଖଞ୍ଜି ଦେଇଛନ୍ତି ସେହିସବୁ ଗହଣା, ଯାହା ଅନୁପା ପାଇଁ ନିରୁପାର ମାଁ ଓ ପସନ୍ଦରେ ଇନ୍ଦିରା କିଣି ଆଣିଥିଲେ । ଆଖିରେ ଈର୍ଷା ଭରି ସୁଖଦା ସେହି ମଙ୍ଗଳାବଣ୍ଟ ରଜତ-ପ୍ରତିମାକୁ ଚାହିଁ ରହିଛନ୍ତି । ତାଙ୍କ ପାଖରେ ଚନ୍ଦନା ବସିଛନ୍ତି । ଯିଏ ଦିନେ ଥିଲା ତାଙ୍କର ସ୍ନେହର ଖେଳଣା, ସେହି ସୁବର୍ଣ୍ଣ ପ୍ରତିମା ଅନୁପାର ହସହସ ମନଲୋଭା ସଜଳ ମୁହଁଟିକୁ ସେ କଣେଇଁ କଣେଇଁ ଚାହୁଁଛନ୍ତି ।

ଏଥର କନ୍ୟା ଦେବାକୁ ହିବ । ସଞ୍ଜୟର ହାତ ସଙ୍ଗେ ତାର ହାତ ଯୋଡ଼ା ହେବ । ହାତଗଣ୍ଠି ପଡ଼ିବ । ସଞ୍ଜୟ, ବରବେଶରେ ଇନ୍ଦ୍ରରାଜାର ପୁଅ ପରି ଦିଶୁଛି ।

ଇନ୍ଦିରାଙ୍କର ମନରେ ଆନନ୍ଦର ପରୀକ୍ଷାର ନାହିଁ । ସଞ୍ଜୟକୁ ସେ କୋଉଁ କହୁଛନ୍ତି, ମନହେନା କୋଉଁ !

ସେ ଅନୁପାକୁ ଚାହିଁଲେ । ତା'ର ଦରିଦ୍ର ବେଶ ଦେଖି ସେ କ୍ଷୁବ୍ଧ ହେଲେ । ଆହତ ହେଲେ । ଭାବିଲେ, ଉପରମୁହାଁ ଅବାଧ ଝିଅଟା ଯେଉଁ ନିଜ ଅପମାନ ଦିଆଇଲା ତା'ର ଅନ୍ତ ନାହିଁ । ଆଉ କ'ଣ ତା ମନରେ ଅଛି ?

ସେ ଉଠିଲେ । ଅନୁପାର ଦେହରେ ଟିପ ଚେଇଁ ମୁଣ୍ଡ ହଲାଇ ଡାକିଲେ । ମଣ୍ଡପରୁ ବାରଣ୍ଡାକୁ ଗଲେ ।

ଅନୁପା ଉଠିଲା । ଜୟଶ୍ରୀଙ୍କୁ କଣେଇଁ ଚାହିଁଲା । ତା' ପଛେ ପଛେ ବାରଣ୍ଡାକୁ ଆସୁଁ ଜୟଶ୍ରୀ ମନକୁ ମନ ଧୀରେ ଧୀରେ କହିହେଲେ, ରାତି

ଦୁଇଟା ହେଲାଣି । ଡେରି ହୋଇଯିବ । ମେଘ ଘୁମରିବାରୁ ତାକୁ ଗାଡ଼ିରେ ବସାଇଦେଇ ଆସିଛୁ ।

ହାତଗଣ୍ଠି ପଡ଼ିବା ଯାଏ ରହିବ ନାହିଁ ? ଏତିକ କହି ଅନୁପା ଇନ୍ଦିରାଙ୍କ ପଛେ ପଛେ ଗଲା ।

ଜୟଶ୍ରୀ ନିରୁପା ପାଖକୁ ଫେରିଆସିଲେ ।

ସିଡ଼ିପାଖର ସେହି ପଢ଼ାଘର । ଉପହାର ମିଳିଥିବା ପଦାର୍ଥଗୁଡ଼ିକ ଅନୁପା ପଲଙ୍କ ଉପରେ ଗଦାଇ ରଖିଥିଲା । ତା' ଉପରେ ସ୍ଥାନ ନ ହେବାରୁ କାନ୍ଥକଡ଼ରେ, ଟେବୁଲର ତଳେ ଓ ଉପରେ ମଧ୍ୟ ସେ ଜମାଇଥିଲା ।

ଇନ୍ଦିରା କବାଟ ଆଉଜାଇଲେ । କହିଲେ, ବର ବେଦୀକୁ ଆସିଲେ ନିରୁପାକୁ ତଳକୁ ନିଆଯିବ । କ'ଣ ସବୁ କର୍ମ ହେବ । ତା'ପରେ ହାତଗଣ୍ଠି ପଡ଼ିବ ।

ମତେ କାହିଁକି ଡାକିଲୁ, ବୋଉ ? ଜିନିଷର ତାଲିକା ଓ କିଏ କ'ଣ ଦେଇଛନ୍ତି, ମୁଁ ଓ ସୁରୂପା ସବୁ ଲେଖିଛୁଁ । ଟେବୁଲ୍ ଡ୍ରୟରରେ ସେ ତାଲିକା ଅଛି । ତାଲିକା ସଙ୍ଗରେ ଜିନିଷଗୁଡ଼ିକ ଥରେ କାଲି ମିଳାଇନେଲେ ଭଲ ହେବ । ନଗଦ ଟଙ୍କା ସବୁ ମୁଁ ତତେ ଦେଇଛି ।

ଇନ୍ଦିରା କହିଲେ, ସେଥିପାଇଁ ମୁଁ ତତେ ଡାକିନାହିଁ ମା ! ମୁଁ କଣ କହୁଛି କି, ହାତଗଣ୍ଠି ପଡ଼ିଲାବେଳେ ଦୁଇଆଡ଼ର ଲୋକେ ଖଞ୍ଜାରେ ଜମା ହେବେ । ତୁ ପୁଣି ଏମିତି ଅଭେକାଙ୍କ ପରି ତାଙ୍କ ଆଗକୁ ଯିବୁ କି ? ଚାଲ୍, ତତେ ଦାମିକା ଶାଢ଼ି ଗହଣା ମୁଁ ପିନ୍ଧାଇ ଆଣିବି । ଆମର ତ ସେ ସବୁର ଅଭାବ ନାହିଁ, ମା !

ଲୋକେ କ'ଣ ତୋତେ କହୁଛନ୍ତି, ନା କହିବେ ?

ହଁ ମା, ବାରକଥା କହି ମତେ ସେମାନେ ଚିଡ଼ାଉଛନ୍ତି । ଅପମାନରୁ ଲଜ୍ଜା ମତେ ବଳିପଡ଼ୁଛି । ସୁନାଝିଅଟି, ମୋ କଥା ମାନ, ଚାଲ ତଳକୁ । ମୋ ହାତରେ ମୁଁ ତତେ ସଜାଇଦେବି ।

ବୋଉ !

କ'ଣ ମା ?

ଅନୁପା କାନରେ ଲୁହ ପୋଛୁଥିଲା । କହୁଥିଲା, ମୋର ସବୁ ଦୋଷ ମୁଁ ମାଗିନେଉଛି । ତୁ ମତେ କ୍ଷମାକର । ଆଉ ତତେ ଦହଗଞ୍ଜ କରିବି ନାହିଁ । ମତେ ଭାରି ନିଦ ମାଡ଼ୁଛି । ମୁଁ ତଳକୁ ଯିବିନାହିଁ ବୋଉ ! ତତେ ଆଉ ଲାଜ ଅପମାନ ଦିଆଇବି ନାହିଁ । ଭାରି ହାଲିଆ ଲାଗୁଛି । ଏଇ ଘରେ ନିଦ୍ରେଳାରେ ଶୋଇବି ।

ପଲଙ୍କ ଉପରେ ଜମା ହୋଇଥିବା ପଦାର୍ଥଗୁଡ଼ିକ ଅନୁପା ସଜାଡ଼ିବାରେ ଲାଗିଲା ।

ମନେ ମନେ ବ୍ୟଥିତ ହୋଇ ଇନ୍ଦିରା ଘର ଭିତରୁ ବାହାରିଆସିଲେ । ଭାବିଲେ, ଯାହା ତା'ର ମନ ସେ କରୁ, କଥା ତ ମାନିବ ନାହିଁ !

କେଉଁମାନେ ସଶବ୍ଦରେ ସିଡ଼ିରେ ଓ ବାରଣ୍ଡାରେ ଆତଯାତ ହେଲେ । କିଏ ସବୁ ଡାକ ଛାଡ଼ୁଥିଲେ—କନ୍ୟାକୁ ବେଦୀକୁ ଆଣ, ଅମୃତବେଳା ଗଡ଼ିଯିବ । ଶଙ୍ଖ ଶବ୍ଦ ସଙ୍ଗେ ଢୋଲ ବାଇଦ ଓ ଯୋଡ଼ ମହୁରିର ସ୍ୱର ଅନୁପା'ର କାନରେ ବାଜିଲା । ସଙ୍ଗେ ସଙ୍ଗେ ହୁଳହୁଳି ରବ ।

ଅନୁପାର ଛାତି ଦୁଲୁକିଉଠିଲା । ମନର କୋହ ସେ ଅଟକାଇପାରିଲା ନାହିଁ । କବାଟ କିଳିଲା । ସେଇଠି କବାଟରେ ମୁଣ୍ଡ ରଖି ସେ କଇଁ କଇଁ ହୋଇ କାନ୍ଦିଉଠିଲା—

ଚିଠି ଖଣ୍ଡିକ ସେ ମନେ ମନେ ଆଉଥରେ ପଢ଼ିଲା ।

ବୋଉ ଲୋ,

—ଜନମ କରି, ପାଳି, ବଢ଼ାଇ, ପଢ଼ାଇ ମତେ ଚିରଦିନ ପାଇଁ ଋଣୀ କରିଛୁ । ଏ ଜୀବନରେ ସେ ଋଣ ମୁଁ ଶୁଝିପାରିବି ନାହିଁ । ଆଉ ତୋ'ର ଅଧିକ ଋଣୀ ହେବାକୁ ମୁଁ ଚାହେଁନାହିଁ । ତୋ'ର ଅବାଧ ହୋଇ ମୁଁ ତୋ'ର ଘୃଣାର ପାତ୍ର ହୋଇଛି । ତୋ'ର ସ୍ନେହ ହରାଇଛି । ବହୁ ଅର୍ଥ ବ୍ୟୟ

ରି ମୋତେ ତୁ ପରଘରକୁ ଫୋପାଡ଼ିଦେଇଥିଲୁ, କେବଳ ମୋ ଜଞ୍ଜାଳରୁ ଉଦ୍ଧାର ପାଇବାକୁ ।

—ଗୋଟିଏ ବୟସ୍ପରେ କାହିଁକି ମୁଁ ତୋ'ର ଅବାଧ୍ୟ ହେଉଥିଲି, ତୁ ଭଲ କରି ଜାଣିଛୁ । ଜାଣି ଜାଣି ଅଜାଣ ରହୁଥିଲୁ । ମୁଁ ଏ ଯୁଗର ଝିଅ । ଆଧୁନିକତାର ବେଶ ବାନ୍ଧି ନାଟ କରୁଥିଲି, କିନ୍ତୁ ମୋର ମନଟା ସେ କାଳର ଉପାଦାନରେ ଗଢ଼ା । ତୋ'ର ଅବାଧ୍ୟ ନ ହୋଇ ସତ୍ୟ-ପଥ, ଧର୍ମ-ପଥରୁ ଅମଡ଼ା ଅସନା ବାଟକୁ ଯିବାକୁ ମୋ ମନ ଚାହିଁଲା ନାହିଁ ।

—ଆଜି ମୁଁ ତୋ'ର ଲାଜର କାରଣ, ତୋ' ଆଖିର ବାଲି ଓ ମନର କଣ୍ଟା ହେବାକୁ ଚାହୁଁନାହିଁ । ତୋ'ର ସବୁ ଦୁଶ୍ଚିନ୍ତାରୁ ମୁଁ ତତେ ଉଦ୍ଧାର କରୁଛି । ମୁଁ ମେଲାଣି ନେଉଛି ବୋଉ, ମୋ ଦାୟିତ୍ୱରୁ ବିନା ଅର୍ଥବ୍ୟୟରେ ତୁ ଆଜିଠାରୁ ନିଷ୍କୃତି ଲଭିବୁ । ଲୋକେ କେତେ ସମାଲୋଚନା କରିବେ । ଏତେ ଅଳି ଅରଦଳି ମୋର ସହିଛୁ । ଜନମ ଦେଇଛୁ । ତୁ ନ ସହିବୁ ତ ସହିବ କିଏ ?

—ବାପା ମୋ'ର ସ୍ନେହର ଆଧାର, କ୍ଷମାର ଅବତାର । ତାଙ୍କ ପାଖରୁ ମୁଁ କ୍ଷମା ମାଗିନେଉଛି ।

—ଯାଉଛି ଲୋ ବୋଉ ! ଯେବେ ତୁ ଆମକୁ ସ୍ନେହଶ୍ରଦ୍ଧାରେ ଡ଼ାକିବୁ, ତୋ'ର ଓ ବାପାଙ୍କର ଖାଲି ଟିକିଏ ପାଦର ଧୂଳି ନେଇ ମୁଣ୍ଡରେ ମାରିବାକୁ ଆମେ ଅବଶ୍ୟ ଆସିବୁଁ । ସେତିକିରେ ମୋ'ର ଆଶା । ତୋ'ର ଧନ-ଦଉଲତରୁ କାଣିଚାଏ ନେବାକୁ କେବେ ମୁଁ ମନ କରିବି ନାହିଁ । କାନ, ହାତ ଓ ବେକରେ ଯାହା ପିନ୍ଧିଥିଲି, ସୁନାର ଦରବ, ସେତିକି ବି ମୁଁ ତୋ'ରେ ରଖିଯାଉଛି । କ୍ଷମା କରିବୁ ।

ତୋ'ର ଝିଅ, ଅନୁ

ମା'ଆଙ୍କ ପାଖକୁ ଜୀବନର ପ୍ରଥମ ପତ୍ରଟି ଅନୁପା ଲଫାପା ଭିତରେ ଭରିଲା । ଆଖିର ଲୁହରେ ଲଫାପା ମୁହିଁଲା । ଠିକଣା ଲେଖି ସେହି ଟେବୁଲ ଉପରେ ସେଇଟି ରଖିଲା । ତା' ଉପରେ ଚାବିଲଗା କୋଲପଟି ଥାପିଲା ।

ବଡ଼ ଝରକାର ଗୋଲାପୀ ପରଦାକୁ ଭଲକରି ଟାଣିଲା । ପଙ୍ଖାର ବେଗ କମାଇଲା । ଅଲ୍ଟ୍ରାଶକ୍ତର ମାଳ ଆଲୁଅ ଜଳାଇ ବାଲ୍ବ-ଆଲୁଅ ଲିଭାଇ ଦେଲା । ଧୀରେ ଧୀରେ ଯାଉଁଳ କବାଟର ନବ୍ ମୋଡ଼ି କବାଟ ଖୋଲିଲା । ଦରଜା ପରଦା ଭଲକରି ଟାଣି କବାଟ କିଲିଲା । ହାତରେ କେବଳ ଦୁଇ ଦୁଇ ପଟ କାଚଚୁଡ଼ି ସେ ପିନ୍ଧିଥିଲା ।

ଉତ୍କଳ ବାରଣ୍ଡାର ପାଖପେଣ୍ଟ୍‌କୁ ଆଉଜି ଜୟଶ୍ରୀ ଠିଆ ହୋଇ-ଥିଲେ । ତଳ ଅଗଣାର ବେଦୀରୁ ବ୍ରାହ୍ମଣଙ୍କର ମନ୍ତ୍ର ଶୁଭୁଥିଲା । ବରକନ୍ୟା ବେଦୀ ଉପରେ ବସିଥିଲେ । ସ୍ତ୍ରୀ-ପୁରୁଷ ସମସ୍ତେ ସେଠାରେ ରୁଣ୍ଡ ।

ଜୟଶ୍ରୀ ଅନୁପା ପାଖକୁ ଆସିଲେ । ତା'ର ହାତଟିଏ ଧରି ସ୍ନେହଭରା କୋମଳ କଣ୍ଠରେ କହିଲେ, ଡେରି କରି ନାହିଁ, ଭଉଣୀ ! ହିନ୍ଦୁ ମତରେ ଗୋଟିଏ ଲଗ୍ନରେ ଦୁହିଁଙ୍କର ଶୁଭବିବାହ ସମ୍ପନ୍ନ ହେବ । ସେଠାରେ ସବୁ କର୍ମ ସରିଛି । ତମକୁ ସଙ୍ଗରେ ନେଇଲ ହାତଗଣ୍ଠି ପଡ଼ିବ । କିନ୍ତୁ ସେ କିଏ କଣ?

ଅନୁପା କଇଁ କଇଁ ହୋଇ କାନ୍ଦିଲା ।

ନିଜ ଅଞ୍ଚଳରେ ତା'ର ଆଖିରୁ ଲୁହ ପୋଛି ଜୟଶ୍ରୀ କହିଲେ, ବୁଝିଲି । ଏ ବେଳେ ପାଇଁ କ'ଣ ଗହଣା ଲୋଡ଼ା ? ମାଉସୀଙ୍କ ପାଖରୁ ମୁଁ ବିଦାୟ ମାଗି ଆସିଛି । କହିଛି, ଅନୁପାର ବିଦାବିଧି ପୂର୍ବରୁ ମୁଁ ନିଶ୍ଚୟ ଆସିବି । ମୁଁ ତମର ଅତିଥି ଅନୁ, ଏବେ ମତେ ବିଦାୟ ଦେବାର କର୍ତ୍ତବ୍ୟ ତମର ! ଚାଲ, ସମସ୍ତଙ୍କ ମଝିରେ ଚାଲ । ଉଜ୍ଜ୍ୱଳ ଆଲୋକରେ ହସିହସି ଚାଲ । ବରକନ୍ୟାଙ୍କୁ ଥରେ ଅନାଇଁ ଦେଇଯିବି ।

ଜୟଶ୍ରୀ ଅନୁପାର ହାତ ଧରି ସିଡ଼ି ଓହ୍ଲାଇଲେ । କହିଲେ, ମୋର ହାତ ଧରି ଫାଟକଯାଏ ବାଟ କଢ଼ାଇନେବା ତମର ଦାୟିତ୍ୱ । ରାସ୍ତାକଡ଼ରେ ଗାଡ଼ି ରଖାହୋଇଛି । ତା'ପରେ ମୋ'ର କର୍ତ୍ତବ୍ୟ ଆରମ୍ଭ ।

କମ୍ପିତ କଣ୍ଠରେ ଅନୁପା କହିଲା, ବାଟବାଟେ ଯିବା, ଦିଦି ! ମାଇପେ ସେହି ବାଟରେ ଯା'ଆସ କରୁଛନ୍ତି । କୁଆଡ଼େ ମୋର ସାଧାସିଧା ବେଶ

ଦେଖିଲେ ବୋଉକୁ ଲାଜ ଲାଗୁଛି । ସେଇଥିପାଇଁ କହୁଛି ତାକୁ ମୋତେ ସେ ଏ ଘରକୁ ଡ଼ାକିଆଣିଥିଲା । ଏବେ ତାକୁ ଅଧିକ ଲାଜ ଲାଗିବ !

ବୁଝିଲି । ସବୁ ଏବେ ବୁଝିଲି । ନେଳଆ ଆଲୁଅ ଜଳାଇ, ପଙ୍ଖା ଚଳାଇ ତମେ ତେବେ ଏଘରେ ଲୁଚି ଶୋଇଛ ? ହଉ ହେଲା । ଆସ—

ବାହାଘର ସରିଲାବେଳକୁ ପାହାନ୍ତା ହୋଇଥିଲା ।

ନିରୁପା ତା'ର ମନର ମଣିଷର ହାତ ଧରି ସତେ କି ସରଗର ଚାନ୍ଦ ପାଇଲା ପରି ଆହ୍ଲାଦିତ ହେଉଥିଲା । ଆଖି ଖୋଜୁଥିଲା ସେଇଁ ଦୟାବନ୍ତୀ ହାସ୍ୟମୟୀ ଅପାଟିକୁ, ଯାହା ପାଖରେ ଅକପଟ ଚିତ୍ତରେ ସେ ମନ ଖୋଲି ହୃଦୟର ଭାଷା ପ୍ରକାଶ କରିପାରିଥିଲା, ଯାହାର କୋମଳ ଗୁଣ୍ଡରେ ଶିଶୁଟି ପରି ମୁହଁ ଲୁଚାଇ ସେ ଲୋତକ ଢାଳିପାରିଥିଲା, ଯିଏ ଥିଲା ତା'ର ବିଶ୍ୱାସର ଅଭେଦ୍ୟ ଦୁର୍ଗ, ଯିଏ ସେହି ସରଗର ଚାନ୍ଦକୁ ଆଣି ତା'ର ହାତରେ ସମର୍ପିଦେଇଛି, ସେହି ଅପାର ଚିରପ୍ରଫୁଲ୍ଲ ମୁହଁଟି ଆଖିକୁ ଦିଶୁନାହିଁ !

ଠାକୁରଘରେ ନିବେଦା ଦେଖି ନିରୁପା ଲୋତକଭରା ଆଖିରେ ପଚାରିଲା, ବୋଉ, ମୋ ଅପାର ମୁହଁ କାହିଁକି ଦିଶୁନାହିଁ ?

ଇନ୍ଦିରା କହିଲେ, ରାତି ଅନିଦ୍ରା ହୋଇ ସମସ୍ତେ କିଏ କେଉଁଠି ଶୋଇପଡ଼ିଛନ୍ତି । ଦିନରାତି ପରିଶ୍ରମ କରି ଅନୁ କ୍ଳାନ୍ତ ହୋଇପଡ଼ିଥିଲା, ମା ! ତମରି ପଡ଼ାଘରେ ନିଶ୍ଚିନ୍ତ ହୋଇ ଶୋଇପଡ଼ିଛି । ତାକୁ ଉଠାଇଦେବି କି ମା ?

ନିରୁ କହିଲା, ଶୋଇଥାଉ । ବୋଉ···!

କ'ଣ, ମା ?

ନିରୁପାର ମନରେ ଆଉ ଗୋଟିଏ ପ୍ରଶ୍ନ ଆଉଟି ହେଉଥିଲା । ପିଲାଟି ଦିନରୁ ଯାହାଙ୍କୁ ଭାଇ ବୋଲି ସେ ଜାଣିଥିଲା, ଯାହାଙ୍କର ଆଦର ସ୍ନେହରେ ସେମାନେ ବଡ଼ ହୋଇଯାଇଥିଲେ, ଅପା ବାହାଘରର

ନିମନ୍ତ୍ରଣ ପତ୍ର ଯାହାଙ୍କ ପାଖକୁ ସେ ନିଜେ ପଠାଇଥିଲା, ସେଣୁ ବିଜୟମଞ୍ଚର କାହିଁକି ମୁହଁଛପା ଦେଇ ରହିଲେ ? ପ୍ରଶ୍ନଟି ପଚାରିପାରିଲା ନାହିଁ । ତୋଳି-ଦେଲା ।

ଇନ୍ଦ୍ରିୟ ସତେ କି ତା'ର ସେହି ପ୍ରଶ୍ନଟିକୁ ଅନୁମାନ କରିପାରିଥିଲେ । ସେ ଜାଣନ୍ତି, ବିଜୟ ପାଖକୁ ସେ ନିମନ୍ତ୍ରଣ ପତ୍ର ପଠାଇନାହାନ୍ତି । ସେ ଆସି-ପାରିଲେ ନାହିଁ । ସେଥିପାଇଁ ତାଙ୍କର ଦୋଷ ଦେଇହେବ ନାହିଁ । ଜାଣିବେ, ବଳେ ବଳେ ଜାଣିବେ । ବୁଝିବେ, ଯେଉଁ ମାମୁଁଘରେ ସେ ବିନେ ସ୍ନେହ, ଆଦର, ସମ୍ମାନ ପାଉଥିଲେ, ସେ ଘର ତାଙ୍କୁ ଆଡ଼େଇ ଦେଇଛି ।

କାହିଁକି ସେ ଘରେ ସେ ହୋଇଛନ୍ତି ଅଲୋଡ଼ା, ଘୃଣାର, ଅବହେଳାର ପାତ୍ର ?

ଯେଉଁ ଦେବତାମାନେ, ଋଷି, ସନ୍ନ୍ୟାସୀ ଓ ବାବାମାନେ ମଣିଷର ଅନ୍ତରର ସବୁ ଅପ୍ରକାଶ୍ୟ ଭାଷା ଶୁଣିପାରନ୍ତି, ସବୁ ସଫଳ ଓ ବିଫଳ ଭଲମନ୍ଦ କାମନାର ନଗ୍ନରୂପ ଦେଖିପାରନ୍ତି, ସବୁ ଦୁର୍ବଳତାକୁ ମାର୍ଜନା କରି ସତ୍ୟ ପଥରେ, ଧର୍ମ ପଥରେ ଜୀବନର ନୌକା ଚଳାଇବାକୁ ପ୍ରେରଣା ଦିଅନ୍ତି, ସେହିମାନଙ୍କର ଫଟୋଗୁଡ଼ିକ ଫୁଲଚନ୍ଦନରେ ମଣ୍ଡିତ ହୋଇ ମେନକା-ମନା ଇନ୍ଦ୍ରିୟଙ୍କୁ ଓଲଟା ପ୍ରଶ୍ନ ପଚାରୁଛନ୍ତି, ତମ କାହିଁକର ଉତ୍ତର ତମେ ଦେଇପାରିବ ନାହିଁ, ଇନ୍ଦ୍ରିୟ !

ସେ ଥରଉଠିଲେ । ବିବ୍ରତ ହେଲେ । କହିଲେ, ମଝିଘରେ ତୋ'ର ଝିଅ, ତାଙ୍କର ପିଅମାନେ, ଆଉ ସବୁ କିଏ ଲମ୍ବ ଲମ୍ବ ଶୋଇପଡ଼ିଲେଣି । କଣଘରେ ତୋ' ବାପା ଘୁଙ୍ଗୁଡ଼ି ମାରୁଛନ୍ତି । ତାଙ୍କ ପାଖରେ ସୁରୁପା ଓ ସାନନ୍ଦ ଶୋଇଛନ୍ତି । ବୈଠକ-ଘରେ ବର-ପକ୍ଷର ଲୋକେ । ଆମର ଚଳଘରେ ମୁଁ ଚାଳି ପକାଇଛି । ସବୁ ଜିନିଷ ଝୁଣ୍ଡା ହୋଇଛି । ତୁ ମା ଏଇ ଠାକୁରଘରେ, ନୂଆ ସତରଞ୍ଜି ଉପରେ, ତକିଆ ତ ପଡ଼ିଛି, ମୁଣ୍ଡ ଖାଇଁ ମାରୁଥିବ, ଟିକିଏ ଶୋଇପଡ଼େ ।

ହଁ, ବୋଉ !

ନିଦ୍ରେଲା ହେବ । କବାଟ ଆଉଜାଇ ଦେ । ଅନୁପାର ନିଦ ଭାଙ୍ଗିଲାଣି କି ନାହିଁ ମୁଁ ଯାଇ ଦେଖେଁ ।

ମୋ ଅପାକୁ ତୁ ମୋ ପାଖକୁ ପଠାଇ ଦେ ବୋଉ—! କହୁ କହୁ ନିରୁପା କଇଁକଇଁ ହୋଇ କାନ୍ଦିଉଠିଲା ।

ପଡ଼ାଘରେ ନେଳିଆ ଆଲୁଅ ଜଳୁଛି । ବଡ଼ ଝରକାର ଗୋଲାପୀ ପରଦା ଟଣା ହୋଇଛି । ଧୀରେ ଧୀରେ ପଙ୍ଖା ଚଳନର ଶବ୍ଦ ହେଉଛି । ଭିତରୁ କବାଟ କିଳି ଅଝଟିଆ ଅନୁପା ଶୋଇପଡ଼ିଛି । ବାଇଆଣୀଟା ! ଯାହା ବୁଝିଥିବ ସେଇଆ । କିପରି ସେ ଅବାଗିଆ ହୋଇଛି ! କାମ କରି ହାଲିଆ ହୋଇ ଶୋଇପଡ଼ିଥିବ । କେତେବେଳେ ସେ ତା' ମନକୁ ଉଠୁଛି ଉଠୁ ।

ଇନ୍ଦିରା ଏହିପରି ଭାବି ଧୀରେ ଧୀରେ ତଳକୁ ଓହ୍ଲାଇଲେ ।

ପୁଣି ଭାବିଲେ, ତାଆରି ପାଇଁ ଏ ଘରର ବଡ଼ପଣ, ସମ୍ମାନ । ତାଆରି ପାଇଁ ଏ ଘରର ଧନ ଦଉଲତ । ପଢ଼ିବାକୁ ମନ କରୁଛି ତ ପଢୁ । ସମୟ ହେଲେ, ନିଜ ମନକୁ ସେ ନିଜେ ବୁଝାଇବ । ବାଟକୁ ଆସିବ ।

ସମସ୍ତେ ଥାଟପଟାଳି ପଡ଼ିସାରିଛନ୍ତି । ଦୁଇ ଆଡ଼ର କବାଟ ମେଲା । ସକାଳ ହେଲାଣି, ତଥାପି ଆଲୁଅଗୁଡ଼ାକ ଜଳୁଛି । ବାହାରେ କାହାର କଥାଭାଷା ଶୁଭୁଛି । କେଉଁମାନେ ସବୁ ଅଛନ୍ତି । ମୂଲିଆ ପିଲା ଘର ଜଗିଥିବେ । ହୋଇଥିବ ପରା ବିଶ୍ୱାସୀ ଚମନ ସିଂ, ନେପାଳୀ-ଗାର୍ଡ଼ !

ଇନ୍ଦିରା ପଦାକୁ ଗଲେ । ଦେଖିଲେ, ରିକ୍ସାଟିଏ ଭିତରକୁ ଆସିଛି । ଗତ ସଞ୍ଜରେ ଯେଉଁ ପିଲାଟି ଚନ୍ଦନାଙ୍କ ସଙ୍ଗରେ ଆସିଥିଲା, ସେହି ପିଲାଟି ରିକ୍ସା ଉପରେ ବିଛଣା ପୁଡ଼ା ଲଦୁଛି । ରିକ୍ସାବାଲାକୁ ସେ କଣ କହୁଛି ।

ଇନ୍ଦିରାଙ୍କର ବୁଝିବାକୁ ବାକି ରହିଲା ନାହିଁ ଯେ, ଚନ୍ଦନା ଅପା ଚାଲିଯାଉଛନ୍ତି । ତାଙ୍କର ଛାତିରେ ଚମକ ଲାଗିଲା । ଝିଅ ବିଦା ହୋଇନାହିଁ, ସ୍ୱାମୀଙ୍କର ଏକମାତ୍ର ଭଉଣୀ, ଆଶୀର୍ବାଦ ନ କରି ଏମିତି ଚାଲିଯିବେ ?

ଶାଢ଼ି ଖଣ୍ଡିଏ ପିନ୍ଧାଇବାକୁ ସେ ବେଳ ପାଇନାହାନ୍ତି । ଗ୍ରାମଲୋକେ କ'ଣ କହିବେ ? ନଷ୍ଟେ ଅନୁପା ତାଙ୍କୁ ଖୋଜିବ । କାହିଁକି ଅପା ଚାଲିଗଲେ ତା'ର କି କଇଫତ ସେ ଦେବେ ? ଅନୁପାର ବାପା ବି ପଚାରିଦେବେ ।

ଇନ୍ଦିରା ରିକ୍ସା ପାଖକୁ ଆସିଲେ । ଚନ୍ଦନା ନାଲିଘର ଆଡ଼ୁ ଆସି ହାତରେ ଧରିଥିବା ପୁଡ଼ାଟିକୁ ରିକ୍ସା ଉପରେ ଥୋଇ ଆଖି ପୋଛୁଲେ । ରିକ୍ସା ଫାଟକ ଆଡ଼କୁ ମୁହଁ ବୁଲାଇ ସାରିଥିଲା । ଶୁଭକେଶରୀ ରିକ୍ସା ଉପରକୁ ଉଠିଥିଲା ।

ଚନ୍ଦନା କହିଲେ, ଯାଉଛୁ ଲୋ ଇନ୍ଦିରା ! ଚଛରେ ଗାଳି ଦେବୁ ନାହିଁ । ଅନୁପାର ବାହାଘର ଦେଖିବାକୁ ମୋ ମନକୁ ମୁଁ ଆସିଥିଲି । ଅନୁପାର ବାହାଘର ଦେଖିଲି । ମୋ ମନକୁ ମୁଁ ଚାଲିଯାଉଛି ।

ଛଡ଼ାଛଡ଼ି ସରୁ, ଯିବ ଅପା !

ନ ରହିଲୋ, ଇନ୍ଦିରା । ମୁଁ ବାହାର ମଣିଷଟା । ବାହାରେ ବାହାରେ ଆସିଲି । ଏବେ ଯାଉଛି । ତମର କ'ଣ ଲୋକର ଅଭାବ ଅଛନ୍ତି କି ? ନାଲି-ଘରେ କେତେ କୁଆଡ଼ର ଆସି ରହିଛନ୍ତି । ଜଣେ ଚାଲିଗଲେ ଊଣା ହେବ ନାହିଁ ମ !

ଚନ୍ଦନା ରିକ୍ସା ଉପରକୁ ଉଠିଲେ । ପାଖକୁ ଆସି ଇନ୍ଦିରା କହିଲେ, ଓହ୍ଲାଇ ଆସ ଅପା, ତମକୁ ରାଣ ଅଛି । ତମରି ଭାଇର ଘର, ତମର କେଉଁ ଅଧିକାର ନାହିଁ ଯେ, ଏମିତି ଅଭିମାନ କରି, ଆମକୁ ଅପମାନ ଦେଇ ଚାଲି-ଯାଉଛ ?

ଆଲୋ ଇନ୍ଦିରା ! ମୋ'ର ଭାଇର ଏ ଘର, କିଏ ଏହା ଅସ୍ୱୀକାର କରିବ ? ମୋର ଦୁଇ ଭାଇ, ଦୁଇ ଭାଉଜ । ଝିଆରୀମାନେ, ପୁରୁଷମାନେ ସମସ୍ତେ ଏଠାରେ ଅଛନ୍ତି । ମା ମଙ୍ଗଳା ସମସ୍ତଙ୍କୁ ଦୀର୍ଘାୟୁ କରନ୍ତୁ । କାହାର ଉପରେ ରାଗ, ରୋଷ, ଅଭିମାନ କରି ମୁଁ ଚାଲିଯାଉ ନାହିଁ । କେଉଁ ମଣିଷରେ ଆମେ ଗଣା ଯେ, ମୋ ପରିକା ଜଣେ ଚାଲିଗଲେ କାହାକୁ ଅପମାନ ହେବ ?

ତେବେ··· ?

ମୋ ପୁଅ, ତମ ଭଣଜା ବସନ୍ତକୁ ମୁଁ ଏଠାରେ ଦେଖିବାକୁ ପାଇଲି ନାହିଁ । ତାକୁ ଯଦି ଡକା ହୋଇଥାନ୍ତା, ସେ କ'ଣ ଆସି ଏଠାରେ ପାଦ ଦେଇ ନ ଥା'ନ୍ତା ? କାହିଁକି ଡକା ନ ହେଲା, ମୁଁ ତ ଜାଣିଲି ନାହିଁ ? କେଶଷାଧରଭ ବୋହୂଟି ମୁଁ, ବସନ୍ତର ମା'! କେମିତି ଏଠି ଆଉ ରହି-ପାରିବି ?

ଅପା··· !

ହଁ, ଲୋ ଇନ୍ଦିରା ! ସତ କହୁଛି । ଏଇ ଛୁଆଖଣ୍ଡିକ, ବସନ୍ତର ଭାଇ ! କେହି ତାକୁ କାଲି ଆଦର କଲେ ନାହିଁ । ଡାକିଲେ ନାହିଁ । ସେ କୁବେରଘରେ ବି ଉପାସ ରହିଲା । ସେ ରକ୍ତ ସେଇଆ ଲୋ ଇନ୍ଦିରା ! ଯାଉଛି, ପଛରେ ଗାଳିଦେବୁ ନାହିଁ । ଗୁଲ୍ ରେ ରିକ୍ସା !

ଇନ୍ଦିରା ସ୍ତମ୍ଭିତ ହୋଇ ଠିଆ ହୋଇଥିଲେ । ଆଖିରୁ ଚନ୍ଦନା ଲୁହ ପୋଛୁଥିଲେ । ଫାଟକ ବାହାରକୁ ରିକ୍ସା ଗୁଳିଯାଉଥିଲା ।

ଏକ୍ସପ୍ରେସ୍ ଗାଡ଼ି ବାଟପାକ ଅଟକ ଅଟକ ଆସିଲା । କେଉଁଠି କେଉଁଠି ତା'ର ବେଗ ମନ୍ଥର ହୋଇଥିଲା । ଭାଗ୍ୟ ମନ୍ଦ ହେଲେ ସମସ୍ତେ ଏପରି ଶତ୍ରୁତା କରନ୍ତି । ଯେଉଁ ପୁଅଟିକୁ ମଣିଷ କରିବାକୁ ସେ ମଣିଷପଣିଆକୁ ତୁଚ୍ଛ କଲେ, ଦେହକୁ ସଳିତା କରି ନିଜ ଜୀବନକୁ ମାଲପା ପରି ଜଳାଇଲେ, ଶେଷକୁ ସେ ପୁଅ ଅବାଗିଆ, ଅଟବାଲଜସା, ଅମଣିଷଟିଏ ହେଲା !

ନୂହେଁ ତ, ଆଉ କ'ଣ ?

ନିଜେ ଛଟି ଖଣ୍ଡେ ନ ଲେଖି ଛତରା ସାଙ୍ଗଟିକୁ ବଡାଇ ଦେଇଛି, ଟେଲିଗ୍ରାମ କରି ଦେ, ଦୋଷ ତୁଟିଯିବ । କରେ ବାପ, କେଉଁଠି ବାହାଘର, କାହା ସଙ୍ଗେ ବାହାଘର ?

ଅକଳ ପଡ଼ିଲା, ନା ?

ଟ୍ରେନ୍‌ର ଚଳନ ତାଙ୍କର ତାବଦା କାନରେ ଉପହାସିଆ ପ୍ରଶ୍ନ-ଗୁଡ଼ାଏ ଠାଉ ଠାଉ କରି ପଚାରୁଥାଏ —ଅନୂଢ଼ା କ ଗେରସ୍ତଛଡ଼ା, ବିଧବା କ ପିଲେ'ଖା-ଚଢ଼ା— ? ମାଡ଼ି ମାଡ଼ି ପଡ଼ୁଥିବା ଅବସନ୍ନ ମୁଣ୍ଡଟି ଚମକି ଉଠୁଥାଏ । ଖୋଲି ଯାଉଥାଏ ଅଳସ-ଆଖିର ଅବଶ ପତା ।

ବଡ଼ବଡ଼ଳପୁରର କଏ ଅତି ଉଜ୍ଜ୍ୱଳ ନକ୍ଷତ୍ରଗୁଡ଼ାଏ ଖଞ୍ଜିଦେଇଛି । ମନୋରମ ଦିଶୁଛି । ମେଘୁଆ ଆକାଶର ନକ୍ଷତ୍ର ନୁହେଁ । ନିଶ୍ଚୟ ଭୁବନେଶ୍ୱର ।

କେତେ ରାତି ହେଲା ?

ଗାର୍ଡ଼କେଶଙ୍କ ସମ୍ମୁଖରେ ପ୍ୟାଣ୍ଟିପିନ୍ଧା, ଟୋକାବାବୁ ଜଣେ ସିଗାରେଟ୍ ଟାଣୁଥିଲେ । ନିଷାଦ ଗାରକେଶଙ୍କ ଆଡ଼କୁ ଧୂଆଁ ଛାଡ଼ି ବେଶ୍ ଆନନ୍ଦ ଅନୁଭବ କରୁଥିଲେ । ଆଗରୁ ଗାରକେଶ କେତେଥର ଆପତ୍ତି କରି ନିବର୍ତ୍ତାଇବାକୁ ବିଫଳ ହୋଇଥିଲେ । ଯୁଗକୁ, ଯୁବାକୁ ଓ ଭାଗ୍ୟକୁ ମନେ ମନେ ନିନ୍ଦି ପୁଣି ନିଜକୁ ସାନ୍ତ୍ୱନା ଦେଉଥିଲେ —ମନ୍ଦ ନୁହେଁ । ଅରକ୍ଷିତକୁ ଦଇବ ସାହା । ଏ ଧୂଆଁ ବେଳେ ବେଳେ ତେଙ୍ଗା କରିଦେଉଛି । ସେ ତାଙ୍କର ଟ୍ରଙ୍କ୍, ବିଛଣା ଓ ଆଉ ପୁଡ଼ାଟି ଉପରେ ନଜର ଦେଇପାରୁଛନ୍ତି । ନୋହିଲେ, କଏ ହରଣଚୂଳ କରନ୍ତା ।

ସେହି ଟୋକାବାବୁଙ୍କ ହାତରେ ଘଣ୍ଟା ବନ୍ଧା ହୋ'ଇଥିଲା । ପଚାରିବାରୁ ସେ କହିଲେ, ମୋଟେ ବାରଟା ପନ୍ଦର । ଅର୍ଥାତ୍ ସାଢ଼େ ପାଞ୍ଚଘଣ୍ଟା ଡେରି ।

ସବୁ କାମ ଭଣ୍ଡୁର ହେଲା !

ଆସିପାରିଲେ, ସେଇ ତ ଭାଗ୍ୟ !

ଆଗରୁ ସେଉଁ ଆଲୁଅ ଦିଶୁଛି ?

ଆପଣ କ'ଣ ଭୁବନେଶ୍ୱରରେ ଓହ୍ଲାଇବେ ?

ଆଜ୍ଞା, ହଁ । ଜନ୍ମଷଡ଼କ ଉତାରିବା'ରେ—

ଚିନ୍ତା ନାହିଁ । ମୁଁ ସାହାଯ୍ୟ କରିବ ।

ନିରୁ ପାଖକୁ ଯିବ । ସରଳ, ନିଷ୍ଠୁର ସେ ପିଲାଟି । ମତେ ଖୋଜିବ । ଅସ୍ଥିର ହେବ । ତା'ର କାନରେ ଗୁନ ଗୁନ କହିବ, ମାଉଁ ଆଣ୍ଟଙ୍କର ଗଳ୍ପ ସଫଳ ହୋଇଛି । ମନପବନ ଡଙ୍ଗାରେ ରାଜକୁମାର ସଙ୍ଗେ ରାଜଜେମା ସପନଦ୍ୱୀପକୁ ଆଗ ଚାଲିଯାଇଛନ୍ତି । ତତେ ସେମାନେ ଆଶୀର୍ବାଦ କରି-ଯାଇଛନ୍ତି ।

ମାନେ ?

ସେ ବୁଝିବ, ବାବା ! ଆଉ ଗୋଟିଏ ଅନୁରୋଧ ରଖିବ । ମୋ' ଗୋଲାପ ଅଞ୍ଜନାକୁ ଫୋନ୍ କରି ଜଣାଇଦେବ, ଯେ—

ସତେ, କହିବ ?

କାହିଁକି ଗୋପନ ରଖିବ, ବାବା ? ମୋ ଗୋଲାପ ଆଗ ଜାଣୁ ଯେ, ମୁଁ ସଞ୍ଜୟଙ୍କ ନମସ୍ୟା ହୋଇସାରିଛି ।

ସୂର୍ଯ୍ୟ ଉଠିଆସୁଥାନ୍ତି ।

ପ୍ରଦ୍ୟୁମ୍ନର ଘରଆଗ ବଡ଼ ରାସ୍ତା ଉପରେ ବସିଛ ଚାରୁକେଶବଙ୍କ ନିର୍ଦ୍ଦେଶରେ ସାଇକେଲ ରିକ୍ସା ଅଟକିଲା । ପାଦ ପାଖରେ ସେ ଟ୍ରଙ୍କ ରଖି-ଥିଲେ । ଟ୍ରଙ୍କ୍ ଉପରେ ବିଛଣା । ସିଟ୍ ଉପରେ, ନିଜର ଦୁଇ କଡ଼ରେ ବାଉଣ୍ଟି କନାବ୍ୟାଗ୍‌ର ପୁଡ଼ା । ଗୋଟିଏ ପୁଡ଼ା ସଙ୍ଗରେ ଖଣ୍ଡେ ଛତା ଓ ନଲଚଣ ବାନ୍ଧିଥିଲେ । ସମ୍ଭାବିତ ବୃଷ୍ଟିପାତରୁ ରକ୍ଷା ମିଳିବା ଆଶାରେ ରିକ୍ସାର ଉପରେ ଓ ଦୁଇକଡ଼ରେ ମୋଟା କନାର ଆବରଣ ବିଆ-ଯାଇଥିଲା ।

ଚାରୁକେଶବ ଚକିତନେତ୍ରରେ ନିର୍ବାକ୍ ହୋଇ ଚାହିଁରହିଥିଲେ—

ପ୍ରଦ୍ୟୁମ୍ନର ଘରଆଗରୁ ଟିକେ ଦୂରରେ ଟ୍ୟାକ୍ସିଟିଏ ରଖା-ହୋଇଥିଲା । ଟ୍ୟାକ୍ସି ଆଗରେ ଚାରିଜଣ ଭଦ୍ରଲୋକ ଠିଆ ହୋଇଥିଲେ । ସମସ୍ତେ ସେମାନେ ଯୁବକ । ସିଗାରେଟ୍ ଟାଣି ଧୂଆଁ ଛାଡୁଥିଲେ । ପରସ୍ପର

ମଧ୍ୟରେ ଆଳାପ କରୁଣୁ ଉଚ୍ଚସ୍ୱରରେ ହସି ହସି ନସ୍ୟାନ୍ତ ହେଉଥିଲେ । ଟ୍ୟାକ୍ସି ପାଖରୁ ଅଳପ ଘୁଞ୍ଚି ଠିଆ ହୋଇଥିଲା କେବଳାନନ୍ଦ ! ବ୍ୟାଗ୍‌ରୁ କାଢ଼ି, ବୋଧହୁଏ ଟ୍ୟାକ୍ସି ଚାଳକକୁ ଦେବ, ସେ ଗଣି ଗଣି ଟଙ୍କା ଦେଉଥିଲା । ହଁ, ସେ ହକଳହେଇଙ୍କ ପୁଅ କେବଳା !

ପ୍ରଦ୍ୟୁମ୍ନର ଘର ଆଗରେ କଡ଼େଇ ହୋଇ ବଡ଼ କାର୍‌ଟିଏ ରଖା ହୋଇଥିଲା । ପଛ ପାଖ ଦୁଇପଟର ଦ୍ୱାର ଖୋଲା । ରସ୍ତା ପାଖ ଆଡୁ ହଷମ ଓହ୍ଲାଇଆସିଲା । ଧୋବ ଲୁଗା ଉପରେ ଧୋବ ପଞ୍ଜାବୀ ପିନ୍ଧିଛି । କାନ୍ଧରେ ରଙ୍ଗଚଙ୍ଗ ଭଙ୍ଗା ଉତ୍ତରୀ । ବେକରେ ଫୁଲମାଳ ।

ବୀରକେଶରୀଙ୍କର ଆତ୍ମା ବାହୁନଉଠିଲା । ସତେ, ହଷମ ବାହା ହୋଇସାରିଛି ! ବଞ୍ଚିଥାଉଣୁଁ ତାଙ୍କୁ ସେ ମୃତ ବୋଲି ଗ୍ରହଣ କରିଛି । ତାଙ୍କର ମାନମହତ, ଆଶା-ଅଭିଳାଷ, ଆଗତ-ହଗତ ସବୁ ସେ ଜାଳିପୋଡ଼ି ପାଉଁଶ କରିଛି !

ଗାଡ଼ିର ଆରପାଖରୁ ବୋହୂଟିଏ ହୁଳହୁଳି ପକାଇ ନବ-ବଧୂର ହାତ ଧରି ପଦାକୁ ଆଣିଲା । ମେଘାମ୍ବରୀ ଶାଢ଼ିର ଓଢ଼ଣା କପାଳ ତଳକୁ ଓଟାରି ଆଣୁଣୁଁ ସେଇ ନୂଆ ବୋହୂର ସୁନ୍ଦର ଗୁନ୍ଦୁଗୁନ୍ଦିଆ ମୁହଁର ଝଲକ୍ ବୀରକେଶରୀଙ୍କ ଦୃଷ୍ଟିରେ ପଡ଼ିଲା । ଗୋଲାପୀ ଓଢ଼ଣୀ ମୁଣ୍ଡରେ ଘୋଡ଼ାଇ ତା'ର ହାତ ଧରି ଆଉ ବୋହୂଟି ହଷମର ପଛେ ପଛେ ବାରଣ୍ଡା ଉପରକୁ ଉଠାଇଲା ।

ପ୍ରଦ୍ୟୁମ୍ନର ଘର ବାରଣ୍ଡା ଉପରେ ଝିଅଟିଏ ଉଭା ହୋଇ ମୁହଁରେ ଶଙ୍ଖ ଲଗାଇ ଫୁଙ୍କି ଶବ୍ଦ କରିବାକୁ ବ୍ୟର୍ଥ ଚେଷ୍ଟା କରୁଥିଲା । ଜଣଙ୍କର ହୁଳହୁଳି ଧ୍ୱନିର କ୍ଷୀଣ ଆବାହନରେ ପୁଅ-ବୋହୂ ଦୁହେଁ ଦାଣ୍ଡଘର ଭିତରକୁ ପ୍ରବେଶ କଲେ ।

ବୀରକେଶରୀଙ୍କ ଆଖିରେ ଲୁହଢଳ ଢଳ ହେଉଥିଲା । ତାଙ୍କର ଏକମାତ୍ର ପୁଅର ବାହାଘର । ପୁଅ ଓ ବୋହୂଙ୍କର ମୁଣ୍ଡରେ ମୁକୁଟ ବନ୍ଧା

ହାଇନାହିଁ । ହାତରେ କେହି ଗୁହଳ ଅଞ୍ଜଳ ଦେଲେ ନାହିଁ । ଶଙ୍ଖର ଶବ୍ଦ ଭିଲା ନାହିଁ । ମଙ୍ଗଳାଷ୍ଟକ ବୋଲା ହେଲା ନାହିଁ ।

ବାହାଘର ହେଲା, ଯାନଯୌତୁକ କିଛୁ ନାହିଁ । ବାପ ମା, ଦାଦ ଖୁଡ଼ୀ, ମାମୁଁ ମାଇଁ, ବନ୍ଧୁବାନ୍ଧବ କେହି ଜାଣିଲେ ନାହିଁ । ସମସ୍ତଙ୍କୁ ସେ ଛୁ କରିଦେଲା ।

ଖାବଲେ, ତଥାପି ସେ ଅକଲ୍ୟାଣ କରିବେ ନାହିଁ । ବୋହୂଟି ଯେଉଁ ଧର୍ମର, ଯେଉଁ ଜାତିର ହୋଇଥାଉ, ସୁନ୍ଦରଟିଏ ! ମହାପ୍ରଭୁ ସେ ଦୁହିଁଙ୍କର ମଙ୍ଗଳ କରନ୍ତୁ ।

ଦୁଇହାତ ଯୋଡ଼ି, ସୂର୍ଯ୍ୟକିରଣରେ ଉଦ୍ଭାସିତ ଲିଙ୍ଗରାଜଙ୍କର ଚୂଡ଼ାକୁ ଲେଚକାତ୍ର ମୁଖରେ ଜୁହାରି ସେ ମନେ ମନେ ଗୁହାରିଲେ, ତମେ କେଶରୀବଂଶର କୀର୍ତ୍ତି, ପିଲା ଦିଓଟିଙ୍କୁ ମୋର ଦୀର୍ଘାୟୁ କର, ସୁଖୀ କର ପ୍ରଭୁ !

ରିକ୍‌ସାବାଲାକୁ କଅଁ ନେଇ କହିଲେ, ବାବୁରେ, ବସ୍‌ଷ୍ଟାଣ୍ଡକୁ ଚାଲ୍, ଜଲଦି ନେ ରେ ପୁଅ, ଏଠାକା କାମ ମୋର ସରିଛି ।

ରିକ୍‌ସାବାଲାକ ଡେରି କଲା ନାହିଁ ।

| ଶନିବାର<br>ଜନ୍ମାଷ୍ଟମୀ<br>ତା ୧୪-୮-୧୯୭୧ | } | କାହ୍ନୁଚରଣ<br>ବଜାବଗିଚା<br>କଟକ |
|---|---|---|

# କାହ୍ନୁଚରଣଙ୍କ ପୁସ୍ତକାବଳୀ

| ପୁସ୍ତକର ନାମ | ରଚନା | ପ୍ରଥମ ପ୍ରକାଶ |
|---|---|---|
| ଭଗ୍ୟବେ ବ୍ୟସନ | ୧୯୨୩-୨୪ | ପାଣ୍ଡୁଲିପି ହଜଲ |
| ତଥାସ୍ତୁ | ୧୯୨୪-୨୭ | ୧୯୬୩ |
| ବାଲିରାଜା | ୧୯୨୬-୨୮ | ୧୯୩୧-୩୨ |
| ଅରୁଣା | ୧୯୨୮-୨୯ | ପାଣ୍ଡୁଲିପି ହଜଲ |
| ପଳାତକ | ୧୯୨୯-୩୦ | ୧୯୩୦ |
| ନଷ୍ଟଦ୍ଧି | ୧୯୩୦-୩୧ | ୧୯୩୨ |
| ମାନସୀ (କାବ୍ୟ) | ୧୯୩୧ | ୧୯୩୨ |
| ସ୍ୱପ୍ନ ନା ସତ୍ୟ | ୧୯୩୨ | ୧୯୩୩ |
| ଦୁନଆର ବାଞ୍ଛ | ୧୯୩୨-୩୩ | ୧୯୩୪ |
| ହା-ଅନ୍ନ | ୧୯୩୩-୩୪ | ୧୯୩୫ |
| ଓଲଟ ପାଲଟ | ୧୯୩୪ | ୧୯୩୬ |
| ପରକାୟା | ୧୯୩୫ | ୧୯୩୮ |
| ପରିଚୟ | ୧୯୩୭ | ପାଣ୍ଡୁଲିପି ହଜଲ |
| ଉଦ୍ଦଣ୍ଡୀ | ୧୯୩୮ | ୧୯୩୯ |
| ଅଦେଖା ହାତ | ୧୯୩୯-୪୦ | ୧୯୪୩ |
| ପ୍ରତୀକ୍ଷା | ୧୯୪୧ | ୧୯୪୩ |
| ଭଲ ପାଇବାର ଶେଷ କଥା | ୧୯୪୨ | ୧୯୪୪ |
| ତୁଣ୍ଡ ବାଇଦ | ୧୯୪୨-୪୩ | ୧୯୪୪ |
| ଏପାରି ସେପାରି | ୧୯୪୪ | ୧୯୪୬ |
| ଶାସ୍ତି | ୧୯୪୫ | ୧୯୪୬ |
| ବନଗହନର ତଳେ | ୧୯୪୫ | ୧୯୪୭ |
| ଅନ୍ତସ୍ୱପ୍ନ | ୧୯୪୬ | ୧୯୪୮ |
| ତ୍ରେତା ବ୍ରହ୍ମାଣି | ୧୯୪୭ | ୧୯୪୭ |

| ପୁସ୍ତକର ନାମ | ରଚନା | ପ୍ରଥମ ପ୍ରକାଶ |
|---|---|---|
| ଅଭିନେତ୍ରୀ | ୧୯୪୭ | ୧୯୪୭ |
| ଭୁଲି ହୁଏନା | ୧୯୪୭ | ୧୯୪୮ |
| ଝଞ୍ଜା | ୧୯୪୮-୪୯ | ୧୯୫୦ |
| ମିଳନର ଛନ୍ଦ | ୧୯୪୯ | ୧୯୫୧ |
| ଶଙ୍ଖ | ୧୯୫୦-୫୧ | ୧୯୫୨ |
| ପଙ୍କ | ୧୯୫୨-୫୩ | ୧୯୫୪ |
| କା | ୧୯୫୩-୫୪ | ୧୯୫୭ |

( ୧୯୫୯ରେ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ )

| ପୁସ୍ତକର ନାମ | ରଚନା | ପ୍ରଥମ ପ୍ରକାଶ |
|---|---|---|
| ବଜ୍ରବାହୁ | ୧୯୫୫-୫୭ | ୧୯୫୯ |
| ତେଜ ତେଜକା | ୧୯୬୦-୬୧ | ୧୯୬୨ |
| ବଗ ବଗୁଲି | ୧୯୬୨-୬୩ | ୧୯୬୪ |
| ଇତ୍ତ୍ୱ | ୧୯୬୩-୬୪ | ୧୯୬୬ |
| ତମସା ତୀରେ | ୧୯୬୪-୬୬ | ୧୯୬୭ |
| ମୁଁ ମନ୍ଦ ଜାଣେ | ୧୯୬୭ | ୧୯୬୮ |
| ଲୁଟିଲେ ଘଟ | ୧୯୬୭-୬୮ | ୧୯୬୮ |
| ସ୍ୱପ୍ନା | ୧୯୬୭-୬୮ | ୧୯୬୮ |
| ତରଙ୍ଗର ତଳେ | ୧୯୬୮ | ୧୯୬୯ |
| ମନଜାଣେ ପାପ | ୧୯୬୮-୬୯ | ୧୯୬୯ |
| ମନ ମନ୍ଥନ | ୧୯୬୯ | ୧୯୭୦ |
| ଅତି ଗୋପନୀୟ | ୧୯୬୯-୭୦ | ୧୯୭୦ |
| ଅଙ୍ଗନା | ୧୯୭୦ | ୧୯୭୧ |
| ମମତାର ମାୟା | ୧୯୭୧ | ୧୯୭୨ |
| କହିବାକୁ ଲାଜ | ୧୯୭୦-୭୧ | ୧୯୭୩ |
| ନିର୍ବିଶଙ୍କ | ୧୯୭୧-୭୨ | ୧୯୭୩ |



ଜନ୍ମ—୧୯୦୭— ଅଗଷ୍ଟ ମାସ ତା ୭ ରିଖ (ଜନ୍ମାଷ୍ଟମୀ) —ସୋନପୁରରେ (ବଲାଙ୍ଗୀର ଜିଲ୍ଲା) । ପିତା—ସୂର୍ଯ୍ୟମଣି; ମାତା—ଦୁର୍ଗାଦେବୀ, ଜାୟା—ହେମନ୍ତ କୁମାରୀ, ୧୯୨୯ ରେ ବି. ଏ ପାସ୍ । ସରକାରୀ ଚାକିରି ଆରମ୍ଭ -୧୯୩୦ । ଅବସର ଗ୍ରହଣ-୧୯୬୨ । ନିଯୁକ୍ତ—ସାହିତ୍ୟ ରଚନା ।